# ମହାଭାରତ

## ଅନୁଶାସନ ପର୍ବ




ଗୋବିନ୍ଦଚନ୍ଦ୍ର ମହାପାତ୍ର

# ଅନୁଶାସନ ପର୍ବ

## ବିଷୟ ସୂଚୀ

# ଶ୍ରୀମହାଭାରତ

## ଅନୁଶାସନ ପର୍ବ

### ଅନୁଶାସନିକ ପର୍ବାଧ୍ୟାୟ

### ପ୍ରଥମାଧ୍ୟାୟ

ଶ୍ରୀ ଗଣେଶାୟ ନମଃ ॥

ନାରାୟଣ, ନରୋତ୍ତମ ନର ଓ ଦେବୀ ସରସ୍ୱତୀଙ୍କୁ ନମସ୍କାର କରି ଇତିହାସ, ପୁରାଣ ପ୍ରଭୃତି କୀର୍ତ୍ତନ କରିବ ।

ରାଜା ଯୁଧିଷ୍ଠିର ମହାତ୍ମା ଭୀଷ୍ମଙ୍କ ନିକଟରୁ ଆନୁପୂର୍ବିକ ମୋକ୍ଷ ଧର୍ମ ଶ୍ରବଣକରି ତାହାଙ୍କୁ ସମ୍ବୋଧନ ପୂର୍ବକ କହିଲେ, ହେ ପିତାମହ ! ଆପଣ ବହୁବିଧ ସୂକ୍ଷ୍ମ ଶମଗୁଣର କଥା କୀର୍ତ୍ତନ କଲେ, କିନ୍ତୁ ଆମ୍ଭେ ତାହା ବିଶେଷ ରୂପେ ଶ୍ରବଣକରି ସୁଦ୍ଧା ଶାନ୍ତିଲାଭ ବିଷୟରେ ସମର୍ଥ ହୋଇନାହୁଁ । ଅଜ୍ଞାନ ହେତୁରୁ ପାପାନୁଷ୍ଠାନ କଲେ ତଦ୍‌ବିଷୟରେ ବୁଦ୍ଧିମାନ୍ ବ୍ୟକ୍ତିର ଶୋକକରିବାର ଉଚିତ ନୁହେ, କିନ୍ତୁ ଜ୍ଞାନପୂର୍ବକ ପାପାଚରଣ କଲେ କିପରି ଶାନ୍ତିଲାଭ ହୋଇପାରେ ? ୨ ।

ଆପଣଙ୍କ କଳେବର ଶର ବୃନ୍ଦରେ କ୍ଷତ ବିକ୍ଷତ ହୋଇ ଜଳଧାରାବାହୀ ଅଚଳ ସଦୃଶ ନିରନ୍ତର ରକ୍ତ ପ୍ରବାହ ବୃଷ୍ଟିକରି ଆମ୍ଭଙ୍କୁ କର୍ମର ପରିଚୟ ଦେଉଅଛି । ଏହା ଦର୍ଶନ କରି ବର୍ଷାକାଳିକ ପଙ୍କଜ ପ୍ରାୟ ଶୀର୍ଣ୍ଣ ହୋଇ ଆମ୍ଭେ କଦାପି ଶାନ୍ତିଲାଭ ବିଷୟରେ ସମର୍ଥ ହେଉନାହୁଁ । ଆପଣ ଯେ ଆମ୍ଭ ନିମିତ୍ତ ଏତାଦୃଶ ଦୁରବସ୍ଥାଗ୍ରସ୍ତ ହୋଇଅଛନ୍ତି ଏହା ଅପେକ୍ଷା କଷ୍ଟକର ବିଷୟ ଆଉ କିଛିନାହିଁ । ଆମ୍ଭେ ଆପଣଙ୍କର ଏହି

ଅବସ୍ଥା ସ୍ୱଚକ୍ଷୁରେ ଦେଖି ବର୍ଷାଜଳସିକ୍ତ ପଦ୍ମ ସଦୃଶ ଅତ୍ୟନ୍ତ ମସୃଣ ଅର୍ଥାତ୍ ବିବର୍ଣ୍ଣ ଭାବକୁ ପ୍ରାପ୍ତ ହୋଇଅଛୁଁ । ଏବଂ ଏହି ସମସ୍ତ ନରପାଳଗଣ ଆମ୍ଭ ନିମିତ୍ତ ପୁତ୍ର ଓ ମିତ୍ରଗଣଙ୍କ ସହିତ ସମରଶାୟୀ ହୋଇ ଅଛନ୍ତି । ହେ ପୁରୁଷବ୍ୟାଘ୍ର ! ଏମାନଙ୍କର ଏପ୍ରକାର ଦୂରବସ୍ଥା ସ୍ମରଣ କରିବାରୁ ଆମ୍ଭ ହୃଦୟ ଶୋକାବେଗରେ ବିଦୀର୍ଣ୍ଣ ହେଉଅଛି । ହା ! ଆମ୍ଭେମାନେ ପରସ୍ପରରେ କ୍ରୋଧର ବଶୀଭୂତ ହୋଇ ଏହି ନିନ୍ଦିତ କର୍ମ ଆଚରଣ କରିଅଛୁଁ । ଆମ୍ଭେମାନେ ଏହି ପାପ ହେତୁରୁ କି ପ୍ରକାର ଦୁର୍ଗତି ଲାଭ କରିବୁଁ ତାହା ଜାଣିପାରୁ ନାହୁଁ । ୭ ।

ଦୁର୍ଯ୍ୟୋଧନ ଏତାଦୃଶ ଅବସ୍ଥାଗ୍ରସ୍ତ ଆପଣଙ୍କୁ ଯାହା ଦେଖୁନାହାନ୍ତି ଏହା ତାହାଙ୍କର ମଙ୍ଗଳ, ବୋଲି ଆମ୍ଭେ ଜାଣୁଅଛୁଁ । ୮ ।

ଆମ୍ଭେ ଆପଣଙ୍କର ଓ ସୁହୃଜ୍ଜନମାନଙ୍କର ବଧ କାରକ; ଆପଣ ଦୁଃଖିତ ହୋଇ କ୍ଷିତିରେ ଶରଶଯ୍ୟାରେ ଶୟନ କରିଥିବାର ଦେଖି ଆମ୍ଭେ ଶାନ୍ତିଲାଭ କରିପାରୁ ନାହୁଁ । ୯ ।

କୁରୁକୁଳର କଳଙ୍କ ଦୁରାତ୍ମା ଦୁର୍ଯ୍ୟୋଧନ ଭ୍ରାତୃଗଣ ଓ ସୈନ୍ୟମାନଙ୍କ ସହିତ କ୍ଷତ୍ରିୟ ଧର୍ମାନୁସାରେ ଯୁଦ୍ଧରେ ହତ ହୋଇଥିବାରୁ ( ୧୦ ) ସେ ଆମ୍ଭ ଅପେକ୍ଷା ସୁଖୀ ଅଟନ୍ତି । ସେ ଅଦ୍ୟ ଆପଣଙ୍କର ଶରଶଯ୍ୟାକୁ ମଧ୍ୟ ଦେଖିଲେ ନାହିଁ । ଅତଏବ ଏତେବେଳେ ଆମ୍ଭର ପ୍ରାଣଧାରଣ କରିବା ଅପେକ୍ଷା ମୃତ୍ୟୁଲାଭ କରିବାର ଶ୍ରେୟ । ଆମ୍ଭେ ଯଦି ପୂର୍ବରୁ ଭ୍ରାତୃମାନଙ୍କ ସହିତ ଯୁଦ୍ଧରେ ଶତ୍ରୁମାନଙ୍କ ଦ୍ୱାରା ତନୁତ୍ୟାଗ କରି ଥାଆନ୍ତୁ, ( ୧୨ ) ତେବେ ଆମ୍ଭେ ଆପଣଙ୍କୁ ଏତାଦୃଶ ଶରନିପୀଡ଼ିତ ଓ ଦୁଃଖିତ ହେବାର ଦେଖି ନଥାନ୍ତୁ । ଜଣାଯାଏ ବିଧାତା ଆମ୍ଭମାନଙ୍କୁ ପାପାନୁଷ୍ଠାନ କରିବାନିମିତ୍ତ ନିର୍ମାଣ କରିଅଛନ୍ତି । ୧୩ । ଆମ୍ଭେମାନେ ଯାହାଦ୍ୱାରା ପରଲୋକରେ ଏହି ପାପରୁ ପରିତ୍ରାଣ ଲାଭ କରିବୁଁ, ଆପଣ ଆମ୍ଭମାନଙ୍କ ହିତାନୁଷ୍ଠାନ ବାସନାରେ ତଦ୍‌ବିଷୟରେ ଉପଦେଶ ପ୍ରଦାନ କରିବା ହେଉନ୍ତୁ । ୧୪ ।

ଭୀଷ୍ମ କହିଲେ, ଧର୍ମରାଜ ମହାଭାଗ ! ତୁମ୍ଭେ ସ୍ୱୟଂ ପରାଧୀନ; କେଉଁ କାରଣରୁ ଆତ୍ମାକୁ ପାପପୁଣ୍ୟ କର୍ମର କାରଣ ବୋଲି ଜାଣୁଅଛ ?

ଆତ୍ମାର କର୍ତ୍ତୃତ୍ୱ ଅତି ସୂକ୍ଷ୍ମ ଓ ଇନ୍ଦ୍ରିୟର ଅଗୋଚର, ଅତଏବ ଆତ୍ମା କୌଣସି କାର୍ଯ୍ୟର କାରଣ ହୋଇ ନପାରେ । ୧୫ । ମୃତ୍ୟୁ ଓ ଗୌତମୀଙ୍କର କାଳ, ବ୍ୟାଧ ଓ ପନ୍ନଗ ସହିତ ଯେଉଁପରି କଥୋପକଥନ ହୋଇଥିଲା, ତାହା କହୁଅଛୁଁ ଶ୍ରବଣକର । ୧୬ । ହେ କୌନ୍ତେୟ ! ପୂର୍ବକାଳରେ ଗୌତମୀ ନାମରେ ଜଣେ ଶାନ୍ତ ପରାୟଣା ବ୍ରାହ୍ମଣୀ ଥିଲେ, ତାହାଙ୍କର ଗୋଟିଏ ମାତ୍ର ପୁତ୍ରଥିଲା । ସେ ସେହି ପୁତ୍ରଙ୍କୁ ଭୁଜଙ୍ଗ କର୍ତ୍ତୃକ ଦଷ୍ଟହୋଇ ହତଚେତନ ହୋଇଥିବାର ଦେଖିଲେ । ୧୭ । ତତ୍କ୍ଷଣ ଉତ୍ତାରେ ଅର୍ଜ୍ଜୁନକ ନାମକ ଜଣେ ବ୍ୟାଧ କ୍ରୋଧାବିଷ୍ଟ ହୋଇ ସେହି ସର୍ପକୁ ସ୍ନାୟୁପାଶରେ ବାନ୍ଧି ଗୌତମୀଙ୍କ ନିକଟକୁ ଆଣିଥିଲା ଏବଂ ତାହାଙ୍କୁ କହିଲା, ହେ ମହାଭାଗେ ! ଏହି ପନ୍ନଗାଧମ ତୁମ୍ଭ ପୁତ୍ରଙ୍କୁ ଦଂଶନ କରିଅଛି, ଏହାକୁ କେଉଁ ଉପାୟରେ ବିନଷ୍ଟ କରିବି କହ । ୧୯ ।

ଏହି ଶିଶୁଘାତି ପାପାତ୍ମାର ବହୁକ୍ଷଣଯାଏ ପ୍ରାଣରକ୍ଷା କରିବାର କଦାପି ଉଚିତ ନୁହେ; ଅତଏବ ଏହାକୁ ଖଣ୍ଡ ଖଣ୍ଡ କରି ଚ୍ଛେଦନ କରିବି କିମ୍ବା ଅଗ୍ନିରେ ନିକ୍ଷେପ କରିବି, ତାହା ଶୀଘ୍ର କହ । ୨୦ ।

ତେତେବେଳେ ଗୌତମୀ କହିଲେ, ହେ ଅର୍ଜ୍ଜୁନକ ! ତୁମ୍ଭେ ଅତ୍ୟନ୍ତ ନିର୍ବୋଧ, ଏହାକୁ ପରିତ୍ୟାଗ କର । ଏ ତୁମ୍ଭ କର୍ତ୍ତୃକ ବଧ ଯୋଗ୍ୟନୁହେ । କୌଣସି ବୁଦ୍ଧିମାନ୍ ବ୍ୟକ୍ତି ଉତ୍କୃଷ୍ଟ ଲୋକ ଲାଭର ଆଶାକୁ ପରିତ୍ୟାଗ ପୂର୍ବକ ନିଜ ଆତ୍ମାକୁ ପାପଭାରରେ ନିପୀଡ଼ିତ କରେ କି ? ୨୧।

ଯେଉଁମାନେ ଧାର୍ମିକ, ସେମାନେ ଭେଳା ସଦୃଶ ଅତିଲଘୁ ; ଅତଏବ ଦୁଃଖ ସାଗରକୁ ଅନାୟାସରେ ପାରହୋଇ ପାରନ୍ତି; କିନ୍ତୁ ଯେଉଁମାନେ ପାପଭାରରେ ଆକ୍ରାନ୍ତ ହୋଇ ଥାଆନ୍ତି, ସେମାନେ ଜଳ ନିକ୍ଷିପ୍ତ ଶସ୍ତ୍ରପରି ଦୁଃଖ ସାଗରରେ ନିମଗ୍ନ ହୁଅନ୍ତି । ୨୨ । ଏହି ସର୍ପକୁ ବଧକଲେ, ଆମ୍ଭର ପୁତ୍ର କଦାପି ଜୀବିତ ହେବନାହିଁ ଏବଂ ଏହାର ପ୍ରାଣ ରକ୍ଷାକଲେ ତୁମ୍ଭର କିଛି କ୍ଷତି ହେବନାହିଁ; ଅତଏବ ଏପରି ସ୍ଥଳେ ଏହି ଜୀବିତ ଜନ୍ତୁର ପ୍ରାଣ ବିନାଶକରି କିଏ ଅନନ୍ତକାଳ ପର୍ଯ୍ୟନ୍ତ ନରକର ଯନ୍ତ୍ରଣା ଭୋଗ କରିବ ? ୨୩ । ବ୍ୟାଧ କହିଲା, ହେ ଦେବି ! ତୁମ୍ଭର ଧର୍ମାଧର୍ମ ଜ୍ଞାନଅଛି ।

ଆମ୍ଭେ ଜାଣୁଁ ଯେଉଁମାନେ ପରକୁ ପୀଡ଼ାପ୍ରଦାନ କରନ୍ତି, ସେମାନଙ୍କ ଦେହ ପାପଭାରରେ ଗୁରୁ ହୁଏ । ଗୁରୁଲୋକମାନେ ସ୍ୱଭାବରେ ପର ଦୁଃଖରେ ଦୁଃଖିତ ହୁଅନ୍ତି କିନ୍ତୁ ତୁମ୍ଭେ ଯେଉଁପରି କହୁଅଛ ଏହା ଶୋକଶୂନ୍ୟ ବ୍ୟକ୍ତିର ଉପଯୁକ୍ତ ଉପଦେଶ, ପୀଡ଼ିତ ପକ୍ଷରେ ନୁହେ । ଅତଏବ ଆମ୍ଭେ ଏପ୍ରଜ୍ଞ ଏହି ଦୁଷ୍ଟ ସର୍ପକୁ ବିନଷ୍ଟ କରିବୁଁ । ୨୪ । ଯେଉଁମାନେ ଶାନ୍ତି ଗୁଣାବଲମ୍ବୀ, ସେମାନେ ଉପସ୍ଥିତ ଅପ୍ରିୟ ଘଟନାକୁ କାଳକୃତ ବୋଲି ବିବେଚନା କରି ଶୋକ ତ୍ୟାଗୀ ହୁଅନ୍ତି । କିନ୍ତୁ ଯେଉଁମାନେ ପ୍ରତିକାର ପରାୟଣ, ସେମାନେ ଶତ୍ରୁ ନାଶଦ୍ୱାରା ଶୋକାନଳକୁ ନିର୍ବାଣ କରନ୍ତି । ଯେଉଁମାନେ ଉଭୟ ଗୁଣଶୂନ୍ୟ ସେମାନେ ମୋହବଶରେ ନିରନ୍ତର ଶ୍ରେୟର କ୍ଷୟକୁ ଶୋଚନା କରନ୍ତି । ଅତଏବ ଆମ୍ଭେ ଏହି ଭୁଜଙ୍ଗକୁ ବିନଷ୍ଟ କରିବୁଁ । ତୁମ୍ଭେ ଅବିଳମ୍ବରେ ପୁତ୍ର ବିନାଶ ଜନିତ ଦୁଃଖକୁ ପରିତ୍ୟାଗ କର । ୨୫ ।

ଗୌତମୀ କହିଲେ, ହେ ବ୍ୟାଧ ! ମାଦୃଶ ଧର୍ମାତ୍ମାମାନଙ୍କର କଦାପି କିଛିମାତ୍ର ଦୁଃଖ ଉପସ୍ଥିତ ହୁଏ ନାହିଁ; ସଜ୍ଜନ ଧର୍ମାତ୍ମାମାନେ ସର୍ବଦା ବିବେକକୁ ଆଶ୍ରୟ କରିଥାଆନ୍ତି; ଆମ୍ଭ ଏହି ପୁତ୍ର ମୃତ୍ୟୁ କର୍ତ୍ତୃକ ଆକ୍ରାନ୍ତ ହୋଇଥିଲା ବୋଲି ଏହି ସର୍ପ ଏହାକୁ ଦଂଶନ କରିଅଛି, ସୁତରାଂ ଆମ୍ଭେ ଏତେବେଳେ ଏହାକୁ କଦାପି ବିନଷ୍ଟ କରିବାକୁ ସମର୍ଥ ହୋଇ ପାରୁନାହୁଁ । ୧୬ । ବିଶେଷତଃରେ ବ୍ରାହ୍ମଣର କ୍ରୋଧ କରିବାର ଉଚିତ ନୁହେ; କ୍ରୋଧରୁ ପୀଡ଼ା ଉପସ୍ଥିତ ହୁଏ । ହେ ସାଧୋ ! ଆମ୍ଭର କିଛି ମାତ୍ର କ୍ରୋଧ ଉପସ୍ଥିତ ହୋଇନାହିଁ । ତୁମ୍ଭେ କ୍ଷମାଗୁଣ ଅବଲମ୍ବନ ପୂର୍ବକ ଏହି ସର୍ପକୁ ଅବିଳମ୍ବରେ ପରିତ୍ୟାଗ କର । ୨୭ । ବ୍ୟାଧ କହିଲା, ହେ ଭଦ୍ରେ ! ଶତ୍ରୁ ବିନାଶଦ୍ୱାରା ଯେଉଁ ଧନକୀର୍ତ୍ତି ପ୍ରଭୃତି ଲାଭ ହୁଏ, ତାହା ଅକ୍ଷୟ । ଶତ୍ରୁ ବିନାଶ ବିଷୟରେ ବିଳମ୍ବ କରିବାର ଉଚିତ ନୁହେ । ବଳବାନ୍ ଶତ୍ରୁମାନଙ୍କ ସଂହାର ଦ୍ୱାରା ଅବିଳମ୍ବରେ ଧନ କୀର୍ତ୍ତି ପ୍ରଭୃତି ଲାଭ କରିପାରିଲେ ଲୋକ ପ୍ରଶଂସନୀୟ ହୁଅନ୍ତି । ଯଦି ଏହି ସର୍ପ କାଳ ବଶରେ ବିନଷ୍ଟ ହେବ, ତେବେ ତୁମ୍ଭର ଶତ୍ରୁକ୍ଷୟ ଜନିତ ଶ୍ରେୟୋ ଲାଭ ହୋଇ ପାରିବ ସତ୍ୟ, କିନ୍ତୁ ସେହି ଲାଭ କଦାପି ପ୍ରଶଂସନୀୟ ହୋଇ ପାରିବନାହିଁ । ୨୮ । ଗୌତମୀ କହିଲେ, ହେ ସୌମ୍ୟ ବ୍ୟାଧ ! ଏହି ସର୍ପକୁ ନିଗ୍ରହ ପୂର୍ବକ ବିନଷ୍ଟକଲେ

ଆମ୍ଭର କେଉଁ ପ୍ରୀତି ହେବ ? ଓ ଏହାକୁ ଦୃଢ଼ତର ବନ୍ଧନ କଲେ ଅବା ଆମ୍ଭର କେଉଁ ଫଳ ଲାଭ ହେବ ? ଅତଏବ ଏହି ସର୍ପକୁ କ୍ଷମାକରିବାର ଉଚିତ । ମୋକ୍ଷଲାଭ ନିମିତ୍ତ ଯତ୍ନ କରିବାର ଆମ୍ଭର ସର୍ବତୋ ଭାବରେ ବିଧେୟ । ୨୯ ।

ବ୍ୟାଧ କହିଲା, ହେ ଗୌତମି ! ଏହି ଗୋଟିକ ସର୍ପକୁ ବିନଷ୍ଟ କଲେ ଅସଂଖ୍ୟ ଲୋକର ପ୍ରାଣ ରକ୍ଷା ହେବ, ଅତଏବ ବହୁଲୋକର ପ୍ରାଣରକ୍ଷାକୁ ଉପେକ୍ଷାକରି ଏହାକୁ ରକ୍ଷା କରିବାର କଦାପି ବିଶୁଦ୍ଧ ଯୁକ୍ତି ବ୍ୟକ୍ତିର ଅନୁମୋଦିତ ନୁହେ । ଧର୍ମପରାୟଣ ବ୍ୟକ୍ତିମାନେ ଅପରାଧୀର ପ୍ରାଣଦଣ୍ଡ ବିଧାନ କରିଥାଆନ୍ତି । ଅତଏବ ଏହି କ୍ଷତିକାରକ ସର୍ପକୁ ତୁମ୍ଭେ ଅବିଳମ୍ବରେ ବିନଷ୍ଟକର । ୩୦ ।

ଗୌତମୀ କହିଲେ, ହେ ଲୁବ୍‌ଧକ ! ଏହି ସର୍ପର ପ୍ରାଣ ସଂହାର କଲେ ଆମ୍ଭପୁତ୍ର କଦାପି ପୁନର୍ଜୀବିତ ହେବ ନାହିଁ; ଏବଂ ଏହି କାର୍ଯ୍ୟଦ୍ୱାରା ମଧ୍ୟ ଆମ୍ଭର ପୁଣ୍ୟଲାଭ ହେବାର ସମ୍ଭାବନା ନାହିଁ । ଅତଏବ ତୁମ୍ଭେ ଅବିଳମ୍ବେ ଏହି ଜୀବିତ ସର୍ପକୁ ପରିତ୍ୟାଗ କର । ୩୧ ।

ବ୍ୟାଧ କହିଲା, ହେ ଭଦ୍ରେ ! ଦେବରାଜ ଇନ୍ଦ୍ର ବୃତ୍ରାସୁରକୁ ସଂହାରକରି ଶ୍ରେଷ୍ଠତ୍ୱ ପ୍ରାପ୍ତ ହୋଇ ଅଛନ୍ତି ଏବଂ ଶୂଳଧାରୀ ରୁଦ୍ରଦେବ ମଧ୍ୟ ଯଜ୍ଞକୁ ବିନଷ୍ଟ କରି ଯଜ୍ଞଭାଗରେ ଅଧିକାରୀ ହୋଇ ଅଛନ୍ତି । ଅତଏବ ତୁମ୍ଭେ ଦେବଗଣଙ୍କର ଅନୁକରଣ ପୂର୍ବକ ଅଶଙ୍କିତ ଚିତ୍ତରେ ଏହି ସର୍ପକୁ ବିନଷ୍ଟକର । ୩୨ । ଭୀଷ୍ମ କହିଲେ, ବ୍ୟାଧ ସର୍ପକୁ ବିନଷ୍ଟ କରିବା ନିମିତ୍ତ ଗୌତମୀଙ୍କୁ ବାରମ୍ବାର କହିଲେ ସୁଦ୍ଧା ସେହି ମହାଭାଗା ଗୌତମୀ ସର୍ପ ବିନାଶ ଜନିତ ପାପ ବିଷୟରେ ମନକଲେ ନାହିଁ । ୩୩ ।

ସେତେବେଳେ ସେହି ପାଶପୀଡ଼ିତବଦ୍ଧ ସର୍ପ କଥଞ୍ଚିତ୍ ଧୈର୍ଯ୍ୟ ଅବଲମ୍ବନ ପୂର୍ବକ ଈଷତ୍ ନିଶ୍ୱାସ ପରିତ୍ୟାଗ ପୂର୍ବକ ମୃଦୁସ୍ୱରରେ ମନୁଷ୍ୟ ଭାଷାରେ ବ୍ୟାଧକୁ ସମ୍ବୋଧନ କରି କହିଲା । ୩୪ ।

ସର୍ପ କହିଲା, ହେ ମୂର୍ଖ ଅର୍ଜୁନକ ! ଏ ବିଷୟରେ ଆମ୍ଭର କେଉଁ ଦୋଷ ଅଛି ? ଆମ୍ଭେ ପରାଧୀନ, ମୃତ୍ୟୁଦେବ ଆମ୍ଭଙ୍କୁ ପ୍ରେରଣ କରିଥିବାରୁ

ଆମ୍ଭେ ଏହି ଶିଶୁକୁ ଦଂଶନ କରିଅଛୁଁ । ହେ ବ୍ୟାଧ ! ଆମ୍ଭେ ନିଜ ଇଚ୍ଛାରେ ବା କ୍ରୋଧରେ ଦଂଶନ କରିନାହୁଁ । ତାହାଙ୍କ ବାକ୍ୟରେ ଦଂଶନ କରିଅଛୁଁ । ଅତଏବ ଏହି ଶିଶୁର ବିନାଶ ହେତୁରୁ ଯଦି କୌଣସି ଦୋଷହୁଏ ତେବେ ପ୍ରୟୋଜକ ମୃତ୍ୟୁର କେବଳ ସେହି ଦୋଷ ହେବ ।୩୬।

ଲୁବ୍ଧକ କହିଲା, ହେ ପନ୍ନଗ ! ତୁମ୍ଭେ ଯଦ୍ୟପି ଅନ୍ୟର ବଶବର୍ତ୍ତୀ ହୋଇ ଏହି ପାପକାର୍ଯ୍ୟ କରିଅଛ, ତଥାପି ତୁମ୍ଭେ ମଧ୍ୟ ଏହାର ପ୍ରଧାନ କାରଣ ବୋଲି ଦୋଷୀ ହେଲ । ୩୭ । ହେ ପନ୍ନଗ ! ଚକ୍ର ଓ ଦଣ୍ଡ ପ୍ରଭୃତି ଯେଉଁପରି ମୃତ୍ ପାତ୍ର ନିର୍ମାଣର କାରଣ ବୋଲି ନିର୍ଦ୍ଦିଷ୍ଟ ହୁଅନ୍ତି, ସେହିପରି ତୁମ୍ଭେ ମଧ୍ୟ ଏହି ବାଳକ ବିନାଶ ବିଷୟରେ କାରଣ ଅଟ ।୩୮। ଦୋଷୀବ୍ୟକ୍ତି ଆମ୍ଭର ବଧ୍ୟ, ତୁମ୍ଭେ ଏହି କାର୍ଯ୍ୟର କାରଣ ବୋଲି କହୁଥିବାରୁ ହେ ପନ୍ନଗ ! ତୁମ୍ଭେ ଦୋଷୀ ବୋଲି ପ୍ରତିପନ୍ନ ହେଉଅଛ । ଅତଏବ ଆମ୍ଭେ ତୁମ୍ଭଙ୍କୁ ଅବଶ୍ୟ ବିନଷ୍ଟ କରିବୁଁ । ୩୯ ।

ସର୍ପ କହିଲା ସମସ୍ତ ଚକ୍ର ଦଣ୍ଡ ପ୍ରଭୃତି ଯେଉଁପରି ପରାଧୀନ, ଆମ୍ଭେ ମଧ୍ୟ ସେହିପରି ଅଟୁଁ । ସୁତରାଂ ଏହି ଦୋଷ ଆମ୍ଭର ନୁହେ । ଅତଏବ ତୁମ୍ଭେ ଆମ୍ଭଙ୍କୁ କି ନିମିତ୍ତ ଦୋଷୀବୋଲି ଜ୍ଞାନ କରୁଅଛ ? ୪୦ । ଏବଂ ତୁମ୍ଭେ ଯଦି ଆମ୍ଭଙ୍କୁ ଏହି ବିଷୟର କାରଣ ବୋଲି ନିର୍ଦ୍ଦେଶ କରୁଅଛ, ତେବେ ଆମ୍ଭଙ୍କୁ ଏକାକୀ ଅପରାଧୀ ବୋଲି ବିବେଚନା କରିବାର ତୁମ୍ଭର ଉଚିତ ନୁହେ । ଚକ୍ର ଦଣ୍ଡ ପ୍ରଭୃତି ଯେଉଁପରି ପରସ୍ପର ପରସ୍ପରର ପ୍ରୟୋଜକ, ସେହିପରି କାଳ ମୃତ୍ୟୁ ଓ ଆମ୍ଭେମାନେ ସମସ୍ତେ ପରସ୍ପର ପରସ୍ପରର ପ୍ରେରକ, ଏହିପରି ପରସ୍ପର ପରସ୍ପରର ପ୍ରେରକ ହେତୁରୁ ସମସ୍ତଙ୍କ ସହିତ ସମସ୍ତଙ୍କର କାର୍ଯ୍ୟ କାରଣ ଭାବ ସଙ୍ଘଟିତ ହୋଇପାରେ । ସୁତରାଂ ଏପରି ସ୍ଥଳେ ଆମ୍ଭେ ଏକାକୀ କଦାପି ଦୋଷୀ ଓ ବଧ ଯୋଗ୍ୟ ବୋଲି ଗଣ୍ୟ ହୋଇ ପାରିବୁନାହିଁ । ଅତଏବ ଏହି ବିଷୟରେ ଯଦି ଦୋଷ ସ୍ୱୀକାର କର, ତେବେ ଆମ୍ଭ ସମସ୍ତଙ୍କର ଦୋଷ ହୋଇପାରେ । ୪୨ ।

ଲୁବ୍ଧକ କହିଲା, ହେ ସର୍ପ ! ତୁମ୍ଭେ ପ୍ରଧାନ କାରଣ ନ ହୋଇ ପାର ଏବଂ ତୁମ୍ଭେ ସ୍ୱେଚ୍ଛାରେ ଏହି କାର୍ଯ୍ୟ କର ନଥିବ; କିନ୍ତୁ ତୁମ୍ଭେ ମୃତ୍ୟୁର କାରଣ; ସୁତରାଂ ତୁମ୍ଭଙ୍କୁ ସଂହାର କରିବାର ଆମ୍ଭର ଉଚିତ ।୪୩।

ଲୋକ ଯଦି ଅସତ୍ କାର୍ଯ୍ୟର ଅନୁଷ୍ଠାନ କରି ପାପରେ ଲିପ୍ତ ନ ହେବେ, ତେବେ ଶାସ୍ତ୍ର ସବୁ ବୃଥା ହେବ, ଏବଂ ନରପାଳମାନେ ମଧ୍ୟ ତସ୍କର ପ୍ରଭୃତିର ଦଣ୍ଡବିଧାନ କରି ପାରିବେ ନାହିଁ । ୪୪ ।

ସର୍ପ କହିଲା, ହେ ଲୁବ୍ଧକ ! ପ୍ରଯୋଜକ କର୍ତ୍ତା ବର୍ତ୍ତମାନ ଥିଲେ ସୁଦ୍ଧା ପ୍ରଯୋଜ୍ୟ ବ୍ୟତିରେକେ କ୍ରିୟା ସାଧନ ହୁଏ ନାହିଁ । ଏହି ନିମିତ୍ତ ପ୍ରଯୋଜ୍ୟକୁ ଆପାତତଃ କାର୍ଯ୍ୟର ସାଧକ ବୋଲି ବୋଧ କରାଯାଏ । ଏହି ଶିଶୁର ବିନାଶ ବିଷୟରେ ଆମ୍ଭେ ପ୍ରଯୋଜ୍ୟ ବୋଲି ତୁମ୍ଭେ ଆମ୍ଭଙ୍କୁ ଦୋଷୀ ବିବେଚନା କରୁଅଛ, କିନ୍ତୁ ବିଶେଷ ବିବେଚନା କଲେ ଆମ୍ଭଙ୍କୁ ଏ ବିଷୟରେ ଦୋଷୀ ନ ବୋଲି ବରଂ ଆମ୍ଭର ପ୍ରଯୋଜକ ମୃତ୍ୟୁଙ୍କୁ ଦୋଷୀ ବୋଲି କହି ପାରିବ । ୪୬ ।

ବ୍ୟାଧ କହିଲା, ରେ ସର୍ପାଧମ ! ତୁ ଅତିଶୟ ନିର୍ବୋଧ, ନୃଶଂସ ଓ ଶିଶୁଘ୍ନ, ଆମ୍ଭେ ତୋତେ ନିଶ୍ଚୟ ବଧ କରିବୁଁ । ତୁ ଆଉ କାହିଁକି ବୃଥା ବହୁତ ବାଗ୍‌ଜାଲ ବିସ୍ତାର କରୁଅଛୁ । ୪୭ । ସର୍ପ କହିଲା, ହେ ବ୍ୟାଧ ! ଋତ୍ୱିକ୍‌ଗଣ ଯେଉଁପରି ଯଜମାନଙ୍କ ଦ୍ୱାରା ପ୍ରେରିତ ହୋଇ ଅଗ୍ନିରେ ଆହୁତି ପ୍ରଦାନ କରନ୍ତି ମାତ୍ର ସେମାନେ ଫଳ ଲାଭରେ ଅଧିକାରୀ ହୁଅନ୍ତି ନାହିଁ, ଆମ୍ଭେ ମଧ୍ୟ ସେହିପରି ମୃତ୍ୟୁ କର୍ତ୍ତୃକ ପ୍ରେରିତ ହୋଇ ଏହି ଶିଶୁର ପ୍ରାଣ ସଂହାର କରିଅଛୁ କିନ୍ତୁ କଦାପି ଏହି ପାପର ଫଳଭାଗୀ ହେବୁ ନାହିଁ । ୪୮ ।

ଭୀଷ୍ମ କହିଲେ, ମୃତ୍ୟୁଦ୍ୱାରା ପ୍ରେରିତ ସର୍ପ ଏହିପରି କହୁଥିବା ସମୟରେ ମୃତ୍ୟୁ ସେଠାରେ ଉପସ୍ଥିତ ହୋଇ ସର୍ପକୁ ସମ୍ବୋଧନ କରି କହିଲେ ( ୪୯ ) ହେ ସର୍ପ ! ଆମ୍ଭେ କାଳ କର୍ତ୍ତୃକ ପ୍ରେରିତ ହୋଇ ତୁମ୍ଭଙ୍କୁ ପ୍ରେରଣ କରିଅଛୁଁ । ସୁତରାଂ ତୁମ୍ଭେ ଅବା ଆମ୍ଭେ କେହି ସୁଦ୍ଧା ଏହି ଶିଶୁର ପ୍ରାଣ ବିନାଶ ବିଷୟରେ କାରଣ ନୋହୁଁ । ୫୦ । ମେଘବୃନ୍ଦ ଯେଉଁପରି ବାୟୁର ବଶବର୍ତ୍ତୀ, ଆମ୍ଭେ ଦୁହେଁ ତଦ୍ବତ୍ କାଳର ଅଧୀନ ।୫୧। ଏହି ଭୂମଣ୍ଡଳରେ ଯେଉଁ ସମସ୍ତ ସାତ୍ତ୍ୱିକ, ରାଜସ ଓ ତାମସ ଜନ୍ତୁ ଅଛନ୍ତି, ସେମାନେ ସମସ୍ତେ କାଳର ବଶବର୍ତ୍ତୀ । ୫୨ ।

ସ୍ୱର୍ଗ ବା ମର୍ତ୍ତ୍ୟ ଭୂମିରେ ଯେଉଁ ସମସ୍ତ ସ୍ଥାବର ଜଙ୍ଗମାତ୍ମକ ପଦାର୍ଥ ବିଦ୍ୟମାନ ଅଛି, ତାହା ସବୁ କାଳର ଅଧୀନ, ଫଳତଃ ସମୁଦାୟ ବିଶ୍ୱ କାଳର ବଶୀଭୂତ । ୫୩ । ପ୍ରବୃତ୍ତି ଓ ନିବୃତ୍ତି ଏହି ଉଭୟ କାଳର ବଶୀଭୂତ । କାଳ ବାରମ୍ବାର ସୂର୍ଯ୍ୟ, ଚନ୍ଦ୍ର, ବିଷ୍ଣୁ, ଇନ୍ଦ୍ର, ଜଳ, ବାୟୁ, ଅଗ୍ନି, ଆକାଶ, ପୃଥିବୀ, ମିତ୍ର, ଅଶ୍ୱିନୀକୁମାର, ଅଦିତି, ନଦୀ, ସମୁଦ୍ର, ଐଶ୍ୱର୍ଯ୍ୟ ଓ ଅନୈଶ୍ୱର୍ଯ୍ୟ ଏହି ସମୁଦାୟର ସୃଷ୍ଟିକର୍ତ୍ତା ଓ ସଂହାରକାରୀ ଅଟନ୍ତି । ୫୬ ।

ହେ ସର୍ପ ! ତୁମ୍ଭେ ଏହି ସବୁ କଥା ଜାଣି ଆମ୍ଭଙ୍କୁ ଦୋଷୀବୋଲି ଯଦି ବିବେଚନା କରୁଅଛ, ତେବେ ତୁମ୍ଭେ ଦୋଷୀ ଅଟ । ୫୭ ।

ସର୍ପ କହିଲା, ହେ ମୃତ୍ୟୋ ! ଆମ୍ଭେ ତୁମ୍ଭଙ୍କୁ ଦୋଷୀ ଅବା ନିର୍ଦ୍ଦୋଷ ବୋଲି କହୁନାହୁଁ । ଆମ୍ଭେ କେବଳ କହୁଅଛୁଁ ଯେ ତୁମ୍ଭେ ଏହି ଶିଶୁର ବଧ ନିମିତ୍ତ ଆମ୍ଭଙ୍କୁ ପ୍ରେରଣ କରିଅଛ । ୫୮ ।

କାଳଙ୍କର ଦୋଷ ଥାଉ ଅବା ନଥାଉ ଆମ୍ଭେ ସେ ବିଷୟର ବିଚାରକର୍ତ୍ତା ନୋହୁଁ । ୫୯ । ଏତେବେଳେ କେବଳ ସ୍ୱଦୋଷ ପ୍ରକ୍ଷାଳନ କରିବାର ଏବଂ ଆପଣଙ୍କଠାରେ ଦୋଷାରୋପ ନ କରିବାର ଆମ୍ଭର ଉଦ୍ଦେଶ୍ୟ । ୬୦ ।

ଭୀଷ୍ମ କହିଲେ, ସର୍ପ ମୃତ୍ୟୁଙ୍କୁ ଏହିପରି କହି ଅର୍ଜ୍ଜୁନକ ବ୍ୟାଧକୁ ସମ୍ବୋଧନ ପୂର୍ବକ କହିଲା, ହେ ବନେଚର ! ତୁମ୍ଭେ ମୃତ୍ୟୁଙ୍କ ଭାଷିତବାକ୍ୟ ଶୁଣିଲ, ଅତଏବ ଆମ୍ଭଙ୍କୁ ବିନା ଅପରାଧରେ ପାଶଦ୍ୱାରା ପୀଡ଼ାପ୍ରଦାନ କରିବା ଉଚିତ ନୁହେଁ । ୬୧ । ବ୍ୟାଧ କହିଲା, ହେ ସର୍ପ ! ଆମ୍ଭେ ତୁମ୍ଭର ଓ ମୃତ୍ୟୁଙ୍କ ବାକ୍ୟ ଶୁଣିଲୁଁ ; କିନ୍ତୁ ତୁମ୍ଭର ନିର୍ଦ୍ଦୋଷିତା କଦାପି ସପ୍ରମାଣ ହେଉନାହିଁ । ୬୨ । ମୃତ୍ୟୁ ଏବଂ ତୁମ୍ଭେ ଏହି ବାଳକ ବଧର କାରଣ । ତୁମ୍ଭ ଦୁହିଙ୍କ ସମାନ ସାଧୁମାନଙ୍କ ଦୁଃଖଦାୟକ ଦୁରାତ୍ମା ଓ କ୍ରୂର କେହିନାହିଁ । ଅତଏବ ତୁମ୍ଭ ଦୁହିଙ୍କୁ ଧିକ୍ । ହେ ସର୍ପ ! ଆମ୍ଭେ ତୁମ୍ଭଙ୍କୁ ଅବଶ୍ୟ ଅନିଷ୍ଟର କାରଣ ବୋଲି ଜାଣି ବିନଷ୍ଟ କରିବୁଁ । ୬୪ ।

ମୃତ୍ୟୁ କହିଲେ, ହେ ବ୍ୟାଧ ! ଆମ୍ଭେ ଦୁହେଁ କାଳଙ୍କର ବଶୀଭୂତ ହୋଇ କାର୍ଯ୍ୟ କରୁଅଛୁଁ । ଅତଏବ ଆମ୍ଭ ଦୁହିଙ୍କଠାରେ ଦୋଷାରୋପ କରିବାର ତୁମ୍ଭର କଦାପି ଉଚିତ ନୁହେଁ । ୬୫ ।

ବ୍ୟାଧ କହିଲା, ହେ ମୃତ୍ୟୋ ! ହେ ସର୍ପ ! ତୁମ୍ଭେ ଦୁହେଁ କାଳଙ୍କର ବଶବର୍ତ୍ତୀ ବୋଲି ଆମ୍ଭେ ଯଦି ତୁମ୍ଭ ଦୁହିଙ୍କଠାରେ କୋଧ ନ କରିବୁଁ, ତେବେ କୌଣସି ଉପକାରୀର ପ୍ରଶଂସା ଓ ଅପକାରୀର ନିନ୍ଦା କରିବାର ବିଧେୟ ନୁହେ । ୬୬ ।

ମୃତ୍ୟୁ କହିଲେ, ହେ ଲୁବ୍‌ଧକ ! ଆମ୍ଭେ ପୂର୍ବେ ତୁମ୍ଭଙ୍କୁ କହିଅଛୁଁ ଯେ ପ୍ରାଣୀଗଣ ଯେଉଁ କୌଣସି କାର୍ଯ୍ୟର ଅନୁଷ୍ଠାନ କରନ୍ତି, କାଳ ସେମାନଙ୍କୁ ସେହି କାର୍ଯ୍ୟ ବିଷୟରେ ପ୍ରେରଣ କରିଥାଆନ୍ତି । କାଳଙ୍କ ପ୍ରଭାବରେ ଇହଲୋକରେ ସମସ୍ତକାର୍ଯ୍ୟ ଅନୁଷ୍ଠିତ ହେଉଅଛି, ଅତଏବ ଉପକାରୀର ସ୍ତୁତି ଓ ଅପକାରୀର ନିନ୍ଦା କରିବାର ବୁଦ୍ଧିମାନ୍ ବ୍ୟକ୍ତିଙ୍କ କାର୍ଯ୍ୟନୁହେ । ଆମ୍ଭେ ଦୁହେଁ କାଳ କର୍ତ୍ତୃକ ପ୍ରେରିତ ହୋଇ ଏହି କାର୍ଯ୍ୟ ଅନୁଷ୍ଠାନ କରିଅଛୁଁ । ସୁତରାଂ ଆମ୍ଭ ଦୁହିଙ୍କୁ ଅନର୍ଥକ ଅପରାଧୀ କରିବାର ତୁମ୍ଭର କଦାପି ଉଚିତ ନୁହେଁ । ୬୮ । ଭୀଷ୍ମ କହିଲେ, ମୃତ୍ୟୁ ବ୍ୟାଧକୁ ଏହିପରି ଉପଦେଶ ପ୍ରଦାନ କରୁଥିବା ସମୟରେ କାଳ ସେହି ଧର୍ମ ସଂଶୟ ସ୍ଥାନରେ ମୃତ୍ୟୁ, ସର୍ପ ଓ ଅର୍ଜ୍ଜୁନକ ବ୍ୟାଧର ନିକଟକୁ ଯାଇ କହିଲେ । ୬୯। କାଳ କହିଲେ, ହେ ଲୁବ୍‌ଧକ ! ଆମ୍ଭେ କ ଏହି ମୃତ୍ୟୁ କିମ୍ବା ଏହି ସର୍ପ ଆମ୍ଭେମାନେ କେହିସୁଦ୍ଧା ଜନ୍ତୁର ମରଣ ବିଷୟରେ ପ୍ରଯୋଜକ କିମ୍ବା ଅପରାଧୀ ନୋହୁଁ । ୭୦ ।

ଏହାର ପୂର୍ବାନୁଷ୍ଠିତ କର୍ମ କେବଳ ଆମ୍ଭମାନଙ୍କୁ ଏହାର ବିନାଶ ବିଷୟରେ ନିଯୋଗ କରିଅଛି, ଏହାର ଅନ୍ୟ କୌଣସି ବ୍ୟକ୍ତି ବିନାଶର କାରଣ ନୁହେଁ । ଏହି ବାଳକ ସ୍ୱକୀୟ କର୍ମବଶରେ ଅକାଳରେ କାଳ କବଳରେ ପଡ଼ିଅଛି । ୭୧ । ଏହି ବାଳକ ପୂର୍ବେ ଯେଉଁ କର୍ମ କରିଥିଲା ତାହାଦ୍ୱାରା ନିଧନ ପ୍ରାପ୍ତ ହେଲା । କର୍ମ ଏହାର କେବଳ ବିନାଶର ହେତୁ ଅଟେ । ଆମ୍ଭେମାନେ ସମସ୍ତେ କର୍ମର ବଶୀଭୂତ ଅଟୁ । ୭୨ । କର୍ମ

ସ୍ୱର୍ଗ ବା ମର୍ତ୍ତ୍ୟ ଭୂମିରେ ଯେଉଁ ସମସ୍ତ ସ୍ଥାବର ଜଙ୍ଗମାତ୍ମକ ପଦାର୍ଥ ବିଦ୍ୟମାନ ଅଛି, ତାହା ସବୁ କାଳର ଅଧୀନ, ଫଳତଃ ସମୁଦାୟ ବିଶ୍ୱ କାଳର ବଶୀଭୂତ । ୫୩ । ପ୍ରବୃତ୍ତି ଓ ନିବୃତ୍ତି ଏହି ଉଭୟ କାଳର ବଶୀଭୂତ । କାଳ ବାରମ୍ବାର ସୂର୍ଯ୍ୟ, ଚନ୍ଦ୍ର, ବିଷ୍ଣୁ, ଇନ୍ଦ୍ର, ଜଳ, ବାୟୁ, ଅଗ୍ନି, ଆକାଶ, ପୃଥିବୀ, ମିତ୍ର, ଅଶ୍ୱିନୀକୁମାର, ଅଦିତି, ନଦୀ, ସମୁଦ୍ର, ଐଶ୍ୱର୍ଯ୍ୟ ଓ ଅନୈଶ୍ୱର୍ଯ୍ୟ ଏହି ସମୁଦାୟର ସୃଷ୍ଟିକର୍ତ୍ତା ଓ ସଂହାରକାରୀ ଅଟନ୍ତି । ୫୬ ।

ହେ ସର୍ପ ! ତୁମ୍ଭେ ଏହି ସବୁ କଥା ଜାଣି ଆମ୍ଭଙ୍କୁ ଦୋଷୀବୋଲି ଯଦି ବିବେଚନା କରୁଅଛ, ତେବେ ତୁମ୍ଭେ ଦୋଷୀ ଅଟ । ୫୭ ।

ସର୍ପ କହିଲା, ହେ ମୃତ୍ୟୋ ! ଆମ୍ଭେ ତୁମ୍ଭଙ୍କୁ ଦୋଷୀ ଅବା ନିର୍ଦ୍ଦୋଷ ବୋଲି କହୁନାହୁଁ । ଆମ୍ଭେ କେବଳ କହୁଅଛୁଁ ଯେ ତୁମ୍ଭେ ଏହି ଶିଶୁର ବଧ ନିମିତ୍ତ ଆମ୍ଭଙ୍କୁ ପ୍ରେରଣ କରିଅଛ । ୫୮ ।

କାଳଙ୍କର ଦୋଷ ଥାଉ ଅବା ନଥାଉ ଆମ୍ଭେ ସେ ବିଷୟର ବିଚାରକର୍ତ୍ତା ନୋହୁଁ । ୫୯ । ଏତେବେଳେ କେବଳ ସ୍ୱଦୋଷ ପ୍ରକ୍ଷାଳନ କରିବାର ଏବଂ ଆପଣଙ୍କଠାରେ ଦୋଷାରୋପ ନ କରିବାର ଆମ୍ଭର ଉଦ୍ଦେଶ୍ୟ । ୬୦ ।

ଭୀଷ୍ମ କହିଲେ, ସର୍ପ ମୃତ୍ୟୁଙ୍କୁ ଏହିପରି କହି ଅର୍ଜ୍ଜୁନକ ବ୍ୟାଧକୁ ସମ୍ବୋଧନ ପୂର୍ବକ କହିଲା, ହେ ବନେଚର ! ତୁମ୍ଭେ ମୃତ୍ୟୁଙ୍କ ଭାଷିତବାକ୍ୟ ଶୁଣିଲ, ଅତଏବ ଆମ୍ଭଙ୍କୁ ବିନା ଅପରାଧରେ ପାଶଦ୍ୱାରା ପୀଡ଼ାପ୍ରଦାନ କରିବା ଉଚିତ ନୁହେଁ । ୬୧ । ବ୍ୟାଧ କହିଲା, ହେ ସର୍ପ ! ଆମ୍ଭେ ତୁମ୍ଭର ଓ ମୃତ୍ୟୁଙ୍କ ବାକ୍ୟ ଶୁଣିଲୁଁ; କିନ୍ତୁ ତୁମ୍ଭର ନିର୍ଦ୍ଦୋଷିତା କଦାପି ସପ୍ରମାଣ ହେଉନାହିଁ । ୬୨ । ମୃତ୍ୟୁ ଏବଂ ତୁମ୍ଭେ ଏହି ବାଳକ ବଧର କାରଣ । ତୁମ୍ଭ ଦୁହିଙ୍କ ସମାନ ସାଧୁମାନଙ୍କ ଦୁଃଖଦାୟକ ଦୁରାତ୍ମା ଓ କ୍ରୂର କେହିନାହିଁ । ଅତଏବ ତୁମ୍ଭ ଦୁହିଙ୍କୁ ଧିକ୍ । ହେ ସର୍ପ ! ଆମ୍ଭେ ତୁମ୍ଭଙ୍କୁ ଅବଶ୍ୟ ଅନିଷ୍ଟର କାରଣ ବୋଲି ଜାଣି ବିନଷ୍ଟ କରିବୁଁ । ୬୪ ।

ମୃତ୍ୟୁ କହିଲେ, ହେ ବ୍ୟାଧ ! ଆମ୍ଭେ ଦୁହେଁ କାଳଙ୍କର ବଶୀଭୂତ ହୋଇ କାର୍ଯ୍ୟ କରୁଅଛୁଁ । ଅତଏବ ଆମ୍ଭ ଦୁହିଙ୍କଠାରେ ଦୋଷାରୋପ କରିବାର ତୁମ୍ଭର କଦାପି ଉଚିତ ନୁହେ । ୬୫ ।

ବ୍ୟାଧ କହିଲା, ହେ ମୃତ୍ୟୋ ! ହେ ସର୍ପ ! ତୁମ୍ଭେ ଦୁହେଁ କାଳଙ୍କର ବଶବର୍ତ୍ତୀ ବୋଲି ଆମ୍ଭେ ଯଦି ତୁମ୍ଭ ଦୁହିଙ୍କଠାରେ କ୍ରୋଧ ନ କରିବୁଁ, ତେବେ କୌଣସି ଉପକାରୀର ପ୍ରଶଂସା ଓ ଅପକାରୀର ନିନ୍ଦା କରିବାର ବିଧେୟ ନୁହେ । ୬୬ ।

ମୃତ୍ୟୁ କହିଲେ, ହେ ଲୁବ୍ଧକ ! ଆମ୍ଭେ ପୂର୍ବେ ତୁମ୍ଭଙ୍କୁ କହିଅଛୁଁ ଯେ ପ୍ରାଣୀଗଣ ଯେଉଁ କୌଣସି କାର୍ଯ୍ୟର ଅନୁଷ୍ଠାନ କରନ୍ତି, କାଳ ସେମାନଙ୍କୁ ସେହି କାର୍ଯ୍ୟ ବିଷୟରେ ପ୍ରେରଣ କରୁଥାଆନ୍ତି । କାଳଙ୍କ ପ୍ରଭାବରେ ଇହଲୋକରେ ସମସ୍ତକାର୍ଯ୍ୟ ଅନୁଷ୍ଠିତ ହେଉଅଛି, ଅତଏବ ଉପକାରୀର ସ୍ତୁତି ଓ ଅପକାରୀର ନିନ୍ଦା କରିବାର ବୁଦ୍ଧିମାନ୍ ବ୍ୟକ୍ତିଙ୍କ କାର୍ଯ୍ୟନୁହେ । ଆମ୍ଭେ ଦୁହେଁ କାଳ କର୍ତ୍ତୃକ ପ୍ରେରିତ ହୋଇ ଏହି କାର୍ଯ୍ୟ ଅନୁଷ୍ଠାନ କରିଅଛୁଁ । ସୁତରାଂ ଆମ୍ଭ ଦୁହିଙ୍କୁ ଅନର୍ଥକ ଅପରାଧୀ କରିବାର ତୁମ୍ଭର କଦାପି ଉଚିତ ନୁହେଁ । ୬୮ । ଭୀଷ୍ମ କହିଲେ, ମୃତ୍ୟୁ ବ୍ୟାଧକୁ ଏହିପରି ଉପଦେଶ ପ୍ରଦାନ କରୁଥିବା ସମୟରେ କାଳ ସେହି ଧର୍ମ ସଂଶୟ ସ୍ଥାନରେ ମୃତ୍ୟୁ, ସର୍ପ ଓ ଅର୍ଜ୍ଜୁନକ ବ୍ୟାଧର ନିକଟକୁ ଯାଇ କହିଲେ । ୬୯। କାଳ କହିଲେ, ହେ ଲୁବ୍ଧକ ! ଆମ୍ଭେ କି ଏହି ମୃତ୍ୟୁ କିମ୍ବା ଏହି ସର୍ପ ଆମ୍ଭେମାନେ କେହିହେଁ ଜନ୍ତୁର ମରଣ ବିଷୟରେ ପ୍ରଯୋଜକ କିମ୍ବା ଅପରାଧୀ ନୋହୁଁ । ୭୦ ।

ଏହାର ପୂର୍ବାନୁଷ୍ଠିତ କର୍ମ କେବଳ ଆମ୍ଭମାନଙ୍କୁ ଏହାର ବିନାଶ ବିଷୟରେ ନିଯୋଗ କରିଅଛି, ଏହାର ଅନ୍ୟ କୌଣସି ବ୍ୟକ୍ତି ବିନାଶର କାରଣ ନୁହେଁ । ଏହି ବାଳକ ସ୍ୱକୀୟ କର୍ମବଶରେ ଅକାଳରେ କାଳ କବଳରେ ପଡ଼ିଅଛି । ୭୧ । ଏହି ବାଳକ ପୂର୍ବେ ଯେଉଁ କର୍ମ କରିଥିଲା ତାହାଦ୍ୱାରା ନିଧନ ପ୍ରାପ୍ତ ହେଲା । କର୍ମ ଏହାର କେବଳ ବିନାଶର ହେତୁ ଅଟେ । ଆମ୍ଭେମାନେ ସମସ୍ତେ କର୍ମର ବଶୀଭୂତ ଅଟୁଁ । ୭୨ । କର୍ମ

ପ୍ରକାର ମନୁଷ୍ୟଙ୍କୁ ପାପରୁ ପରିତ୍ରାଣ କରେ ଏବଂ କର୍ମ କେବଳ ମନୁଷ୍ୟର ପାପ ପୁଣ୍ୟକୁ ପ୍ରକାଶ କରେ । ମନୁଷ୍ୟ ଯେଉଁପରି କର୍ମ ସମୂହର ବଶୀଭୂତ, ତଦ୍‌ବତ୍ କର୍ମ ସମୂହ ମଧ୍ୟ ମନୁଷ୍ୟର ଅଧୀନ । ଅତଏବ ଆମ୍ଭେମାନେ ସମସ୍ତେ ପରସ୍ପର ଅଧୀନ ଅଟୁଁ ।୭୩। କୁମ୍ଭକାର ମୃତ୍ପିଣ୍ଡ ଦ୍ୱାରା ସ୍ୱେଚ୍ଛାନୁସାରେ ଯେଉଁପରି ଘଟ, ସରା ପ୍ରଭୃତି ନିର୍ମାଣ କରେ, ମନୁଷ୍ୟ ତଦ୍‌ବତ୍ ସ୍ୱେଚ୍ଛାନୁସାରେ କାର୍ଯ୍ୟ କରିପାରେ ।୭୪। କର୍ତ୍ତା ଓ କର୍ମଗୁଡ଼ିକ ଓ ଆତପ ସଦୃଶ ସ୍ୱକର୍ମଦ୍ୱାରା ନିରନ୍ତର ପରସ୍ପର ସୁସମ୍ବଦ୍ଧ ହୋଇ ରହିଅଛନ୍ତି ।୭୫। ଅତଏବ ଆମ୍ଭେ, ମୃତ୍ୟୁ, ସର୍ପ, ତୁମ୍ଭେ କି ବୃଦ୍ଧ-ବ୍ରାହ୍ମଣୀ ଏହି ଆମ୍ଭମାନଙ୍କ ମଧ୍ୟରୁ କେହିସୁଦ୍ଧା ଏହି ଶିଶୁର ବିନାଶ ବିଷୟରେ କାରଣ ନୁହେ । ଏହି ଶିଶୁ ସ୍ୱୟଂ ନିଜ ବିନାଶର କାରଣ ଅଟେ ।୭୬। ହେ ନୃପ ! କାଳ ଏହିପରି କହିବାରୁ ବୃଦ୍ଧା ଗୌତମୀ "ସମସ୍ତ ଲୋକ କର୍ମର ବଶୀଭୂତ ଅଟନ୍ତି" ବୋଲି ଜାଣି ଅର୍ଜ୍ଜୁନକ ବ୍ୟାଧକୁ କହିଲେ ।୭୭। ହେ ଅର୍ଜ୍ଜୁନକ ! କାଳ, ସର୍ପ ଅଥବା ମୃତ୍ୟୁ ଆମ୍ଭ ପୁତ୍ରର ବିନାଶ କାରଣ ନୁହନ୍ତି । ଆମ୍ଭ ପୁତ୍ର ସ୍ୱକୀୟ କର୍ମ ଦୋଷରେ ନିହତ ହୋଇଅଛନ୍ତି ।୭୮। ହେ ଅର୍ଜ୍ଜୁନକ ! ଆମ୍ଭେ ମଧ୍ୟ ନିଜ କର୍ମ ବଶରେ ପୁତ୍ରଶୋକ ପ୍ରାପ୍ତ ହୋଇଅଛୁଁ । ଏତେବେଳେ କାଳ ଓ ମୃତ୍ୟୁ ଯଥା ସ୍ଥାନକୁ ଗମନ କରନ୍ତୁ ଏବଂ ତୁମ୍ଭେ ମଧ୍ୟ ଏହି ସର୍ପକୁ ପରିତ୍ୟାଗ କର ।୭୯।

ଭୀଷ୍ମ କହିଲେ, ହେ ନୃପ ! ମହାନୁଭବା ଗୌତମୀ ବ୍ରାହ୍ମଣୀ ଏହିପରି କହିବାରୁ କାଳ ଓ ମୃତ୍ୟୁ ଯଥା ସ୍ଥାନକୁ ଗମନ କଲେ, ଅର୍ଜ୍ଜୁନକ ବ୍ୟାଧ ଶୋକ ବିହୀନ ହୋଇ ସର୍ପକୁ ପରିତ୍ୟାଗ କଲେ ଏବଂ ଗୌତମୀ ମଧ୍ୟ ପୁତ୍ର ଶୋକ ପରିତ୍ୟାଗ ପୂର୍ବକ ଶାନ୍ତି ଲାଭ କରି ରହିଲେ ।୮୦। ଅତଏବ ହେ ନୃପ ! ତୁମ୍ଭେ ମଧ୍ୟ ଏତେବେଳେ ଏହି କଥା ଶ୍ରବଣ କରି ସମସ୍ତ ଲୋକେ କର୍ମର ବଶୀଭୂତ ଅଟନ୍ତି ବୋଲି ଜାଣି ଶୋକ ବିହୀନ ହୋଇ ଶାନ୍ତି ଲାଭକର ।୮୧। ଇହଲୋକରେ ସମସ୍ତେ ସ୍ୱକାର୍ଯ୍ୟ ହେତୁରୁ ପ୍ରାଣ ପରିତ୍ୟାଗ କରନ୍ତି । ନରପତିଗଣ ଯେ ସଂଗ୍ରାମରେ ପ୍ରାଣ ପରିତ୍ୟାଗ କରିଅଛନ୍ତି, ତଦ୍ ବିଷୟରେ ତୁମ୍ଭର ଅଥବା ଦୁର୍ଯ୍ୟୋଧନଙ୍କର କିଛିମାତ୍ର ଦୋଷନାହିଁ । ସେମାନେ ସ୍ୱ ସ୍ୱ କର୍ମବଶରେ କାଳ ପ୍ରଭାବରେ ହତ ହୋଇଅଛନ୍ତି ।୮୨।

ବୈଶମ୍ପାୟନ କହିଲେ, ମହାତେଜା ଧର୍ମଜ୍ଞ ଯୁଧିଷ୍ଠିର ଏହି ବଚନ ଶୁଣି ବିଗତ ଜ୍ୱର ହୋଇ ତାହାଙ୍କୁ ଏହିକଥା ପଚ୍ଛରିଲେ । ୮୩ ।

ଆନୁଶାସନିକେ ଦାନ ଧର୍ମେ ଗୌତମୀ, ବ୍ୟାଧ, ସର୍ପ, କାଳ ସମ୍ବାଦେ ପ୍ରଥମାଧ୍ୟାୟ ସମାପ୍ତ । ୧ ।



## ଦ୍ୱିତୀୟ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ବୁଦ୍ଧିଶାଳୀ ଶ୍ରେଷ୍ଠ ମହାପ୍ରାଜ୍ଞ ପିତାମହ ! ଆପଣ ସର୍ବଶାସ୍ତ୍ର ବିଶାରଦ ଅଟନ୍ତି, ଅତଏବ ଆମ୍ଭେ ଏହି ଉତ୍କୃଷ୍ଟ ଆଖ୍ୟାନକୁ ଆପଣଙ୍କ ମୁଖରୁ ଶୁଣିଲୁଁ । ୧ । ପୁନଶ୍ଚ ଧର୍ମାର୍ଥଯୁକ୍ତ ଆଖ୍ୟାନ ଶ୍ରବଣ କରିବାକୁ ଆମ୍ଭର ଅତିଶୟ ବାଞ୍ଛା ହେଉଅଛି । ଅତଏବ କେଉଁ ଗୃହସ୍ଥ ଧର୍ମ ଅବଲମ୍ବନ କରି ମୃତ୍ୟୁକୁ ଜୟକରି ଅଛନ୍ତି, ତାହାସବୁ ଆପଣ ଯଥାର୍ଥ ରୂପେ ଆମ୍ଭଙ୍କୁ କହିବା ହେଉନ୍ତୁ । ୩ । ଭୀଷ୍ମ କହିଲେ, ହେ ବତ୍ସ ! ଗୃହସ୍ଥ ବ୍ୟକ୍ତି ଧର୍ମ ଆଶ୍ରୟ କରି ଯେଉଁପରି ମୃତ୍ୟୁକୁ ଜୟ କରନ୍ତି, ସେହି ଉପଲକ୍ଷରେ ଆମ୍ଭେ ଗୋଟିଏ ପୁରାତନ ଇତିହାସ କହୁଅଛୁଁ ଶ୍ରବଣ କର ।୪। ହେ ରାଜନ୍ ! ପୂର୍ବେ ପ୍ରଜାପତି ମନୁଙ୍କର ଇକ୍ଷ୍ୱାକୁ ନାମକ ଗୋଟିଏ ପୁତ୍ର ଥିଲେ । ସେହି ରାଜାଙ୍କଠାରୁ ସୂର୍ଯ୍ୟ ସଦୃଶ ତେଜସ୍ୱୀ ଏକଶତ ପୁତ୍ର ଜାତ ହୋଇଥିଲେ । ୫ । ହେ ଭାରତ ! ତନ୍ମଧ୍ୟରେ ତାହାଙ୍କ ଦଶମ ପୁତ୍ର ଧର୍ମାତ୍ମା ସତ୍ୟବିକ୍ରମଦଶାଶ୍ୱ, ମାହିଷ୍ମତୀ ନଗରୀରେ ରାଜା ହୋଇଥିଲେ । ୬ ।

ଦଶାଶ୍ୱଙ୍କର ପରମ ଧାର୍ମିକ ମହାରାଜା ମଦିରାଶ୍ୱ, ପୁତ୍ର ଥିଲେ । ତାହାଙ୍କ ମନ, ସତ୍ୟ, ତପସ୍ୟା, ଦାନ, ବେଦ ଓ ଧନୁର୍ବେଦରେ ସର୍ବଦା ରତଥାଏ । ୮ । ମଦିରାଶ୍ୱଙ୍କ ପୁତ୍ର ଦ୍ୟୁତିମାନ୍, ସେହି ମହାଭାଗ ପାର୍ଥିବ ମହାତେଜା, ମହାସତ୍ତ୍ୱ ଏବଂ ମହାବଳ ଥିଲେ । ୯ । ଦ୍ୟୁତିମାନଙ୍କର ସୁବୀର ନାମକ ପୁତ୍ର ସର୍ବଲୋକରେ ବିଖ୍ୟାତ ପରମ ଧାର୍ମିକ ରାଜା ଥିଲେ । ସେ ଦ୍ୱିତୀୟ ଦେବରାଜଙ୍କ ସଦୃଶ ଐଶ୍ୱର୍ଯ୍ୟଶାଳୀ ଓ ଧର୍ମାତ୍ମା ଥିଲେ । ୧୦ ।

ସୁବାହୁଙ୍କର ସବୁ ସଂଗ୍ରାମରେ ଦୁର୍ଜୟ ସମସ୍ତ ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ସୁଦୁର୍ଜୟ ନାମରେ ଖ୍ୟାତ ଗୋଟିଏ ପୁତ୍ର ଥିଲେ । ୧୧ । ଇନ୍ଦ୍ରବସ୍ତୁ ସେହି ସୁଦୁର୍ଜୟ ନରପାଳଙ୍କର ଅଗ୍ନି ସଦୃଶ ତେଜସ୍ୱୀ ଦୁର୍ଯ୍ୟୋଧନ ନାମକ ପୁତ୍ର ଥିଲେ, ସେ ରାଜର୍ଷିଶ୍ରେଷ୍ଠ ଓ ଜଣେ ମହାରାଜ ଥିଲେ । ୧୨ । ସଂଗ୍ରାମରେ ଅନିବର୍ତ୍ତୀ ଇନ୍ଦ୍ର ସଦୃଶ ପରାକ୍ରମଶାଳୀ ସେହି ଦୁର୍ଯ୍ୟୋଧନଙ୍କ ରାଜ୍ୟରେ ବାସବ ଉତ୍ତମରୂପେ ଜଳ ବୃଷ୍ଟି କରନ୍ତି । ୧୩ । ଏହାଙ୍କ ନଗର ଓ ଦେଶ ନାନାବିଧ ରତ୍ନ, ଧନ, ପଶୁ ଓ ଶସ୍ୟ ସମୂହରେ ପରିପୂର୍ଣ୍ଣ ଥିଲା । ସେହି ନରପାଳଙ୍କ ପ୍ରସିଦ୍ଧ ରାଜ୍ୟରେ କୌଣସି ବ୍ୟକ୍ତି କୃପଣ ଅବା ଦରିଦ୍ର ଥିଲାନାହିଁ ଏବଂ କୌଣସି ବ୍ୟକ୍ତି ବ୍ୟାଧି ପୀଡ଼ିତ ଅଥବା କୃଶାଙ୍ଗ ଥିଲା-ନାହିଁ । ୧୫ । ସମସ୍ତେ ସୁଦକ୍ଷିଣ, ପ୍ରିୟବାଦୀ, ହିଂସାଶୂନ୍ୟ, ଜିତେନ୍ଦ୍ରିୟ, ଧର୍ମପରାୟଣ, ଅନୃଶଂସ, ପରାକ୍ରମଶାଳୀ, ଶ୍ଳାଘାଶୂନ୍ୟ, ଯାଜ୍ଞିକ, ଦମଗୁଣ-ଯୁକ୍ତ, ମେଧାବୀ, ବ୍ରହ୍ମନିଷ୍ଠ, ସତ୍ୟପ୍ରତିଜ୍ଞ, ପରକୁ ଅବମାନନା ଦେବା ବିଷୟରେ ବିରତ, ଦାତା ଓ ବେଦ ବେଦାଙ୍ଗରେ ପାରଦର୍ଶୀ ଥିଲେ ।୧୭। ହେ ଭାରତ ! ପୁଣ୍ୟା, ଶିବା, ଶୀତଳଜଳା, ଦେବନଦୀ ନର୍ମଦା ସେହି ପୁରୁଷବ୍ୟାଘ୍ରଙ୍କୁ ପତିଭାବରେ ବରଣ କରିଥିଲେ । ୧୮ । ହେ ରାଜନ୍ ! ସେହି ସମୟରେ ସେହି ନଦୀଙ୍କ ଗର୍ଭରେ ଅତି ରୂପବତୀ, ରାଜୀବଲୋଚନା ସୁଦର୍ଶନା ନାମରେ ଗୋଟିଏ କନ୍ୟା ଜନ୍ମିଥିଲେ । ୧୯ । ହେ ଯୁଧିଷ୍ଠିର ! ଦୁର୍ଯ୍ୟୋଧନଙ୍କ ଦୁହିତା ଯେଉଁପରି ବରବର୍ଣ୍ଣିନୀ ଥିଲେ ଭୂତପୂର୍ବ ନାରୀ-ମାନଙ୍କ ମଧ୍ୟରେ କେହି ସେପରି ନ ଥିଲେ । ୨୦ । ସାକ୍ଷାତ୍ ଅଗ୍ନିଦେବ ସେହି ରାଜକନ୍ୟା ସୁଦର୍ଶନାଙ୍କୁ କାମନା କଲେ ଓ ବ୍ରାହ୍ମଣ ବେଶରେ ରାଜା ଦୁର୍ଯ୍ୟୋଧନଙ୍କ ନିକଟବର୍ତ୍ତୀ ହୋଇ ନିଜର ଅଭିପ୍ରାୟ ବ୍ୟକ୍ତକଲେ । ୨୧ ।

"ଏହି ବିପ୍ର ଆମ୍ଭର ଅସବର୍ଣ୍ଣ ଓ ଦରିଦ୍ର" ରାଜା ଦୁର୍ଯ୍ୟୋଧନ ଏହିକଥା ବିଚାର କରି ସେହି ବିପ୍ରଙ୍କୁ ନିଜ କନ୍ୟା ସୁଦର୍ଶନାଙ୍କୁ ପ୍ରଦାନ କରିବା ନିମିତ୍ତ ଇଚ୍ଛୁକ ହେଲେନାହିଁ । ୨୨ । ଦୁର୍ଯ୍ୟୋଧନ ପ୍ରତ୍ୟାଖ୍ୟାନ କରନ୍ତେ ଅଗ୍ନିଦେବ ଅନ୍ତରୀକ୍ଷ ବହିର୍ଗତ ହୋଇ ସ୍ୱସ୍ଥାନକୁ ପ୍ରସ୍ଥାନ କଲେ । ତତ୍ପରେ ଏହି ରାଜାଙ୍କର ହୋତାଗ୍ନି ସାଧ୍ୟ ଯଜ୍ଞରେ ଅଗ୍ନି ଅଦୃଶ୍ୟ ହେଲେ; ତହୁଁରେ ରାଜା ଅତ୍ୟନ୍ତ ଦୁଃଖିତ ହୋଇ ତତ୍ ସମୟରେ ଦ୍ୱିଜ-ମାନଙ୍କୁ ବାକ୍ୟ କହିଲେ । ୨୩ । ହେ ଦ୍ୱିଜବରବୃନ୍ଦ ! ଆମ୍ଭ ଯଜ୍ଞରେ

ପ୍ରଜ୍ୱଳିତ ନ ହେବାରୁ ଜଣାଯାଏ ଯେ କାପୁରୁଷମାନଙ୍କ ପରି ଆମ୍ଭର କିମ୍ବା ଆପଣମାନଙ୍କର ଦୁଶ୍ଚରିତର ଦୁଷ୍କୃତ ହୋଇଅଛି ।୨୪। ଆମ୍ଭର ବା ଆପଣମାନଙ୍କର ଦୁଶ୍ଚରିତ ଦୋଷରେ ଅଗ୍ନି ନିର୍ବାପିତ ହୋଇଅଛନ୍ତି, ତାହାର କାରଣ ଆପଣମାନେ ବିଶେଷରୂପେ ଅନୁସନ୍ଧାନ କରନ୍ତୁ ।୨୫। ହେ ଭରତଶ୍ରେଷ୍ଠ ! ସେହି ବିପ୍ରମାନେ ନରପତିଙ୍କ ସେହି ବଚନ ଶୁଣି ନିଷ୍ଠାପନ୍ନ ଓ ବାଗ୍‌ଯତ ହୋଇ ପାବକଙ୍କ ଶରଣାଗତ ହେଲେ । ୨୬ । ତେତେବେଳେ ଭଗବାନ୍ ହବ୍ୟବାହନ ଶରତ୍ କାଳର ସୂର୍ଯ୍ୟ ସଦୃଶ ତେଜ ପୂର୍ଣ୍ଣ କଳେବର ଧାରଣ ପୂର୍ବକ ସେମାନଙ୍କୁ ଦେଖାଦେଲେ । ୨୭ । ତଦନନ୍ତର ମହାତ୍ମା ଦହନ ସେହି ଦ୍ୱିଜବରମାନଙ୍କୁ କହିଲେ, "ହେ ଦ୍ୱିଜବରଗଣ ! ଆମ୍ଭେ ଆପଣାନିମିତ୍ତ ଦୁର୍ଯ୍ୟୋଧନ ସୁତାଙ୍କୁ ଅଭିଳାଷ କରିଅଛୁଁ" । ୨୮ । ବ୍ରାହ୍ମଣମାନେ ବିସ୍ମିତ ହୋଇ ପରଦିନ ପ୍ରାତଃକାଳରେ ଗାତ୍ରୋତ୍ଥାନ ପୂର୍ବକ ଚିତ୍ରଭାନୁ ଯାହା କହିଥିଲେ, ତାହା ସେହି ରାଜାଙ୍କୁ ଜଣାଇଲେ । ୨୯ ।

ତତ୍ପରେ ବୁଦ୍ଧିମାନ୍ ରାଜା ସେହି ଦୁର୍ଯ୍ୟୋଧନ ବ୍ରହ୍ମବାଦୀ ବ୍ରାହ୍ମଣମାନଙ୍କ ସେହି ବଚନ ଶୁଣି ପରମହର୍ଷପ୍ରାପ୍ତ ହୋଇ ଅଗ୍ନିଦେବଙ୍କୁ ନିଜକନ୍ୟା ପ୍ରଦାନ କରିବେ ବୋଲି କହିଲେ । ୩୦ । ଏବଂ ସେ ଭଗବାନ୍ ବିଭାବସୁଙ୍କୁ ଶୁଳ୍କ ପ୍ରାର୍ଥନା ପୂର୍ବକ କହିଲେ, ହେ ଚିତ୍ରଭାନୋ ! ଆପଣ ପ୍ରତିଦିନ ଆମ୍ଭ ସନ୍ନିଧିରେ ରହିବେ । ୩୧ । ତତ୍ପରେ ଭଗବାନ୍ ଅଗ୍ନିଦେବ ସେହି ପାର୍ଥିବଙ୍କୁ "ଏବମସ୍ତୁ" ବୋଲି କହିଲେ; ତେତେବେଳେ ରାଜା ଦୁର୍ଯ୍ୟୋଧନ ସ୍ୱୀୟକନ୍ୟା ସୁଦର୍ଶନାଙ୍କୁ ଆହତ ବସନା ଓ ସମ୍ୟକରୂପେ ଅଳଂକୃତା କରି ମହାତ୍ମା ପାବକଙ୍କୁ ପ୍ରଦାନ କଲେ । ଅଗ୍ନିଦେବ ମଧ୍ୟ ସେହି ରାଜକନ୍ୟା ସୁଦର୍ଶନାଙ୍କୁ ପଞ୍ଚରେ ବେଦବିହିତ ବସୁଧାରା ସଦୃଶ ପ୍ରତିଗ୍ରହ କଲେ ଓ ତାଙ୍କର ରୂପଶୀଳ କୁଳ ବପୁ ଓ ଶୋଭାରେ ପ୍ରୀତିଯୁକ୍ତ ହୋଇଥିଲେ ଓ ଏହାଙ୍କର ପୁତ୍ରୋତ୍ପାଦନ ବିଷୟରେ ମନୋଯୋଗୀ ହେଲେ । ଭଗବାନ୍ ଅଗ୍ନି ସେହିଦିନଠାରୁ ଆଜପର୍ଯ୍ୟନ୍ତ ମାହିଷ୍ମତୀପୁରରେ ଥିବାର ସହଦେବ ଦକ୍ଷିଣ ଦିଗ ବିଜୟ ସମୟରେ ସେଠାରେ ତାହାଙ୍କୁ ଦେଖିଅଛନ୍ତି । ୩୨ । ସେହି ସୁଦର୍ଶନାଙ୍କ ଗର୍ଭରେ ସୁଦର୍ଶନ ନାମକ ଅଗ୍ନିଙ୍କର ଗୋଟିଏ ପୁତ୍ର ଜାତ ହୋଇଥିଲେ । ୩୬ ।ସୁଦର୍ଶନ ରୂପରେ ପୂର୍ଣ୍ଣଚନ୍ଦ୍ର ସଦୃଶ ଥିଲେ, ସେହି ଶିଶୁ "ସର୍ବ୍ବଂ ଖଳ୍ୱିଦଂ ସନାତନ ପରଂବ୍ରହ୍ମ" ଅର୍ଥାତ୍ ସମସ୍ତ ବେଦ ଅଧ୍ୟୟନ କରିଥିଲେ ।୩୭।

ଏଥିଉତ୍ତରେ ନୃଗଙ୍କ ପିତାମହ ଓଘବାନ୍ ନାମକ ଜଣେ ରାଜା ଥିଲେ, ତାହାଙ୍କର ଓଘବତୀ ନାମରେ ଗୋଟିଏ କନ୍ୟା ଓ ଓଘରଥ ନାମରେ ଗୋଟିଏ ପୁତ୍ର ଜନ୍ମିଥିଲେ । ୩୮ । ଓଘବାନ୍ ନୃପ ସ୍ୱୟଂ ଦେବରୂପିଣୀ ସେହି ଓଘବତୀ କନ୍ୟାଙ୍କୁ ବିଦ୍ୱାନ୍ ସୁଦର୍ଶନଙ୍କୁ ଭାର୍ଯ୍ୟା ନିମିତ୍ତ ଦାନ କଲେ । ୩୯ । ହେ ରାଜନ୍ ! ଗୃହସ୍ଥାଶ୍ରମରେ ରତ ସେହି ସୁଦର୍ଶନ ସେହି ଓଘବତୀଙ୍କ ସହିତ କୁରୁକ୍ଷେତ୍ରରେ ବାସ କରିଥିଲେ । ହେ ପ୍ରଭୋ ! ହେ ବିଶାଂପତେ ! ତେଜସ୍ୱୀ ବୁଦ୍ଧିମାନ୍ ସେହି ଗୃହସ୍ଥ ସୁଦର୍ଶନ "ମୃତ୍ୟୁକୁ ପରାଜୟ କରିବୁଁ" ଏହିପରି ପ୍ରତିଜ୍ଞା କରିଥିଲେ । ୪୧ । ହେ ରାଜନ୍ ! ଏଥିଉତ୍ତରେ ସେହି ଅଗ୍ନିପୁତ୍ର ସୁଦର୍ଶନ ନିଜ ଭାର୍ଯ୍ୟା ଓଘବତୀଙ୍କୁ କହିଥିଲେ, ତୁମ୍ଭେ କଦାପି ଅତିଥିଙ୍କର ପ୍ରତିକୂଳା ହେବନାହିଁ । ଯେଉଁ ଯେଉଁ କାର୍ଯ୍ୟ ଦ୍ୱାରା ଅତିଥି ସନ୍ତୁଷ୍ଟ ହେବେ, ତାହାସବୁ ତୁମ୍ଭେ କରୁଥିବ ଓ ଶରୀର ସମର୍ପଣ ବିଷୟରେ ମଧ୍ୟ କୌଣସି ବିଚାରଣା କରିବନାହିଁ । ୪୩ । ହେ ସୁଶ୍ରୋଣି ! ଅତିଥି ପୂଜା ଅପେକ୍ଷା ଗୃହସ୍ଥର ଅନ୍ୟ କିଛି ଉତ୍କୃଷ୍ଟ ଧର୍ମ ନାହିଁ । ଆମ୍ଭେ ଏହି ପରମ ଅତିଥି ସତ୍କାର ବ୍ରତକୁ ସର୍ବଦା ହୃଦୟରେ ରଖିଅଛୁଁ । ୪୪ । ହେ ଶୋଭନେ ବାମୋରୁ ! ଆମ୍ଭ ବାକ୍ୟକୁ ତୁମ୍ଭେ ଯଦି ହିତକାରକ ବୋଲି ଜାଣ, ତେବେ ଅବିଚଳିତା ହୋଇ ସର୍ବଦା ତାହା ହୃଦୟରେ ଧାରଣକର । ୪୫ । ହେ କଲ୍ୟାଣି ! ଅନଘେ ! ତୁମ୍ଭେ ଆମ୍ଭଙ୍କୁ ଯଦି ହିତକାରକ ବୋଲି ଜାଣ, ତେବେ ଆମ୍ଭେ ତୁମ୍ଭ ନିକଟରେ ଥାଉଁ ଅଥବା ନ ଥାଉଁ ଅତିଥିଙ୍କୁ ଅବମାନନା କରିବନାହିଁ । ୪୬ ।

ତେତେବେଳେ ଓଘବତୀ ମସ୍ତକରେ କୃତାଞ୍ଜଳି ହୋଇ ତାହାଙ୍କୁ କହିଲେ, ହେ ନାଥ ! ଆମ୍ଭେ ତୁମ୍ଭର ବଚନ ପ୍ରତିପାଳନ କରିବୁଁ । ୪୭ । ହେ ରାଜନ୍ ! ମୃତ୍ୟୁ ସୁଦର୍ଶନଙ୍କୁ ଜୟକରିବା ଇଚ୍ଛାରେ ଗାର୍ହସ୍ଥ୍ୟ ସମୟରେ ଇଧ୍ମାହରଣ କାଳରେ ଛିଦ୍ରାନ୍ୱେଷୀ ହୋଇ ସର୍ବଦା ପରୋକ୍ଷରେ ତାହାଙ୍କ ଗୃହରେ ପ୍ରବେଶ କରୁଥିଲେ । ୪୮ । ସେହି ଅଗ୍ନିପୁତ୍ର ସୁଦର୍ଶନ କାଷ୍ଠ ଆହରଣ ନିମିତ୍ତ ନିର୍ଗତ ହେବାରୁ ତେତେବେଳେ ଜଣେ ଶ୍ରୀମାନ୍ ଅତିଥି ବ୍ରାହ୍ମଣ ଓଘବତୀଙ୍କୁ କହିଲେ । ୪୯ । ହେ ବରବର୍ଣ୍ଣିନି ! ଆମ୍ଭେ ଆଜି ତୁମ୍ଭଦ୍ୱାରା ଅତିଥି ପୂଜା ପାଇବାକୁ ଇଚ୍ଛା କରୁଅଛୁଁ । ତୁମ୍ଭେ ଯଦି ଗୃହସ୍ଥା-ଶ୍ରମ ସମ୍ମତ ଧର୍ମକୁ ପ୍ରମାଣ ଅର୍ଥାତ୍ ହିତବୋଲି ଜାଣିକର, ତେବେ ଆମ୍ଭଙ୍କୁ

ସେବାକର । ୫୦ । ହେ ବଶାଂପତେ ! ସେହି ଅତଥି ବପ୍ର ଏହିକଥା କହିବାରୁ ଯଶସ୍ୱିନୀ ରାଜପୁତ୍ରୀ ଓଘବତୀ ବେଦୋକ୍ତ ବଧି ଅନୁସାରେ ତାହାଙ୍କୁ ଅତଥିରୂପେ ପ୍ରତଗ୍ରହ କଲେ । ୫୧ । ଏବଂ ସେହି ଦ୍ୱିଜଙ୍କୁ ଆସନ ଓ ପାଦ୍ୟ ପ୍ରଭୃତ ଦାନ କର କହିଲେ, ହେ ଭଗବନ୍ ! ଆପଣ କେଉଁ ନମିତ୍ତ ଆଗତ ହୋଇଅଛନ୍ତି ? ଆପଣଙ୍କୁ କେଉଁ ଦ୍ରବ୍ୟ ଦେବ ? ୫୨ । ତପୂରେ ବପ୍ର ସେହି ସୁଲୋଚନା ରାଜପୁତ୍ରୀଙ୍କୁ କହିଲେ, ହେ କଲ୍ୟାଣି ! ତୁମ୍ଭେ ଆମ୍ଭ ନମିତ୍ତ ନିଃଶଙ୍କ ଚତ୍ତରେ ଗାର୍ହସ୍ଥ୍ୟଧର୍ମକୁ ଆଚରଣ କର ।୫୩। ହେ ରାଜ୍ଞି ! ଯଦ ତୁମ୍ଭେ ଗୃହସ୍ଥାଶ୍ରମ ଧର୍ମକୁ ପ୍ରମାଣ ଅର୍ଥାତ୍ ହିତଜ୍ଞାପକ ବୋଲ ଜାଣ, ତେବେ ଶରୀର ପ୍ରଦାନ ଦ୍ୱାରା ଆମ୍ଭର ପ୍ରିୟକାର୍ଯ୍ୟ କର ।୫୪। ସେହି ନୃପକନ୍ୟା ତାହାଙ୍କୁ ନାନାବଧ ଇପସିତ ବଚନରେ ପ୍ରଲୋଭନ ଦେଲେସୁଦ୍ଧା ସେହି ଦ୍ୱିଜ ତପାପୃ ଶରୀର ଦାନ ଅପେକ୍ଷା ଅନ୍ୟ ବଷୟକୁ କାମନା କଲେନାହିଁ । ୫୫ । ସେହି ରାଜପୁତ୍ରୀ ପ୍ରଥମରେ ସ୍ୱାମୀଙ୍କ ବାକ୍ୟ ସ୍ମରଣପୂର୍ବକ ଲଜ୍ଜିତା ହୋଇ ସେହି ଦ୍ୱିଜବରଙ୍କୁ ତାହା ହେଉବୋଲ କହିଲେ । ୫୬ ।

ଗୃହସ୍ଥାଶ୍ରମାକାଙ୍‌କ୍ଷୀ ସ୍ୱାମୀଙ୍କ ବଚନ ସ୍ମରଣ କର ସେହି ରାଜକନ୍ୟା ଓ ବପ୍ରର୍ଷି ଏକାନ୍ତ ସ୍ଥାନରେ ପ୍ରବଷ୍ଟ ହେଲେ । ୫୭ । ତତ୍‌ପରେ ପାବକ ପୁତ୍ର ରୌଦ୍ରରୂପୀ ମୃତ୍ୟୁଦ୍ୱାରା ବନ୍ଧୁପ୍ରାପ୍ତ ଅନ୍ୱିତ ହୋଇ କାଷ୍ଠ ଆହରଣ କର ଆଗମନ କଲେ । ସେ ସ୍ୱକୀୟ ଆଶ୍ରମକୁ ଆସି ସ୍ୱକୀୟ ପତ୍ନୀ ଓଘବତୀଙ୍କୁ ବାରମ୍ବାର କହିଲେ ହେ ପ୍ରିୟେ ! ତୁମ୍ଭେ କେଉଁଠାରେ ଅଛ ଓ କେଉଁ ସ୍ଥାନକୁ ଯାଇଅଛ ? ଏଥିଉତ୍ତରରେ ସେହି ସୁଦର୍ଶନ ପୁନଶ୍ଚ କହିଲେ ଆମ୍ଭର ପତିବ୍ରତା ସତ୍ୟଶୀଳା, ସରଳହୃଦୟା ସେହି ସାଧ୍ୱୀ ଓଘବତୀ କେଉଁଠାରେ ଅଛନ୍ତି ? ତାହାଙ୍କ ଅପେକ୍ଷା ଆମ୍ଭର କିଛିମାତ୍ର ଉତ୍କୃଷ୍ଟ ପଦାର୍ଥ ନାହିଁ । ସେ ପୂର୍ବପର ମନ୍ଦହାସ ପ୍ରକାଶପୂର୍ବକ ଆଜ କେଉଁହେତୁରୁ ପ୍ରତ୍ୟୁଦ୍‌ଗମନ କରୁନାହାନ୍ତି ? ତେତେବେଳେ ପତିବ୍ରତା ସତୀ ଓଘବତୀ ବପ୍ରଙ୍କ ଦୁଇ ହସ୍ତ ଦ୍ୱାର ସ୍ପୃଷ୍ଟ ହୋଇଥିବାରୁ ସେ ଆପଣାକୁ ଉଚ୍ଛିଷ୍ଟ ମଣି ଲଜ୍ଜିତା ଓ ତୁଷ୍ଣୀଭୂତା ହୋଇ ସ୍ୱାମୀଙ୍କୁ କିଛି ପ୍ରତ୍ୟୁତ୍ତର ପ୍ରଦାନ କଲେନାହିଁ । କନ୍ତୁ କୁଟୀରସ୍ଥିତ ବପ୍ର ସୁଦର୍ଶନଙ୍କୁ ପ୍ରତ୍ୟୁତ୍ତରରେ କହିଲେ ହେ ପାବକ ପୁତ୍ର ! ତୁମ୍ଭେ ଜାଣ ଆମ୍ଭେ ଜଣେ ବ୍ରାହ୍ମଣ ତୁମ୍ଭ ଗୃହରେ ଅତଥି ଭାବରେ ଉପସ୍ଥିତ

ହୋଇଅଛୁ । ହେ ସତ୍ତମ ! ତୁମ୍ଭର ଶୁଶ୍ରୂଷା ଏହି ଗୃହିଣୀ ବହୁପ୍ରକାର ଅତିଥି ସତ୍କାର ଦ୍ୱାରା ଆମ୍ଭଙ୍କୁ ଅର୍ଚ୍ଚନା କରୁଅଛନ୍ତି, ହେ ବ୍ରହ୍ମନ୍ ! ଏତେକେ ତେବେ ଆପଣ ଏହାଙ୍କୁ ଅନୁରୂପ ଅର୍ଥାତ ସ୍ତ୍ରୀ ଭୂଷଣର ଅନୁଗୁଣ କର୍ତ୍ତବ୍ୟ ବିଧାନ କରିବା ଉଚିତ ।

ଅଗ୍ନିପୁତ୍ର ଯେତେବେଳେ କାଷ୍ଠ ଆହରଣ ପୂର୍ବକ ଗୃହକୁ ଆସିଥିଲେ, ମୃତ୍ୟୁଦେବ ସେତେବେଳେ ତାହାଙ୍କ ପଶ୍ଚାତ୍ ପଶ୍ଚାତ୍ ବନ୍ଧୁଜନ ପରି ଆଗମନ କରିଥିଲେ; "ଏ ହୀନ ପ୍ରତିଜ୍ଞ ହୋଇ ଅତିଥିବ୍ରତ ତ୍ୟାଗ କଲେ ଆମ୍ଭେ ଏହାଙ୍କୁ ସଂହାର କରିବା" ସେ ଏହିକଥା ବର୍ଣ୍ଣନ କରି ହସ୍ତରେ ଲୌହ ମୁଦ୍‌ଗର ଧରି ଅନୁଗମନ କରିଥିଲେ । ୬୭ । ସୁଦର୍ଶନ ମନ, କର୍ମ, ଚକ୍ଷୁ ଓ ବଚନ ଦ୍ୱାରା କ୍ରୋଧ ଓ ହିଂସାକୁ ପରିତ୍ୟାଗ ପୂର୍ବକ ହାସ୍ୟମୁଖରେ କହିଲେ (୬୮) ହେ ବିପ୍ରବର ! ଆପଣଙ୍କର ସୁରତହେତୁ, ଆମ୍ଭେ ଏଣୁ ପରମ ପ୍ରୀତହେବୁଁ । କାରଣ ଉପସ୍ଥିତ ଅତିଥିଙ୍କୁ ଅର୍ଚ୍ଚନା କରିବାର ଗୃହସ୍ଥର ପ୍ରଧାନ ଧର୍ମ । ୬୯ । ଯେଉଁ ଗୃହସ୍ଥର ଗୃହରୁ ଅତିଥି ପୂଜିତ ହୋଇ ଗମନ କରନ୍ତି, ତାହାଙ୍କର ସେହି ଅତିଥି ପୂଜା ଅପେକ୍ଷା ଆଉ ଉତ୍କୃଷ୍ଟ ଧର୍ମ ନାହିଁ, ଏହିକଥା ପଣ୍ଡିତମାନେ କହନ୍ତି । ୭୦ । ଆମ୍ଭର ପ୍ରାଣ, ପତ୍ନୀ ଓ ଯେଉଁ କିଛି ଅନ୍ୟପ୍ରକାର ଧନ ଅଛି, ତାହାସବୁ ଅତିଥିମାନଙ୍କୁ ଦେବୁ ଆମ୍ଭେ ଏହି ପ୍ରତିଜ୍ଞା କରିଅଛୁଁ । ୭୧ । ହେ ବିପ୍ର ! ଆମ୍ଭେ ଯେଉଁ ବାକ୍ୟ କହିଲୁଁ ତହିଁରେ କିଛି ସନ୍ଦେହ ନାହିଁ, ଆମ୍ଭେ ସେହି ସତ୍ୟଦ୍ୱାରା ସ୍ୱୟଂ ଆତ୍ମାଲାଭ କରିବୁ ଅର୍ଥାତ୍ ମୃତ୍ୟୁ ଜୟ କରିବୁଁ । ୭୨ । ହେ ଧାର୍ମିକ ଶ୍ରେଷ୍ଠ ! ପୃଥିବୀ, ବାୟୁ, ଆକାଶ, ଜଳ, ଜ୍ୟୋତି, ବୁଦ୍ଧି, ଆତ୍ମା, ମନ, କାଳ ଓ ଦିଗ ଏହିମାନେ ଦେହିକୁଳର ଦେହରେ ସଂଶ୍ରିତ ହୋଇ ପ୍ରତିଦିନ ସୁକୃତ ଓ ଦୁଷ୍କୃତକର୍ମକୁ ଦେଖୁଅଛନ୍ତି । ୭୪ । ଆଜି ଆମ୍ଭଦ୍ୱାରା କଥିତ ଏହି ବଚନ ଯଦି ସତ୍ୟ ଅଟେ, ତେବେ ସେହି ସତ୍ୟଦ୍ୱାରା ଦେବଗଣ ଆମ୍ଭଙ୍କୁ ପାଳନ କରନ୍ତୁ ଅଥବା ଦଗ୍ଧ କରନ୍ତୁ । ୭୫ । "ତୁମ୍ଭେ ଯାହା କହିଲ, ତାହା ସତ୍ୟ, କଦାପି ମିଥ୍ୟା ନୁହେଁ ।" ହେ ଭାରତ ! ସବୁ ଦିଗମାନଙ୍କରେ ଏହି ନାଦ ବାରମ୍ବାର ସମ୍ମୂର୍ତ୍ତିରୂପେ ଉତ୍ଥିତ ହେଲା । ୭୬ । ତଦନନ୍ତର ସେହି ବ୍ରାହ୍ମଣ ସ୍ୱକୀୟ ଶରୀର ପ୍ରଭାବରେ ଭୂଲୋକ ଓ ଦ୍ୟୁଲୋକକୁ ପରିବ୍ୟାପ୍ତ କରି ସମୁତ୍ଥିତ ବାୟୁସଦୃଶ ସେହି କୁଟୀରରୁ ନିଷ୍କ୍ରାନ୍ତ ହେଲେ ।

। ୭୭ । ଏବଂ ସେହି ସପ୍ତ ଉଦାତ୍ତ ପ୍ରଭୃତି ଧର୍ମଯୁକ୍ତ ସ୍ୱରରେ ତ୍ରିଭୁବନକୁ ପ୍ରତିଧ୍ୱନିତ କରି ଏହି ଧର୍ମଜ୍ଞ ଗୃହସ୍ଥଙ୍କୁ ପୂର୍ବାନାମାନୁସାରେ ସମ୍ବୋଧନ ପୂର୍ବକ କହିଲେ । ୭୮ । ହେ ସୁଦର୍ଶନ ! ତୁମ୍ଭର ମଙ୍ଗଳ ହେଉ, ଆମ୍ଭେ ସ୍ୱୟଂ ଧର୍ମଦେବ, ତୁମ୍ଭ ସତ୍ୟ ଜାଣିବା ନିମିତ୍ତ ଆସିଥିଲୁଁ, ହେ ଅନଘ ! ଏବେ ତୁମ୍ଭର ସତ୍ୟ ନିଷ୍ଠାକୁ ଜାଣିବାରୁ ଆମ୍ଭର ତୁମ୍ଭଠାରେ ପରମ ପ୍ରୀତି ଜାତ ହୋଇଅଛି । ୭୯ ।

ସର୍ବଦା ତୁମ୍ଭର ଛିଦ୍ରାନ୍ୱେଷୀ ଯେଉଁ ଏହି ମୃତ୍ୟୁ ତୁମ୍ଭର ଅନୁଗାମୀ ହୋଇଅଛନ୍ତି; ତୁମ୍ଭେ ଏହାଙ୍କୁ ପରାଜୟ କଲ ଏବଂ ଧୈର୍ଯ୍ୟ ଦ୍ୱାରା ବଶୀଭୂତ କଲ । ୮୦ । ହେ ପୁରୁଷୋତ୍ତମ ! ତୁମ୍ଭର ଏହି ପତିବ୍ରତା ସାଧ୍ୱୀଙ୍କୁ ଦୃଷ୍ଟିପାତ କରିବାକୁ ତ୍ରୈଲୋକ୍ୟରେ କୌଣସି ଲୋକର ଶକ୍ତି ନାହିଁ । ୮୧ ।

ଏ ତୁମ୍ଭର ଗୁଣରେ ଓ ସ୍ୱକୀୟ ପତିବ୍ରତ୍ୟ ଦ୍ୱାରା ଅଧୃଷ୍ୟା ଅଟନ୍ତି ଅର୍ଥାତ୍ କେହି ଏହାଙ୍କର ବ୍ରତଭଙ୍ଗ କରି ପାରିବେ ନାହିଁ । ଏ ଯାହା କହିବେ ତାହା କଦାପି ଅନ୍ୟଥା ହେବ ନାହିଁ । ୮୨ । ଏହି ବ୍ରହ୍ମବାଦିନୀ ସ୍ତ୍ରୀ ସ୍ୱୀୟ ତପସ୍ୟା ଦ୍ୱାରା ଲୋକମାନଙ୍କୁ ପବିତ୍ର କରିବା ନିମିତ୍ତ ନଦୀଶ୍ରେଷ୍ଠା ହେବେ । ୮୩ । ଏ ଯୋଗସିଦ୍ଧା ଅଟନ୍ତି; ଏହି ହେତୁରୁ ତୁମ୍ଭେ ଏହାଙ୍କ ବଶରେ ରହିବ ଓ ଏହି ମହାଭାଗା ଅର୍ଦ୍ଧ ଶରୀର ଦ୍ୱାରା ଓଘବତୀ ନଦୀ ରୂପେ ପରିଣତା ହେବେ ଓ ଅର୍ଦ୍ଧ ଶରୀର ଦ୍ୱାରା ତୁମ୍ଭର ଅନୁଗାମିନୀ ହେବେ । ୮୪ । ତପସ୍ୟା ଦ୍ୱାରା ଅର୍ଜିତ ଯେଉଁ ଲୋକମାନଙ୍କୁ ଗମନ କଲେ ମନୁଷ୍ୟ ପୁନଶ୍ଚ ପ୍ରତିନିବୃତ୍ତ ହୁଅନ୍ତି ନାହିଁ, ତୁମ୍ଭେ ଏହି ଦେହରେ ଏହାଙ୍କ ସହିତ ସେହି ଶାଶ୍ୱତ ସନାତନ ଲୋକମାନଙ୍କୁ ଗମନ କରିବ । ୮୫ । ତୁମ୍ଭେ ସ୍ଥିରମନା ହୋଇ ଗାର୍ହସ୍ଥ୍ୟଧର୍ମ ପ୍ରଭାବରେ କାମ, କ୍ରୋଧ ଓ ମୃତ୍ୟୁଙ୍କୁ ଜୟ କଲ, ଏହି ଦେହରେ ତୁମ୍ଭେ ସ୍ୱବୀର୍ଯ୍ୟ ପ୍ରଭାବରୁ ସ୍ଥୂଳ ପଞ୍ଚଭୂତମାନଙ୍କୁ ଅତିକ୍ରମ କରି ସୂକ୍ଷ୍ମ ଭୂତମୟ ଲୋକମାନଙ୍କୁ ଗମନ କରିବ ଓ ଉତ୍ତମ ଐଶ୍ୱର୍ଯ୍ୟ ପ୍ରାପ୍ତ ହେବ । ୮୬ । ହେ ରାଜନ୍ ! କେବଳ ତୁମ୍ଭ ଶୁଶ୍ରୂଷା ଦ୍ୱାରା ଏହି ରାଜପୁତ୍ରୀ ସ୍ନେହ, ରାଗ, ତନ୍ଦ୍ରା, ମୋହ ଓ ଦ୍ରୋହକୁ ଜୟ କରିଅଛନ୍ତି । । ୮୮ । ଭୀଷ୍ମ କହିଲେ, ଭଗବାନ୍ ଇନ୍ଦ୍ର ସହସ୍ର ଶୁକ୍ଳ ଅଶ୍ୱ ସଂଯୋଜିତ ଉତ୍ତମ ରଥରେ ସୁଦର୍ଶନ ଓ ତଦୀୟ ପତ୍ନୀଙ୍କୁ ଆରୋପିତ କରାଇ ଦେବ-

ଲୋକକୁ ପ୍ରସ୍ଥାନ କଲେ ।୮୯। ହେ ନରବ୍ୟାଘ୍ର ! ସୁଦର୍ଶନ ଅତିଥି ସତ୍କାର ଦ୍ୱାରା ଗୃହସ୍ଥ ଧର୍ମ ପ୍ରତିପାଳନ କରି ମୃତ୍ୟୁ, ଆତ୍ମା, ଲୋକସମୂହ, ପଞ୍ଚଭୂତ, ବୁଦ୍ଧି, ମନ, କାଳ, ଆକାଶ, କାମ ଓ କ୍ରୋଧକୁ ଜୟ କରିଥିଲେ । ଅତଏବ ତୁମ୍ଭେ ମନରେ ଏହିକଥା ବିଚାର କର ଯେ ଗୃହସ୍ଥ ବ୍ୟକ୍ତିର ଅତିଥି ପୂଜା ବ୍ୟତିରେକେ କିଛି ଉତ୍କୃଷ୍ଟ ନାହିଁ ।୯୧। ଅତିଥି ପୂଜିତ ହୋଇ ଯଦି ମନରେ ଗୃହସ୍ଥର ଶୁଭ ବିଷୟ ଧ୍ୟାନ କରନ୍ତି, ତେବେ ତାହାକୁ ଶତ ଯଜ୍ଞ ମଧ୍ୟ ସମାନ ହୁଏନାହିଁ, ଏହିକଥା ପଣ୍ଡିତମାନେ କହନ୍ତି ।୯୨। ଯେଉଁ ଗୃହସ୍ଥ ସଚ୍ଚରିତ୍ର ଉପଯୁକ୍ତ ଉପସ୍ଥିତ ଅତିଥିଙ୍କୁ ପ୍ରାପ୍ତହୋଇ ଯଥୋଚିତ ସତ୍କାର କରନ୍ତିନାହିଁ, ତାହାଙ୍କୁ ସେହି ଅତିଥି ଦୁଷ୍କୃତ ପ୍ରଦାନ ପୂର୍ବକ ସୁକୃତ ଗ୍ରହଣ କରି ଚାଲିଯାଆନ୍ତି ।୯୩। ହେ ପୁତ୍ର ! ପୂର୍ବକାଳରେ ଗୃହସ୍ଥ ଯେଉଁପରି ମୃତ୍ୟୁଙ୍କୁ ଜୟ କରିଥିଲେ, ଆମ୍ଭେ ତୁମ୍ଭଙ୍କୁ ସେହି ଉତ୍ତମ ଆଖ୍ୟାନ କହିଲୁଁ ।୯୪। ଏହି ଉତ୍ତମ ଧନ୍ୟ ଆଖ୍ୟାନ ଆୟୁଷ୍କର, ଯଶସ୍କର ଓ ସର୍ବପାପ ବିନାଶକ ଅଟେ, ଅତଏବ ସମ୍ପତ୍ତି ଲାଭାର୍ଥୀ ବ୍ୟକ୍ତି ଏହାକୁ ହୃଦୟଙ୍ଗମ କରିବେ ।୯୫। ହେ ଭାରତ ! ଯେଉଁ ବିଦ୍ୱାନ ବ୍ୟକ୍ତି ଏହି ସୁଦର୍ଶନ ଚରିତକୁ ପ୍ରତିଦିନ ପାଠକରିବେ ସେ ପବିତ୍ର ଲୋକମାନଙ୍କୁ ପ୍ରାପ୍ତ ହେବେ ।୯୬।

ସୁଦର୍ଶନୋପାଖ୍ୟାନ ଦ୍ୱିତୀୟାଧ୍ୟାୟ ସମାପ୍ତ ।୨।



## ତୃତୀୟ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ନରାଧିପ ମହାରାଜା ପିତାମହ ! କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରମାନଙ୍କର ବ୍ରାହ୍ମଣ୍ୟ ଯଦି ଦୁଷ୍ପ୍ରାପ୍ୟ ଅଟେ, ଅର୍ଥାତ୍ ସେମାନଙ୍କର ବ୍ରାହ୍ମଣତ୍ୱ ଲାଭ କରିବାକୁ ଯଦି ଅଧିକାର ନାହିଁ, ତେବେ କ୍ଷତ୍ରିୟ କୁଳୋଦ୍ଭବ ମହାତ୍ମା ବିଶ୍ୱାମିତ୍ର କେଉଁପରି ବ୍ରାହ୍ମଣ୍ୟ ଲାଭକଲେ, ତାହା ଶୁଣିବାକୁ ଆମ୍ଭେ ଇଚ୍ଛା କରୁଅଛୁଁ । ହେ ନରଶ୍ରେଷ୍ଠ ! ଧର୍ମାତ୍ମନ୍ ! ଆପଣ ତାହା ଯଥାର୍ଥରୂପେ ଆମ୍ଭଙ୍କୁ କହିବାହେଉନ୍ତୁ ।୨। ସେହି ଅମିତ

ପରାକ୍ରମ ବିଶ୍ୱାମିତ୍ର ତପସ୍ୟା ବଳରେ ମହାତ୍ମା ବଶିଷ୍ଠଙ୍କ ଶତପୁତ୍ରଙ୍କୁ ଏକାବେଳକେ ସଂହାର କରିଥିଲେ । ୩ । ଏବଂ କ୍ରୋଧାବିଷ୍ଟ ଶରୀର ଦ୍ୱାରା କାଳାନ୍ତକ ସଦୃଶ ଉଗ୍ରତେଜା ଅସଂଖ୍ୟ ଯାତୁଧାନ ରାକ୍ଷସମାନଙ୍କର ସୃଷ୍ଟି କରିଥିଲେ । ୪ । ଏହି ନରଲୋକରେ ବିଦ୍ୱାନ ବ୍ରାହ୍ମଣଗଣ ତାହାଙ୍କୁ ସ୍ତବ କରୁଥିଲେ, ସେ ଶତ ବ୍ରହ୍ମର୍ଷି ସଙ୍କୁଳ ଉତ୍କୃଷ୍ଟ କୁଶିକ ବଂଶର ସ୍ଥାପନକର୍ତ୍ତା ଅଟନ୍ତି । ୫ । ଋଚୀକଙ୍କ ପୁତ୍ର ମହାତପା ଶୁନଃଶେଫ, ମହାରାଜା ଅମ୍ବରୀଷଙ୍କ ଯଜ୍ଞରେ ପଶୁ ସଦୃଶ ବଧରୂପେ ପରିଗଣିତ ହେବାରୁ ଏହି ମହାତ୍ମା ତାହାଙ୍କୁ ମୁକ୍ତ କରିଥିଲେ । ୬ । ମହାରାଜା ହରିଶ୍ଚନ୍ଦ୍ର ସ୍ୱକୀୟ ତେଜରେ ଯଜ୍ଞରେ ଦେବଗଣଙ୍କୁ ପରିତୋଷ କରି ବୁଦ୍ଧିମାନ୍ ବିଶ୍ୱାମିତ୍ରଙ୍କର ପୁତ୍ରତ୍ୱ ପ୍ରାପ୍ତ ହୋଇଥିଲେ । ୭ ।

ପଞ୍ଚାଶତ୍ ପୁତ୍ର ଜ୍ୟେଷ୍ଠ ଦେବରାତଙ୍କୁ ନମସ୍କାର ନ କରିବାରୁ ତାହାଙ୍କ ଅଭିଶାପରେ ଚଣ୍ଡାଳତ୍ୱକୁ ପ୍ରାପ୍ତ ହୋଇଥିଲେ । ଇକ୍ଷ୍ୱାକୁ କୁଳୋ-ଦ୍ଭବ ମହାରାଜ ତ୍ରିଶଙ୍କୁ ଗୁରୁ କର୍ତ୍ତୃକ ଅଭିଶପ୍ତ ଓ ବନ୍ଧୁବାନ୍ଧବଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ଦକ୍ଷିଣ ଦିଗ ଅବଲମ୍ବନ ପୂର୍ବକ ଅଧୋମୁଖରେ ଅବସ୍ଥାନ କଲାରୁ ଏହି କୁଶିକ ବଂଶାବତଂସ ମହାନୁଭବ କେବଳ ତାହାଙ୍କୁ ସ୍ୱର୍ଗାରୂଢ଼ କଲେ । ବ୍ରହ୍ମର୍ଷି ଦେବର୍ଷି ଓ ଅମରଗଣ ନିଷେବିତ ପବିତ୍ର କୌଶିକୀ ନଦୀ ଏହାଙ୍କ ତୀର୍ଥ ବୋଲି ବିଖ୍ୟାତ । ୧୦ । ପଞ୍ଚବଳସଂଯୁକ୍ତା ରମ୍ଭାନାମ୍ନୀ ଅପ୍ସରା ଏହାଙ୍କ ତପସ୍ୟା ବିଘ୍ନ କରିବାରୁ ଏତଦୀୟ ଶାପ ପ୍ରଭାବରେ ଶିଳାମୟୀ ହୋଇଥିଲେ । ୧୧ । ପୂର୍ବକାଳରେ ଶ୍ରୀମାନ୍ ବଶିଷ୍ଠ ଏହାଙ୍କ ଭୟହେତୁରୁ ଆପଣାକୁ ପାଶବଦ୍ଧ କରି ଓ ଜଳମଗ୍ନ ହୋଇ ତହିଁରୁ ପାଶ ବିମୋଚନ ପୂର୍ବକ ପୁନଶ୍ଚ ଉତ୍‌ଥିତ ହୋଇଥିଲେ । ୧୨ । ମହାତ୍ମା ବଶିଷ୍ଠଙ୍କ ସେହି କର୍ମଦ୍ୱାରା ପବିତ୍ର ମହାନଦୀ ସେହିଦିନଠାରୁ ଅଦ୍ୟାପି ବିପାଶା ନାମରେ ବିଖ୍ୟାତ ହୋଇଅଛି । ୧୩ । ମହାତ୍ମା ବିଶ୍ୱାମିତ୍ର ତ୍ରିଶଙ୍କୁଙ୍କର ଯାଜନକ୍ରିୟା ସମ୍ପାଦନ କରିବାରୁ ବଶିଷ୍ଠ ପୁତ୍ରମାନେ ତାହାଙ୍କୁ ଚଣ୍ଡାଳର ଯାଜକତ୍ୱ ହେତୁରୁ "ତୁମ୍ଭେ ଚଣ୍ଡାଳ ହେବ" ଏହିପରି ବାକ୍ୟରେ ଅଭିଶାପ ଦେଇଥିଲେ । ବିଶ୍ୱାମିତ୍ର ଦେବସେନାର ଅଗ୍ରଗାମୀ ପ୍ରଭୁ ଇନ୍ଦ୍ରଦେବଙ୍କୁ ସ୍ତବକଲାରୁ ସେ ପ୍ରୀତମନା ହୋଇ ଏହାଙ୍କୁ ଶାପରୁ ମୁକ୍ତ କରିଥିଲେ ।୧୪।

ଲୋକକୁ ପ୍ରସ୍ଥାନ କଲେ । ୮୯ । ହେ ନରବ୍ୟାଘ୍ର ! ସୁଦର୍ଶନ ଅତିଥି ସତ୍କାର ଦ୍ୱାରା ଗୃହସ୍ଥ ଧର୍ମ ପ୍ରତିପାଳନ କରି ମୃତ୍ୟୁ, ଆତ୍ମା, ଲୋକସମୂହ, ପଞ୍ଚଭୂତ, ବୁଦ୍ଧି, ମନ, କାଳ, ଆକାଶ, କାମ ଓ କ୍ରୋଧକୁ ଜୟ କରିଥିଲେ । ଅତଏବ ତୁମ୍ଭେ ମନରେ ଏହିକଥା ବିଚାର କର ଯେ ଗୃହସ୍ଥ ବ୍ୟକ୍ତିର ଅତିଥି ପୂଜା ବ୍ୟତିରେକେ କିଛି ଉତ୍କୃଷ୍ଟ ନାହିଁ । ୯୧ । ଅତିଥି ପୂଜିତ ହୋଇ ଯଦି ମନରେ ଗୃହସ୍ଥର ଶୁଭ ବିଷୟ ଧ୍ୟାନ କରନ୍ତି, ତେବେ ତାହାକୁ ଶତ ଯଜ୍ଞ ମଧ୍ୟ ସମାନ ହୁଏନାହିଁ, ଏହିକଥା ପଣ୍ଡିତମାନେ କହନ୍ତି । ୯୨ । ଯେଉଁ ଗୃହସ୍ଥ ସଚ୍ଚରିତ୍ର ଉପଯୁକ୍ତ ଉପସ୍ଥିତ ଅତିଥିଙ୍କୁ ପ୍ରାପ୍ତହୋଇ ଯଥୋଚିତ ସତ୍କାର କରନ୍ତିନାହିଁ, ତାହାଙ୍କୁ ସେହି ଅତିଥି ଦୁଷ୍କୃତ ପ୍ରଦାନ ପୂର୍ବକ ସୁକୃତ ଗ୍ରହଣ କରି ଚାଲିଯାଆନ୍ତି । ୯୩ । ହେ ପୁତ୍ର ! ପୂର୍ବକାଳରେ ଗୃହସ୍ଥ ଯେଉଁପରି ମୃତ୍ୟୁଙ୍କୁ ଜୟ କରିଥିଲେ, ଆମ୍ଭେ ତୁମ୍ଭଙ୍କୁ ସେହି ଉତ୍ତମ ଆଖ୍ୟାନ କହିଲୁଁ । ୯୪ । ଏହି ଉତ୍ତମ ଧନ୍ୟ ଆଖ୍ୟାନ ଆୟୁଷ୍କର, ଯଶସ୍କର ଓ ସର୍ବପାପ ବିନାଶକ ଅଟେ, ଅତଏବ ସମ୍ପତ୍ତି ଲାଭାର୍ଥୀ ବ୍ୟକ୍ତି ଏହାକୁ ହୃଦୟଙ୍ଗମ କରିବେ । ୯୫ । ହେ ଭାରତ ! ଯେଉଁ ବିଦ୍ୱାନ ବ୍ୟକ୍ତି ଏହି ସୁଦର୍ଶନ ଚରିତକୁ ପ୍ରତିଦିନ ପାଠକରିବେ ସେ ପବିତ୍ର ଲୋକମାନଙ୍କୁ ପ୍ରାପ୍ତ ହେବେ । ୯୬ ।

ସୁଦର୍ଶନୋପାଖ୍ୟାନ ଦ୍ୱିତୀୟାଧ୍ୟାୟ ସମାପ୍ତ । ୨ ।



# ତୃତୀୟ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ନରାଧିପ ମହାରାଜା ପିତାମହ ! କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରମାନଙ୍କର ବ୍ରାହ୍ମଣ୍ୟ ଯଦି ଦୁଷ୍ପ୍ରାପ୍ୟ ଅଟେ, ଅର୍ଥାତ୍ ସେମାନଙ୍କର ବ୍ରାହ୍ମଣତ୍ୱ ଲାଭ କରିବାକୁ ଯଦି ଅଧିକାର ନାହିଁ, ତେବେ କ୍ଷତ୍ରିୟ କୁଳୋଦ୍ଭବ ମହାତ୍ମା ବିଶ୍ୱାମିତ୍ର କେଉଁପରି ବ୍ରାହ୍ମଣ୍ୟ ଲାଭକଲେ, ତାହା ଶୁଣିବାକୁ ଆମ୍ଭେ ଇଚ୍ଛା କରୁଅଛୁଁ । ହେ ନରଶ୍ରେଷ୍ଠ ! ଧର୍ମାତ୍ମନ୍ ! ଆପଣ ତାହା ଯଥାର୍ଥରୂପେ ଆମ୍ଭଙ୍କୁ କହିବାହେଉନ୍ତୁ । ୨ । ସେହି ଅମିତ

ହେ କୌରବ ! ଯେ ନକ୍ଷତ୍ର ଉତ୍ତର ଦିଗକୁ ଆଶ୍ରୟ କରି ଉତ୍ତାନପାଦଙ୍କ ପୁତ୍ର ଧ୍ରୁବ ଓ ବ୍ରହ୍ମର୍ଷିମାନଙ୍କ ମଧ୍ୟରେ ତାରା ରୂପରେ ଶୋଭା ପାଉଅଛନ୍ତି, ସେହି ଋଷିପୁଙ୍ଗବଙ୍କର ଏହି ସମସ୍ତ କାର୍ଯ୍ୟ ଓ ଅନ୍ୟାନ୍ୟ କାର୍ଯ୍ୟମାନଙ୍କୁ ଆଲୋଚନା କରିବାରୁ ଆମ୍ଭର ଏହି କୌତୂହଳ ଜନ୍ମିଅଛି । ୧୭। ହେ ଭରତ ଶ୍ରେଷ୍ଠ ! ସେ ଦେହାନ୍ତରକୁ ପ୍ରାପ୍ତ ନ ହୋଇ କିପରି ବ୍ରାହ୍ମଣ ହୋଇଥିଲେ, ଏହି ଘଟନା କିପରି ଘଟିଲା, ତାହା ଯଥାର୍ଥରୂପେ କହିବାହେଉନ୍ତୁ । ୧୭ । ମତଙ୍ଗ ବ୍ରାହ୍ମଣୀଙ୍କ ଗର୍ଭରୁ ଶୂଦ୍ରର ଔରସରେ ଜନ୍ମଗ୍ରହଣ ପୂର୍ବକ ଚଣ୍ଡାଳତ୍ୱ ପ୍ରାପ୍ତ ହୋଇଥିବାରୁ ଉତ୍କୃଷ୍ଟ ତପସ୍ୟା ଦ୍ୱାରା ଅତ୍ୟନ୍ତ ଯତ୍ନକରି ସୁଦ୍ଧା ଯେଉଁ ବ୍ରାହ୍ମଣ୍ୟ ଲାଭ କରିବାକୁ ସମର୍ଥ ହୋଇ ନ ଥିଲେ, ତାହା ବିଶ୍ୱାମିତ୍ର କିପରି ଲାଭକଲେ ? ଯଥାର୍ଥରୂପେ ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୧୯ ।

ବିଶ୍ୱାମିତ୍ରଙ୍କ ଉପାଖ୍ୟାନରେ ତୃତୀୟାଧ୍ୟାୟ ସମାପ୍ତ । ୩ ।



# ଚତୁର୍ଥ ଅଧ୍ୟାୟ

ଭୀଷ୍ମ କହିଲେ, ହେ ଧର୍ମରାଜ ! ପୂର୍ବେ ବିଶ୍ୱାମିତ୍ର ଯେଉଁପରି ବ୍ରାହ୍ମଣତ୍ୱ ଏବଂ ବ୍ରହ୍ମର୍ଷିତ୍ୱ ଲାଭ କରିଥିଲେ, ଆମ୍ଭେ ତାହା କୀର୍ତ୍ତନ କରୁଅଛୁଁ, ଶ୍ରବଣକର । ୧ । ହେ ଭରତ ଶ୍ରେଷ୍ଠ ! ଭରତ ବଂଶରେ ଆଜମୀଢ଼ ନାମରେ ଜଣେ ଧର୍ମ ପରାୟଣ ଯାଜ୍ଞିକ ଭୂପାଳ ଥିଲେ । ୨ । ତାହାଙ୍କ ଆତ୍ମଜଙ୍କ ନାମ ଜହ୍ନୁ । ଦେବୀ ଗଙ୍ଗା ସେହି ଜହ୍ନୁ ମହାତ୍ମାଙ୍କର ଦୁହିତୃତ୍ୱ ସ୍ୱୀକାର କରିଥିଲେ । ୩ । ଜହ୍ନୁଙ୍କର ସିନ୍ଧୁଦ୍ୱୀପ ନାମରେ ତାହାଙ୍କ ସଦୃଶ ଗୁଣଶାଳୀ ମହାଯଶା ଗୋଟିଏ ପୁତ୍ର ଉତ୍ପନ୍ନ ହୋଇଥିଲେ, ସିନ୍ଧୁଦ୍ୱୀପଙ୍କଠାରୁ ମହାବଳ ରାଜର୍ଷି ବଳାକାଶ୍ୱ ଉତ୍ପନ୍ନ ହୋଇଥିଲେ । ୪ । ତାହାଙ୍କ ପୁତ୍ର ବଲ୍ଲଭ ସାକ୍ଷାତ୍ ଦ୍ୱିତୀୟ ଧର୍ମ ସ୍ୱରୂପ ଥିଲେ । ଇନ୍ଦ୍ରଙ୍କ ସଦୃଶ ପ୍ରଭାବଶାଳୀ ମହାରାଜ କୁଶିକ ସେହି ବଲ୍ଲଭଙ୍କର ତନୟ ଥିଲେ । ୫ । ଶ୍ରୀମାନ୍ ଗାଧି ନାମକ ରାଜା କୁଶିକଙ୍କ ପୁତ୍ର, ସେ ନିଃସନ୍ତାନ ଥିବାରୁ ପୁତ୍ର କାମନାରେ

ଙ୍କନରେ ବାସ କରିଥିଲେ । ୭ । ସେହି ଅରଣ୍ୟ ବାସ କାଳରେ ତାହାଙ୍କର ଅଲୌକିକ ରୂପ ଲାବଣ୍ୟବତୀ ସତ୍ୟବତୀ ନାମରେ ଗୋଟିଏ କନ୍ୟା ଜନ୍ମିଥିଲେ । ୭ ।

କିଛିଦିନ ଉତ୍ତାରେ ସେହି କନ୍ୟା ଯୌବନବତୀ ହେବାରୁ ଭୃଗୁ-ବଂଶଜ ସମୁଦ୍ଭବ ବିପୁଳ ତପସ୍ୟା ପରିପୂର୍ଣ୍ଣ ମହର୍ଷି ଚ୍ୟବନଙ୍କ ପୁତ୍ର ସୁବିଖ୍ୟାତ ଶ୍ରୀମାନ୍ ଋଚୀକ ଗାଧିଙ୍କ ନିକଟରେ ସତ୍ୟବତୀଙ୍କୁ ବିବାହ ନିମିତ୍ତ ପ୍ରାର୍ଥନା କଲେ । କିନ୍ତୁ ଶତ୍ରୁହନ୍ତା ଗାଧି ମହାତ୍ମା ଋଚୀକଙ୍କୁ ଦରିଦ୍ର ବୋଲି ଜାଣି ତାହାଙ୍କୁ କନ୍ୟା ପ୍ରଦାନ କଲେନାହିଁ । ୯ । ତଦନନ୍ତର ଋଚୀକ ତାହାଙ୍କୁ ପ୍ରତ୍ୟାଖ୍ୟାନ ପୂର୍ବକ ସେଠାରୁ ପ୍ରତ୍ୟାଗମନ କରିବାକୁ ଉଦ୍ୟତ ହେବାରୁ ରାଜଶ୍ରେଷ୍ଠ ଗାଧି ତାହାଙ୍କୁ ତେତେବେଳେ ସମ୍ବୋଧନ କରି କହିଲେ, ହେ ତପୋଧନ ! ତୁମ୍ଭେ ଯଦି ଆମ୍ଭଙ୍କୁ ଶୁଳ୍କ ପ୍ରଦାନ କରିବ ତେବେ ଆମ୍ଭ କନ୍ୟାଙ୍କୁ ଉଦ୍‌ବାହ କରିବ । ୧୦ ।

ତେତେବେଳେ ଋଚୀକ କହିଲେ, ହେ ନୃପ ରାଜେନ୍ଦ୍ର ! ଆମ୍ଭେ ଆପଣଙ୍କୁ ଆପଣଙ୍କ କନ୍ୟାରୂପ କେଉଁ ଶୁଳ୍କ ପ୍ରଦାନ କରିବୁଁ, ତାହା ନିଃସଂଶୟ ରୂପେ ବିନାବିଳମ୍ବରେ କିଛି ବିଚାରଣା ନ କରି କହିବା-ହେଉନ୍ତୁ । ୧୧ । ଗାଧିରାଜ କହିଲେ, ହେ ତପୋଧନ ଭାର୍ଗବ ! ଆପଣ ଚନ୍ଦ୍ର କିରଣ ସଦୃଶ ଧବଳ, ବାୟୁ ସମାନ ବେଗଗାମୀ ଶ୍ୟାମଳ ବର୍ଣ୍ଣଯୁକ୍ତ ଏକ କର୍ଣ୍ଣ ବିଶିଷ୍ଟ ସହସ୍ର ଅଶ୍ୱ ଆମ୍ଭଙ୍କୁ ପ୍ରଦାନ ପ୍ରଦାନ କରିବା ହେଉନ୍ତୁ । । ୧୨ । ଭୀଷ୍ମ କହିଲେ, ତତ୍ପରେ ଭୃଗୁଶ୍ରେଷ୍ଠ ପ୍ରଭୁ ଚ୍ୟବନଙ୍କ ପୁତ୍ର ଋଚୀକ, ଜଳାଧିପତି ଅଦିତିପୁତ୍ର ବରୁଣଦେବଙ୍କ ନିକଟକୁ ଯାଇ କହିଲେ ( ୧୩ ) ହେ ଦେବଶ୍ରେଷ୍ଠ ! ଆମ୍ଭେ ଆପଣଙ୍କ ନିକଟରେ ଚନ୍ଦ୍ରକିରଣ ସଦୃଶ ଧବଳ, ପବନ ସମାନ ବେଗଗାମୀ, ଶ୍ୟାମୈକ କର୍ଣ୍ଣ ସହସ୍ର ଅଶ୍ୱ ପ୍ରାର୍ଥନା କରୁଅଛୁଁ । ୧୪ । ଆପଣ ଅନୁକମ୍ପା ପ୍ରଦର୍ଶନ ପୂର୍ବକ ଆମ୍ଭଙ୍କୁ ତାହା ପ୍ରଦାନ କରିବାହେଉନ୍ତୁ । ଋଚୀକ ଏହିପରି ପ୍ରାର୍ଥନା କଲାରୁ ଅଦିତିପୁତ୍ର ବରୁଣଦେବ ତାହାଙ୍କ ପ୍ରାର୍ଥନାରେ ସମ୍ମତ ହୋଇ କହିଲେ, ହେ ତପୋ-ଧନ ! ଭୃଗୁଶ୍ରେଷ୍ଠ ! ତୁମ୍ଭେ ଯେଉଁ ସ୍ଥଳରେ ଇଚ୍ଛାକରିବ ସେହିଠାରେ ଅଶ୍ୱମାନେ ଉତ୍ପନ୍ନ ହେବେ । ୧୫ ।

ସେତେବେଳେ ମହର୍ଷି ଋଚୀକ ବରୁଣଙ୍କ ନିକଟରୁ ସେହି ଅଶ୍ୱସବୁ ଗ୍ରହଣ କରି କାନ୍ୟକୁବ୍ଜର ନିକଟବର୍ତ୍ତୀ ଜାହ୍ନବୀ ତୀରକୁ ଯାଇ "ଏହିଠାରେ ବିପୁଳ ବଳଶାଳୀ ଚନ୍ଦ୍ର ସମ ଶୁକ୍ଳ ଅଶ୍ୱବୃନ୍ଦ ଉତ୍ଥିତ ହେଉନ୍ତୁ" ଏହି କଥା ଚିନ୍ତାକଲେ । ସେ ଚିନ୍ତା କଲାମାତ୍ରେ ଗଙ୍ଗାରୁ ସହସ୍ର ଅଶ୍ୱ ଉତ୍ଥିତ ହେଲେ । ଯେଉଁ ସ୍ଥାନରେ ସେହି ଅଶ୍ୱମାନେ ଉତ୍ଥିତ ହୋଇଥିଲେ ଅଦ୍ୟାପି ସେହି ସ୍ଥାନକୁ ଲୋକମାନେ ଅଶ୍ୱତୀର୍ଥ ବୋଲି କହୁଅଛନ୍ତି । ୧୭ । ହେ ତାତ ! ତତ୍ପରେ ତପସ୍ୱୀ ଶ୍ରେଷ୍ଠ ଋଚୀକ ପ୍ରୀତିଯୁକ୍ତ ହୋଇ ଗାଧି-ନରପାଳଙ୍କୁ ଉତ୍ତମ ସହସ୍ର ଅଶ୍ୱ ଶୁଳ୍କରୂପେ ପ୍ରଦାନ କଲେ । ୧୮ ।

ତତ୍ପରେ ସେହି ଗାଧିରାଜା ବିସ୍ମୟଯୁକ୍ତ ହୋଇ ଶାପ ଭୟରେ ସେହି କନ୍ୟାଙ୍କୁ ଉତ୍ତମରୂପେ ଅଳଂକୃତା କରି ଭୃଗୁସୁତଙ୍କୁ ପ୍ରଦାନ କଲେ । ।୧୯। ବ୍ରହ୍ମର୍ଷିଶ୍ରେଷ୍ଠ ଋଚୀକ ବିଧି ଅନୁସାରେ ତାହାଙ୍କ ପାଣିଗ୍ରହଣ କଲେ । ସତ୍ୟବତୀ ମଧ୍ୟ ତାହାଙ୍କୁ ପତିରୂପେ ପ୍ରାପ୍ତ ହୋଇ ପରମ ହର୍ଷ ଲାଭ-କଲେ । ୨୦ । ହେ ଭାରତ ! ସେହି ବ୍ରହ୍ମର୍ଷି ଋଚୀକ ବନେ ପତ୍ନୀଙ୍କ ଆଚରଣରେ ସନ୍ତୋଷ ଲାଭ କରି ସେହି ବରବର୍ଣ୍ଣିନୀଙ୍କୁ କହିଲେ, ହେ ପ୍ରିୟେ ! ଆମ୍ଭେ ତୁମ୍ଭଙ୍କୁ ବର ପ୍ରଦାନ କରୁଅଛୁଁ ଯେ ତୁମ୍ଭର ଗୋଟିଏ ପୁତ୍ର ହେବ । ୨୧ । ହେ ରାଜଶ୍ରେଷ୍ଠ ! ସେତେବେଳେ ସେହି କନ୍ୟା ତାହାଙ୍କ ଜନନୀଙ୍କ ନିକଟରେ ସ୍ୱାମୀଙ୍କର ବର ପ୍ରଦାନ ବୃତ୍ତାନ୍ତ କୀର୍ତ୍ତନ କଲେ । ଏଥିଉତ୍ତାରେ ତାହାଙ୍କ ମାତା ସେହି ନମ୍ରମୁଖୀ କନ୍ୟାଙ୍କୁ କହିଲେ, ହେ ପୁତ୍ରି ! ତୁମ୍ଭ ସ୍ୱାମୀ ଆମ୍ଭଙ୍କୁ ମଧ୍ୟ ଗୋଟିଏ ପୁତ୍ର ପ୍ରଦାନ ପୂର୍ବକ ଅନୁଗ୍ରହ ପ୍ରକାଶ କରନ୍ତୁ । ସେହି ମହାତପା ଆମ୍ଭଙ୍କୁ ନିଶ୍ଚୟ ପୁତ୍ର ପ୍ରଦାନ କରିବା ବିଷୟରେ ସମର୍ଥ ଅଟନ୍ତି । ୨୩ ।

ହେ ରାଜନ୍ ! ତତ୍ପରେ ସେହି କନ୍ୟା ସତ୍ୟବତୀ ଶୀଘ୍ର ପତିଙ୍କ ନିକଟକୁ ଯାଇ ଜନନୀଙ୍କର ଅଭିଳାଷ ବିଷୟ ସବୁ ନିବେଦନ କଲେ । ତତ୍ପରେ ଋଚୀକ ତାହାଙ୍କୁ କହିଲେ, ହେ ପ୍ରିୟେ ! କଲ୍ୟାଣି ! ତୁମ୍ଭ ମାତା ଆମ୍ଭ ପ୍ରସାଦରେ ଗୋଟିଏ ଗୁଣବାନ୍ ପୁତ୍ର ପ୍ରସବ କରିବେ । ତୁମ୍ଭେ ତୁମ୍ଭ ମାତାଙ୍କ ନିମିତ୍ତ ଯାହା ପ୍ରାର୍ଥନା କଲ, ଆମ୍ଭେ ତାହା କଦାପି ନିଷ୍ଫଳ କରିବୁନାହିଁ । ୨୫ । ଆମ୍ଭେ ତୁମ୍ଭଙ୍କୁ ସତ୍ୟ କହୁଅଛୁଁ ତୁମ୍ଭ ଗର୍ଭରେ ଆମ୍ଭ

ବଂଶଧରଂ ଗୁଣଶ୍ଳାଘୀ ଶ୍ରୀମାନ୍ ଗୋଟିଏ ପୁତ୍ର ଜାତହେବ । ୨୬ । ତୁମ୍ଭ ମାତା ଋତୁସ୍ନାତା ହୋଇ ଅଶ୍ୱତ୍ଥ ବୃକ୍ଷକୁ ଆଲିଙ୍ଗନ କରିବେ ଏବଂ ତୁମ୍ଭେ ମଧ୍ୟ ଋତୁସ୍ନାନ ଉତ୍ତାରେ ଉଦୁମ୍ବର ବୃକ୍ଷକୁ ଆଲିଙ୍ଗନ କରିବ । ୨୭ । ହେ ଶୁଚିସ୍ମିତେ ! ଏ ମନ୍ତ୍ରପୂତ ଦୁଇଗୋଟି ଚରୁକୁ ତୁମ୍ଭେ ଓ ତୁମ୍ଭର ଜନନୀ ଭକ୍ଷଣ କରିବେ । ତତ୍ପରେ ତୁମ୍ଭେ ଦୁହେଁ ଦୁଇଗୋଟି ପୁତ୍ର ପ୍ରାପ୍ତ ହେବ । ୨୮ ।

ମହର୍ଷି ଏହିକଥା କହି କେଉଁ ଚରୁକୁ କିଏ ଭକ୍ଷଣ କରିବେ ତାହା ମଧ୍ୟ ବତାଇ ଦେଇଥିଲେ । ତତ୍ପରେ ସତ୍ୟବତୀ ଆନନ୍ଦିତା ହୋଇ ମାତାଙ୍କ ନିକଟରେ ଚରୁ ରଖି ଋଚୀକ ଯାହା କହିଥିଲେ, ତାହାସବୁ ଜଣାଇଲେ । । ୨୯ । ତଦନନ୍ତର ତେତେବେଳେ ମାତା କନ୍ୟା ସତ୍ୟବତୀଙ୍କୁ କହିଲେ, ହେ ପୁତ୍ରି ! ଆମ୍ଭେ ତୁମ୍ଭ ସ୍ୱାମୀଙ୍କ ସମ୍ବନ୍ଧରେ ଗୁରୁତ୍ୱ ପ୍ରାପ୍ତ ହୋଇଅଛୁଁ, ଅତଏବ ତୁମ୍ଭେ ଆମ୍ଭର ବାକ୍ୟ ପ୍ରତିପାଳନ କର । ୩୦ । ତୁମ୍ଭ ଭର୍ତ୍ତା ଯେଉଁ ମନ୍ତ୍ରପୂତ ଚରୁ ତୁମ୍ଭ ନିମିତ୍ତ ଦେଇଅଛନ୍ତି ଏହାକୁ ତୁମ୍ଭେ ଆମ୍ଭ ନିମିତ୍ତ ପ୍ରଦାନ କର ଏବଂ ତୁମ୍ଭେ ମଧ୍ୟ ମଦୀୟ ମନ୍ତ୍ରପୂତ ଚରୁକୁ ଗ୍ରହଣ-କର । ୩୧ । ହେ ଅନିନ୍ଦିତେ ! ଶୁଚିସ୍ମିତେ ! ତୁମ୍ଭେ ମାତାର ବଚନକୁ ଯଦି ପ୍ରମାଣ ବୋଲି ଜ୍ଞାନକର, ତେବେ ବୃକ୍ଷ ଦ୍ୱୟର ପରିବର୍ତ୍ତନ ବିଧାନ କର ଅର୍ଥାତ୍ ତୁମ୍ଭ ସ୍ୱାମୀ ତୁମ୍ଭଙ୍କୁ ଯେଉଁ ବୃକ୍ଷ ଆଲିଙ୍ଗନ କରିବାକୁ କହିଅଛନ୍ତି ଆମ୍ଭେ ସେହି ବୃକ୍ଷକୁ ଆଲିଙ୍ଗନ କରିବୁଁ ଏବଂ ଆମ୍ଭେ ଯେଉଁ ବୃକ୍ଷକୁ ଆଲିଙ୍ଗନ କରିବା ନିମିତ୍ତ କହିଅଛନ୍ତି ତୁମ୍ଭେ ତାହାକୁ ଆଲିଙ୍ଗନ କର । ୩୨ ।

ସମସ୍ତେ ଆପଣାର ପୁତ୍ର ଉତ୍କୃଷ୍ଟ ଓ ପାପଶୂନ୍ୟ ହେବାକୁ ଇଚ୍ଛା କରନ୍ତି, ସେହି କାରଣରୁ ଭଗବାନ୍ ଋଚୀକ ନିଶ୍ଚୟ ଉତ୍କୃଷ୍ଟ ପୁତ୍ର ଲାଭ ଇଚ୍ଛାରେ ତୁମ୍ଭଙ୍କୁ ଉତ୍କୃଷ୍ଟ ଚରୁ ଭକ୍ଷଣ କରିବା ନିମିତ୍ତ ଦେଇଅଛନ୍ତି । ଓ ଉତ୍କୃଷ୍ଟ ବୃକ୍ଷ ଆଲିଙ୍ଗନ କରିବା ନିମିତ୍ତ କହିଅଛନ୍ତି । ଅତଏବ ତୁମ୍ଭ ଚରୁ ଓ ବୃକ୍ଷରେ ଆମ୍ଭର ପ୍ରୀତି ଜନ୍ମିଅଛି, ସୁତରାଂ ଆମ୍ଭେ ତୁମ୍ଭର ଚରୁ ଭକ୍ଷଣ ଓ ତୁମ୍ଭର ବୃକ୍ଷକୁ ଆଲିଙ୍ଗନ କଲେ ଆମ୍ଭର ନିଶ୍ଚୟ ଉତ୍କୃଷ୍ଟ ପୁତ୍ର ହେବ । ହେ ସୁମଧ୍ୟମେ ! "ଆମ୍ଭର କିପରି ଉତ୍କୃଷ୍ଟ ଭ୍ରାତା ହେବ" ତୁମ୍ଭେ

ଏହି କଥା ଚନ୍ତାକର । ୩୪ । ହେ ଯୁଧିଷ୍ଠିର ! ତଦନନ୍ତର ସତ୍ୟବତୀ ଓ ତାହାଙ୍କ ମାତା ପରିବର୍ତ୍ତନ ପୂର୍ବକ ଚରୁଭକ୍ଷଣ ଓ ବୃକ୍ଷ ଆଲିଙ୍ଗନ କଲାରୁ ସେହି ଦୁହିଙ୍କର ଗର୍ଭ ସଞ୍ଚାର ହେଲା । ୩୫ । ଭୃଗୁଶ୍ରେଷ୍ଠ ମହାଋଷି ସେହି ଋଚୀକ ଗର୍ଭଧାରିଣୀ ଭାର୍ଯ୍ୟା ସତ୍ୟବତୀଙ୍କୁ ଦେଖି ଦୁର୍ମନା ହୋଇ କହିଲେ (୩୬) ହେ ଶୁଭେ ! ତୁମ୍ଭେ ଚରୁ ଓ ବୃକ୍ଷର ପରିବର୍ତ୍ତନ କଲାପରି ଗର୍ଭର ଲକ୍ଷଣରୁ ସ୍ପଷ୍ଟ ଜଣା ଯାଉଅଛି । ୩୭ । ଆମ୍ଭେ ତୁମ୍ଭ ଚରୁରେ ବିଶ୍ୱ ବିଖ୍ୟାତ ବ୍ରହ୍ମତେଜ ଓ ତାହାଙ୍କ ଚରୁରେ ସମସ୍ତ କ୍ଷତ୍ରିୟବୀର୍ଯ୍ୟ ସନ୍ନିବେଶିତ କରିଥିଲୁଁ । ୩୮ ।

ତୁମ୍ଭେ ତ୍ରୈଲୋକ୍ୟରେ ବିଖ୍ୟାତ ଗୁଣଶାଳୀ ଉତ୍କୃଷ୍ଟ ବିପ୍ର ଓ ତୁମ୍ଭର ମାତା ପ୍ରବଳ ପରାକ୍ରାନ୍ତ ଉତ୍କୃଷ୍ଟ କ୍ଷତ୍ରିୟ ଜନ୍ମ କରିବେ ବୋଲି ଆମ୍ଭେ ବିଚାର କରିଥିଲୁଁ । ୩୯ । କିନ୍ତୁ ହେ ଶୁଭେ ! ତୁମ୍ଭେ ଦୁହେଁ ଯେଉଁ କାରଣରୁ ଚରୁ ଓ ବୃକ୍ଷର ପରିବର୍ତ୍ତନ କରିଅଛ, ସେହି ହେତୁରୁ ତୁମ୍ଭ ମାତା ଶ୍ରେଷ୍ଠ ବ୍ରାହ୍ମଣ ଜନ୍ମ କରିବେ ଓ ତୁମ୍ଭେ ଉଗ୍ରକର୍ମା କ୍ଷତ୍ରିୟ କୁମାର ପ୍ରସବ କରିବ । ହେ ଭାବିନି ! ହେ ଭଦ୍ରେ ! ତୁମ୍ଭେ ମାତୃ ସ୍ନେହରେ କିଛି ଉତ୍କୃଷ୍ଟ କାର୍ଯ୍ୟ କଲ ନାହିଁ । ୪୧ । ହେ ରାଜନ୍ ! ତେତେବେଳେ ବରବର୍ଣ୍ଣିନୀ ସତ୍ୟବତୀ ତାହା ଶ୍ରବଣ କରି ଶୋକରେ ଅତ୍ୟନ୍ତ ଅଧୀର ହୋଇ ଛିନ୍ନମୂଳା ମନୋହର ଲତା ସଦୃଶ ଭୂମିରେ ପଡ଼ିଲେ । ୪୨ । ଏବଂ କିଛିକ୍ଷଣ ଉତ୍ତାରେ ସେହି ଋଚୀକଙ୍କ ଭାର୍ଯ୍ୟା ଗାଧିକୁମାରୀ ଚେତନା-ଲାଭ ପୂର୍ବକ ଭାର୍ଗବଶ୍ରେଷ୍ଠ ସ୍ୱାମୀଙ୍କୁ ମସ୍ତକରେ ପ୍ରଣାମ କରି କହିଲେ (୪୩) ହେ ବ୍ରହ୍ମଜ୍ଞାନୀ ଶ୍ରେଷ୍ଠ ! ହେ ବିପ୍ରର୍ଷେ ! ଆପଣ ଆମ୍ଭଠାରେ ପ୍ରସନ୍ନ ହୋଇ ଏହି ବର ପ୍ରଦାନ କରନ୍ତୁ ଯେ ଆମ୍ଭର କ୍ଷତ୍ରିୟ ପୁତ୍ର ହେବ ନାହିଁ । ୪୪ । ଆମ୍ଭେ କାମନା କରୁଅଛୁଁ ଯେ ଆମ୍ଭର ପୌତ୍ର କ୍ଷତ୍ରିୟ ସଦୃଶ ଉଗ୍ରକର୍ମା ହେଉନ୍ତୁ । ତେତେବେଳେ ମହାତପା ଋଚୀକ "ଏବମସ୍ତୁ" ବୋଲି ସ୍ତ୍ରୀୟ ଭାର୍ଯ୍ୟାଙ୍କୁ ବରପ୍ରଦାନ କଲେ । ତତ୍ପରେ ଯଥା ସମୟରେ ସତ୍ୟବତୀ ଯମଦଗ୍ନିଙ୍କୁ ପ୍ରସବ କଲେ । ୪୬ । ହେ ରାଜେନ୍ଦ୍ର ! ବ୍ରହ୍ମର୍ଷି ଋଚୀକଙ୍କ ପ୍ରସାଦରୁ ଯଶସ୍ୱିନୀ ଗାଧିରାଜଙ୍କ ପତ୍ନୀ ବ୍ରହ୍ମବାଦୀ ବିଶ୍ୱାମିତ୍ରଙ୍କୁ ପ୍ରସବ କଲେ । ୪୭ । ସେହି କାରଣରୁ ମହାତପା ବିଶ୍ୱାମିତ୍ର କ୍ଷତ୍ରିୟ ହୋଇସୁଦ୍ଧା

ବ୍ରାହ୍ମଣତ୍ୱ ପ୍ରାପ୍ତ ହୋଇଥିଲେ ଓ ସେହିପରି ବ୍ରାହ୍ମଣ ବଂଶର କର୍ତ୍ତା ହେଲେ । ୪୮ ।

ତାହାଙ୍କ ମହାତ୍ମା ପୁତ୍ରଗଣ ବ୍ରହ୍ମବଂଶ ବିବର୍ଦ୍ଧକ, ତପସ୍ୱୀ, ବେଦଜ୍ଞ ଓ ଗୋତ୍ର କର୍ତ୍ତା ଥିଲେ । ୪୯ । ଭଗବାନ୍ ମଧୁଚ୍ଛନ୍ଦ, ବୀର୍ଯ୍ୟବାନ୍ ଦେବରାତ, ଅକ୍ଷୀଣ, ଶକୁନ୍ତ, ବଭ୍ରୁ, କାଳପଥ, ବିଖ୍ୟାତ ଯାଜ୍ଞବଲ୍କ୍ୟ, ମହାବ୍ରତସ୍ଥୂଣ, ଉଲୂକ, ଯମଦୂତ, ସୈନ୍ଧବାୟନ, ଭଗବାନ୍ ବଲ୍‌ଗୁଜଙ୍ଘ, ମହାଋଷି ଗାଲବ, ରୁଚି, ବଜ୍ର, ସାଳଂକାୟନ, (୫୨) ଲୀଳାଢ୍ୟ, ନାରଦ, କୂର୍ଚ୍ଚମୁଖ, ବାହୁଳ, ମୂଷଳ, ବକ୍ଷୋଗ୍ରୀବ, (୫୩) ଅନେକ ନେତ୍ରଯୁକ୍ତ ଆଙ୍ଘ୍ରିକ, ଶିଳାଯୂପ, ଶିତ, ଶୁଚି, ଚକ୍ରକ, ମାରୁତନ୍ତବ୍ୟ, ବାତଘ୍ନ, ଅଶ୍ୱଳାୟନ (୫୪) ଶ୍ୟାମାୟନ, ଗାର୍ଗ୍ୟ, ଜାବାଳ, ସୁଶ୍ରୁତ, କାରୀଷି, ସଂଶ୍ରୁତ୍ୟ, ପର, ପୌରବ, ତନ୍ତୁ, (୫୫) ମହାଋଷି କପିଳ, ତାଡ଼କାୟନ, ଉପଗହନ, ଅସୁରାୟଣି, (୫୬) ମାର୍ଗମର୍ଷି, ହିରଣ୍ୟାକ୍ଷ, ଜଙ୍ଘାରି, ବାଭ୍ରବାୟଣି, ସୂତି, ବିଭୂତି, ସୂତ, ସୁରକୃତ୍, (୫୭) ଅରାଳି, ନାଚିକ, ଚମ୍ପେୟ, ଉଜ୍ଜୟନ, ନବତନ୍ତୁ, ବକନଖ, ଶୟନ, ଯତି, (୫୮) ଅମ୍ଭୋରୁହ, ମତ୍ସ୍ୟାଶୀ, ଶିରୀଷୀ, ଗାର୍ଦ୍ଦଭି, ଉର୍ଦ୍ଧ୍ୱଯୋନ, ଉଦାପେକ୍ଷୀ ଓ ମହାଋଷି ନାରଦୀ ପ୍ରଭୃତି ମହାତ୍ମାମାନେ ବିଶ୍ୱାମିତ୍ରଙ୍କ ପୁତ୍ର । ହେ ରାଜନ୍ ! ଯୁଧିଷ୍ଠିର ! ବିଶ୍ୱାମିତ୍ରଙ୍କ ପୁତ୍ରଗଣ ସମସ୍ତେ ବେଦଜ୍ଞ । ମହାତପା ବିଶ୍ୱାମିତ୍ର କ୍ଷତ୍ରିୟ ହୋଇ ବ୍ରହ୍ମର୍ଷି ଋଚୀକଙ୍କ ପ୍ରସାଦରେ ବ୍ରହ୍ମଣ୍ୟଲାଭ କରିଥିଲେ । । ୬୦ । ହେ ଭାରତ ଶ୍ରେଷ୍ଠ ! ଚନ୍ଦ୍ର, ସୂର୍ଯ୍ୟ ଓ ଅଗ୍ନିସଦୃଶ ତେଜସ୍ୱୀ ବିଶ୍ୱାମିତ୍ରଙ୍କର ଏହିସବୁ ଜନ୍ମବୃତ୍ତାନ୍ତ ଯଥାର୍ଥରୂପେ କହିଲୁଁ । ୬୧ । ହେ ରାଜଶ୍ରେଷ୍ଠ ! ତୁମ୍ଭର ଆଉ ଯେଉଁ ଯେଉଁ ବିଷୟରେ ପୁନଶ୍ଚ ସନ୍ଦେହ ଉପସ୍ଥିତ ହୋଇଅଛି, ତାହା ପ୍ରଶ୍ନକର, ଆମ୍ଭେ ତୁମ୍ଭର ସଂଶୟ ଛେଦନ କରିବୁଁ । ୬୨ ।

ବିଶ୍ୱାମିତ୍ରଙ୍କ ଉପାଖ୍ୟାନେ ଚତୁର୍ଥାଧ୍ୟାୟ ସମାପ୍ତ । ୪ ।



# ପଞ୍ଚମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ଧର୍ମଜ୍ଞ ପିତାମହ ! ଅନୃଶଂସତା ଧର୍ମ ଓ ଭକ୍ତ ପରାୟଣ ଜନମାନଙ୍କ ଗୁଣ ଶ୍ରବଣ କରିବାକୁ ଆମ୍ଭର ଇଚ୍ଛା ହେଉଅଛି, ଅତଏବ ଆପଣ ତାହା କହିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ, ହେ ବତ୍ସ ! ଆମ୍ଭେ ଏହି ଉପଲକ୍ଷରେ ମହାତ୍ମା ବାସବ ଓ ଶୁକ ପକ୍ଷୀର ପୁରାତନ ଇତିହାସ କୀର୍ତ୍ତନ କରୁଅଛୁଁ । ୨ । ପୂର୍ବକାଳରେ କାଶୀରାଜଙ୍କ ରାଜ୍ୟରେ ଜଣେ ବ୍ୟାଧ ବିଷଲିପ୍ତ ବାଣ ଗ୍ରହଣ ପୂର୍ବକ ଗ୍ରାମରୁ ନିର୍ଗତ ହୋଇ ମୃଗ ଅନ୍ୱେଷଣ କରୁଥାଏ । ୩ । ଏକଦା ସେହି ବ୍ୟାଧ ମୃଗ ଅନ୍ୱେଷଣ କରୁ କରୁ ନିବିଡ଼ ଅରଣ୍ୟରେ ପ୍ରବେଶପୂର୍ବକ ଅନତିଦୂରରେ ଗୋଟିଏ ମୃଗକୁ ଲକ୍ଷ୍ୟକରି ସ୍ୱୀୟ ବିଷାକ୍ତ ବାଣ ପରିତ୍ୟାଗ କଲା । କିନ୍ତୁ ସେହି ବାଣ ଦୈବବଶରେ ଲକ୍ଷ୍ୟସ୍ଥାନରୁ ଚଳିତ ହୋଇ ଅରଣ୍ୟର ଗୋଟିଏ ମହାତରୁ ଉପରେ ପଡ଼ିଲା । ୫ । ସେହି ବୃକ୍ଷ ବିଷଲିପ୍ତ ସୁତୀକ୍ଷ୍ଣ ଶରରେ ବିଦ୍ଧ ହେବାରୁ ତାହାର ଫଳ ଓ ପତ୍ରସମୂହ କ୍ରମେ କ୍ରମେ ଭୂତଳରେ ନିପତିତ ହେଲେ, ଏବଂ ସେହି ବୃକ୍ଷ କ୍ରମେ କ୍ରମେ ଶୁଷ୍କ ହେଲା । ୬ । ସେହି ବୃକ୍ଷର କୋଟରରେ ଗୋଟିଏ ଧର୍ମପରାୟଣ କୃତଜ୍ଞ ଶୁକପକ୍ଷୀ ବହୁକାଳରୁ ବାସ କରିଥିଲା । ସେହି ପକ୍ଷୀ ସ୍ୱୀୟ ଆଶ୍ରୟଦାତା ବନସ୍ପତିକୁ ଶୁଷ୍କ ହେବାର ଦେଖି ସୁଦ୍ଧା ତାହାକୁ ପରିତ୍ୟାଗ ନ କରି ସେଠାରେ ନିରାହାରରେ ଅବସ୍ଥାନ ପୂର୍ବକ ଗତିଶୂନ୍ୟ, ଗ୍ଲାନିଯୁକ୍ତ ଓ ନିଶବ୍ଦ ହୋଇ ତାହା ସଙ୍ଗେ ସଙ୍ଗେ ଶୁଷ୍କ ହେଲା । ଇନ୍ଦ୍ରଦେବ ଉଦାର ମହାସତ୍ତ୍ୱ ଅତିମାନୁଷ ଚେଷ୍ଟିତ ସୁଖ ଦୁଃଖରେ ସମାନ ଜ୍ଞାନୀ ସେହି ଶୁକପକ୍ଷୀକୁ ଦେଖି ବିସ୍ମିତ ହୋଇ ଚିନ୍ତାକଲେ, ତିର୍ଯ୍ୟକ୍ ଯୋନିରେ ଅନୃଶଂସ୍ୟ ଅର୍ଥାତ୍ ପରଦୁଃଖରେ ଦୁଃଖିତ ହେବାର ଅସମ୍ଭବ, ତେବେ ଏହି ପକ୍ଷୀ ଆଶ୍ରୟଦାତା ବୃକ୍ଷର ଦୁଃଖରେ ଦୁଃଖିତ ହୋଇ କେଉଁ କାରଣରେ ଦୁଃଖ ପ୍ରକାଶ ପୂର୍ବକ ଅବସ୍ଥିତ ହୋଇଅଛି ? ୧୦ । ଅଥବା ନର ଓ ପକ୍ଷୀ ପ୍ରଭୃତି ସମସ୍ତ ଜାତିରେ କୃପାଳୁତା ଓ ନିଷ୍ଠୁରତା ଗୁଣ ଥିବାର ଜଣାଯାଏ । ୧୧ ।

ତତ୍ପରେ ଦେବରାଜ ବ୍ରାହ୍ମଣ ବେଶରେ ମନୁଷ୍ୟ ରୂପ ଧରି ପୃଥିବୀରେ ଉପସ୍ଥିତ ହୋଇ ସେହି ପକ୍ଷୀକୁ କହିଲେ, ( ୧୨ ) ହେ ପକ୍ଷୀବର ଶୁକ ! ତୁମ୍ଭେ ଶୁଭକ୍ଷଣରେ ଜନ୍ମଗ୍ରହଣ କରିଥିବାରୁ ତୁମ୍ଭ ଦ୍ୱାରା ତୁମ୍ଭ ଜନନୀ ଦାକ୍ଷେୟୀ ଅର୍ଥାତ୍ ଦକ୍ଷପ୍ରଜାପତିଙ୍କ କନ୍ୟା ଶୁକୀ ସୁପ୍ରଜା ଅର୍ଥାତ୍ ଉତ୍ତମ ପୁତ୍ରବତୀ ହୋଇଅଛନ୍ତି । ଆମ୍ଭେ ପଚାରୁଅଛୁଁ, ତୁମ୍ଭେ ଏହି ଶୁଷ୍କ ବୃକ୍ଷକୁ କେଉଁ କାରଣରୁ ତ୍ୟାଗ କରୁନାହଁ ? ୧୩ । ବ୍ରାହ୍ମଣ ରୂପଧାରୀ ଇନ୍ଦ୍ର ଏହି କଥା ପଚାରିବାରୁ ଶୁକପକ୍ଷୀ ତାହାଙ୍କୁ ନମସ୍କାର ପୂର୍ବକ ସ୍ୱାଗତ ପ୍ରଶ୍ନକଲେ ଓ କହିଲେ, ହେ ଦେବରାଜ ! ଆମ୍ଭେ ଜ୍ଞାନଚକ୍ଷୁ ଦ୍ୱାରା ଆପଣଙ୍କୁ ଜାଣୁଅଛୁଁ । । ୧୪ । ତତ୍ପରେ ଭଗବାନ୍ ସହସ୍ରାକ୍ଷ ସେହି ଶୁକପକ୍ଷୀର ବାକ୍ୟ ଶ୍ରବଣ କରି ତାହାର ବିଜ୍ଞାନବଳକୁ ଜାଣିପାରି ଆଶ୍ଚର୍ଯ୍ୟାନ୍ୱିତ ହୋଇ ତାହାକୁ ମନେ ମନେ ଅନେକ ଧନ୍ୟବାଦ ପ୍ରଦାନ ପୂର୍ବକ ପ୍ରଶଂସା କଲେ । ୧୫ ।

ବଳସୂଦନ ଇନ୍ଦ୍ର, ପରମ ଧାର୍ମିକ ଶୁଭକର୍ମା ଶୁକପକ୍ଷୀଙ୍କୁ ବିଶେଷ-ରୂପେ ଜାଣି ସୁଦ୍ଧା ତାହାଙ୍କୁ ବୃକ୍ଷ ସମ୍ବନ୍ଧରେ ପ୍ରୀତି ଜନ୍ମିଥିବାର କାରଣ ପଚାରିଲେ । ୧୬ । ହେ ଶୁକ ! ଏହି ଅରଣ୍ୟରେ ଫଳ ପୁଷ୍ପ ପରିପୂର୍ଣ୍ଣ, ଅଗଣ୍ୟ ପକ୍ଷୀକୁଳଙ୍କର ଆଶ୍ରୟ ଅସଂଖ୍ୟ ବୃକ୍ଷ ଅଛି ଏବଂ ସେମାନଙ୍କର କୋଟର ସମୂହ ସର୍ବଦା ପତ୍ରଦ୍ୱାରା ସମାଚ୍ଛନ୍ନ ହୋଇଅଛି, ତେବେ ତୁମ୍ଭେ ଫଳପତ୍ର ହୀନ ଶୁଷ୍କ, ପତତ୍ରିମାନଙ୍କର ଅଶରଣ୍ୟ ଏହି ବୃକ୍ଷରେ କି ନିମିତ୍ତ ସର୍ବଦା ବାସ କରିଅଛ ? ୧୮ । ହେ ଧୀର ! ତୁମ୍ଭେ ପ୍ରଜ୍ଞାଦ୍ୱାରା ବିଚାର କରି ଏହି ଗତାୟୁଷ, ଅସାମର୍ଥ୍ୟ କ୍ଷୀଣସାର, ହତଶ୍ରୀକ, ବୃଦ୍ଧବୃକ୍ଷକୁ ତ୍ୟାଗକର । । ୧୯ । ଭୀଷ୍ମ କହିଲେ, ଦେବରାଜ ! ଏହିପରି ଧର୍ମାତ୍ମା ଶୁକ ତାହା ଶ୍ରବଣ କରି ଦୁଃଖିତ ହୋଇ ସୁଦୀର୍ଘ ନିଶ୍ୱାସ ପରିତ୍ୟାଗ ପୂର୍ବକ କହିଲେ ( ୨୦ ) ହେ ଶଚୀବଲ୍ଲଭ ! ସୁରରାଜ ! କେହି ଦେବତାମାନଙ୍କର ଆଦେଶକୁ ଅତିକ୍ରମ କରି ପାରୁନ୍ତନାହିଁ । ଆପଣ ଯାହା ପଚାରିଅଛନ୍ତି ଆମ୍ଭେ ତାହାର ଉତ୍ତର ଦେଉଅଛୁଁ ଶ୍ରବଣ କରିବାହେଉନ୍ତୁ । ୨୧ ।

ଆମ୍ଭେ ଏହି ବୃକ୍ଷରେ ଜନ୍ମଗ୍ରହଣ ପୂର୍ବକ ବିବିଧ ସଦ୍‌ଗୁଣ ସମ୍ପନ୍ନ ହୋଇ ବାସ କରିଅଛୁଁ ; ଏହି ବୃକ୍ଷ ଆମ୍ଭଙ୍କୁ ବାଳକ ସଦୃଶ ରକ୍ଷା କରି-ଅଛି । ଏହି ସ୍ଥାନରେ ଶତ୍ରୁଗଣ ଆମ୍ଭଙ୍କୁ ଆକ୍ରମଣ କରିପାରନ୍ତି ନାହିଁ ।

ଏହି କାରଣରୁ ଆମ୍ଭେ ଏହି ବୃକ୍ଷରେ ଭକ୍ତି ପରାୟଣ ହୋଇ ଅନୃଶଂସତା ଧର୍ମ ପ୍ରତିପାଳନ ପୂର୍ବକ ଅନ୍ୟସ୍ଥାନକୁ ଯିବାକୁ ଇଚ୍ଛା କରୁନାହୁଁ ; ତେବେ ଆପଣ ଆମ୍ଭଠାରେ ଦୟାକରି କି ନିମିତ୍ତ ଆମ୍ଭର ଅଧର୍ମ ପ୍ରବୃତ୍ତିକି ଉତ୍ତେ-ଜିତ କରୁଅଛନ୍ତି ? ସାଧୁମାନଙ୍କର କୃପା କେବଳ ପରମଧର୍ମର ଚିହ୍ନ । ଦୟା କେବଳ ସାଧୁମାନଙ୍କୁ ପ୍ରୀତି ପ୍ରଦାନ କରେ । ୨୪ । ଧର୍ମ ବିଷୟରେ ସନ୍ଦେହ ଉପସ୍ଥିତ ହେଲେ ଦେବଗଣ ଆପଣଙ୍କୁ ତାହା ପ୍ରଶ୍ନ କରନ୍ତି, ଏହି ନିମିତ୍ତ ଆପଣ ଦେବରାଜ୍ୟରେ ଦେବତାମାନଙ୍କର ଆଧିପତ୍ୟରେ ପ୍ରତିଷ୍ଠିତ ହୋଇଅଛନ୍ତି । ୨୫ । ହେ ସହସ୍ରାକ୍ଷ ! ଆମ୍ଭର ଏହି ତରୁ ତ୍ୟାଗ ବିଷୟରେ ଆପଣ ଉପଦେଶ ଦିଅନ୍ତୁ ନାହିଁ । ଆମ୍ଭେ ଚିରକାଳରୁ ଯାହାକୁ ଆଶ୍ରୟ କରି ଜୀବନ ଧାରଣ ବିଷୟରେ ସମର୍ଥ ହୋଇଅଛୁଁ, ଏତେବେଳେ ତାହାର ଅସାମର୍ଥ୍ୟ ସମୟରେ ତାହାକୁ କେଉଁପରି ପରିତ୍ୟାଗ କରିବୁଁ ? ୨୬ ।

ଧର୍ମାତ୍ମା ଇନ୍ଦ୍ର ତଦୀୟ ସୌମ୍ୟବାକ୍ୟ ଓ ଆନୃଶଂସ୍ୟ ଧର୍ମରେ ତୁଷ୍ଟ ଓ ହୃଷ୍ଟ ହୋଇ ଶୁକକୁ କହିଲେ, ( ୨୭ ) ହେ ଶୁକ ! ଆମ୍ଭେ ତୁମ୍ଭଠାରେ ପ୍ରସନ୍ନ ହେଲୁଁ, ଏତେବେଳେ ତୁମ୍ଭେ ବର ପ୍ରାର୍ଥନାକର । ତେତେବେଳେ ଧର୍ମପରାୟଣ ଶୁକ ସେହି ବୃକ୍ଷର ଅକ୍ଷୟ ଐଶ୍ୱର୍ଯ୍ୟମୟ ବରକୁ ପ୍ରାର୍ଥନା କଲା, ଅର୍ଥାତ୍ ସେ କହିଲା, ହେ ଦେବରାଜ ! ଏହି ବୃକ୍ଷ ପୂର୍ବବତ୍ ଫଳ ପୁଷ୍ପରେ ସୁଶୋଭିତ ହେଉ । ୨୮ ।

ଧର୍ମାତ୍ମା ଶୁକ ଏହିପରି ବର ପ୍ରାର୍ଥନା କଲାରୁ ଦେବରାଜ ତାହା-ଠାରେ ଶୀଳ, ସମ୍ପଦ ଓ ଦୃଢଭକ୍ତି ଥିବାର ଜାଣି ପ୍ରୀତିଯୁକ୍ତ ହୋଇ ସେହି ବୃକ୍ଷରେ ସତ୍ୱର ଅମୃତ ସେଚନ କଲେ । ୨୯ । ତତ୍ପରେ ସେହି ବୃକ୍ଷ ପୂର୍ବ ସଦୃଶ ମନୋହର ଶାଖା ପଲ୍ଲବ ଓ ଫଳ ସମୂହରେ ଆକୀର୍ଣ୍ଣ ହୋଇ ଶୁକର ଦୃଢଭକ୍ତିହେତୁରୁ ଶ୍ରୀମତୀ ଅର୍ଥାତ୍ ରମଣୀୟ ଶୋଭାକୁ ଧାରଣ-କଲା । ୩୦ । ହେ ମହାରାଜ ! ଶୁକ, ସେହି ଆନୃଶଂସ୍ୟ ଧର୍ମ ଦ୍ୱାରା ଓ ସେହି କର୍ମ ପ୍ରଭାବରେ ଆୟୁଃଶେଷ ସମୟରେ ଇନ୍ଦ୍ରଲୋକ ପ୍ରାପ୍ତହେଲା ।୩୧। ହେ ନରେନ୍ଦ୍ର ! ବୃକ୍ଷ ଯେଉଁପରି ଶୁକପକ୍ଷୀକି ପ୍ରାପ୍ତ ହୋଇଥିବାରୁ ସର୍ବାର୍ଥ ସିଦ୍ଧିକି ଲଭିକଲା; ମନୁଷ୍ୟ ଭକ୍ତିପରାୟଣ ସାଧୁଜନଙ୍କୁ ଆଶ୍ରୟ କଲେ, ସେହିପରି ସର୍ବାର୍ଥ ସିଦ୍ଧି ଲଭ କରନ୍ତି । ୩୨ ।

ଶୁକ ବାସବ ସମ୍ବାଦେ ପଞ୍ଚମ ଅଧ୍ୟାୟ ସମାପ୍ତ । ୫ ।

# ଷଷ୍ଠ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ସର୍ବଶାସ୍ତ୍ର ବିଶାରଦ ! ହେ ମହାପ୍ରାଜ୍ଞ ପିତାମହ ! ଆମ୍ଭେ ପଚାରୁଅଛୁଁ, ଦୈବ ଓ ପୁରୁଷକାର—ଏହି ଦୁହିଙ୍କ ମଧ୍ୟରେ କିଏ ଶ୍ରେଷ୍ଠତର ? ୧ । ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ଏହି ବିଷୟରେ ବ୍ରହ୍ମା ଓ ବଶିଷ୍ଠଙ୍କର ସମ୍ବାଦରୂପ ଗୋଟିଏ ପୁରାତନ ଇତିହାସ କହୁଅଛୁଁ ଶ୍ରବଣକର । ୨ । ପୂର୍ବକାଳରେ ଭଗବାନ୍ ବଶିଷ୍ଠ ଦୈବ ମାନୁଷ ଅର୍ଥାତ୍ ଦୈବ ଓ ପୌରୁଷ ଏହି ଉଭୟ କର୍ମ ମଧ୍ୟରେ କିଏ ଅଧିକ ଶ୍ରେଷ୍ଠ ବୋଲି ପିତାମହଙ୍କୁ ପଚାରିଥିଲେ । ୩ । ହେ ରାଜନ ! ପଦ୍ମଜାତ ଦେବଦେବ ପିତାମହ ମଧୁର ସ୍ୱରରେ ଅର୍ଥଯୁକ୍ତ ସହେତୁକ ବାକ୍ୟ କହିଲେ । ୪ । ବ୍ରହ୍ମା କହିଲେ, ହେ ମହର୍ଷେ ! ବୀଜ ବ୍ୟତିରେକେ କୌଣସି ଦ୍ରବ୍ୟ ବା ଫଳ ଉତ୍ପନ୍ନ ହୁଏନାହିଁ, ବୀଜରୁ ବୀଜ ଏବଂ ବୀଜରୁ ଫଳ ଉତ୍ପନ୍ନ ହୁଏ । ୫ । କର୍ଷକ କ୍ଷେତ୍ରରେ ଯେ ଯେଉଁପରି ବୀଜ ବପନ କରେ, ସେ ସେହିପରି ଫଳପ୍ରାପ୍ତ ହୁଏ । ତଦ୍‌ବତ୍ ମନୁଷ୍ୟଗଣ ସୁକୃତ ଓ ଦୁଷ୍କୃତ ଏହି ଉଭୟ ମଧ୍ୟରେ ଯାଦୃଶ କର୍ମର ଅନୁଷ୍ଠାନ କରନ୍ତି, ସେମାନଙ୍କର ତଦନୁରୂପ ଫଳଲାଭ ହୁଏ । ୬ । ଯେଉଁପରି ଉପଯୁକ୍ତ କ୍ଷେତ୍ର ବ୍ୟତିରେକେ ରୋପିତ ବୀଜ ନିଷ୍ଫଳ ହୁଏ, ତଦ୍‌ବତ୍ ପୁରୁଷକାର ବ୍ୟତିରେକେ ଦୈବ ସିଦ୍ଧ ହୁଏ ନାହିଁ । ୭ । ପଣ୍ଡିତମାନେ ପୁରୁଷକାରକୁ କ୍ଷେତ୍ର ଏବଂ ଦୈବକୁ ବୀଜ ବୋଲି କହନ୍ତି । କ୍ଷେତ୍ର ଓ ବୀଜ ଏହି ଉଭୟର ଏକତ୍ର ସମାଗମ ହେଲେ ଫଳ ଉତ୍ପନ୍ନ ହୁଏ । ୮ ।

କର୍ତ୍ତା କେବଳ ଅନୁଷ୍ଠିତ କାର୍ଯ୍ୟର ଫଳ ଭୋଗ କରନ୍ତି । ନରବୃନ୍ଦ ଯେ ପୁଣ୍ୟ କାର୍ଯ୍ୟ ବଳରେ ସୁଖ; ଏବଂ ପାପ କର୍ମ ପ୍ରଭାବରେ ଦୁଃଖ ଭୋଗ କରନ୍ତି, ଇହଲୋକରେ ତାହାର ପ୍ରମାଣ ପ୍ରତ୍ୟକ୍ଷ ହେଉଅଛି । କର୍ମର ଅନୁଷ୍ଠାନ କଲେ ଅବଶ୍ୟ ତାହାର ଫଳଲାଭ ହୁଏ କିନ୍ତୁ କର୍ମର ଅନୁଷ୍ଠାନ ନ କଲେ କିଛିମାତ୍ର ଫଳଲାଭର ସମ୍ଭାବନା ଥାଏ ନାହିଁ । ୧୧ । କାର୍ଯ୍ୟକୁଶଳ ବ୍ୟକ୍ତିମାନେ ସବୁଠାରେ ପ୍ରତିଷ୍ଠା ଲାଭ କରି ପାରନ୍ତି, କିନ୍ତୁ ଅକୃତକର୍ମା ବ୍ୟକ୍ତିଗଣ ତହିଁରୁ ବଞ୍ଚିତ ହୋଇ ଅସହନୀୟ ଯନ୍ତ୍ରଣା

ଅନୁଭବ କରନ୍ତି । ଏହା ପ୍ରସିଦ୍ଧ ହୋଇଅଛି ଯେ ତପୋନୁଷ୍ଠାନ କଲେ ରୂପସୌଭାଗ୍ୟ ଓ ବିବିଧ ରତ୍ନ ଲାଭହୁଏ, ଫଳତଃ କର୍ମାନୁଷ୍ଠାନ କରି ପାରିଲେ କିଛି ଦୁର୍ଲ୍ଲଭ ହୁଏନାହିଁ । କିନ୍ତୁ କର୍ମ ପରିତ୍ୟାଗ ପୂର୍ବକ କେବଳ ଦୈବବଳ ଅବଲମ୍ବନ କଲେ କିଛି ଲାଭ ହୁଏନାହିଁ ।୧୧। ମନୁଷ୍ୟ କେବଳ ନିଜକୃତ ପୁରୁଷକାର ଦ୍ୱାରା ସ୍ୱର୍ଗଭୋଗ, ସଦାଚାର ଓ ମନୀଷିତା ପ୍ରଭୃତି ସବୁ ଲାଭ କରିପାରନ୍ତି ।୧୩। ଜ୍ୟୋତିର୍ମଣ୍ଡଳ, ନାଗଗଣ, ଯକ୍ଷଗଣ, ଚନ୍ଦ୍ର, ସୂର୍ଯ୍ୟ ଓ ପବନ ପ୍ରଭୃତି ଦେବତାବୃନ୍ଦ ପୁରୁଷକାର ପ୍ରଭାବରେ ନରଲୋକରୁ ଦେବଲୋକକୁ ଗମନ କରିଅଛନ୍ତି ।୧୪। ଅକୃତକର୍ମା ବ୍ୟକ୍ତିଗଣ କଦାପି ଅର୍ଥ, ମିତ୍ରବର୍ଗ, କୁଳର ଉପଯୁକ୍ତ ଐଶ୍ୱର୍ଯ୍ୟ ଓ ଦୁର୍ଲ୍ଲଭଶ୍ରୀ ଅର୍ଥାତ୍ ସୌନ୍ଦର୍ଯ୍ୟ ରୂପକୁ ଲାଭକରି ପାରନ୍ତି ନାହିଁ ।୧୫। ବ୍ରାହ୍ମଣଗଣ ଶୌଚ, କ୍ଷତ୍ରିୟକୁଳ ପରାକ୍ରମ, ବୈଶ୍ୟମାନେ ପୌରୁଷ ଓ ଶୂଦ୍ରମାନେ ସେବାଦ୍ୱାରା ସମ୍ପତ୍ତିଲାଭ କରନ୍ତି ।୧୬। କୃପଣ, ଅଳସ, ନିଷ୍କର୍ମା, କୁକର୍ମା, ପରାକ୍ରମହୀନ ଓ ତପସ୍ୟା ପରାଙ୍ମୁଖ ବ୍ୟକ୍ତିମାନେ କଦାପି ସମ୍ପତ୍ତିଲାଭ କରିପାରନ୍ତି ନାହିଁ ।୧୭। ଯେଉଁ ଭଗବାନ ବିଷ୍ଣୁ ଦେବାସୁର ସଂକୁଳ ତ୍ରିଭୁବନର ସୃଷ୍ଟି କରିଅଛନ୍ତି, ସେ ମଧ୍ୟ ସମୁଦ୍ରରେ ଶୟନ ପୂର୍ବକ ତପସ୍ୟା କରୁଅଛନ୍ତି ।୧୮। କର୍ମାନୁଷ୍ଠାନ କଲାରୁ ଯଦି ତାହାର ଫଳ ହେଉନଥାନ୍ତା, ତେବେ କେହି ସୁଦ୍ଧା ତାହାର ଅନୁଷ୍ଠାନ କରନ୍ତେ ନାହିଁ । ସୁତରାଂ ସମସ୍ତେ ଦୈବ ଉପରେ ନିର୍ଭର କରି ନିଶ୍ଚିନ୍ତ ରହିଥାନ୍ତେ ।୧୯।

ଯେଉଁ ବ୍ୟକ୍ତି ମାନୁଷ କର୍ମାନୁଷ୍ଠାନ ନ କରି କେବଳ ଦୈବକୁ ଅପେକ୍ଷା କରନ୍ତି, ତାହାଙ୍କ ସମସ୍ତ ପରିଶ୍ରମ କାମିନୀର ନପୁଂସକ ପତିର ସହବାସ ପରି ବ୍ୟର୍ଥହୁଏ ।୨୦। ଦୈବ ପ୍ରତିକୂଳ ହେଲେ ଇହଲୋକରେ ନାନାବିଧ ଦୁରବସ୍ଥା ଉପସ୍ଥିତ ହୁଏ । କିନ୍ତୁ ପୁରୁଷକାରର ହାନିହେଲେ ପରକାଳରେ ଅଶେଷ ଅମଙ୍ଗଳ ହୁଏ । ପୁରୁଷକାର ପ୍ରଭାବରେ କର୍ମାନୁଷ୍ଠିତ ହେଲେ, ତାହା ଅନାୟାସରେ ଦୈବଙ୍କ ଅନୁସରଣ କରେ କିନ୍ତୁ ପୁରୁଷ କର୍ମାନୁଷ୍ଠାନ ବ୍ୟତିରେକେ ଦୈବ ସ୍ୱୟଂ କଦାପି କିଛିମାତ୍ର ପ୍ରଦାନ କରି ପାରନ୍ତି ନାହିଁ ।୨୨। ଦେବଲୋକର ସ୍ଥାନ ସମୂହ ଅନିତ୍ୟ ବୋଲି ସ୍ଥିର କରାଯାଇଥିବାରୁ ଦେବତାମାନେ ଯେ କର୍ମର ଅଧୀନ, ତଦ୍ ବିଷୟରେ କିଛି

ସନ୍ଦେହ ନାହିଁ । ତାରା ରୂପୀ ଦେବତାମାନଙ୍କର ଅଧଃପାତ ଦେଖାଯାଉଥିବାରୁ ଇନ୍ଦ୍ରାଦି ଲୋକମାନେ ଅନିତ୍ୟବୋଲି ଜଣାଯାଉଅଛନ୍ତି । ୨୩ । ଦେବତାଗଣ ଇହଲୋକରେ କାହାରି ସୁଦ୍ଧା ପୁଣ୍ୟରୂପ କର୍ମକୁ ଅନୁମୋଦନ କରନ୍ତି ନାହିଁ । ଫଳତଃ ସ୍ୱୀୟ ପରାଭବ ଶଙ୍କାରେ ଧର୍ମକର୍ମର ମହାବିଘ୍ନ ଉତ୍ପାଦନ କରନ୍ତି । ୨୪ । ଦେବତାଗଣ ମହର୍ଷିମାନଙ୍କ ତପସ୍ୟାର ବିଘ୍ନ ଆଚରଣ କରନ୍ତି ; କିନ୍ତୁ ମହର୍ଷିଗଣ ମଧ୍ୟ ତପସ୍ୟାବଳରେ ଦେବଗଣଙ୍କୁ ପରାଭବ ଦିଅନ୍ତି । ଏହିପରି ଯଦି ମଧ୍ୟ ପୁରୁଷକାରର ପ୍ରାଧାନ୍ୟ ନିର୍ଦ୍ଦେଶ କରାଯାଇଅଛି, ତଥାପି ଦୈବଙ୍କୁ ନିତାନ୍ତ ତୁଚ୍ଛ ଜ୍ଞାନ କରିବାର ବିଧେୟ ନୁହେଁ । ୨୫ ।

ଦୈବଲୋକର କର୍ମ ବିଷୟରେ ପ୍ରବୃତ୍ତି ଜନ୍ମାଇବାର କାରଣ, ଲୋକମାନେ ଦୈବ ପ୍ରଭାବରେ କର୍ମରେ ପ୍ରବୃତ୍ତ ହୋଇ ପରଲୋକରେ ଉତ୍କୃଷ୍ଟ ଫଳ ଭୋଗକରନ୍ତି ।୨୬। ଦୈବ ଉପରେ ନିର୍ଭର କରିବାର ଉଚିତ ନୁହେଁ, ଆତ୍ମା କେବଳ ଆପଣାର ଶତ୍ରୁ ଓ ମିତ୍ର, ଆତ୍ମା କେବଳ ପାପ ଓ ପୁଣ୍ୟର ସାକ୍ଷୀ । ୨୭ । ଯେଉଁ ବ୍ୟକ୍ତିର ପୁଣ୍ୟ ଦ୍ୱାରା ପାପ ଓ ପାପଦ୍ୱାରା ପୁଣ୍ୟ ନଷ୍ଟହୁଏ ସେ ପୁଣ୍ୟର ଫଳ ସ୍ୱରୂପ ସ୍ୱର୍ଗର ସୁଖ ଓ ପାପର ଫଳ ସ୍ୱରୂପ ନରକର ଦୁଃଖ ଭୋଗ କରେନାହିଁ । ୨୮ । ମନୁଷ୍ୟ ପୁଣ୍ୟ ସମୂହ ଦ୍ୱାରା ପୁଣ୍ୟ ସ୍ୱରୂପ ସମସ୍ତ ଦେବଲୋକମାନଙ୍କୁ ପ୍ରାପ୍ତହୁଏ । ଦୈବ, ପୁଣ୍ୟଶୀଳ ଲୋକକୁ ପ୍ରାପ୍ତ ହୋଇ ତାହାର କିଛି କ୍ଷତି କରି ପାରନ୍ତି ନାହିଁ । ୨୯ ।

ସ୍ୱର୍ଗଭ୍ରଷ୍ଟ ପୃଥିବୀରେ ନିପତିତ ଧର୍ମଚ୍ୟୁତ ଯଯାତି ପୁଣ୍ୟକର୍ମା ଦୌହିତ୍ରମାନଙ୍କ ଦ୍ୱାରା ପୁନଶ୍ଚ ସ୍ୱର୍ଗାରୂଢ଼ ହୋଇଥିଲେ । ପୂର୍ବକାଳରେ ମହୀପତି ରାଜର୍ଷି ପୁରୁରବା ଦ୍ୱିଜମାନଙ୍କ ଦ୍ୱାରା ପରାସ୍ତ ହୋଇ ଓ ଏଳ ନାମରେ ଖ୍ୟାତି ଲାଭ କରି ସ୍ୱର୍ଗଗାମୀ ହେଲେ । ୩୧ । କୋଶଳାଧିପତି ମହାରାଜ ସୌଦାସ ନାନାବିଧ ଅଶ୍ୱମେଧ ଯାଗ ସମୂହ ଦ୍ୱାରା ସତ୍କୃତ ହୋଇ ସୁଦ୍ଧା ମହର୍ଷି ବଶିଷ୍ଠଙ୍କ ଶାପରେ ରାକ୍ଷସତ୍ୱକୁ ପ୍ରାପ୍ତ ହୋଇଥିଲେ ।୩୨। ଅଶ୍ୱତ୍ଥାମା ଓ ପରଶୁରାମ ଏହି ଧନୁର୍ଦ୍ଧର ମୁନିପୁତ୍ର ଦୁହେଁ ନିଜ କର୍ମ ଦୋଷରେ ସ୍ୱର୍ଗଲୋକକୁ ଯାଇ ପାରିଲେ ନାହିଁ । ୩୩ । ଦ୍ୱିତୀୟ ଇନ୍ଦ୍ର ତୁଲ୍ୟ ନରପାଳ ବସୁ ଶତ ସଂଖ୍ୟକ ଯଜ୍ଞର ଅନୁଷ୍ଠାନ କରି ସୁଦ୍ଧା ଗୋଟିଏ

ମିଥ୍ୟାବାକ୍ୟ ଦ୍ୱାରା ରସାତଳକୁ ଗମନକଲେ । ୩୪ । ବିରୋଚନ ପୁତ୍ର ବଳି ଦେବତାମାନଙ୍କ ଧର୍ମପାଶରେ ବଦ୍ଧହୋଇ ବିଷ୍ଣୁଙ୍କ ପୁରୁଷକାର ଦ୍ୱାରା ପାତାଳରେ ବାସକଲେ । ୩୫ ।

ତେଜୀୟାନ୍ ବ୍ୟକ୍ତିମାନେ ପାପରେ ଦୋଷୀ ହୁଅନ୍ତିନାହିଁ । ଏହାର ଉଦାହରଣ, ଜନମେଜୟ ଦେବରାଜଙ୍କୁ ପଦାଘାତ କରିବା ନିମିତ୍ତ ଉଦ୍ୟତ ହୋଇଥିଲେ ଓ ଦ୍ୱିଜସ୍ତ୍ରୀମାନଙ୍କ ପ୍ରାଣ ସଂହାର କରିଥିଲେ, ତଥାପି ତାହାଙ୍କୁ ଦୈବ ଦଣ୍ଡବିଧାନ କରିବାକୁ ସମର୍ଥ ହେଲେନାହିଁ । ୩୬ । ବ୍ରହ୍ମର୍ଷି ବୈଶମ୍ପାୟନ ଅଜ୍ଞାନ ବଶରେ ବ୍ରହ୍ମହତ୍ୟା ଓ ବାଳକ ବଧ ପାପରେ ଲିପ୍ତ ହୋଇଥିଲେ, ତଥାପି ଦୈବ ତାହାଙ୍କୁ ଦଣ୍ଡବିଧାନ କରିବା ନିମିତ୍ତ ସମର୍ଥ ହେଲେନାହିଁ । ୩୭ । "ପୁଣ୍ୟ ମଧ୍ୟ କୌଣସି ବ୍ୟକ୍ତିମାନଙ୍କର ପରିତ୍ରାଣର କାରଣ ହୁଏନାହିଁ" । ଏହାର ଉଦାହରଣ, ପୂର୍ବକାଳରେ ରାଜର୍ଷି ନୃଗ, ମହାଯଜ୍ଞରେ ଭ୍ରାନ୍ତି କ୍ରମରେ ଜଣେ ବ୍ରାହ୍ମଣଙ୍କୁ ଅନ୍ୟ ବ୍ୟକ୍ତିର ଗୋ ପ୍ରଦାନ କରିଥିଲେ ବୋଲି କୃକଲାଶ (ଏଣ୍ଡୁଅ) ହୋଇଥିଲେ । ୩୮ ।

ରାଜର୍ଷି ଧୁନ୍ଧୁମାର ଗିରିବ୍ରଜପୁରରେ ବହୁକାଳ ପର୍ଯ୍ୟନ୍ତ ଯଜ୍ଞାନୁଷ୍ଠାନ ଦ୍ୱାରା ବୃଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ, ତଥାପି ସେ ଯଜ୍ଞର ଫଳ ସ୍ୱରୂପ ଦେବତାମାନଙ୍କ ବର ପ୍ରାପ୍ତ ନ ହୋଇ ଗିରିବ୍ରଜରେ ଶୟନ କରିଥିଲେ । । ୩୯ । ମହାବଳ ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ପାଣ୍ଡବମାନଙ୍କ ରାଜ୍ୟ ଅପହରଣ କରିଥିଲେ, ସେମାନେ ଦୈବବଳ ବ୍ୟତିରେକେ କେବଳ ଭୁଜବଳ ଦ୍ୱାରା ପୁନଶ୍ଚ ତାହା ପ୍ରାପ୍ତହେଲେ । ୪୦ । ତପୋନିୟମ ସଂଯୁକ୍ତ ସଂଶିତ ବ୍ରତ ମୁନିଗଣ ଦୈବବଳକୁ ଅବଲମ୍ବନ ନ କରି, କେବଳ ତପସ୍ୟା ବଳରେ ଶାପ ପ୍ରଦାନ କରନ୍ତି । ୪୧ ।

ଇହଲୋକରେ ସୁଦୁର୍ଲ୍ଲଭ ସର୍ବପ୍ରକାର ଐଶ୍ୱର୍ଯ୍ୟ, ପାପାତ୍ମାମାନଙ୍କ ଅଧିକୃତ ହୋଇ ସୁଦ୍ଧା ଅବଳମ୍ବରେ ସେମାନଙ୍କୁ ତ୍ୟାଗକରେ । ଲୋଭ ମୋହ ପ୍ରାପ୍ତ ନରକୁ ଦୈବ ରକ୍ଷା କରନ୍ତିନାହିଁ । ଦୈବଙ୍କର କର୍ମାଧୀନତ୍ୱର ଉଦାହରଣ—ସୂକ୍ଷ୍ମ ଅଗ୍ନି ଯେଉଁପରି ପବନ ସାହାଯ୍ୟରେ ପ୍ରଜ୍ୱଳିତ ହୁଏ, ତଦ୍ବତ୍ ଦୈବ ପୁରୁଷକାର କର୍ମରେ ସମାଯୁକ୍ତ ହେଲେ ଉତ୍ତମରୂପେ

ପରିବଦ୍ଧ ତ ହୁଏ । ୪୩ । ତୈଳ କ୍ଷୟହେଲେ ଯେଉଁପରି ଦୀପର ଶିଖା ହ୍ରାସହୁଏ, ସେହିପରି କର୍ମ କ୍ଷୟ ହେତୁରୁ ଦୈବ ହ୍ରାସହୁଏ । ୪୪ । ଇହଲୋକରେ କର୍ମହୀନ ବ୍ୟକ୍ତି ବିପୁଳ ଐଶ୍ୱର୍ଯ୍ୟ ବିବିଧ ଭୋଗ୍ୟବସ୍ତୁ ଓ ସ୍ତ୍ରୀ ସମୂହ ପ୍ରାପ୍ତ ହୋଇ ସୁଦ୍ଧା ତାହାସବୁ ଭୋଗ କରିବାକୁ ସମର୍ଥ ହୁଏନାହିଁ, କିନ୍ତୁ ଉଦ୍‌ଯୋଗ ପରାୟଣ ମହାତ୍ମା ପୁରୁଷ ପୁରୁଷକାର ପ୍ରଭାବରେ ପାତାଳଗତ ଦେବରକ୍ଷିତ ରତ୍ନକୁ ମଧ୍ୟ ଲାଭକରି ପାରନ୍ତି । ୪୫ ।

ମନୁଷ୍ୟ ଲୋକ ଅପେକ୍ଷା ଦେବଲୋକ ଶ୍ରେଷ୍ଠ, ଏ ବିଷୟରେ ସନ୍ଦେହ ନାହିଁ । ଦାନଶୀଳ ସଜ୍ଜନ ବ୍ୟକ୍ତିମାନେ ନିର୍ଦ୍ଧନ ହେଲେ ସୁଦ୍ଧା ଦେବତାମାନେ ସେମାନଙ୍କୁ ପୁରୁଷକାର ଦ୍ୱାରା ଆଶ୍ରୟ କରି ଉତ୍କୃଷ୍ଟ ସ୍ୱର୍ଗ-ଫଳ ପ୍ରଦାନ କରନ୍ତି । ଦେବତାମାନେ ମନୁଷ୍ୟମାନଙ୍କ ବିବିଧ ରତ୍ନ ଭୂଷିତ ଗୃହକୁ ମଧ୍ୟ ଶ୍ମଶାନ ଭୂମି ସଦୃଶ ଜ୍ଞାନକରନ୍ତି । ୪୬ । ଇହଲୋକରେ ପୁରୁଷକାର କର୍ମବିହୀନ ବ୍ୟକ୍ତିମାନେ ଦୈବବଳରେ କଦାପି ତୃପ୍ତ ହୁଅନ୍ତି ନାହିଁ ଏବଂ ଯେଉଁମାନେ କୁପଥରେ ପଦାର୍ପଣ କରନ୍ତି ଦୈବ ସେମାନଙ୍କୁ ପୁରୁଷକାରର ସାହାଯ୍ୟ ବ୍ୟତିରେକେ କଦାପି ନିବାରଣ କରିପାରନ୍ତିନାହିଁ । ସୁତରାଂ ଦୈବଙ୍କର ପ୍ରଭୁତ୍ୱ ନାହିଁ, ଶିଷ୍ୟ ଯେଉଁପରି ଗୁରୁଙ୍କର ଅନୁଗମନ କରନ୍ତି, ସେହିପରି ପୁରୁଷକାର ଦୈବଙ୍କୁ ନିରନ୍ତର ଅନୁସରଣ କରେ ।୪୭। ହେ ମୁନିଶ୍ରେଷ୍ଠ ! ଆମ୍ଭେ ଯୋଗବଳରେ ତୁମ୍ଭଙ୍କୁ ପୁରୁଷକାରର ସମୁଦାୟ ଅକ୍ଷୟଫଳ କହିଲୁଁ । ୪୮ । ଲୋକମାନେ ପୂର୍ବକୃତ କର୍ମ ଜନିତ ଦୈବଙ୍କ ଅନୁକୂଳତା ପ୍ରଭାବରେ ଐହିକ ସୁଖ ଓ ଇହଲୋକକୃତ ଶାସ୍ତ୍ରାନୁଯାୟି ସତ୍‌କର୍ମ ପ୍ରଭାବରେ ସ୍ୱର୍ଗଲୋକ ପ୍ରାପ୍ତ ହୁଅନ୍ତି । ୪୯ ।

ଦୈବ ଓ ପୁରୁଷକାର ନିର୍ଦ୍ଦେଶେ ଷଷ୍ଠ ଅଧ୍ୟାୟ ସମାପ୍ତ । ୬ ।



## ସପ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ସାଧୁଶ୍ରେଷ୍ଠ ଭରତସିଂହ ! ଆମ୍ଭେ ପଚାରୁଅଛୁଁ, ଲୋକମାନେ ଯେଉଁସବୁ ଶୁଭକର୍ମର ଅନୁଷ୍ଠାନ କରନ୍ତି, ଆପଣ ସେହି ସମୁଦାୟର ଫଳ କୀର୍ତ୍ତନ କରିବାହେଉନ୍ତୁ । ୧ ।

ସାକ୍ଷୀ କହିଲେ, ହେ ଭାରତ ! ଯୁଧିଷ୍ଠିର ! ତୁମ୍ଭେ ଆମ୍ଭଙ୍କୁ ଯାହା ପ୍ରଶ୍ନକଲ ତାହା ଋଷିମାନଙ୍କର ଗୋପନୀୟ । ଦେହାନ୍ତରରେ ଯାହାର ଯେଉଁ ଗତି ଲାଭହୁଏ ତାହା ବିସ୍ତାରିତ ରୂପେ କୀର୍ତ୍ତନ କରୁଅଛୁଁ, ଶ୍ରବଣ କର । ମନୁଷ୍ୟ ଯେଉଁ ଯେଉଁ ଶରୀରରେ, ଯେଉଁ ଯେଉଁ ଅବସ୍ଥାରେ, ଯେଉଁ ଯେଉଁ କର୍ମର ଅନୁଷ୍ଠାନ କରନ୍ତି, ସେ ପରଜନ୍ମରେ ସେହି ସେହି ଶରୀରରେ, ସେହି ସେହି ଅବସ୍ଥାରେ, ସେହି ସେହି କର୍ମର ଫଳ ଭୋଗକରନ୍ତି । ଫଳ ଭୋଗ ବ୍ୟତିରେକେ କର୍ମ କଦାପି ବିନଷ୍ଟ ହୁଏନାହିଁ । ପଞ୍ଚଇନ୍ଦ୍ରିୟ ଓ ଆତ୍ମା, ସେହି କର୍ମର ସାକ୍ଷୀ ସ୍ୱରୂପ ଅଟନ୍ତି । ଅଭ୍ୟାଗତ ବ୍ୟକ୍ତିର କାର୍ଯ୍ୟସାଧନ ନିମିତ୍ତ ଚକ୍ଷୁ ଓ ମନକୁ ନିଯୋଗ କରିବାର, ତାହାର ତୁଷ୍ଟି ସମ୍ପାଦନ ନିମିତ୍ତ ମିଷ୍ଟବାକ୍ୟ ପ୍ରୟୋଗ କରିବାର ଏବଂ ତାହାର ଅନୁଗମନ ଓ ଉପାସନା କରିବାର ଗୃହସ୍ଥର ଉଚିତ । ଯେଉଁ ଗୃହସ୍ଥ ଏହି ପାଞ୍ଚ କର୍ମର ଅନୁଷ୍ଠାନ କରନ୍ତି, ସେ ପଞ୍ଚ ଦକ୍ଷିଣ ଯଜ୍ଞର ଅନୁଷ୍ଠାନ କରନ୍ତି ।

ପଥପରିଶ୍ରାନ୍ତ ଅଦୃଷ୍ଟପୂର୍ବ ପଥିକଙ୍କୁ ସୁସ୍ୱାଦୁ ଅନ୍ନ ପ୍ରଦାନ କଲେ ପ୍ରଚୁର ଫଳ ଲାଭହୁଏ । ଅଗ୍ନିହୋତ୍ରୀର ନିକଟରେ ଶୟନକାରୀ ଏବଂ ସ୍ଥଣ୍ଡିଳଶାୟୀମାନଙ୍କୁ ଗୃହ ଏବଂ ଶଯ୍ୟା, ଚୀର ବଲ୍‌କଳ ପରିଧାୟୀମାନଙ୍କୁ ବସ୍ତ୍ର ଓ ଆଭରଣ ଏବଂ ଯୋଗ ନିଯୁକ୍ତ ତପୋଧନମାନଙ୍କୁ ଯାନ ଓ ବାହନ ପ୍ରଦାନ କଲେ ରାଜାର ପୌରୁଷ ଲାଭହୁଏ । ୯ । ମନୁଷ୍ୟ ସର୍ବପ୍ରକାର ରସଲାଳସା ପରିତ୍ୟାଗ କଲେ ସୌଭାଗ୍ୟଶାଳୀ ହୁଏ ଏବଂ ଆମିଷ ପରିତ୍ୟାଗ କଲେ ପଶୁ ଓ ପୁତ୍ରଲାଭ କରେ । ୧୦ । ଯେ ଅଧୋମୁଖରେ ବୃକ୍ଷରେ ଲମ୍ବମାନ ହୁଏ, ଯେ ଜଳରେ ବାସକରେ ଏବଂ ଯେ ସର୍ବଦା ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣ କରିଥାଏ, ସେ ଅଭୀଷ୍ଟ ଗତି ପ୍ରାପ୍ତହୁଏ । ୧୧ । ଅତିଥି ସତ୍କାର ନିମିତ୍ତ ପାଦ୍ୟ, ଆସନ, ପ୍ରଦୀପ, ଅନ୍ନ ଓ ଗୃହ ପ୍ରଦାନ କରିବା କେବଳ ସଦକ୍ଷିଣ ପଞ୍ଚଯଜ୍ଞ । ଯେଉଁ ମନୁଷ୍ୟ ଯୁଦ୍ଧକ୍ଷେତ୍ରକୁ ଗମନ-ପୂର୍ବକ ସେଠାରେ ବୀରଶଯ୍ୟାରେ ଦୀର୍ଘକାଳ ଶୟନ କରେ, ସେ ସ୍ୱର୍ଗଗାମୀ ହୋଇ ଅକ୍ଷୟଲୋକ ଲାଭ କରେ । ୧୩ । ହେ ବିଶାଂପତେ ! ମନୁଷ୍ୟ ଦାନଦ୍ୱାରା ଧନ, ମୌନାବଲମ୍ବନ ଦ୍ୱାରା ଅପ୍ରତିହତ ଆଜ୍ଞା, ତପସ୍ୟାଦ୍ୱାରା ଉପଭୋଗ ଏବଂ ବ୍ରହ୍ମଚର୍ଯ୍ୟ ଦ୍ୱାରା ଜୀବନ ଲାଭ କରେ । ୧୪ । ଏବଂ

ଅହିଂସାଦ୍ୱାରା ସୌନ୍ଦର୍ଯ୍ୟ, ଐଶ୍ୱର୍ଯ୍ୟ ଓ ଆରୋଗ୍ୟରୂପ ଫଳ ଭୋଗକରେ । ଯେଉଁମାନେ କେବଳ ଫଳମୂଳ ଭକ୍ଷଣ କରନ୍ତି ସେମାନେ ରାଜ୍ୟପ୍ରାପ୍ତ ହୁଅନ୍ତି, ଯେଉଁମାନେ କେବଳ ପତ୍ର ଭକ୍ଷଣ କରନ୍ତି ସେମାନେ ସ୍ୱର୍ଗଗାମୀ ହୁଅନ୍ତି । ୧୫ । ହେ ରାଜନ୍ ! ଯେଉଁମାନେ ପ୍ରାୟୋପବେଶନ ଅର୍ଥାତ୍ ଆହାର ପ୍ରଭୃତି ପରିତ୍ୟାଗ କରନ୍ତି ସେମାନେ ସର୍ବତ୍ର ସୁଖଲାଭ କରନ୍ତି । ନର କେବଳ ଶାକ ଭକ୍ଷଣ କଲେ ଗୋଧନ, ତୃଣମାତ୍ର ଭକ୍ଷଣ କଲେ ସ୍ୱର୍ଗ, ସ୍ତ୍ରୀ ପରିତ୍ୟାଗ ପୂର୍ବକ ତିନବାର ସ୍ନାନ ଓ ବାୟୁ ଭକ୍ଷଣ କଲେ ଯଜ୍ଞଫଳ, ସତ୍ୟବାକ୍ୟ ପ୍ରୟୋଗ କଲେ ସ୍ୱର୍ଗ ଓ ଯଜ୍ଞରେ ଦୀକ୍ଷା ଗ୍ରହଣ କଲେ ଉତ୍କୃଷ୍ଟକୁଳ ଲାଭ କରନ୍ତି । ୧୭ ।

ବ୍ରାହ୍ମଣ ପବିତ୍ର ହୋଇ କେବଳ ଜଳପାନ ଓ ଅବିଚ୍ଛିନ୍ନ ଅଗ୍ନି-ହୋତ୍ରର ଅନୁଷ୍ଠାନ କଲେ ରାଜ୍ୟଲାଭ କରନ୍ତି ଓ ଅନଶନବ୍ରତ ଅବଲମ୍ବନ ପୂର୍ବକ ଗାୟତ୍ରୀ ପ୍ରଭୃତି ମନ୍ତ୍ରପାଠ ଦ୍ୱାରା ସ୍ୱର୍ଗଲୋକ ପ୍ରାପ୍ତ ହୁଅନ୍ତି । ୧୮ । ଦ୍ୱାଦଶ ବାର୍ଷିକ ଯଜ୍ଞରେ ଉପବାସ ଅର୍ଥାତ୍ ବ୍ରତ ସାଧନ ନିମିତ୍ତ କ୍ଷୀର ପ୍ରଭୃତି ଆହାର ଓ ଦ୍ୱାଦଶବର୍ଷ ତୀର୍ଥପର୍ଯ୍ୟଟନ କଲେ ବ୍ରହ୍ମଲୋକ ଲାଭହୁଏ । ୧୯ । ସମସ୍ତ ବେଦ ଅଧ୍ୟୟନ କଲେ ଦୁଃଖନାଶ ଓ ମାନସ ଧର୍ମର ଅନୁଷ୍ଠାନ କଲେ ସ୍ୱର୍ଗଲୋକ ଲାଭହୁଏ । ୨୦ ।

ନିର୍ବୋଧ ବ୍ୟକ୍ତିମାନେ ତାହାକୁ ପ୍ରାଣାନ୍ତରେ ସୁଦ୍ଧା ପରିତ୍ୟାଗ କରିପାରନ୍ତି ନାହିଁ, ଶରୀର ଜୀର୍ଣ୍ଣ ହେଲେ ସୁଦ୍ଧା ଯାହା ଜୀର୍ଣ୍ଣ ହୁଏ ନାହିଁ, ଯାହା ପ୍ରାଣର ନାଶକାରୀ ରୋଗ ବୋଲି ପରିକୀର୍ତ୍ତିତ, ସେହି ତୃଷ୍ଣାକୁ ଅକପଟରେ ପରିତ୍ୟାଗ କରିପାରିଲେ ସୁଖଲାଭ ହୁଏ । ୨୧ । ବତ୍ସ ଯେଉଁପରି ସହସ୍ର ସହସ୍ର ଧେନୁ ମଧ୍ୟରେ ଆପଣାର ମାତା ନିକଟକୁ ଗମନ କରେ, ସେହିପରି ପୂର୍ବଜନ୍ମକୃତ କର୍ମ ଜନ୍ମାନ୍ତରରେ କର୍ତ୍ତାକୁ ଅନୁଗତ ହୁଏ । ୨୨ । ଯେଉଁପରି ପୁଷ୍ପ ଓ ଫଳ ପ୍ରେରିତ ନ ହୋଇଥିଲେ ସୁଦ୍ଧା ଅର୍ଥାତ୍ ମନୁଷ୍ୟର ଅଭୀଷ୍ଟ ନୋହିଥିଲେ ମଧ୍ୟ ଯଥା ସମୟରେ ବିକସିତ ଓ ସୁପକ୍ୱ ହୁଏ, ସେହିପରି ପୂର୍ବକୃତ କର୍ମସମୂହ ପ୍ରକୃତ ସମୟକୁ ଅତିକ୍ରମ କରିପାରେ ନାହିଁ । ୨୩ ।

ଜରାଗ୍ରସ୍ତ ମନୁଷ୍ୟର କେଶସମୂହ ଜୀର୍ଣ୍ଣ, ଦନ୍ତାବଳୀ ଶୀର୍ଣ୍ଣ ଏବଂ କର୍ଣ୍ଣ ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟସମୂହ ବିକଳ ହୋଇଯାଆନ୍ତି, କିନ୍ତୁ ତାହାର ବିଷୟ ବାସନାର କିଛିମାତ୍ର ହ୍ରାସ ହୁଏ ନାହିଁ । ୨୪ ।

ମନୁଷ୍ୟ ଯେଉଁ କର୍ମଦ୍ୱାରା ପିତାଙ୍କୁ ପ୍ରୀତିଯୁକ୍ତ କରିପାରନ୍ତି, ସେହି କର୍ମରେ ପ୍ରଜାପତି ପ୍ରୀତ ହୁଅନ୍ତି; ଯେଉଁ କର୍ମଦ୍ୱାରା ମାତାଙ୍କର ପ୍ରୀତି ସମ୍ପାଦନ କରିପାରନ୍ତି, ତାହାଦ୍ୱାରା ପୃଥିବୀ ଦେବୀ ପୂଜିତା ହୁଅନ୍ତି, ଯେଉଁ କର୍ମଦ୍ୱାରା ଶିକ୍ଷକଙ୍କୁ ପ୍ରୀତିଯୁକ୍ତ କରନ୍ତି ତାହାଦ୍ୱାରା ବ୍ରହ୍ମ ପୂଜିତ ହୁଅନ୍ତି । । ୨୫ । ଯେଉଁ ବ୍ୟକ୍ତି ଏହି ତିନଗୋଟି ବିଷୟକୁ ବିଶେଷ ସମାଦରରେ ପ୍ରତିପାଳନ କରନ୍ତି, ସେ ସର୍ବଧର୍ମକୁ ପ୍ରତିପାଳନ କରନ୍ତି ଏବଂ ଯେଉଁ ବ୍ୟକ୍ତି ଏହି ତିନ ବିଷୟରେ ଆସ୍ଥା ପ୍ରଦର୍ଶନ ନ କରନ୍ତି, ତାହାଙ୍କର ସମସ୍ତ କ୍ରିୟା ନିଷ୍ଫଳ ହୁଏ । ୨୬ ।

ବୈଶମ୍ପାୟନ କହିଲେ, କୁରୁପୁଙ୍ଗବମାନେ ଋଷିଙ୍କର ଏହି ବଚନକୁ ଶୁଣି ବିସ୍ମିତ ହେଲେ ଏବଂ ପ୍ରୀତିଯୁକ୍ତ ଓ ଅତିଶୟ ହୃଷ୍ଟମନା ହେଲେ । । ୨୭ । ଜୟଲାଭ ନିମିତ୍ତ ମନ୍ତ୍ରପ୍ରୟୋଗ କଲେ, ଦକ୍ଷିଣା ଦାନ ବ୍ୟତିରେକେ ସୋମଯାଗର ଅନୁଷ୍ଠାନ କଲେ ଓ ମନ୍ତ୍ର ବିନା ହୋମ କଲେ ଯେଉଁ ପାପହୁଏ, କେବଳ ମିଥ୍ୟାବାକ୍ୟ କହିଲେ ସେହି ପାପହୁଏ । ୨୮ ।

ହେ ନୃପ ! ଋଷିବାକ୍ୟ ଅନୁସାରେ ଶୁଭାଶୁଭ ପ୍ରାପ୍ତି ବିଷୟରେ ଆମ୍ଭେ ତୁମ୍ଭଙ୍କୁ ଉପଦେଶ ପ୍ରଦାନ କଲୁ । ଏଥି ଉତ୍ତାରେ ଆଉ କେଉଁ ବିଷୟ ଶ୍ରବଣ କରିବା ନିମିତ୍ତ ଇଚ୍ଛୁକ ଅଛ । ୨୯ ।

କର୍ମଫଳିକ ଉପାଖ୍ୟାନେ ସପ୍ତମ ଅଧ୍ୟାୟ ସମାପ୍ତ ॥ ୭ ॥



## ଅଷ୍ଟମ ଅଧ୍ୟାୟ

ମହାତ୍ମା ଋଷି ଏହିରୂପେ ଧର୍ମ ସମ୍ବନ୍ଧୀୟ ବାକ୍ୟ ପ୍ରୟୋଗ କଲା ଉତ୍ତାରେ ଧର୍ମାତ୍ମା ଯୁଧିଷ୍ଠିର କହିଲେ ହେ ଭାରତ ! ଇହଲୋକରେ କେଉଁମାନେ ପୂଜନୀୟ ? କେଉଁମାନେ ନମସ୍କାରାର୍ହ ଓ ଆପଣ କେଉଁ-

ମାନଙ୍କୁ ନମସ୍କାର କରନ୍ତି ? ଆପଣଙ୍କର କେଉଁ ବ୍ୟକ୍ତି ପ୍ରିୟତମ ? ଏବଂ ବିପଦରେ ନିପତିତ ହେଲେ ଆପଣଙ୍କ ମନ କାହାପ୍ରତି ଧାବିତ ହୁଏ ? ଇହଲୋକରେ ଓ ପରଲୋକରେ କିଏ ହିତକାରକ ? ଏହିସବୁ ବିଷୟ ଆପଣ କହିବା ହେଉନ୍ତୁ । ୨ ।

ଭୀଷ୍ମ କହିଲେ ହେ ଯୁଧିଷ୍ଠିର ! ଯେଉଁମାନଙ୍କର ବ୍ରହ୍ମ ପରମଧନ, ଯେଉଁମାନେ ତପସ୍ୟା ଓ ସ୍ୱାଧ୍ୟାୟଲବ୍ଧ ଆତ୍ମପ୍ରତ୍ୟୟ ଦ୍ୱାରା ଅଶେଷ ଆନନ୍ଦ ଅନୁଭବ କରିପାରନ୍ତି, ଯେଉଁମାନଙ୍କ କୁଳରେ ବାଳକ ଓ ବୃଦ୍ଧ ପ୍ରଭୃତି ସମସ୍ତେ ପିତୃ ପିତାମହ ପ୍ରଭୃତି ପୁରୁଷମାନଙ୍କର ପରମ୍ପରାଗତ କାର୍ଯ୍ୟଭାରକୁ ଅକ୍ଳେଶରେ ବହନ କରନ୍ତି ଓ ବିଷାଦିତ ନୁହନ୍ତି, ଆମ୍ଭେ ସେହି ବ୍ରାହ୍ମଣମାନଙ୍କୁ ଅତ୍ୟନ୍ତ ସ୍ପୃହା କରୁଁ ଅର୍ଥାତ୍ ସେହିମାନେ ଆମ୍ଭର ପ୍ରିୟତମ ଅଟନ୍ତି । ୪ ।

ହେ ତାତ ! ଯେଉଁମାନେ ବିଦ୍ୟାଦ୍ୱାରା ବିନୟଯୁକ୍ତ, ଜିତେନ୍ଦ୍ରିୟ, ମୃଦୁଭାଷୀ, ସଚ୍ଚରିତ୍ର, ବ୍ରହ୍ମଜ୍ଞ, ବକ୍ତା, କ୍ଷୀର ନୀର ଭେଦକାରକ ହଂସ ସଦୃଶ ଆତ୍ମା ଓ ଅନାତ୍ମାର ବିବେଚକ; ଯେଉଁ ବ୍ରାହ୍ମଣମାନଙ୍କର ମେଘ ଗମ୍ଭୀର ସ୍ୱର ସଂଯୁକ୍ତ କର୍ଣ୍ଣର ସୁଖକର, ମଙ୍ଗଳଜନକ ବାକ୍ୟ ସଭା ମଧ୍ୟରେ ନୃପତିଙ୍କ ସାକ୍ଷାତରେ ଉଚ୍ଚାରିତ ହେଉଥାଏ, ସେହି ସମସ୍ତ ବାକ୍ୟ ଶ୍ରବଣ କଲେ ଇହଲୋକ ଓ ପରଲୋକରେ ସୁଖ ସମୃଦ୍ଧିର ବୃଦ୍ଧି ହୁଏ, ଯେଉଁମାନେ ସେହି ରାଜସଭାରେ ଉପବିଷ୍ଟ ହୋଇ ସେହି ବାକ୍ୟ ସବୁ ଶ୍ରବଣ କରନ୍ତି, ଆମ୍ଭେ ସେହି ସମସ୍ତ ଗୁଣିବ୍ୟକ୍ତିମାନଙ୍କୁ ଅତି ପ୍ରିୟ ବୋଲି ଜ୍ଞାନ କରୁଁ । ୮ ।

ହେ ଯୁଧିଷ୍ଠିର ! ଯେଉଁମାନେ ବ୍ରାହ୍ମଣମାନଙ୍କ ତୃପ୍ତିସାଧନ ନିମିତ୍ତ ପବିତ୍ର ମନରେ ସୁପକ୍ୱ ଶୁଦ୍ଧ ଗୁଣବନ୍ତ ଅନ୍ନମାନଙ୍କୁ ପ୍ରଦାନ କରନ୍ତି ( ୯ ) ଯେଉଁମାନେ ଯୁଦ୍ଧରେ ବୀରତ୍ୱ ପ୍ରଦର୍ଶନ କରିବାକୁ ବିଷର୍ଣ୍ଣ ନୁହନ୍ତି, ଅସୂୟା ବିହୀନ ହୋଇ ଦାନ କରନ୍ତି, ସେମାନେ ମୋର ପ୍ରିୟ । ଏହି ଜୀବଲୋକରେ ମହାବଳ ପରାକ୍ରାନ୍ତ ଅସଂଖ୍ୟ ବୀର ଅଛନ୍ତି, କିନ୍ତୁ ସେମାନଙ୍କ ମଧ୍ୟରେ ଦାନବୀର ସର୍ବାପେକ୍ଷା ଉତ୍କୃଷ୍ଟ । ୧୧ ।

ହେ ଯୁଧିଷ୍ଠିର ! ସତ୍‌କୁଳ ସମ୍ଭୂତ ଧର୍ମପରାୟଣ ତପସ୍ୱୀ ବିଦ୍ୱାନ୍ ବ୍ରାହ୍ମଣଙ୍କ କଥା ଅବା କଅଣ କହିବା, ଆମ୍ଭେ ଯଦି ସାମାନ୍ୟ ବ୍ରାହ୍ମଣ-କୁଳରେ ଜାତ ହୋଇଥାଆନ୍ତୁ, ତେବେ ଆପଣାକୁ କୃତାର୍ଥ ବୋଲି ବିବେଚନା କରନ୍ତୁ । ୧୨ । ହେ ପାଣ୍ଡୁନନ୍ଦନ ! ଇହଲୋକରେ ଅନ୍ୟାନ୍ୟ ସମସ୍ତଙ୍କ ଅପେକ୍ଷା ତୁମ୍ଭେ ଆମ୍ଭର ପ୍ରିୟ; କିନ୍ତୁ ହେ ଭରତ ଶ୍ରେଷ୍ଠ ! ବ୍ରାହ୍ମଣମାନେ ତୁମ୍ଭ ଅପେକ୍ଷା ମଧ୍ୟ ଆମ୍ଭର ପ୍ରିୟତର । ୧୩ । ହେ କୁରୁଶ୍ରେଷ୍ଠ ! ଆମ୍ଭେ ବ୍ରାହ୍ମଣମାନଙ୍କୁ ଯାଦୃଶ ପ୍ରିୟତର ବୋଲି ଜ୍ଞାନ କରୁଁ, ଆପଣଙ୍କୁ ପିତା, ପିତାମହ ଓ ଅନ୍ୟାନ୍ୟ ସୁହୃଦ ଜନମାନଙ୍କୁ ମଧ୍ୟ ତାଦୃଶ ଜ୍ଞାନ କରୁ ନାହିଁ ।

ହେ ଭରତ ଶ୍ରେଷ୍ଠ ! ପରନ୍ତପ ! ସଂପ୍ରତି ବାହ୍ମଣ ଭକ୍ତି ପ୍ରଭାବରେ ଶାନ୍ତନୁ ଯେଉଁ ଲୋକରେ ବିରାଜିତ ହୋଇ ଅଛନ୍ତି, ଆମ୍ଭେ ମଧ୍ୟ ସେହି ସ୍ଥାନକୁ ଗମନ କରିବୁଁ । ଆମ୍ଭେ ବ୍ରାହ୍ମଣର କୌଣସି ଅପକାର କଦାପି କରିନାହୁଁ, ଆମ୍ଭେ ବ୍ରାହ୍ମଣଗଣଙ୍କ ଉଦ୍ଦେଶ୍ୟରେ ଅଳ୍ପ ବା ଅଧିକ ପରିମାଣରେ କାୟିକ, ମାନସିକ, ଅଥବା ବାଚିକ ଯେଉଁ କିଛି ସତ୍‌କର୍ମ କରିଅଛୁ, ସେହି କାର୍ଯ୍ୟ ପ୍ରଭାବରେ ଆମ୍ଭେ ଶରଶଯ୍ୟାରେ ଶୟନ କରି-ଥିଲେ ସୁଦ୍ଧା ଆମ୍ଭର ଅନ୍ତଃକରଣରେ କିଛି ମାତ୍ର ଅନୁତାପର ସଂସ୍ପର୍ଶ ହେଉ ନାହିଁ । ଲୋକମାନେ ଆମ୍ଭଙ୍କୁ "ବ୍ରାହ୍ମଣ ପ୍ରିୟ ବୋଲି" ଆହ୍ୱାନ କରନ୍ତି, ଅତଏବ ଆମ୍ଭେ ସେହି ବାକ୍ୟଦ୍ୱାରା ପ୍ରୀତ ହେଉଥାଉଁ । ଫଳତଃ ବ୍ରାହ୍ମଣ ପ୍ରୀତି ଅପେକ୍ଷା ଇହଲୋକରେ ଉତ୍କୃଷ୍ଟ ପବିତ୍ର କାର୍ଯ୍ୟ ଆଉ କିଛି ନାହିଁ । ୧୮ । ହେ ତାତ ! ଆମ୍ଭେ ବ୍ରାହ୍ମଣମାନଙ୍କ ଦାସ, ଏହି କାରଣରୁ ଦେଖୁଅଛୁ ଯେ, ଆମ୍ଭେ ଅବିଳମ୍ବରେ ଅନନ୍ତକାଳ ନିମିତ୍ତ ପବିତ୍ର ନିର୍ମଳ ଲୋକ ସମୂହକୁ ଲଭ କରିବୁଁ । ୧୯ ।

ହେ ଯୁଧିଷ୍ଠିର ! ଇହଲୋକରେ ସ୍ତ୍ରୀମାନଙ୍କର ପତିସେବା ଯେଉଁ-ପରି ପରମ ଧର୍ମ, ପତି କେବଳ ପରମ ଦେବତା ଓ ପତି କେବଳ ପରମ ଗତି; କ୍ଷତ୍ରିୟମାନଙ୍କର ମଧ୍ୟ ବ୍ରାହ୍ମଣ ସେବା ତଦ୍‌ବତ୍ ପରମଧର୍ମ, ପରମ ଦେବତା ଓ ପରମ ଗତି । ୨୦ । ଯଦି କ୍ଷତ୍ରିୟ ଶତବର୍ଷବୟସ୍କ ଆଉ ବ୍ରାହ୍ମଣ ଦଶବର୍ଷୀୟ ହୁଅନ୍ତି, ତେବେ ସୁଦ୍ଧା ସେହି ଦୁହିଙ୍କ ମଧ୍ୟରେ ପିତା ପୁତ୍ର ସମ୍ବନ୍ଧ ରହିବ, ସୁତରାଂ ବ୍ରାହ୍ମଣ କେବଳ ଗୁରୁ ହେବେ । ୨୧ ।

ନାରୀ ଯେଉଁପରି ପତି ଅଭାବରେ ଦେବରଙ୍କୁ ପତିରୂପରେ ସ୍ୱୀକାର କରେ, ସେହିପରି ପୃଥିବୀ ଦେବୀ ବ୍ରାହ୍ମଣଙ୍କୁ ପ୍ରାପ୍ତ ନ ହୋଇ କ୍ଷତ୍ରିୟଙ୍କୁ ପତିଭାବରେ ବରଣ କରିଅଛନ୍ତି । ୨୨ । ହେ କୁରୁ ଶ୍ରେଷ୍ଠ ! ତୁମ୍ଭେ ବ୍ରାହ୍ମଣମାନଙ୍କୁ ପୁତ୍ର ସଦୃଶ ରକ୍ଷଣାବେକ୍ଷଣ କରିବ । ଗୁରୁ ସଦୃଶ ସେମାନଙ୍କ ଉପଦେଶବାକ୍ୟ ଶ୍ରବଣ କରିବ ଓ ଅଗ୍ନି ସଦୃଶ ସେମାନଙ୍କୁ ଅର୍ଚ୍ଚନା କରିବ । ୨୩ । ସରଳ ସ୍ୱଭାବ ସତ୍ୟଶୀଳ ସାଧୁ ପ୍ରକୃତି ସର୍ବଭୂତର ହିତାନୁଷ୍ଠାନକାରୀ ବ୍ରାହ୍ମଣମାନଙ୍କୁ କ୍ରୋଧଯୁକ୍ତ ସର୍ପ ସଦୃଶ ବିବେଚନା କରିବାର ଉଚିତ । ୨୪ । ହେ ଯୁଧିଷ୍ଠିର ! ତୁମ୍ଭେ ତେଜସ୍ୱୀ ଓ ତପସ୍ୱୀ ବ୍ରାହ୍ମଣମାନଙ୍କଠାରୁ ଭୟ ଲାଭ କରୁଥିବ । ସେମାନଙ୍କଠାରେ ସ୍ୱକୀୟ ତେଜ ଅର୍ଥାତ୍ କ୍ରୋଧବଳ, ତପ ଅର୍ଥାତ ଯୋଗବଳକୁ ପ୍ରୟୋଗ କରିବ ନାହିଁ । । ୨୫ ।

ବ୍ରାହ୍ମଣର ତପସ୍ୟାବଳ ଯେଉଁପରି ସର୍ବଶ୍ରେଷ୍ଠ, କ୍ଷତ୍ରିୟର ତେଜୋବଳ ମଧ୍ୟ ସେହିପରି ସର୍ବଶ୍ରେଷ୍ଠ ଅଟେ; ଏହି ଉଭୟବିଧ ବଳ ଅତି ଭୟଙ୍କର । ତପସ୍ୱୀ ବ୍ରାହ୍ମଣମାନେ କ୍ରୋଧାବିଷ୍ଟ ହେଲେ ଅନାୟାସରେ ତେଜୋବଳ ବିଶିଷ୍ଟ ଶତ୍ରୁମାନଙ୍କୁ ସଂହାର କରି ପାରନ୍ତି । ୨୬ । କ୍ଷତ୍ରିୟ ଉପକାର ନିରତ ଶାନ୍ତ ସ୍ୱଭାବ ବ୍ରାହ୍ମଣଙ୍କଠାରେ ଆପଣାର ତେଜୋବଳ ଓ ତପୋବଳ ପ୍ରଦର୍ଶନ କଲେ, ସେହି ବ୍ରାହ୍ମଣ ତାହାଙ୍କର ସେହି ଉଭୟ ବଳକୁ ନିଃଶେଷରେ ବିନଷ୍ଟ କରନ୍ତି ସଂଶୟ ନାହିଁ । ୨୭ । ଗୋପାଳ ଯେଉଁପରି ଦଣ୍ଡ ଗ୍ରହଣ ପୂର୍ବକ ଗୋ ସମୂହକୁ ପ୍ରତିଦିନ ରକ୍ଷା କରେ, କ୍ଷତ୍ରିୟ ସେହିପରି ଦଣ୍ଡଧାରଣପୂର୍ବକ ସର୍ବଦା ବେଦ ଓ ବ୍ରାହ୍ମଣମାନଙ୍କୁ ରକ୍ଷା କରିବେ । ୨୮ ।

ପିତା ଯେଉଁପରି ପୁତ୍ରମାନଙ୍କୁ ପ୍ରତିପାଳନ କରନ୍ତି ତୁମ୍ଭେ ସେହିପରି ଧର୍ମ ପରାୟଣ ବ୍ରାହ୍ମଣକୁଳର ରକ୍ଷଣାବେକ୍ଷଣ କରିବ ଏବଂ ସେମାନଙ୍କ ଗୃହରେ ଜୀବନ ରକ୍ଷାର ଉପଯୋଗୀ ଧନ ଅଛି କି ନାହିଁ, ତାହା ତତ୍ତ୍ୱାବଧାରଣ କରିବ ଓ ଅଭାବ ଥିଲେ ଅବଶ୍ୟ ଦେବ । ୨୯ ।

ଭୀଷ୍ମ କଣ୍ଟକେ ଅଷ୍ଟମ ଅଧ୍ୟାୟ ସମାପ୍ତ ॥ ୮ ॥

# ନବମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ପିତାମହ ! ହେ ମହାଦ୍ୟୁତେ ! ଯେଉଁ ଲୋକମାନେ ବ୍ରାହ୍ମଣମାନଙ୍କୁ ଅର୍ଥ ଦେବା ନିମିତ୍ତ ଅଙ୍ଗୀକାର କରି ମୋହବଶରେ ପ୍ରଦାନ କରନ୍ତି ନାହିଁ, ସେମାନେ କେଉଁ ଗତି ଲାଭ କରନ୍ତି ? । ୧ । ହେ ଧାର୍ମିକଶ୍ରେଷ୍ଠ ! ଯେଉଁ ଦୁରାତ୍ମା ଲୋକମାନେ ସ୍ୱୀକାର କରି ଦିଅନ୍ତି ନାହିଁ ସେମାନଙ୍କର ଧର୍ମକୁ ଯଥାର୍ଥରୂପେ ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୨ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ଯେଉଁ ବ୍ୟକ୍ତି ବ୍ରାହ୍ମଣମାନଙ୍କୁ ଅଳ୍ପ ଅବା ଅଧିକ ଧନ ଦେବା ବିଷୟରେ ଅଙ୍ଗୀକାର କରି ଦିଅନ୍ତି ନାହିଁ, ତାହାଙ୍କର ସମସ୍ତ ଆଶା କ୍ଳୀବ ବ୍ୟକ୍ତିର ସନ୍ତାନ ଆଶାପରି ବିଫଳା ହୁଏ । । ୩ । ହେ ଭାରତ ! ସେ ଜନ୍ମାବଧି ଯେଉଁ ତପସ୍ୟା, ଦାନ, ଯଜ୍ଞ, ପ୍ରଭୃତି ସୁକୃତର ଅନୁଷ୍ଠାନ କରିଥାଆନ୍ତି, ତାହାସବୁ ବିଫଳ ହୁଏ ( ୫ ) ବୋଲି ଧର୍ମଶାସ୍ତ୍ର ବିଶାରଦ ବ୍ୟକ୍ତିମାନେ ନିଜ ନିଜ ଉତ୍କୃଷ୍ଟ ବୁଦ୍ଧିରେ ବିଚାର କରି ଏହି କଥା କହନ୍ତି । ୬ । ଶ୍ୟାମବର୍ଣ୍ଣ ଏକସହସ୍ର ଅଶ୍ୱ ପ୍ରଦାନ କଲେ ସେ ଉକ୍ତ ପାପରୁ ମୁକ୍ତ ହୁଏ ବୋଲି ଧର୍ମଶାସ୍ତ୍ରଜ୍ଞ ପଣ୍ଡିତମାନେ କହନ୍ତି । ୭ । ପ୍ରତିଶ୍ରୁତ ହୋଇ ପ୍ରଦାନ ନ କରିବା ଉପଲକ୍ଷରେ ଆମ୍ଭେ ସମ୍ପ୍ରତି ଶୃଗାଳ ବାନର ସମ୍ବାଦ ରୂପ ଗୋଟିଏ ପୁରାତନ ଇତିହାସ କୀର୍ତ୍ତନ କରୁଅଛୁଁ । ୮ । ହେ ପରନ୍ତପ ! ସେ ଦୁହେଁ ପୂର୍ବରେ ମାନୁଷ ଜନ୍ମରେ ପରସ୍ପର ମିତ୍ରଥିଲେ, କିନ୍ତୁ ପ୍ରାଣାନ୍ତେ ଏକ ଶୃଗାଳୀ ଯୋନି, ଅପର ବାନରୀ ଯୋନିକି ପ୍ରାପ୍ତ ହେଲେ । ୯ ।

ଏକ ସମୟରେ ଗୋଟିଏ ଶୃଗାଳ ଶ୍ମଶାନ ମଧ୍ୟରେ ପୂତିଗନ୍ଧଯୁକ୍ତ ମାଂସ ଭକ୍ଷଣ କରୁଥିଲା, ସେତେବେଳେ ଗୋଟିଏ ବାନର ପୂର୍ବଜନ୍ମର ବୃତ୍ତାନ୍ତ ସ୍ମରଣପୂର୍ବକ ତାହାକୁ ଅବଲୋକନ କରି କହିଲା, ହେ ଶୃଗାଳ ! ତୁମ୍ଭେ ପୂର୍ବଜନ୍ମରେ କେଉଁ ଅତି ଦାରୁଣ ପାପକର୍ମ ଅନୁଷ୍ଠାନ କରିଥିଲ ଯେ ଏତେବେଳେ ସେହି ଦୋଷରେ ଶ୍ମଶାନ ମଧ୍ୟରେ ମୃତଜନ୍ତୁର ମାଂସ ଭକ୍ଷଣ କରୁଅଛ ।୧୧। ବାନର ଏହି ପ୍ରଶ୍ନକଲାରୁ ସେତେବେଳେ ଶୃଗାଳ ତାହାକୁ

ପ୍ରତ୍ୟୁତ୍ତର କଲା, ହେ ବାନର ! ଆମ୍ଭେ ପୂର୍ବଜନ୍ମରେ ବ୍ରାହ୍ମଣଙ୍କ ନିକଟରେ ଅର୍ଥ ପ୍ରଦାନ କରିବୁଁ ବୋଲି ଅଙ୍ଗୀକାର କରି ତାହା ଦେଇ ନ ଥିଲୁଁ । ସେହି ପାପରୁ ଆମ୍ଭେ କୁତ୍ସିତ ଶୃଗାଳ ଯୋନିରେ ଜନ୍ମଗ୍ରହଣପୂର୍ବକ କ୍ଷୁଧାର୍ତ୍ତ ହୋଇ ଏତାଦୃଶ ମୃତଜନ୍ତୁର ମାଂସ ଭକ୍ଷଣ କରୁଅଛୁଁ । ୧୩ ।

ଭୀଷ୍ମ କହିଲେ, ହେ ନରୋତ୍ତମ ! ତେତେବେଳେ ଶୃଗାଳ ବାନରକୁ କହିଲା, ହେ ବାନର ! ତୁମ୍ଭେ ପୂର୍ବଜନ୍ମରେ କେଉଁ ପାତକ କରିଥିବାରୁ ବାନରଜନ୍ମ ଗ୍ରହଣ କରିଅଛ ? ୧୪ ।

ବାନର କହିଲା, ହେ ଶୃଗାଳ ! ଆମ୍ଭେ ପୂର୍ବଜନ୍ମରେ ଲୋଭ ହେତୁରୁ ସର୍ବଦା ବ୍ରାହ୍ମଣମାନଙ୍କର ଫଳ ଆହାର କରିଥିଲୁଁ ବୋଲି ବାନର ଯୋନିରେ ଜନ୍ମ ପରିଗ୍ରହ କରିଅଛୁଁ ; ଅତଏବ ବ୍ରାହ୍ମଣସ୍ୱକୁ କଦାପି ପଣ୍ଡିତ ବ୍ୟକ୍ତି ହରଣ କରିବ ନାହିଁ । ବିବାଦଗ୍ରସ୍ତ ପଦାର୍ଥକୁ ସମଭାଗରେ ମୁକ୍ତ କରିବ; ପ୍ରତିଶ୍ରୁତ ପଦାର୍ଥକୁ ଅବଶ୍ୟ ପ୍ରଦାନ କରିବ । ୧୫ ।

ଭୀଷ୍ମ କହିଲେ, ହେ ରାଜନ୍ ! ପାଣ୍ଡୁନନ୍ଦନ ! ସେହି ଶୃଗାଳ ଓ ବାନର ପୂର୍ବେ ମନୁଷ୍ୟ ଜନ୍ମରେ ପରସ୍ପର ମିତ୍ର ଥିଲେ । କର୍ମଦୋଷରେ କୁତ୍ସିତ ଯୋନି ଲାଭ କରିଥିଲେ । କିନ୍ତୁ ବିଶେଷ ସୌଭାଗ୍ୟବଶରୁ ସେହି ଦୁହିଁଙ୍କର ପୂର୍ବଜନ୍ମ ବୃତ୍ତାନ୍ତସବୁ ସ୍ମରଣ ଥିଲା । ଆମ୍ଭେ ପୂର୍ବେ ସ୍ୱୀୟ ଉପାଧ୍ୟାୟ ଓ ବେଦବ୍ୟାସଙ୍କ ମୁଖରୁ ଏହି ଇତିହାସ ଶ୍ରବଣ କରିଥିଲୁଁ । ବ୍ରାହ୍ମଣଗଣ ଆମ୍ଭଙ୍କୁ ସର୍ବଦା ଏହି ଉପଦେଶ ପ୍ରଦାନ କରିଛନ୍ତି ଯେ, ବ୍ରହ୍ମସ୍ୱ ଅପହରଣ କରିବାର କଦାପି ଉଚିତ ନୁହେଁ; ବ୍ରାହ୍ମଣମାନଙ୍କୁ ସର୍ବଦା କ୍ଷମା ଦେବାର କର୍ତ୍ତବ୍ୟ । ବ୍ରାହ୍ମଣ ବାଳକ, ଦରିଦ୍ର ଅବା କୃପଣ ହେଲେ ସୁଦ୍ଧା ତାହାଙ୍କୁ ଅବଜ୍ଞା କରିବ ନାହିଁ । ୧୮ । ବ୍ରାହ୍ମଣମାନଙ୍କୁ ଯାହା ଦେବା ନିମିତ୍ତ ଅଙ୍ଗୀକାର କରିବ, ତତ୍‌କ୍ଷଣାତ୍ ତାହା ତାହାଙ୍କୁ ଅର୍ପଣ କରିବାର ଉଚିତ । କଦାପି ନିରାଶ କରିବାର ବିଧେୟ ନୁହେ । ୧୯ । ହେ ପୃଥିବୀପତେ ! ପ୍ରଥମେ ଆଶା ପ୍ରଦାନ କରି ପଶ୍ଚାତ୍ ହତାଶ କଲେ ବ୍ରାହ୍ମଣ ଅଗ୍ନି ସଦୃଶ କ୍ରୋଧରେ ପ୍ରଜ୍ୱଳିତ ହୁଅନ୍ତି । ହତାଶ ହୋଇ ସେଥିରେ କ୍ରୋଧ

ଦୃଷ୍ଟି ନିକ୍ଷେପ କଲେ ପ୍ରଜ୍ୱଳିତ ଅଗ୍ନି ଶୁଷ୍କ କାଷ୍ଠ, ତୃଣକୁ ଦହନ କଲାପରି ଜଗଣ କର୍ତ୍ତାମାନଙ୍କୁ ଏକାବେଳକେ ଭସ୍ମସାତ୍ କରିପାରନ୍ତି । ୨୧ ।

ହେ ଭାରତ ! ବ୍ରାହ୍ମଣ ଯଦି ସନ୍ତୁଷ୍ଟ ହୁଅନ୍ତି ତେବେ ସେ ଆନନ୍ଦ-ମୟ ବାକ୍ୟ ପ୍ରୟୋଗ କରନ୍ତି ଏବଂ ସର୍ବଦା ସର୍ବ ବିଷୟରେ ଶିକ୍ଷକ ସଦୃଶ ହିତକର ହୁଅନ୍ତି । ୨୨ । ଯେଉଁ ବ୍ୟକ୍ତି ବ୍ରାହ୍ମଣମାନଙ୍କର ପ୍ରୀତି-ବର୍ଦ୍ଧନ କରନ୍ତି, ସେ ପୁତ୍ର, ପୌତ୍ର, ବନ୍ଧୁବାନ୍ଧବ, ଅମାତ୍ୟ, ପଶୁ, ନଗର, ଜନପଦ ପ୍ରଭୃତି ସମସ୍ତଙ୍କୁ କୁଶଳରେ ପାଳନ କରନ୍ତି । ୨୩ । ଏହି ହେତୁରୁ ପୃଥିବୀରେ ବ୍ରାହ୍ମଣମାନଙ୍କ ତେଜ ସହସ୍ର କିରଣଧାରୀ ସୂର୍ଯ୍ୟଦେବଙ୍କ କିରଣ ସଦୃଶ ଉତ୍କୃଷ୍ଟ ଅଟେ । ୨୪ । ହେ ଭରତ ଶ୍ରେଷ୍ଠ ! ଯୁଧିଷ୍ଠିର ! ଯଦି ଶୋଭନ ଜାତିକି ଇଚ୍ଛାକର ବ୍ରାହ୍ମଣଙ୍କ ନିକଟରେ ପ୍ରତିଶ୍ରୁତ ପଦାର୍ଥକୁ ତାହାଙ୍କୁ ପ୍ରଦାନ କରିବ । ୨୫ । ବ୍ରାହ୍ମଣଙ୍କୁ ଦାନକଲେ ନିଶ୍ଚୟ ଉତ୍କୃଷ୍ଟ ସ୍ୱର୍ଗଲାଭ ହୁଏ । ଦାନ ଅପେକ୍ଷା ଆଉ କିଛି ମହତ୍ କାର୍ଯ୍ୟ ନାହିଁ । ୨୬ । ଇହଲୋକରେ ବ୍ରାହ୍ମଣମାନଙ୍କୁ ଦାନକଲେ, ପିତୃଲୋକ ଓ ଦେବଲୋକ-ମାନଙ୍କର ତୃପ୍ତି ସାଧନ କରାଯାଏ । ଅତଏବ ଜ୍ଞାନୀବ୍ୟକ୍ତିମାନେ ବ୍ରାହ୍ମଣ-ମାନଙ୍କୁ ଦାନ କରିବାର ଉଚିତ ବୋଲି ଜାଣନ୍ତି ।୨୭। ହେ ଭରତଶ୍ରେଷ୍ଠ ! ବ୍ରାହ୍ମଣ ଉତ୍କୃଷ୍ଟ ତୀର୍ଥ ସଦୃଶ । ସେ ଯେତେବେଳେ ଗୃହରେ ଉପସ୍ଥିତ ହେବେ, ତତ୍‌କ୍ଷଣାତ୍ ତାହାଙ୍କୁ ପୂଜା ନ କରି ବିଦାୟ ଦେବା ଉଚିତ ନୁହେଁ । ୨୮ ।

ଶୃଗାଳ ବାନର ସମ୍ବାଦେ ନବମ ଅଧ୍ୟାୟ ସମାପ୍ତ ॥ ୯ ॥



## ଦଶମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ରାଜର୍ଷେ ! ପିତାମହ ! ଧର୍ମର ଗତି ଅତି ସୂକ୍ଷ୍ମ ମନୁଷ୍ୟଗଣ ଧର୍ମ ବିଷୟରେ ସଦା ମୁଗ୍ଧ, ମନୁଷ୍ୟ ନୀଚଜାତିଙ୍କୁ

ସୁହୃଦ୍‌ଭାବରେ ଉପଦେଶ ପ୍ରଦାନ କଲେ, ଦୋଷଭାଗୀ ହୁଅନ୍ତି କି ନାହିଁ ? ତାହା ଶୁଣିବାକୁ ଆମ୍ଭର ଇଚ୍ଛା ହେଉଅଛି, ଅତଏବ ଯଥାର୍ଥରୂପେ ବର୍ଣ୍ଣନ କରିବା ହେଉନ୍ତୁ । ୨ । ଭୀଷ୍ମ କହିଲେ, ହେ ରାଜନ ! ପୂର୍ବେ ଆମ୍ଭେ ମହର୍ଷିମାନଙ୍କ ମୁଖରୁ ଏହି ବିଷୟରେ ଯେଉଁ କଥା ଶୁଣିଥିଲୁଁ ସଂପ୍ରତି ତୁମ ନିକଟରେ ତାହା ବିସ୍ତାରିତ ରୂପେ କହୁଅଛୁଁ ଶ୍ରବଣ କର । ୩ । ହୀନ ଜାତିଙ୍କୁ ଉପଦେଶ ଦେବାର କଦାପି ଉଚିତ ନୁହେଁ । ଯେଉଁ ବ୍ୟକ୍ତି ନୀଚ-ଲୋକଙ୍କୁ ଉପଦେଶ ପ୍ରଦାନ କରନ୍ତି, ସେହି ଶିକ୍ଷକ ଶାସ୍ତ୍ରାନୁସାରେ ଅବଶ୍ୟ ଅପରାଧୀ ହୁଅନ୍ତି । ହେ ଭରତ ଶ୍ରେଷ୍ଠ ! ଯୁଧିଷ୍ଠିର ! ନୀଚ ବ୍ୟକ୍ତିଙ୍କି ଉପଦେଶ ଦେବା ବିଷୟରେ ପୂର୍ବେ ଯେଉଁପରି ଘଟନା ଘଟିଥିଲା, ସେହି ନିଦର୍ଶନ ଶ୍ରବଣ କର । ୪ ।

ପୂର୍ବେ ହିମାଳୟର ମନୋହର ପାର୍ଶ୍ୱଦେଶରେ ବ୍ରାହ୍ମଣଙ୍କ ଆଶ୍ରମ ନିକଟରେ ସିଦ୍ଧଚାରଣ ସଂଯୁକ୍ତ ପୁଷ୍ପୋଦ୍ୟାନ ସମୂହରେ ସମଳଂକୃତ ବିବିଧ ତରୁ ଓ ଗୁଳ୍ମଲତାରେ ସମାକୀର୍ଣ୍ଣ ମୃଗପକ୍ଷୀ ସେବିତ ଗୋଟିଏ ଆଶ୍ରମ ଥିଲା । ସେହି ଆଶ୍ରମରେ ସୂର୍ଯ୍ୟ ଓ ଅଗ୍ନି ସଦୃଶ ତେଜଃସମ୍ପନ୍ନ ନିୟମ ବ୍ରତଧାରୀ ମହାତ୍ମା ବ୍ରହ୍ମଚାରୀ, ବାନପ୍ରସ୍ଥାଶ୍ରମୀ, ସନ୍ନ୍ୟାସ ଧର୍ମାବଲମ୍ବୀ ଓ ବାଲଖିଲ୍ୟ ମହର୍ଷିଗଣ ଅବସ୍ଥାନ ପୂର୍ବକ ନିରନ୍ତର ତପସ୍ୟା ଓ ବେଦ ଅଧ୍ୟୟନ କରନ୍ତି । ଦିନେ ଜଣେ ପରମ ଦୟାଳୁ ଶୂଦ୍ର ସେହି ଆଶ୍ରମରେ ଉପସ୍ଥିତ ହୋଇ ମୁନିଗଣଙ୍କୁ ବିବିଧ ନିୟମ ସମ୍ପନ୍ନ ଦେବତା ସଦୃଶ ଓ ଅସାଧାରଣ ତେଜଃସମ୍ପନ୍ନ ଦର୍ଶନ କରି ଅତିଶୟ ସନ୍ତୁଷ୍ଟ ହେଲେ, ଏବଂ ସ୍ୱୟଂ ତପସ୍ୟା କରିବାକୁ କୃତ ନିଶ୍ଚୟ ହୋଇ ସେହି ଆଶ୍ରମବାସୀ କୁଳପତିଙ୍କ ଚରଣ ଧାରଣପୂର୍ବକ ତାହାଙ୍କୁ ସମ୍ବୋଧନ କରି କହିଲେ, ଦ୍ୱିଜଶ୍ରେଷ୍ଠ ! ଭଗବନ୍ ! ମୁଁ ଶୂଦ୍ର ଜାତିରେ ଜନ୍ମଗ୍ରହଣ କରିଅଛି, ଧର୍ମଶିକ୍ଷା ମାନସରେ ଆପଣଙ୍କର ଶରଣାପନ୍ନ ହେଲି । ଆପଣ ପ୍ରସନ୍ନ ହୋଇ ମୋତେ ସନ୍ନ୍ୟାସ ଧର୍ମର ଉପଦେଶ ପ୍ରଦାନପୂର୍ବକ ଚରିତାର୍ଥ କରିବା ହେଉନ୍ତୁ । ମୁଁ ଆପଣଙ୍କ ସେବାରେ ସର୍ବଦା ଅନୁରକ୍ତ ରହିବି । ୫ ।

କୁଳପତି କହିଲେ, ହେ ବତ୍ସ ! ଶୂଦ୍ର ଜାତିର ସନ୍ନ୍ୟାସ ଧର୍ମରେ ଅଧିକାର ନାହିଁ । ଯଦି ତୁମ୍ଭର ବୁଦ୍ଧି ଧର୍ମ ବିଷୟରେ ଉପସ୍ଥିତ ହୋଇଅଛି,

ତେବେ ତୁମ୍ଭେ ଏହି ସ୍ଥାନରେ ଅବସ୍ଥାନ କର ଓ ଆମ୍ଭମାନଙ୍କର ଶୁଶ୍ରୂଷାରେ ନିରତ ହୁଅ । ପରିଶେଷରେ ସେହି ଶୁଶ୍ରୂଷାଦ୍ୱାରା ଉତ୍କୃଷ୍ଟ ଲୋକ ଲାଭ କରିବ ସଂଶୟ ନାହିଁ । ଋଷି କହିଲେ, ଶୂଦ୍ର ମନେ ମନେ ଚିନ୍ତା କଲେ ଆମ୍ଭେ ସନ୍ନ୍ୟାସଧର୍ମ ଗ୍ରହଣ କରିବାକୁ ଇଚ୍ଛୁକ, ଆମ୍ଭର ସନ୍ନ୍ୟାସ ଧର୍ମ ଗ୍ରହଣ କରିବାର ଉଚିତ ନୁହେ, ତାହା ଏଠାରେ କିଛିଦିନ ରହି ବିଶେଷରୂପେ ବିବେଚନା କରିବା । ପରିଶେଷରେ ଯାହା ଶ୍ରେୟସ୍କର ବୋଲି ଜଣାଯିବ ତାହା କରିବା । ଧର୍ମ ପରାୟଣ ଶୂଦ୍ର ଏହି ପ୍ରକାର ନିଶ୍ଚୟ କରି ସେହି ଆଶ୍ରମରେ ଅନତି ଦୂରରେ ଗୋଟିଏ ପର୍ଣ୍ଣଶାଳା ଏବଂ ତନ୍ମଧ୍ୟରେ ବେଦି, ଶୟନସ୍ଥାନ ଓ ଦେବସ୍ଥାନ ସମୂହ ପ୍ରସ୍ତୁତ କଲେ ଏବଂ ସ୍ୱୟଂ ନିୟମଧାରୀ, ଫଳାହାର ନିରତ, ଜିତେନ୍ଦ୍ରିୟ ଓ ତପସ୍ୟା ପରାୟଣ ହୋଇ ବହୁକାଳ ଦେବତା ସ୍ଥାନରେ ତ୍ରିକାଳିକ ଜଳସେଚନ, ବଳିପ୍ରଦାନ ହୋମ, ଦେବତାମାନଙ୍କ ଅର୍ଚ୍ଚନା ଓ ସନ୍ନିହିତ ଔଷଧି ଫଳମୂଳାଦିଦ୍ୱାରା ନିତ୍ୟ ସମାଗତ ଅତିଥିମାନଙ୍କର ଯଥୋଚିତ ସତ୍କାର କଲେ । ଏହିରୂପେ ବହୁଦିନ ଅତୀତ ହେବାରୁ ଦିନେ ଜଣେ ମହର୍ଷି, ସେହି ଶୂଦ୍ରଙ୍କ ଆଶ୍ରମରେ ଉପସ୍ଥିତ ହେଲେ, ଶୂଦ୍ର ଋଷିଙ୍କୁ ଦେଖିବାମାତ୍ରେ ତାହାଙ୍କୁ ଯଥା ବିଧାନରେ ସତ୍କାରକରିବାରୁ ସେ ସେହି ସତ୍କାରରେ ପରିତୁଷ୍ଟ ହେଲେ । ହେ ଭରତ ଶ୍ରେଷ୍ଠ ! ପରମ ତେଜସ୍ୱୀ, ଧର୍ମାତ୍ମା, ସଂଶିତ ବ୍ରତ ମହର୍ଷି ଶୂଦ୍ରଙ୍କ ଭକ୍ତି ଦର୍ଶନରେ ପରମ ତୁଷ୍ଟ ହୋଇ ତାହାଙ୍କ ସହିତ ମିଷ୍ଟାଳାପ କରି ସ୍ୱସ୍ଥାନକୁ ଗମନ କଲେ । ୨୫ ।

ଏବଂ ଅତି ଅଳ୍ପଦିନ ମଧ୍ୟରେ ପୁନଶ୍ଚ ସେହି ଆଶ୍ରମରେ ଉପସ୍ଥିତ ହୋଇଥିଲେ । କ୍ରମେ କ୍ରମେ ଋଷିଙ୍କର ସେହି ଶୂଦ୍ରଙ୍କ ସହିତ ପ୍ରୀତି ଜନ୍ମିବାରୁ ସେ ଅନେକବାର ତାହାଙ୍କୁ ଦେଖିବା ନିମିତ୍ତ ତଦୀୟ ଆଶ୍ରମକୁ ଯାଇଥିଲେ । ହେ ଭରତ ଶ୍ରେଷ୍ଠ ! । ୨୬ । ଦିନେ ଶୂଦ୍ର ସେହି ତାପସଙ୍କୁ କହିଲେ, ହେ ଭଗବନ୍ ! ଆମ୍ଭେ ପିତୃକାର୍ଯ୍ୟ କରିବୁଁ, ଆପଣ ଉକ୍ତ ବିଷୟରେ ଅନୁଗ୍ରହ କରିବା ହେଉନ୍ତୁ । ୨୭ ।

ଶୂଦ୍ର ଏହିପରି ଅନୁରୋଧ କଲାରୁ ଋଷି ତଥାସ୍ତୁ ବୋଲି ସ୍ୱୀକୃତ ହେଲେ । ତତ୍ପରେ ସେହି ଶୂଦ୍ର ପବିତ୍ର ହୋଇ ତାହାଙ୍କ ନିମିତ୍ତ ପାଦୋଦକ ଆନୟନ କଲେ । ୨୮ ।

ହେ ଭରତ ଶ୍ରେଷ୍ଠ ! ତତ୍ପରେ ଔଷଧି, ଦର୍ଭ, ପବିତ୍ର ଓ ଆସନ ଆନୟନ ପୂର୍ବକ ଶ୍ରାଦ୍ଧୀୟ ବ୍ରାହ୍ମଣଙ୍କ ଆସନକୁ ଦକ୍ଷିଣ ଦିଗରେ ପଶ୍ଚିମ ଶୀର୍ଷକରି ସଂସ୍ଥାପନ କଲେ । ୨୯ । ଅତଃପର ଋଷି ବ୍ରାହ୍ମଣଙ୍କ ଆସନ ଅନ୍ୟାୟରୂପେ ଦକ୍ଷିଣ ଦିଗରେ ପଶ୍ଚିମ ଶୀର୍ଷରୂପେ ରହିଥିବାର ଦେଖି ଶୂଦ୍ରଙ୍କୁ ସମ୍ବୋଧନପୂର୍ବକ କହିଲେ । ୩୦ ।

ହେ ତପୋଧନ ! ତୁମ୍ଭେ ବ୍ରାହ୍ମଣଙ୍କ ଆସନକୁ ପୂର୍ବଶୀର୍ଷ କରି ରଖ ଓ ସ୍ୱୟଂ ଉତ୍ତରମୁଖ ହୋଇ ଉପବେଶନ କର । ୩୧ । ଋଷି ଏହିପରି ଉପଦେଶ ପ୍ରଦାନ କଲାରୁ ମେଧାବୀ ଶୂଦ୍ର ଉତ୍ତର ମୁଖରେ ଉପବିଷ୍ଟ ହୋଇ ତାହାଙ୍କ ବଚନାନୁସାରେ ଯଥାସ୍ଥାନରେ ଦର୍ଭ ଓ ଅର୍ଘ୍ୟ ପ୍ରଭୃତି ସଂସ୍ଥାପନ ପୂର୍ବକ ଶ୍ରାଦ୍ଧ ସମାପନ କଲେ । ଧର୍ମ ପରାୟଣ ଋଷି ମଧ୍ୟ ତାହାଙ୍କର ପିତୃକାର୍ଯ୍ୟ ସମ୍ପାଦନପୂର୍ବକ ସ୍ୱସ୍ଥାନକୁ ଗମନ କଲେ । ୩୩ ।

ହେ ତାତ ! ସେହି ଶୂଦ୍ର ମୁନି ସେଠାରେ ଦୀର୍ଘକାଳ ତପାନୁଷ୍ଠାନ ପୂର୍ବକ ଦେହ ପରିତ୍ୟାଗ କରି ସ୍ୱୀୟ ପୁଣ୍ୟ ବଳରେ ମହାରାଜ ବଂଶରେ ଜନ୍ମଗ୍ରହଣ କଲେ ଏବଂ ସେହି ବ୍ରହ୍ମ ଋଷି ମଧ୍ୟ ଯଥା କାଳରେ ତନୁ ତ୍ୟାଗ କଲେ ଓ ପୁରୋହିତ କୁଳରେ ଉତ୍ପନ୍ନ ହେଲେ । ହେ ଭରତ ଶ୍ରେଷ୍ଠ ! ସେହି ଶୂଦ୍ରମୁନି ଓ ବ୍ରହ୍ମମୁନି ଏହିପରି ଜନ୍ମଗ୍ରହଣ ପୂର୍ବକ କ୍ରମେ କ୍ରମେ ପରିବର୍ଦ୍ଧିତ ହେଲେ । ସେ ଦୁହେଁ ବୟଃକ୍ରମ ଅନୁସାରେ ବିଦ୍ୟା ବିଷୟରେ କୁଶଳତା ଲାଭ କଲେ । ବ୍ରାହ୍ମଣ କ୍ରମେ କ୍ରମେ ଋଗ୍‌ବେଦ ପ୍ରଭୃତି ତ୍ରିବେଦ ଓ ଅଥର୍ବବେଦ; ଜ୍ୟୋତିଷଶାସ୍ତ୍ର ଏବଂ ସାଙ୍ଖ୍ୟ ଶାସ୍ତ୍ରରେ ବିଶେଷ ପାରଦର୍ଶୀ ହେଲେ । କିଛିଦିନ ଉତ୍ତାରେ ତାହାଙ୍କ ପିତା ବୃଦ୍ଧରାଜା ପରଲୋକଗାମୀ ହେବାରୁ ସେହି ପାର୍ଥିବ କୃତ ଶୌଚ ହେଲେ । ହେ ଭରତ ଶ୍ରେଷ୍ଠ ! ତତ୍ପରେ ପ୍ରଜାଗଣ ମିଳିତ ହୋଇ ସେହି ପାର୍ଥିବ ରାଜକୁମାରଙ୍କୁ ରାଜ୍ୟରେ ଅଭିଷିକ୍ତ କଲେ । ରାଜକୁମାର ରାଜା ହୋଇ ସେହି ବ୍ରାହ୍ମଣ ପୁତ୍ରଙ୍କୁ ପୌରହିତ୍ୟରେ ବରଣ କରି ଧର୍ମାନୁସାରେ ରାଜ୍ୟ ଶାସନ ଓ ପ୍ରଜାପାଳନ ପୂର୍ବକ ସୁଖରେ ଅବସ୍ଥାନ କଲେ । ୪୦ ।

ରାଜା ପ୍ରତର୍ଦ୍ଦନ ପୁଣ୍ୟାହ ବାଚନ ଅଥବା କୌଣସି ଧର୍ମର ଅନୁଷ୍ଠାନ ସମୟରେ ସେହି ପୁରୋହିତଙ୍କୁ ଦେଖି ଅନେକବାର ହାସ୍ୟ କରୁଥିଲେ । ୪୧ । ହେ ରାଜନ୍ ! ସେହି ରାଜା ଏହିପରି ବାରମ୍ବାର ପୁରୋହିତଙ୍କୁ ଚାହିଁ ହସିବାରୁ ସେହି ପୁରୋହିତ ରାଜାଙ୍କଠାରେ କ୍ରୋଧଯୁକ୍ତ ହେଲେ । ୪୩ । ଏଥି ଉତ୍ତାରେ ଦିନେ ପୁରୋହିତ ନିର୍ଜନରେ ରାଜାଙ୍କ ସହିତ ସାକ୍ଷାତ କରି ମିଷ୍ଟାଳାପଦ୍ୱାରା ରାଜାଙ୍କର ଆନନ୍ଦବର୍ଦ୍ଧନ କଲେ । ୪୪ ।

ହେ ଭରତ ଶ୍ରେଷ୍ଠ ! ତତ୍ପରେ ପୁରୋହିତ ରାଜାଙ୍କୁ କହିଲେ, ହେ ମହାଦ୍ୟୁତେ ! ଆମ୍ଭେ ଇଚ୍ଛା କରୁଅଛୁଁ ଆପଣ ଆମ୍ଭଙ୍କୁ ଗୋଟିଏ ବର ଦେବେ । ୪୫ । ରାଜା କହିଲେ, ହେ ଦ୍ୱିଜବର ! ଗୋଟିଏ ବର ଅବା କଅଣ, ଆମ୍ଭେ ଆପଣଙ୍କୁ ଶତ ସଂଖ୍ୟକ ବରପ୍ରଦାନ କରିପାରିବୁଁ । ସ୍ନେହ ଓ ବହୁମାନ ହେତୁରୁ ନିଶ୍ଚୟ ଆପଣଙ୍କୁ ଆମ୍ଭର କିଛି ଅଦେୟ ହେବ ନାହିଁ । ୪୬ । ପୁରୋହିତ କହିଲେ, ହେ ପାର୍ଥିବ ! ଆପଣ ଯଦି ସନ୍ତୁଷ୍ଟ ହେଲେ ତେବେ ଆମ୍ଭେ ଗୋଟିଏ ବର ଇଚ୍ଛା କରୁଅଛୁଁ । ଆପଣ ମିଥ୍ୟା ନ କହି ସତ୍ୟ କହିବେ ବୋଲି ସ୍ୱୀକାର କରିବା ହେଉନ୍ତୁ । ୪୭ । ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ବ୍ରାହ୍ମଣ ଏହିକଥା କହିବାରୁ ରାଜା ସ୍ୱୀକୃତ ହୋଇ ପ୍ରତ୍ୟୁତ୍ତର ଦେଲେ, ହେ ବ୍ରହ୍ମନ ! ଆମ୍ଭେ ଯଦି ଆପଣଙ୍କ ପ୍ରଶ୍ନ ବିଷୟ ଜାଣିଥିବୁଁ ତେବେ ଅବଶ୍ୟ କହିବୁଁ ନ ଜାଣିଥିଲେ ନ କହିବୁ । ୪୮ ।

ତେତେବେଳେ ପୁରୋହିତ କହିଲେ, ହେ ନରପାଳ ! ପ୍ରତର୍ଦ୍ଦନ ସ୍ୱସ୍ତିବାଚନ, ଶାନ୍ତି ଓ ହୋମ ପ୍ରଭୃତି ବିବିଧ ଧର୍ମକାର୍ଯ୍ୟ ସମୟରେ ଆପଣ ଆମ୍ଭଙ୍କୁ ନିରୀକ୍ଷଣପୂର୍ବକ କେଉଁ ହେତୁରୁ ବାରମ୍ବାର ହାସ୍ୟ କରନ୍ତି ? ଆପଣ ହସିବାରୁ ଆମ୍ଭ ମନ ଲଜ୍ଜିତ ହୁଏ । ଆପଣଙ୍କ ହସିବାର ଅବଶ୍ୟ କୌଣସି ଗୂଢ଼ କାରଣ ଅଛି । ସେହି କାରଣ ଜାଣିବା ନିମିତ୍ତ ଆମ୍ଭର କୌତୁହଳ ଜନ୍ମିଅଛି, ଅତଏବ ଏହାର ଯଥାର୍ଥ କଥା ବିନା କପଟରେ କହିବା ହେଉନ୍ତୁ । ଆପଣ ସତ୍ୟ କହିବେ ବୋଲି ସ୍ୱୀକାର କରିଅଛନ୍ତି, ତାହା ଅନ୍ୟଥା ନୋହୁ । ୫୧ ।

ରାଜା କହିଲେ ହେ ବିପ୍ର ! ଆପଣ ଯାହା ପ୍ରଶ୍ନ କଲେ ତାହା ଅବକ୍ତବ୍ୟ ହେଲେ ସୁଦ୍ଧା ଆମ୍ଭେ କହିବୁଁ । ହେ ଦ୍ୱିଜ ! ଏକମନା ହୋଇ ଶୁଣିବା ହେଉନ୍ତୁ । ୫୨ ।

ହେ ଦ୍ୱିଜବର ! ଆମ୍ଭେ ଜାତିସ୍ମର; ପୂର୍ବ ଜନ୍ମରେ ଯାହା ଯାହା ଘଟିଥିଲା, ତାହାସବୁ କହୁଅଛୁଁ ସ୍ଥିର ମନରେ ଶ୍ରବଣ କରିବା ହେଉନ୍ତୁ । । ୫୩ । ପୂର୍ବ ଜନ୍ମରେ ଆମ୍ଭେ ତପସ୍ୟା ନିରତ ଶୂଦ୍ର ଥିଲୁଁ, ଏବଂ ଆପଣ ସେତେବେଳେ ଉଗ୍ରତର ତପସ୍ୟା ପରିପୂର୍ଣ ଉତ୍ତମ ବ୍ରହ୍ମର୍ଷି ଥିଲେ । ୫୪ । ଆପଣ ଆମ୍ଭଠାରେ ତୁଷ୍ଟ ହୋଇ ଅନୁଗ୍ରହ ପ୍ରକାଶ ପୂର୍ବକ ଆମ୍ଭର ପିତୃ-ଶ୍ରାଦ୍ଧ ସମୟରେ ଆମ୍ଭଙ୍କୁ କୁଶାସନ, କୁଶ ଏବଂ ହବ୍ୟ କବ୍ୟ ବିଷୟରେ ଉପଦେଶ ପ୍ରଦାନ କରିଥିଲେ । ହେ ଅନଘ ! ସେହି କାରଣରୁ ଇହଜନ୍ମରେ ଆପଣ ପୁରୋହିତ ହୋଇଅଛନ୍ତି ( ୫୬ ) ଏବଂ ଆମ୍ଭେ ରାଜା ହୋଇଅଛୁଁ । ହେ ବିପ୍ରବର ! କାଳର ମହିମାକୁ ଦେଖିବା ହେଉନ୍ତୁ । ଆପଣ ଶ୍ରାଦ୍ଧରେ ଉପଦେଶ ଦେଇଥିଲେ ବୋଲି ଆମ୍ଭ ହେତୁରୁ ଏହି ଫଳ ଭୋଗ କଲେ । ୫୭ ।

ହେ ବ୍ରହ୍ମନ୍ ! ଆମ୍ଭେ କେବଳ ଏହି କାରଣରୁ ଆପଣଙ୍କୁ ଦେଖିବା ମାତ୍ରେ ହସୁଥାଉଁ । ହେ ଦ୍ୱିଜବର ! ଆପଣ ଆମ୍ଭର ଗୁରୁ, ଆମ୍ଭେ ଆପଣଙ୍କୁ ଅବଜ୍ଞା କରି ହସୁ ନ ଥାଉଁ । ୫୮ । ଆମ୍ଭେ ଶୂଦ୍ର ହୋଇ ଜାତି-ସ୍ମର ହେଲୁଁ ଏବଂ ଆପଣ ମୁନି ହୋଇ ସୁଦ୍ଧା ପୁରୋହିତ ହେଲେ । ଆମ୍ଭେ ଏହି କାରଣରୁ ଅତିଶୟ ଦୁଃଖିତ ଅଛୁଁ । ଏବଂ ଏହି ବିପରୀତ ଘଟନା ହେତୁରୁ ଆପଣଙ୍କୁ ଦେଖିବା ମାତ୍ରେ ହସୁଥାଉଁ । ୫୯ ।

କି ଆଶ୍ଚର୍ଯ୍ୟ ! ଗୋଟିଏ ମାତ୍ର ଉପଦେଶ ପ୍ରଦାନ କରିଥିବାରୁ ଆପଣଙ୍କର ତାଦୃଶ କଠୋର ତପଶ୍ଚରଣ ଏକାବେଳକେ ଉଚ୍ଛନ୍ନ ହେଲା ! ଯାହାହେଉ ଏତେବେଳେ ପୌରୋହିତ୍ୟ ପରିତ୍ୟାଗପୂର୍ବକ ପୁନଶ୍ଚ ଉତ୍କୃଷ୍ଟ କୁଳରେ ଜନ୍ମଗ୍ରହଣ କରିବା ବିଷୟରେ ଯତ୍ନଶୀଳ ହେଉନ୍ତୁ ।୬୦। ହେ ଦ୍ୱିଜ ! ଆପଣ ପୁନଶ୍ଚ ଯେଉଁପରି ଏହା ଅପେକ୍ଷା ଅଧମ ଯୋନିରେ ଜନ୍ମଗ୍ରହଣ ନ କରିବେ, ହେ ସାଧୁଶ୍ରେଷ୍ଠ ! ବିପ୍ର ! ସେହି ସକାଶେ ଧନରାଶି ଗ୍ରହଣ କରି ଓ ପୂତାତ୍ମା ହୁଅ । ୬୧ ।

ଭୀଷ୍ମ କହିଲେ, ହେ ନୃପବର ! ରାଜା ଏହିପରି କହିବାରୁ ବ୍ରାହ୍ମଣ ତାହାଙ୍କ ନିକଟରୁ ବିଦାୟ ଗ୍ରହଣ ପୂର୍ବକ ଗୃହରେ ଉପସ୍ଥିତ ହୋଇ ଅସଂଖ୍ୟ ବ୍ରାହ୍ମଣମାନଙ୍କୁ ଭୂମି, ଗ୍ରାମ ଓ ବିବିଧ ଧନସବୁ ପ୍ରଦାନ କଲେ । ୬୨ । ତତ୍ପରେ ଦ୍ୱିଜବରମାନଙ୍କ ଆଦେଶାନୁସାରେ କୃଚ୍ଛ୍ର, ଚାନ୍ଦ୍ରାୟଣାଦି କଠୋର କାର୍ଯ୍ୟର ଅନୁଷ୍ଠାନ କରି ତୀର୍ଥମାନଙ୍କୁ ଯାଇ ସେଠାରେ ବ୍ରାହ୍ମଣ-ମାନଙ୍କୁ ଧେନୁ ଓ ଅନ୍ୟାନ୍ୟ ନାନାବିଧ ଧନ ଦାନ ପୂର୍ବକ ସେହି ବୁଦ୍ଧିମାନ ବିପ୍ର ପୂତାତ୍ମା ହେଲେ । ପରିଶେଷରେ ସ୍ୱୀୟ ଆଶ୍ରମରେ ପ୍ରବିଷ୍ଟ ହୋଇ ଘୋରତର ତପସ୍ୟା କଲେ । ୬୪ ।

ହେ ନୃପବର ! ତତ୍ପରେ ସେହି ବ୍ରାହ୍ମଣ ଘୋରତର ତପସ୍ୟାଦ୍ୱାରା ପରମ ସିଦ୍ଧି ଲଭ କଲେ ଓ ଆଶ୍ରମବାସୀ ଋଷିମାନଙ୍କଠାରୁ ତଦୀୟ ଆଶ୍ରମ ସମୂହରେ ସମ୍ମାନ ଲଭ କଲେ । ୬୫ ।

ହେ ନୃପବର ! ସେହି ଋଷି ଶୂଦ୍ରକୁ ଉପଦେଶ ଦେଇଥିବାରୁ ତାଦୃଶ ମହତ୍ କଷ୍ଟ ପ୍ରାପ୍ତ ହୋଇଥିଲେ । ଅତଏବ ନୀଚ ଜାତିଙ୍କୁ ଉପଦେଶ ଦେବାର ବ୍ରାହ୍ମଣର କଦାପି କର୍ତ୍ତବ୍ୟ ନୁହେଁ । ହେ ନୃପ ! ବ୍ରାହ୍ମଣ କ୍ଷତ୍ରିୟ ଓ ବୈଶ୍ୟ ଏହି ତିନି ଜାତି, ଦ୍ୱିଜାତି । ଏହିମାନଙ୍କୁ ବ୍ରାହ୍ମଣ ଉପଦେଶ ଦେଲେ ଦୂଷିତ ହୁଏ ନାହିଁ । ୬୭ । ହେ ନୃପ ଶ୍ରେଷ୍ଠ ! ବ୍ରାହ୍ମଣ, ଶୂଦ୍ରମାନଙ୍କ ଧର୍ମଲଭ ବିଷୟରେ କିଛି କହିବେ ନାହିଁ ଓ କିଛି ମାତ୍ର ଇଚ୍ଛା କରିବେ ନାହିଁ । ୬୯ । ଧର୍ମର ଗତି ସୂକ୍ଷ୍ମ ବୋଲି ପାପାତ୍ମା ବ୍ୟକ୍ତିମାନେ ଜାଣିପାରନ୍ତି ନାହିଁ । କିନ୍ତୁ ସେହି କାରଣରୁ ସାଧୁଜନମାନେ କୌଣସି ବ୍ୟକ୍ତିର ଆଗରେ କିଛିମାତ୍ର କହନ୍ତି ନାହିଁ । ୭୦ ।

ହେ ରାଜନ୍ । ସମାଦର ପ୍ରାପ୍ତ ମୁନିଗଣ ଦୁର୍ବାକ୍ୟ ପ୍ରୟୋଗ ଭୟରେ ଅର୍ଥାତ୍ ନୀଚ ବ୍ୟକ୍ତିକି କହିବାର ଅନ୍ୟାୟ ବୋଲି ଜାଣି କିଛିମାତ୍ର ନ କହି ମୌନ ଭାବରେ ଦୀକ୍ଷାପ୍ରଦାନ କରିଥାଆନ୍ତି । ଧାର୍ମିକ ସତ୍ୟ ଓ ସରଳତା ପ୍ରଭୃତି ଗୁଣଯୁକ୍ତ ଲୋକମାନେ କେବଳ ନୀଚ ବର୍ଣ୍ଣକୁ ବାକ୍ୟ ପ୍ରୟୋଗ କରିବାଦ୍ୱାରା ଘୋରତର ପାପରେ ଲିପ୍ତ ହୁଅନ୍ତି । ବିଶେଷ ବିବେଚନା ନ କଲେ ଅନ୍ୟକୁ ଉପଦେଶ ଦେବାର କଦାପି କର୍ତ୍ତବ୍ୟ

ନୁହେଁ । କାରଣ ଉପଦିଷ୍ଟବ୍ୟକ୍ତି ଯଦି ଅକସ୍ମାତ୍ ଉପଦେଷ୍ଟାଙ୍କ ବାକ୍ୟ ଲଙ୍ଘନ ପୂର୍ବକ ପାପ କାର୍ଯ୍ୟର ଅନୁଷ୍ଠାନ କରନ୍ତି, ତେବେ ଉପଦେଷ୍ଟା ନିଶ୍ଚୟ ସେହି ପାପରେ ଲିପ୍ତ ହୁଅନ୍ତି । ଧର୍ମ ପରାୟଣ ବିଜ୍ଞବ୍ୟକ୍ତିମାନେ ବିବେଚନା ପୂର୍ବକ କାର୍ଯ୍ୟ କରନ୍ତି । ଧନ ଲୋଭ ହେତୁରୁ ଉପଦେଶ ପ୍ରଦାନ କଲେ ଧର୍ମ କ୍ଷୟ ହୁଏ । କେହି ପ୍ରଶ୍ନ କଲେ ଯେଉଁ ଉପାୟରେ ଧର୍ମଲାଭ ହେବ ତାହା ବିଶେଷ ବିବେଚନା ପୂର୍ବକ ଉପଦେଶ ଦେବାର କର୍ତ୍ତବ୍ୟ । ନୀଚ ଜାତିକୁ ଉପଦେଶ ଦେଲେ ମହାକ୍ଳେଶ ଉପସ୍ଥିତ ହୁଏ । ଅତଏବ ନୀଚ ଜାତିକୁ ଉପଦେଶ ଦେବାର କଦାପି ବିଧେୟ ନୁହେଁ । ଆମ୍ଭେ ତୁମ୍ଭର ପ୍ରଶ୍ନ ଅନୁସାରେ କଥା କୀର୍ତ୍ତନ କଲୁଁ । ୭୬ ।

ଶୂଦ୍ରମୁନି ସମ୍ବାଦେ ଦଶମ ଅଧ୍ୟାୟ ସମାପ୍ତ ॥ ୧୦ ॥



## ଏକାଦଶ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ତାତ ! ଭରତ ଶ୍ରେଷ୍ଠ ! ପିତାମହ ! ଲକ୍ଷ୍ମୀଦେବୀ ଅର୍ଥାତ ଧନ ସମ୍ପତ୍ତି କିଦୃଶ ପୁରୁଷ ଓ କିଦୃଶ ସ୍ତ୍ରୀମାନଙ୍କଠାରେ ନିତ୍ୟ ବସତି କରନ୍ତି ତାହା କୀର୍ତ୍ତନ କରିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ, ହେ ବତ୍ସ ! ଏହି ବିଷୟରେ ଯାହା ଘଟିଥିଲା ଓ ଆମ୍ଭେ ଯାହା ଶୁଣିଥିଲୁଁ ତାହା କୀର୍ତ୍ତନ କରିବୁଁ । ଦିନେ କନ୍ଦର୍ପଦେବୀଙ୍କ ଜନନୀ ଗୃହ୍ନନେତ୍ରା ରୁକ୍ମିଣୀ ଦେବୀ ଦେବକୀ ପୁତ୍ରଙ୍କ ନିକଟରେ ନାରାୟଣଙ୍କ ଅଙ୍କଗତା ଅତି ତେଜସ୍ୱିନୀ ପଦ୍ମସଦୃଶ ବର୍ଣ୍ଣ ବିଶିଷ୍ଟା ଲକ୍ଷ୍ମୀଦେବୀଙ୍କୁ ଦର୍ଶନ କରି ବିସ୍ମୟରେ କୌତୂହଳାକ୍ରାନ୍ତ ହୋଇ ପ୍ରଶ୍ନ କଲେ, ( ୩ ) ହେ ତ୍ରିଭୁବନେଶ୍ୱର ପତ୍ନି ! ହେ ମହର୍ଷି ସଦୃଶେ ! ହେ ଦେବି ! ତୁମ୍ଭେ ଇହଲୋକରେ କେଉଁମାନଙ୍କୁ ଅଶ୍ୱ ଗଜ ପ୍ରଭୃତି ରୂପରେ ଉପସେବା କର ଓ କେଉଁମାନଙ୍କ ନିକଟରେ ଧୈର୍ଯ୍ୟ, ଔଦାର୍ଯ୍ୟ, ସୌନ୍ଦର୍ଯ୍ୟ ଓ ଶୌର୍ଯ୍ୟ ପ୍ରଭୃତି ଗୁଣରେ ଅବସ୍ଥାନ ପୂର୍ବକ ନିସେବା କର ତାହା ଆମ୍ଭଙ୍କୁ ଯଥାର୍ଥ ରୂପେ କହ ।

ୀ୪ । ରୁକ୍ମିଣୀ ଦେବୀ ଏହିପରି ପ୍ରଶ୍ନକଲାରୁ ଚନ୍ଦ୍ରମୁଖୀ ଲକ୍ଷ୍ମୀଦେବୀ ପ୍ରସନ୍ନା ହୋଇ ସୁମଧୁର ମନୋହର ବାକ୍ୟ କହିଲେ । ୫ ।

ତେତେବେଳେ ଲକ୍ଷ୍ମୀଦେବୀ କହିଲେ, ହେ ସୁନ୍ଦରି ! ଆମ୍ଭେ ସତ୍ୟବାଦୀ, ଅଳସଶୂନ୍ୟ, ଅର୍ଥାତ୍ କାର୍ଯ୍ୟଦକ୍ଷ, କ୍ରୋଧ ବିହୀନ, ଦେବଭକ୍ତ, କୃତଜ୍ଞ, ଜିତେନ୍ଦ୍ରିୟ ଓ ଉଦାରଚିତ୍ତ ବ୍ୟକ୍ତିମାନଙ୍କ ନିକଟରେ ନିତ୍ୟ ଅବସ୍ଥାନ କରୁଁ । ୬ । ଯେଉଁମାନେ ଅକର୍ମଣ୍ୟ, ନାସ୍ତିକ, ଲମ୍ପଟ, କୃତଘ୍ନ, ଆଚାରଭ୍ରଷ୍ଟ, ନୃଶଂସ, ତସ୍କର ଗୁରୁଦ୍ରୋହୀ, ମୃଦୁସ୍ୱଭାବ ଏବଂ ବଳ, ବୀର୍ଯ୍ୟ, ବୁଦ୍ଧି ଓ ସାହସବିହୀନ, ଏବଂ ଯେଉଁମାନେ କ୍ରୋଧ ଓ ହର୍ଷ ବିଷୟରେ ପାତ୍ରାପାତ୍ର ବିବେଚନା ନ କରନ୍ତି, ଯେଉଁମାନେ କିଞ୍ଚିତମାତ୍ର ଅର୍ଥ ଲାଭର ପ୍ରତ୍ୟାଶା ନ କରନ୍ତି ଓ ଅଳ୍ପମାତ୍ର ଅର୍ଥ ଲାଭ ହେଲେ ପରିତୁଷ୍ଟ ହୁଅନ୍ତି, ଆମ୍ଭେ ତାଦୃଶ କ୍ଷୁଦ୍ର ବୁଦ୍ଧି ମନୁଷ୍ୟମାନଙ୍କ ନିକଟରେ କଦାପି ବାସ କରୁନାହୁଁ ।

ଯେଉଁମାନେ ସ୍ୱଧର୍ମପ୍ରିୟ, ଧର୍ମ ବିଜ୍ଞ ବୃଦ୍ଧମାନଙ୍କ ସେବାରେ ନିରନ୍ତର ଆସକ୍ତ, ଦାନ୍ତ, ପୁଣ୍ୟାତ୍ମା, କ୍ଷମାଶୀଳ ଓ ବୁଦ୍ଧିମାନ୍ ଆମ୍ଭେ ସେହି ପୁରୁଷମାନଙ୍କ ନିକଟରେ ସର୍ବଦା ବାସ କରିଥାଉଁ । ଯେଉଁ ସ୍ତ୍ରୀ ବୃନ୍ଦ ଗୃହର ଉପକରଣ ସମୂହକୁ ଇତସ୍ତତ ବିକ୍ଷିପ୍ତ କରି ରଖନ୍ତି; ଯେଉଁମାନେ କାର୍ଯ୍ୟ ଅନୁଷ୍ଠାନ ସମୟରେ କିଞ୍ଚିତମାତ୍ର ବିବେଚନା କରନ୍ତି ନାହିଁ, ଯେଉଁ-ମାନେ ସ୍ୱାମୀର ପ୍ରତିକୂଳ ବାକ୍ୟ କହନ୍ତି, ଯେଉଁମାନେ ପରଗୃହରେ ବାସ କରିବାକୁ ନିରନ୍ତର ଅନୁରାଗିଣୀ, ଯେଉଁମାନେ ଲଜ୍ଜାହୀନା ଓ ଧୈର୍ଯ୍ୟଶୂନ୍ୟା ହୁଅନ୍ତି, ଆମ୍ଭେ ଏତାଦୃଶ ସ୍ତ୍ରୀଙ୍କୁ ପରିତ୍ୟାଗ କରୁଁ । ଏବଂ ଯେଉଁମାନେ ଦୟାହୀନା, ଅଶୁଚି, ବିରକ୍ତଚିତ୍ତା, କଳହପ୍ରିୟା, ଧୈର୍ଯ୍ୟହୀନା ଓ ସର୍ବଦା ନିଦ୍ରାପରାୟଣା ହୁଅନ୍ତି, ଆମ୍ଭେ ତାଦୃଶୀ ସ୍ତ୍ରୀକୁ ସର୍ବପ୍ରକାରରେ ପରିତ୍ୟାଗ କରୁଁ । ଯେଉଁ ସ୍ତ୍ରୀ ସମୂହ ପତିଙ୍କଠାରେ ଅନୁରାଗ ପ୍ରକାଶ କରନ୍ତି; କ୍ଷମା-ଶୀଳା, କଲ୍ୟାଣଶୀଳା, ସତ୍ୟନିଷ୍ଠା ବିଭୂଷିତା, ଜିତେନ୍ଦ୍ରିୟା, ସତ୍ୟ ସରଳତା ପ୍ରଭୃତି ଗୁଣଯୁକ୍ତା, ଦେବତା ଓ ବ୍ରାହ୍ମଣମାନଙ୍କଠାରେ ଅତିଶୟ ଭକ୍ତ ପରାୟଣା, ସୌଭାଗ୍ୟଯୁକ୍ତା ଓ ସୌନ୍ଦର୍ଯ୍ୟଶୀଳା, ଆମ୍ଭେ ଏତାଦୃଶୀ ନାରୀମାନଙ୍କ ନିକଟରେ ସର୍ବଦା ବାସ କରୁଁ । ଯାନ, କନ୍ୟା, ଭୂଷଣ, ଯଜ୍ଞ ଓ ବର୍ଷଣଶୀଳ ମେଘରେ ଆମ୍ଭେ ସର୍ବଦା ବାସ କରୁଁ । ୧୪ ।

ପ୍ରଫୁଲ୍ଲ ପଦ୍ମଫୁଲ ପୁଷ୍କରିଣୀ, ଶରତ କାର୍ତ୍ତିକ ନକ୍ଷତ୍ର ସମୂହ, ଗଜ, ଗୋଷ୍ଠ, ଆସନ, ପ୍ରଫୁଲ୍ଲ ଉତ୍ପଳ ପଙ୍କଜ ପରିପୂର୍ଣ୍ଣ ସରୋବର ( ୧୫ ) ହଂସ ସ୍ୱରରେ ନିନାଦିତ ବକ ଓ ଅବପୁଷ୍ଟ ସ୍ୱରରେ ସୁଶୋଭିତ ବିକୀର୍ଣ୍ଣ କୂଳସ୍ଥିତ ଦ୍ରୁମ ସମୂହରେ ବିରାଜିତ ତପସ୍ୱୀ ସିଦ୍ଧ ବ୍ରାହ୍ମଣ ସେବିତ, ( ୧୬ ) ବହୂଦକ ପରିପୂର୍ଣ୍ଣ ସିଂହ ଓ ଗଜମାନଙ୍କଦ୍ୱାରା ଆକୁଳିତ ଜଳନଦୀ ବୃନ୍ଦରେ; ମତ୍ତହସ୍ତୀ, ଗୋ, ବୃଷଭ, ନରପତି, ସିଂହାସନ ଓ ସତ୍ପୁରୁଷମାନଙ୍କ ନିକଟରେ ଆମ୍ଭେ ସର୍ବଦା ବାସକରୁଁ । ୧୭ । ଯେଉଁ ଗୃହରେ ମନୁଷ୍ୟ ସମ୍ପତ୍ତି ପ୍ରାପ୍ତି ନିମିତ୍ତ ଅଗ୍ନିକୁ ହୋମ କରନ୍ତି, ଯଥାକାଳରେ ପୁଷ୍ପ ଓ ବଳିଦ୍ୱାରା ଗୋ, ବ୍ରାହ୍ମଣ ଓ ଦେବତାମାନଙ୍କୁ ଅର୍ଚ୍ଚନା କରନ୍ତି, ଆମ୍ଭେ ସେହି ଗୃହରେ ନିତ୍ୟ ବାସ କରୁଁ । ୧୮ ।

ସ୍ୱାଧ୍ୟାୟ ନିରତ ବ୍ରାହ୍ମଣ, ଧର୍ମପରାୟଣ କ୍ଷତ୍ରିୟ, କୃଷିକାର୍ଯ୍ୟ ବିଶାରଦ ବୈଶ୍ୟ ଓ ସେବା ନିରତ ଶୂଦ୍ରଙ୍କ ନିକଟରେ ଆମ୍ଭେ ନିତ୍ୟ ବାସକରୁଁ । ଭଗବାନ ନାରାୟଣଙ୍କଠାରେ ଉତ୍ତର କୃଷ୍ଣ ଧର୍ମ, ବ୍ରାହ୍ମଣ୍ୟତା ଓ ଜନାନୁରାଗ ସର୍ବଦା ନିବିଷ୍ଟ ଥାଏ, ଏହି ନିମିତ୍ତ ଆମ୍ଭେ ସର୍ବପ୍ରକାର ଆଦରରେ ଏକମନା ହୋଇ ଶରୀର ଧାରଣ ପୂର୍ବକ ତାହାଙ୍କ ନିକଟରେ ବାସ କରୁଁ । ୨୦ । ନାରାୟଣଙ୍କ ବ୍ୟତିରେକେ ଅନ୍ୟସ୍ଥାନରେ ଆମ୍ଭେ ଶରୀର ଧାରଣ ପୂର୍ବକ କଦାପି ବାସ କରୁ ନାହିଁ । ଯେଉଁ ପୁରୁଷଠାରେ ଆମ୍ଭେ ସଦୟ ଭାବରେ ବିନା ଶରୀରରେ ବାସ କରୁଁ, ତାହାର ଧର୍ମ ଅର୍ଥ ଯଶ ଓ କାମ କ୍ରମେ କ୍ରମେ ପରିବର୍ଦ୍ଧିତ ହୁଏ । ୨୧ ।

ଶ୍ରୀ ରୁକ୍ମିଣୀଙ୍କ ସମ୍ବାଦେ ଏକାଦଶ ଅଧ୍ୟାୟ ସମାପ୍ତ । ୧୧ ।



## ଦ୍ୱାଦଶ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ରାଜନ୍ । ସ୍ତ୍ରୀ ପୁରୁଷ ଦୁହିଁଙ୍କର ସଂସର୍ଗ ସମୟରେ ସେହି ଦୁହିଁଙ୍କ ମଧ୍ୟରେ କାହାର ସ୍ପର୍ଶ ସୁଖ ଅଧିକ ହୁଏ,

ଏହି ବିଷୟରେ ଆମ୍ଭର ଅତିଶୟ ସଂଶୟ ଉପସ୍ଥିତ ହୋଇଅଛି । ଆପଣ ଏହା ଯଥାର୍ଥରୂପେ କହିବା ହେଉନ୍ତୁ ।

ଅର୍ଥାତ୍ ପୂର୍ବାଧ୍ୟାୟରେ ଲକ୍ଷ୍ମୀ ତୁଷ୍ଟା ହେଲେ ଯଶୋଽର୍ଥ କମାଲାଭହୁଏ । ଅତଏବ ଲକ୍ଷ୍ମୀବତ୍ ସ୍ତ୍ରୀମାନଙ୍କୁ ଲକ୍ଷ୍ମୀବୁଦ୍ଧିରେ ଉପାପନା କଲେ କାମ ସୁଖ ବୃଦ୍ଧି ହୋଇପାରେ ଏହି ପ୍ରଶ୍ନର ଅଭିପ୍ରାୟ । ୧ ।

ଭୀଷ୍ମ କହିଲେ, ହେ ପୁରୁଷ ବ୍ୟାଘ୍ର ! ଯୁଧିଷ୍ଠିର ! ଆମ୍ଭେ ଏହି ଉପଲକ୍ଷରେ ଦେବରାଜଙ୍କର ଭଙ୍ଗାସ୍ୱନଙ୍କ ସହିତ ଯେଉଁ ଶତ୍ରୁତା ହୋଇଥିଲା, ସେହି ପୁରାତନ ଇତିହାସକୁ ଉଦାହରଣରୂପେ କୀର୍ତ୍ତନ କରୁଅଛୁ । । ୨ । ପୂର୍ବକାଳରେ ଧର୍ମପରାୟଣ ଭଙ୍ଗାସ୍ୱନ ନାମକ ଜଣେ ରାଜର୍ଷି ଥିଲେ । ସେହି ମହାବଳ ରାଜର୍ଷି ନିଃସନ୍ତାନ ହୋଇଥିବାରୁ ପୁତ୍ରଲାଭ ନିମିତ୍ତ 'ଇନ୍ଦ୍ରଦ୍ୱିଷ୍ଟ, ଅଗ୍ନିଷ୍ଟୁତ,' ନାମକ ଯଜ୍ଞର ଅନୁଷ୍ଠାନ କରିଥିଲେ । ସେହି ଯଜ୍ଞର ଅନୁଷ୍ଠାନଦ୍ୱାରା ତାହାଙ୍କର ଏକଶତ ପୁତ୍ର ଜାତ ହୋଇଥିଲେ । ରାଜର୍ଷି ଭଙ୍ଗାସ୍ୱନ ପୁତ୍ରକାମନାରେ ଅଗ୍ନିଷ୍ଟୁତ ଯଜ୍ଞ କରିବାରୁ ମହାଭାଗ ସୁରରାଜ ଇନ୍ଦ୍ର ତାହାଙ୍କର ଛିଦ୍ର ଅନ୍ୱେଷଣ କଲେ । କିନ୍ତୁ ହେ ରାଜନ୍ ! କଦାପି ତଦ୍ ବିଷୟରେ କୃତକାର୍ଯ୍ୟ ହେଲେ ନାହିଁ । କିୟତ୍‌କାଳ ଅତୀତ ହେବାରୁ ରାଜା ଭଙ୍ଗାସ୍ୱନ ମୃଗୟା ନିମିତ୍ତ ଗମନ କଲେ । ଦେବରାଜ ଇନ୍ଦ୍ର ମଧ୍ୟ ସେହି ସମୟକୁ ପ୍ରକୃତ ଅବସରରୂପେ ପ୍ରାପ୍ତହୋଇ ମାୟାଜାଲ ବିସ୍ତାରପୂର୍ବକ ତାହାଙ୍କୁ ବିମୋହିତ କଲେ । ହେ ରାଜନ ! ସେହି ରାଜର୍ଷି ଭଙ୍ଗାସ୍ୱନ ଇନ୍ଦ୍ରଙ୍କ ମାୟାରେ କ୍ଷୁଧା ଓ ପିପାସାଦ୍ୱାରା ପୀଡ଼ିତ ଓ ମୁଗ୍ଧ ହେବାରୁ ହିଗବିଦିଗ କିଛି ଜାଣିପାରିଲେ ନାହିଁ । ଏବଂ କ୍ଷୁଧା ତୃଷାରେ ଅତିଶୟ କାତର ହୋଇ ଗୋଟିଏ ଅଶ୍ୱପୃଷ୍ଠରେ ଆରୋହଣ ପୂର୍ବକ ଚତୁର୍ଦ୍ଦିଗରେ ଭ୍ରମଣ କଲେ । ହେ ତାତ ! କିଛିକ୍ଷଣ ଉତ୍ତାରେ ସେ ଜଳ ପରିପୂର୍ଣ୍ଣ ପରମ ରମଣୀୟ ଗୋଟିଏ ସରୋବର ଦେଖିଲେ । ସେହି ନୃପବର, ସେହି ସରୋବରକୁ ଦେଖିବାମାତ୍ରେ ଅଶ୍ୱପୃଷ୍ଠରୁ ଅବତରଣ ପୂର୍ବକ ଅବିଳମ୍ବରେ ଅଶ୍ୱକୁ ଜଳପାନ କରାଇ ତାହାକୁ ଗୋଟିଏ ବୃକ୍ଷରେ ବନ୍ଧନ କଲେ ଓ ସ୍ୱୟଂ ସେହି ଜଳରେ ଅବଗାହନପୂର୍ବକ ସ୍ନାନ କଲେ । ସେ ଉକ୍ତ ଜଳରେ ଅବଗାହନ କଲାମାତ୍ରେ ସ୍ତ୍ରୀତ୍ୱ ପ୍ରାପ୍ତ ହେଲେ । ୧୦ ।

ହେ ତାତ ! ସେହି ନୃପବର ସ୍ନାନ ଉତ୍ତାରେ ଆପଣାକୁ ସ୍ତ୍ରୀରୂପେ ପରିବର୍ତ୍ତିତ ହୋଇଥିବାର ଦେଖି ଅତିଶୟ ଲଜ୍ଜିତ ଓ ବ୍ୟାକୁଳିତମନା ହୋଇ ଚିନ୍ତାକଲେ, "ଆମ୍ଭେ ଏତେବେଳେ କପରି ଅଶ୍ୱପୃଷ୍ଠରେ ଆରୋହଣ କରିବୁ, କପରି ବା ରାଜଧାନୀକୁ ଗମନ କରିବୁଁ । ଆମ୍ଭେ ଅଗ୍ନିଷ୍ଟୁତ ଯଜ୍ଞର ଅନୁଷ୍ଠାନ କରିବାରୁ ଆମ୍ଭ ଔରସରେ ମହାବଳ ପରାକ୍ରାନ୍ତ ଏକଶତ ପୁତ୍ର ଜନ୍ମଗ୍ରହଣ କରିଅଛନ୍ତି । ଆମ୍ଭେ ଏତେବେଳେ ସେମାନଙ୍କ ନିକଟରେ କ'ଣ କରିବୁ ? ଓ ଆମ୍ଭର ପତ୍ନୀ, ନଗରବାସୀ ଓ ଗ୍ରାମ୍ୟ ଲୋକମାନେ ପଚାରିଲେ ଆମ୍ଭେ ସେମାନଙ୍କୁ କ'ଣ କହିବୁଁ ? ଧର୍ମାର୍ଥଦର୍ଶୀ ଋଷିମାନେ କହନ୍ତି ଯେ, ମୃଦୁତ୍ୱ, କୋମଳତ୍ୱ ଓ କାତରତ୍ୱ, ଏହି ତିନିଗୋଟି ସ୍ତ୍ରୀ ଧର୍ମ ଅଟେ ଏବଂ ବ୍ୟାୟାମ, ସହିଷ୍ଣୁତା, କର୍କଶତ୍ୱ ଓ ବୀର୍ଯ୍ୟବତ୍ତା ପୁରୁଷ-ଗୁଣ ଅଟେ । ସମ୍ପ୍ରତି ଆମ୍ଭର କେଉଁ କାରଣରୁ ପୁରୁଷତ୍ୱ ନଷ୍ଟ ହୋଇ ସ୍ତ୍ରୀତ୍ୱ ଜନ୍ମିଲା ? ସ୍ତ୍ରୀଭାବ ଧାରଣ କଲା ଉତ୍ତାରେ ଆମ୍ଭେ କପରି ପୁନଶ୍ଚ ଅଶ୍ୱରେ ଆରୋହଣ କରିବାକୁ ଉପଯୁକ୍ତ ହେବୁ ?"

ସ୍ତ୍ରୀକୃତ ରାଜର୍ଷି ଭଙ୍ଗାସ୍ୱନ ଏହିପରି ବିଚାର କରି ସରୋବରରୁ ଉଠି ବହୁ ଯତ୍ନରେ ଅଶ୍ୱପୃଷ୍ଠରେ ଆରୋହଣପୂର୍ବକ ନିଜ ରାଜଧାନୀକୁ ପ୍ରତ୍ୟାଗମନ କଲେ । ସେ ରାଜଧାନୀରେ ଉପସ୍ଥିତ ହେଲାମାତ୍ରେ ତାହାଙ୍କର ପୁତ୍ର, କଳତ୍ର, ଭୃତ୍ୟ ଓ ନଗରବାସୀଗଣ ତାହାଙ୍କୁ ନିରୀକ୍ଷଣ କରି ଅତିଶୟ ବିସ୍ମିତ ହେଲେ । ୧୮ । ତତ୍ପରେ ବାଗ୍ମିଶ୍ରେଷ୍ଠ ସ୍ତ୍ରୀ·ରୂପଧାରୀ ରାଜର୍ଷି କହିଲେ, "ଆମ୍ଭେ ସୈନ୍ୟଗଣ ସମଭିବ୍ୟାହାରରେ ମୃଗୟା ନିମିତ୍ତ ନିର୍ଗତ ହୋଇ ଦୈବବଶରେ ଉଦ୍‌ଭ୍ରାନ୍ତ ହୋଇ ଗୋଟିଏ ନିବିଡ଼ ଘୋର ଅରଣ୍ୟରେ ପ୍ରବେଶ କଲୁଁ । ୧୯ । ସେହି ଭୟଙ୍କର ଅରଣ୍ୟରେ ଆମ୍ଭେ ଏକାକୀ ତୃଷାର୍ତ୍ତ ଓ ହତଚେତନ ହୋଇ ଭ୍ରମଣ କରୁ କରୁ ପକ୍ଷୀଗଣ ସଂକୁଳ ପରମ ରମଣୀୟ ଗୋଟିଏ ସରୋବର ନିରୀକ୍ଷଣ କଲୁଁ । ୨୦ । ପ୍ରଥମେ ସେହି ସରୋବରରେ ଅବଗାହନ କଲାମାତ୍ରେ ଦୈବବଶରେ ଆମ୍ଭର ପୁରୁଷତ୍ୱ ନଷ୍ଟ ହେଲାରୁ ଆମ୍ଭେ ସ୍ତ୍ରୀରୂପ ପ୍ରାପ୍ତ ହୋଇଅଛୁ ।" ସ୍ତ୍ରୀରୂପଧାରୀ ଭଙ୍ଗାସ୍ୱନ ଏହି କଥା କହି କଳତ୍ର ପୁତ୍ର ଓ ମନ୍ତ୍ରୀମାନଙ୍କର ବିଶ୍ୱାସ ଉତ୍ପାଦନ ନିମିତ୍ତ ସେମାନଙ୍କ ନାମ ସମୂହ ସମ୍ଭାଷଣ କରି ପୁତ୍ରମାନଙ୍କୁ ପୁନଶ୍ଚ କହିଲେ,

ହେ ପୁତ୍ରଗଣ ! ତୁମ୍ଭେମାନେ ପରସ୍ପର ସୌଭ୍ରାତ୍ର ସଂସ୍ଥାପନପୂର୍ବକ ଏହି ରାଜ୍ୟକୁ ଭୋଗକର । ଆମ୍ଭେ ଅରଣ୍ୟକୁ ଯାଉଅଛୁ । ୨୨ ।

ସେହି ସ୍ତ୍ରୀ ରୂପଧାରୀ ରାଜା ଶତପୁତ୍ରଙ୍କୁ ଏହିପରି କହି ବନକୁ ଗମନ କଲେ ଓ ଅରଣ୍ୟ ମଧ୍ୟରେ ଆଶ୍ରମସ୍ଥିତ ଗୋଟିଏ ତାପସଙ୍କୁ ପତିତ୍ୱରେ ସ୍ୱୀକାର କଲେ ।୨୩। କଷ୍ଟୁତ୍‌କାଳ ଅତୀତ ହେଲାରୁ ସେହି ସ୍ଥାନରେ ସେହି ଋଷିଙ୍କ ଔରସରେ ତାହାଙ୍କର ଏକଶତ ପୁତ୍ର ଉତ୍ପନ୍ନ ହେଲେ । ସେହି ପୁତ୍ରବୃନ୍ଦ ବୟଃପ୍ରାପ୍ତ ହେବାରେ ଏବେ ଭଙ୍ଗାସ୍ୱନ ସେମାନଙ୍କୁ ନେଇ ପୂର୍ବଜାତ ପୁତ୍ରମାନଙ୍କ ସନ୍ନିଧିରେ ଉପସ୍ଥିତ ହୋଇ କହିଲେ, ହେ ପୁତ୍ର ସମୂହ ! ତୁମ୍ଭେମାନେ ଆମ୍ଭର ପୁରୁଷାବସ୍ଥାରେ ଜନ୍ମଗ୍ରହଣ କରିଅଛ । ଏବଂ ଏମାନେ ଆମ୍ଭର ସ୍ତ୍ରୀ ଅବସ୍ଥାରେ ଜନ୍ମିଅଛନ୍ତି । ଅତଏବ ତୁମ୍ଭେ ଉଭୟ ପକ୍ଷ ମିଳିତ ହୋଇ ସୌଭ୍ରାତ୍ର ଅବଲମ୍ବନ ପୂର୍ବକ ଏହି ରାଜ୍ୟ ଭୋଗ କର । ୨୫ ।

ଭଙ୍ଗାସ୍ୱନ ଏହିପରି ଆଜ୍ଞା ଦେବାରୁ ତତ୍ପୂର୍ବ ପୂର୍ବ ପୁତ୍ରଗଣ ତାହାଙ୍କ ବାକ୍ୟରେ ସମ୍ମତ ଓ ତାହାଙ୍କ ଅପର ପୁତ୍ରଗଣଙ୍କ ସହ ମିଳିତ ହୋଇ ରାଜ୍ୟ ଭୋଗ କଲେ । ତତ୍ପରେ ଭ୍ରାତୃସ୍ନେହରେ ଉତ୍ତମ ରାଜ୍ୟକୁ ଭୋଗ କରୁଥିବା ସେହି ପୁତ୍ରମାନଙ୍କୁ ଦେଖି ଦେବରାଜ କ୍ରୋଧାବିଷ୍ଟ ହୋଇ ଚିନ୍ତା କଲେ, "ଆମ୍ଭେ ଏହି ରାଜର୍ଷିଙ୍କର ସ୍ତ୍ରୀତ୍ୱ ବିଧାନ ଦ୍ୱାରା ଅପକାର ବ୍ୟତୀତ ଉପକାର କରିଅଛୁଁ ।୨୭। ତତ୍ପରେ ଶତକ୍ରତୁ ଦେବରାଜ ବ୍ରାହ୍ମଣ ରୂପରେ ସେହି ନଗରକୁ ଯାଇ ରାଜପୁତ୍ରମାନଙ୍କ ଭେଦ ଜନ୍ମାଇବା ଇଚ୍ଛାରେ କହିଲେ । ୨୮ ।

ହେ ରାଜପୁତ୍ରଗଣ ! ଭ୍ରାତୃଗଣ ଏକ ପିତାଙ୍କ ଔରସରେ ଜାତ ହେଲେ ସୁଦ୍ଧା ସେମାନଙ୍କର କଦାପି ପରସ୍ପର ସୌଭ୍ରାତ୍ର ରହେ ନାହିଁ । ସୁରାସୁର ଗଣ ଏକମାତ୍ର କଶ୍ୟପଙ୍କ ଔରସରେ ଜନ୍ମଗ୍ରହଣ କରି ସୁଦ୍ଧା ରାଜ୍ୟଲାଭ ନିମିତ୍ତ ପରସ୍ପର ଘୋରତର ବିବାଦ କରିଥିଲେ । କିନ୍ତୁ ତୁମ୍ଭେ ଭଙ୍ଗାସ୍ୱନ ରାଜାଙ୍କର ଦୁଇଶତପୁତ୍ର କଶ୍ୟପଙ୍କ ସୁରାସୁରମାନଙ୍କ ସଦୃଶ ଅଟ; ତାପସ ପୁତ୍ରମାନେ ତୁମ୍ଭମାନଙ୍କ ପୈତୃକ ରାଜ୍ୟକୁ ଭୋଗ କରୁଅଛନ୍ତି ।"

ସେହି ପୁତ୍ରମାନେ ଇନ୍ଦ୍ରଙ୍କଦ୍ୱାରା ଏହିପରି ଭେଦବୁଦ୍ଧି ପ୍ରାପ୍ତ ହେବାରୁ ପରସ୍ପର ଯୁଦ୍ଧରେ ପ୍ରବୃତ୍ତ ହୋଇ ନିପାତିତ ହେଲେ । ୩୧ ।

ତାପସୀ ପୁତ୍ରମାନଙ୍କର ଯୁଦ୍ଧ ବୃତ୍ତାନ୍ତ ଶ୍ରବଣ କରି ଅତିଶୟ ଦୁଃଖଗ୍ରସ୍ତା ହୋଇ କ୍ରନ୍ଦନ କଲେ । ତତ୍ପରେ ଇନ୍ଦ୍ର ଛଦ୍ମ ବେଶରେ ବ୍ରାହ୍ମଣ ରୂପ ଧାରଣ କରି ତାହାଙ୍କୁ ଦୃଷ୍ଟିପାତ ପୂର୍ବକ କହିଲେ ( ୩୨ ) ହେ ବରାନନେ ! ତୁମ୍ଭେ କେଉଁ ଦୁଃଖରେ ଦୁଃଖିତା ହୋଇ ରୋଦନ କରୁଅଛ ? ତେତେବେଳେ ସେହି ସ୍ତ୍ରୀ ବ୍ରାହ୍ମଣଙ୍କୁ ଗୃହିଁ କରୁଣ ସ୍ୱରରେ କହିଲେ (୩୩) ହେ ବ୍ରହ୍ମନ ! କାଳ ପ୍ରଭାବରେ ଆମ୍ଭର ଦୁଇଶତପୁତ୍ର ହତ ହୋଇଅଛନ୍ତି । ଆମ୍ଭେ ପୂର୍ବେ ପୁରୁଷ ଓ ରାଜା ଥିଲୁଁ । ସେହି ଅବସ୍ଥାରେ ଆମ୍ଭ ଔରସରେ ଏକଶତ ପୁତ୍ର ଜାତ ହୋଇଥିଲେ । ସେହି ପୁତ୍ରଗଣ ବୟଃ ପ୍ରାପ୍ତ ହେବାରୁ ଦିନେ ଆମ୍ଭେ ମୃଗୟା ନିମିତ୍ତ ଗମନ କରି ଉଦ୍‌ଭ୍ରାନ୍ତ ଚିତ୍ତରେ ଅରଣ୍ୟରେ ଭ୍ରମଣ କରୁ କରୁ ଦୈବବଶରେ ଟୋଗୋଟିଏ ସରୋବର ଅବଲୋକନ ପୂର୍ବକ ତହିଁରେ ଅବଗାହନ କରିଥିଲୁ । ସେହି ସରୋବରରେ ଅବଗାହନ କଲାରୁ ଅଦ୍ୟାବଧି ଆମ୍ଭର ଏହି ସ୍ତ୍ରୀତ୍ୱ ଲଭ ହୋଇଅଛି । ଦୈବ ପ୍ରତିକୂଳ ହେବାରୁ ଆମ୍ଭେ ଏତାଦୃଶ ଅସମ୍ଭାବିତ ସ୍ତ୍ରୀ ରୂପ ଧାରଣ କରି ଅତିଶୟ ଦୁଃଖିତ ହେଲୁଁ ଓ ନିଜ ରାଜଧାନୀକୁ ଯାଇ ଔରସ ପୁତ୍ରମାନଙ୍କ ହସ୍ତରେ ରାଜ୍ୟଭାର ସମର୍ପଣ ପୂର୍ବକ ଏହି ତପୋବନକୁ ଆଗମନ କଲୁଁ । ଏହି ସ୍ଥାନରେ ଏକ ଋଷିଙ୍କ ଔରସରେ ଆମ୍ଭ ଗର୍ଭରେ ଆଉ ଏକଶତ ପୁତ୍ର ଉତ୍ପନ୍ନ ହୋଇଥିଲେ । ସେହି ସମସ୍ତ ପୁତ୍ର ବୟଃପ୍ରାପ୍ତ ହେବାରୁ ଆମ୍ଭେ ସେମାନଙ୍କୁ ଔରସପୁତ୍ରମାନଙ୍କ ସହିତ ଏକତ୍ର ରାଜ୍ୟ ଭୋଗ କରାଇବା ନିମିତ୍ତ ଆମ୍ଭର ପୂର୍ବତନ ପୁର ମଧ୍ୟରେ ସଂସ୍ଥାପନ କରି ଆସିଥିଲୁଁ ଏତେବେଳେ ସେମାନେ କାଳପ୍ରଭାବରେ ପରସ୍ପର ଶତ୍ରୁତା ଉତ୍ପାଦନପୂର୍ବକ ହତହୋଇ ଅଛନ୍ତି । ଆମ୍ଭେ ସେହି କାରଣରୁ ଅତିଶୟ କାତର ହୋଇ ରୋଦନ କରୁଅଛୁ ।

ଭଙ୍ଗାସ୍ୱନ କରୁଣ ସ୍ୱରରେ ଏହି କଥା କହିବାରୁ ଇନ୍ଦ୍ର ତାହାଙ୍କୁ ପୁରୁଷବାକ୍ୟରେ କହିଲେ, ଆମ୍ଭେ ସୁରରାଜ ଇନ୍ଦ୍ର । ପୂର୍ବେ ତୁମ୍ଭେ ଆମ୍ଭଙ୍କୁ ଅନାଦର କରି ଆମ୍ଭର ବିଦ୍ୱିଷ୍ଟ ଅଗ୍ନିଷ୍ଟୁତ୍ ଯଜ୍ଞର ଅନୁଷ୍ଠାନପୂର୍ବକ

ଆମ୍ଭର ଦୁଃଖଦାୟୀ ହୋଇଥିଲ । ଆମ୍ଭେ ସେହି ହେତୁରୁ କ୍ରୋଧାବିଷ୍ଟ ହୋଇ ତୁମ୍ଭ ପୁତ୍ରମାନଙ୍କୁ ସଂହାର କରାଇ ଅପକାର କରିଅଛୁଁ ।

ତଦନନ୍ତର ରାଜର୍ଷି ଭଙ୍ଗାସ୍ୱନ ତାହାଙ୍କୁ ଇନ୍ଦ୍ର ବୋଲି ଜାଣି ଅବିଳମ୍ବରେ ତହାଙ୍କ ଚରଣ ତଳରେ ପଡ଼ି ବିନୀତଭାବରେ କହିଲେ, ହେ ଦେବରାଜ ! ଆପଣ ଅନୁଗ୍ରହ କରି ପ୍ରସନ୍ନ ହେଉନ୍ତୁ । ଆମ୍ଭେ ପୁତ୍ର ଲାଭ ନିମିତ୍ତ ଅଗ୍ନିଷ୍ଟୁତ୍ ଯଜ୍ଞର ଅନୁଷ୍ଠାନ କରିଥିଲୁ । ଅତଏବ ଏହି ବିଷୟରେ ଆମ୍ଭର ଯେଉଁ ଅପରାଧ ହୋଇଅଛି ଆପଣ ତାହା କ୍ଷମାକରିବା ହେଉନ୍ତୁ । ତେତେବେଳେ ଇନ୍ଦ୍ରଦେବ ଭଙ୍ଗାସ୍ୱନଙ୍କ ପ୍ରଣିପାତରେ ପରିତୁଷ୍ଟ ହୋଇ ତାହାଙ୍କୁ ବର ଦେବାକୁ ଉତ୍ଥାପନ ପୂର୍ବକ କହିଲେ (୪୨) ହେ ରାଜନ୍! ଆମ୍ଭେ ତୁମ୍ଭଠାରେ ପ୍ରସନ୍ନ ହୋଇଅଛୁଁ ।

ତୁମ୍ଭର ପୁରୁଷତ୍ୱ ଓ ସ୍ତ୍ରୀତ୍ୱ ଅବସ୍ଥାରେ ଜନ୍ମିତ ଦ୍ୱିବିଧ ସନ୍ତାନମାନଙ୍କ ମଧ୍ୟରୁ କେଉଁମାନେ ଜୀବିତ ହେବେ ତାହା ଆମ୍ଭଙ୍କୁ କହ । ୪୩ । ତତ୍ପରେ ତାପସୀ ଦେବରାଜଙ୍କୁ କୃତାଞ୍ଜଳି ପୂର୍ବରେ କହିଲେ, ହେ ବାସବ ! ଆମ୍ଭର ସ୍ତ୍ରୀ ଅବସ୍ଥାରେ ଜାତ ହୋଇଥିବା ସନ୍ତାନମାନେ ଜୀବିତ ହେଉନ୍ତୁ । ୪୪ । ଇନ୍ଦ୍ର ବିସ୍ମିତ ହୋଇ ସେହି ସ୍ତ୍ରୀକୁ ନିରୀକ୍ଷଣ ପୂର୍ବକ ପୁନଶ୍ଚ ପଚାରିଲେ, ହେ ବରାନନେ ! ତୁମ୍ଭର ପୁରୁଷାବସ୍ଥାରେ ଯେଉଁ ସନ୍ତାନମାନେ ଜନ୍ମିଥିଲେ ସେମାନଙ୍କଠାରେ ତୁମ୍ଭର କାହିଁକି ଅଧିକ ଅସ୍ନେହ ହୋଇଅଛି, ତାହା ଶୁଣିବାକୁ ଆମ୍ଭେ ଇଚ୍ଛାକରୁଅଛୁଁ ; ଅତଏବ ତୁମ୍ଭେ ତାହା ଆମ୍ଭଙ୍କୁ କହ । । ୪୫ । ସ୍ତ୍ରୀ କହିଲେ, ହେ ଇନ୍ଦ୍ର ! ନିଶ୍ଚୟ କଥା ଏହି ଯେ, ପୁତ୍ରମାନଙ୍କଠାରେ ସ୍ତ୍ରୀମାନଙ୍କର ଯେପରି ଅଧିକ ସ୍ନେହ ଥାଏ, ପୁରୁଷମାନଙ୍କର ତାଦୃଶ ସ୍ନେହ ଥାଏ ନାହିଁ; ସେହି କାରଣରୁ ଆମ୍ଭର ଏହି ସ୍ତ୍ରୀ ଅବସ୍ଥାରେ ଯେଉଁ ପୁତ୍ରମାନେ ଜନ୍ମିଅଛନ୍ତି ସେହିମାନେ ଜୀବିତ ହେଉନ୍ତୁ । ୪୬ ।

ଭୀଷ୍ମ କହିଲେ, ସେ ଏହିପରି କହିବାରୁ ତେତେବେଳେ ଇନ୍ଦ୍ର ପ୍ରୀତିଯୁକ୍ତ ହୋଇ କହିଲେ, ହେ ସତ୍ୟବାଦିନି ! ତୁମ୍ଭର ସମସ୍ତ ପୁତ୍ରମାନେ ଜୀବିତ ହେଉନ୍ତୁ । ୪୮ । ହେ ସୁବ୍ରତ ! ରାଜେନ୍ଦ୍ର ! ତୁମ୍ଭେ ଏହି ସ୍ତ୍ରୀତ୍ୱ ଧାରଣ କରି ରହିବ, କି ପୁରୁଷତ୍ୱକୁ ଇଚ୍ଛାକରୁଅଛ ? ଆମ୍ଭଠାରୁ ଯେଉଁ

ବର ଗ୍ରହଣ କରିବାକୁ ଅଭିଳାଷ ହୁଏ ତାହା ପ୍ରାର୍ଥନା କର । ୪୯ । ସ୍ତ୍ରୀ କହିଲେ, ହେ ଶକ୍ର ! ଆମ୍ଭେ ସ୍ତ୍ରୀତ୍ୱ କେବଳ ପ୍ରାର୍ଥନା କରୁଅଛୁଁ । ହେ ବାସବ ! ଆମ୍ଭେ ପୁରୁଷ ହେବାକୁ ଅଭିଳାଷୀ ହେଉନାହୁଁ । ସେ ଏହିପରି କହନ୍ତେ ଇନ୍ଦ୍ରଦେବ ତାହାଙ୍କୁ ପ୍ରତ୍ୟୁତ୍ତର ଦେଲେ । ୫୦ । ହେ ରାଜନ୍ ! ତୁମ୍ଭେ ପୁରୁଷତ୍ୱକୁ ଛାଡ଼ି ସ୍ତ୍ରୀତ୍ୱକୁ କାହିଁକି ବରଣ କରୁଅଛ ? ସ୍ତ୍ରୀଭୂତ ରାଜଶ୍ରେଷ୍ଠ ଏହି ବାକ୍ୟ ଶ୍ରବଣ କରି ପ୍ରତ୍ୟୁତ୍ତର କଲେ । ୫୧ । ହେ ଶକ୍ର ! ସ୍ତ୍ରୀର ପୁରୁଷ ସହଯୋଗରେ ଅଧିକ ପ୍ରୀତି ଥାଏ, ସେହି ହେତୁରୁ ଆମ୍ଭେ ସ୍ତ୍ରୀତ୍ୱକୁ କେବଳ ପ୍ରାର୍ଥନା କରୁଅଛୁଁ । ୫୨ । ହେ ଦେବଶ୍ରେଷ୍ଠ ! ନଷ୍ଟପୁ ସତ୍ୟ କହୁଅଛୁଁ, ଆମ୍ଭେ ସ୍ତ୍ରୀତ୍ୱ ଲାଭ କରି ଅଧିକ ପ୍ରୀତିଯୁକ୍ତା ହୋଇଅଛୁଁ ; ହେ ତ୍ରିଦଶାଧିପ ! ଆମ୍ଭେ ସ୍ତ୍ରୀଭାବରେ ସନ୍ତୋଷ ଲାଭ କରିବୁଁ । ଆପଣ ସ୍ୱସ୍ଥାନକୁ ଗମନ କରିବା ହେଉନ୍ତୁ । ଦେବରାଜ ଏବମସ୍ତୁ ବୋଲି ବର ପ୍ରଦାନ ପୂର୍ବକ ସ୍ୱର୍ଗକୁ ଗମନ କଲେ । ହେ ମହାରାଜ ! ଏହି ପ୍ରକାରେ ପୁରୁଷ ଅପେକ୍ଷା ସ୍ତ୍ରୀର ଅଧିକ ପ୍ରୀତି ଥିବାର ଆମ୍ଭେ କହିଲୁଁ । ୫୪ ।

ଭଙ୍ଗାସ୍ୱନ ଉପାଖ୍ୟାନେ ଦ୍ୱାଦଶ ଅଧ୍ୟାୟ ସମାପ୍ତ । ୧୨ ।



# ତ୍ରୟୋଦଶ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ପିତାମହ ! ଐହିକ ଶିଷ୍ଟ ବ୍ୟବହାରାର୍ଥୀ ଓ ପାରଲୌକିକ ହିତାର୍ଥ ବ୍ୟକ୍ତି, ଲୋକଯାତ୍ରା ଅର୍ଥାତ୍ ଲୋକ ଦ୍ୱୟର ହିତସାଧନ କିପରି କରିବେ ? ଓ କିପରି ସ୍ୱଭାବକୁ ଆଚରଣ କରିବେ ?୧ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ମନୁଷ୍ୟ ପରହିଂସା, ଚୌର୍ଯ୍ୟ ଓ ପରଦାରାଭିମର୍ଷଣ ଅର୍ଥାତ୍ ପରସ୍ତ୍ରୀ ହରଣ ଏହି ତ୍ରିବିଧ ଶାରୀରିକ ପାପ, ଅସତ୍ ପ୍ରଳାପ, ଅର୍ଥାତ୍ ଗ୍ରାମ୍ୟବାର୍ତ୍ତା, ନିଷ୍ଠୁର ବାକ୍ୟ ପ୍ରୟୋଗ, ପରଦୋଷ ପ୍ରକାଶ ଓ ମିଥ୍ୟା କଥନ ଏହି ଚତୁର୍ବିଧ ବାଚନିକ ପାପ ଏବଂ ପର ଦ୍ରବ୍ୟାଭିଳାଷ, ପରର ଅନିଷ୍ଟ ଚିନ୍ତା ଓ ବେଦ ବାକ୍ୟରେ ଅଶ୍ରଦ୍ଧା ଏହି

ତ୍ରିବିଧ ମାନସିକ ପାପ, ଏହି ଦଶସଂଖ୍ୟକ କର୍ମପଥମାନଙ୍କୁ ତ୍ୟାଗ କରିବେ । ୪ । ତାହାହେଲେ ଉଭୟ ଲୋକର ହିତ ସାଧିତ ହେବ ।

ହେ ରାଜେନ୍ଦ୍ର ! ଏହି ଦଶ କର୍ମ ପଥମାନଙ୍କ କଥା ମନରେ ଚିନ୍ତା କରିବାର ଓ ବଚନରେ କହିବାର ଉଚିତ ନୁହେଁ । ପରଧନକୁ ଚିନ୍ତା ନ କରି ସବ ପ୍ରାଣୀଙ୍କଠାରେ ସୌହାର୍ଦ୍ଦ୍ୟ ସ୍ଥାପନ କରିବ । ପର ଦ୍ରବ୍ୟରେ ଧ୍ୟାନ, ପରର ଅନିଷ୍ଟ ଚିନ୍ତା ଓ ବେଦ ବାକ୍ୟରେ ଅଶ୍ରଦ୍ଧା ଏହି ତିନି ବିଷୟ ପରିତ୍ୟାଗ କରିବାର ଉଚିତ ।

ଅତଏବ କାୟ ମନେ ବାକ୍ୟରେ ଅନ୍ୟର ଅନିଷ୍ଟ ଚିନ୍ତା ନ କରିବାର ସମସ୍ତଙ୍କ ପକ୍ଷରେ ଶ୍ରେୟ । ଫଳତଃ ଇହଲୋକରେ ଯେଉଁ ବ୍ୟକ୍ତି ଶୁଭକାର୍ଯ୍ୟର ଅନୁଷ୍ଠାନ କରନ୍ତି, ସେ ଶୁଭଫଳ ଭୋଗ କରନ୍ତି ଓ ଯେଉଁ ବ୍ୟକ୍ତି ଅଶୁଭ କାର୍ଯ୍ୟ ଅନୁଷ୍ଠାନ କରନ୍ତି ସେ ଅଶୁଭ ଫଳ ଭୋଗୀ ହୁଅନ୍ତି । ୭ ।

ଲୋକଯାତ୍ରା କଥନେ ତ୍ରୟୋଦଶ ଅଧ୍ୟାୟ ସମାପ୍ତ । ୧୩ ।



## ଚତୁର୍ଦ୍ଦଶ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ରାଜନ୍ ! ଗଙ୍ଗା ନନ୍ଦନ ! ପିତାମହ ! ଆପଣ ସୁରାସୁରମାନଙ୍କ ଗୁରୁ, ବିଶ୍ୱରୂପ, ଭୂତଭାବନ, ଶମ୍ଭୁ, ପିତାମହ, ଜଗତ୍ପତି ଶଙ୍କର ଦେବଙ୍କର ଐଶ୍ୱର୍ଯ୍ୟ ଓ ନାମମାନଙ୍କୁ ଶୁଣି ଅଛନ୍ତି । ଅତଏବ ତାହା ଯଥାର୍ଥରୂପେ ଆମ୍ଭଙ୍କୁ କହିବା ହେଉନ୍ତୁ । ୨ ।

ଭୀଷ୍ମ କହିଲେ, ହେ ବତ୍ସ ! ଯେଉଁ ପ୍ରଭୁ ସର୍ବଗତ ହୋଇ ସୁଦ୍ଧା ସର୍ବତ୍ର ଦୃଶ୍ୟ ହୁଅନ୍ତି ନାହିଁ, ସେହି ସର୍ବଶ୍ରେଷ୍ଠ ମହାଦେବଙ୍କ ଗୁଣସମୂହ କୀର୍ତ୍ତନ କରିବାକୁ ଆମ୍ଭେ ଅସମର୍ଥ ଅଟୁଁ ।

ସେ ବ୍ରହ୍ମା ବିଷ୍ଣୁ ଓ ଇନ୍ଦ୍ର ପ୍ରଭୃତି ଦେବଗଣଙ୍କର ସୃଷ୍ଟିକର୍ତ୍ତା ଓ ପ୍ରକୃତି ପୁରୁଷଠାରୁ ଅତୀତ ବୋଲି ତାହାଙ୍କୁ ବ୍ରହ୍ମାଦି ପିଶାଚ ପର୍ଯ୍ୟନ୍ତ ସମସ୍ତେ ଉପାସନା କରନ୍ତି । ତତ୍ତ୍ୱଦର୍ଶୀ ଯୋଗଜ୍ଞାନୀ ମହର୍ଷିଗଣ କେବଳ ସୂକ୍ଷ୍ମ ସ୍ଥୂଳ ଅକ୍ଷର ପରଂବ୍ରହ୍ମ ସ୍ୱରୂପ ସେହି ଶିବଙ୍କୁ ଧ୍ୟାନ କରନ୍ତି । ସେହି ଦେବ ଦେବ ପ୍ରଥମରେ ଆତ୍ମ ତେଜ ପ୍ରଭାବରେ ପ୍ରକୃତି ଓ ପୁରୁଷଙ୍କୁ ନିର୍ମାଣ କରି ତତ୍ପରେ ପ୍ରଜାପତି ବ୍ରହ୍ମାଙ୍କୁ ନିର୍ମାଣ କଲେ । ଗର୍ଭ ଜରା ଜନ୍ମ ମରଣ ଧର୍ମଯୁକ୍ତ କେଉଁ ମନୁଷ୍ୟ ସର୍ବଶ୍ରେଷ୍ଠ ଦେବ ଦେବଙ୍କର ଗୁଣ କୀର୍ତ୍ତନ କରିବାକୁ ସମର୍ଥ ହେବ । ୭ । ମାଦୃଶ କେଉଁ ଲୋକ ପରମେଶ୍ୱର ଭବଙ୍କୁ ଜାଣିବା ନିମିତ୍ତ ସମର୍ଥ ହେବ ? ଏହି ବିଦ୍ୱାନ୍ ଗୁଣଶ୍ରେଷ୍ଠ ପରମଦୁର୍ଜୟ, ମହାତେଜା ଦିବ୍ୟଚକ୍ଷୁ ବିଷ୍ଣୁ ତାହାଙ୍କୁ ଯୋଗ ଚକ୍ଷୁରେ ଦେଖନ୍ତି । ୯ । ସହସ୍ର ବର୍ଷ ତପସ୍ୟା କରି ମହାତ୍ମା କୃଷ୍ଣ ବଦରିକାଶ୍ରମରେ ରୁଦ୍ରଙ୍କୁ ଭକ୍ତିରେ ପ୍ରସନ୍ନ କରାଇ ଅର୍ଥାତ୍ ବ୍ୟୋମାଦି ଅଷ୍ଟମୂର୍ତ୍ତିଙ୍କ ନିରନ୍ତର ଧ୍ୟାନଦ୍ୱାରା ତଦ୍ଭାବାପନ୍ନ ହୋଇ ଭୁବନରେ ବ୍ୟାପ୍ତ ଓ ସର୍ବଭୂତରେ ପ୍ରିୟତମ ହୋଇଅଛନ୍ତି । ଏ ପ୍ରତି ଯୁଗରେ ଅବିଚଳିତ ଭକ୍ତି ପ୍ରଭାବରେ ସେହି ଚରାଚର ଗୁରୁ ଦେବ ଦେବ ମହାଦେବଙ୍କର ପ୍ରୀତି ସମ୍ପାଦନ କରିଥାଆନ୍ତି ।

ଏ ପୁତ୍ରଲାଭ ନିମିତ୍ତ ସେହି ଶିବଙ୍କ ଆରାଧନାରେ ନିଯୁକ୍ତ ହୋଇ ତଦୀୟ ଐଶ୍ୱର୍ଯ୍ୟ ପ୍ରତ୍ୟକ୍ଷ କରିଅଛନ୍ତି । ଏହି ମହାତ୍ମାଙ୍କ ସଦୃଶ ଅନ୍ୟ କେହି ଉତ୍କୃଷ୍ଟ ନାହାନ୍ତି । ଜ୍ଞାନଶକ୍ତି ସମ୍ପନ୍ନ ଭଗବାନ ମହାବାହୁ ବାସୁଦେବ କେବଳ ସେହି ସନାତନ ଦେବଦେବଙ୍କର ନାମ ଗୁଣ ଓ ଐଶ୍ୱର୍ଯ୍ୟ ସମୂହର ବିଷୟ ସବୁ ବିସ୍ତାରିତ ରୂପେ କୀର୍ତ୍ତନ କରିପାରନ୍ତି ।

ବୈଶମ୍ପାୟନ କହିଲେ, ମହାରାଜ ! ପିତାମହ ମହାଯଶା ଭୀଷ୍ମ ଯୁଧିଷ୍ଠିରଙ୍କୁ ଏହି କଥା କହି ଭଗବାନ୍ ଭବ ମାହାତ୍ମ୍ୟ ସଂଯୁକ୍ତ ବାସୁଦେବଙ୍କୁ କହିଲେ, ହେ ସୁରାସୁରୋ ଗୁରୋ ! ବିଷ୍ଣୋ ! ହେ ମହାଭୁଜ ! ମହାରାଜ ଯୁଧିଷ୍ଠିରଙ୍କର ଭୂତପତି ଭଗବାନ୍ ଭବାନୀ ପତିଙ୍କ ମାହାତ୍ମ୍ୟ ଶ୍ରବଣ କରିବାକୁ ଅଭିଳାଷ ଜନ୍ମିଅଛି । ଅତଏବ ତୁମ୍ଭେ ଯଥାରୁଚି ଶିବଙ୍କର ମାହାତ୍ମ୍ୟ କୀର୍ତ୍ତନ କର । ପୂର୍ବେ ବ୍ରହ୍ମଯୋନି ତଣ୍ଡି ନାମା ମୁନି ବ୍ରହ୍ମଲୋକରେ ବ୍ରହ୍ମାଙ୍କ ନିକଟରେ ଭଗବାନ ଭୂତନାଥଙ୍କର ଯେଉଁ ସହସ୍ର

ନାମ କୀର୍ତ୍ତନ କରିଥିଲେ, ଏତେବେଳେ ଦାନ୍ତ ସୁବ୍ରତ ଏହି ବେଦବ୍ୟାସ ପ୍ରଭୃତି ମହାତ୍ମା ଋଷିଗଣ ତୁମ୍ଭ ମୁଖରୁ ସନାତନ ଆନନ୍ଦମୟ ଜ୍ଞାନସ୍ୱରୂପ ବିଶ୍ୱସ୍ରଷ୍ଟା ଭଗବାନ ଦେବ ଦେବଙ୍କର ସେହି ନାମ ସବୁ ଶ୍ରବଣ କରନ୍ତୁ । ୨୦ । ହେ ବିପ୍ରେ ରକ୍ଷିତା ଦକ୍ଷାଦିରୂପ ଗାର୍ହପତ୍ୟାଦି କୂଟସ୍ଥ ଆନନ୍ଦମୟ କର୍ତ୍ତୃରୂପ ବିଜ୍ଞାନାତ୍ମା କର୍ମଫଳ ପ୍ରଦାନ ଦ୍ୱାରା ଅଗ୍ନିରୂପ ମହୈଶ୍ୱର୍ଯ୍ୟଶାଳୀ ବିସ୍ମୃତ ନିରପାଧିକ ଓ ବୃତ୍ତି ସାମିପ୍ୟରେ ସୋପଧିକ ଅର୍ଥାତ୍ ବିଶେଷ ବିଜ୍ଞାନରୂପ ମହାଦେବଙ୍କର ଐଶ୍ୱର୍ଯ୍ୟକୁ କୀର୍ତ୍ତନ କର । ୨୧ ।

ବାସୁଦେବ କହିଲେ, ହେ ପିତାମହ ! ଯଦି ବ୍ରହ୍ମାଦି ଦେବତା ଓ ତତ୍ତ୍ୱଦର୍ଶୀ ମୁନିଗଣ, ଯେଉଁ ଈଶଙ୍କର କାର୍ଯ୍ୟଗତି ଓ ଆଦିଅନ୍ତ ଜାଣିପାରନ୍ତି ନାହିଁ, ତେବେ ମନୁଷ୍ୟ କିପରି ତାହା ସମ୍ପୂର୍ଣ୍ଣରୂପେ ଜାଣିବାକୁ ସମର୍ଥ ହେବ ? ଯାହାହେଉ ଆମ୍ଭେ ସଂପ୍ରତି ଅସୁର ନାଶକ ସେହି ଯଜ୍ଞପତିଙ୍କର ଯତ୍‌କିଞ୍ଚିତ ଗୁଣ ଆପଣମାନଙ୍କ ନିକଟରେ କୀର୍ତ୍ତନ କରୁଅଛୁଁ । ୨୪ ।

ବୈଶମ୍ପାୟନ କହିଲେ, ଭଗବାନ କୃଷ୍ଣ ଏହିପରି କହି ଶୁଚି ହୋଇ ଓ ଆଚମନ କରି ବ୍ରହ୍ମବିଦେ୍ୟକ ଗମ୍ୟ ସେହି ମହାତ୍ମାଙ୍କ ଗୁଣ ସବୁ କହିଥିଲେ । ୨୫ ।

ବାସୁଦେବ କହିଲେ, ହେ ବିପ୍ରବର ଗଣ ! ହେ ଯୁଧିଷ୍ଠିର ! ହେ ତାତ ! ଗଙ୍ଗାନନ୍ଦନ ଭୀଷ୍ମ ! ଆପଣମାନେ କପର୍ଦ୍ଦିଙ୍କର ନାମ ସବୁ ଶୁଣିବା ହେଉନ୍ତୁ । ୨୬ । ପୂର୍ବେ ଆମ୍ଭେ ଶାମ୍ବଙ୍କୁ ଲଭ କରିବା ନିମିତ୍ତ ଯାହାଙ୍କ ଦର୍ଶନ ଅତି ଦୁର୍ଲ୍ଲଭ ସେହି ଶିବଙ୍କୁ ଯେଉଁପରି ସମାଧି ବଳରେ ଦେଖିଥିଲୁଁ ତାହା ଆପଣମାନଙ୍କ ନିକଟରେ ନିବେଦନ କରି . ପଶ୍ଚାତ୍ ତାହାଙ୍କ ନାମସମୂହ କୀର୍ତ୍ତନ କରିବୁଁ । ୨୭ । ହେ ଯୁଧିଷ୍ଠିର ! ବୁଦ୍ଧିମାନ୍ ପ୍ରଦ୍ୟୁମ୍ନଙ୍କଦ୍ୱାରା ଶମ୍ବର ଦୈତ୍ୟ ନିହତ ହେଲ ଉତ୍ତାରେ ଦ୍ୱାଦଶବର୍ଷ ଅତୀତ ହେବାରୁ, ଜାମ୍ବବତୀ ରୁକ୍ମିଣୀଙ୍କର ଗର୍ଭଜାତ ପ୍ରଦ୍ୟୁମ୍ନ ଓ ଚାରୁଦେଷ୍ଣ ପ୍ରଭୃତି ପୁତ୍ରମାନଙ୍କୁ ଦେଖି ପୁତ୍ରାର୍ଥିନୀ ହୋଇ ଆମ୍ଭ ନିକଟକୁ ଆଗମନ କରି କହିଲେ, ହେ କାନ୍ତ ଅଚ୍ୟୁତ ! ଆପଣ ଆମ୍ଭଙ୍କୁ ଭବାଦୃଶ ଶୂର ବଳବାନ୍ ଶ୍ରେଷ୍ଠ କମନୀୟ ରୂପଯୁକ୍ତ ନିଷ୍ପାପ ଗୁଣବାନ୍ ପୁତ୍ର ପ୍ରଦାନ କରିବା ହେଉନ୍ତୁ ।

ହେ ଯଦୁକୁଳ ନାଥ ! ତ୍ରିଭୁବନରେ ଆପଣଙ୍କୁ କିଛି ଅପ୍ରାପ୍ୟ ନାହିଁ, ଆପଣ ଇଚ୍ଛା କଲେ ନୂତନ ଅପର ଲୋକ ସମୂହର ସୃଷ୍ଟି କରିପାରିବେ । ୩୦ ।

ହେ ମଧୁସୂଦନ ! ପୂର୍ବେ ଆପଣ ଯେଉଁପରି ଦ୍ୱାଦଶ ବର୍ଷ କଠୋର ବ୍ରତ ଅନୁଷ୍ଠାନ ପୂର୍ବକ ଭଗବାନ୍ ପଶୁପତିଙ୍କୁ ଆରାଧନା କରି ତାହାଙ୍କ ପ୍ରସାଦରେ ରୁକ୍ମଣୀଙ୍କ ଗର୍ଭରେ ଚାରୁଦେଷ୍ଣ, ସୁଚାରୁ, ଚାରୁବେଶ, ଯଶୋଧର, ଚାରୁଶ୍ରବା, ଚାରୁଯଶା, ପ୍ରଦ୍ୟୁମ୍ନ ଓ ଶମ୍ଭୁ ପ୍ରଭୃତି ଏହି କତିପୟ ମହାବଳ ପରାକ୍ରାନ୍ତ ପୁତ୍ରମାନଙ୍କୁ ଉତ୍ପନ୍ନ କରିଅଛନ୍ତି, ସଂପ୍ରତି ଆମ୍ଭଙ୍କୁ ସେହିପରି ଗୋଟିଏ ତନୟ ପ୍ରଦାନ କରିବା ହେଉନ୍ତୁ ।୩୪। ଦେବୀ ଜାମ୍ବବତୀ ଏହିପରି ଅନୁରୋଧ କଲାରୁ ଆମ୍ଭେ ସେହି ସୁମଧ୍ୟମାକୁ କହିଲୁଁ, ହେ ରାଜ୍ଞି ! ତୁମ୍ଭ ବାକ୍ୟଅନୁସାରେ ଆମ୍ଭେ :ମହାଦେବଙ୍କୁ ଆରାଧନା କରିବୁଁ ତୁମ୍ଭେ ଅନୁମତି ଦିଅ । ୩୫ । ସେ ଆମ୍ଭଙ୍କୁ କହିଲେ, ହେ ଯାଦବ ! ଆପଣ ବିଜୟ ନିମିତ୍ତ ଶିବଙ୍କୁ ଆରାଧନା କରିବାକୁ ଗମନ କର । ବ୍ରହ୍ମା, ଶିବ, କାଶ୍ୟପ, ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି, ସାବିତ୍ରୀ, ବ୍ରହ୍ମବିଦ୍ୟା ଏବଂ ନଦୀ, କ୍ଷେତ୍ର, ଔଷଧି, ଯଜ୍ଞବାହ, ବେଦ, ଋଷି, ଯଜ୍ଞ, ସମୁଦ୍ର, ଦକ୍ଷିଣା, ସ୍ତୋଭ, ନକ୍ଷତ୍ର, ପିତୃଲୋକ, ଗ୍ରହ, ଦେବ ପତ୍ନୀ, ଦେବକନ୍ୟା, ଦେବମାତା, ମନ୍ୱନ୍ତର, ଗୋ, ଋତୁ, ବତ୍ସର, କ୍ଷଣ, ଲବ, ମୁହୂର୍ତ୍ତ, ନିମେଷ ଓ ଯୁଗ ସମୂହ ଆପଣଙ୍କୁ ସର୍ବତ୍ର ସୁଖରେ ରକ୍ଷାକରନ୍ତୁ ।

ହେ ଅନଘ ! ଆପଣ ସାବଧାନ ହୋଇ ଗମନ କରନ୍ତୁ, ମାର୍ଗ ମଧ୍ୟରେ କୌଣସି ଆପଦ ନୋହୁ । ୪୦ । ରାଜପୁତ୍ରୀ ଜାମ୍ବବତୀ ଏହିପରି ପ୍ରସ୍ଥାନ କାଳୀକ ମଙ୍ଗଳାଚରଣ କଲାରୁ ଆମ୍ଭେ ତଦୀୟ ଅନୁଜ୍ଞା ଗ୍ରହଣ ପୂର୍ବକ ପିତା, ମାତା ଓ ମାତାମହ ଉଗ୍ରସେନଙ୍କ ନିକଟରେ ଉପସ୍ଥିତ ହୋଇ ସେମାନଙ୍କର ଅନୁମତି ଗ୍ରହଣ କଲୁଁ । ତତ୍ପରେ ଆମ୍ଭେ ଗଦ ଓ ଅତି ବଳିଷ୍ଠ ବଳଦେବଙ୍କ ନିକଟରେ ଉପସ୍ଥିତ ହୋଇ ସେମାନଙ୍କ ଅନୁମତି ପ୍ରାର୍ଥୀ ହେବାରୁ ସେହି ଦୁହେଁ ପ୍ରୀତିଯୁକ୍ତ ହୋଇ କହିଲେ ! ହେ କୃଷ୍ଣ ! ତୁମ୍ଭର ତପସ୍ୟା ସମୃଦ୍ଧି ନିର୍ବିଘ୍ନରେ ଲାଭହେଉ । ଆମ୍ଭେ ଗୁରୁଜନଙ୍କଠାରୁ ଅନୁଜ୍ଞା ପ୍ରାପ୍ତହୋଇ ଗରୁଡଙ୍କୁ ସ୍ମରଣ କଲାରୁ ସେ ଆମ୍ଭଙ୍କୁ ହିମାଳୟକୁ

ବନ୍ଧନ କରିନେଲେ । ଆମ୍ଭେ ହିମାଳୟରେ ପ୍ରବିଷ୍ଟ ହୋଇ ବାଲୁଙ୍କୁ ବିଦାୟ ଦେଲୁଁ । ୪୩ । ଆମ୍ଭେ ସେହି ଗିରିବରରେ ଅଦ୍ଭୁତ ଭବନମାନଙ୍କୁ ଅବଲୋକନ କରୁ କରୁ ମହାତ୍ମା ବୈୟାଘ୍ରପାଦ ଉପମନ୍ୟୁ ମୁନିଙ୍କର ଅତି ଅଦ୍ଭୁତ ଶ୍ରେଷ୍ଠ ତପସ୍ୟା କ୍ଷେତ୍ରକୁ ଦର୍ଶନ କଲୁଁ । ସେହି ଆଶ୍ରମ ରମଣୀୟ ବେଦାଧ୍ୟୟନ ଶବ୍ଦରେ ନିନାଦିତ ଓ ଦେବ ଗନ୍ଧର୍ବ କୁଳରେ ପୂଜିତ ।୪୫ ।

ଏବଂ ଧବ, ଅର୍ଜୁନ, କଦମ୍ବ, ନାରିକେଳ, କୁରୁବକ, କେତକୀ, ଜମ୍ବୁ, ପାଟଳ, ବଟ, ବରୁଣ, ବତ୍ସନାଭ, ବିଲ୍ୱ, ସରଳ, କପିତ୍ଥ, ପିୟାଳ, ଶାଳ, ତାଳ, ବଦରୀ, ଇଙ୍ଗୁଦ, ପୁନ୍ନାଗ, ଅଶୋକ, ଆମ୍ର, ମାଧବୀ ଲତା, ମଧୁକ, କୋବିଦାର, ଚମ୍ପକ, ପନସ ଓ ଫଳ ପୁଷ୍ପ ସୁଶୋଭିତ ଅନ୍ୟାନ୍ୟ ନାନାବିଧ ବନବୃକ୍ଷରେ ପରିପୂର୍ଣ୍ଣ । କୌଣସି କୌଣସି ସ୍ଥାନରେ କଦଳୀ ବନରେ ସୁଶୋଭିତ । ୪୮ । କୌଣସି କୌଣସି ସ୍ଥାନରେ ନାନାବିଧ ପକ୍ଷୀ ସମୂହର ଭୋଜ୍ୟ ଫଳସମୂହରେ ଓ ବୃକ୍ଷ ସମୂହରେ ଅଳଂକୃତ । କୌଣସି କୌଣସି ସ୍ଥାନ ଯଥାସ୍ଥାନରେ ବିନିକ୍ଷିପ୍ତ ଭସ୍ମ ଚ୍ଛନ୍ନଅଗ୍ନିରାଶିରେ ବିଭୂଷିତ । ୪୯ । କୌଣସି କୌଣସି ସ୍ଥାନ ଦିବ୍ୟ ସରୋବରରେ ଏବଂ କୌଣସି କୌଣସି ସ୍ଥାନ ବିଚିତ୍ର କୁସୁମାକୀର୍ଣ୍ଣ ବିଶାଳ ଅଗ୍ନି କୁଣ୍ଡରେ ପରିଶୋଭିତ । କୌଣସି କୌଣସି ସ୍ଥାନ ରୁରୁ, ବାନର, ଶାର୍ଦ୍ଦୂଳ, ସିଂହ, ଦ୍ୱିପସମାକୁଳ, କୌଣସି କୌଣସି ସ୍ଥାନ ହରିଣ, ମୟୂର, ମାର୍ଜାର, ଭୁଜଙ୍ଗମ, ମହିଷ, ଭଲ୍ଲୁକ ଓ ମୃଗ ସମୂହରେ ନିଷେବିତ; କୌଣସି କୌଣସି ସ୍ଥାନ ମଉଳିତ ସମୂହରେ ଭୂଷିତ; କୌଣସି କୌଣସି ସ୍ଥାନ ପ୍ରହୃଷ୍ଟ ନାନାବିଧ ପକ୍ଷୀ ସମୂହ ଦ୍ୱାରା ସେବିତ । ହେ ବୀର ! ସେହିଠାରେ ଅନୁକୂଳ ସମୀରଣ ବିବିଧ ପୁଷ୍ପ ପରାଗ ଓ ଗଜର ଗଣ୍ଡସ୍ଥଳ ସ୍ଖଳିତ-ମଦଗନ୍ଧରେ ସୁବାସିତ ହୋଇ ବହୁଥିଲା । ଦିବ୍ୟ ଅଙ୍ଗନା ଗଣ ମଧୁର ସ୍ୱରରେ ଗୀତ ଗାନ କରୁଥିଲେ; ନିର୍ଝର କୂଳର ଝର୍ଝର ଶବ୍ଦ ହସ୍ତୀଯୂଥର ବୃଂହିତ ଧ୍ୱନି, କିନ୍ନର ଗଣର ସୁମଧୁର ଗୀତ ଧ୍ୱନି ଓ ସାମ ବେଦଜ୍ଞ ବ୍ରାହ୍ମଣମାନଙ୍କର ବେଦଧ୍ୱନିରେ ସେହି ଆଶ୍ରମ ନିରନ୍ତର ପ୍ରତିଧ୍ୱନିତ ହେଉଥିଲା ।

ହେ ନୃପ ! ସେହି କ୍ଷେତ୍ର ପୁଣ୍ୟ ପବିତ୍ରଜଳା ଗଙ୍ଗାନଦୀ ଦ୍ୱାରା ନିଷେବିତ; ଶରତମି ବଳ୍କଧାରୀ ଅଗ୍ନି ସଦୃଶ ତେଜସ୍ୱୀ ପରମଧାର୍ମିକ

ବାତାହାରୀ, ଅମ୍ବୁପାୟୀ ଜପନଶୀ, ମୈତ୍ରାଦ୍ଧ ବୃତ୍ତିଦ୍ୱାରା ଶୁଦ୍ଧଚିତ୍ତ, ଧ୍ୟାନ ନିଷ୍ଠ, ଧୂମ୍ରପ, ଉଷ୍ମପ, କ୍ଷୀରପ, ଗୋଗୃହୀ, ଅଶ୍ମକୁଟ୍ଟ, ଦନ୍ତୋଲୁଖଳ, ମରୀଚପ, ଫେନପ, ମୃଗଗୃହୀ, ଅଶ୍ୱତ୍ଥ ଫଳ ଭକ୍ଷ୍ୟ ଓ ଉଦକ ଶାୟୀ ତାପସଗଣ ସେହି ଆଶ୍ରମରେ ତପସ୍ୟା କରନ୍ତି । ସେମାନଙ୍କୁ ଦେଖି ଆମ୍ଭେ ପ୍ରବେଶ କରିବାର ଉପକ୍ରମ କଲୁଁ । ୫୯ ।

ଶିବ ପ୍ରଭୃତି ଦେବଗଣ ସର୍ବଦା ସେହି ସ୍ଥାନରେ ବିଦ୍ୟମାନ ଥିବାରୁ ସେ ଆଶ୍ରମ ମଣ୍ଡଳ ଆକାଶରେ ଚନ୍ଦ୍ରମଣ୍ଡଳ ପ୍ରାୟ ଶୋଭାପାଉଥିଲା । ୬୦ । ସେହି ମହତ୍ମାମାନଙ୍କ ସନ୍ନିଧାନରୁ ଓ ମହାତପା ମୁନିମାନଙ୍କ ପ୍ରଭାବରେ ନକୁଳ କୁଳ ସର୍ପଗଣ ସହିତ ଓ ବ୍ୟାଘ୍ରବୃନ୍ଦ ମୃଗ ସମୂହ ସହିତ ମିତ୍ରଭାବରେ କ୍ରୀଡ଼ାକରନ୍ତି । ୬୧ ।

ଆମ୍ଭେ ଏହିପରି ବେଦ ବେଦାଙ୍ଗ ପାରଗ ଦ୍ୱିଜବର ଓ ନିୟମ ପରାୟଣ ମହର୍ଷିଗଣ ସେବିତ ପରମ ରମଣୀୟ ସେହି ଶ୍ରେଷ୍ଠ ଆଶ୍ରମରେ ପ୍ରବିଷ୍ଟ ହୋଇ ବିବିଧ ପଦାର୍ଥ ଅବଲୋକନ କରୁ କରୁ ଜଟା ଚୀରଧର ତେଜ ଓ ପ୍ରଭାବରେ ଅଗ୍ନି ସଦୃଶ ଦୀପ୍ତିଶାଳୀ ଶିଷ୍ୟଗଣ ପରିବୃତ ଶାନ୍ତ ଯୁବା ବ୍ରାହ୍ମଣଶ୍ରେଷ୍ଠ ପ୍ରଭୁ ଉପମନ୍ୟୁଙ୍କୁ ଅବଲୋକନ ପୂର୍ବକ ଅଭିବାଦନ କଲାରୁ ସେ ଆମ୍ଭଙ୍କୁ କହିଲେ, ହେ କମଳଲୋଚନ ! ତୁମ୍ଭେ କୁଶଳରେ ଆସିଅଛ ତ ? ତୁମ୍ଭେ ସ୍ୱୟଂ ପୂଜନୀୟ ହୋଇ ଯେ ଆମ୍ଭଙ୍କୁ ପୂଜା କରୁଅଛ ଏବଂ ଅନ୍ୟର ଦର୍ଶନୀୟ ହୋଇ ଯେ ଆମ୍ଭଙ୍କୁ ଦର୍ଶନ କରିବାକୁ ଆସିଅଛ, ଏହାଦ୍ୱାରା ଆମ୍ଭମାନଙ୍କର ତପସ୍ୟା ସଫଳ ହେଲା । ୬୨ । ତେତେବେଳେ ଆମ୍ଭେ କୃତାଞ୍ଜଳି ହୋଇ ତାହାଙ୍କୁ ଅନାମୟ ପ୍ରଶ୍ନ କରି କହିଲୁଁ ; ହେ ଭଗବନ୍ ! ଆପଣଙ୍କର ଶିଷ୍ୟଗଣ ଓ ଆଶ୍ରମସ୍ଥିତ ମୃଗ ଓ ପକ୍ଷୀସମୂହ ନିର୍ବିଘ୍ନରେ ଅଛନ୍ତି ତ ? ୬୨। ଆପଣଙ୍କ ଧର୍ମ ଓ ଅଗ୍ନି ବିଷୟର ତ କୁଶଳ ?

ତଦୁତ୍ତରେ ଭଗବାନ୍ ଉପମନ୍ୟୁ କହିଲେ, ହେ କୃଷ୍ଣ ! ତୁମ୍ଭେ ଆତ୍ମସଦୃଶ ପୁତ୍ରଲାଭ କରିବ ଏଥିରେ ସନ୍ଦେହ ନାହିଁ । ୬୮ । ହେ ଅଧୋକ୍ଷଜ ! ଏହି ତପୋବନରେ ମହାଦେବ ସପତ୍ନୀକ ହୋଇ ବିହାର

କରୁଅଛନ୍ତି । ତୁମ୍ଭେ କଠୋର ତପସ୍ୟା ଅନୁଷ୍ଠାନ ପୂର୍ବକ ସେହି ଈଶ୍ୱରଙ୍କୁ ସନ୍ତୋଷ କର । ୬୯ । ହେ ଜନାର୍ଦ୍ଦନ ! ପୂର୍ବେ ଦେବତା ଓ ଋଷିଗଣ ତପସ୍ୟା, ବ୍ରହ୍ମଚର୍ଯ୍ୟ, ସତ୍ୟ ଓ ଇନ୍ଦ୍ରିୟ ନିଗ୍ରହ ଦ୍ୱାରା ସେହି ଦେବାଦିଦେବଙ୍କୁ ସନ୍ତୋଷ କରାଇ ସ୍ୱ ସ୍ୱ ଅଭିଳଷିତ ବର ଲାଭ କରିଥିଲେ । ସେ ତେଜ ଓ ତପସ୍ୟାର ନିଧି ସ୍ୱରୂପ । ୭୧ ।

ହେ ଶତ୍ରୁ ସଂହାରକ ! ତୁମ୍ଭେ ଯାହାଙ୍କୁ ପ୍ରାର୍ଥନା କରିବ, ସେହି ସର୍ବଦା ଅଚିନ୍ତ୍ୟ ସ୍ୱଭାବ ପ୍ରଭୁ ଏହି ସ୍ଥାନରେ ଶୁଭାଶୁଭ ଯୁକ୍ତ ଭାବ ସମୂହର ସୃଷ୍ଟି ଓ ସଂହାର କର୍ତ୍ତା ହୋଇ ପାର୍ବତୀ ଦେବୀଙ୍କ ସହିତ ବାସ କରିଅଛନ୍ତି । । ୭୨ । ପୂର୍ବେ ହିରଣ୍ୟକଶିପୁ ନାମକ ଯେଉଁ ମେରୁକମ୍ପନ ଅର୍ଥାତ୍ ମହାବଳ ଦାନବ ଥିଲେ, ସେ ଶିବଙ୍କଠାରୁ ସମସ୍ତ ଅମର ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇ ଦଶକୋଟି ବର୍ଷ ପର୍ଯ୍ୟନ୍ତ ଜୀବିତ ଥିଲେ । ୭୩ । ତାହାଙ୍କ ପୁତ୍ର ଶ୍ରେଷ୍ଠ ଓ ସୁବିଖ୍ୟାତ ମନ୍ଦାର ମହାଦେବଙ୍କ ବର ପ୍ରଭାବରେ ଇନ୍ଦ୍ରଙ୍କ ସହିତ ଦଶ କୋଟି ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ କରିଥିଲେ । ୭୪ ।

ହେ ତାତ କେଶବ ! ସେହି ମନ୍ଦାର ନାମା ଦାନବର ଶରୀରରେ ବିଷ୍ଣୁଙ୍କ ସୁଦର୍ଶନ ଚକ୍ର ଓ ଆଖଣ୍ଡଳଙ୍କ ଭୟଙ୍କର ବଜ୍ର ଶୀର୍ଣ୍ଣ ଅର୍ଥାତ୍ ଜୀର୍ଣ୍ଣ ତୃଣ ସଦୃଶ ବ୍ୟର୍ଥ ହୋଇଥିଲା । ୭୫ । ହେ ଅନଘ ! ପୂର୍ବେ ଭଗବାନ ଶିବ ସେହି ଚକ୍ରରେ ଜଳ ମଧ୍ୟସ୍ଥିତ ଗୋଟିଏ ବଳ ଗର୍ବଯୁକ୍ତ ଅସୁରକୁ ସଂହାର କରି ତାହା ତୁମ୍ଭଙ୍କୁ ପ୍ରଦାନ କରିଥିଲେ । ୭୬ ।

ଭଗବାନ ବୃଷଭ ଧ୍ୱଜ ତେଜରେ ଅଦ୍ଭୁତ ପ୍ରଦୀପ୍ତ ଅଗ୍ନି ସଦୃଶ ଦୁର୍ଦ୍ଧର୍ଷ ସେହି ଚକ୍ରକୁ ଉତ୍ପାଦନ କରିଥିଲେ ଏବଂ ତୁମ୍ଭଙ୍କୁ ପ୍ରଦାନ କରିଥିଲେ । ୭୭ । ଶିବଙ୍କ ବ୍ୟତିରେକେ ଅନ୍ୟ ବ୍ୟକ୍ତି ତାହା ସହିବାକୁ ସମର୍ଥ ହୁଅନ୍ତି ନାହିଁ । ସେହି କାରଣରୁ ସେ ତାହାର ନାମ ସୁଦର୍ଶନ ଦେଇ ଅଛନ୍ତି । ୭୮ । ହେ ତାତ କେଶବ ! ସେହିଦିନଠାରୁ ତାହାର ନାମ ସୁଦର୍ଶନ ହୋଇଅଛି । ସେହି ଅଦ୍ଭୁତ ଚକ୍ର ମନ୍ଦାରର ଦେହରେ ଜୀର୍ଣ୍ଣତୃଣ ସଦୃଶ ବ୍ୟର୍ଥ ହୋଇଥିଲା । ୭୯ ।

ହେ ମନ୍ଦର ! 'ତୁମ୍ଭେ ସର୍ବଶସ୍ତ୍ର ଦ୍ୱାରା ଅବଧ ହେବ ।' ମହାଦେବଙ୍କର ଏହି ବର ପ୍ରଭାବରେ ଚକ୍ର ଓ ବଜ୍ର ପ୍ରଭୃତି ସୁତୀକ୍ଷ୍ଣ ଶତଶତ ଶସ୍ତ୍ର ଆଘାତକୁ ବୁଦ୍ଧିମାନ୍ ମନ୍ଦାର ଅନାୟାସରେ ସହ୍ୟ କରୁଥିଲା । ୮୦ । ଅମର ବୃନ୍ଦ ସେହି ଅତି ବଳଷ୍ଠ ମନ୍ଦାର ଅସୁର ଦ୍ୱାରା ଅତିଶୟ ପୀଡ଼ିତ ହୋଇ, ଶୀଘ୍ର ଶିବଙ୍କ ବରପ୍ରାପ୍ତ ଅସୁର ଶ୍ରେଷ୍ଠମାନଙ୍କ ସହିତ ପରସ୍ପର କଳହ କଲେ । ୮୧ ।

ଭଗବାନ୍ ଶିବ ବିଦ୍ୟୁତ୍‌ପ୍ରଭଙ୍କଠାରେ ଅତିଶୟ ସନ୍ତୁଷ୍ଟହୋଇ ତାହାଙ୍କୁ ତ୍ରିଲୋକର ଆଧିପତ୍ୟ ପ୍ରଦାନ କରିଥିଲେ ଏବଂ ତୁମ୍ଭେ ଆମ୍ଭର ନିତ୍ୟ ଅନୁଚର ହେବ ବୋଲି କହିଥିଲେ । ବିଦ୍ୟୁତ୍‌ପ୍ରଭ ତାହାଙ୍କ ପ୍ରସାଦରେ ଲକ୍ଷବର୍ଷ ପର୍ଯ୍ୟନ୍ତ ସର୍ବ ଲୋକର ଈଶ୍ୱରତ୍ୱ ଲଭ କରିଥିଲେ । ପ୍ରଭୁ ତାହାଙ୍କୁ ଶତଲକ୍ଷ ପୁତ୍ର ପ୍ରଦାନ କରିଥିଲେ । ୮୩ । ଶିବଙ୍କ ପ୍ରସାଦରେ କୁଶଦ୍ୱୀପ ବିଦ୍ୟୁତ୍‌ପ୍ରଭଙ୍କର ରାଜଧାନୀ ହୋଇଥିଲା । ଅବଶେଷରେ ସେ ଶିବଙ୍କର ଅନୁଚର ହୋଇଥିଲେ ।

ବିଧାତା ଶତମୁଖ ନାମକ ଗୋଟିଏ ମହାସୁରର ସୃଷ୍ଟି କରିଥିଲେ । । ୮୪ । ସେ ଶତବର୍ଷରୁ ଅଧିକ ସମୟ ପର୍ଯ୍ୟନ୍ତ ଅଗ୍ନିରେ ଆପଣାର ମାଂସ ଆହୁତି ରୂପେ ପ୍ରଦାନ କରିଥିଲେ । ଭଗବାନ୍ ଶଙ୍କର ସନ୍ତୁଷ୍ଟ ହୋଇ ତାହାଙ୍କୁ କହିଲେ, ହେ ବତ୍ସ ! ଆମ୍ଭେ ତୁମ୍ଭଙ୍କୁ କେଉଁ ବର ଦେବା କହ ! । ୮୫ । ସେହି ଅଦ୍ଭୁତ ଶତମୁଖ ତାହାଙ୍କୁ କହିଲା, ହେ ଦେବତଶ୍ରେଷ୍ଠ ! ଆମ୍ଭର ଚନ୍ଦ୍ର ସୂର୍ଯ୍ୟ ପର୍ଯ୍ୟନ୍ତ ଅର୍ଥାତ୍ ବର୍ଷଣଶୀଳ ମେଘ ଏବଂ ପୃଥିବୀ ପ୍ରଭୃତି ସୃଷ୍ଟି କରିବାର ସାମର୍ଥ୍ୟ ହେଉ; ଏବଂ ଶାଶ୍ୱତ ବଳ ଅର୍ଥାତ୍ ଶାଶ୍ୱତ ବ୍ରହ୍ମ ବିଦ୍ୟା ଆମ୍ଭ ହୃଦୟରେ ବିରାଜିତ ହେଉ—ଏହି ବର ପ୍ରଦାନ କରିବା ହେଉନ୍ତୁ । ୮୬ । ତେତେବେଳେ ପ୍ରଭୁ ଶିବ ତପାସ୍ୟ ବାକ୍ୟ ସଫଳ ହେବା ନିମିତ୍ତ 'ତଥାସ୍ତୁ' ବୋଲି କହି ବରପ୍ରଦାନ କଲେ ।

ପୂର୍ବେ ବ୍ରହ୍ମା ପୁତ୍ରଲାଭ ନିମିତ୍ତ ଯୋଗବଳ ଅବଲମ୍ବନ ପୂର୍ବକ ତିନିଶତ ବର୍ଷ ପର୍ଯ୍ୟନ୍ତ ଗୋଟିଏ ଯଜ୍ଞ ଅନୁଷ୍ଠାନ କରିଥିଲେ । ମହାଦେବ ପ୍ରସନ୍ନ ହୋଇ ତାହାଙ୍କୁ ଯଜ୍ଞଶୀଳ ଶତପୁତ୍ର ପ୍ରଦାନ କରିଥିଲେ । ହେ

କୃଷ୍ଣ ! ସଂଶୟ ନାହିଁ, ତୁମ୍ଭେ ଜାଣିଥିବ, ଯାଜ୍ଞବଲ୍କ୍ୟ ନାମରେ ଜଣେ ପରମ ଧାର୍ମିକ ଋଷିଥିଲେ । ସେ ଦେବଗୀତ, ଅର୍ଥାତ୍ ଦେବଗଣ ପ୍ରଶଂସିତ ଯୋଗେଶ୍ୱର ମହାଦେବଙ୍କୁ ଆରାଧନା କରି ଅନୁପମ ଯଶ ପ୍ରାପ୍ତ ହୋଇଥିଲେ । ପରାଶର ସୁତ ଯୋଗାତ୍ମା ବେଦବ୍ୟାସ ମୁନି ମଧ୍ୟ ଶଙ୍କରଙ୍କୁ ଆରାଧନା କରି ଅତୁଳ ଯଶ ପ୍ରାପ୍ତ ହୋଇଥିଲେ । ପୂର୍ବେ ଦେବରାଜ ବାଳଖିଲ୍ୟ ଋଷିମାନଙ୍କୁ ଅବଜ୍ଞା କରିବାରୁ ସେମାନେ କ୍ରୋଧଯୁକ୍ତ ହୋଇ ତପାନୁଷ୍ଠାନ ଦ୍ୱାରା ଭଗବାନ ମହାଦେବଙ୍କର ସନ୍ତୋଷ ବର୍ଦ୍ଧନ କରିଥିଲେ । ଜଗତ୍ପତି ଦେବଶ୍ରେଷ୍ଠ ଶିବ ସେମାନଙ୍କୁ ପ୍ରୀତିଯୁକ୍ତ ହୋଇ କହିଲେ, ( ୯୨ ) ତୁମ୍ଭେମାନେ ତପସ୍ୟା ପ୍ରଭାବରେ ଅମୃତ ହରଣକାରୀ ଗୋଟିଏ ପକ୍ଷୀଶ୍ରେଷ୍ଠ ଉତ୍ପାଦନ କରିବ । ସେ ଇନ୍ଦ୍ରଙ୍କୁ ପରାଭବ ଦେଇ ଅମୃତ ହରଣ କରିବ । ପୂର୍ବେ ମହାଦେବଙ୍କ ରୋଷ ହେତୁରୁ ପୃଥିବୀରୁ ଜଳସମୂହ ଶୁଷ୍କ ହୋଇ ଯାଇଥିଲା । ୯୩ ।

ଦେବଗଣ ତାହା ଦେଖି ଶିବଙ୍କ ଉଦ୍ଦେଶ୍ୟରେ ସପ୍ତକପାଳଯଜ୍ଞ ଅନୁଷ୍ଠାନ ପୂର୍ବକ ରୁଦ୍ରଙ୍କୁ ଆରାଧନା କରି ପୁନଶ୍ଚ ଜଳ ଆହରଣ କରିଥିଲେ । ତ୍ରିଲୋଚନ ପ୍ରସନ୍ନ ହେବାରୁ ପୃଥିବୀରେ ପୁନଶ୍ଚ ଜଳହେଲା । ୯୪ । ଅତ୍ରି ମୁନିଙ୍କ ପତ୍ନୀ ବ୍ରହ୍ମବାଦିନୀ ଅନୁସୂୟା ସ୍ୱାମୀଙ୍କୁ ପରିତ୍ୟାଗ କରି, "ଆମ୍ଭେ ପୁନଶ୍ଚ ସେହି ମୁନିଙ୍କର ବଶବର୍ତ୍ତିନୀ ହେବୁ ନାହିଁ" ( ୯୫ ) ଏହା କହି, ସେ ମହାଦେବଙ୍କର ଶରଣାଗତ ହେଲେ ଏବଂ ଅତ୍ରିଙ୍କ ଭୟ ହେତୁରୁ ମହାଦେବଙ୍କୁ ପ୍ରସନ୍ନ କରାଇବା ନିମିତ୍ତ ତିନିଶତ ବର୍ଷ ପର୍ଯ୍ୟନ୍ତ ନିରାହାର ହୋଇ ମୂଷଳରେ ଶୟନ କରିଥିଲେ ।

ଶିବ ତାହାଙ୍କୁ ହାସ୍ୟ କରି କହିଲେ, ହେ ବତ୍ସେ ! ତୁମ୍ଭର ପୁତ୍ର ହେବ ସଂଶୟ ନାହିଁ । ପତିସହବାସବିନା ଚରୁଅନ୍ନର ମନ୍ତ୍ରପ୍ରଭାବ କଲ୍ୟାଣରେ ତୁମ୍ଭ ବଂଶରେ ଗୋଟିଏ ପୁତ୍ର ଜନ୍ମିବ, ସେ ତୁମ୍ଭ ନାମାନୁସାରେ ପୃଥିବୀରେ ଆନସୂୟବ ନାମରେ ଖ୍ୟାତହେବ । ହେ ମଧୁସୂଦନ ! ଭଗବାନ୍ ବିକର୍ଣ୍ଣ ଭକ୍ତବତ୍ସଳ ମହାଦେବଙ୍କୁ ସେହିପରି ପ୍ରସନ୍ନ କରାଇ ସିଦ୍ଧି ପ୍ରାପ୍ତ ହୋଇଥିଲେ । ୯୯ । ହେ କେଶବ ! ଜିତେନ୍ଦ୍ରିୟ ଶାକଲ୍ୟ ମୁନି ନବଶତ ବର୍ଷ ପର୍ଯ୍ୟନ୍ତ ଏକମନରେ ମହାଦେବଙ୍କୁ ଆରାଧନା କରିଥିଲେ । ୧୦୦ ।

ଭଗବାନ୍ ଶିବ ସନ୍ତୁଷ୍ଟ ହୋଇ ତାହାଙ୍କୁ କହିଲେ, ହେ ବତ୍ସ ! ତୁମ୍ଭେ ଗ୍ରନ୍ଥକାର ହେବ । ତ୍ରୈଲୋକ୍ୟରେ ତୁମ୍ଭର ନାମାନୁସାରେ କୀର୍ତ୍ତି ରହିବ । ୧୦୧ । ମହର୍ଷିକୁଳ ଦ୍ୱାରା ତୁମ୍ଭ କୁଳ ଅକ୍ଷୟ ହେଉ, ଏବଂ ତୁମ୍ଭ ପୁତ୍ର ଉତ୍ତମରୂ ଗ୍ରନ୍ଥର ସୂତ୍ର କର୍ତ୍ତା ଦ୍ୱିଜ ଶ୍ରେଷ୍ଠ ହେବେ । ୧୦୨ । ପୂର୍ବେ ସତ୍ୟଯୁଗରେ ସାବର୍ଣ୍ଣି ନାମରେ ବିଖ୍ୟାତ ଜଣେ ଋଷିଥିଲେ । ସେ ଛ ସହସ୍ର ବର୍ଷ ପର୍ଯ୍ୟନ୍ତ ତପସ୍ୟା କରିଥିଲେ । ତତ୍ପରେ ସାକ୍ଷାତ୍ ଭଗବାନ ରୁଦ୍ର ତାହାକୁ କହିଲେ, ହେ ଅନଘ ! ଆମ୍ଭେ ତୁମ୍ଭଠାରେ ପ୍ରସନ୍ନ ହୋଇ ଅଛୁଁ । ତୁମ୍ଭେ ଇହଲୋକରେ ଅଜର ଅମର ହୋଇ ଲୋକବିଖ୍ୟାତ ଗ୍ରନ୍ଥ-କର୍ତ୍ତା ହେବ । ୧୦୪ । ହେ ଜନାର୍ଦ୍ଦନ ! ପୂର୍ବେ ଭକ୍ତି ପରାୟଣ, ଇନ୍ଦ୍ର, ବାରାଣସୀରେ ଦିଗମ୍ବର ଭଗବାନ୍ ଭୂତନାଥଙ୍କୁ ଆରାଧନା କରିଥିଲେ । ସେ ଶିବଙ୍କ ଆରାଧନା କରିଥିବାରୁ ଦେବରାଜ୍ୟକୁ ପ୍ରାପ୍ତ ହୋଇଥିଲେ । ପୂର୍ବକାଳରେ ନାରଦ ଭକ୍ତିରେ ମହାଦେବଙ୍କୁ ଆରାଧନା କରିଥିବାରୁ, ଦେବଗୁରୁ ଓ ଜଗଦ୍‌ଗୁରୁ ମହାଦେବ ତାଙ୍କଠାରେ ତୁଷ୍ଟହୋଇ କହିଲେ, ହେ ନାରଦ ! ଇହଲୋକରେ ତୁମ୍ଭସମାନ ଅନ୍ୟ କୌଣସି ବ୍ୟକ୍ତି ତେଜସ୍ୱୀ, ତପସ୍ୱୀ ଓ ଯଶସ୍ୱୀ ହେବନାହିଁ; ତୁମ୍ଭେ ନୃତ୍ୟ ଗୀତବାଦ୍ୟ ଦ୍ୱାରା ଆମ୍ଭର ଅନୁଗତ ହେବ ।

ହେ ବିଭୋ ! ସେହିପରି ଆମ୍ଭେ ପୂର୍ବେ ଦେବଦେବଙ୍କୁ ଦେଖିଥିଲୁ । ୧୦୮ । ହେ ତାତ ! ହେ ବିଭୋ ! ଅନଘ ! ଆମ୍ଭେ ଯେଉଁ ନିମିତ୍ତ ଯେଉଁ ରୂପେ ମହେଶ୍ୱରଙ୍କଠାରୁ ଯାହା ପ୍ରାପ୍ତ ହୋଇଅଛୁଁ, ତାହାସବୁ ସମ୍ପୂର୍ଣ୍ଣ ରୂପେ କୀର୍ତ୍ତନ କରୁଅଛୁ; ଶ୍ରବଣ କର । ହେ ତାତ ! ମାଧବ ! ପୂର୍ବେ ସତ୍ୟଯୁଗରେ ବେଦ ବେଦାଙ୍ଗ ପାରଗ ମହାଯଶା ବ୍ୟାଘ୍ରପାଦ ନାମରେ ଖ୍ୟାତ ଜଣେ ଋଷି ଥିଲେ । ତାହାଙ୍କଠାରୁ ଆମ୍ଭେ ଓ ଆମ୍ଭ ଅନୁଜ ଧୌମ୍ୟ ମୁନି ଜନ୍ମ ଗ୍ରହଣ କରିଥିଲୁଁ । ୧୧୨ । ହେ ମାଧବ ! କିଛିଦିନ ଉତ୍ତାରେ ଦିନେ ଆମ୍ଭେ ସ୍ୱୀୟ ଅନୁଜ ଧୌମ୍ୟଙ୍କ ସହିତ କ୍ରୀଡ଼ା କରୁ କରୁ ମହାତ୍ମା ଋଷିମାନଙ୍କ ଆଶ୍ରମରେ ଉପସ୍ଥିତ ହେଲୁଁ । ୧୧୩ । ସେଠାରେ ପୟସ୍ୱିନୀ ଗାଭୀ ଦୋହନ ହେଉଥିବାର ଦେଖିଲୁଁ । ସ୍ୱାଦୁ ବିଷୟରେ ଉକ୍ତ ଗାଭୀର କ୍ଷୀର ଅମୃତ ସଦୃଶ ବୋଲି ଆମ୍ଭେ ଜାଣିଥିଲୁଁ । ୧୧୪ । ତଦନନ୍ତର ଆମ୍ଭେ

ବାଲ୍ୟଭାବ ହେତୁରୁ ନିଜର ଜନନୀଙ୍କୁ କହିଲୁଁ, ହେ ଜନନି ! ଆମ୍ଭଙ୍କୁ ଦୁଗ୍ଧ ମିଶ୍ରିତ ଅନ୍ନ ଭୋଜନ ଦିଅ । ୧୧୫ । ସେତେବେଳେ ଜନନୀ ଦୁଗ୍ଧ ନ ଥିବାରୁ ଦୁଃଖିତା ହୋଇ ଜଳରେ ପିଷ୍ଟି ମିଶ୍ରିତ କରି ଦୁଗ୍ଧ ବୋଲି ଆମ୍ଭ ଦୁହିଁଙ୍କର ପାନ ନିମିତ୍ତ ପ୍ରଦାନ କଲେ । ହେ ମାଧବ ! ଆମ୍ଭେ ଏଥିପୂର୍ବେ ଯଜ୍ଞ ସମୟରେ ପିତାଙ୍କ ସହିତ ଉତ୍କୃଷ୍ଟ ଜ୍ଞାତିଙ୍କ ଗୃହକୁ ଯାଇଥିଲୁଁ । ସେଠାରେ ଦେବୀ ସୁରନନ୍ଦିନୀ ଧେନୁ ଅମୃତ ସଦୃଶ କ୍ଷୀର ପ୍ରଦାନ କରନ୍ତି, ଆମ୍ଭେ ସେହି ଦୁଗ୍ଧ ପାନ କରିଥିବାରୁ ତାହାର ସ୍ୱାଦୁ ଜାଣିଥିଲୁଁ । ହେ ତାତ ! ସେହି ହେତୁରୁ ପିଷ୍ଟରସ ପାନକରି କିଛିମାତ୍ର ତୃପ୍ତ ହେଲୁଁ ନାହିଁ, ସେତେବେଳେ ଆମ୍ଭେ ବାଲ୍ୟ ହେତୁରୁ ଆମ୍ଭ ନିଜ ଜନନୀଙ୍କୁ କହିଲୁଁ; ( ୧୨୦ ) ହେ ମାତଃ ! ତୁମ୍ଭେ ଆମ୍ଭଙ୍କୁ ଏହି ଯେଉଁ ଦୁଗ୍ଧାନ୍ନ ଭୋଜନ ଦେଇଅଛ; ଏହା ଦୁଗ୍ଧ ନୁହେଁ । ତଦନନ୍ତର ମାତା ଦୁଃଖ ଶୋକ ସମନ୍ୱିତା ହୋଇ ଆମ୍ଭଙ୍କୁ ପୁତ୍ର ସ୍ନେହ ହେତୁରୁ ଆଲିଙ୍ଗନ ଓ ମସ୍ତକ ଆଘ୍ରାଣ କରି କହିଲେ, ହେ ତାତ ! ଆମ୍ଭେମାନେ ବନବାସୀ, ସର୍ବଦା ଫଳମୂଳ ଆହାର କରି ଜୀବିକା ନିର୍ବାହ କରୁଁ ।

ବାଳଖିଲ୍ୟ ପ୍ରଭୃତି ମୁନିଗଣ ଯେଉଁ ନଦୀ ତୀରରେ ଅବସ୍ଥାନ କରନ୍ତି, ଆମ୍ଭେମାନେ ସେହି ସ୍ଥାନରେ ଅବସ୍ଥାନ କରୁଁ । ଧେନୁ ବିହୀନ ବନ, ଗିରିଗହ୍ୱର ଓ ଆଶ୍ରମବାସୀ ମୁନିଗଣ କପରି ଦୁଗ୍ଧ ପାଇବେ ? ମୁନିଗଣ କଦାପି ଗ୍ରାମ୍ୟ ବ୍ୟକ୍ତିମାନଙ୍କ ସଦୃଶ ଆହାରର ସୁଖ ଅନୁଭବ କରନ୍ତି ନାହିଁ; ସେମାନେ କେବଳ ଅରଣ୍ୟର ଫଳମୂଳ ଭୋଜନକରି ଜୀବିକା ନିର୍ବାହ କରନ୍ତି । ନଦୀତୀର ଗିରି ଗହ୍ୱର ଓ ବିବିଧ ତୀର୍ଥସ୍ଥାନରେ ଅବସ୍ଥାନ କରି ସର୍ବଦା ଜପ ଅନୁଷ୍ଠାନ ଓ ତପସ୍ୟା କରିବାର ଆମ୍ଭମାନଙ୍କର ପ୍ରଧାନ କର୍ମ । ଭଗବାନ ଭୂତନାଥ କେବଳ ଆମ୍ଭମାନଙ୍କର ପ୍ରଧାନ ଆଶ୍ରୟ । ୧୨୬ । ହେ ପୁତ୍ରକ ! ତାହାଙ୍କୁ ପ୍ରସନ୍ନ କରିପାରିଲେ ଆମ୍ଭମାନଙ୍କର ଦୁଗ୍ଧ, ଅଶନ, ବସନ ଓ ଅନ୍ୟାନ୍ୟ ସୁଖ ଲାଭ ହୋଇପାରିବ । ୧୨୭ । ହେ ବତ୍ସ ! ତୁମ୍ଭେ ଶଙ୍କରଙ୍କୁ ସର୍ବଦା ସର୍ବଭାବରେ ଶରଣାଗତ ହୁଅ । ହେ ପୁତ୍ରକ ! ତାହାଙ୍କ ପ୍ରସାଦରୁ ସମସ୍ତ ଅଭୀଷ୍ଟ ଫଳ ପ୍ରାପ୍ତହେବ । ୧୨୮ ।

ହେ ଶତ୍ରୁମର୍ଦ୍ଦନ ! ଆମ୍ଭେ ଜନନୀଙ୍କର ସେହି ବାକ୍ୟ ଶ୍ରବଣକରି କୃତାଞ୍ଜଳି ହୋଇ ପ୍ରଣତଭାବରେ ମାତାଙ୍କୁ କହିଲୁଁ (୧୨୯) ହେ ମାତଃ !

ମହାଦେବ କଏ; ସେ କେଉଁସ୍ଥାନରେ ଅଛନ୍ତି; ସେ କପରି ପ୍ରସନ୍ନ ହୁଅନ୍ତି, ସେହି ଦେବଙ୍କୁ କପରି ଦେଖାହୁଏ । ୧୩୦ । ଶର୍ବ କପରି ସନ୍ତୁଷ୍ଟ ହୁଅନ୍ତି ? ତାହାଙ୍କ ରୂପ କପରି ? ସେ ପ୍ରସନ୍ନ ହେଲେ, ବୋଲି କପରି ଜଣାଯିବ ? ହେ ଜନନି ! ସେ କପରି ଆମ୍ଭଙ୍କୁ ଦର୍ଶନ ଦେବେ ? ୧୩୧ ।

ହେ କୃଷ୍ଣ ! ହେ କେଶବ ! ତେତେବେଳେ ପୁତ୍ରବତ୍ସଳା ଆମ୍ଭ ମାତା ଏହିବାକ୍ୟ ଶୁଣି ମସ୍ତକ ଆଘ୍ରାଣ କରି ଅଶ୍ରୁଧାରା ମୋଚନ କଲେ । ୧୩୨ । ହେ ମଧୁସୂଦନ ! ହେ ସୁରୋତ୍ତମ ! ଆମ୍ଭ ଜନନୀ ମହାସୁ ଗାତ୍ର ମାର୍ଜନପୂର୍ବକ କାତର ବଚନରେ ଏହି କଥା କହିଲେ, ( ୧୩୩ ) ହେ ପୁତ୍ର ! ଯେଉଁ ଦେବ ଶାସ୍ତ୍ରଦ୍ୱାରା ମଧ୍ୟ ଜ୍ଞାନାଖ୍ୟାତ, ଶାସ୍ତ୍ରରୁ ଜ୍ଞାତହେଲେ ସୁଦ୍ଧା ମନଦ୍ୱାରା ଅଧର୍ଷଣୀୟ, ଧ୍ରୁ ସୂମାଣ ହେଲେ ମଧ୍ୟ ଲପ୍ସ ବକ୍ଷେପାଦ ଋଦ୍ଧମାନଙ୍କ ଦ୍ୱାରା ସଂକୁଳ, ଅତଏବ ଦୁରନ୍ତକ ବନ୍ଧ୍ୟାଧ୍ୱରରେ ମଧ୍ୟ ଦୁର୍ଗାହ୍ୟ ଏବଂ ପରମ ବୈରାଗ୍ୟ ଭବରେ ମଧ୍ୟ ଦୁର୍ଦ୍ଦୃଶ୍ୟ, ଅତଏବ ଉକ୍ତ ଦେବଙ୍କୁ ଅକୃତାତ୍ମା ବ୍ୟକ୍ତିମାନେ ଜାଣିପାରନ୍ତି ନାହିଁ । ୧୩୪ । ପଣ୍ଡିତଗଣ ତାହାଙ୍କର ଅସଂଖ୍ୟ ରୂପ ବଚନ ସ୍ଥାନ ଓ ବିବିଧପ୍ରକାର ପ୍ରସନ୍ନତା କୀର୍ତ୍ତନ କରନ୍ତି । ୧୩୫ । ପୂର୍ବେ ଦେବ ଦେବ ଯେଉଁସବୁ ରୂପ ଧାରଣ କରିଥିଲେ ଏବଂ ସେହି ଶର୍ବ ଯେଉଁପରି ପ୍ରସନ୍ନ ହୁଅନ୍ତି, ଯେଉଁପରି କ୍ରୀଡ଼ା କରନ୍ତି, ତାହା ଓ ଈଶଙ୍କର ଶୁଭ ଚରିତକୁ କେହି ଯଥାର୍ଥରୂପେ ଜାଣନ୍ତି ନାହିଁ । ୧୩୬ । ସେହି ସର୍ବାନ୍ତର୍ଯାମୀ ବିଶ୍ୱରୂପ ମହେଶ୍ୱର ଭକ୍ତମାନଙ୍କଠାରେ ପ୍ରସନ୍ନହୋଇ ଯେଉଁ ସମସ୍ତ ରୂପମାନଙ୍କୁ ଧାରଣ କରିଥିଲେ, ଦେବଗଣ ମୁନିମାନଙ୍କ ପ୍ରତି ଦୟାକରି ତାହା ଓ ଈଶାନଙ୍କର ଦିବ୍ୟ ଶୁଭଚରିତକୁ କହିଥିଲେ । ଏତେବେଳେ ତୁମ୍ଭେ ଯାହା ପଚାରୁଅଛ, ଆମ୍ଭେ ତାହାସବୁ ସଂକ୍ଷେପରେ କୀର୍ତ୍ତନ କରିବୁଁ, ଶ୍ରବଣ କର । ୧୩୭ ।

ମାତା କହିଲେ, ଭୂତଭାବନ ଭଗବାନ ଭବମାପତି ସ୍ୱେଚ୍ଛାନୁସାରେ ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର, ରୁଦ୍ର, ଆଦିତ୍ୟ, ଅଶ୍ୱିନୀକୁମାର, ବିଶ୍ୱଦେବ, ମନୁଷ୍ୟ, ଦେବସ୍ତ୍ରୀ, ପ୍ରେତ, ପିଶାଚ, କିରାତ, ଶବର, କୂର୍ମ, ମତ୍ସ୍ୟ, ଶଙ୍ଖ, ଯକ୍ଷ, ରାକ୍ଷସ, ସର୍ପ, ଦୈତ୍ୟ, ଦାନବ, ଜନ୍ତୁ, ଜଳଜନ୍ତୁ, ବ୍ୟାଘ୍ର, ସିଂହ, ମୃଗ, ତରକ୍ଷୁ, ଭଲ୍ଲୁକ, ଉଲ୍ଲୁକ, କୁକୁର, ଶୃଗାଳ, କୃକଳାସ, ହଂସ, କାକ,

ମୟୂର, ବକ, ସାରସ, ଗୃଧ୍ର, ଚକ୍ରାଙ୍ଗ, ନୀଳକଣ୍ଠ, ପର୍ବତ ଗୋ, ଅଶ୍ୱ, ହସ୍ତୀ, ଉଷ୍ଟ୍ର, ଗର୍ଦ୍ଦଭ, ଛାଗ ଓ ଶାର୍ଦ୍ଦୂଳ ରୂପ ଧାରଣ କରିଥାଆନ୍ତି । ସେ କେତେବେଳେ ଦଣ୍ଡୀ, ଛତ୍ରୀ, କୁଣ୍ଡୀ, ବ୍ରାହ୍ମଣ, ଷଣ୍ମୁଖ, ବହୁମୁଖ, ତ୍ରିନେତ୍ର ଓ ବହୁଶୀର୍ଷ ହୁଅନ୍ତି । ୧୪୮ । କେତେବେଳେ ଅନେକକୋଟି ପାଦଯୁକ୍ତ, କେତେବେଳେ ଅନେକ ଉଦର, ମୁଖଧାରୀ, କେତେବେଳେ ଅନେକ ପାଣିପାର୍ଶ୍ୱଯୁକ୍ତ ଓ ଅସଂଖ୍ୟ ଗଣରେ ପରିବୃତ ହୁଅନ୍ତି । ୧୪୯ । କେତେବେଳେ କେତେବେଳେ, ଋଷି, ଗନ୍ଧର୍ବ, ସିଦ୍ଧ ଓ ଚାରଣଗଣଙ୍କର ରୂପ ଧାରଣ କରନ୍ତି । କେତେବେଳେ ଭସ୍ମ ପାଣ୍ଡୁର ଗାତ୍ର ଓ କେତେ-ବେଳେ ଅର୍ଦ୍ଧଚନ୍ଦ୍ରଦ୍ୱାରା ବିଭୂଷିତ ହୁଅନ୍ତି । ୧୫୦ ।

ସେହି ସର୍ବଭୂତାତ୍ମକ, ସର୍ବାନ୍ତର୍ଯ୍ୟାମୀ, ସର୍ବଗ, ସର୍ବଲୋକ ପ୍ରତିଷ୍ଠିତ, ସର୍ବଲୋକାନ୍ତରାତ୍ମା, ସର୍ବବାଦୀ ଭୂତଭାବନ ଭଗବାନ୍ ମହାଦେବ ଏହିପରି ସର୍ବଜ୍ଞ ସର୍ବଦେହୀମାନଙ୍କର ହୃଦୟରେ ବାସ କରିଅଛନ୍ତି । ପଣ୍ଡିତଗଣ ତାହାଙ୍କୁ ଅସଂଖ୍ୟ ନାମରେ ନିର୍ଦ୍ଦେଶ ଓ ଅସଂଖ୍ୟ ପ୍ରକାରରେ ସ୍ତବ କରନ୍ତି । ଯେଉଁ ବ୍ୟକ୍ତି ତାହାଙ୍କ ନିକଟରେ ଯେଉଁପରି ଅଭିଳାଷ ଓ ଯାହା ପ୍ରାର୍ଥନା କରନ୍ତି ଏବଂ ଯେଉଁ ନିମିତ୍ତ ତାହାଙ୍କୁ ଅର୍ଚ୍ଚନା କରନ୍ତି, ଦେବ ଦେବ ତାହାସବୁ ଜାଣନ୍ତି । ଯଦି ଇଚ୍ଛାକର ତାହାଙ୍କ ନିକଟରେ ଶରଣାଗତ ହୁଅ । ୧୫୩ ।

ସେ କେତେବେଳେ ଆନନ୍ଦ ପ୍ରକାଶ କରନ୍ତି, କେତେବେଳେ କୋପ କରନ୍ତି । କେତେବେଳେ ମିତ୍ର ରୂପରେ ଅନୁଗ୍ରହ ଓ ଅମିତ୍ର ରୂପରେ ନିଗ୍ରହ ପ୍ରକାଶ କରନ୍ତି । କେତେବେଳେ ଚକ୍ରୀ, କେତେବେଳେ ଶୂଳୀ, କେତେବେଳେ ଗଦାପାଣି, କେତେବେଳେ ମୂଷଳୀ ଓ କେତେବେଳେ ଖଡ୍ଗ ପଟ୍ଟିଶଧାରୀ ହୁଅନ୍ତି । ୧୫୪ । କେତେବେଳେ, ଭୂଧର, ନାଗ ଅର୍ଥାତ୍ ଶେଷନାଗ, ମେଖଳାଧାରୀ ଓ ନାଗକୁଣ୍ଡଳଧାରୀ ହୁଅନ୍ତି । କେତେ-ବେଳେ ନାଗ ଯଜ୍ଞୋପବୀତଧାରୀ ଓ କେତେବେଳେ ହସ୍ତୀ ଚର୍ମର ଉତ୍ତରୀୟ ବସ୍ତ୍ରଧାରୀ ହୁଅନ୍ତି । ୧୫୫ । ସେ ପ୍ରମଥଗଣରେ ପରିବୃତ ହୋଇ କେତେ-ବେଳେ ନୃତ୍ୟ, ଗୀତ, ହାସ୍ୟ କରନ୍ତି, ଏବଂ ବିଧ ବିଚିତ୍ର ବାଦ୍ୟମାନଙ୍କୁ ବାଦନ କରନ୍ତି । ୧୫୬ ।

କେତେବେଳେ ଉନ୍ମତ୍ତ ହୋଇ ଭ୍ରମଣ କରନ୍ତି । କେତେବେଳେ ଜୃମ୍ଭଣ, ଅର୍ଥାତ୍ ହାଇ ପରିତ୍ୟାଗ କରନ୍ତି, କେତେବେଳେ ସ୍ୱୟଂ ରୋଦନ କରନ୍ତି । କେତେବେଳେ ଉନ୍ମତ୍ତ ପରି କହନ୍ତି, କେତେବେଳେ ସୁସ୍ୱରରେ ବଚନ କହନ୍ତି । ୧୫୭ । କେତେବେଳେ ପ୍ରଚଣ୍ଡ ମୂର୍ତ୍ତି ଧାରଣ କରି ପ୍ରାଣୀମାନଙ୍କୁ ଭୟ ପ୍ରଦର୍ଶନ ପୂର୍ବକ ଉଚ୍ଚହାସ କରନ୍ତି । କେତେବେଳେ ଯଥା ସୁଖରେ ଶୟନ କରନ୍ତି । ଜୃମ୍ଭା ପରିତ୍ୟାଗ କରନ୍ତି ଓ କେତେବେଳେ ଜାଗରିତ ହୋଇଥାନ୍ତି । ୧୫୮ । କେତେବେଳେ ସ୍ୱୟଂ ଜପ ଓ ତପସ୍ୟା କରନ୍ତି ଓ କେତେବେଳେ ଅନ୍ୟଦ୍ୱାରା ସ୍ୱୀୟ ନାମ ଜପ ଓ ଆପଣା ଉଦ୍ଦେଶ୍ୟରେ ତପସ୍ୟା କରନ୍ତି । କେତେବେଳେ ଦାନ କରନ୍ତି, କେତେବେଳେ ପ୍ରତିଗ୍ରହ କରନ୍ତି । କେତେବେଳେ ଯୋଗ କରନ୍ତି । କେତେବେଳେ ଅବା ଧ୍ୟାନରେ ପ୍ରବୃତ୍ତ ହୁଅନ୍ତି । କେତେବେଳେ କେତେବେଳେ ବେଦୀ ଯୂପକାଠ ଓ ହୁତାଶନରେ ଦୃଶ୍ୟ ହୁଅନ୍ତି । କେତେବେଳେ ବାଳକ, କେତେବେଳେ ଯୁବକ ଓ କେତେବେଳେ ଅବା ବୃଦ୍ଧ ରୂପରେ ଦୃଶ୍ୟ ହୁଅନ୍ତି । ୧୬୦ । କେତେବେଳେ ମୁନିକନ୍ୟା ଓ ମୁନି ପତ୍ନୀମାନଙ୍କ ସଙ୍ଗେ କ୍ରୀଡ଼ା କରନ୍ତି । କେତେବେଳେ ଊର୍ଦ୍ଧ୍ୱ କେଶ; କେତେବେଳେ ମହାଲିଙ୍ଗ ଓ କେତେବେଳେ ଉଲଗ୍ନ, ବିକୃତ ନେତ୍ର ହୁଅନ୍ତି । । ୧୬୧ । କେତେବେଳେ ଗୌରବର୍ଣ୍ଣ, କେତେବେଳେ ଶ୍ୟାମାଙ୍ଗ, କେତେବେଳେ କୃଷ୍ଣ ପାଣ୍ଡୁର ବର୍ଣ୍ଣ, କେତେବେଳେ ନୀଳଲୋହିତ ବର୍ଣ୍ଣ, କେତେବେଳେ ବିକୃତାଙ୍ଗ ଓ କେତେବେଳେ ଅବା ବିଶାଳାକ୍ଷ ହୁଅନ୍ତି; କେତେବେଳେ ଦିଗମ୍ବର ଓ କେତେବେଳେ ସର୍ବବାସକ ଅର୍ଥାତ୍ ସମସ୍ତଙ୍କର ଆଚ୍ଛାଦନକାରୀ ହୁଅନ୍ତି । ୧୬୨ । ସେ ରୂପ ଶୂନ୍ୟ ଓ ମାୟାବୀ ଅଟନ୍ତି । ନାନାକାର୍ଯ୍ୟର ଆକାର ସ୍ୱରୂପୀ ଏବଂ ହିରଣ୍ୟ ଗର୍ଭ ଅଟନ୍ତି । ସେ ଅନାଦି ଅର୍ଥାତ୍ କାରଣ ଶୂନ୍ୟ, ତାହାଙ୍କର ଜନ୍ମ ନାହିଁ ଓ କେହି ତାହାଙ୍କର ବିନାଶ ଦେଖନ୍ତି ନାହିଁ । ତାହାଙ୍କର କେହି ବିନାଶକାରୀ ନ ଥିବାରୁ ମୃତ୍ୟୁ ହୁଏ ନାହିଁ । ୧୬୩ ।

ସେହି ସୂକ୍ଷ୍ମ ମନୋବୃତ୍ତିର ବିଷୟୀଭୂତ, ଯୋଗ ସ୍ୱରୂପ ମହାତ୍ମା ମହେଶ୍ୱର ପ୍ରାଣୀକୁଳର ପ୍ରାଣ, ମନ ଓ ଜୀବରୂପରେ ଅବସ୍ଥାନ କରିଅଛନ୍ତି । ସେ କେତେବେଳେ ବାଦକ, କେତେବେଳେ ଗାୟକ, କେତେବେଳେ

ଅସଂଖ୍ୟ ନେତ୍ର, କେତେବେଳେ ଏକବକ୍ତ୍ର, କେତେବେଳେ ଦ୍ୱିବକ୍ତ୍ର, କେତେବେଳେ ତ୍ରିବକ୍ତ୍ର ଓ କେତେବେଳେ ଅସଂଖ୍ୟ ବକ୍ତ୍ର ହୁଅନ୍ତି ।୧୬୫।

ହେ ପୁତ୍ର ! ଏତେବେଳେ ତୁମ୍ଭେ ସେହି ମହାଦେବଙ୍କଠାରେ ଏକାନ୍ତ ଭକ୍ତିପରାୟଣ ଓ ତଦ୍‌ଗତ ମାନସ ହୋଇ ତାହାଙ୍କୁ ଭଜ, ତାହାହେଲେ ଅଭୀଷ୍ଟ ଫଳ ପ୍ରାପ୍ତ ହେବ ।୧୬୬। ହେ ଶତ୍ରୁମର୍ଦ୍ଦନ ! ଜନନୀଙ୍କର ସେହି ବାକ୍ୟ ଶ୍ରବଣକରି ସେହିଦିନଠାରୁ ଆମ୍ଭର ମହାଦେବଙ୍କଠାରେ ନିଷ୍ଠାଯୁକ୍ତ ଭକ୍ତି ହେଲା ।୧୬୭। ତତ୍ପରେ ଆମ୍ଭେ ତପସ୍ୟାରେ ରହି ଶଙ୍କରଙ୍କୁ ପ୍ରସନ୍ନ କଲୁଁ । ଏକସହସ୍ରବର୍ଷ ବାମାଙ୍ଗୁଷ୍ଠର ଅଗ୍ରଭାଗରେ ଅବସ୍ଥିତ ହେଲୁଁ ।୧୬୮। ଏକଶତ ବର୍ଷ ଫଳାହାର କରି ରହିଲୁଁ । ଦ୍ୱିତୀୟ ଶତବର୍ଷରେ ଶୀର୍ଣ୍ଣ ପତ୍ର ଆହାର ଓ ତୃତୀୟ ଶତ ବର୍ଷରେ ଜଳପାନ କରି ରହିଲୁଁ । ସପ୍ତଶତ ବର୍ଷ ପର୍ଯ୍ୟନ୍ତ ବାୟୁଭକ୍ଷଣ କଲୁଁ । ଏହିପରି ଏକ ସହସ୍ର ଦିବ୍ୟବର୍ଷ ପର୍ଯ୍ୟନ୍ତ ମହାଦେବଙ୍କୁ ଆରାଧନା କଲୁଁ ।୧୭୦। ତଦନନ୍ତର ସର୍ବଲୋକେଶ୍ୱର ପ୍ରଭୁ ମହାଦେବ ସନ୍ତୁଷ୍ଟ ହେଲେ ଓ ଆମ୍ଭଙ୍କୁ ମୁଖ୍ୟଭକ୍ତ ବୋଲି ଜାଣିବା ନିମିତ୍ତ ପ୍ରଶ୍ନ କଲେ । ।୧୭୧।

ସେ ମହାଯଶା ତେତେବେଳେ ଦେବଗଣ ପରିବୃତ ଇନ୍ଦ୍ର ରୂପ ଧାରଣ କରି ସହସ୍ରାକ୍ଷ ଓ ବଜ୍ର ହସ୍ତ ହୋଇ (୧୭୨) ଶୁଭ୍ରବର୍ଣ୍ଣ, ରକ୍ତାକ୍ଷ, ସଙ୍କୁଚିତ ଶୁଣ୍ଡ, ସ୍ତବ୍ଧ କର୍ଣ୍ଣ, ଚତୁର୍ଦ୍ଦନ୍ତ, ବିକଟାକାର, ମଦୋତ୍କଟ ମହାଗଜ ଉପରେ ଆରୋହଣ କରି ଆମ୍ଭ ନିକଟକୁ ଆଗମନ କଲେ । ସେହି ସମୟରେ ଭଗବାନ୍ ଶିବ ସ୍ୱୀୟ ତେଜଃ ପ୍ରଭାବରେ ଦୀପ୍ୟମାନ ହୋଇଥିଲେ । ମସ୍ତକରେ କିରୀଟ, ଗଳଦେଶରେ ହାର ଓ ଭୁଜରେ କେୟୁର ଶୋଭା ପାଉଥିଲା ।୧୭୪। ଅପ୍ସରାଗଣ ତାହାଙ୍କ ମସ୍ତକ ଉପରେ ପାଣ୍ଡୁରବର୍ଣ୍ଣ ଛତ୍ରଧାରଣ କରିଥିଲେ ଓ ଗନ୍ଧର୍ବଗଣ ତାହାଙ୍କ ସମ୍ମୁଖରେ ଗାନ କରୁଥିଲେ ।୧୭୫। ତଦନନ୍ତର ସେହି ଦେବ ଦେବେନ୍ଦ୍ର ଆମ୍ଭଙ୍କୁ କହିଲେ, ହେ ଦ୍ୱିଜବର ! ଆମ୍ଭେ ତୁମ୍ଭଠାରେ ସନ୍ତୁଷ୍ଟ ହେଲୁଁ । ତୁମ୍ଭେ ଆମ୍ଭଠାରୁ ଯେଉଁ ବର ନେବାକୁ ମନରେ ବିବେଚନା କରିଅଛ, ତାହା ପ୍ରାର୍ଥନା କର ।୧୭୬।

ହେ କୃଷ୍ଣ ! ତତ୍ପରେ ଆମ୍ଭେ ଶଙ୍କରଙ୍କର ବଚନ ଶୁଣି ତୁଷ୍ଟ ନହୋଇ, ତେତେବେଳେ ତାହାଙ୍କୁ କହିଲୁଁ ( ୧୭୭ ) ହେ ସୌମ୍ୟ ! ଆମ୍ଭେ ଆପଣଙ୍କୁ ସତ୍ୟ କହୁଅଛୁଁ ; ମହାଦେବଙ୍କ ବ୍ୟତିରେକେ ତୁମ୍ଭଠାରୁ କିମ୍ବା ଅନ୍ୟ କୌଣସି ଦେବତାଙ୍କଠାରୁ ବର ନେବାକୁ ଇଚ୍ଛାକରୁ ନାହୁଁ । । ୧୭୮ ।

ହେ ଶକ୍ର ! ଆମ୍ଭେ ନିଶ୍ଚୟ ତିବାର ସତ୍ୟ କରି କହୁଅଛୁଁ, ମହେଶ୍ୱରଙ୍କ ବ୍ୟତିରେକେ ଅନ୍ୟଦେବତାଙ୍କ କଥା ଶୁଣିବାକୁ ଇଚ୍ଛାକରୁ ନାହୁଁ । ପଶୁପତିଙ୍କ ବଚନାନୁସାରେ ଆମ୍ଭେ ସଦ୍ୟ କୃମି କିମ୍ବା ବହୁଶାଖା ବିଶିଷ୍ଟତରୁ ହେବୁଁ ପଛକେ, ତାହା ଆମ୍ଭର ଅଭୀଷ୍ଟ; କିନ୍ତୁ ପଶୁପତିଙ୍କ ବ୍ୟତିରେକେ ଅନ୍ୟ ଦେବତାଙ୍କ ପ୍ରସାଦରେ ତ୍ରିଭୁବନର ରାଜ୍ୟ ସମ୍ପତ୍ତି କି ମଧ୍ୟ ଆମ୍ଭେ ଇଚ୍ଛା କରୁନାହୁଁ । ୧୮୦ । ଆମ୍ଭେ ହରଚରଣ ଅର୍ଚ୍ଚନାରେ ରତ ହୋଇ ଚଣ୍ଡାଳ ମଧ୍ୟରେ ଜନ୍ମଗ୍ରହଣ କରିବୁଁ ପଛକେ, ତାହା ଆମ୍ଭ ପକ୍ଷରେ ଶ୍ରେୟ; କିନ୍ତୁ ଈଶ୍ୱରଙ୍କ ଅଭକ୍ତ ହୋଇ ସ୍ୱର୍ଗରେ ମଧ୍ୟ ଜନ୍ମଗ୍ରହଣ କରିବାକୁ ଆମ୍ଭର ଅଭିଳାଷ ହେଉନାହିଁ । ୧୮୧ । ଯେଉଁ ବ୍ୟକ୍ତିର ସୁରାସୁର ଗୁରୁ ବିଶ୍ୱେଶ୍ୱରଙ୍କଠାରେ ଭକ୍ତି ନ ଥାଏ, ସେ ଜଳ ଓ ପବନ ଭକ୍ଷଣ କଲେସୁଦ୍ଧା ତାହାର ଦୁଃଖ କ୍ଷୟ ହୁଏ ନାହିଁ । ୧୮୨ ।

ଯେଉଁମାନେ ହରଚରଣ ସ୍ମରଣ ବ୍ୟତିରେକେ କ୍ଷଣକାଳ ମଧ୍ୟ ଅତିବାହିତ କରନ୍ତି ନାହିଁ, ସେମାନଙ୍କ ନିକଟରେ ଅନ୍ୟ ଧର୍ମ ସମ୍ବନ୍ଧୀୟ କଥା କହିବାର ବ୍ୟର୍ଥ । ୧୮୩ । କଳିଯୁଗରେ ସର୍ବଦା ମହାଦେବଙ୍କ ନିକଟରେ ଭକ୍ତିଯୁକ୍ତ ହେବାର ଉଚିତ, ହରଭକ୍ତି ରସାୟନ ପାନକଲେ ସଂସାର ଭୟ ରହେ ନାହିଁ । ୧୮୪ । ମହାଦେବ ପ୍ରସନ୍ନ ହେଲେ କୌଣସି ଲୋକର ଦିବସ, ଦିବସାର୍ଦ୍ଧ ବା ମୁହୂର୍ତ୍ତ, କ୍ଷଣ ଅବା ଲବକ ସମୟ ସକାଶେ ଭକ୍ତି ଜାତହୁଏ ନାହିଁ । ୧୮୫ । ହେ ଶକ୍ର ! ଆମ୍ଭେ ଶଙ୍କରଙ୍କ ଆଜ୍ଞାରେ କୀଟ ଅବା ପତଙ୍ଗ ହେବୁ, କିନ୍ତୁ ତୁମ୍ଭ ପ୍ରଦତ୍ତ ତ୍ରୈଲୋକ୍ୟର ସମ୍ପତ୍ତିକୁ ଇଚ୍ଛା କରୁନାହୁଁ । ୧୮୬ ।

ମହେଶ୍ୱରଙ୍କ ବଚନରେ ଆମ୍ଭେ କୁକୁର ହେବୁ ପଛକେ, ତାହା ଆମ୍ଭର ପରମ ଶ୍ରେୟ, କିନ୍ତୁ ମହେଶ୍ୱରଙ୍କ ଆଜ୍ଞା ବ୍ୟତିରେକେ, ଆମ୍ଭେ

ସ୍ୱର୍ଗରାଜ୍ୟକୁ ଇଚ୍ଛାକରୁ ନାହୁଁ । ୧୮୭ । ଆମ୍ଭେ ସ୍ୱର୍ଗ, ଦେବରାଜ୍ୟ, ବ୍ରହ୍ମ-ଲୋକ, ପୂର୍ଣ୍ଣଭାବ କିମ୍ବା ଅନ୍ୟାନ୍ୟ ସର୍ବପ୍ରକାର ଐଶ୍ୱର୍ଯ୍ୟ ସମୂହ ଏ ତନ୍ମଧ୍ୟରୁ କିଛିମାତ୍ର ପ୍ରାର୍ଥନା କରୁନାହୁଁ, କେବଳ ହରଙ୍କର ଦାସତ୍ୱ ପ୍ରାର୍ଥନା କରୁଅଛୁଁ । ୧୮୮ । ଯେଉଁକାଳ ପର୍ଯ୍ୟନ୍ତ ଭଗବାନ୍ ଚନ୍ଦ୍ରଶେଖର ପଶୁପତି ମହେଶ ଆମ୍ଭଠାରେ ପ୍ରସନ୍ନ ହୋଇ ନାହାନ୍ତି, ତାବତ୍‌କାଳ ପର୍ଯ୍ୟନ୍ତ ଜନ୍ମ, ଜରା, ମରଣଜନ୍ୟ ଦେହ ବିହିତ ଶତ ଶତ ଦୁଃଖମାନଙ୍କୁ ଭୋଗ କରିବୁଁ । ୧୮୯ । ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ସଦୃଶ ଦେଦୀପ୍ୟମାନ, ତ୍ରିଭୁବନର ସାରଭୂତ, ଆନନ୍ଦମୟ, ଅଜର, ଅମର, ଅଦ୍ୱିତୀୟ ପୁରୁଷ ରୁଦ୍ରଙ୍କୁ ପ୍ରସନ୍ନ କରି ନପାରିଲେ ସଂସାର ମଧ୍ୟରେ କେଉଁପୁରୁଷ ଶାନ୍ତିଲାଭ କରିପାରିବ ? ୧୯୦ । ଆମ୍ଭ କର୍ମଦୋଷରେ ଇହଲୋକରେ ଆମ୍ଭେ ଯଦି ଜନ୍ମ ପରିଗ୍ରହ କରିବୁଁ, ତେବେ ସେହି ଜନ୍ମରେ ଆମ୍ଭର ମହାଦେବଙ୍କଠାରେ ଅକ୍ଷୟ ଭକ୍ତି ହେବ । ୧୯୧ ।

ଇନ୍ଦ୍ର କହିଲେ, ହେ ଉପମନ୍ୟୋ ! ତୁମ୍ଭେ ମହାଦେବଙ୍କ ବ୍ୟତିରେକେ ଯଦି ଅନ୍ୟ ଦେବତାଙ୍କଠାରୁ ପ୍ରସାଦ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରୁ ନାହିଁ, ତେବେ ଆମ୍ଭେ ପଚାରୁଅଛୁଁ, ସେହି ମହାଦେବ ଯେ ସର୍ବକାରଣର କାରଣ ଓ ଜଗତର ସୃଷ୍ଟିକର୍ତ୍ତା, ତାହାର ପ୍ରମାଣ କି ? । ୧୯୨ ।

ଉପମନ୍ୟୁ କହିଲେ, ହେ ଇନ୍ଦ୍ର ! ବ୍ରହ୍ମବାଦୀ ଋଷିମାନେ ଯାହାଙ୍କୁ ସତ୍ ଅସତ୍, ବ୍ୟକ୍ତ ଅବ୍ୟକ୍ତ, ନିତ୍ୟ ଅର୍ଥାତ୍ ଅବିନାଶୀ, ଏକ ଓ ଅନେକ ବୋଲି କହନ୍ତି, ଆମ୍ଭେ ତାହାଙ୍କଠାରୁ ବର ପ୍ରାର୍ଥନା କରୁଅଛୁଁ । ୧୯୩ । ଯାହାଙ୍କର ଆଦି, ମଧ୍ୟ ଓ ଅନ୍ତ ନାହିଁ, ଯେ ଅଚିନ୍ତିତ, ଯେ ଜ୍ଞାନ ଓ ଐଶ୍ୱର୍ଯ୍ୟ ସ୍ୱରୂପ, ଯାହାଙ୍କୁ ବ୍ରହ୍ମବାଦୀମୁନିମାନେ ପରମ ଆତ୍ମାବୋଲି କହନ୍ତି, ଆମ୍ଭେ ତାହାଙ୍କଠାରୁ ବର ପ୍ରାର୍ଥନା କରୁଅଛୁଁ । ୧୯୪ ।

ସମସ୍ତ ଐଶ୍ୱର୍ଯ୍ୟ ଯାହାଙ୍କଠାରୁ ଉତ୍ପନ୍ନ ହୋଇଅଛି, ଯେ କୌଣସି ବୀଜରୁ ଉତ୍ପନ୍ନ ହୋଇ ନାହାନ୍ତି କିନ୍ତୁ ସମୁଦାୟ ବୀଜ ଯାହାଙ୍କଠାରୁ ଉତ୍ପନ୍ନ ହୋଇଅଛି, ଆମ୍ଭେ ତାହାଙ୍କଠାରୁ ବର ପ୍ରାର୍ଥନା କରୁଅଛୁଁ । ୧୯୫ ।

ଯେ ପ୍ରକୃତିର ଅତୀତ, ଯେ ଜ୍ୟୋତିଃସ୍ୱରୂପ, ଯାହାଙ୍କର ସ୍ୱରୂପ ବୁଦ୍ଧି ପ୍ରଭୃତି ସମସ୍ତ ବୃତ୍ତିମାନଙ୍କର ଅବିଷୟୀ ଭୂତ, ଯାହାଙ୍କୁ ଜ୍ଞାତ ହେଲାରୁ ଲୋକମାନେ ଶୋକଯୁକ୍ତ ହୁଅନ୍ତି ନାହିଁ, ଯେ ସର୍ବୋତ୍କୃଷ୍ଟ, ଆମ୍ଭେ ତାହାଙ୍କଠାରୁ ବର ପ୍ରାର୍ଥନା କରୁଅଛୁଁ । ୧୯୬ । ହେ ପୁରନ୍ଦର ! ଯେ ଭୂତ ଭାବନ, ଯେ ଭୂତ ପାଳକ, ଅନ୍ତର୍ଯ୍ୟାମୀ ସର୍ବଗାମୀ, ସର୍ବଦାତା, ସର୍ବଜ୍ଞ ଓ ସର୍ବ ଶକ୍ତିମାନ ଅଟନ୍ତି, ଆମ୍ଭେ ସେହି ଦେବଙ୍କୁ ପୂଜା କରୁଅଛୁଁ । ୧୯୭ ।

ହେତୁବାଦ ଦ୍ୱାରା ଯାହାଙ୍କ ସ୍ୱରୂପ ନିରୂପଣ କରି ହୁଏ ନାହିଁ; ଯେ ମୁକ୍ତିଦାତା ଓ ତତ୍ତ୍ୱ ଜ୍ଞାନୀଗଣ ଯାହାଙ୍କୁ ଉପାସନା କରନ୍ତି, ଆମ୍ଭେ ସେହି ଉତ୍କୃଷ୍ଟ ପ୍ରଭୁଙ୍କଠାରୁ ବର ପ୍ରାର୍ଥନା କରୁଅଛୁଁ । ୧୯୮ । ହେ ମଘବନ୍ ! ସୁରେଶ୍ୱର, ବ୍ରହ୍ମବାଦୀ ଋଷିମାନେ ଯେଉଁ ଦେବଙ୍କୁ ଇନ୍ଦ୍ରଙ୍କର ଆତ୍ମା ବୋଲି କହନ୍ତି, ଯେ ଜୀବମାନଙ୍କର ଅନ୍ତରାତ୍ମା, ଯେ ସର୍ବ ଭୂତ ଗୁରୁ, ଆମ୍ଭେ ତାହାଙ୍କଠାରୁ ବର ପ୍ରାର୍ଥନା କରିବୁଁ । ୧୯୯ ।

ଯେ ନିଜ ସତ୍ତ୍ୱ ଦ୍ୱାରା ଆକାଶକୁ ବ୍ୟାପି ତାହାଦ୍ୱାରା ପାଞ୍ଚ ଭୌତିକ ଅଣ୍ଡ, ଅର୍ଥାତ୍ ବ୍ରହ୍ମାଣ୍ଡର ସୃଷ୍ଟି କରି ତାହା ମଧ୍ୟରେ ଉଦ୍ଭାବନ ଭଗବାନ ବ୍ରହ୍ମାଙ୍କୁ ପୂର୍ବେ ସର୍ଜନା କରିଥିଲେ, ଆମ୍ଭେ ତାହାଙ୍କଠାରୁ ବର ପ୍ରାର୍ଥନା କରୁଅଛୁ । ୨୦୦ । ହେ ଇନ୍ଦ୍ର ! କହିବା ହେଉ, ପରମେଶ୍ୱରଙ୍କ ବ୍ୟତିରେକେ ଅଗ୍ନି, ଜଳ, ପବନ, ପୃଥ୍ୱୀ, ଆକାଶ, ବୁଦ୍ଧି, ମନ ଓ ଅହଂକାର ଏହିମାନଙ୍କର ଅନ୍ୟ କେହି ସୃଷ୍ଟି କର୍ତ୍ତା ହୋଇପାରେ ? ୨୦୧ ।

ମନ, ବୁଦ୍ଧି, ଅହଂକାର, ରୂପ, ରସ ପ୍ରଭୃତି ବିଷୟ ଓ ଇନ୍ଦ୍ରିୟ ସମୂହ ଏହିମାନଙ୍କର ଶିବ କେବଳ ବୃକ୍ଷର ମୃତ୍ତିକା ସଦୃଶ ପରମକାରଣ ଅଟନ୍ତି; ହେ ଇନ୍ଦ୍ର ! କହିବା ହେଉ, ସେ ଶିବଙ୍କ ଅପେକ୍ଷା ଅନ୍ୟ କେହି ଉତ୍କୃଷ୍ଟ ହେବ ? ୨୦୨ । ଇହ ସଂସାରରେ ଲୋକମାନେ ଯେଉଁ ପିତାମହଙ୍କୁ ଭୁବନର ସୃଷ୍ଟିକର୍ତ୍ତା ବୋଲି କହନ୍ତି, ସେ ଦେବେଶ୍ୱରଙ୍କୁ ଆରାଧନା କରି ଉତ୍କୃଷ୍ଟ ଶ୍ରୀ ଅର୍ଥାତ୍ ସଂସାର ସୃଷ୍ଟିର କ୍ଷମତା ପ୍ରାପ୍ତ ହୋଇ ଅଛନ୍ତି । ୨୦୩ ।

ହେ ଦେବରାଜ ! ଏକ ଏକ ଗୁଣୋପାଧିବିଶିଷ୍ଟ ବ୍ରହ୍ମା, ବିଷ୍ଣୁ, ରୁଦ୍ରଙ୍କର ସ୍ରଷ୍ଟା, ଯେ ସର୍ବୋଗୁଣୋପାଧିବିଶିଷ୍ଟ ତୂର୍ଯ୍ୟମୂର୍ତ୍ତି ମହେଶ୍ୱର,

ସେ ମଧ୍ୟ ଯାହାଙ୍କର ପ୍ରସାଦଲବ୍ଧ ମହଦୈଶ୍ୱର୍ଯ୍ୟ ପ୍ରାପ୍ତ ହୋଇଅଛନ୍ତି, ସେହି ପରମେଶ୍ୱର ମହାଦେବଙ୍କଠାରୁ ଅନ୍ୟ କେହି ବ୍ୟକ୍ତି ଈଶ୍ୱର ଅଛନ୍ତି କହିବା ହେଉ । ୨୦୪ । ଦିତିସୁତ ହିରଣ୍ୟାକ୍ଷ ପ୍ରଭୃତିଙ୍କୁ ଐଶ୍ୱର୍ଯ୍ୟରେ ନିଯୁକ୍ତ କରିବାକୁ ଏବଂ ଦୈତ୍ୟ ଦାନବ ଶ୍ରେଷ୍ଠମାନଙ୍କ ଆଧିପତ୍ୟ ଓ ପରପୀଡ଼ା ନିମିତ୍ତ ସାମର୍ଥ୍ୟ ପ୍ରଦାନ କରିବାକୁ ଦେବେଶ୍ୱରଙ୍କ ବ୍ୟତିରେକେ ଅନ୍ୟ କିଏ ସମର୍ଥ ଅଛି ? ୨୦୫ ।

ହେ ଇନ୍ଦ୍ର ! ଜାଣିବା ହେଉ, ଯେଉଁ ପରମେଶ୍ୱରଙ୍କଠାରୁ ଦିଗ, କାଳ, ବାୟୁ, ଅନଳ ଓ ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ରଗଣ ଉତ୍ପନ୍ନ ହୋଇ ଅଛନ୍ତି, ତାହାଙ୍କ ଅପେକ୍ଷା ଅଧିକ କେଉଁ ଦେବ ଉତ୍କୃଷ୍ଟ ହେବେ ? ୨୦୬ । ଏଥି ଉତ୍ତରରେ ଯଜ୍ଞ ଓ ତ୍ରିପୁର ଏହି ଦୁହିଙ୍କର ଉତ୍ପତ୍ତି ଓ ବିନାଶ ବିଷୟରେ ଏବଂ ଦୈତ୍ୟ ଦାନବ ଶ୍ରେଷ୍ଠମାନଙ୍କ ଉପରେ ଆଧିପତ୍ୟ ପ୍ରକାଶପୂର୍ବକ ସେମାନଙ୍କୁ ଜୟକରି ଶତ୍ରୁମର୍ଦ୍ଦନ ହେବା ବିଷୟରେ ପରମେଶ୍ୱରଙ୍କ ବ୍ୟତିରେକେ ଅନ୍ୟ କିଏ ସମର୍ଥ ଅଛନ୍ତି ? ୨୦୭ ।

ହେ ପୁରନ୍ଦର ! ସୁରସତ୍ତମ ! କୁଶିକୋତ୍ତମ ! ଏହି ବିଷୟରେ ଅଧିକ ହେତୁବାଦ ବାକ୍ୟ କହିବାରେ କିଛି ପ୍ରୟୋଜନ ନାହିଁ । ଦେବ-ଦେବଙ୍କ ପ୍ରସାଦରେ ସିଦ୍ଧ, ଗନ୍ଧର୍ବ, ଦେବଗଣ ଓ ଋଷିଗଣ ସହସ୍ରନୟନ-ଧାରୀ ତୁମ୍ଭଙ୍କୁ ଦେଖିଲାମାନେ ସର୍ବ ପ୍ରକାରରେ ପୂଜା କରୁଅଛନ୍ତି । ୨୦୯ । ହେ ଶକ୍ର ! ଜୀବଗଣଙ୍କ ଉପଭୋଗ ନିମିତ୍ତ ଏହି ସ୍ଥାବର ଜଙ୍ଗମାତ୍ମକ ବିଶ୍ୱ ଉତ୍ପନ୍ନ ହୋଇଅଛି, ଆପଣ ଜାଣିବା ହେଉନ୍ତୁ । ଏହି ବିଶ୍ୱ ସର୍ବଗାମୀଙ୍କର ଆତ୍ମା ସ୍ୱରୂପ ଓ ଯୁଷ୍ମଦାଦିମାନେ ତାହାଙ୍କଠାରୁ ଉତ୍ପନ୍ନ ।୨୧୦। ହେ ଶକ୍ର ! ଭୂର୍ଲୋକାଦି ମହର୍ଲୋକ ପର୍ଯ୍ୟନ୍ତ ଅଗ୍ନ୍ୟାଦି ବେଦ ପର୍ଯ୍ୟନ୍ତ ସୂର୍ଯ୍ୟ ଚନ୍ଦ୍ର ବ୍ରହ୍ମ ଅନନ୍ତ ଧ୍ରୁବସ୍ଥାନ ଓ ମେରୁ ଏହି ଦିବ୍ୟ ପ୍ରଦେଶ ମାନଙ୍କର ତତ୍ତ୍ୱଦର୍ଶୀମାନେ ଜ୍ୟୋତିଃ ସ୍ୱରୂପ ସେହି ଶିବଙ୍କୁ କେବଳ ଦର୍ଶନ କରନ୍ତି; ଶିବତୁଲ୍ୟ ଅନ୍ୟ ଆକୃତିକୁ ଦର୍ଶନ କରନ୍ତି ନାହିଁ । ୧୧୨ ।

ହେ ଶକ୍ର ! ଅସୁରମାନଙ୍କ ଦ୍ୱାରା ମର୍ଦ୍ଦିତ ଦେବତାମାନେ ଯଦି ଶିବ ସଦୃଶ ଅନ୍ୟ କୌଣସି ଦେବତାଙ୍କୁ ନିରୀକ୍ଷଣ କରନ୍ତେ, ତେବେ

ସେମାନେ କାହିଁକି ତାହାଙ୍କର ଶରଣାଗତ ନୁହନ୍ତେ । ଭୟଙ୍କର ଯୁଦ୍ଧରେ ଦେବ, ଯକ୍ଷ ଓ ଉରଗଗଣଙ୍କର ରାଜ୍ୟ ପ୍ରଭୃତି ଅପହୃତ ହେଲେ, ସେ ପୁନଶ୍ଚ ତାହା ପ୍ରଦାନ କରନ୍ତି । ତ୍ରିପୁର, ଅନ୍ଧକ, ଦୁନ୍ଦୁଭି, ମହିଷ ଏବଂ ରାକ୍ଷସ ନିବାତ କବଚଗଣଙ୍କୁ ବରପ୍ରଦାନ କରି ପୁନଶ୍ଚ ଏକାବେଳକେ ସଂହାର କରିଥିଲେ । ପୂର୍ବେ ତାହାଙ୍କ ରେତ ଅଗ୍ନିମୁଖରେ ଆହୁତ ହୋଇଥିଲା । ତାହାଙ୍କ ରେତଃ ପ୍ରଭାବରେ ସୁବର୍ଣ୍ଣମୟ ଗିରି ଉତ୍ପନ୍ନ ହୋଇଅଛି ।

ତ୍ରିଲୋକମଧ୍ୟରେ ସେ ଦିଗମ୍ବର ଓ ଊର୍ଦ୍ଧ୍ୱରେତା ବୋଲି ବିଖ୍ୟାତ । ସେ ଅର୍ଦ୍ଧନାରୀଶ୍ୱର ଅଥଚ କନ୍ଦର୍ପ ବିଜୟୀ । ୨୧୭ । ଦେବଗଣ ତାହାଙ୍କ ଉତ୍କୃଷ୍ଟ ସ୍ଥାନକୁ ବିଶେଷ ପ୍ରଶଂସା କରନ୍ତି । ସେ ଶ୍ମଶାନରେ ଭୂତଗଣଙ୍କ ସହିତ କ୍ରୀଡ଼ା ଓ ନୃତ୍ୟଗୀତ କରନ୍ତି । ୨୧୮ । ତାହାଙ୍କ ବ୍ୟତିରେକେ ଅନ୍ୟ କାହାର ଅବିନଶ୍ୱର ଐଶ୍ୱର୍ଯ୍ୟ ନାହିଁ । ତାହାଙ୍କ ଅନୁଚରଗଣ ତାହାଙ୍କ ସଦୃଶ ବଳ ଲଭିକରି ଐଶ୍ୱର୍ଯ୍ୟ ଗର୍ବରେ ଗର୍ବିତ ହୋଇଥାନ୍ତି । ୨୧୯ । ତାହାଙ୍କ ବ୍ୟତିରେକେ ଅନ୍ୟ କୌଣସି ଦେବତା ଜଳବର୍ଷଣ ଓ ଉତ୍ତାପଦାନ କରି ପାରନ୍ତି ନାହିଁ । ସେ ସ୍ୱକୀୟ ତେଜରେ ପ୍ରଜ୍ୱଳିତ ହୋଇଥାଆନ୍ତି । ତାହାଙ୍କର କୈଳାସ ନାମକ ସ୍ଥାନ ତ୍ରିଲୋକରେ ପୂଜିତ ଅଟେ । ୨୨୦ । ତାହାଙ୍କଠାରୁ ଔଷଧି ଉତ୍ପନ୍ନ, ସେ ସର୍ବ ବିବିଧ ଧର୍ମର ସ୍ଥାନ, ସେ ସଚରାଚରରେ ତ୍ରୈଲୋକ୍ୟରେ ସ୍ୱେଚ୍ଛାନୁସାରେ କ୍ରୀଡ଼ା କରୁଅଛନ୍ତି । ୨୨୧ । ଋଷି, ଗନ୍ଧର୍ବ, ସିଦ୍ଧ ଓ ଯୋଗୀଗଣ ଜ୍ଞାନ ଓ ସିଦ୍ଧି କ୍ରିୟା ଯଜ୍ଞାଦିଦ୍ୱାରା ସେହି ଦେବଦେବଙ୍କୁ ଆରାଧନା କରୁଅଛନ୍ତି । ତାହାଙ୍କୁ କେହି ଜାଣନ୍ତି ନାହିଁ । କିନ୍ତୁ ସେ ପରମ କାରଣ ଓ ପରମ ଶରଣ ଅଟନ୍ତି । ୨୨୨ । ସେ କର୍ମଫଳ ଶୂନ୍ୟ, ଶରୀର ସମ୍ବନ୍ଧୀୟ ସୁଖ ଦୁଃଖରେ ହୀନ, ସୁରାସୁରମାନେ ତାହାଙ୍କୁ କର୍ମ, ଯଜ୍ଞ କ୍ରିୟା ଓ ଯୋଗ ଦ୍ୱାରା ସେବା କରନ୍ତି । ସେ ଅକ୍ଷୟ । ଆମ୍ଭେ ତାହାଙ୍କୁ କାରଣ ବୋଲି କହୁଁ । ୨୨୩ ।

ସେ ସ୍ଥୂଳ, ସୂକ୍ଷ୍ମ, ଉପମା ରହିତ । ଇନ୍ଦ୍ରିୟର ଅଗ୍ରାହ୍ୟ, ଗୁଣ ଗୋଚର, ଗୁଣହୀନ ଓ ଗୁଣାଧ୍ୟକ୍ଷ ଅଟନ୍ତି, ଅର୍ଥାତ୍ ଗୁଣ ମାନଙ୍କର ନିୟାମକ ଅଟନ୍ତି; ଏବଂ ସେ ମହେଶ୍ୱରଙ୍କ ଅର୍ଥାତ୍ ହିରଣ୍ୟଗର୍ଭାଦିଙ୍କର ପ୍ରାପ୍ୟ ଅଟନ୍ତି । ୨୨୪ ।

ସେ ସୃଷ୍ଟି, ସ୍ଥିତି ଓ ସଂହାରର କର୍ତ୍ତା, ଭୂତ ଭବିଷ୍ୟତ ଓ ବର୍ତ୍ତମାନ ଏହି ତ୍ରିକାଳର ସ୍ୱରୂପ, ସମସ୍ତଙ୍କର କାରଣ, କାରଣମାନଙ୍କର ଗୁରୁ ଓ ବିଶ୍ୱେଶ୍ୱର ଅଟନ୍ତି । ୨୨୫ । ସେ କ୍ଷର ଓ ଅକ୍ଷର ଓ ପ୍ରକୃତି ତାହାଙ୍କଠାରୁ ବିଦ୍ୟା, ଅବିଦ୍ୟା କାର୍ଯ୍ୟ, ଅକାର୍ଯ୍ୟ, ଧର୍ମ ଓ ଅଧର୍ମ, ପ୍ରାଦୁର୍ଭୂତ ହୁଅନ୍ତି । ହେ ଶକ୍ର ! ଅତଏବ ଆମ୍ଭେ ତାହାଙ୍କୁ କାରଣ ବୋଲି କହୁଅଛୁଁ । ୨୨୬ ।

ହେ ଦେବେନ୍ଦ୍ର ! ସାକ୍ଷାତରେ ଦେଖିବା ହେଉ, ସୃଷ୍ଟି ଓ ସଂହାରର କାରଣ ଦେବଦେବ ରୁଦ୍ର ସ୍ୱକୀୟ ଲିଙ୍ଗକୁ ଭଗାଙ୍କିତ କରି ଅଛନ୍ତି, ଅର୍ଥାତ୍ ଭଗାଙ୍କିତ ଲିଙ୍ଗ ରୁଦ୍ର ରୂପରେ ଆର୍ବିଭୂତ ହୋଇ ଅଛନ୍ତି; ସେହି କାରଣରୁ ସେ ଭଗବାନ ନାମ ଧାରଣ କରିଥିବାର ମଧ୍ୟ ବିବେକ ହେଉଅଛି । ୨୨୭ ।

ହେ ଶକ୍ର ! ଆମ୍ଭଙ୍କୁ ମାତା ପୂର୍ବେ କହିଥିଲେ, ମହାଦେବ ଲୋକ ଉତ୍ପାଦନର ପ୍ରଧାନ କାରଣ, ତାହାଙ୍କ ଅପେକ୍ଷା ଅନ୍ୟ କେହି ଶ୍ରେଷ୍ଠ ଦେବତା ନାହାନ୍ତି । ଆପଣଙ୍କର ଯଦି ଇଚ୍ଛା ହୁଏ, ତେବେ ତାହାଙ୍କଠାରେ ଶରଣାପନ୍ନ ହୁଅନ୍ତୁ । ୨୨୮ । ବ୍ରହ୍ମାଦି ଦେବଗଣ ସମବେତ ଏହି ତ୍ରିଭୁବନ ତଦୀୟ ଲିଙ୍ଗ ନିଃସୃତ ହେତୁରୁ ଉତ୍ପନ୍ନ, ବ୍ରହ୍ମାଦି ଦେବଗଣ ଓ ଦୈତ୍ୟଗଣ ତାହାଙ୍କ ପ୍ରସାଦରେ ପୂର୍ଣ୍ଣ ମନୋରଥ ହୋଇ, ତାହାଙ୍କ ଅପେକ୍ଷା ଅନ୍ୟ କାହାକୁ ଶ୍ରେଷ୍ଠ ବୋଲି ବିବେଚନା କରନ୍ତି ନାହିଁ । ତାହାଙ୍କ ମହିମା ବେଦରେ କୀର୍ତ୍ତିତ ହୋଇଅଛି । ସଂପ୍ରତି ଆମ୍ଭେ ଇହ ଲୋକରେ ସୁଖ, ଓ ପରଲୋକରେ ମୋକ୍ଷଲାଭ ନିମିତ୍ତ ସେହି ରୁଦ୍ରଦେବଙ୍କର ଉପାସନା କରୁଅଛୁଁ । ୨୨୯ । ବହୁତ ହେତୁବାଦ ବାକ୍ୟରେ କିଛି ପ୍ରୟୋଜନ ନାହିଁ । ଈଶ ସର୍ବ କାରଣର କାରଣ ଅଟନ୍ତି । କାରଣ ଦେବଗଣ ଅନ୍ୟ ଦେବଙ୍କର ଲିଙ୍ଗ ଅର୍ଚ୍ଚନା କରିବାର ଆମ୍ଭେ ଶୁଣିନାହୁଁ । ୨୩୦ । ସମସ୍ତ ଦେବଗଣ ମହେଶ୍ୱରଙ୍କ ଲିଙ୍ଗ ବ୍ୟତିରେକେ ଅନ୍ୟ କେଉଁ ଦେବଙ୍କର ଲିଙ୍ଗପୂଜା କରୁଅଛନ୍ତି, କିମ୍ବା ପୂର୍ବେ ପୂଜା କରୁଥିଲେ ବୋଲି ଯଦି ଶୁଣି ଅଛନ୍ତି, ତାହା କହିବା ହେଉନ୍ତୁ । ୨୩୧ ।

ଆପଣ, ବ୍ରହ୍ମା, ବିଷ୍ଣୁ ଓ ଅନ୍ୟାନ୍ୟ ଦେବଗଣ ସମସ୍ତେ ସର୍ବଦା ଶିବଙ୍କ ଲିଙ୍ଗ ଅର୍ଚ୍ଚନା କରନ୍ତି; ସେହି କାରଣରୁ ସେ ଅତିଶୟ ଶ୍ରେଷ୍ଠ ଅଟନ୍ତି । ୨୩୨ ।

ବ୍ରହ୍ମାଙ୍କର ଚିହ୍ନ ପଦ୍ମ, ବିଷ୍ଣୁଙ୍କ ଚିହ୍ନ ଚକ୍ର ଓ ଆପଣଙ୍କର ଚିହ୍ନ ବଜ୍ର । ପ୍ରଜାମାନେ ଆପଣମାନଙ୍କ ମଧ୍ୟରୁ କାହାର ଚିହ୍ନରେ ଚିହ୍ନିତ ହୋଇ ନଥାନ୍ତି । ସେମାନେ ହର ପାର୍ବତୀଙ୍କ ଚିହ୍ନ ଅନୁସାରେ ଲିଙ୍ଗ ଓ ଯୋନି ଚିହ୍ନ ଧାରଣ କରିଅଛନ୍ତି । ସେହି କାରଣରୁ ପ୍ରଜାମାନେ ଯେ ଶିବ, ଓ ଶିବଙ୍କଠାରୁ ଉଦ୍ଭୂତ ହୋଇ ଅଛନ୍ତି, ସେ ବିଷୟରେ କିଛି ସନ୍ଦେହ ନାହିଁ । ସ୍ତ୍ରୀ ଜାତି ପାର୍ବତୀଙ୍କ ଅଂଶରେ ସମ୍ଭୂତ ହୋଇ ଅଛନ୍ତି ବୋଲି ଯୋନି ଚିହ୍ନିତ ଓ ପୁରୁଷମାନେ ମହାଦେବଙ୍କ ଅଂଶରେ ଜନ୍ମଗ୍ରହଣ କରି ଅଛନ୍ତି ବୋଲି ଲିଙ୍ଗ ଦ୍ୱାରା ଚିହ୍ନିତ ହୋଇଅଛନ୍ତି । ଯେଉଁମାନେ ଏହି ଉଭୟ ଚିହ୍ନରେ ଚିହ୍ନିତ ନୁହନ୍ତି ସେହି ଦୁର୍ମତି ବ୍ୟକ୍ତିମାନେ ସଚରାଚର ତ୍ରୈଲୋକ୍ୟରେ ନପୁଂସକ ବୋଲି ଖ୍ୟାତ ହୁଅନ୍ତି । ୨୩୪ ।

ଏହି ଜୀବଲୋକରେ ପୁଂଲିଙ୍ଗଧାରୀମାନେ ଶିବଙ୍କ ଅଂଶ ଓ ସ୍ତ୍ରୀଲିଙ୍ଗ ଧାରୀମାନେ ଉମାଙ୍କ ଅଂଶ ବୋଲି ଜାଣିବାକୁ ହେବ, ସୁତରାଂ ଏହି ଚରାଚର ବିଶ୍ୱ ହର ପାର୍ବତୀଙ୍କ ଶରୀର ଦ୍ୱାରା ବ୍ୟାପ୍ତ ହୋଇଅଛି । ୨୩୫ । ହେ ବଳସୂଦନ ! ଶକ୍ର ! କୌଶିକ ! ସେହି କାରଣରୁ ସେହି ଶିବଙ୍କଠାରୁ ଆମ୍ଭେ ବର କିମ୍ବା ନିଧନ ଗ୍ରହଣ କରିବାକୁ ଆକାଂକ୍ଷୀ ହୋଇଅଛୁ । ଫଳତଃ ମହାଦେବଙ୍କ ବ୍ୟତିରେକେ, ଅନ୍ୟ କୌଣସି ଦେବତାଙ୍କଠାରେ ଆମ୍ଭେ ଦାସତ୍ୱ ସ୍ୱୀକାର କରିବୁ ନାହିଁ । ଅତଏବ ଆପଣ ଇଚ୍ଛାନୁସାରେ ଅବସ୍ଥାନ ଅଥବା ପ୍ରସ୍ଥାନ କରିବା ହେଉନ୍ତୁ । ୨୩୬ ।

ମହାଦେବଙ୍କଠାରୁ ଆମ୍ଭେ ବର କିମ୍ବା ଅଭିଶାପ ପ୍ରାପ୍ତ ହେବୁଁ ପଛକେ ତାହା ଆମ୍ଭର ଅଭୀଷ୍ଟ, କିନ୍ତୁ ଅନ୍ୟ ଦେବତାମାନେ ସମସ୍ତ ଅଭୀଷ୍ଟ ଫଳ ପ୍ରଦାନ କଲେ ସୁଦ୍ଧା ଆମ୍ଭେ ସେମାନଙ୍କଠାରେ ପ୍ରାର୍ଥୀ ହେବୁ ନାହିଁ । । ୨୩୭ । ଆମ୍ଭେ ଦେବ ଦେବେନ୍ଦ୍ରଙ୍କୁ ଏହିପରି କହି ଦୁଃଖରେ ଆକୁଳିତ ଇନ୍ଦ୍ରିୟ ହୋଇ "ମହାଦେବ ଆମ୍ଭଠାରେ କାହିଁକି ପ୍ରସନ୍ନ ହେଲେ ନାହିଁ" ଏହିପରି ଚିନ୍ତା କରୁଥିବା ସମୟରେ ଦେଖିଲୁଁ, ସେହି ଐରାବତ କ୍ଷଣକ

ମଧ୍ୟରେ ହଂସ, କୁନ୍ଦ, ଚନ୍ଦ୍ର, ମୃଣାଳ ଓ ରଜତ ସଦୃଶ ପ୍ରଭାସମ୍ପନ୍ନ, କ୍ଷୀର ସାଗର ସଦୃଶ ଶ୍ୱେତ ବର୍ଣ୍ଣ, କୃଷ୍ଣ ପୁଚ୍ଛ, ମଦରକ୍ତ, ନେତ୍ର, ମହାକାୟ, ବୃଷଭ ହୋଇ ବଜ୍ରସାରମୟ, ତପ୍ତ କାଞ୍ଚନ ପ୍ରଭା, ଈଷତ୍ ରକ୍ତାଗ୍ର ସୁତୀକ୍ଷ୍ଣ ଶୃଙ୍ଗଦ୍ୱାରା ପୃଥିବୀକୁ ବିଦାରଣ କଲାପରି ଜଣା ଯାଉଥିଲା । ସେ ସୁବର୍ଣ୍ଣ ଦାମଦ୍ୱାରା ସର୍ବାଙ୍ଗରେ ଅଳଙ୍କୃତ ହୋଇଥିଲେ । ତାହାଙ୍କର ମୁଖ, ନାସା, କର୍ଣ୍ଣ, କଟି, କ୍ଷୁର ଓ ପାର୍ଶ୍ୱ ଦେଶ ସୁଶୋଭିତ ହୋଇଥିଲା । ତଦୀୟ ସ୍ୱରୂପ ସୁଦୁର୍ଦ୍ଦର୍ଶନ ବିଶାଳ ସ୍କନ୍ଧ ଦେଶ କକୁଦଦ୍ୱାରା ଶୋଭିତ ହୋଇଥିଲା । ଭଗବାନ ଦେବ ଦେବ ଉମାଙ୍କ ସହିତ ସେହି ତୁଷାର ଧବଳ ଗିରିକୂଟ ସନ୍ନିଭ ଶୁକ୍ଳମେଘ ଶିଖର ସଦୃଶ ବୃଷଭ ଉପରେ ଆରୋହଣ ପୂର୍ବକ ପୌର୍ଣ୍ଣମାସୀରେ ନକ୍ଷତ୍ରରାଜ ଚନ୍ଦ୍ରଙ୍କ ସଦୃଶ ଶୋଭାପାଉଥିଲେ । ତାହାଙ୍କ ତେଜରୁ ବହ୍ନି ନିର୍ଗତ ହୋଇ ସହସ୍ର ସୂର୍ଯ୍ୟ ସଦୃଶ ସମୁଦାୟ ଜଗତକୁ ସମାଚ୍ଛନ୍ନ କରି ଦେଦୀପ୍ୟମାନ ହେଉଥିଲା ।

ସେହି ସମୟରେ ସେହି ସୁମହାତେଜା ଈଶ୍ୱରଙ୍କୁ ଦେଖିବାରୁ ଜଣାଗଲା ଯେ, ସେ ଯୁଗାନ୍ତକାଳୀନ ସମ୍ବର୍ତ୍ତକ ଅନଳପରି ପ୍ରାଣୀଗଣ ସଂହାର କରିବାକୁ ହୋଇଥିଲେ । ତତ୍‌ସମୟରେ ସେହି ଦୁର୍ନିରୀକ୍ଷ ଜଗଦ-ବ୍ୟାପ୍ତ ତେଜକୁ ନିରୀକ୍ଷଣ କରି ଆମ୍ଭେ ପୁନଶ୍ଚ ଚିନ୍ତାରେ ଆକୁଳ ଓ ଉଦ୍‌ବିଗ୍ନ ହୃଦୟ ହେଲୁଁ ।

ତଦନନ୍ତର ମୁହୂର୍ତ୍ତ ମଧ୍ୟରେ ତାହାଙ୍କର ଦଶଦିଗରେ ବ୍ୟାପ୍ତ ହୋଇ ସେହି ତେଜ ଦେବ ଦେବଙ୍କ ମାୟା ପ୍ରଭାବରେ ସର୍ବଦିଗରେ ପ୍ରଶାନ୍ତ ଭାବ ଧାରଣ କଲା; ଏଥି ଉତ୍ତାରୁ ଆମ୍ଭେ ଅଷ୍ଟାଦଶ ଭୁଜ ସମ୍ପନ୍ନ ସର୍ବାଭରଣ ଭୂଷିତ ଧୂମଶୂନ୍ୟ ଅଗ୍ନି ସଦୃଶ ପ୍ରଦୀପ୍ତ ନୀଳକଣ୍ଠ, ତେଜୋନିଧି, ଶୁକ୍ଳାମ୍ବରଧର, ଶୁକ୍ଳମାଲ୍ୟାନୁଲେପନ, ଅନାଧୃଷ୍ୟ ସୌରଭେୟଗତ, ଶୁକ୍ଳଧ୍ୱଜ, ଶୁକ୍ଳଯଜ୍ଞୋପବୀତୀ ସ୍ଥାଣୁ ଭଗବାନ ମହେଶ୍ୱରଙ୍କୁ ଦେଖିଲୁଁ । ସର୍ବାଙ୍ଗସୁନ୍ଦରୀ ପାର୍ବତୀ ସେହି ମହାତ୍ମା ପରମେଶ୍ୱରଙ୍କ ପାର୍ଶ୍ୱରେ ଉପବିଷ୍ଟା ହୋଇଥିଲେ । ୧୫୧ ।

ତଦୀୟ ଆତ୍ମ ସଦୃଶ ପରାକ୍ରମଶାଳୀ ଦିବ୍ୟ ପାର୍ଷଦ୍‌ଗଣ ଚତୁ-ର୍ଦ୍ଦିଗରେ ନୃତ୍ୟଗୀତ ଓ ବାଦ୍ୟ କରୁଥିଲେ । ୧୫୨ । ବାଳଚନ୍ଦ୍ର ମୁକୁଟ-

ଧାରୀ ଶିବ, ଶରଚ୍ଚନ୍ଦ୍ର ଉଦିତ ହେଲାପରି ପାଣ୍ଡୁର ବର୍ଣ୍ଣ ଦିଶୁଥିଲେ । ତାହାଙ୍କର ତିନି ନେତ୍ର ତିନିଗୋଟି ଉଦିତ ସୂର୍ଯ୍ୟ ସଦୃଶ ଶୋଭା ବିସ୍ତାର କରୁଥିଲା । ୨୫୩ । ତାହାଙ୍କର ଶୁଭ୍ର ଶରୀରରେ ରତ୍ନ ଭୂଷିତ ସୁବର୍ଣ୍ଣପଦ୍ମର ମାଳା ଶୋଭା ପାଉଥିଲା । ୨୫୪ । ହେ ଗୋବିନ୍ଦ ! ଅମିତତେଜସ୍ୱୀ ଶିବଙ୍କର ହସ୍ତମାନଙ୍କରେ ସର୍ବତେଜୋମୟ ମୂର୍ତ୍ତିମାନ ଅସ୍ତ୍ରମାନଙ୍କୁ ଦେଖିଲୁଁ । ୨୫୫ । ତାହାଙ୍କର ଏକ ହସ୍ତରେ ଇନ୍ଦ୍ରାୟୁଧ ସଦୃଶ ପ୍ରଭାଯୁକ୍ତ ବିଖ୍ୟାତ ଧନୁ ଥିଲା । ସପ୍ତଶୀର୍ଷ ମହାକାୟ, ତୀକ୍ଷ୍ଣଦଶନ, ପୁରୁଷ ବିଗ୍ରହ ବିଷପୂର୍ଣ୍ଣ ଗୋଟିଏ ମହାନ ବିଷଧର ତାହାଙ୍କର ମହାଗଳ ଦେଶ ଜ୍ୟାବେଷ୍ଟନ ପୂର୍ବକ ରହିଥିଲା । ୨୫୬ । ଅନ୍ୟହସ୍ତରେ କଳ୍ପାନ୍ତ ହୁତାଶନ ସଦୃଶ ମହାଘୋର ପାଶୁପତ ଦିବ୍ୟାସ୍ତ୍ର ଥିଲା । ୨୫୮ । ସେହି ଅସ୍ତ୍ର ଏକପଦ, ସହସ୍ର ମସ୍ତକ, ସହସ୍ର ଉଦର, ସହସ୍ର ବାହୁ, ସହସ୍ର ଜିହ୍ୱା, ମହାଦନ୍ତ ଓ ସହସ୍ର ଲୋଚନ ଯୁକ୍ତ । ସେ ଅଚିନ୍ତ୍ୟ, ଅନିର୍ଦ୍ଦେଶ୍ୟ, ସର୍ବଭୂତ, ଭୟାବହ, ଅଗ୍ନିକଣା ଯୁକ୍ତ ଓ ମହାକାୟ ଅଟନ୍ତି । ସେ ଅନଳ ବିସର୍ଜନ କଲାପରି ଦୃଶ୍ୟମାନ ହେଉଥିଲା । ୨୬୦ ।

ହେ ମହାବାହୋ ! ସମସ୍ତ ଶସ୍ତ୍ର ବିଘାତକ ସେହି ଅସ୍ତ୍ର, ବ୍ରହ୍ମାସ୍ତ୍ର, ନାରାୟଣାସ୍ତ୍ର, ଐନ୍ଦ୍ରାସ୍ତ୍ର, ଆଗ୍ନେୟାସ୍ତ୍ର ଓ ବାରୁଣାସ୍ତ୍ର ଏହି ସମସ୍ତ ଅସ୍ତ୍ର ଅପେକ୍ଷା ଅଧିକ ଶ୍ରେଷ୍ଠ । ୨୬୧ । ହେ ଗୋବିନ୍ଦ ! ପୂର୍ବକାଳରେ ମହାଦେବ ଯେଉଁ ଶରଦ୍ୱାରା ତ୍ରିପୁରକୁ ଦଗ୍ଧ କରି ଅନାୟାସରେ କ୍ଷଣମାନରେ ଭସ୍ମୀକୃତ କରିଥିଲେ, ( ୨୬୨ ) ଯେଉଁ ଶର ମହେଶ୍ୱରଙ୍କ ଭୁଜରୁ ଉତ୍ସୃଷ୍ଟ ହେଲେ ବିନା ସଂଶୟରେ ଅର୍ଦ୍ଧ ନିମେଷ ମଧ୍ୟରେ ସଚରାଚର ସମସ୍ତ ତ୍ରୈଲୋକ୍ୟକୁ ଦଗ୍ଧ କରିପାରେ, ( ୨୬୩ ) ଇହଲୋକରେ ବ୍ରହ୍ମା ବିଷ୍ଣୁ ଓ ସୁରମାନଙ୍କ ମଧ୍ୟରେ ସୁଦ୍ଧା ଯେଉଁ ଅସ୍ତ୍ରର ଅବଧ ହୋଇ କେହି ନାହାନ୍ତି, ସେହି ଉତ୍କୃଷ୍ଟ ଅସ୍ତ୍ରକୁ ଆମ୍ଭେ ଦେଖିଲୁଁ ଓ ଆଶ୍ଚର୍ଯ୍ୟଯୁକ୍ତ ହେଲୁଁ । ୨୬୪ । ସେତେବେଳେ ଆମ୍ଭେ ତାହାଙ୍କ ହସ୍ତରେ ସର୍ବଲୋକରେ ଖ୍ୟାତ ଶୂଳ ନାମକର ଅନ୍ୟ ଗୋଟିଏ ଗୁହ୍ୟ ଅସ୍ତ୍ରଶ୍ରେଷ୍ଠ ଦର୍ଶନ କଲୁଁ । ତାହା ପାଶୁପତ ଅସ୍ତ୍ର ସଦୃଶ କିମ୍ବା ତାହା ଅପେକ୍ଷା ଅଧିକ ଶ୍ରେଷ୍ଠ ହୋଇପାରେ । ୨୬୫ ।

ଶୂଳପାଣି ସେହି ଦିବ୍ୟ ଅସ୍ତ୍ର ପ୍ରଭାବରେ ଅନାୟାସରେ ସମସ୍ତ ସ୍ୱର୍ଗ ଓ ମର୍ତ୍ତ୍ୟକୁ ବିଦୀର୍ଣ୍ଣ କରିପାରନ୍ତି; ମହୋଦଧିକି ମଧ୍ୟ ଶୁଷ୍କ କରିପାରନ୍ତି

ଅଥବା ସମୁଦାୟ ସଂସାରକୁ ବିନଷ୍ଟ କରି ପାରନ୍ତି । ୨୬୭ । ହେ ଗୋବିନ୍ଦ ! ସେହି ଦିବ୍ୟ ଅସ୍ତ୍ର ପୂର୍ବେ ଲବଣ ନାମକ ରାକ୍ଷସର କରସ୍ଥିତହୋଇ, ଇନ୍ଦ୍ର ସଦୃଶ ମହାବଳ ପରାକ୍ରାନ୍ତ ମହା ତେଜସ୍ୱୀ ତ୍ରିଲୋକ ବିଜୟୀ ଚକ୍ରବର୍ତ୍ତୀ ରାଜା ଯୁବନାଶ୍ୱଙ୍କ ପୁତ୍ର ମାନ୍ଧାତାଙ୍କୁ ସସୈନ୍ୟରେ ବିନଷ୍ଟ କରିଥିଲା । ୨୬୮ । ସେହି ତୀକ୍ଷ୍ଣାଗ୍ର, ଲୋମହର୍ଷଣ, ଅତି ଭୟଙ୍କର ଶୂଳ, ତ୍ରିଶିଖା ଭ୍ରୁକୁଟୀ ବନ୍ଧକରି ତର୍ଜନ କଲାପରି ଜଣାଯାଉଥିଲା । ୨୬୯ । ଧୂମ ଶୂନ୍ୟ ଅଗ୍ନି ଓ ପ୍ରଳୟ କାଳୀନ ସୂର୍ଯ୍ୟ ସଦୃଶ ତାହା ଦୃଶ୍ୟମାନ ହେଉଥିଲା । ହେ କୃଷ୍ଣ ! ସର୍ପହସ୍ତ ଅନିର୍ଦ୍ଦେଶ୍ୟ ଶିବ ସେହି ଶୂଳ ଧାରଣ କରିବାରୁ ସେ ପାଶହସ୍ତ ଯମ ଦେବ ସଦୃଶ ଦୃଶ୍ୟମାନ ହେଉଥିଲେ ।୨୭୦। ପୂର୍ବେ ଅକ୍ଲିଷ୍ଟ କର୍ମ ଜମଦଗ୍ନିଙ୍କ ପୁତ୍ର ଦେବାଦିଦେବଙ୍କୁ ତୁଷ୍ଟକରି ଯେଉଁ ତୀକ୍ଷ୍ଣ ଧାର ପରଶୁ ପ୍ରାପ୍ତ ହୋଇଥିଲେ, କ୍ଷତ୍ରିୟ କୁଳର ଭୟଙ୍କର ଯେଉଁ ମହାସ୍ତ୍ରର ପ୍ରଭାବରେ ଯୁଦ୍ଧରେ ମହାବୀର କାର୍ତ୍ତବୀର୍ଯ୍ୟ ନିହତ ହୋଇଥିଲେ, ଯାହା ପ୍ରଭାବରେ ପରଶୁରାମ ପୃଥିବୀକୁ ଏକ ବିଂଶତିବାର କ୍ଷତ୍ରିୟ ଶୂନ୍ୟ କରିଥିଲେ, ସେହି ପ୍ରଜ୍ୱଳିତ ଧୂମ· ହୁତାଶନ ସଦୃଶ ପରଶୁ ମଧ୍ୟ ସେହି ଦେବଦେବଙ୍କ ହସ୍ତରେ ବିଦ୍ୟମାନଥିଲା ।

ହେ କେଶବ ! ସେହି ଅମେୟାତ୍ମା ଶିବଙ୍କ ହସ୍ତରେ ଏତଦ୍‌ଭିନ୍ନ ଅନ୍ୟାନ୍ୟ ଅସଂଖ୍ୟ ଅସ୍ତ୍ର ବିଦ୍ୟମାନ ଥିଲା । ତାହା ମଧ୍ୟରେ କେବଳ ଏହି କେତେ ଗୋଟି ପ୍ରଧାନ ବୋଲି ଏମାନଙ୍କର ବିଷୟ କୀର୍ତ୍ତନ କଲୁଁ । ୨୭୫ ।

ହେ କେଶବ ! ସେହି ସମୟରେ ସର୍ବଲୋକ ପିତାମହ ବ୍ରହ୍ମା ହଂସଯୁକ୍ତ ମନୋଜବଗାମୀ ଦିବ୍ୟ ବିମାନରେ ଆରୋହଣପୂର୍ବକ, ସେହି ଦେବଦେବଙ୍କର ସବ୍ୟ ଦେଶରେ ( ୨୭୬ ) ଓ ଶଙ୍ଖ ଚକ୍ର ଗଦାଧର ନାରାୟଣ, ଗରୁଡ଼ରେ ଆରୋହଣପୂର୍ବକ ବାମ ଭାଗରେ ସ୍ଥିତ ହୋଇ ଥିଲେ । ୨୭୭ । ଶକ୍ତି ଓ ଘଣ୍ଟାଧାରୀ କାର୍ତ୍ତିକେୟ ମୟୂରାରୂଢ଼ ହୋଇ ପାର୍ବତୀଙ୍କ ନିକଟରେ ଦ୍ୱିତୀୟ ଅଗ୍ନିସଦୃଶ ସ୍ଥିତ ହୋଇଥିଲେ । ୨୭୮ । ଦ୍ୱିତୀୟ ଶଙ୍କର ସଦୃଶ ଶୂଳଧାରଣ ପୂର୍ବକ ଅବସ୍ଥିତ ନନ୍ଦୀଙ୍କୁ ମହାଦେବଙ୍କର ଅଗ୍ରଭାଗରେ ଦେଖିଲୁଁ । ୨୭୯ । ଏବଂ ସ୍ୱାୟଂଭୁବ ପ୍ରଭୃତି ମନୁ, ଭୃଗୁ ପ୍ରଭୃତି ଋଷିଗଣ ଓ ଇନ୍ଦ୍ରାଦି ଦେବଗଣ ସମସ୍ତେ ତାହାଙ୍କ ସମୀପରେ

ଅବସ୍ଥାନ କରିଥିଲେ । ୨୮୦ । ମାତୃଗଣ ଓ ସମସ୍ତ ବିବିଧ ଭୂତଗଣ ଚାରିଆଡ଼ୁ ଚତୁର୍ଦ୍ଦିଗ ବେଷ୍ଟନକରି ମହାତ୍ମାଙ୍କୁ ଅଭିବାଦନପୂର୍ବକ ସ୍ଥିତ ହୋଇଥିଲେ । ୨୮୧ । ସେତେବେଳେ ଅମରଗଣ ବିବିଧ ସ୍ତୋତ୍ର ସମୂହରେ ମହାଦେବଙ୍କୁ ସ୍ତବ କରୁଥିଲେ । ୨୮୨ ।

ବ୍ରହ୍ମା ରଥାନ୍ତର ପାଠ ପୂର୍ବକ ମହାଦେବଙ୍କୁ ସ୍ତବ କରୁଥିଲେ ଓ ନାରାୟଣ ଦେବେଶଙ୍କ ନିକଟରେ ସାମବେଦ ଗାନକରୁଥିଲେ । ୨୮୩ । ଇନ୍ଦ୍ର ଉତ୍ତମ ଶତରୁଦ୍ରୀୟ ବେଦ ପାଠ କରୁଥିଲେ, ବ୍ରହ୍ମା ନାରାୟଣ ଓ କୌଶିକ ଦେବରାଜ (୨୮୪) ଏହି ତିନି ମହାତ୍ମାମାନେ ଅଗ୍ନିତ୍ରୟ ସଦୃଶ ଶୋଭାପାଉଥିଲେ ଏବଂ ଏମାନଙ୍କ ମଧ୍ୟରେ ଶିବ (୨୮୫) ଶରତ୍କାଳୀକ ମେଘବିନିର୍ମୁକ୍ତ ପରିଧିସ୍ଥିତ ଅଂଶୁମାନ୍ ସୂର୍ଯ୍ୟଙ୍କପରି ଶୋଭା ପାଉଥିଲେ । ହେ କେଶବ ! ତେତେବେଳେ ଆମ୍ଭେ ଆକାଶରେ ଅୟୁତ ଚନ୍ଦ୍ର ସୂର୍ଯ୍ୟ ଦେଖିଥିଲୁଁ । ୨୮୬ । ତଦନନ୍ତର ଆମ୍ଭେ ତାହାଙ୍କୁ ଅସଂଖ୍ୟ ବ୍ରହ୍ମାଣ୍ଡର ପତି ବୋଲି ବିଶ୍ୱାସ କରି ସ୍ତବ କଲୁଁ ।

ଉପମନ୍ୟୁ କହିଲେ—ହେ ପ୍ରଭୋ ! ମୁଁ ତୁମ୍ଭଙ୍କୁ ନମସ୍କାର କରୁଅଛି । ତୁମ୍ଭେ ଶର୍ବରୂପ, ଶର୍ବ, ଶର୍ବବେଶଧର, ବଜ୍ରହସ୍ତ, ପିଙ୍ଗଳ ଓ ଅରୁଣ ବର୍ଣ୍ଣ ଅଟ । ୨୮୮ । ହେ ପ୍ରଭୋ ! ମୁଁ ତୁମ୍ଭଙ୍କୁ ନମସ୍କାର କରୁଅଛି । ତୁମ୍ଭେ ପିନାକ-ପାଣି । ତୁମ୍ଭେ ଶଙ୍ଖଧାରୀ, ତୁମ୍ଭେ ଶୂଳଧାରୀ, ତୁମ୍ଭେ ଶୁକ୍ଳାମ୍ବରଧାରୀ, ତୁମ୍ଭର କେଶ ପାଶ କୃଷ୍ଣବର୍ଣ୍ଣ ଓ କୁଞ୍ଚିତ ଅଟେ । । ୨୮୯ ।

ହେ ପ୍ରଭୋ ! ମୁଁ ତୁମ୍ଭଙ୍କୁ ନମସ୍କାର କରୁଅଛି । କୃଷ୍ଣାଜିନ ତୁମ୍ଭର ଉତ୍ତରୀୟ, ତୁମ୍ଭେ କାଳୀ ମୂର୍ତ୍ତିଙ୍କର ପ୍ରିୟ ଅଟ, ତୁମ୍ଭେ ଶୁକ୍ଳ ବର୍ଣ୍ଣ, ଶୁକ୍ଳ ଓ ଶୁକ୍ଳାମ୍ବରଧାରୀ ଅଟ । ୨୯୦ । ହେ ପ୍ରଭୋ ! ମୋର ତୁମ୍ଭଙ୍କୁ ନମସ୍କାର । ତୁମ୍ଭ ଅଙ୍ଗ ଶୁକ୍ଳଭସ୍ମରେ ଲିପ୍ତ, ତୁମ୍ଭେ ଶୁକ୍ଳକର୍ମରେ ରତ ଅର୍ଥାତ୍ ବିଶୁଦ୍ଧ କର୍ମପ୍ରିୟ ।

ହେ ପ୍ରଭୋ ! ତୁମ୍ଭଙ୍କୁ ମୋର ନମସ୍କାର । ତୁମ୍ଭେ ରକ୍ତବର୍ଣ୍ଣ, ରକ୍ତାମ୍ବରଧାରୀ ଅଟ; ( ୨୯୧ ) ହେ ପ୍ରଭୋ ! ତୁମ୍ଭଙ୍କୁ ମୋର ନମସ୍କାର,

ତୁମ୍ଭର ଧ୍ୱଜ ରକ୍ତବର୍ଣ୍ଣ, ତୁମ୍ଭର ପତାକା ରକ୍ତବର୍ଣ୍ଣ, ତୁମ୍ଭେ ରକ୍ତ ମାଲ୍ୟଧାରୀ ଅଟ; ତୁମ୍ଭେ ପୀତବର୍ଣ୍ଣ ଓ ପୀତାମ୍ବରଧାରୀ ଅଟ । ୨୯୨ । ହେ ପ୍ରଭୋ ! ତୁମ୍ଭଙ୍କୁ ମୋର ନମସ୍କାର । ତୁମ୍ଭର ଧ୍ୱଜ ଓ ପତାକା ପୀତବର୍ଣ୍ଣ, ତୁମ୍ଭେ ପୀତମାଲ୍ୟଧାରୀ ଅଟ; ତୁମ୍ଭେ ଉଚ୍ଛ୍ରିତ ଛତ୍ରଧାରୀ ଓ କିରୀଟବରଧାରୀ ଅଟ । ତୁମ୍ଭେ ଗଳଦେଶରେ ଅର୍ଦ୍ଧହାର, ବାହୁରେ ଅର୍ଦ୍ଧ କେୟୁର ଓ କର୍ଣ୍ଣରେ ଅର୍ଦ୍ଧ କୁଣ୍ଡଳ ଧାରଣ କରିଅଛ । ୨୯୩ ।

ହେ ପ୍ରଭୋ ! ତୁମ୍ଭଙ୍କୁ ମୋର ନମସ୍କାର । ତୁମ୍ଭେ ପବନ ସଦୃଶ ବେଗଗାମୀ, ତୁମ୍ଭେ ମହାଦେବ, ତୁମ୍ଭେ ସୁରେନ୍ଦ୍ର, ତୁମ୍ଭେ ମୁନୀନ୍ଦ୍ର ଓ ତୁମ୍ଭେ ମହେନ୍ଦ୍ର ଅଟ । ୨୯୪ । ହେ ପ୍ରଭୋ ! ତୁମ୍ଭଙ୍କୁ ମୋର ନମସ୍କାର । ତୁମ୍ଭେ ଉତ୍ପଳମାଳମଣ୍ଡିତ ପଦ୍ମମାଲ୍ୟ ଧାରଣ କରିଅଛ, ଭୁମ୍ଭେ ଅର୍ଦ୍ଧାଙ୍ଗ ଚନ୍ଦନ ଚର୍ଚ୍ଚିତ ଓ ଅର୍ଦ୍ଧାଙ୍ଗ ମାଲ୍ୟ ଭୂଷିତ; (୨୯୫) ହେ ପ୍ରଭୋ ! ତୁମ୍ଭଙ୍କୁ ମୋର ନମସ୍କାର । ତୁମ୍ଭେ ଆଦିତ୍ୟ ମୁଖ, ଆଦିତ୍ୟ ନୟନ, ଆଦିତ୍ୟବର୍ଣ୍ଣ ଓ ଆଦିତ୍ୟ ପ୍ରତିମ । ୨୯୬ ।

ହେ ପ୍ରଭୋ ! ତୁମ୍ଭଙ୍କୁ ମୋର ନମସ୍କାର । ତୁମ୍ଭେ ସୋମ, ତୁମ୍ଭେ ସୌମ୍ୟ, ତୁମ୍ଭେ ସୌମ୍ୟ ବକ୍ତ୍ରଧର, ତୁମ୍ଭେ ସୌମ୍ୟରୂପ, ତୁମ୍ଭେ ସର୍ବଶ୍ରେଷ୍ଠ ଓ ସୌମ୍ୟଦନ୍ତ ବିଭୂଷିତ ।୨୯୭। ହେ ପ୍ରଭୋ ! ତୁମ୍ଭଙ୍କୁ ମୋର ନମସ୍କାର । ତୁମ୍ଭେ ଶ୍ୟାମ ଓ ତୁମ୍ଭେ ଗୌର, ତୁମ୍ଭେ ଅର୍ଦ୍ଧ ପୀତବର୍ଣ୍ଣ ଓ ଅର୍ଦ୍ଧ ପାଣ୍ଡୁବର୍ଣ୍ଣ; ତୁମ୍ଭେ ନରନାରୀ ଶରୀର ଓ ତୁମ୍ଭେ ସ୍ତ୍ରୀ ପୁରୁଷମୟ । ୨୯୮ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ବୃଷଭବାହନ, ତୁମ୍ଭେ ଗଜେନ୍ଦ୍ର ଗମନ, ତୁମ୍ଭେ ଦୁର୍ଗମ ଅର୍ଥାତ୍ ଦୁଷ୍ପ୍ରାପ୍ୟ, ତୁମ୍ଭେ ସର୍ବତ୍ରଗାମୀ, ତୁମ୍ଭର ଅଗମ୍ୟ ସ୍ଥାନ ନାହିଁ । ୨୯୯ ।

ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର ! ପ୍ରମଥଗଣ ତୁମ୍ଭର ଗୁଣଗାନ କରନ୍ତି ଓ ତୁମ୍ଭର ଅନୁଗମନ କରନ୍ତି; ତୁମ୍ଭେ ପ୍ରମଥଗଣଙ୍କଠାରେ ରତ ଓ ତୁମ୍ଭେ ପ୍ରମଥଗଣଙ୍କର ନିତ୍ୟବ୍ରତ ଅଟ । ୩୦୦ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ କେତେବେଳେ ଶ୍ୱେତ ମେଘ ସଦୃଶ, କେତେବେଳେ ସନ୍ଧ୍ୟା କାଳୀନ ରକ୍ତବର୍ଣ୍ଣ ପ୍ରଭା ଧାରଣ କର, ତୁମ୍ଭର ନାମ ନିରୂପଣ

କର ହୁଏ ନାହିଁ, ତୁମ୍ଭ ସଦୃଶ କାହାର ଉତ୍ତମ ରୂପନାହିଁ । ୩୦୧ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ରକ୍ତ ବର୍ଣ୍ଣ ଉତ୍ତରୀୟଧାରୀ, ତୁମ୍ଭେ ରକ୍ତ ପବିତ୍ର ସୂତ୍ରଧାରୀ, ତୁମ୍ଭେ ରକ୍ତାମ୍ବରଧାରୀ ଓ ରକ୍ତମାଲ୍ୟରେ ବିଚିତ୍ର ଅଟ । ୩୦୨ ।

ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭ ମସ୍ତକ ମଣିମାଳାରେ ଭୂଷିତ, ତୁମ୍ଭ ଲଲାଟ ଅର୍ଦ୍ଧ ଚନ୍ଦ୍ରରେ ଭୂଷିତ, ତୁମ୍ଭ ମସ୍ତକରେ ବିଚିତ୍ର କୁସୁମମାଳା ବିରାଜିତ ଓ ତୁମ୍ଭ ହୃଦୟରେ ଅଷ୍ଟବିଧ ପୁଷ୍ପମାଳା ଧାରଣ କରିଅଛ । । ୩୦୩ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ଅଗ୍ନି ମୁଖ, ଅଗ୍ନିନେତ୍ର, ମନୋହର ମୂର୍ତ୍ତିଧାରୀ ଓ ଦୁର୍ଲ୍ଲଭ ।୩୦୪। ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ଖେଚର, ତୁମ୍ଭେ ଭୂଚର, ତୁମ୍ଭେ ବିଷୟ ନିରତ, ତୁମ୍ଭେ ସ୍ଥାବର ଜଙ୍ଗମାତ୍ମକ ଭୁବନ ସ୍ୱରୂପ, ତୁମ୍ଭେ ଅନନ୍ତ ଓ ତୁମ୍ଭେ ଶିବ । ୩୦୫ ।

ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ଦିଗମ୍ବର, ତୁମ୍ଭେ ଦିବ୍ୟାମ୍ବରଧର, ତୁମ୍ଭେ ଜଗନ୍ନିବାସ, ତୁମ୍ଭେ ଜ୍ଞାନମୟ ଓ ସୁଖସ୍ୱରୂପ ଅଟ । ୩୦୬ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭ ମସ୍ତକରେ ଉଜ୍ଜ୍ୱଳ ମୁକୁଟ, ହସ୍ତରେ ମହା କେୟୂର ଓ ଗଳାରେ ସର୍ପହାର ସର୍ବଦା ବିରାଜମାନ ହୋଇ ରହିଥାଏ । ତୁମ୍ଭର ଭୂଷଣ ସମୂହ ବିଚିତ୍ର । ୩୦୭ ।

ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ତ୍ରିନେତ୍ର ଓ ସହସ୍ର ଲୋଚନ, ତୁମ୍ଭେ ଯୋଗୀ, ତୁମ୍ଭେ ସାଂଖ୍ୟଶାସ୍ତ୍ର ପ୍ରତିପାଦ୍ୟ ପଦାର୍ଥ । ତୁମ୍ଭେ ସ୍ତ୍ରୀ ପୁରୁଷମୟ ଓ ତୁମ୍ଭେ ନପୁଂସକ । ୩୦୮ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ଯଜ୍ଞ ସଂପାଦନ ଦେବତା, ତୁମ୍ଭେ ଅଥର୍ବ ବେଦ ସ୍ୱରୂପ, ତୁମ୍ଭେ ଆର୍ତ୍ତିନାଶକର ସ୍ୱରୂପ, ତୁମ୍ଭେ ଶୋକହାରୀ ଅଟ । ୩୦୯ ।

ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ବହୁମାୟାଧର, ତୁମ୍ଭ ସ୍ୱର ମେଘନାଦ ସଦୃଶ ଗମ୍ଭୀର, ତୁମ୍ଭେ ବୀଜ ଓ ତୁମ୍ଭେ କ୍ଷେତ୍ରପାଳକ ଏବଂ ତୁମ୍ଭେ ସୃଷ୍ଟିକର୍ତ୍ତା । ୩୧୦ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ସୁରାସୁରମାନଙ୍କ ଈଶ୍ୱର, ତୁମ୍ଭେ ବିଶ୍ୱେଶ୍ୱର । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ କାଞ୍ଚନ ମାଲ୍ୟଧାରୀ ଓ ଗିରିମାଳାରେ କ୍ରୀଡ଼ାପରାୟଣ ଅଟ । ତୁମ୍ଭେ

ଦୈତ୍ୟକୁଳର ପ୍ରଳୟ ଓ ତୁମ୍ଭେ ପ୍ରଚଣ୍ଡବେଗଶାଳୀ ଅଛ । ୩୧୨ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ବ୍ରହ୍ମାଙ୍କର ମସ୍ତକ ଛେଦନ କରିଅଛ, ଓ ମହିଷର ବିନାଶକାରୀ ଅଛ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ସ୍ତ୍ରୀ ରୂପଧାରୀ । ୩୧୩ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର ! ତୁମ୍ଭେ ତ୍ରିପୁର ହର୍ତ୍ତା ଓ ଯଜ୍ଞ ବିନାଶକ ; ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ମଦନର ଅଙ୍ଗ ବିନାଶକାରୀ ଓ କାଳ ଦଣ୍ଡଧର ଅଛ । ୩୧୪ ।

ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ କାର୍ତ୍ତିକେୟ, ବିଶାଖ ଓ ବ୍ରହ୍ମଦଣ୍ଡ ସ୍ୱରୂପ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ଭବ, ତୁମ୍ଭେ ଶର୍ବ, ତୁମ୍ଭେ ବିଶ୍ୱରୂପ ଅଛ । ୩୧୫ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ଈଶାନ, ତୁମ୍ଭେ ସଂସାରର ପ୍ରଳୟ କାରକ ଓ ତୁମ୍ଭେ ଅନ୍ଧକାସୁର-ଘାତୀ । ହେ ପ୍ରଭୋ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ବିଶ୍ୱ, ତୁମ୍ଭେ ମାୟାମୟ, ତୁମ୍ଭେ ଚିନ୍ତ୍ୟ ଓ ଅଚିନ୍ତ୍ୟ ଅଛ । ୩୧୬ । ତୁମ୍ଭେ ଆମ୍ଭମାନଙ୍କର ଗତି ଓ ତୁମ୍ଭେ ଆମ୍ଭମାନଙ୍କର ହୃଦୟ ସ୍ୱରୂପ ଓ ପୂଜ୍ୟତମ । ତୁମ୍ଭେ ଦେବଗଣ ମଧ୍ୟରେ ବ୍ରହ୍ମା । ରୁଦ୍ରଗଣ ମଧ୍ୟରେ ନୀଳଲୋହିତ । ୩୧୭ । ତୁମ୍ଭେ ସର୍ବ ଭୂତମାନଙ୍କ ମଧ୍ୟରେ ଆତ୍ମା, ସାଂଖ୍ୟଶାସ୍ତ୍ର ମଧ୍ୟରେ ପୁରୁଷ । ତୁମ୍ଭେ ପବିତ୍ରମାନଙ୍କ ମଧ୍ୟରେ ଋଷଭ ଦେବ ଓ ଯୋଗୀମାନଙ୍କ ମଧ୍ୟରେ ନିଷ୍କଳ ଶିବ ଅର୍ଥାତ୍ ସଂପୂର୍ଣ୍ଣ ଶିବ । ୩୧୮ ।

ତୁମ୍ଭେ ଆଶ୍ରମବାସୀମାନଙ୍କ ମଧ୍ୟରେ ସଂପୂର୍ଣ୍ଣ ଗୃହସ୍ଥ, ଈଶ୍ୱର ଗଣମାନଙ୍କ ମଧ୍ୟରେ ମହେଶ୍ୱର, ଯକ୍ଷଗଣ ମଧ୍ୟରେ କୁବେର ଓ ଯଜ୍ଞର ଅଧିଷ୍ଠାତ୍ରୁ ଦେବଗଣ ମଧ୍ୟରେ ବିଷ୍ଣୁ । ୩୧୯ । ତୁମ୍ଭେ ପର୍ବତଗଣ ମଧ୍ୟରେ ମେରୁ, ନକ୍ଷତ୍ରଗଣ ମଧ୍ୟରେ ଚନ୍ଦ୍ରମା, ଋଷିଗଣ ମଧ୍ୟରେ ବଶିଷ୍ଠ, ଗ୍ରହଗଣ ମଧ୍ୟରେ ସୂର୍ଯ୍ୟ । ୩୨୦ । ଅରଣ୍ୟ ପଶୁଗଣ ମଧ୍ୟରେ ତୁମ୍ଭେ ସିଂହ, ଗ୍ରାମ୍ୟ ଗୋପଶୁ ମଧ୍ୟରେ ତୁମ୍ଭେ ବୃଷଭ, ଲୋକ ପ୍ରପୂଜିତମାନଙ୍କ ମଧ୍ୟରେ ତୁମ୍ଭେ ପରମେଶ୍ୱର । ୩୨୧ ।

ଆଦିତ୍ୟଗଣ ମଧ୍ୟରେ ତୁମ୍ଭେ ବିଷ୍ଣୁ, ବସୁଗଣ ମଧ୍ୟରେ ତୁମ୍ଭେ ପାବକ, ପକ୍ଷୀଗଣ ମଧ୍ୟରେ ତୁମ୍ଭେ ଗରୁଡ଼, ଭୁଜଙ୍ଗଗଣ ମଧ୍ୟରେ ତୁମ୍ଭେ

ଅନନ୍ତ । ୩୨୨ । ବେଦ ମଧ୍ୟରେ ସାମବେଦ, ଯଜୁର୍ବେଦ ମଧ୍ୟରେ ଶତରୁଦ୍ରୀୟ, ପରମହଂସ ମଧ୍ୟରେ ସନତ୍‌କୁମାର, ସାଂଖ୍ୟବେତ୍ତାମାନଙ୍କ ମଧ୍ୟରେ କପିଳ । ୩୨୩ । ମରୁଦ୍‌ଗଣ ମଧ୍ୟରେ ଶକ୍ର, ପିତୃଗଣ ମଧ୍ୟରେ ହବ୍ୟବାଟ୍, ଲୋକସମୂହ ମଧ୍ୟରେ ବ୍ରହ୍ମଲୋକ, ଗତିମାନଙ୍କ ମଧ୍ୟରେ ମୋକ୍ଷ, ସାଗର ସମୂହ ମଧ୍ୟରେ କ୍ଷୀରାବ୍ଧି, ବର୍ଣ୍ଣମାନଙ୍କ ମଧ୍ୟରେ ବ୍ରାହ୍ମଣ, ଦ୍ୱିପଦମାନଙ୍କ ମଧ୍ୟରେ ଦୀକ୍ଷିତ ଦ୍ୱିଜ ।୩୨୫। ତୁମ୍ଭେ ସର୍ବଭୂତଙ୍କର ଆଦ୍ୟ ଏବଂ ସଂହାରକର୍ତ୍ତା କାଳ । ସଂସାରରେ ଯେତେ ତେଜ ଅଛି ତନ୍ମଧ୍ୟରେ ତୁମ୍ଭେ ସର୍ବତେଜ ଶ୍ରେଷ୍ଠ । ୩୨୬ ।

ସମସ୍ତ ଭୁବନ ମଧ୍ୟରେ ତୁମ୍ଭେ କେବଳ ଭଗବାନ ଅଟ ବୋଲି ମୁଁ ମନରେ ସ୍ଥିର କରିଅଛି । ହେ ଭଗବାନ ! ହେ ଭକ୍ତ ବତ୍ସଳ ! ତୁମ୍ଭଙ୍କୁ ନମସ୍କାର । ୩୨୭ । ହେ ଯୋଗେଶ୍ୱର ! ତୁମ୍ଭଙ୍କୁ ନମସ୍କାର । ହେ ବିଶ୍ୱ ସମ୍ଭବ ! ତୁମ୍ଭଙ୍କୁ ନମସ୍କାର । ମୁଁ ଅତି ଦୀନ ଓ କାତର ହୋଇ ଭକ୍ତିଭାବରେ ତୁମ୍ଭଙ୍କୁ ଉପାସନା କରୁଅଛି, ତୁମ୍ଭେ ପ୍ରସନ୍ନ ହୁଅ । ୩୨୮ । ହେ ସନାତନ ! ମୁଁ ଐଶ୍ୱର୍ଯ୍ୟ ବିହୀନ, ଆପଣ ମୋତେ ରକ୍ଷାକରିବା ହେଉନ୍ତୁ । ହେ ପରମେଶ୍ୱର ! ଆପଣଙ୍କୁ ମୁଁ ଚିହ୍ନି ନ ପାରି ଯେଉଁ ଅପରାଧ କରିଅଛି, ହେ ଦେବେଶ ! ( ୩୨୯ ) ତାହା ସବୁ 'ମୋର ଭକ୍ତ', ଏହି ମନକରି କ୍ଷମାକରିବା ହେଉନ୍ତୁ । ୩୩୦ । ହେ ଦେବେଶ ! ତୁମ୍ଭର ବିପରୀତ ରୂପ ଦେଖି ମୁଁ ମୋହିତ ହେଲି । ସେହି କାରଣରୁ ହେ ମହେଶ୍ୱର ! ତୁମ୍ଭଙ୍କୁ ପାଦ୍ୟ ଅର୍ଘ୍ୟ ଦେଇ ପାରିଲି ନାହିଁ ।

ମୁଁ ଏହି ପ୍ରକାରେ ଈଶାନଙ୍କୁ ସ୍ତବକରି ଭକ୍ତିରେ କୃତାଞ୍ଜଳି ପୁଟ ହୋଇ ତାହାଙ୍କୁ ପାଦ୍ୟଅର୍ଘ୍ୟ ସବୁ ନିବେଦନକଲି । ସେହି ସମୟରେ ମୋର ମସ୍ତକ ଉପରେ ଶୀତଳ ଜଳକଣାଯୁକ୍ତ ଦିବ୍ୟ ସୌରଭ ପୁଷ୍ପ ବୃଷ୍ଟି ହେଲା । କିଙ୍କର ଗଣ ଦିବ୍ୟ ଦୁନ୍ଦୁଭି ନାଦକଲେ ଓ ସୁରଭି ବହୁ ଶୁଚି ପବିତ୍ର ସୁଗନ୍ଧଯୁକ୍ତ ପବନ ପ୍ରବାହିତ ହେଲା । ତଦନନ୍ତର ସପତ୍ନୀକ ବୃଷଧ୍ୱଜ ମୋଠାରେ ପ୍ରସନ୍ନ ହୋଇ ଦେବଗଣଙ୍କୁ କହିଲେ (୩୩୧) ହେ ଦେବଗଣ ! ଆପଣମାନେ ସମସ୍ତେ ମହାତ୍ମା ଉପମନ୍ୟୁଙ୍କ ପରମଭକ୍ତି କ ଦେଖିବାରୁ ଏହାଙ୍କ ଭକ୍ତି ଆମ୍ଭଠାରେ ଅକ୍ଷୟ ଓ ଏକ ଭାବରେ ସ୍ଥିତ ହୋଇଅଛି । ୩୩୨ ।

ହେ କୃଷ୍ଣ ! ତେତେବେଳେ ଦେବଗଣ ଶୂଳପାଣୀଙ୍କ ବାକ୍ୟ ଶ୍ରବଣ କରି କୃତାଞ୍ଜଳି ପୂର୍ବରେ ବୃଷଭଧ୍ୱଜଙ୍କୁ ନମସ୍କାରପୂର୍ବକ କହିଲେ, (୩୩୬) ହେ ଭଗବାନ୍ ! ହେ ଦେବ ଦେବେଶ ! ହେ ଜଗତ୍ପତେ ! ହେ ଭୋଳାନାଥ ! ଏହି ଦ୍ୱିଜବର ଆପଣ ପ୍ରସାଦରେ ସମସ୍ତ ଅଭୀଷ୍ଟ ଫଳ ଲାଭ କରନ୍ତୁ । ୩୩୭ । ବ୍ରହ୍ମାଦି ଅମରଗଣ ଶିବଙ୍କୁ ଏହିପରି କହିବାରୁ ଭଗବାନ ଈଶ ଶଙ୍କର ମୋତେ ହାସ୍ୟ ମୁଖରେ କହିଲେ । ୩୩୮ । ହେ ମୁନିବର ! ବତ୍ସ ! ଉପମନ୍ୟୋ ! ତୁମ୍ଭେ ଆମ୍ଭର ରୂପ ଦର୍ଶନ କର । ଆମ୍ଭେ ତୁମ୍ଭଠାରେ ସନ୍ତୁଷ୍ଟ ହୋଇ ଅଛୁଁ । ହେ ବିପ୍ରର୍ଷେ ! ପରୀକ୍ଷା ଦ୍ୱାରା ଆମ୍ଭେ ତୁମ୍ଭଙ୍କୁ ଦୃଢ଼ଭକ୍ତ ବୋଲି ଜାଣିଲୁଁ । ୩୩୯ ।

ଏହି ଭକ୍ତିଦ୍ୱାରା ଆମ୍ଭେ ତୁମ୍ଭଠାରେ ଅତିଶୟ ପ୍ରୀତିଯୁକ୍ତ ହେଲୁଁ । ସେହି କାରଣରୁ ତୁମ୍ଭର ସମସ୍ତ ଅଭୀଷ୍ଟ କାମନା ପ୍ରଦାନ କରିବୁଁ । ଧୀମାନ ମହାଦେବ ଏହିପରି କହିବାରୁ ଆମ୍ଭର ନୟନ-ଯୁଗଳରୁ ଲୋତକ ଜଳ ବିଗଳିତ ହେଲା ଏବଂ କଳେବରରୁ ଲୋତକରେ ପୂର୍ଣ୍ଣ ହେଲା । ୩୪୧ । ତଦନନ୍ତର ମୁଁ ଭୂତଳରେ ଜାନୁଦ୍ୱୟ ସଂସ୍ଥାପନପୂର୍ବକ ତାହାଙ୍କୁ ବାରମ୍ବାର ଅଭିବାଦନ କରି ଗଦ୍‌ଗଦ ବଚନରେ କହିଲି, ( ୩୪୨ ) ହେ ଦେବ ! ସୁରାସୁର ଗୁରୁ ଆପଣ ଅଦ୍ୟ ମୋର ସମ୍ମୁଖରେ ଅବସ୍ଥିତ ହେବାରୁ ମୁଁ ନୂତନ ଜନ୍ମ ଗ୍ରହଣ କଲାପରି ଜାଣୁଅଛି । ମୋର ଜନ୍ମ ଆଜି ସଫଳ ହେଲା । ୩୪୩ । ଦେବଗଣ ଆରାଧନାକରି ଯେଉଁ ଅମିତ ବିକ୍ରମ ପ୍ରଭୁଙ୍କୁ ଦେଖିପାରନ୍ତି ନାହିଁ; ସେହି ଦେବଙ୍କୁ ମୁଁ ଆଜି ଯଦି ଦେଖିଲି, ତେବେ ମୋ ଅପେକ୍ଷା ଅନ୍ୟ କେଉଁବ୍ୟକ୍ତି ଅଧିକ ଧନ୍ୟହେବ ? ୩୪୪ । ଯୋଗ ବିଶାରଦ ମୁନିମାନେ ଯାହାଙ୍କୁ ପରମତତ୍ତ୍ୱ, ସନାତନ, ଅଜ, ଜ୍ଞାନମୟ, ଅକ୍ଷର ଓ ସର୍ବୋତ୍କୃଷ୍ଟ ବୋଲି ଧ୍ୟାନକରନ୍ତି; (୩୪୫) ତୁମ୍ଭେ ସେହି ସର୍ବଜ୍ଞ, ସମସ୍ତଙ୍କର ଆଦି ଦେବତା, ଅବ୍ୟୟ, ସର୍ବତତ୍ତ୍ୱ ବିଧାନଜ୍ଞ, ପ୍ରଧାନ ପୁରୁଷ, ଭଗବାନ୍ ପରଂବ୍ରହ୍ମ ମହାଦେବ ।୩୪୬। ସେହି ପ୍ରଭୁ ଈଶ ଯୁଗାନ୍ତ ସମୟ ପ୍ରାପ୍ତ ହେଲେ ଭୁବନ ସଂହାର ନିମିତ୍ତ ରୁଦ୍ର ଦେବଙ୍କୁ ସର୍ଜନା କରନ୍ତି । ସେହି ମହାତେଜା ରୁଦ୍ରଦେବ ଯୁଗାନ୍ତ ସମୟରେ କାଳମୂର୍ତ୍ତୀ ଧାରଣପୂର୍ବକ ସମ୍ବର୍ତ୍ତକ ଅନଳ ସଦୃଶ ସମସ୍ତ

ସ୍ଥାବର ଜଙ୍ଗମମାନଙ୍କୁ ଓ ବିଶ୍ୱ ଗ୍ରାସ କରନ୍ତି । ସେହି ଦେବଦେବ ମହାଦେବ ଆପଣ ଚରାଚର ବ୍ରହ୍ମାଣ୍ଡକୁ ସର୍ଜନ କରି କଳ୍ପାନ୍ତ ସମୟରେ ସମସ୍ତଙ୍କର ସ୍ମରଣ ଶକ୍ତିକୁ ବିନାଶ କରି ଅବସ୍ଥିତ ହୁଅନ୍ତି । ୩୫୦ ।

ତୁମ୍ଭେ ସର୍ବତ୍ରଗାମୀ ସକଳ ଭୂତର ଅନ୍ତରାତ୍ମା, ସକଳ କାରଣର କାରଣ ଓ ସର୍ବଗତ ହୋଇ ସୁଦ୍ଧା ସମସ୍ତ ଦେବଗଣଙ୍କ ଦ୍ୱାରା ଅଦୃଶ୍ୟ ଅଛ । ୩୫୧ । ହେ ସୁରେଶ୍ୱର ଦେବ ! ହେ ପ୍ରଭୋ ! ତୁମ୍ଭେ ଯଦି ମୋଠାରେ ପ୍ରସନ୍ନ ହୋଇଅଛ ଏବଂ ବର ଦେବାକୁ ଅଭିଳାଷୀ ହୋଇଅଛ, ତେବେ ତୁମ୍ଭଠାରେ ମୋର ଅକ୍ଷୟ ଭକ୍ତି ହେଉ । ୩୫୨ । ହେ ସୁର ସତ୍ତମ ! ହେ ବିଭୋ ! ଭୂତ ଭବିଷ୍ୟତ୍ ଏବଂ ବର୍ତ୍ତମାନ, ଏହି ତିନି କାଳର ବିଷୟକୁ ମୁଁ ତୁମ୍ଭ ପ୍ରସାଦରେ ଯେଉଁପରି ଜାଣି ପାରିବି, ତାଦୃଶ ବୁଦ୍ଧି ମୋତେ ପ୍ରଦାନ କରିବା ହେଉନ୍ତୁ । ୩୫୩ । ବାନ୍ଧବମାନଙ୍କ ସହିତ ସର୍ବଦା ଦୁଗ୍ଧାନ୍ନ ଭୋଜନ କରୁଥିବି ଏବଂ ତୁମ୍ଭେ ମୋର ଏହି ଆଶ୍ରମରେ ସର୍ବଦା ଅବସ୍ଥାନ କର । ୩୫୪ ।

ମୁଁ ଏହିପରି କହିବାରୁ ଲୋକ ପୂଜିତ ମହାତେଜା ମହେଶ୍ୱର ଚରାଚର ଗୁରୁ ସେହି ଭଗବାନ ଶିବ ମୋତେ କହିଲେ, ( ୩୫୫ ) ହେ ବିପ୍ର ! ତୁମ୍ଭେ ଅଜର, ଅମର, ଯଶସ୍ୱୀ, ଦୁଃଖ ଶୂନ୍ୟ, ତେଜସ୍ୱୀ ଓ ଦିବ୍ୟ ଜ୍ଞାନଯୁକ୍ତ ହୁଅ । ୩୫୬ । ତୁମ୍ଭେ ଆମ୍ଭ ପ୍ରସାଦରେ ସୁଶୀଳ, ଗୁଣ ସମ୍ପନ୍ନ, ସର୍ବଜ୍ଞ ଓ ପ୍ରିୟ ଦର୍ଶନ ହେବ ଏବଂ ତୁମ୍ଭଠାରୁ ସାକ୍ଷାତ୍ ଲାଭକରିବା ନିମିତ୍ତ ଋଷିଗଣ ତୁମ୍ଭ ନିକଟକୁ ଆଗମନ କରିବେ । ୩୫୭ ।

ତୁମ୍ଭର ପ୍ରିୟ ଯୌବନାବସ୍ଥା ଅକ୍ଷୟ ହେଉ ଓ ଅନଳ ସଦୃଶ ତେଜ ହେଉ । ତୁମ୍ଭେ ଯେତେବେଳେ ଯେଉଁ ଯେଉଁ ସ୍ଥାନରେ କ୍ଷୀର ଇଚ୍ଛା କରୁଥିବ, ତେତେବେଳେ ସେହି ସେହି ସ୍ଥାନରେ କ୍ଷୀର ସାଗର ଆବିର୍ଭୂତ ହେବ । ୩୫୮ । ପୟୋନିଧି ତୁମ୍ଭ ନିକଟରେ ରହିବ ଓ ତୁମ୍ଭେ ସ୍ୱେଚ୍ଛାନୁସାରେ ବାନ୍ଧବଗଣଙ୍କ ସହିତ ଅମୃତଯୁକ୍ତ ଦୁଗ୍ଧାନ୍ନ ଭୋଜନ କର । । ୩୫୯ । ତୁମ୍ଭର ବାନ୍ଧବକୁଳ ଓ ଗୋତ୍ର କଳ୍ପସମୟ ପର୍ଯ୍ୟନ୍ତ ସର୍ବଦା

ଅକ୍ଷୟ ହେବ । ତଦନନ୍ତର ତୁମ୍ଭେ ବନ୍ଧୁମାନଙ୍କ ସହିତ ଆମ୍ଭ ନିକଟକୁ ଗମନ କରିବ । ୩୬୦ ।

ହେ ଦ୍ୱିଜ ଶ୍ରେଷ୍ଠ ! ଆମ୍ଭଠାରେ ତୁମ୍ଭର ପ୍ରଗାଢ଼ ଭକ୍ତି ରହିବ । ହେ ଦ୍ୱିଜୋତ୍ତମ ! ତୁମ୍ଭ ଆଶ୍ରମରେ ଆମ୍ଭେ ନିରନ୍ତର ବାସ କରିବୁଁ ।୩୬୧। ହେ ବତ୍ସ ! ତୁମ୍ଭେ ସ୍ୱ ଇଚ୍ଛାନୁସାରେ ଅବସ୍ଥିତ ହୁଅ, ଉତ୍କଣ୍ଠା କରିବ‑ନାହିଁ । ହେ ବିପ୍ର ! ତୁମ୍ଭେ ଆମ୍ଭକୁ ସ୍ମରଣ କଲାମାତ୍ରେ ଆମ୍ଭେ ତୁମ୍ଭ ନିକଟରେ ଉପସ୍ଥିତ ହେଉଥିବୁ । ୩୬୨ । କୋଟି ସୂର୍ଯ୍ୟ ସଦୃଶ ପ୍ରଭାଯୁକ୍ତ ସେହି ଭଗବାନ ଈଶାନ ଏହିପରି କହି ଆମ୍ଭଙ୍କୁ ବରବୃନ୍ଦ ପ୍ରଦାନ ପୂର୍ବକ ସେହିଠାରୁ ଅନ୍ତର୍ହିତ ହେଲେ । ୩୬୩ । ହେ କୃଷ୍ଣ ! ଆମ୍ଭେ ଏହିପରି ସମାଧି ବଳରେ ଦେବାଦେବଙ୍କୁ ଦର୍ଶନ କରିଥିଲୁଁ; ସେହି ଧୀମାନ୍ ଶିବ ଆମ୍ଭଙ୍କୁ ଯାହା ଯାହା କହିଥିଲେ ଅର୍ଥାତ ଯେଉଁ ବରମାନଙ୍କୁ ଦେଇଥିଲେ ତାହା ସବୁ ପ୍ରାପ୍ତ ହୋଇଅଛୁ । ୩୬୪ । ହେ କୃଷ୍ଣ ! ତୁମ୍ଭେ ସାକ୍ଷାତ୍‌ରେ ଦେଖ, ସିଦ୍ଧ, ମହର୍ଷି, ଯକ୍ଷ, ବିଦ୍ୟାଧର, ଗନ୍ଧର୍ବ, ଅପ୍‌ସରାଗଣ ଏହିସ୍ଥାନରେ ଅବସ୍ଥାନ କରି ଅଛନ୍ତି । ୩୬୫ ।

ଏହି ସ୍ଥାନର ବୃକ୍ଷଲତା ଓ ଗୁଳ୍ମମାନଙ୍କୁ ଦେଖ । ଏମାନେ ସମସ୍ତେ ପୁଷ୍ପ ଓ ଫଳ ପ୍ରଦାନ କରନ୍ତି; ସମସ୍ତ ଋତୁରେ କୁସୁମଯୁକ୍ତ ହୋଇଥାନ୍ତି । ଏମାନଙ୍କର ସୁଗନ୍ଧଯୁକ୍ତ ପତ୍ର ସମୂହ ଦର୍ଶନ କଲେ ମନରେ ଆନନ୍ଦ ଜାତ ହୁଏ । ୩୬୬ । ହେ ମହାବାହୋ ! ମହାତ୍ମା ଦେବଦେବ ଈଶ୍ୱରଙ୍କ ପ୍ରସାଦରେ ଆଶ୍ରମସ୍ଥିତ ଏହି ସମସ୍ତ ପଦାର୍ଥ ଦିବ୍ୟ ଭାବଯୁକ୍ତ ହୋଇଅଛନ୍ତି । ୩୬୭ । ବାସୁଦେବ କହିଲେ, ହେ ଯୁଧିଷ୍ଠିର ! ତାହାଙ୍କର ବଚନ ଶୁଣି ସାକ୍ଷାତ୍ ଦେଖିଲାପରି ଜ୍ଞାନ ହେବାରୁ ପରମ ବିସ୍ମୟ ଲାଭକରି ସେହି ମହାମୁନିଙ୍କୁ କହିଲୁଁ ( ୩୬୮ ) ହେ ବିପ୍ରବର ! ତୁମ୍ଭେ ଧନ୍ୟ, ତୁମ୍ଭ ବ୍ୟତିରେକେ ଅନ୍ୟ କେଉଁ ବ୍ୟକ୍ତି ପୁଣ୍ୟଶୀଳ ଅଛି ? ଯେଉଁ ଦେବାଦିଦେବ ଶଙ୍କର ତୁମ୍ଭ ଆଶ୍ରମରେ ସର୍ବଦା ବାସକରୁଅଛନ୍ତି, ସେହି ଭଗବାନ ଶିବ ମୋତେ ଅନୁଗ୍ରହ ପ୍ରକାଶ ପୂର୍ବକ ସମ୍ପୂର୍ଣ୍ଣ ରୂପେ ଦର୍ଶନ ଦେବେ ? ୩୭୦ ।

ଉପମନ୍ୟୁ କହିଲେ, ହେ ଅନଘ ! ପୁଣ୍ଡରୀକ ନେତ୍ର ! ତୁମ୍ଭେ ମୋପରି ଅବଲମ୍ବନରେ ମହାଦେବଙ୍କୁ ଦର୍ଶନ କରିବ ସନ୍ଦେହ ନାହିଁ । ୩୭୧। ହେ ପୁରୁଷୋତ୍ତମ ! ଆମ୍ଭେ ଦିବ୍ୟଚକ୍ଷୁରେ ଦେଖୁଅଛୁଁ, ଅର୍ଥାତ୍ ଜାଣୁ ଅଛୁଁ ଯେ, ତୁମ୍ଭେ ଷଷ୍ଠ ମାସରେ ଅମିତ ବିକ୍ରମ ମହାଦେବଙ୍କୁ ଦର୍ଶନ କରିବ । ୩୭୨ । ହେ ଯଦୁ ଶ୍ରେଷ୍ଠ ! ଆମ୍ଭେ ତୁମ୍ଭଙ୍କୁ ଏହି ସତ୍ୟ କଥା କହୁଅଛୁଁ ଯେ, ତୁମ୍ଭେ ସପତ୍ନୀକ ମହେଶ୍ୱରଙ୍କଠାରୁ ଷୋଡ଼ଶ ଓ ଅଷ୍ଟ- ଗୋଟି ବର ପ୍ରାପ୍ତ ହେବ, ଅର୍ଥାତ୍ ଶିବଙ୍କଠାରୁ ଆଠ ଗୋଟି ଓ ପାର୍ବତୀଙ୍କ- ଠାରୁ ଷୋଡ଼ଶ ଗୋଟି ବର ପ୍ରାପ୍ତ ହେବ । ୩୭୩ । ହେ ମହାବାହୋ ! ଆମ୍ଭେ ସେହି ଧୀମାନ୍ ଶିବଙ୍କ ପ୍ରସାଦରୁ ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ତ୍ରିକାଳର ବିଷୟମାନଙ୍କୁ ସର୍ବଦା ଜାଣୁଅଛୁ । ୩୭୪ ।

ହେ ମାଧବ ! ଭଗବାନ ହର ଅଜିତ୍ୟ ଅନ୍ୟାନ୍ୟ ସହସ୍ର ସହସ୍ର ମୁନିମାନଙ୍କଠାରେ ଦୟାବାନ୍ ହୋଇଅଛନ୍ତି । ତୁମ୍ଭଠାରେ କେଉଁ କାରଣରୁ ଅନୁଗ୍ରହ ନ କରିବେ ? ୩୭୫ । ବିଶେଷତଃ ତୁମ୍ଭେ ବ୍ରହ୍ମପରାୟଣ, ଅନୃଶଂସ ଓ ଶ୍ରଦ୍ଧାଶୀଳ । ସେହି ହେତୁରୁ ଦେବଗଣ ତୁମ୍ଭ ସଦୃଶ ବ୍ୟକ୍ତିଙ୍କ ସହିତ ସମାଗମକୁ ପ୍ରଶଂସା କରନ୍ତି । ୩୭୬ । ତୁମ୍ଭେ ଯେଉଁ ମନ୍ତ୍ର ପ୍ରଭାବରେ ଶଙ୍କର ଶିବଙ୍କୁ ଦେଖିବ, ଆମ୍ଭେ ତୁମ୍ଭଙ୍କୁ ସେହି ମନ୍ତ୍ର ପ୍ରଦାନ କରିବୁଁ । ଶ୍ରୀକୃଷ୍ଣ କହିଲେ, ଆମ୍ଭେ ତାହାଙ୍କୁ କହିଲୁଁ, ହେ ବ୍ରହ୍ମନ୍ ମହାମୁନେ ! ଆପଣଙ୍କ ପ୍ରସାଦରେ ଆମ୍ଭେ ଅସୁରକୁଳମର୍ଦ୍ଦନ ତ୍ରିଦଶେ- ଶ୍ୱରଙ୍କୁ ଦର୍ଶନ କରିବୁଁ । ସେ ଆମ୍ଭଙ୍କୁ ଏହିପରି ମହାଦେବଙ୍କ ଆଶ୍ରିତ କଥା କହୁ କହୁ ( ୩୭୮ ) ଅଷ୍ଟଦିବସ ମୁହୂର୍ତ୍ତକ ପରି ଚାଲିଗଲା । ତତ୍ପରେ ଅଷ୍ଟମ ଦିବସରେ ଆମ୍ଭେ ମୁଣ୍ଡିତ ଘୃତଲିପ୍ତ ଦଣ୍ଡଧାରୀ କୁଶାସନ, କୌପୀନଧାରୀ ଓ ମେଖଳାଧାରୀ ହୋଇ ବିଧି ଅନୁସାରେ ସେହି ବିପ୍ରଙ୍କ ଦ୍ୱାରା ଦୀକ୍ଷାଗ୍ରହଣ କଲୁଁ । ୩୮୦ । ଏକ ମାସ ପର୍ଯ୍ୟନ୍ତ ଫଳାହାର, ଦ୍ୱିତୀୟମାସ ପର୍ଯ୍ୟନ୍ତ ଜଳାହାର କଲୁଁ । ୩୮୧ । ତତ୍ପରେ ତୃତୀୟ, ଚତୁର୍ଥ ଓ ପଞ୍ଚମ ମାସ ପର୍ଯ୍ୟନ୍ତ ଏକ ପାଦରେ ଠିଆହୋଇ ବାହୁ ଉତ୍ତୋଳନ ପୂର୍ବକ ବିମୁଖ ନ ହୋଇ ପବନ ଭକ୍ଷଣ କଲୁଁ । ହେ ପାଣ୍ଡୁ ନନ୍ଦନ ! ଭାରତ ! ତତ୍ପରେ ଆମ୍ଭେ ଆକାଶରେ ସହସ୍ର ସୂର୍ଯ୍ୟର

ତେଜୋରାଶି ପରିଦର୍ଶନ କଲୁଁ । ସେହି ତେଜୋରାଶି ମଧ୍ୟରେ ଅନେକ ଇନ୍ଦ୍ରଧନୁ, ବିଦ୍ୟୁତ୍, ନୀଳମେଘ, ଶୁକ୍ଳ ମେଘ, ପର୍ବତ ସଦୃଶ ବକ ଶ୍ରେଣୀ ବିରାଜିତ ହୋଇଥିଲା । ୩୮୩ ।

ମହାଦ୍ୟୁତି ଭଗବାନଦେବ ତପ୍ତତେଜ କାନ୍ତି ଓ ରୂପବତୀ ଭାର୍ଯ୍ୟାଙ୍କ ସହିତ ସେହି ମେଘ ମଣ୍ଡଳରେ ଅବସ୍ଥାନ କରିଥିଲେ । ୩୮୪ । ଭଗବାନ ମହେଶ୍ୱର ଦେବୀ ପାର୍ବତୀଙ୍କ ସହିତ ବିରାଜମାନ କରିଥିବାରୁ ସେ ମେଘସ୍ଥିତ ଚନ୍ଦ୍ରଯୁକ୍ତ ସୂର୍ଯ୍ୟଙ୍କପରି ଶୋଭା ପାଉଥିଲେ । ୩୮୫ । ହେ କୌନ୍ତେୟ ! ଆମ୍ଭେ ପୁଲକିତ କଳେବର ଓ ବିସ୍ମୟୋତ୍‌ଫୁଲ୍ଲ ଲୋଚନ ହୋଇ ଦେବ ସମୂହର ଗତି ଆର୍ତ୍ତିହର ହରଙ୍କୁ ନିରୀକ୍ଷଣ କଲୁଁ । ୩୮୬ । ସେ କିରୀଟ, ଗଦା, ଶୂଳ, ବ୍ୟାଘ୍ରଚର୍ମ, ଜଟା, ଦଣ୍ଡ, ପିନାକଧନୁ, ବଜ୍ର, ତୀକ୍ଷ୍ଣଦନ୍ତ, ମନୋହର ଅଙ୍ଗଦ, ସର୍ପ ଓ ଯଜ୍ଞୋପବୀତ ଧାରଣ କରିଥିଲେ । ୩୮୭ ।

ଅନେକ ବର୍ଣ୍ଣ ବିଶିଷ୍ଟ ଦିବ୍ୟମାଳାକୁ ଗୁଳ୍‌ଫ ଦେଶ ପର୍ଯ୍ୟନ୍ତ ଅର୍ଥାତ୍ ଗୋଇଠି ପର୍ଯ୍ୟନ୍ତ ଲମ୍ବମାନପୂର୍ବକ ବକ୍ଷସ୍ଥଳରେ ଧାରଣ କରିଥିବାରୁ ସେ ଶରତ୍କାଳୀନ ସନ୍ଧ୍ୟା ସମୟରେ ପରିଧି ମଧ୍ୟଗତ ଚନ୍ଦ୍ର ସଦୃଶ ହୋଇଥିବାର ଆମ୍ଭେ ଦେଖିଲୁଁ । ୩୮୮ । ଏବଂ ଚତୁର୍ଦ୍ଦିଗରେ ପ୍ରମଥଗଣ ପରିବେଷ୍ଟିତ ହୋଇ ସେ ଶରତ୍‌କାଳରେ ପରିଧି ମଧ୍ୟଗତ ଦିବାକରଙ୍କ ସଦୃଶ ଅତିଶୟ ଦୁର୍ନିରୀକ୍ଷ ହୋଇଥିଲେ । ୩୮୯ । ଏକାଦଶ ଶତ ରୁଦ୍ର ସୂର୍ଯ୍ୟ, ବସୁସାଧ୍ୟ ବିଶ୍ୱେଦେବଗଣ ଓ ଅଶ୍ୱିନୀକୁମାର ଦ୍ୱୟ ଉତ୍କୃଷ୍ଟ ସ୍ତୁତି ବାକ୍ୟରେ ବୃଷଭବାହନ, ନିୟତାତ୍ମା, କର୍ମମାନଙ୍କ ଦ୍ୱାରା ଶୁଭକର୍ମଯୁକ୍ତ ସେହି ବିଶ୍ୱଦେବଙ୍କୁ ସ୍ତବ କରୁଥିଲେ । ୩୯୧ ।

ଇନ୍ଦ୍ର, ଭଗବାନ ବିଷ୍ଣୁ, ଏହି ଅଦିତି ନନ୍ଦନ ଦୁହେଁ ଓ ବ୍ରହ୍ମା ମହାଦେବଙ୍କ ନିକଟରେ ନିରନ୍ତର ସାମବେଦକୁ ପାଠ କରୁଥିଲେ । ୩୯୨ । ହେ ରାଜନ ! ପୁତ୍ରଯୁକ୍ତ ଦେବର୍ଷି—ବ୍ରହ୍ମର୍ଷିଗଣ, ଅସଂଖ୍ୟ ଯୋଗୀଶ୍ୱର, ପୃଥିବୀ, ଆକାଶ, ନକ୍ଷତ୍ରଗଣ, ଗ୍ରହଗଣ, ମାସ, ପକ୍ଷ, ଋତୁ, ରାତ୍ରି, ବର୍ଷ, କ୍ଷଣ, ମୁହୂର୍ତ୍ତ, ନିମେଷ, ଯୁଗ ପର୍ଯ୍ୟାୟ, ସତ୍ତ୍ୱବିତ୍ ଦିବ୍ୟବିଦ୍ୟା ଏହିମାନେ

ଦିବ୍ୟମୂର୍ତ୍ତି ଧାରଣକରି ଯୋଗଦାତା ଜଗତ୍‌ପିତା ଜଗତ୍‌ଗୁରୁଙ୍କୁ ନମସ୍କାର କରୁଥିଲେ । ୩୯୫ ।

ହେ ଯୁଧିଷ୍ଠିର ! ସନତ୍‌କୁମାର, ବେଦ, ଇତିହାସ, ମରୀଚି, ଅଙ୍ଗିରା, ଅତ୍ରି, ପୁଲସ୍ତ୍ୟ, ପୁଲହ, କ୍ରତୁ, (୩୯୬) ସପ୍ତମନୁ, ସୋମ, ଅଥର୍ବ, ବୃହସ୍ପତି, ଭୃଗୁ, ଦକ୍ଷ, କଶ୍ୟପ, ବଶିଷ୍ଠ, କାଶ୍ୟ, ( ୩୯୭ ) ଛନ୍ଦସମୂହ, ଦୀକ୍ଷାଯଜ୍ଞ, ଦକ୍ଷିଣା, ପାବକ, ହବି, ଏହି ସମସ୍ତ ମୂର୍ତ୍ତିଯୁକ୍ତ ଯଜ୍ଞର ଉପକରଣ ଦ୍ରବ୍ୟସମୂହ । ୩୯୮ । ଏବଂ ସମସ୍ତ ପ୍ରଜାପାଳକ, ସମସ୍ତ ନଦୀ, ପନ୍ନଗ, ନଗ, ଦେବତାଗଣ; ସମସ୍ତ ଦେବପତ୍ନୀଗଣ ଓ ଦେବକନ୍ୟାଗଣ ଏବଂ ସହସ୍ର ସହସ୍ର ଅଯୁତ ଅଯୁତ ଅର୍ବୁଦ ଅର୍ବୁଦ ମୁନିଗଣ, ପର୍ବତ ସାଗର ଓ ଦିଗ ସମୂହ ସମସ୍ତେ ମୂର୍ତ୍ତିମନ୍ତହୋଇ ଶାନ୍ତମୂର୍ତ୍ତି ପ୍ରଭୁଙ୍କୁ ନମସ୍କାର କରୁଥିଲେ । ୪୦୦ ।

ଗୀତ ବାଦ୍ୟ ବିଶାରଦ ଗନ୍ଧର୍ବଗଣ ଓ ଅପ୍‌ସରାଗଣ ଦିବ୍ୟ-ତାନରେ ଗାନକରି ସେହି ଅଦ୍ଭୁତ ଭବଙ୍କୁ ସ୍ତବ କରୁଥିଲେ । ୪୦୧ । ହେ ମହାରାଜ ! ଗୁହ୍ୟକ ବିଦ୍ୟାଧର ଦାନବ ରାକ୍ଷସ ଏବଂ ସଚରାଚର ସମସ୍ତ ଭୂତଗଣ କାୟ ମନୋବାକ୍ୟ କର୍ମଦ୍ୱାରା ବିଭୁଙ୍କୁ ନମସ୍କାର କରୁଥିଲେ । ୪୦୨ । ହେ ଭାରତ ! ସେହି ସମୟରେ ତ୍ରିଦଶେଶ୍ୱର ଶିବ ମୋର ଅଗ୍ରଭାଗରେ ଅବସ୍ଥିତ ହେଲେ । ମୋର ଅଗ୍ରଭାଗରେ ଅବସ୍ଥିତ ଈଶାନଙ୍କୁ ଦେଖି ବ୍ରହ୍ମା ଓ ଇନ୍ଦ୍ର ପ୍ରଭୃତି ସମସ୍ତେ ମୋତେ ନିରୀକ୍ଷଣ କରୁଥିଲେ । ସେହି ସମୟରେ ମହାଦେବଙ୍କୁ ଚାହିଁବାକୁ ମୋର ଶକ୍ତି ହେଲା ନାହିଁ । ୪୦୪ ।

ତଦନନ୍ତର ମହାଦେବ ଆମ୍ଭଙ୍କୁ କହିଲେ, ହେ କୃଷ୍ଣ ! ତୁମ୍ଭେ ଆମ୍ଭଙ୍କୁ ଶତ ସହସ୍ରବାର ଆରାଧନା କରିଅଛ; ଏତେବେଳେ ଆମ୍ଭଙ୍କୁ ଦର୍ଶନକର ଓ ନିଜର ଅଭିପ୍ରାୟ ବ୍ୟକ୍ତକର । ୪୦୫ । ତ୍ରିଲୋକରେ ତୁମ୍ଭ ସମାନ ଆମ୍ଭର କେହି ପ୍ରିୟ ନାହାନ୍ତି । ତେତେବେଳେ ଆମ୍ଭେ ମସ୍ତକରେ ମହାଦେବଙ୍କୁ ନମସ୍କାର କରିବାରୁ ପାର୍ବତୀ ଦେବୀ ପ୍ରୀତିଯୁକ୍ତା ଓ ପ୍ରସନ୍ନା ହେଲେ । ତତ୍ପରେ ଆମ୍ଭେ ବ୍ରହ୍ମାଦି ଅମରଗଣଙ୍କ ଦ୍ୱାରା ପୂଜିତ

ସ୍ଥାଣୁଙ୍କୁ କହିଲେ । ୪୦୬ । ହେ ସନାତନ ! ହେ ସର୍ବ କାରଣ ! ତୁମ୍ଭଙ୍କୁ ନମସ୍କାର । ସଜ୍ଜନ ଋଷିମାନେ ଆପଣଙ୍କୁ ତପସତ୍ୟ, ସତ୍ତ୍ୱରଜତମୋଗୁଣ ସ୍ୱରୂପ ଓ ବେଦାଧିପତି ବୋଲି ବର୍ଣ୍ଣନା କରନ୍ତି । ୪୦୭ ।

ତୁମ୍ଭେ ବ୍ରହ୍ମା, ରୁଦ୍ର, ବରୁଣ, ଅଗ୍ନି, ମନୁ, ଭବ, ଧାତା, ଅର୍ଥାତ୍ ଈଶ୍ୱର ତ୍ୱଷ୍ଟା ଅର୍ଥାତ୍ ରୂପ ନିର୍ମାତା, ବିଧାତା ଅର୍ଥାତ୍ ଧର୍ମାଧର୍ମ ସ୍ୱରୂପ କର୍ମ ପ୍ରଭୁ ଓ ସର୍ବତୋମୁଖ ଅଟ । ୪୦୮ । ସ୍ଥାବର ଚର ଓ ଅଚର ସମସ୍ତ ଭୂତ ତୁମ୍ଭଠାରୁ ଉତ୍ପନ୍ନ ହୋଇଅଛନ୍ତି । ତୁମ୍ଭେ ଏହି ସଚରାଚର ସମଗ୍ର ତ୍ରୈଲୋକ୍ୟକୁ ସର୍ଜନ କରିଅଛ । ୪୦୯ । ସମସ୍ତ ଇନ୍ଦ୍ରିୟ, ମନ, ପଞ୍ଚପ୍ରାଣ, ସପ୍ତଅଗ୍ନି, ଇନ୍ଦ୍ରିୟର ଅଧିଷ୍ଠାତ୍ରୀ ଦେବତା, ସ୍ତୁତିଯୋଗ୍ୟ ଦେବତା, ଏହି ସମସ୍ତଙ୍କ ଅପେକ୍ଷା ତୁମ୍ଭେ ଶ୍ରେଷ୍ଠ, ବଚନର ଅଗୋଚର ଏବଂ ରୂପାଦି ଶୂନ୍ୟବୋଲି ଋଷିମାନେ କହନ୍ତି । ୪୧୦ । ହେ ଭଗବନ୍ ! ଦେବସମୂହ, ଯଜ୍ଞସମୂହ, ସୋମରସ, ଦକ୍ଷିଣା, ଅଗ୍ନି, ଘୃତ ଯଜ୍ଞର ଉପକରଣ ଦ୍ରବ୍ୟ, ଦାନ, ଅଧ୍ୟୟନ, ବ୍ରତ, ନିୟମ, ଦେବପୂଜା, ଲଜ୍ଜା, କୀର୍ତ୍ତି, ଶ୍ରୀ, ଦ୍ୟୁତି, ତୁଷ୍ଟି, ମୋକ୍ଷପ୍ରଦା, ସିଦ୍ଧି, କାମ, କ୍ରୋଧ, ଲୋଭ, ମୋହ, ଭୟ, ମଦ, ମତ୍ସର, ସ୍ତମ୍ଭ, ଆଧି, ବ୍ୟାଧି ଓ ଯତ୍ କିଞ୍ଚିତ୍ ଏହି ସମସ୍ତ ହେ ଭଗବନ୍ ! ତୁମ୍ଭର ତନୁ ସ୍ୱରୂପ ଅଟନ୍ତି, ଏ ବିଷୟରେ କିଛି ସଂଶୟ ନାହିଁ । ୪୧୩ ।

ତୁମ୍ଭେ କ୍ରିୟା ହର୍ଷ ପ୍ରଭୃତି ଚିତ୍ତ ବିକାର, ପ୍ରଣୟ ବାସନାର ବୀଜ, ମନର ଉତ୍ପତ୍ତି ସ୍ଥାନ, ନିତ୍ୟସିଦ୍ଧ ଐଶ୍ୱର୍ଯ୍ୟ, ଅବ୍ୟକ୍ତ, ପରଂବ୍ରହ୍ମ, ଅଚନ୍ଦ୍ରମାୟ, ସୂର୍ଯ୍ୟ, ଜ୍ୟୋତିର୍ମୟ, ସର୍ବଗୁଣର ଆଦି ଓ ଜୀବଗଣର ଲୟ ସ୍ଥାନ । ପଦାର୍ଥବେତ୍ତା ପଣ୍ଡିତଗଣ ତୁମ୍ଭଙ୍କୁ ମହତତ୍ତ୍ୱ, ଆତ୍ମା, ବିଶ୍ୱ, ଶମ୍ଭୁ, ସ୍ୱୟମ୍ଭୁ, ବୁଦ୍ଧି, ପ୍ରଜ୍ଞା, ଚେତନା, ଜ୍ଞାନ, ଖ୍ୟାତି, ଧୃତି ଓ ସ୍ମୃତି ସ୍ୱରୂପ ବୋଲି ଧ୍ୟାନ କରନ୍ତି । ୪୧୬ ।

ବେଦବିଶାରଦ ବ୍ରାହ୍ମଣଗଣ ତୁମ୍ଭଙ୍କୁ ଏହିପରି ଜାଣି ସଂସାରର ମୂଳ ଅଜ୍ଞାନରୁ ମୁକ୍ତ ହୁଅନ୍ତି । ୪୧୭ । ତୁମ୍ଭେ ସର୍ବଭୂତର ହୃଦୟସ୍ଥିତ ଜୀବାତ୍ମା । ମହର୍ଷିଗଣ ତୁମ୍ଭଙ୍କୁ ସର୍ବଦା ସ୍ତବ କରନ୍ତି । ତୁମ୍ଭର ପାଣି, ପାଦ, ମୁଖ, ଚକ୍ଷୁ, କର୍ଣ୍ଣ ଓ ମସ୍ତକ, ସର୍ବତ୍ର ବିଦ୍ୟମାନ ରହିଅଛି ଏବଂ ତୁମ୍ଭେ

ଲୋକ ସମୂହ ବ୍ୟାପିକରି ଅବସ୍ଥିତ ହୋଇଅଛ । ତୁମ୍ଭେ ସ୍ୱର୍ଗ ସୁଖ, ସୂର୍ଯ୍ୟର ପ୍ରଭା ଓ ମରୀଚି, ସର୍ବଭୂତର ଅନ୍ତର୍ଗତ ପରମାତ୍ମା, ଅଣିମାଦି ଅଷ୍ଟସିଦ୍ଧି, ଈଶାନ, ଜ୍ୟୋତି, ଅବ୍ୟୟ ଏବଂ ବୁଦ୍ଧି, ମତି ଓ ଲୋକ ସମୂହର ଆଶ୍ରୟ ସ୍ୱରୂପ, ସତ୍ୟ ସଂକଳ୍ପ, ଜିତେନ୍ଦ୍ରିୟ, ଯୋଗାନୁଷ୍ଠାନରେ ନିରତ । ପ୍ରାଜ୍ଞ ମହାତ୍ମାଗଣ ନିରନ୍ତର ତୁମ୍ଭର ଶରଣ ଗ୍ରହଣ କରନ୍ତି । ଯେଉଁ ଜନବୃନ୍ଦ ତୁମ୍ଭଙ୍କୁ ହୃଦୟାକାଶଶାୟୀ, ପରମ ପୁରୁଷ, ବିଶ୍ୱବ୍ୟାପୀ ଜ୍ୟୋତିମୟ ଓ ଧୀମାନ୍ ବ୍ୟକ୍ତିମାନଙ୍କର ପରମଗତି ବୋଲି ଜାଣି ପାରନ୍ତି, ସେହିମାନେ କେବଳ ବୁଦ୍ଧିମାନ, ଯଥାର୍ଥ ପଣ୍ଡିତ । ମହତତ୍ତ୍ୱ, ଅହଂକାର ଓ ପଞ୍ଚ ତନ୍ମାତ୍ର ଏହି ସାତ ସୂକ୍ଷ୍ମଗୁଣ ଓ ତୁମ୍ଭର ସର୍ବଜ୍ଞତା ପ୍ରଭୃତି ଛଅଗୁଣ ଏବଂ ଯୋଗ ବିଧିକ ବିଶେଷ ରୂପ ଜାଣି ପାରିଲେ ତୁମ୍ଭଠାରେ ଲୀନ ହୁଅନ୍ତି । ୪୨୩ । ହେ ପାର୍ଥ ! ଆମ୍ଭେ ଏହି ରୂପେ ଆର୍ତ୍ତି-ବିନାଶନ ମହାଦେବଙ୍କୁ ସ୍ତବକରିବାରୁ, ଜଗତର ସମସ୍ତ ଚରାଚର ପ୍ରାଣୀ ତେତେବେଳେ ସିଂହନାଦ କଲେ । ୪୨୪ ।

ବ୍ରାହ୍ମଣଗଣ, ଦେବଗଣ, ଅସୁରଗଣ, ନାଗଗଣ, ପିଶାଚଗଣ, ପିତୃଗଣ, ରାକ୍ଷସଗଣ, ଭୂତଗଣ ଓ ସମସ୍ତ ମହର୍ଷିଗଣ, ତାହାଙ୍କୁ ପ୍ରଣାମ କଲେ । ୪୨୫ । ଆମ୍ଭ ମସ୍ତକରେ ଦିବ୍ୟ ସୁଗନ୍ଧ କୁସୁମରାଶି ନିପତିତ ହେଲା । ୪୨୬ । ଏବଂ ସୁଖସ୍ପର୍ଶ ବାୟୁ ପ୍ରବାହିତ ହେଲା । ତେତେବେଳେ ଭଗବାନ ବିଶ୍ୱହିତ ଶିବ ଶଙ୍କର, ଉମା ଓ ଇନ୍ଦ୍ରଙ୍କୁ ଅଭିନନ୍ଦନକରି ଆମ୍ଭଙ୍କୁ ସ୍ୱୟଂ କହିଲେ, ହେ କୃଷ୍ଣ ! ହେ ଶତ୍ରୁ ନିସୂଦନ ! ତୁମ୍ଭର ଆମ୍ଭଠାରେ ପରମ ଭକ୍ତିଅଛି । ତୁମ୍ଭେ ଆପଣାର ଶ୍ରେୟଃ ସାଧନ କଲ, ଆମ୍ଭେ ତୁମ୍ଭଠାରେ ପରମ ପ୍ରୀତ ହେଲୁଁ । ୪୨୮ ।

ହେ ଯାଦବ ଶ୍ରେଷ୍ଠ ! ହେ ସଜ୍ଜନବର କୃଷ୍ଣ ! ତୁମ୍ଭେ ଯେଉଁ ଅତି ଦୁର୍ଲ୍ଲଭ ଆଠ ଗୋଟି ବରମାନଙ୍କୁ ଇଚ୍ଛା କରୁଅଛ, ତାହା ପ୍ରାର୍ଥନା କର, ଆମ୍ଭେ ପ୍ରଦାନ କରିବା । ୪୨୯ ।

ମେଘବାହନ ପର୍ବାଖ୍ୟାନେ ଚତୁର୍ଦ୍ଦଶ ଅଧ୍ୟାୟ ସମାପ୍ତ । ୧୪ ।



# ପଞ୍ଚଦଶ ଅଧ୍ୟାୟ

କୃଷ୍ଣ କହିଲେ, ହେ ଧର୍ମରାଜ ! ଦେବାଦିଦେବ ଏହିପରି କହିବାରୁ ଆମ୍ଭେ ତାହାଙ୍କର ଚରଣରେ ନିପତିତ ହୋଇ ପରମହର୍ଷ ଲାଭକରି ତାହାଙ୍କୁ କହିଲୁଁ (୧) ହେ ପ୍ରଭୋ ! ତୁମ୍ଭ ନିକଟରେ ଧର୍ମ ବିଷୟରେ ଦୃଢ଼ତା, ଯୁଦ୍ଧରେ ଶତ୍ରୁ ସଂହାର କରିବାର ଶକ୍ତି, ନିର୍ମଳ ଯଶ, ପରମବଳ, ଯୋଗପ୍ରିୟତ୍ୱ, ଲୋକପ୍ରିୟତା, ତୁମ୍ଭର ସନ୍ନିକର୍ଷ ଓ ଅସଂଖ୍ୟ ପୁତ୍ର ପ୍ରାର୍ଥନା କରୁଅଛୁ । ୨ । ମୁଁ ଏହିପରି କହନ୍ତେ, ଶଙ୍କର "ଏବମସ୍ତୁ" କହି ବର ପ୍ରଦାନ କଲେ । ହେ ଅନଘ ! ଭଗବାନ ଆମ୍ଭଙ୍କୁ "ଶାମ୍ବ" ନାମକ ପୁତ୍ର ପ୍ରଦାନ କରିଥିଲେ ।.

ତତ୍ପରେ ସର୍ବପାବମା ବିଶ୍ୱପାଳନ କର୍ତ୍ରୀ ଜଗନ୍ମାତା ତପସ୍ୟାର ନିଧି ସ୍ୱରୂପା ସର୍ବାଣୀ ଉମା ଆମ୍ଭଠାରେ ପ୍ରସନ୍ନା ହୋଇ କହିଲେ, ହେ କୃଷ୍ଣ ! ତୁମ୍ଭେ ଆମ୍ଭଙ୍କୁ ଆଠ ଗୋଟି ବର ପ୍ରାର୍ଥନା କର । ଆମ୍ଭେ ତୁମ୍ଭଙ୍କୁ ତାହା ଦେବା । ହେ ପାଣ୍ଡୁନନ୍ଦନ ! ଆମ୍ଭେ ତେତେବେଳେ ତାଙ୍କ ଚରଣରେ ପ୍ରଣାମ ପୂର୍ବକ କହିଲୁଁ, ହେ ମାତଃ ! ମୁଁ ତୁମ୍ଭ ନିକଟରେ ଦ୍ୱିଜମାନଙ୍କଠାରେ ଅକ୍ରୋଧ, ପିତାର ଅନୁଗ୍ରହ, ଶତପୁତ୍ର, ପରମଭୋଗ, କୁଳରେ ପ୍ରୀତି, ମାତାଙ୍କ ନିକଟରୁ ପ୍ରସନ୍ନତା, ଶାନ୍ତି ଓ କାର୍ଯ୍ୟ ଦକ୍ଷତା, ଏହି ଆଠ ଗୋଟି ବର ପ୍ରାର୍ଥନା କରୁଅଛୁ । ୬ । ପାର୍ବତୀ କହିଲେ, ହେ ଅମର ପ୍ରଭାବ ! କୃଷ୍ଣ ! ତୁମ୍ଭେ ଯାହା ପ୍ରାର୍ଥନା କଲ, ତାହା ଅବଶ୍ୟ ପାଇବ । ଆମ୍ଭ ବଚନ କଦାପି ମିଥ୍ୟା ହୁଏ ନାହିଁ, ଏହା ବ୍ୟତିରେକେ ଆଉ ଆଠଗୋଟି ବର ତୁମ୍ଭଙ୍କୁ ପ୍ରଦାନ କରୁଅଛୁଁ ଯେ, ସେହି ବର ପ୍ରଭାବରେ ତୁମ୍ଭେ ଅମରସଦୃଶ ପ୍ରଭାବଶାଳୀ ଓ ସତ୍ୟବାଦୀ ହେବ । ତୁମ୍ଭର ଷୋଡ଼ଶ ସହସ୍ର ପତ୍ନୀ ହେବ, ସେମାନଙ୍କଠାରେ ତୁମ୍ଭର ଅକ୍ଷୟ ଅନୁରାଗ ହେବ । ବନ୍ଧୁଜନରେ ପ୍ରୀତି, ଅକ୍ଷୟ ଧନଧାନ୍ୟ ଲାଭ ଓ ମନୋହର କଳେବର ଲାଭ ହେବ ଏବଂ ତୁମ୍ଭ ଗୃହରେ ପ୍ରତିଦିନ ସହସ୍ର ଅତିଥି ଭୋଜନ କରିବେ । ୮ ।

ବାସୁଦେବ କହିଲେ, ହେ ଭୀମାଗ୍ରଜ ! ଭାରତ ! ମହାଦେବ ଓ ଦେବୀ ପାର୍ବତୀ ଆମ୍ଭଙ୍କୁ ଏହିପରି ବର ପ୍ରଦାନପୂର୍ବକ ତତ୍ସମୟରେ ପ୍ରମଥଗଣ ସହିତ ଅନ୍ତର୍ହିତ ହେଲେ । ୯ । ହେ ପାର୍ଥିବ ଉତ୍ତମ ! ଅତି ତେଜସ୍ୱୀ ବ୍ରାହ୍ମଣ ଉପମନ୍ୟୁଙ୍କୁ ଆମ୍ଭେ ଏହି ଅତି ଅଦ୍ଭୁତ ଆଦ୍ୟପ୍ରାନ୍ତ ସମସ୍ତ ବୃତ୍ତାନ୍ତ କହିଲୁଁ । ହେ ସୁବ୍ରତ ! ସେ ଦେବଦେବଙ୍କୁ ନମସ୍କାର କରି କହିଲେ, ( ୧୦ ) ଶିବଙ୍କ ସଦୃଶ ଦେବତା ନାହାନ୍ତି । ଶିବଙ୍କ ସଦୃଶ ରକ୍ଷାକର୍ତ୍ତା କେହି ନାହାନ୍ତି, ଶିବଙ୍କ ସଦୃଶ ଦାତା କେହି ନାହାନ୍ତି ଓ ଶିବଙ୍କ ସଦୃଶ ଯୋଦ୍ଧା କେହି ନାହାନ୍ତି ।

ମେଘବାହାନୋପାଖ୍ୟାନେ ପଞ୍ଚଦଶାଧ୍ୟାୟ ସମାପ୍ତ । ୧୫ ।



## ଷୋଡଶ ଅଧ୍ୟାୟ

ହେ ଧର୍ମରାଜ ! ତଦନନ୍ତର ସେହି ଋଷି ଉପମନ୍ୟୁ ଶିବଙ୍କ ମାହାତ୍ମ୍ୟ କୀର୍ତ୍ତନ ଉପଲକ୍ଷରେ ପୁନଶ୍ଚ ଆମ୍ଭଙ୍କୁ କହିଲେ, ହେ ତାତ ! ପୂର୍ବେ ସତ୍ୟଯୁଗରେ ତଣ୍ଡି ନାମରେ ଖ୍ୟାତ ଜଣେ ଋଷିଥିଲେ । ସେ ଦଶ ସହସ୍ର ବର୍ଷ ସମାଧି ଦ୍ୱାରା ଶିବଙ୍କୁ ଆରାଧନା କରି ଯେଉଁ ଫଳ ପ୍ରାପ୍ତ ହୋଇଥିଲେ, ତାହା କହୁଅଛୁଁ ଶ୍ରବଣ କର । ତଣ୍ଡି ଋଷି ସମାଧି ଦ୍ୱାରା ଦଶ ସହସ୍ର ବର୍ଷ ପରମାତ୍ମ ସ୍ୱରୂପ ଶିବଙ୍କୁ ଆରାଧନା କରି ପରିଶେଷରେ ତାହାଙ୍କୁ ଧ୍ୟାନ କରିଥିଲେ । ସାଂଖ୍ୟ ମତାବଲମ୍ବୀମାନେ ଯେଉଁ ପ୍ରଧାନ ପୁରୁଷ ଲୋକ ପ୍ରତିଷ୍ଠାତା ମହାଦେବଙ୍କର ନାମ ସ୍ତବପାଠ କରନ୍ତି, ଯୋଗୀଗଣ ଯାହାଙ୍କୁ ମନ ମଧ୍ୟରେ ଧ୍ୟାନ କରନ୍ତି, ଯେ ସୃଷ୍ଟି ଓ ସଂହାରର କାରଣ; ଦେବ, ଅସୁର ଓ ମୁନିଗଣ ମଧ୍ୟରେ ଯାହାଙ୍କ ଅପେକ୍ଷା ଅନ୍ୟ କେହି ଶ୍ରେଷ୍ଠ ନାହାନ୍ତି; (୫) ଆମ୍ଭେ ସେହି ଅନାଦି, ନିଧନ, ଅଜ, ଅଜେୟ, ଈଶାନ, ପରମାନନ୍ଦ, ପ୍ରଭୁ ମହାଦେବଙ୍କ ଶରଣ ପ୍ରାପ୍ତ ହେଲୁଁ । ୬ ।

ତଣ୍ଡି ଲ ମୁନ ଏହାପରେ କହବା ମାତ୍ରେ ସେ ତପୋନଧି ଅବ୍ୟୟ, ଅନୁପମ, ଅଚନ୍ତ୍ୟ, ସନାତନ, କୂଟସ୍ଥ ପ୍ରଭୁ ଶିବଙ୍କୁ ଦର୍ଶନ କଲେ । ୭ ।

ସେ ନିଷ୍କଳ ଅର୍ଥାତ ପୂର୍ଣ୍ଣ, ସକଳ ଅର୍ଥାତ୍ ଅଂଶାବତାର ବ୍ରହ୍ମ, ନର୍ଗୁଣ ଗୁଣଗୋଚର ଅର୍ଥାତ୍ ଗୁଣର ବିପର୍ଯ୍ୟଭୂତ ଯୋଗୀଗଣର ପରମାନନ୍ଦ ଅକ୍ଷୟ ଓ ମୋକ୍ଷ ସ୍ୱରୂପ; ( ୮ ) ସେ ମନୁ, ଇନ୍ଦ୍ର, ଅଗ୍ନି, ମରୁତ ଏହି-ମାନଙ୍କର ଓ ବ୍ରହ୍ମାଙ୍କର ଓ ବିଶ୍ୱର ଗତି ଅଟନ୍ତି । ଅଗ୍ରାହ୍ୟ, ଅଚଳ, ଶୁଦ୍ଧ, ବୁଦ୍ଧି ଶକ୍ତି ଦ୍ୱାରା ଗ୍ରାହ୍ୟ ଓ ମନୁ ସ୍ୱରୂପ ଅର୍ଥାତ୍ ଜଳଚନ୍ଦ୍ରବତ୍ ମନୋଗତ କର୍ତ୍ତୃତ୍ୱାଦ ଧର୍ମରେ ବଶୀଭୂତ ଅଟନ୍ତି । ୯ ।

ଦୁର୍ବିଜ୍ଞେୟ, ଅସଂଖ୍ୟେୟ, ଦୁରାତ୍ମାମାନଙ୍କ ପକ୍ଷରେ ଦୁର୍ଲ୍ଲଭ, ବିଶ୍ୱ ସଂସାରର କାରଣ, ତମୋଗୁଣର ଅତୀତ, (୧୦) ପ୍ରମାଣ ପୁରୁଷ ଦେବ, ଉତ୍କୃଷ୍ଟାପେକ୍ଷା ଅତି ଉତ୍କୃଷ୍ଟ ଯେଉଁ ଦେବ ଆପଣାକୁ ଜୀବରୂପୀ କରି, ସେ ଜୀବ ଶରୀରରେ ମନରୂପ ଜ୍ୟୋତି ହୋଇ ଅବସ୍ଥାନ କରିଅଛନ୍ତି, ତାହାଙ୍କୁ ଦର୍ଶନାକାଂକ୍ଷୀ ଋଷି ତଣ୍ଡି ବହୁବର୍ଷ ପର୍ଯ୍ୟନ୍ତ କଠୋର ତପସ୍ୟା ଅନୁଷ୍ଠାନ ପୂର୍ବକ ଦର୍ଶନ ଲଭ କରି ସ୍ତୁତି କଲେ । ୧୧ । ତଣ୍ଡି କହିଲେ, ହେ ପରମାତ୍ମନ୍ ! ତୁମ୍ଭେ ପବିତ୍ରମାନଙ୍କର ଅର୍ଥାତ୍ ଗଙ୍ଗା ପ୍ରଭୃତି ତୀର୍ଥ ସମୂହର ପବିତ୍ର କର୍ତ୍ତା, ଗତିମାନ୍ କୁଳର ପରମଗତି, ତେଜସ ଚକ୍ଷୁ ପ୍ରଭୃତି ମାନଙ୍କର ମଧ୍ୟ ପ୍ରକାଶକ, ତପସ୍ୱୀ କୁଳର ପରମ ତପସ୍ୟା ସ୍ୱରୂପ । ବିଶ୍ୱାବସୁ ହିରଣାକ୍ଷ ଓ ଇନ୍ଦ୍ର ଏହିମାନଙ୍କର ନମସ୍କୃତ । ୧୩ ।

ହେ ଭୂରି କଲ୍ୟାଣ ପ୍ରଦ ! ଅର୍ଥାତ୍ ମୋକ୍ଷ ପ୍ରଦାୟକ ! ପରମସତ୍ୟ-ସ୍ୱରୂପୀ ! ତୁମ୍ଭଙ୍କୁ ନମସ୍କାର । ୧୪ । ହେ ବିଭୋ ! ତୁମ୍ଭେ ଜନ୍ମ ମରଣ ଭୀରୁ ସନ୍ନ୍ୟାସୀ ଯତିମାନଙ୍କର ମୋକ୍ଷଦାତା । ହେ ସୁଖାତ୍ମ୍ୟ ! ହେ ସହସ୍ରାଂଶୋ ! ତୁମ୍ଭଙ୍କୁ ନମସ୍କାର । ହେ ପ୍ରଭୋ ! ଯଦି ବ୍ରହ୍ମା, ଇନ୍ଦ୍ର, ବିଷ୍ଣୁ, ବିଶ୍ୱଦେବ ଓ ମହର୍ଷିଗଣ ତୁମ୍ଭଙ୍କୁ ଉତ୍ତମରୂପେ ଜାଣି ପାରନ୍ତି ନାହିଁ, ତେବେ ଆମ୍ଭେମାନେ ଅବା ଯଥାର୍ଥରୂପେ କିପରି ଜାଣି ପାରିବୁ ? ସମସ୍ତ ସଂସାର ତୁମ୍ଭଠାରୁ ଉତ୍ପନ୍ନ ଓ ତୁମ୍ଭଠାରେ ପ୍ରତିଷ୍ଠିତ । ୧୬ । ତୁମ୍ଭେ କାଳ ସ୍ୱରୂପୀ, ପୁରୁଷ ସ୍ୱରୂପୀ ଓ ବ୍ରହ୍ମ ସ୍ୱରୂପୀ ଅଟ । ପୁରାଣଜ୍ଞ ଦେବର୍ଷିଗଣ ଜାଣନ୍ତି ଯେ, ବ୍ରହ୍ମା

ବିଷ୍ଣୁ ଓ ମହେଶ୍ୱର ଏହି ତିନ ମୂର୍ତ୍ତି ତୁମ୍ଭର ତନୁ ସ୍ୱରୂପ ଅଟନ୍ତି । ୧୭ । ତୁମ୍ଭେ ଜୀବ, ଦେହ, ଇନ୍ଦ୍ରିୟଗଣର ଅଧିଷ୍ଠାତ୍ରୀ ଦେବତା; ସ୍ୱର୍ଗାଦିଲୋକ ଅନୁରବାତ୍ମକ ଜ୍ଞାନ ଓ ଯଜ୍ଞ ଅର୍ଥାତ୍ ମୋକ୍ଷର ଅପରନାମ, ଏକାଗ୍ର ଭାବ-ଲକ୍ଷଣ ଯଜ୍ଞ ସ୍ୱରୂପ । ତୁମ୍ଭେ ଦେବଗଣର ଦୁର୍ଜ୍ଞେୟ ଓ ସମସ୍ତଙ୍କର ଅନ୍ତର୍ଯ୍ୟାମୀ । ପଣ୍ଡିତମାନେ ତୁମ୍ଭକୁ ଜାଣିପାରିଲେ ମୁକ୍ତି ଲଭକରି ଅନାୟା-ସରେ ଅନାମୟ ଭାବକୁ ପ୍ରାପ୍ତ ହୁଅନ୍ତି । ୧୯ ।

ହେ ବିଭୋ ! ଯେଉଁମାନେ ତୁମ୍ଭଙ୍କୁ ପରିଜ୍ଞାତ ହେବାକୁ ଇଚ୍ଛାକରନ୍ତି ନାହିଁ, ସେମାନେ ଇହଲୋକରେ ବାରମ୍ବାର ଜନ୍ମ ମରଣ ପ୍ରାପ୍ତ ହେଉ-ଥାଆନ୍ତି । ତୁମ୍ଭେ ସ୍ୱର୍ଗ ଓ ମୋକ୍ଷଦ୍ୱାରର ସ୍ୱରୂପ । ତୁମ୍ଭେ କୃପାରେ ଲୋକ ମାନଙ୍କୁ ସ୍ୱର୍ଗ ଓ ମୋକ୍ଷ ପ୍ରଦାନ କର । ୨୦ । ତୁମ୍ଭେ ସ୍ୱର୍ଗ, ମୋକ୍ଷ, କାମ, କ୍ରୋଧ, ସତ୍ତ୍ୱ, ରଜଃ, ତମଃ, ଅଧଃ ଓ ଊର୍ଦ୍ଧ୍ୱ ସ୍ୱରୂପ । ୨୧ । ତୁମ୍ଭେ ବ୍ରହ୍ମା, ଶିବ, ବିଷ୍ଣୁ, କାର୍ତ୍ତିକେୟ, ସୂର୍ଯ୍ୟ, ଚନ୍ଦ୍ର, ଯମ, ବରୁଣ, ମନୁ, ଧାତା, ବିଧାତା, କୁବେର । ତୁମ୍ଭେ ପୃଥ୍ୱୀ, ବାୟୁ, ଜଳ, ଅଗ୍ନି, ଆକାଶ, ବଚନ, ବୁଦ୍ଧି, ସ୍ଥିତି, ମତି, କର୍ମ, ସତ୍ୟ, ମିଥ୍ୟା ଓ ତୁମ୍ଭେ ଅସ୍ତି, ନାସ୍ତି, ଅର୍ଥାତ୍ ରଜ୍ଜୁ, ସର୍ପପରିରେ ପ୍ରଜ୍ଞାତ ମାନ ଅସ୍ତି ସ୍ୱତଃ ନାସ୍ତି ଏତାଦୃଶ ଜଗତ୍ କାରଣ ଅଜ୍ଞାନ । ୨୩ । ତୁମ୍ଭେ ଇନ୍ଦ୍ରିୟ, ଇନ୍ଦ୍ରିୟାର୍ଥ ଅର୍ଥାତ ରୂପ ରସାଦି, ପ୍ରକୃତିର ଅତୀତ, କାର୍ଯ୍ୟକାରଣ ଭିନ୍ନ ଏବଂ ସୋପାଧିକ ରୂପରେ ଚିନ୍ତ୍ୟ ଓ ନିରୁପାଧିକ ରୂପରେ ଅଚିନ୍ତ୍ୟ ସ୍ୱରୂପ । ୨୪ ।

ତୁମେ ପରମବ୍ରହ୍ମ, ତୁମ୍ଭେ ପରମ ପଦ ଓ ସାଂଖ୍ୟ ଯୋଗାବଲମ୍ବୀ ମାନେ ଯେଉଁ ଗତି ପ୍ରାପ୍ତ ହୁଅନ୍ତି, ତୁମ୍ଭେ ତତ୍‌ସ୍ୱରୂପ ଅଟ । ଏ ବିଷୟରେ କିଛି ସଂଶୟ ନାହିଁ । ୨୫ । ଜ୍ଞାନ ଦ୍ୱାରା ନିର୍ମଳ ବୁଦ୍ଧିଯୁକ୍ତ ମହାତ୍ମାମାନେ ଯେଉଁ ଗତି ପ୍ରାର୍ଥନା କରନ୍ତି, ଆମ୍ଭେ ଆଜ ନିଶ୍ଚୟ ସେହି ଗତି ପ୍ରାପ୍ତ ହେଲୁ ଓ ନିଶ୍ଚୟ କୃତାର୍ଥ ହେଲୁ । ୨୬ । କି ଆଶ୍ଚର୍ଯ୍ୟ କଥା ! ଅହୋ ଆମ୍ଭେ ମୂଢ଼ । ପଣ୍ଡିତମାନେ ସନାତନ ପରମ ପୁରୁଷ ବୋଲି ଜାଣନ୍ତି; ଆମ୍ଭେ ଅଜ୍ଞାନ ଦୋଷରେ ଏତେ ଦୀର୍ଘ କାଳ ଯାଏ ତାହାଙ୍କୁ ଜାଣି ପାରିଲୁ ନାହିଁ । । ୨୭ । ଯେଉଁ ଭକ୍ତବତ୍ସଳ ଶିବଙ୍କୁ ଜ୍ଞାତ ହେଲେ ମନୁଷ୍ୟ ମୋକ୍ଷ ଲଭ

କରେ, ଆମ୍ଭେ ଆଜ ବହୁ ଜନ୍ମ ଉତ୍ତାରେ ତାହାଙ୍କର ସାକ୍ଷାତକାର ଓ ଭକ୍ତି ପ୍ରାପ୍ତ ହେଲୁ ।

ଯେଉଁ ଦେବ ଅସୁର ଓ ମୁନିମାନଙ୍କର ହୃଦୟାକାଶରେ ସନାତନ ବ୍ରହ୍ମ ରୂପରେ ଅବସ୍ଥାନ କରନ୍ତି, ଯେଉଁ ଦେବ ମୁନିଗଣଙ୍କର ଗୁହ୍ୟ ଓ ଦୁର୍ବିଜ୍ଞେୟ, ( ୨୯ ) ସେହି ଭଗବାନ ସମସ୍ତ ପଦାର୍ଥର ସୃଷ୍ଟିକର୍ତ୍ତା, ସର୍ବ-ଭୂତରେ ଆତ୍ମା, ସର୍ବଦର୍ଶୀ, ସର୍ବଗାମୀ, ସର୍ବଜ୍ଞ ଓ ସର୍ବତୋମୁଖ ଅଟନ୍ତି । ସେ ଦେହକର୍ତ୍ତା ଅର୍ଥାତ୍ ଯଜ୍ଞାଦି ସ୍ୱରୂପ ଦେହଭୃତ୍ ଅର୍ଥାତ୍ ଅନ୍ନାଦି ରୂପରେ ଦେହ ପୋଷକ; ଦେହୀ ଅର୍ଥାତ ଜୀବ, ଦେହଭୁକ ଅର୍ଥାତ ଦେହ ସଂହାର କର୍ତ୍ତା । ଦେହିକୁଳର ଗତି, ଲିଙ୍ଗ, ଶରୀର, ପ୍ରାଣର ସୃଷ୍ଟିକର୍ତ୍ତା ଓ ପୋଷଣକର୍ତ୍ତା । ପ୍ରାଣୀ ପ୍ରାଣଦାତା, ପ୍ରାଣୀ କୁଳର ଗତି ।୩୧ । ଏହି ଈଶ୍ୱର ଦେବ ପୂଜକମାନଙ୍କର ଅଧ୍ୟାତ୍ମଗତି; ଆତ୍ମତତ୍ତ୍ୱଜ୍ଞ; ଧ୍ୟାନଶୀଳ ମୋକ୍ଷ କାମୀ ଯୋଗୀମାନଙ୍କର ପରମ ଗତି ସ୍ୱରୂପ ଅଟନ୍ତି । ୩୨ । ଏହି ପ୍ରଭୁ ପ୍ରାଣୀଗଣଙ୍କୁ କର୍ମାନୁସାରେ ଶୁଭାଶୁଭ ଗତି ପ୍ରଦାନ କରନ୍ତି । ଏହି ପ୍ରଭୁ ଜନ୍ତୁଗଣର ଜନ୍ମ ମୃତ୍ୟୁ ବିଧାନ କର୍ତ୍ତା । ଏହି ପ୍ରଭୁ ସିଦ୍ଧକାମ ମହର୍ଷିମାନଙ୍କୁ ଯେଉଁ ଗତିପ୍ରଦାନ କରନ୍ତି, ଏ ତତ୍ ସ୍ୱରୂପ ଅଟନ୍ତି । ୩୩ ।

ଏହି ପ୍ରଭୁ ପୃଥିବ୍ୟାଦି ଦେବଲୋକ ସହିତ ସମସ୍ତ ଭୁବନମାନଙ୍କୁ ଉତ୍ପାଦନପୂର୍ବକ ଅଷ୍ଟ ସଂଖ୍ୟକ ଅର୍ଥାତ୍ ପଞ୍ଚଭୂତ ଚନ୍ଦ୍ର ସୂର୍ଯ୍ୟ ଜନମାନ-ରୂପ ପୂଜ୍ୟ ଦେବ ମୂର୍ତ୍ତି ଦ୍ୱାରା ଧାରଣ କରିଅଛନ୍ତି ଏବଂ ପାଳନ କରୁଅଛନ୍ତି । ୩୪ । ସମସ୍ତ ପଦାର୍ଥ ଏହାଙ୍କଠାରୁ ଉତ୍ପନ୍ନ ହୋଇଅଛି ଓ ସମସ୍ତ ପଦାର୍ଥ ଏହାଙ୍କଠାରେ ଅବସ୍ଥିତ ହୋଇଅଛି ଏବଂ ଲୟ ପ୍ରାପ୍ତ ହୁଏ । ଏହି କେବଳ ଅଦିତୀୟ ସନାତନ ପୁରୁଷ । ୩୫ । ଏହି ପ୍ରଭୁ ସତ୍ୟକାମ ସଜ୍ଜନ ମାନଙ୍କର ଉତ୍କୃଷ୍ଟ ସତ୍ୟ ଲୋକ; ମୁକ୍ତ ଯୋଗୀମାନଙ୍କର ଅପବର୍ଗ ଅର୍ଥାତ୍ କ୍ରମ ମୁକ୍ତି ସ୍ଥାନ ବ୍ରହ୍ମଲୋକାଦି ସ୍ୱରୂପ ଓ ଅଧ୍ୟାତ୍ମବେତ୍ତାମାନଙ୍କର ମୁଖ୍ୟ ମୁକ୍ତି ଅର୍ଥାତ୍ କୈବଲ୍ୟ ସ୍ୱରୂପ । ୩୬ ।

ଏହି ପ୍ରଭୁ ଦେବତା, ଅସୁର ଓ ମନୁଷ୍ୟମାନଙ୍କ ପକ୍ଷରେ ସୁଖରେ ପରିଜ୍ଞେୟ ନୁହନ୍ତି; ଏହିକଥା ବିଚାର କରି ବ୍ରହ୍ମାଦି ସିଦ୍ଧଗଣ ଏହାଙ୍କୁ ଶାସ୍ତ୍ର

ମଧ୍ୟରେ ଗୁପ୍ତ ଭାବରେ ରଖିଅଛନ୍ତି । ୩୭ । ସେହି ହେତୁରୁ ଦେବତା ଅସୁର ଓ ମନୁଷ୍ୟଗଣ ଅଜ୍ଞାନ ଅନ୍ଧକାରରେ ମୁଗ୍‌ଧ ହୋଇ ଏହାଙ୍କର ଯଥାର୍ଥ ତତ୍ତ୍ୱ ଅବଗତ ହୋଇପାରୁ ନାହାନ୍ତି । ଅର୍ଥାତ୍ ଏହି ପ୍ରଭୁ ହୃଦୟରେ ଥିଲେ ସୁଦ୍ଧା କେହି ଏହାଙ୍କୁ ସ୍ପଷ୍ଟରୂପେ ଜାଣି ପାରୁ ନାହାନ୍ତି । ୩୮ । ଯେଉଁମାନେ ଭକ୍ତି ଯୋଗରେ ଏହାଙ୍କର ଶରଣାପନ୍ନ ହୁଅନ୍ତି, ଏହି ହୃଦୟଶାୟୀ ଅର୍ଥାତ୍ ଅନ୍ତର୍ଯାମୀ ପ୍ରଭୁ ସେହିମାନଙ୍କୁ ଆତ୍ମ ପ୍ରଦର୍ଶନ କରନ୍ତି । ୩୯ ।

ଯାହାଙ୍କୁ ଜାଣିଲେ ବାରମ୍ବାର ଜନ୍ମ ମରଣ ହୁଏ ନାହିଁ, ଯାହାଙ୍କୁ ଜାଣିଲେ ପରମ ଜ୍ଞାତବ୍ୟ ବିଷୟ କିଛି ଅବଶିଷ୍ଟ ରହେ ନାହିଁ, ( ୪୦ ) ପଣ୍ଡିତ ବ୍ୟକ୍ତି ଯାହାଙ୍କୁ ଲାଭ କରିଉତ୍ତାରୁ ଅନ୍ୟ କିଛି ପଦାର୍ଥକୁ ଲାଭର ଉପଯୁକ୍ତ ବୋଲି ଜ୍ଞାନ କରନ୍ତି ନାହିଁ, ଗୁଣତତ୍ତ୍ୱଜ୍ଞ ଅଧିକ ସୂକ୍ଷ୍ମ ଜ୍ଞାମ ସାଂଖ୍ୟଶାସ୍ତ୍ର ବିଶାରଦ ସାଂଖ୍ୟମୁନିମାନେ ଯେଉଁ ସୂକ୍ଷ୍ମ ପଦାର୍ଥ ପ୍ରଭୁଙ୍କୁ ଜାଣି ସମସ୍ତ ବନ୍ଧନରୁ ମୁକ୍ତ ହୁଅନ୍ତି, ( ୪୨ ) ବେଦଜ୍ଞ ପଣ୍ଡିତଗଣ ପ୍ରାଣାୟାମ କରି ଓଁକାର ରୂପ ରଥରେ ଆରୋହଣପୂର୍ବକ ବେଦାନ୍ତ ପ୍ରତିଷ୍ଠିତ ଯେଉଁ ପ୍ରଭୁଙ୍କୁ ନିରନ୍ତର ଜପକରନ୍ତି ଓ ଯେଉଁ ମହେଶ୍ୱରଙ୍କଠାରେ ପ୍ରବେଶ କରନ୍ତି, ସେହି ଏହି ପ୍ରଭୁ ଦେବଯାନମାନଙ୍କର ଆଦ୍ୟନ୍ତ ରୂପଦ୍ୱାର ସ୍ୱରୂପ । । ୪୦ । ପିତୃଯାନମାନଙ୍କର ଚନ୍ଦ୍ର ସ୍ୱରୂପ ବୋଲି ଖ୍ୟାତ; ଏ କାଷ୍ଠା ଦିକ୍, ସମ୍ବତ୍ସର, ଯୁଗ, ଇନ୍ଦ୍ର ପଦ, ସାର୍ବଭୌମ ପଦ, ଦକ୍ଷିଣାୟନ ଓ ଉତ୍ତରାୟଣ ।

ପୂର୍ବେ ପ୍ରଜାପତି ପ୍ରଜାସୃଷ୍ଟି ନିମିତ୍ତ ଏହି ନୀଳଲୋହିତଙ୍କୁ ନାନାବିଧ ସ୍ତବମାନଙ୍କ ଦ୍ୱାରା ଆରାଧନା କରି ଏହାଙ୍କ ନିକଟରେ ବରପ୍ରାର୍ଥୀ ହୋଇଥିଲେ । ଋଗ୍‌ବେଦବେତ୍ତାମାନେ ଋଗ୍‌ବେଦ ଦ୍ୱାରା ଏହାଙ୍କ ମହିମା କୀର୍ତ୍ତନ କରନ୍ତି; ଋତ୍ୱିକ୍ ଗଣ ଏହି ଯଜୁର୍ବେଦମୟ ମହେଶ୍ୱରଙ୍କ ଉଦ୍ଦେଶ୍ୟରେ ଆହୁତି ପ୍ରଦାନ କରନ୍ତି; ବିଶୁଦ୍ଧ ବୁଦ୍ଧି ସାମ ବେଦଜ୍ଞମାନେ ଏହାଙ୍କ ଉଦ୍ଦେଶ୍ୟରେ ସାମବେଦ ଗାନକରନ୍ତି; ଅଥର୍ବ ବେଦଜ୍ଞ ବ୍ରାହ୍ମଣଗଣ ଅଥର୍ବ ବେଦ ଦ୍ୱାରା ଏହି ସତ୍ୟ ସ୍ୱରୂପ ପରଂବ୍ରହ୍ମଙ୍କୁ ସ୍ତବକରନ୍ତି । ଏ ଯଜ୍ଞର ଆଦି

କାରଣ ଓ ଈଶ୍ୱର । ୪୯ । ଦିବସ ରଜନୀ ଏହାଙ୍କ ଚକ୍ଷୁ ଓ କର୍ଣ୍ଣ ସ୍ୱରୂପ । ପକ୍ଷ ଓ ମାସ ଏହାଙ୍କର ମସ୍ତକ ଓ ବାହୁ ସ୍ୱରୂପ, ଋତୁ ଏହାଙ୍କର ବୀର୍ଯ୍ୟ, ସମ୍ବତ୍ସର ଗୁହ୍ୟ, ଉରୁ ଓ ପାଦ ସ୍ୱରୂପ ଏବଂ ତପ ଧୈର୍ଯ୍ୟ ସ୍ୱରୂପ । ୫୦ ।

ଏ ମୃତ୍ୟୁ, ଯମ, ଅଗ୍ନି, କାଳ, ସଂହାର କର୍ତ୍ତା, କାଳର ଉତ୍କୃଷ୍ଟ କାରଣ ଏବଂ ସ୍ୱୟଂ ସନାତନ କାଳ । ୫୧ । ଚନ୍ଦ୍ର, ଆଦିତ୍ୟ, ନକ୍ଷତ୍ର, ଗ୍ରହ, ବାୟୁ, ଧ୍ରୁବ, ସପ୍ତର୍ଷି, ସପ୍ତଭୁବନ । ୫୨ । ପ୍ରକୃତି, ମହତ୍ତତ୍ତ୍ୱ, ଅହଂକାର ଓ ପୃଥ୍ୱୀ ସ୍ୱରୂପ; ବ୍ରହ୍ମାଦି ତୃଣ ପର୍ଯ୍ୟନ୍ତ ସମସ୍ତେ ଏହାଙ୍କଠାରେ ଅବସ୍ଥିତ; ଭୂମି ପ୍ରଭୃତି ଅଷ୍ଟ ପ୍ରକୃତି ଓ ପ୍ରକୃତିମାନଙ୍କଠାରୁ ଶ୍ରେଷ୍ଠ ଜୀବ ଏହାଙ୍କର ଅଂଶ ରୂପେ ବିଦ୍ୟମାନ । ଏ ଶାଶ୍ୱତ ପରମାନନ୍ଦ ସ୍ୱରୂପ; ଏ ବିରକ୍ତ ସାଧୁମାନଙ୍କର ପ୍ରଧାନ ଗତି ଓ ଉତ୍କୃଷ୍ଟ ଭାବ । ଏ ଉଦ୍‌ବେଗଶୂନ୍ୟ ଏବଂ ସନାତନ ବ୍ରହ୍ମ ଏବଂ ଶାସ୍ତ୍ର ବେଦବେଦାଙ୍ଗ ପଣ୍ଡିତମାନଙ୍କର ଉତ୍କୃଷ୍ଟ ଧ୍ୟାନର ସ୍ଥାନ । ଏ ପରାକାଷ୍ଠା, ଶ୍ରେଷ୍ଠକଳା, ପରମ ସିଦ୍ଧି, ପରମ ଗତି, ଶାନ୍ତି, ସୁଖ, ସନ୍ତୋଷ, ବେଦ ଓ ସ୍ମୃତି ସ୍ୱରୂପ । ଯୋଗୀଗଣ ଏହାଙ୍କୁ ପ୍ରାପ୍ତ ହେଲାରୁ କୃତକୃତ୍ୟ ହେଲୁ ବୋଲି ଜ୍ଞାନ କରନ୍ତି । ଏହାଙ୍କୁ ପ୍ରାପ୍ତହେଲେ ସେମାନେ ପୁନର୍ଜନ୍ମ ଲାଭ କରନ୍ତି ନାହିଁ । ଆମ୍ଭେ ଏହାଙ୍କ ଦର୍ଶନ ପ୍ରାପ୍ତ ହୋଇ କୃତାର୍ଥ ହେଲୁ ।

ହେ ଦେବାଦିଦେବ ମହାଦେବ ! ଯଜ୍ଞଶୀଳ ବ୍ୟକ୍ତିମାନେ ଭୂରି ଦକ୍ଷିଣ ଯଜ୍ଞର ଅନୁଷ୍ଠାନ କରି ଯେଉଁ ସ୍ୱର୍ଗାଦି ଲୋକ ଲାଭ କରନ୍ତି, ତୁମ୍ଭେ ସେହି ସ୍ୱର୍ଗାଦି ଲୋକ । ଶାନ୍ତି, ଯୋଗ, ଜପ ଓ କଠୋର ନିୟମାନୁଷ୍ଠାନ ନିରତ ତାପସଗଣ ଯେଉଁ ନକ୍ଷତ୍ରଲୋକ ଲାଭ କରନ୍ତି, ତୁମ୍ଭେ ସେହି ନକ୍ଷତ୍ର-ଲୋକ । ୭୧ । ହେ ସନାତନ ! କର୍ମତ୍ୟାଗୀ ସନ୍ନ୍ୟାସୀଗଣ ଯେଉଁ ବ୍ରହ୍ମଲୋକ ପ୍ରାପ୍ତ ହୁଅନ୍ତି ତୁମ୍ଭେ ସେହି ବ୍ରହ୍ମଲୋକ । ୭୨ ।

ହେ ସନାତନ ! ବୀତସ୍ପୃହ ମୁମୁକ୍ଷୁ ବ୍ୟକ୍ତିଗଣ ଯେଉଁ ଅନିବୃତ୍ତିରୂପ ମୋକ୍ଷଲାଭ କରନ୍ତି; ତୁମ୍ଭେ ସେହି ମୋକ୍ଷ ଏବଂ ତତ୍ତ୍ୱଜ୍ଞ ଗଣ ଯେଉଁ ନିର୍ବାଣ ମୁକ୍ତିପ୍ରାପ୍ତ ହୁଅନ୍ତି, ତୁମ୍ଭେ ସେହି ନିର୍ବାଣ ଅର୍ଥାତ୍ ମୁଖ୍ୟ ମୁକ୍ତି । ୭୪ । ଏହି ପାଞ୍ଚପ୍ରକାର ଗତି ବେଦ ଶାସ୍ତ୍ର ପୁରାଣରେ ଉକ୍ତ ହୋଇ

ଅଛ; ତୁମ୍ଭେ ପ୍ରସନ୍ନ ହେଲେ ଏହି ପାଞ୍ଚପ୍ରକାର ଗତି ଲାଭ ହୁଏ । ଅନ୍ୟଥା କଦାପି ଲାଭ କରାଯାଏ ନାହିଁ । ୭୫ । ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର, ବିଶ୍ୱେଦେବ ଏବଂ ମହର୍ଷିଗଣ ତୁମ୍ଭର ମାହାତ୍ମ୍ୟ ଜାଣିପାରନ୍ତି ନାହିଁ ।

ତପୋନିଧି ତଣ୍ଡି ଏହିପରି ଈଶାନଙ୍କୁ ସ୍ତବକଲେ ଓ ବେଦଗାନ କଲେ । ୭୬ । ଉପମନ୍ୟୁ କହିଲେ, ବ୍ରହ୍ମା, ଇନ୍ଦ୍ର, ବିଷ୍ଣୁ, ବିଶ୍ୱେଦେବ-ଗଣ ଓ ମହର୍ଷିଗଣ ତୁମ୍ଭଙ୍କୁ ଜାଣନ୍ତି ନାହିଁ । ବ୍ରହ୍ମବାଦୀ ତଣ୍ଡି ଏହିପରି ମହାଦେବଙ୍କୁ ସ୍ତବ କଲା ଉତ୍ତାରୁ ପ୍ରଭୁ ଭଗବାନ୍ ମହାଦେବ ଓ ଭଗବତୀ ପାର୍ବତୀ ତାହାଙ୍କୁ କହିଲେ, "ଆମ୍ଭେ ତୁଷ୍ଟ ହେଲୁଁ" । ୭୭ । ଭଗବାନ କହିଲେ, ହେ ବତ୍ସ ! ଦ୍ୱିଜ ଶ୍ରେଷ୍ଠ ! ଆମ୍ଭ ପ୍ରସାଦ ବଳରେ ତୁମ୍ଭର ଗୋଟିଏ ପୁତ୍ର ହେବ, ସଂଶୟ ନାହିଁ । ସେ ଅକ୍ଷୟ, ଅବ୍ୟୟ, ଯଶସ୍ୱୀ, ଦିବ୍ୟଜ୍ଞାନ ଯୁକ୍ତ, ବେଦର ସୂତ୍ରକର୍ତ୍ତା ଓ ଦୁଃଖ ଶୂନ୍ୟ ହେବ; ଋଷିଗଣ ତାହା ନିକଟକୁ ଆଗମନ କରିବେ । ୭୮ ।

ସଂପ୍ରତି ତୁମ୍ଭର ଯାହା ଅଭିଳଷିତ ହୁଏ ତାହା ପ୍ରାର୍ଥନା କର, ଆମ୍ଭେ ପ୍ରଦାନ କରିବା । ତେତେବେଳେ ତଣ୍ଡି ମୁନି କୃତାଞ୍ଜଳି ପୁଟରେ କହିଲେ, ହେ ଭଗବାନ୍ ! ତୁମ୍ଭଠାରେ ମୋହର ଦୃଢ଼ ଭକ୍ତି ହେଉ । ୭୯ ।

ଉପମନ୍ୟୁ କହିଲେ, ସୁରର୍ଷିଗଣ ବନ୍ଦନୀୟ ବିବୁଧଗଣଙ୍କଦ୍ୱାରା ସ୍ତୂୟମାନ ପ୍ରଭୁ ତାହାଙ୍କୁ ଏହି ବରସମୂହ ପ୍ରଦାନପୂର୍ବକ ତତ୍‌କ୍ଷଣାତ୍ ଅନ୍ତର୍ହିତ ହେଲେ । ୮୦ । ହେ ଯାଦବ ଶ୍ରେଷ୍ଠ ! ଭଗବାନ୍ ଅନୁଚର-ବର୍ଗଙ୍କ ସହିତ ଅନ୍ତର୍ହିତ ହେଲା ଉତ୍ତାରେ ତଣ୍ଡି ଋଷି ଆମ୍ଭ ଆଶ୍ରମକୁ ଆସି ଆମ୍ଭ ନିକଟରେ ଏହି ସମସ୍ତ ବୃତ୍ତାନ୍ତ ଆଦ୍ୟପ୍ରାନ୍ତ କହିଥିଲେ । ୮୧ । ହେ ମାନବ ଶ୍ରେଷ୍ଠ ! ପୂର୍ବେ ବ୍ରହ୍ମା ଦେବଗଣଙ୍କ ନିକଟରେ ମହାଦେବଙ୍କର ଯେଉଁ ଦଶ ସହସ୍ର ନାମ କୀର୍ତ୍ତନ କରିଥିଲେ ଏବଂ ଶିବଶାସ୍ତ୍ରରେ ଯେଉଁ ଏକ ସହସ୍ର ନାମ କୀର୍ତ୍ତିତ ହୋଇଅଛି; ତାହା ସବୁ କୀର୍ତ୍ତନ କଲେ । ହେ ଅଚ୍ୟୁତ ! ସଂପ୍ରତି ଆମ୍ଭେ ତୁମ୍ଭ ନିକଟରେ ତଣ୍ଡି ମୁନିଙ୍କ କୀର୍ତ୍ତିତ ଭଗବାନଙ୍କର ଗୋପନୀୟ ଏକ ସହସ୍ର ନାମ କୀର୍ତ୍ତନ କରିବୁଁ, ଶ୍ରବଣ କର । ୮୨ ।

ଷୋଡ଼ଶ ଅଧ୍ୟାୟ ସମାପ୍ତ । ୧୬ ।



# ସପ୍ତଦଶ ଅଧ୍ୟାୟ

ବାସୁଦେବ କହିଲେ, ହେ ତାତ ଯୁଧିଷ୍ଠିର ! ତତ୍ପରେ ମହାତ୍ମା ଉପମନ୍ୟୁ ଆମ୍ଭ ନିକଟରେ ମହାଦେବଙ୍କର ନାମ ସମୂହ କୀର୍ତ୍ତନ କରିବାକୁ ଅଭିଳାଷୀ ହୋଇ ଆମ୍ଭଙ୍କୁ କହିଲେ, ବାସୁଦେବ ! ତୁମ୍ଭେ ଶିବଙ୍କର ପ୍ରଧାନ ଭକ୍ତ । ଅତଏବ ଆମ୍ଭେ ତୁମ୍ଭ ସମକ୍ଷରେ ବେଦବେଦାଙ୍ଗ ନିର୍ଦ୍ଦିଷ୍ଟ, ମହର୍ଷି ତଣ୍ଡି ଓ ଅନ୍ୟାନ୍ୟ ତତ୍ତ୍ୱଦର୍ଶୀ ସାଧୁଗଣ କର୍ତ୍ତୃକ କଥିତ ସର୍ବାର୍ଥ ସାଧକ ଜଗଦ୍‌ବିଖ୍ୟାତ କେତେକ ନାମଦ୍ୱାରା କୃତାଞ୍ଜଳି ପୂର୍ବରେ ସେହି ସ୍ତବ ଯୋଗ୍ୟ ସର୍ବ ଭୂତର ହିତୈଷୀ, ତ୍ରିଲୋକ ବିଖ୍ୟାତ, ସନାତନ ପରଂବ୍ରହ୍ମ ସ୍ୱରୂପ ଶିବଙ୍କୁ ସ୍ତବ କରିବୁଁ ; ତୁମ୍ଭେ ସ୍ଥିରମନା ହୋଇ ଶ୍ରବଣ କର ।

ଲୋକେ ଅଣିମାଦି ଐଶ୍ୱର୍ଯ୍ୟଯୁକ୍ତ ହେଲେ ସୁଦ୍ଧା ସେହି ମହାଦେବଙ୍କର ମାହାତ୍ମ୍ୟକୁ ଶତବର୍ଷରେ ବିସ୍ତାରିତ ରୂପେ କୀର୍ତ୍ତନ କରିବାକୁ ସମର୍ଥ ହୁଅନ୍ତି ନାହିଁ । ଦେବଗଣ ଯେଉଁ ଶିବଙ୍କର ଆଦି, ମଧ୍ୟ ଓ ଅନ୍ତ ଜାଣିପାରନ୍ତି ନାହିଁ, ଅନ୍ୟ କେଉଁ ବ୍ୟକ୍ତି ତାହାଙ୍କର ମହିମାକୁ ବିସ୍ତାରିତ ରୂପେ କୀର୍ତ୍ତନ କରିବାକୁ ସମର୍ଥ ହେବ ? ଆମ୍ଭେ ତାହାଙ୍କ ପ୍ରସାଦ ବଳରେ ସାଧ୍ୟାନୁସାରେ ତାହାଙ୍କ ନାମ ସଂକ୍ଷେପରେ କୀର୍ତ୍ତନ କରିବୁଁ । ସେ ଅନୁଜ୍ଞା ପ୍ରଦାନ ନକଲେ କୌଣସି ବ୍ୟକ୍ତି ତାହାଙ୍କୁ ସ୍ତବ କରିବାକୁ ସମର୍ଥ ନୁହନ୍ତି । ୧୦ ।

ସେ ଯେତେବେଳେ ଆମ୍ଭଙ୍କୁ ଅନୁଜ୍ଞା ପ୍ରଦାନ କରନ୍ତି, ଆମ୍ଭେ ସେହି ସମୟରେ ତାଙ୍କୁ ସ୍ତବ କରୁଁ । ହେ କୃଷ୍ଣ ! ପୂର୍ବେ ପଦ୍ମଯୋନି, ହିରଣ୍ୟଗର୍ଭ, ଅନାଦି, ନିଧନ, ବିଶ୍ୱର ଆଦିକାରଣ, ବିଶ୍ୱରୂପୀ, ବରଦାତା ଶିବଙ୍କର ଯେଉଁ ଦଶ ସହସ୍ର ନାମ କୀର୍ତ୍ତନ କରିଥିଲେ, ଆମ୍ଭେ ତନ୍ମଧ୍ୟରୁ ଅତ୍ୟୁତ୍କୃଷ୍ଟ ଅଷ୍ଟୋତ୍ତର ସହସ୍ର ନାମ ସଂଗ୍ରହ କରି ଅଛୁଁ । ଘୃତ ଯେଉଁପରି ଦଧିର ସାର, ସୁବର୍ଣ୍ଣ ପର୍ବତର ସାର, ମଧୁ ପୁଷ୍ପର ସାର ଓ ମଣ୍ଡ ଘୃତର ସାର ସ୍ୱରୂପ ଅଟେ; ତଦ୍‌ବତ୍ ଏହି ଅଷ୍ଟୋତ୍ତର ସହସ୍ର ନାମ ବ୍ରହ୍ମୋକ୍ତ ଦଶ ସହସ୍ର ନାମର ସାର ସ୍ୱରୂପ ।

ଏହି ସମସ୍ତ ନାମ ଯତ୍ନ ପୂର୍ବକ ଶ୍ରବଣ ଓ ଧାରଣ କରିବାର ଅବଶ୍ୟ କର୍ତ୍ତବ୍ୟ କର୍ମ । ଏହି ସକଳ ନାମ ମଙ୍ଗଳଜନକ, ପୁଷ୍ଟିକର, ବିଘ୍ନ

ବିନାଶକ ଓ ପରମ ପବିତ୍ର ସମ୍ପାଦକ, ଶ୍ରଦ୍ଧାଯୁକ୍ତ ଭକ୍ତ ବ୍ୟକ୍ତିଙ୍କୁ ଏହା ପ୍ରଦାନ କରିବାର କର୍ତ୍ତବ୍ୟ । ଅଜିତେନ୍ଦ୍ରିୟ, ଶ୍ରଦ୍ଧାହୀନ, ନାସ୍ତିକମାନଙ୍କୁ ଏହା ପ୍ରଦାନ କରିବାର ବିଧେୟ ନୁହେଁ । ଏହା ଅତି ଉତ୍କୃଷ୍ଟ ଧ୍ୟାନ, ଯୋଗଧେୟ ବସ୍ତୁ, ଜପ୍ୟମନ୍ତ୍ର, ଜ୍ଞାନ ଓ ନିଗୂଢ଼ ବୋଲି ନିର୍ଦ୍ଦିଷ୍ଟ ହୋଇଥାଏ । ମନୁଷ୍ୟଗଣ ଅନ୍ତକାଳରେ ମଧ୍ୟ ଏହି ପାପ ବିନାଶନ ସଜ୍ଜାଦର ଫଳପ୍ରଦ, ମଙ୍ଗଳମୟ, ପରମାନନ୍ଦ ସ୍ୱରୂପ ନାମସମୂହ ଜ୍ଞାତହେଲେ ପରମ ଗତି ପ୍ରାପ୍ତ ହୁଅନ୍ତି । ପୂର୍ବେ ବ୍ରହ୍ମା ସର୍ବପ୍ରକାର ଦିବ୍ୟ ସ୍ତବ ମଧ୍ୟରେ ଏହି ସକଳ ନାମକୁ ଶ୍ରେଷ୍ଠ ବୋଲି କଳ୍ପନା କରିଅଛନ୍ତି; ସେହି ଦିନଠାରୁ ମହେଶ୍ୱରଙ୍କର ଏହି ଦେବ ପୂଜିତ ଉତ୍କୃଷ୍ଟ ସ୍ତବ ସ୍ତବରାଜ ନାମରେ ଭୁବନରେ ପ୍ରସିଦ୍ଧ ହୋଇଅଛି । ପ୍ରଥମରେ ଏହି ସ୍ତବ ବ୍ରହ୍ମଲୋକରୁ ସ୍ୱର୍ଗଲୋକକୁ ଆନୀତ ହୋଇଥିଲା; ତତ୍ପରେ ତଣ୍ଡିମୁନି ତାହା ପ୍ରାପ୍ତହୋଇ ସ୍ୱର୍ଗରୁ ପୃଥିବୀକୁ ଆଣି ପ୍ରଚାର କଲେ । ସେହି କାରଣରୁ ଏହା ତଣ୍ଡିଙ୍କ କୃତ ସ୍ତବ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି ।

ଯେଉଁ ଭୂତଭାବନ ଭଗବାନ ବେଦ ପ୍ରତିପାଦ୍ୟ ବ୍ରହ୍ମ ଯେ ସର୍ବାପେକ୍ଷା ତେଜସ୍ୱୀ ପବିତ୍ର, ଦ୍ୟୁତିଶାଳୀ, ପ୍ରଶାନ୍ତ, ଜିତେନ୍ଦ୍ରିୟ, ବୁଦ୍ଧିମାନ; ଯେ ଦେବତାମାନଙ୍କର ଦେବତା; ଋଷିଗଣଙ୍କର ଋଷି; ଶ୍ରେଷ୍ଠଯଜ୍ଞ, ଉତ୍କୃଷ୍ଟ କଲ୍ୟାଣ, ବ୍ରହ୍ମା ପ୍ରଭୃତିଙ୍କର ଧ୍ୟାନ ଯୋଗ୍ୟ ଓ କାରଣର କାରଣ ସ୍ୱରୂପ ଏବଂ ଯାହାଙ୍କଠାରୁ ଲୋକ ସମୂହର ବାରମ୍ବାର ସୃଷ୍ଟି ଓ ଧ୍ୱଂସ ହେଉଥାଏ; ହେ ନରଶାର୍ଦ୍ଦୂଳ ! ଆମ୍ଭେ ସମ୍ପ୍ରତି ସେହି ମହାଦେବଙ୍କର ଅଷ୍ଟୋତ୍ତର ସହସ୍ର ନାମ କୀର୍ତ୍ତନ କରୁଅଛୁଁ, ଶ୍ରବଣ କର । ଏହି ନାମ ପ୍ରଭାବରେ ଅନାୟାସରେ ସମସ୍ତ ଅଭୀଷ୍ଟ ପ୍ରାପ୍ତ ହେବ । ୩୦ ।

ସେ ସ୍ଥିର, ସ୍ଥାଣୁ, ପ୍ରଭୁ, ଭୀମ, ପ୍ରବର, ବରଦ, ବର, ସର୍ବାତ୍ମା, ସର୍ବବିଖ୍ୟାତ, ସର୍ବ, ସର୍ବକର, ଭବ, (୩୧) ଜଟାଧାରୀ, ବ୍ୟାଘ୍ର ଚର୍ମାବୃତ, ଶିଖଣ୍ଡୀ, ସର୍ବାଙ୍ଗ, ସର୍ବଭାବନ, ହର, ହରିଣାକ୍ଷ, ସର୍ବ ଭୂତହର, ପ୍ରଭୁ, (୩୨) ପ୍ରବୃତ୍ତି, ନିବୃତ୍ତି, ନିୟତ, ଶାଶ୍ୱତ, ଧ୍ରୁବ, ଶ୍ମଶାନବାସୀ, ଭଗବାନ, ଖେଚର, ଗୋଚର, ଅର୍ଦ୍ଦନ, (୩୩) ଅଭିବାଦ୍ୟ, ମହାକର୍ମା, ତପସ୍ୱୀ, ଭୂତ ଭାବନ, ଉନ୍ମତ୍ତବେଶ, ପ୍ରଚ୍ଛନ୍ନ, ସର୍ବଲୋକ, ପ୍ରଜାପତି, ( ୩୪ ) ମହାରୂପ,

ମହାକାୟ, ବୃଷରୂପ, ମହାଯଶା, ମହାତ୍ମା, ସର୍ବଭୂତାତ୍ମା, ବିଶ୍ୱରୂପ, ମହାହନୁ, (୩୫) ଲୋକପାଳ, ଅନ୍ତର୍ହିତାତ୍ମା, ପ୍ରସାଦ, ହୟଗର୍ଦ୍ଦଭ, ପବିତ୍ର, ମହାନ୍, ନିୟମ, ନିୟମାଶ୍ରିତ, । ୩୬ ।

ସର୍ବକର୍ମା, ସ୍ୱୟଂଭୂତ, ଆଦି, ଆଦିକର, ନିଧି, ସହସ୍ରାକ୍ଷ, ବିଶାଳାକ୍ଷ, ସୋମ, ନକ୍ଷତ୍ର ସାଧକ, ( ୩୭ ) ଚନ୍ଦ୍ର, ସୂର୍ଯ୍ୟ, ଶନି, କେତୁ, ଗ୍ରହ, ଅଗ୍ନି, ଅଗ୍ନି ନମସ୍କର୍ତ୍ତା, ମୃଗଧାରୀ, ଶରତ୍ୟାଗୀ, ଅନଘ, ( ୩୮ ) ମହାତପା, ଘୋରତପା, ଅଦୀନ, ଦୀନସାଧକ, ସମ୍ୱତ୍ସରକର, ମନ୍ତ୍ର, ପ୍ରମାଣ, ପରମ-ତପ, (୩୯) ଯୋଗୀ, ଯୋଜ୍ୟ, ମହାବୀଜ, ମହାରେତା, ମହାବଳ, ସୁବର୍ଣ୍ଣରେତା, ସର୍ବଜ୍ଞ, ସୁବୀଜ, ବୀଜବାହନ, (୪୦) ଦଶବାହୁ, ଅନିମିଷ, ନୀଳ-କଣ୍ଠ, ଉମାପତି, ବିଶ୍ୱରୂପ, ସ୍ୱୟଂ ଶ୍ରେଷ୍ଠ, ବଳବୀର, ଅବଳ, ଗଣ, (୪୧) ଗଣକର୍ତ୍ତା, ଗଣପତି, ଦିଗ୍‌ବାସା, କାମ, ମନ୍ତ୍ରବିତ୍, ପରମମନ୍ତ୍ର, ସର୍ବଭାବ-କର, ହର, (୪୨) କମଣ୍ଡଳୁଧର, ଧନ୍ୱୀ, ବାଣହସ୍ତ, କପାଳବାନ, ଅଶନୀ, ଶତଘ୍ନୀଧାରୀ, ଖଡ୍‌ଗୀ, ପଟ୍ଟିଶୀ, ଶୂଳୀ; ଦୃଜ୍ୟ, (୪୩) ସ୍ରୁବହସ୍ତ, ସ୍ୱରୂପ, ତେଜ, ତେଜସ୍କର, ଶିବ, ଉଷ୍ଣୀଷ ଧାରୀ, ସୁବକ୍ତ୍ର, ଉଦଗ୍ର, ବିନତ, (୪୪) ଦୀର୍ଘ, ହରିକେଶ, ସୁତୀର୍ଥ, କୃଷ୍ଣ, ଶୃଗାଳରୂପୀ, ସିଦ୍ଧାର୍ଥ, ମୁଣ୍ଡ, ସର୍ବଶୁଭ-ଙ୍କର, (୪୫) ଅଜ, ବହୁରୂପ, ଗନ୍ଧଧାରୀ, କପର୍ଦ୍ଦୀ, ଉର୍ଦ୍ଧ୍ୱରେତା, ଉର୍ଦ୍ଧ୍ୱ ଲିଙ୍ଗ; ଉର୍ଦ୍ଧ୍ୱଶାୟୀ; ନଭଃସ୍ଥଳ, । ୪୬ ।

ତ୍ରିଜଟୀ, ଚୀରବାସା, ରୁଦ୍ର, ସେନାପତି, ବିଭୁ, ଅହଶ୍ଚର, ନକ୍ତଞ୍ଚର, ତିଗ୍ମମନ୍ୟୁ, ସୁବର୍ଚ୍ଚସ, ( ୪୭ ) ଗଜହା, ଦୈତ୍ୟହା, କାଳ, ଲୋକବିଧାତା, ଗୁଣାକର, ସିଂହଶାର୍ଦ୍ଦୁଳରୂପ, ଆର୍ଦ୍ର ଚର୍ମାମ୍ବରବୃତ, (୪୮) କାଳଯୋଗୀ, ମହାନାଦ, ସର୍ବକାମ, ଚତୁଷ୍ପଥ, ନିଶାଚର, ପ୍ରେତଚାରୀ, ଭୂତଚାରୀ, ମହେଶ୍ୱର, (୪୯) ବହୁଭୂତ, ବହୁଧର, ସ୍ୱର୍ଭାନୁ, ଅମିତ, ଗତି, ନୃତ୍ୟପ୍ରିୟ, ନିତ୍ୟନର୍ତ୍ତା, ନର୍ତ୍ତକ, ବିଶ୍ୱବନ୍ଧୁ, (୫୦) ଘୋରରୂପୀ, ମହାତପା, ମହାପାଶଧାରୀ, ପର୍ବତାରୁଢ଼, ନଭଃସ୍ୱରୂପ, ସହସ୍ରହସ୍ତ, ନିତ୍ୟ, ବିଜୟ, ବ୍ୟବସାୟ, ଅତନ୍ଦ୍ରିତ, (୫୧) ଅଧର୍ଷଣ, ଧର୍ଷଣାତ୍ମା, ଯଜ୍ଞହା, କାମନାଶକ, ଦକ୍ଷ-ଯାଗାପହାରୀ, ସୁସହ, ମଧ୍ୟମ, ( ୫୨ ) ତେଜୋପହାରୀ, ବଳହା,

ମୁଦ୍ଧତ, ଅର୍ଥମାଯୁ, ଅଜିତ, ଅବର, ଗମ୍ଭୀରଘୋଷ, ଗମ୍ଭୀର, ଖମ୍ଭୀର, ବଳବାହନ, । ୫୩ ।

ନ୍ୟଗ୍ରୋଧରୂପ, ନ୍ୟଗ୍ରୋଧ, ବୃକ୍ଷକର୍ଣ୍ଣସ୍ଥିତି, ବଭ୍ରୁ, ସୁତୀକ୍ଷ୍ଣଦଶନ, ମହାକାୟୁ, ମହାନନ, ( ୫୪ ) ବିଶ୍ୱକ୍ସେନ, ହରି, ଯଜ୍ଞ, ସଂଯୁଗାପୀଡ଼-ବାହନ, ତୀକ୍ଷ୍ଣ ତାପ, ହର୍ଯ୍ୟଶ୍ୱ, ସହାୟୁ, କର୍ମକାଳବିତ୍, ( ୫୫ ) ବିଷ୍ଣୁ, ପ୍ରସାଦିତ, ଯଜ୍ଞ, ସମୁଦ୍ର, ବଡ଼ବାମୁଖ, ବାୟୁ, ପ୍ରଶାନ୍ତାତ୍ମା, ହୁତାଶନ (୫୬) ଉଗ୍ରତେଜା, ମହାତେଜା, ରଣ ବିଶାରଦ, ବିଜୟ କାଳଜ୍ଞ, ଜ୍ୟୋତିଷ୍ମାନ୍ ଗଣଙ୍କର ଗତିପ୍ରକାଶକ ଶାସ୍ତ୍ର, ସିଦ୍ଧି, ସର୍ବବିଗ୍ରହ, ( ୫୭ ) ଶିଖୀ, ମୁଣ୍ଡୀ ଜଟୀ, ଜ୍ୱାଳୀ, ମୂର୍ତ୍ତିଜ, ମୂର୍ଦ୍ଧଗ, ବଳୀ, ବେଣବୀ, ପଣବୀ, ତାଳୀ, ଖଳୀ, କାଳକଣ୍ଟକଟ, । ୫୮ ।

ନକ୍ଷତ୍ର ବିଗ୍ରହ ମତି, ଗୁଣବୁଦ୍ଧି ଲୟ, ଅଗମ, ପ୍ରଜାପତି, ବିଶ୍ୱବାହୁ, ବିଭାଗ, ସର୍ବଗ, ସର୍ବତୋମୁଖ, ( ୫୯ ) ବିମୋଚନ, ସୁସରଣ, ହିରଣ୍ୟ କବଚୋଦ୍ଭବ, ମେଢ୍ରଜ, ବଳଚାରୀ, ମହୀଚାରୀ, ସ୍ରୁତ, ( ୬୦ ) ସର୍ବ ତୂର୍ଯ୍ୟ ନିନାଦୀ, ସର୍ବତୋଜ୍ୟ ପରିଗ୍ରହ, ବ୍ୟାଳରୂପ, ଗୁହାବାସୀ, ଗୁହ, ମାଳୀ, ତରଙ୍ଗବିତ୍, ( ୬୧ ) ତ୍ରିଦଶ, ତ୍ରିକାଳ ଧୃକ୍, କର୍ମ, ସର୍ବବନ୍ଧ ବିମୋଚନ, ଦୈତ୍ୟସଂହାରୀ, ଶତ୍ରୁନାଶନ, ( ୬୨) ସାଂଖ୍ୟ ପ୍ରସାଦ, ଦୁର୍ବାସା, ସର୍ବସାଧୁ ନିଷେବିତ, ପ୍ରସ୍କନ୍ଦନ, ବିଭାଗଜ୍ଞ, ଅତୁଲ୍ୟ, ଯଜ୍ଞଭାଗବିତ୍, । ୬୩ ।

ସର୍ବବାସ, ସର୍ବଚାରୀ, ଦୁର୍ବାସା, ବାସବ, ଅମର, ହିମାଳୟ ତୁଷୀ, ହେମକର, ନିଷ୍କର୍ମା, ସର୍ବ କର୍ମ ଫଳାଧାର, ସର୍ବାବଲମ୍ବନ ସ୍ୱରୂପ ଅର୍ଥାତ୍ ବ୍ରହ୍ମାଣ୍ଡଧାରୀ, (୬୪) ଲୋହିତାକ୍ଷ, ମହାକ୍ଷ, ବିଜୟାକ୍ଷ, ବିଶାରଦ, ସଂଗ୍ରହ, ନିଗ୍ରହ, କର୍ତ୍ତା, ସର୍ପଚୀର ନିବାସନ । ୬୫ ।

ମୁଖ୍ୟ, ଅମୁଖ୍ୟ, ଦେହ, କାହଳ, ସର୍ବକାମଦ, ସର୍ବକାଳ ପ୍ରସାଦ; ସୁବଳ, ବଳରୂପ ଧୃକ୍, ( ୬୬ ) ସର୍ବକାମବର, ସର୍ବଦ, ସର୍ବତୋମୁଖ, ଆକାଶ, ନିର୍ବିରୂପ, ନିପାତି, ଅବଶ, ଖଗ, ( ୬୭ ) ରୌଦ୍ରରୂପ, ସୂର୍ଯ୍ୟ-ରଶ୍ମି, ବ୍ରହ୍ମରଶ୍ମି, ସୁବର୍ଚ୍ଚସୀ, ବସୁବେଗ, ମହାବେଗ, ମନୋବେଗ,

ନିଶାଚର, (୬୮) ସର୍ବବାସୀ, ଶ୍ରିୟାବାସୀ, ଉପଦେଶ କର, ଅକର, ମୁନି, ଆତ୍ମନିରାଲୋକ, ସମ୍ଭଗ୍ନ, ସହସ୍ରଦ, ( ୬୯ ) ପକ୍ଷୀ ଅର୍ଥାତ୍ ଗରୁତ୍ମାନ, ପକ୍ଷରୂପ, ଅତିଦୀପ୍ତ, ବିଂଶପତି, ଉନ୍ମାଦ, ଦମନ, କାମ, ଅଶ୍ୱତ୍ଥ, ଅର୍ଥକର, ଯଶଃ, ( ୭୦ ) ବାମଦେବ, ବାମ, ପ୍ରାକ, ଦକ୍ଷିଣ, ବାମନ, ସିଦ୍ଧଯୋଗୀ, ମହର୍ଷି, ସିଦ୍ଧାର୍ଥ, ସିଦ୍ଧ ସାଧକ, ( ୭୧ ) ଭିକ୍ଷୁ, ଭିକ୍ଷୁରୂପ ଅର୍ଥାତ୍ ହଂସ, ପରମ ହଂସ, ବିପଣ ଅର୍ଥାତ ନିର୍ବ୍ୟବହାର, ମୃଦୁ ଅର୍ଥାତ ସର୍ବଭୂତର ଅଭୟଦାତା, ଅବ୍ୟୟ ଅର୍ଥାତ୍ ନିର୍ବିକାର, ମହାସେନ, ବିଶାଖ, ଷଷ୍ଟି ଭାଗ, ଗୋପତି, (୭୨) ବଜ୍ରହସ୍ତ, ବିଷ୍କମ୍ଭୀ, ଚମୁସ୍ତମ୍ଭନ, ବୃତ୍ତାବୃତ୍ତ କର, ତାଳ, ମଧୁ, ମଧୁକଲୋଚନ, (୭୩) ବାଚସ୍ପତ୍ୟ, ବାଜସଦ, ଯଜୁର୍ବେଦ, ଆଶ୍ରମ-ପୂଜିତ, ବ୍ରହ୍ମଗୃହ, ଲୋକାଗୃହ, ସର୍ବଗୃହ, ବିଗୃହବତ୍, ( ୭୪ ) ଈଶାନ, ଈଶ୍ୱରକାଳ, ନିଶାଗୃହ, ପିନାକବାନ, ନିମିତ୍ତ, ନିମିତ୍ତସ୍ଥ, ନନ୍ଦ, ନନ୍ଦକର, ହରି, । ୭୫ ।

ନନ୍ଦୀଶ୍ୱର, ନନ୍ଦୀ, ନନ୍ଦନ, ନନ୍ଦବର୍ଦ୍ଧନ, ଭଗହାରୀ, ନିହନ୍ତା, କାଳ, ବ୍ରହ୍ମା, ପିତାମହ, (୭୬) ଚତୁର୍ମୁଖ, ମହାଲିଙ୍ଗ, ଚାରୁଲିଙ୍ଗ, ଲିଙ୍ଗାଧ୍ୟକ୍ଷ, ସୁରାଧ୍ୟକ୍ଷ, ଯୋଗାଧ୍ୟକ୍ଷ, ଯୁଗାବହ, (୭୭) ବୀଜାଧ୍ୟକ୍ଷ, ବୀଜକର୍ତ୍ତା, ଅଧ୍ୟାତ୍ମାନୁ-ଗତ, ବଳ, ଇତିହାସ, ସଂକଳ୍ପ, ଗୌତମ, ନିଶାକର,(୭୮) ଦମ୍ଭ, ଅଦମ୍ଭ, ବୈଦମ୍ଭ, ବଶ୍ୟ, ବଶକର, କଳି, ଲୋକକର୍ତ୍ତା, ପଶୁପତି, ମହାକର୍ତ୍ତା, ଅନୌଷଧ, (୭୯) ଅକ୍ଷର, ପରମବ୍ରହ୍ମ, ବଳବତ୍, ଶକ୍ର, ନୀତି, ଅନୀତି, ଶୁଦ୍ଧାତ୍ମା, ଶୁଦ୍ଧ, ମାନ୍ୟ, ଗତାଗତ, (୮୦) ବହୁପ୍ରସାଦ, ସୁସ୍ୱପ୍ନ, ଦର୍ପଣ, ଅମିତ୍ରଜିତ୍, ବେଦକାର, ମନ୍ତ୍ରକାର, ବିଦ୍ୱାନ, ସମର ମର୍ଦ୍ଦନ, (୮୧) ମହାମେଘ ନିବାସୀ, ମହାଘୋର, ବଶୀ, ସଂହାରକର୍ତ୍ତା, ଅଗ୍ନିଜ୍ୱାଳ, ମହାଜ୍ୱାଳ, ଅତିଧୂମ୍ର, ହୁତ, ହବ, । ୮୨ ।

ବୃଷଣ, ଶଙ୍କର, ନିତ୍ୟ, ବର୍ଚ୍ଚସ୍ୱୀ, ଧୂମକେତନ, ନୀଳ, ଅଙ୍ଗ-ଲୁବଧ, ଶୋଭନ, ନିରବଗ୍ରହ,(୮୩) ସ୍ୱସ୍ତିଦ, ସ୍ୱସ୍ତିଭାବ, ଭାଗୀ, ଭାଗକର, ଲଘୁ, ଉତ୍ସଙ୍ଗ, ମହାଙ୍ଗ, ମହାଗର୍ଭ ପରାୟଣ, (୮୪) କୃଷ୍ଣବର୍ଣ୍ଣ, ସୁବର୍ଣ୍ଣ, ସର୍ବଦେହୀ ରୂପ, ମହାପାଦ, ମହାହସ୍ତ, ମହାକାୟ, ମହାଯଶା, (୮୫)

ମହାମୂର୍ଦ୍ଧା, ମହାମାତ୍ରା, ମହାନେତ୍ର, ନିଶାଳୟ, ମହାନ୍ତକ, ମହାକର୍ଣ୍ଣ, ମହୌଷ୍ଠ, ମହାମନୁ,(୮୬) ମହାନାମା, ମହାକମ୍ବୁ, ମହାଗ୍ରୀବ, ଶ୍ମଶାନଭାକ, ମହାବକ୍ଷା, ମହୋରସ୍କ, ଅନ୍ତରାତ୍ମା, ମୃଗାଳୟ, । ୮୭ ।

ଲମ୍ବନ, ଲମ୍ବିତୋଷ୍ଠ, ମହାମାୟ, ପୟୋନିଧି, ମହାଦନ୍ତ, ମହାଦଂଷ୍ଟ୍ର, ମହାଜିହ୍ୱ, ମହାମୁଖ, (୮୮) ମହାନଖ, ମହାରୋମା, ମହାକେଶ, ମହାଜଟ, ପ୍ରସନ୍ନ, ପ୍ରସାଦ, ପ୍ରତ୍ୟୟ, ଗିରିସାଧନ, (୮୯) ସ୍ନେହନ, ଅସ୍ନେହନ, ଅଜିତ, ମହାମୁନି, ବୃକ୍ଷାକାର, ବୃକ୍ଷକେତୁ, ଅନଳବାୟୁବାହାନ, (୯୦) ଗଣ୍ଡଲୀ, ମେରୁଧାମା, ଦେବାଧିପତି, ଅଥର୍ବ ଶୀର୍ଷ, ସାମାସ୍ୟ, ଋକ୍ ସହସ୍ରା ମିତେକ୍ଷଣ, (୯୧) ଯଜୁଃ, ପାଦଭୁଜ, ଗୁହ୍ୟ, ପ୍ରକାଶ, ଜଙ୍ଗମ, ଅମୋଘାର୍ଥ, ପ୍ରସାଦ, ଅଭିଗମ୍ୟ, ସୁଦର୍ଶନ, (୯୨) ଉପକାର, ପ୍ରିୟ, ସର୍ବ, କନକ, କାଞ୍ଚନଚ୍ଛବି, ନାଭି, ନନ୍ଦିକର, ଭାବ, ପୁଷ୍କରସ୍ଥପତି, ସ୍ଥିର, (୯୩) ଦ୍ୱାଦଶ, ତ୍ରାସନ, ଆଦ୍ୟ, ଯଜ୍ଞ, ଯଜ୍ଞ ସମାହିତ, ନକ୍ତ, କଳି, କାଳ, ମକର, କାଳପୂଜିତ, । ୯୪ ।

ସଗଣ, ଗଣକାର, ଭୂତବାହନ ସାରଥି, ଭସ୍ମଶୟ, ଭସ୍ମଗୋପ୍ତା, ଭସ୍ମଭୂତ, କଳ୍ପତରୁ, ଗଣ, (୯୫) ଲୋକପାଳ, ଅଲୋକ, ମହାତ୍ମା, ସର୍ବପୂଜିତ, ଶୁକ୍ଳ, ତ୍ରିଶୁକ୍ଳ, ସମ୍ପନ୍ନ, ଶୁଚିଭୂତ, ନିଷେବିତ, (୯୬) ଆଶ୍ରମସ୍ଥ, କ୍ରିୟାବସ୍ଥ, ବିଶ୍ୱକର୍ମ ମତି, ବର, ବିଶାଳାକ୍ଷ, ବିଶାଳଶାଖ, ତାମ୍ରୌଷ୍ଠ, ଅମ୍ବୁଜାଳ ଅର୍ଥାତ ସାଗର, ସୁନିଶ୍ଚଳ, (୯୭) କପିଳ, କପିଶ, ଶୁକ୍ଳ, ଆୟୁ, ପର, ଅପର, ଗନ୍ଧର୍ବ, ଅଦିତି, ତାର୍କ୍ଷ୍ୟ, ସୁବିଜ୍ଞେୟ, ସୁଶାରଦ, (୯୮) ପରଶ୍ୱଧାୟୁଧ, ଦେବ, ଅନୁକାରୀ, ସୁବାନ୍ଧବ, ତମ୍ବୁବୀଣ, ମହାକ୍ରୋଧ, ଊର୍ଦ୍ଧ୍ୱରେତା, ଜଳେଶୟ, (୯୯) ଉଗ୍ର, ବଂଶକର, ବଂଶ, ବଂଶନାଦ, ଅନିନ୍ଦିତ, ସର୍ବାଙ୍ଗରୂପ, ମାୟାବୀ, ସୁହୃଦ, ଅନିଳ, ଅନଳ, । ୧୦୦ ।

ବନ୍ଧନ, ବନ୍ଧକର୍ତ୍ତା, ସୁବନ୍ଧନ, ବିମୋଚନ, ସଯଜ୍ଞାରି, ସକାମାରି, ମହାଦଂଷ୍ଟ୍ର, ମହାୟୁଧ, (୧୦୧) ବହୁଧାନିନ୍ଦିତ, ଶର୍ବ, ଶଙ୍କର, ଶଂକର, ଅଧନ, ଅମରେଶ, ମହାଦେବ, ବିଶ୍ୱଦେବ, ସୁରାରିହା, (୧୦୨) ଅହି, ବୁଧ, ଅନିଲାଭ, ଚେକିତାନ, ଅଜୈକପାଦ୍, କପାଳୀ, ତ୍ରିଶଙ୍କୁ, ଅଜିତ,

ଶିବ, (୧୦୩) ଧନ୍ୱନ୍ତରୀ, ଧୂମକେତୁ, ସ୍କନ୍ଦ, ବୈଶ୍ରବଣ, ଧାତା, ଶକ୍ର, ବିଷ୍ଣୁ, ମିତ୍ର, ତ୍ୱଷ୍ଟା, ଧ୍ରୁବ, ଧର, (୧୦୪) ପ୍ରଭାବ, ସର୍ବଗ, ବାୟୁ, ଅର୍ଯ୍ୟମା, ସବିତା, ରବି, ଉଶଙ୍କୁ ବିଧାତା, ମାନ୍ଧାତା, ଭୂତଭାବନ, (୧୦୫) ବିଭୁ, ବର୍ଣ୍ଣ, ବିଭାବୀ ସର୍ବକାମ ଗୁଣାବହ, ପଦ୍ମନାଭ, ମହାଗର୍ଭ, ଚନ୍ଦ୍ରବକ୍ତ୍ର, ଅନଳ, ଅନଳଃ, (୧୦୬) ବଳବାନ, ଉପଶାନ୍ତ, ପୁରାଣ, ପୁଣ୍ୟଚଞ୍ଚୁସ୍ୟ, କୁରୁକ୍ଷେତ୍ର, କର୍ତ୍ତା, କୁରୁକ୍ଷେତ୍ରବାସୀ, କୁରୁକ୍ଷେତ୍ରସ୍ୱରୂପ, ଗୁଣୌଷଧ, (୧୦୭) ସର୍ବାଶୟ୍ୟ, ଦର୍ଭାଗୃହୀ, ସର୍ବପ୍ରାଣିପତି, ଦେବ ଦେବ, ସୁଖାସକ୍ତ, ସତ୍କାରଗଣ, ଅସ୍ତ୍ରକାର୍ଯ୍ୟ, ସର୍ବରତ୍ନବେତ୍ତା, କୈଳାସଗିରିର ବାସୀ, ହିମାଳୟ ବାସୀ, କୂଳହାରୀ କୂଳକର୍ତ୍ତା, ବହୁବିଦ୍ୟ, ବହୁପ୍ରଦ, । ୧୦୯ ।

ବର୍ଣ୍ଣିକ୍, ବର୍ତ୍ତିକା, ବୃକ୍ଷ, ବକୁଳବୃକ୍ଷ, ଚନ୍ଦନବୃକ୍ଷ, ସର୍ବାଙ୍ଗଛଦକ, ସାରଗ୍ରୀବ, ମହାଜତ୍ରୁ, ମହୌଷଧ, (୧୧୦) ସିଦ୍ଧାର୍ଥକାରୀ, ସିଦ୍ଧାର୍ଥ, ଛନ୍ଦ ଓ ବ୍ୟାକରଣଙ୍କ, ସିଂହନାଦ, ସିଂହଦଂଷ୍ଟ୍ରା, ସିଂହଗତି, ସିଂହବାହନ, (୧୧୧) ପ୍ରଭାବାତ୍ମା, ଜଗଦ୍‌ଗ୍ରାସକର୍ତ୍ତା, ଭୋଜନ ପାତ୍ର, ଲୋକହିତକର, ପରିତ୍ରାତା, ସାରଙ୍ଗ ପକ୍ଷୀ, ନବହଂସ, କେତୁମାଳୀ, ଧର୍ମସ୍ଥାନ ପାଳକ, (୧୧୨) ସର୍ବ-ଭୂତାଶ୍ରୟ, ଭୂତପତି, ଅହୋରାତ୍ର, ଅନିନ୍ଦିତ, (୧୧୩) ସର୍ବଭୂତ ବହନକର୍ତ୍ତା, ସର୍ବଭୂତ ଗୃହସ୍ୱରୂପ, ସର୍ବସଂଯୋଗୀ, ଭବ, ଅମୋଘ, ସଂଯତ, ଅଶ୍ୱ, ଅନ୍ନଦାତା, ପ୍ରାଣଧାରଣ, (୧୧୪) ଧୃତିମାନ୍, ଦକ୍ଷ, ସତ୍କୃତ, ଯୁଗାଧିପ, ଇନ୍ଦ୍ରିୟ ପାଳକ, ଗୋପତି, ଗ୍ରାମ, ଗୋଚର୍ମବସନ, ଭକ୍ତ କ୍ଳେଶହାରୀ, (୧୧୫) ହିରଣ୍ୟବାହୁ, ଯୋଗୀ ଶରୀର ରକ୍ଷକ, ଶତ୍ରୁଘାତକ, ମହାହର୍ଷ, ଜିତକାମ, ଜିତେନ୍ଦ୍ରିୟ, । ୧୦୬ ।

ଗାନ୍ଧାର ସ୍ୱର, ସୁବାସ, ତପୋନୁଷ୍ଠାନ ନିରତ, ପ୍ରୀତ, ମନୁଷ୍ୟ-ରୂପୀ, ମହାଗୀତ, ମହାନୃତ୍ୟ, ଅପ୍‌ସରାଗଣ ସେବିତ, (୧୧୭) ମହାକେତୁ, ମହାଧାତା, ବହୁଶିଖରବାସୀ, ଚଞ୍ଚଳ, ଜ୍ଞାନଗୋଚର, ଉପଦେଶ, ସର୍ବଗନ୍ଧ ସୁଖାବହ, (୧୧୮) ତୋରଣ, ତାରଣ, ବାତ, ପରିଧି, ଖେଚରେଶ୍ୱର, ସଂଯୋଗ, ବର୍ଦ୍ଧନ, ବୃଦ୍ଧ, ଅତିବୃଦ୍ଧ, ଗୁଣାଧିକ, (୧୧୯) ନିତ୍ୟ, ଆତ୍ମା, ସହାୟ, ଦେବାସୁରପତି, ପତି, ଯୁକ୍ତ, ଯୁକ୍ତବାହୁ, ଦେବ ଦେବ, (୧୨୦) ଆଷାଢ଼, ସର୍ବସହିଷ୍ଣୁ, ଧ୍ରୁବ, ଅଚଞ୍ଚଳ, ହରିଣ,

ହର, ସ୍ୱର୍ଗଚ୍ୟୁତମାନଙ୍କ ଧର୍ମଦାତା, ବସୁଶ୍ରେଷ୍ଠ, ମହାପଥ, (୧୨୧) ବ୍ରହ୍ମ ଶିରୋହର୍ତ୍ତା, ବିଶେଷ ବିଗ୍ରହ କ୍ଷେମ, ସର୍ବଲକ୍ଷଣ ସମ୍ପନ୍ନ, ରଥାକ୍ଷ, ରଥ ଯୁକ୍ତ, ସର୍ବସଂସ୍ପର୍ଶୀ, ମହାବଳ, । ୧୨୨ ।

ବେଦ, ବେଦଭିନ୍ନ, ତୀର୍ଥଦେବ, ମହାରଥ, ନିର୍ଜୀବ, ଜୀବନୋପାୟ, ମନ୍ତ୍ର, ପ୍ରଶାନ୍ତ ଦୃଷ୍ଟି, ବହୁକର୍କଶ, (୧୨୩) ରତ୍ନର ଉତ୍ପତ୍ତିସ୍ଥାନ, ରଥାଙ୍ଗ, ମହାର୍ଣ୍ଣବ ପାନକର୍ତ୍ତା, ସର୍ବକାରଣ, ବିଶାଳ, ଅମୃତ, ବ୍ୟକ୍ତ, ଅବ୍ୟକ୍ତ, ତପୋନିଧି, (୧୨୪) ଆରୋହଣ, ପରମ ପଦାଭିଳାଷୀ, ଅଧିରୋହ ଅର୍ଥାତ୍ ପରମପଦାରୁଢ଼, (ଶୀଳଧାରୀ) ସଦାଚାରର ନିରତ, ମହାଯଶା, ସେନାଗଣର ପରାକ୍ରମ ସଦୃଶ, ମହାକଳ୍ପ, ଯୋଗ, ଯୋଗକର୍ତ୍ତା, ହରି, (୧୨୫) ଯୁଗରୂପ, ମହାରୂପ, ଗଜାସୁର ହନ୍ତା, ମୃତ୍ୟୁ, ଯଥାଯୋଗ୍ୟ ଦାନଶୀଳ, ପଣ୍ଡିତ, ଅଚଳସଦୃଶ, । ୧୨୬ ।

ବହୁମାଳା ଯୁକ୍ତ, ମହାମାଳାଯୁକ୍ତ, ଶଶୀ, ହର ସୁଲୋଚନ, ବିସ୍ତାର, ଲବଣ ରସ, କୂପ, ତ୍ରିଯୁଗ, ସଫଳୋଦୟ ଅର୍ଥାତ୍ ଫଳଦାତା, (୧୨୭) ତ୍ରିନେତ୍ର, ସ୍ଥିରବପୁଃ, ମଣିମୟ କୁଣ୍ଡଳଧର, ଜଟାଧାର, ଅନୁସ୍ୱାର, ବିସର୍ଗ, ସୁମୁଖ, ଶର, ସର୍ବାୟୁଧ, ସର୍ବସହ, (୧୨୮) ନିବେଦନ, ଅର୍ଥାତ୍ ନିଶ୍ଚୟ ଜ୍ଞାନଯୁକ୍ତ, ସୁଖାବିର୍ଭୂତ, ଗାନ୍ଧାର, ଦେବଶୋଭିବ, ମହାଗୃହ ସମ୍ପନ୍ନ, ସର୍ବ ସୌରଭମୟ, ଭଗବାନ୍ ସର୍ବ କାର୍ଯ୍ୟାଧାର, (୧୨୯) ବିଶ୍ୱମଥନ ସମର୍ଥ, ବହୁଳ, ବାୟୁ, ପୂର୍ଣ୍ଣ, ସର୍ବ ଲୋଚନ, ତଳ, ତାଳ, କରସ୍ଥଳୀ, ଦୃଢ଼ଶରୀର, ଶ୍ରେଷ୍ଠ, (୧୩୦) ଧ୍ୱଜଦ୍ୱ, ଛତ୍ର ବିଖ୍ୟାତ, ଲୋକ ସର୍ବାଶୟ ତ୍ରିବିକ୍ରମରୂପୀ, ମୁଣ୍ଡ ବିରୂପ, ବିକୃତ ଦଣ୍ଡି, କୁଣ୍ଡୀ ବିକାର ଯୁକ୍ତ, । ୧୩୧ ।

ହର୍ଯ୍ୟକ୍ଷ, କକୁଭ, ବଜ୍ରଧାରୀ, ଶତଜିହ୍ୱ, ସହସ୍ରପାତ୍, ସହସ୍ର ମସ୍ତକ, ଦେବେନ୍ଦ୍ର, ସର୍ବଦେବମୟ, ଗୁରୁ, (୧୩୨) ସହସ୍ର ବାହୁ, ସର୍ବାଙ୍ଗ, ସରଣ୍ୟ, ସର୍ବଲୋକ କର୍ତ୍ତା, ପବିତ୍ର, ବୀଜଶକ୍ତି, କୀଳକ-ସନ୍ନିରୂପ, କନିଷ୍ଠ, କୃଷ୍ଣପିଙ୍ଗଳବର୍ଣ୍ଣ, (୧୩୩) ବ୍ରହ୍ମଦଣ୍ଡ ନିର୍ମାଣକାରୀ, ଶତଘ୍ନୀ, ପାଶ ଶକ୍ତିଶାଳୀ, ବ୍ରହ୍ମା, ମହାଗର୍ଭ, ବେଦଗର୍ଭ, ଜଳୋଦ୍ଭବ,

ଅର୍ଥାତ୍, ଏକାର୍ଣ୍ଣବ ଜଳରେ ଆବିର୍ଭୂତ, (୧୩୪) ରଶ୍ମିମାନ୍, ବେଦକର୍ତ୍ତା, ବେଦାଧ୍ୟାୟୀ, ବେଦାର୍ଥବେତ୍ତା, ବ୍ରାହ୍ମଣ, ସର୍ବଜନାଶ୍ରୟ, ଅନନ୍ତରୂପ, ଅନେକାତ୍ମା, ତୀକ୍ଷ୍ଣତେଜା, ସ୍ୱୟମ୍ଭୂବ, । ୧୩୫ ।

ଉପାଧିଶୂନ୍ୟ, ପଶୁପତି, ବାୟୁବେଗ, ମନୋଜବ, ଚନ୍ଦନଲିପ୍ତ, ପଦ୍ମନାଳାଗ୍ର ସ୍ୱରୂପ, ସୁରଭିର ଉଦ୍ଧାରକର୍ତ୍ତା, ନରବତାର, (୧୩୬) କର୍ଣ୍ଣିକାର ମାଳାଧାରୀ, ନୀଳମଣିମୟ କଣ୍ଠଧାରୀ, ପିନାକପାଣି, ଉମାପତି, ଉମାକାନ୍ତ, ଜାହ୍ନବୀଧୃକ, ଉମାଧବ, (୧୩୭) ବର, ବରାହ, ବରଦ, ବରେଣ୍ୟ, ସୁମହାସ୍ୱନ, ମହାପ୍ରସାଦ, ଦମନ, ଶତ୍ରୁହନ୍ତା, ଶ୍ୱେତ ପିଙ୍ଗଳ-ବର୍ଣ୍ଣ, (୧୩୮) ସୁବର୍ଣ୍ଣ ବର୍ଣ୍ଣ, ପରମାତ୍ମା, ଯତାତ୍ମା, ପ୍ରକୃତିର ଆଶ୍ରୟ ସ୍ୱରୂପ, ପଞ୍ଚବକ୍ତ୍ର, ନିନେତ୍ର, ସାଧାରଣ ଧର୍ମସ୍ୱରୂପ, ଶ୍ରେଷ୍ଠ, (୧୩୯) ଚରାଚରାତ୍ମା, ସୂକ୍ଷ୍ମାତ୍ମା, ନିଷ୍କାମ, ଧର୍ମାଧିପତି, ସାଧ୍ୟର୍ଷି, ବସୁ, ଆଦିତ୍ୟ, ବିବସ୍ୱାନ୍, ସବିତା, ସୋମରସ, (୧୪୦) ବ୍ୟାସଦେବ, ସୃଷ୍ଟି, ସଂକ୍ଷେପ, ବିସ୍ତର, ସର୍ବବ୍ୟାପୀ ଜୀବରୂପ, ଋତୁ, ସମ୍ୱତ୍ସର, ମାସ, ପକ୍ଷ, ସଂଖ୍ୟାସ୍ଥିତ, (୧୪୧) କଳା, କାଷ୍ଠା, ଲବ, ମାତ୍ରା, ମୁହୂର୍ତ୍ତ, ଦିବା, ରାତ୍ରି, କ୍ଷଣ, ବିଶ୍ୱକ୍ଷେତ୍ର, ପ୍ରଜାବୀଜ, ଅର୍ଥାତ୍ ପ୍ରଜାକର୍ତ୍ତା, ମହତ୍ତତ୍ତ୍ୱ, ଅହଂକାର, । ୧୪୨ ।

ଜଗତର ଅଙ୍କୁର, କାର୍ଯ୍ୟ, କାରଣ, ଗ୍ରାହ୍ୟ, ଅଗ୍ରାହ୍ୟ, ପିତା, ମାତା, ପିତାମହ, ସ୍ୱର୍ଗଦ୍ୱାର, ପ୍ରଜାଦ୍ୱାର, ମୋକ୍ଷଦ୍ୱାର, ନିର୍ବିଷ୍ଟପ, (୧୪୩) ନିର୍ବାଣ, ଆନନ୍ଦକର, ବ୍ରହ୍ମଲୋକ, ପରମଗତି, ଦେବ, ଦେବାସୁର ସୃଷ୍ଟି-କର୍ତ୍ତା, ଦେବାସୁରପତି, (୧୪୪) ଦେବାସୁରଗୁରୁ, ଦେବାସୁର ନମସ୍କୃତ, ଦେବ, ଦେବାସୁରନିୟନ୍ତା, ଦେବାସୁର ଗଣର ଆଶ୍ରୟ, (୧୪୫) ଦେବାସୁର ଗଣରେ ଅଧ୍ୟକ୍ଷ, ଦେବାସୁର ଗଣର ଅଗ୍ରଣୀ, ଦେବାଧି ଦେବ, ଦେବର୍ଷି, ଦେବାସୁର ବରପ୍ରଦ, । ୧୪୬ ।

ଦେବା ସୁରେଶ୍ୱର, ବ୍ରହ୍ମାଣ୍ଡ, ଦେବାସୁରପୂଜ୍ୟ, ସର୍ବ ଦେବମୟ, ଅଚିନ୍ତ୍ୟ, ଦେବାତ୍ମା, ସ୍ୱତଃସିଦ୍ଧି, (୧୪୭) ଉଦ୍ଭିଦ୍, ନିବିକ୍ରମ, ବିଦ୍ୱାନ, ନିର୍ମଳ, ରଜୋଗୁଣଶୂନ୍ୟ, ଅମରସ୍ତବ୍ୟ, ହସ୍ତୀଶ୍ୱର, ବ୍ୟାଘ୍ରେ-ଶ୍ୱର, ଦେବଶ୍ରେଷ୍ଠ, ନର ଶ୍ରେଷ୍ଠ, । ୧୪୮ ।

ବିଭୁ, ଅଗ୍ରବରଣୀୟ, ଦୁର୍ଲକ୍ଷ, ସର୍ବଦେବମୟ, ତପୋମୟ, ସୁଯୁକ୍ତ, ଶୋଭନ, ବଜ୍ରୀ, ପ୍ରାଣ ଅସ୍ତ୍ରମାନଙ୍କର ଉତ୍ପାଦନ କର୍ତ୍ତା, ଅବ୍ୟୟ, (୧୪୯) ଗୁହ ଅର୍ଥାତ୍ କାର୍ତ୍ତିକେୟ, କାନ୍ତ ଅର୍ଥାତ୍ ଆନନ୍ଦର ପରାକାଷ୍ଠା, ଅସାଧାରଣ ସ୍ୱଭାବ, ପବିତ୍ର, ସର୍ବପାବନ, ବୃଷରୂପ, ପର୍ବତ ଶିଖର ପ୍ରିୟ, ଶନୈଶ୍ଚର, ରାଜରାଜ, ନିର୍ଦ୍ଦୋଷ, (୧୫୦) ଅଭିରାମ, ଦେବଗଣସ୍ୱରୂପ, ବିରାମ, ସର୍ବସାଧନ, ଲଲାଟାକ୍ଷ, ବିଶ୍ୱଦେବ, ହରିଣ, ବ୍ରହ୍ମତେଜ, (୧୫୧) ହିମାଳୟ, ପ୍ରାପ୍ତସମାଧି, ନିତ୍ୟସିଦ୍ଧ, ନିତ୍ୟମୁକ୍ତ, ଅଚିନ୍ତ୍ୟ, ସତ୍ୟବ୍ରତ, ଶୁଚି, ବ୍ରତର ଫଳଦାତା, ପରଂବ୍ରହ୍ମ, ଭକ୍ତଗଣର ପରମଗତି, ବିମୁକ୍ତ, ମୁକ୍ତତେଜା, ଶ୍ରୀମାନ୍, ଶ୍ରୀବର୍ଦ୍ଧନ ଓ ଜଗତ୍ ସ୍ୱରୂପ ବୋଲି ପରିକୀର୍ତ୍ତିତ ହୁଅନ୍ତି । ୧୫୩ ।

ହେ କେଶବ ! ମହାତ୍ମା ଭଗବାନ୍ ଶିବଙ୍କ ଅସଂଖ୍ୟ ନାମ ମଧ୍ୟରୁ ଆମ୍ଭେ ପ୍ରଧାନ ସହସ୍ର ନାମ ଉଚ୍ଚାରଣ ଦ୍ୱାରା ତାହାଙ୍କୁ ଭକ୍ତି ଭାବରେ ସ୍ତବ କଲୁଁ । ବ୍ରହ୍ମାଦି ଦେବଗଣ ଓ ମହର୍ଷିଗଣ ମଧ୍ୟ ଯାହାଙ୍କୁ ବିଶେଷରୂପେ ପରିଜ୍ଞାତ ହୁଅନ୍ତି ନାହିଁ, ସେହି ସ୍ତବନୀୟ, ବନ୍ଦନୀୟ, ଜଗତ୍ପତିଙ୍କୁ ସ୍ତବଦ୍ୱାରା କେଉଁ ବ୍ୟକ୍ତି ପରିତୁଷ୍ଟ କରିବାକୁ ସମର୍ଥ ହେବେ ? କିନ୍ତୁ ଆମ୍ଭେ ସେହି ଯଜ୍ଞପତି ବିଭୁଙ୍କ ଅନୁମତି ଅନୁସାରେ ଭକ୍ତିପୂର୍ବକ ତାହାଙ୍କୁ ସ୍ତବ କଲୁଁ, ଯେଉଁ ବ୍ୟକ୍ତି ପବିତ୍ର ଓ ଭକ୍ତି ପରାୟଣ ହୋଇ ଶିବଙ୍କୁ ଏହି ପୁଷ୍ଟି ବର୍ଦ୍ଧନ ସହସ୍ର ନାମ ଦ୍ୱାରା ସ୍ତବ କରନ୍ତି, ସେ ନିଶ୍ଚୟ ପରଂବ୍ରହ୍ମରେ ଲୀନ ହୁଅନ୍ତି ।

ଦେବତା ଓ ମହର୍ଷିଗଣ ଏହିପରି ସେହି ପରଂବ୍ରହ୍ମଙ୍କୁ ସ୍ତବ କରନ୍ତି, ଭକ୍ତାନୁକମ୍ପାକାରୀ, ମୋକ୍ଷଦାତା, ଭଗବାନ୍ ଶମ୍ଭୁ ମହାଦେବ, ନିୟତାତ୍ମା ଋଷିଗଣଙ୍କ ଦ୍ୱାରା ସଂସ୍ତୁତ ହୋଇ ପରିତୋଷ ଲାଭ କରନ୍ତି । ୧୫୯ । ଆସ୍ତିକ ଶ୍ରଦ୍ଧାଯୁକ୍ତ, ଅନନ୍ୟମନ-ଚେତା, ଶ୍ରେଷ୍ଠ ଜନଗଣ ଶୟନ, ଜାଗରଣ, ଗମନ, ଉପବେଶନ, ଉନ୍ମେଷଣ ଓ ନିମେଷ ତ୍ୟାଗ, ଏହି ସକଳ ସମୟରେ ଭକ୍ତିଭାବରେ କାୟ ମନୋ ବାକ୍ୟରେ, ସେହି ଈଶାନ, ସନାତନ ପରଂବ୍ରହ୍ମ ଦେବଙ୍କୁ ସ୍ତବ କରନ୍ତି ଓ ତାହାଙ୍କ ମାହାତ୍ମ୍ୟ ଶ୍ରବଣ ଓ ଅପର ବ୍ୟକ୍ତିଙ୍କ ନିକଟରେ ଏହା କୀର୍ତ୍ତନ କରି ସନ୍ତୋଷ ପ୍ରାପ୍ତ ହୁଅନ୍ତି । ଜନକୁଳ ଅସଂଖ୍ୟଜନ୍ମ ଏହି

ସଂସାର ମଧ୍ୟରେ ନାନା ଯୋନରେ ପରଭ୍ରମଣକର ପାପହୀନ ହେଲା ଉତ୍ତାରେ, ଶିବଭକ୍ତି ଲାଭକର କ୍ରମଶଃ ସେହି ସର୍ବକାରଣ ସନାତନ ଚନ୍ଦ୍ରଶେଖରଙ୍କଠାରେ ଅତିଶୟ ଭକ୍ତି ପରାୟଣ ହୁଅନ୍ତି । ଦେବଲୋକ ନରଲୋକ ପ୍ରଭୃତି ସମସ୍ତ ଲୋକ ସମୂହରେ ଏତାଦୃଶ ପବିତ୍ର ଐକାନ୍ତିକ ଶିବଭକ୍ତି ଅତି ଦୁର୍ଲଭ ।

ଭଗବାନ ଶିବ ପ୍ରସନ୍ନ ହେଲେ ନରଗଣ ତାହାଙ୍କଠାରେ ଭକ୍ତି ପରାୟଣ ହୋଇ ସିଦ୍ଧି ଲାଭ କରନ୍ତି । ଯେଉଁମାନେ ଅତି ଭକ୍ତିଦ୍ୱାରା ଶିବଙ୍କର ଶରଣାପନ୍ନ ହୁଅନ୍ତି, ଦୀନବତ୍ସଳ ଭଗବାନ୍ ମହେଶ୍ୱର ସେହିମାନଙ୍କୁ ଅବଶ୍ୟ ସଂସାର ପାଶରୁ ବିମୁକ୍ତ କରନ୍ତି । ଦେବ ଦେବ ଶିବଙ୍କ ଭିନ୍ନ ଅନ୍ୟ କୌଣସି ଦେବତାଙ୍କର ନରଗଣଙ୍କୁ ସଂସାରରୁ ମୁକ୍ତକରିବାକୁ କ୍ଷମତା ନାହିଁ ।

ଇନ୍ଦ୍ର ପ୍ରଭୃତି ଦେବଗଣ କେବଳ ସ୍ୱର୍ଗବେଶ୍ୟା ପ୍ରେରଣ ପ୍ରଭୃତି ଅକାର୍ଯ୍ୟ ଦ୍ୱାରା ଜନଗଣଙ୍କର ତପୋବଳ ବିନାଶ କରନ୍ତି । ଏହି କାରଣରୁ ମହାତ୍ମା ତଣ୍ଡି ଅନ୍ୟାନ୍ୟ ଦେବଗଣଙ୍କୁ ଉପାସନା ନକରି ସର୍ବମୟ ସନାତନ ମହେଶ୍ୱରଙ୍କୁ ଏହିପରି ସ୍ତବ କରିଥିଲେ । ପୂର୍ବେ ପିତାମହ ବ୍ରହ୍ମା ମହାତ୍ମା ଶିବଙ୍କ ନିକଟରେ ଏହି ସ୍ତବକୁ କୀର୍ତ୍ତନ କରିଥିଲେ । ଯେଉଁମାନେ ଭକ୍ତବତ୍ସଳ ଭଗବାନ୍ ଶଙ୍କରଙ୍କଠାରେ ଅତିଶୟ ଭକ୍ତି ପରାୟଣ ହୋଇ ତାହାଙ୍କର ଏହି ସର୍ବ ପାପ ବିନାଶନ ସ୍ୱର୍ଗଯୋଗ ମୋକ୍ଷ-ପ୍ରଦ ପରମ ପବିତ୍ର ସ୍ତବ ପାଠ କରନ୍ତି, ସେମାନେ ନିଶ୍ଚୟ ସାଙ୍ଖ୍ୟ-ଯୋଗୋକ୍ତ ପରମ ଗତି ଲାଭ କରନ୍ତି । ଶିବଭକ୍ତି ପରାୟଣ ମହାତ୍ମାମାନେ ଭଗବାନ୍ ଶିବଙ୍କ ନିକଟରେ ଏକବର୍ଷ ଏହି ସ୍ତବ ପାଠକଲେ ଅଭୀଷ୍ଟ ଫଳ ପ୍ରାପ୍ତ ହୁଅନ୍ତି ।

ପୂର୍ବେ ଭଗବାନ୍ ପଦ୍ମଯୋନି ତାହାଙ୍କ ହୃଦୟସ୍ଥିତ ଏହି ପରମ ରହସ୍ୟ ସ୍ତବ ଶକ୍ରଙ୍କୁ କହିଥିଲେ । ତତ୍ପରେ ଶକ୍ର ମୃତ୍ୟୁ ଦେବଙ୍କୁ କହିଥିଲେ (୧୭୫) ତଦନନ୍ତର ମୃତ୍ୟୁ ରୁଦ୍ରଗଣଙ୍କୁ, ରୁଦ୍ରଗଣ ମହାତ୍ମା ତଣ୍ଡିଙ୍କୁ ଏବଂ ତଣ୍ଡି ଶୁକ୍ରାଚାର୍ଯ୍ୟଙ୍କୁ, ଶୁକ୍ରାଚାର୍ଯ୍ୟ ଗୌତମଙ୍କୁ, ଗୌତମ

ବୈବସ୍ୱତ ମନୁଙ୍କୁ, ବୈବସ୍ୱତମନୁ ସମାଧିସ୍ଥ ଶ୍ରୀମାନ୍ ନାରାୟଣଙ୍କୁ, ଅଚ୍ୟୁତ ସାଧ୍ୟ ଭଗବାନ୍ ନାରାୟଣ ଯମଙ୍କୁ କହିଥିଲେ, (୧୭୮) ସୂର୍ଯ୍ୟଙ୍କ ପୁତ୍ର ଭଗବାନ୍ ଯମ ନାଚିକେତଙ୍କୁ କହିଥିଲେ । ହେ ବୃଷ୍ଣିନନ୍ଦନ ! ନାଚିକେତ ମୁନି ମାର୍କଣ୍ଡେୟଙ୍କୁ କହିଥିଲେ । ୧୭୯ ।

ହେ ଜନାର୍ଦ୍ଦନ ! ହେ ଶତ୍ରୁ ନାଶନ ! ତତ୍ପରେ ମହାତ୍ମା ମାର୍କଣ୍ଡେୟଙ୍କଠାରୁ ଆମ୍ଭେ ପ୍ରାପ୍ତ ହୋଇଅଛୁଁ । ଏତେବେଳେ ଆମ୍ଭେ ଏହି ଆୟୁବର୍ଦ୍ଧନ, ସ୍ୱର୍ଗ୍ୟ, ଧନ୍ୟ, ଆରୋଗ୍ୟପ୍ରଦ, ଦେବସମ୍ମତ ପବିତ୍ର ସ୍ତବ ତୁମ୍ଭଙ୍କୁ ଅର୍ପଣ କଲୁଁ । ଅସୁର, ଯକ୍ଷ, ରାକ୍ଷସ, ପିଶାଚ, ଗୁହ୍ୟକ, ଯାତୁଧାନ ଓ ଭୁଜଗ ଗଣ କଦାପି ଏହାର ବିଘ୍ନ କରିବାକୁ ସମର୍ଥ ହୁଅନ୍ତି ନାହିଁ । ହେ ପାର୍ଥ ! ଯେଉଁ ବ୍ୟକ୍ତି ବ୍ରହ୍ମଚାରୀ, ଜିତେନ୍ଦ୍ରିୟ, ସ୍ଥିରମନା ଓ ଶୁଚି ହୋଇ ଏକ ବର୍ଷ ପର୍ଯ୍ୟନ୍ତ ଏହି ବିଶୁଦ୍ଧ ସ୍ତବକୁ ପାଠ କରନ୍ତି, ସେ ଅଶ୍ୱମେଧ ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି । ୧୮୨ ।

ଇତି ଶ୍ରୀ ମହାଦେବଙ୍କ ସହସ୍ର ନାମ ସ୍ତୋତ୍ରେ ସପ୍ତଦଶ ଅଧ୍ୟାୟ ସମାପ୍ତ । ୧୭ ।



## ଅଷ୍ଟାଦଶ ଅଧ୍ୟାୟ

ବୈଶମ୍ପାୟନ କହିଲେ, ହେ ଜନମେଜୟ ! ବାସୁଦେବ ଏହିପରେ ଉପମନ୍ୟୁଙ୍କ କୀର୍ତ୍ତିତ ମହାଦେବଙ୍କ ସହସ୍ର ନାମ କୀର୍ତ୍ତନ କଲା-ଉତ୍ତାରେ ଭୀଷ୍ମଙ୍କ ସମୀପସ୍ଥ ଅନ୍ୟାନ୍ୟ ମହାତ୍ମାମାନେ ଯୁଧିଷ୍ଠିରଙ୍କ ନିକଟରେ ଶିବଙ୍କ ମାହାତ୍ମ୍ୟ କୀର୍ତ୍ତନ କଲେ । ତତ୍ପରେ ମହାଯୋଗୀ କୃଷ୍ଣ ଦ୍ୱୈପାୟନ ମୁନି କହିଲେ, ହେ ବତ୍ସ ! ଧର୍ମରାଜ ! ତୁମ୍ଭେ ଏହି ସହସ୍ରନାମ ପାଠକର, ତୁମ୍ଭର ମଙ୍ଗଳହେବ । ମହେଶ୍ୱର ତୁମ୍ଭଠାରେ ପ୍ରୀତିଯୁକ୍ତ ହେବେ । ହେ ପୁତ୍ର ! ମହାରାଜ ! ପୂର୍ବକାଳରେ ଆମ୍ଭେ ପୁତ୍ର ନିମିତ୍ତ ମେରୁ

ପର୍ବତରେ ଉତ୍କୃଷ୍ଟ ତପାନୁଷ୍ଠାନ ପୂର୍ବକ ଏହି ସ୍ତବ ପାଠ କରିଥିଲୁଁ । ୨ । ହେ ପାଣ୍ଡୁ ନନ୍ଦନ ! ଏହା ପ୍ରଭାବରେ ଆମ୍ଭେ ଅଭୀଷ୍ଟ ଫଳ ପ୍ରାପ୍ତ ହୋଇ ଅଛୁଁ । ଅତଏବ ତୁମ୍ଭେ ମଧ୍ୟ ଏହା ପାଠକଲେ, ଅବଶ୍ୟ ସମସ୍ତ ଅଭୀଷ୍ଟ ଫଳ ପ୍ରାପ୍ତ ହେବ । ୩ ।

ତତ୍ପରେ ଦେବ ପୂଜିତ ସଂଖ୍ୟତତ୍ତ୍ୱଜ୍ଞ କପିଳମୁନି କହିଲେ, ଆମ୍ଭେ ଏକାନ୍ତ ଭକ୍ତି ପରିପୂର୍ଣ ହୋଇ ଅନେକ ଜନ୍ମ ପର୍ଯ୍ୟନ୍ତ ଶିବଙ୍କୁ ଆରାଧନା କରିଥିବାରୁ ସେ ପରମ ପରିତୁଷ୍ଟ ହୋଇ ଆମ୍ଭଙ୍କୁ ସଂସାରବନ୍ଧନ ନାଶନ ପରମ ବିଶୁଦ୍ଧଜ୍ଞାନ ଦେଇଅଛନ୍ତି ।

ଇନ୍ଦ୍ରଙ୍କ ପ୍ରିୟସଖା ଆଲମ୍ବାୟନ ନାମରେ ବିଖ୍ୟାତ ଦୟାଳୁ ଗୃରୁଶୀର୍ଷ କହିଲେ, ହେ ଅଜାତଶତ୍ରୋ ! ହେ ପାଣ୍ଡୁ ନୃପାତ୍ମଜ ! ଆମ୍ଭେ ଗୋକର୍ଣ୍ଣ ତୀର୍ଥରେ ଏକଶତ ବର୍ଷ ପର୍ଯ୍ୟନ୍ତ ତପାନୁଷ୍ଠାନ କରି ମହାଦେବଙ୍କ ପ୍ରସାଦରେ ଲକ୍ଷ ବର୍ଷ ଜୀବୀ; ଜରାକ୍ଳେଶ ବିବର୍ଜିତ, ଧର୍ମଜ୍ଞାନ ପରିପୂର୍ଣ, ଦମଗୁଣଶାଳୀ, ଅଯୋନିସମ୍ଭୂତ ଏକଶତ ପୁତ୍ର ଲାଭ କରିଅଛୁଁ । ୭ ।

ଭଗବାନ୍ ବାଲ୍ମୀକି କହିଲେ, ହେ ଯୁଧିଷ୍ଠିର ! ପୂର୍ବେ ସାଗ୍ନିକ ମୁନିଗଣଙ୍କ ସହିତ ଆମ୍ଭର ବିବାଦ ଉପସ୍ଥିତ ହେବାରୁ ସେ ଆମ୍ଭଙ୍କୁ ବ୍ରହ୍ମଘ୍ନ ବୋଲି କହିଲେ । ଆମେ ସେହି ପାପ ବିମୋଚନ ନିମିତ୍ତ ଅମୋଘ, ଅନଘ ଈଶାନଙ୍କର ଶରଣାଗତ ହେଲୁଁ । ସେ ଦୁଃଖ ବିନାଶନ ତ୍ରିପୁରାରି ପ୍ରଭୁ ଆମ୍ଭଠାରେ ପରିତୁଷ୍ଟ ହୋଇ ଉକ୍ତ ପାପରୁ ମୋଚନ ପୂର୍ବକ ତୁମ୍ଭର ଅସାଧାରଣ ଦୋଷ, ହେବ ବୋଲି କହିଲେ । ୧୦ ।

ଧନକ ଶ୍ରେଷ୍ଠ ପ୍ରଦୀପ୍ତ ସୂର୍ଯ୍ୟ ସଦୃଶ ତେଜସ୍ୱୀ ଋଷିଗଣ ମଧ୍ୟସ୍ଥିତ ଜାମଦଗ୍ନ୍ୟ କହିଥିଲେ, ହେ କୌନ୍ତେୟ ! ପାଣ୍ଡବରାଜ ! ନୃପ ! ଆମ୍ଭେ ଜ୍ୟେଷ୍ଠ ଭ୍ରାତୃମାନଙ୍କ ସହାଦେହାରି ନିତାନ୍ତ କାତରଭାବରେ ମହେଶ୍ୱରଙ୍କ ଶରଣାପନ୍ନ ଓ ଶୁଚଶୀଳ ହୋଇ ତାହାଙ୍କ ସହସ୍ର ନାମ ଉଚ୍ଚାରଣ ପୂର୍ବକ ସ୍ତବ କରିଥିଲୁଁ । କପର୍ଦ୍ଦୀ ମଙ୍ଗଳମୟ ଭଗବାନ୍ ଶିବ ସେହି ସ୍ତବରେ ପ୍ରସନ୍ନ

ହୋଇ ଆମ୍ଭଙ୍କୁ ପରଶୁ ପ୍ରଭୃତି ନାନାବିଧ ଦିବ୍ୟାସ୍ତ୍ର ପ୍ରଦାନପୂର୍ବକ କହିଥିଲେ, ହେ ବତ୍ସ ! ତୁମ୍ଭର ପାପ ରହିବ ନାହିଁ । ତୁମ୍ଭେ ଅଜେୟ, ଅଜର ଓ ଅମର ହେବ । ଆମ୍ଭେ ସେହି ଧୀମାନ୍‌ଙ୍କ ପ୍ରସାଦରେ ବିବିଧ ଦିବ୍ୟାସ୍ତ୍ର ଅଜେୟତ୍ୱ, ଅଜରତ୍ୱ ଓ ଅମରତ୍ୱ ପ୍ରାପ୍ତ ହୋଇଅଛୁଁ । ୧୫ । ତଦନନ୍ତର ବିଶ୍ୱାମିତ୍ର କହିଲେ, ଆମ୍ଭେ ପୂର୍ବେ କ୍ଷତ୍ରିୟ ଥିଲୁଁ, ବ୍ରାହ୍ମଣତ୍ୱ ଇଚ୍ଛାରେ ଭବଙ୍କୁ ଆରାଧନା କରିଥିଲୁଁ । ୧୬ । ତାହାଙ୍କ ପ୍ରସାଦରେ ଆମ୍ଭେ ଦୁର୍ଲଭ ଉତ୍କୃଷ୍ଟ ବ୍ରାହ୍ମଣତ୍ୱ ପ୍ରାପ୍ତ ହେଲୁଁ ।

ଅସିତ ଦେବଳ, ରାଜା ଯୁଧିଷ୍ଠିରଙ୍କୁ କହିଲେ, (୧୭) ହେ କୌନ୍ତେୟ ! ପୂର୍ବେ ଦେବରାଜ ଇନ୍ଦ୍ରଙ୍କ ଶାପ ପ୍ରଭାବରେ ଆମ୍ଭର ସମସ୍ତ ଧର୍ମ ବିନଷ୍ଟ ହୋଇଥିଲା । ପ୍ରଭୁ ଭଗବାନ୍ ପ୍ରସନ୍ନ ହୋଇ ଆମ୍ଭଙ୍କୁ ଅସାଧାରଣ ଯଶ, ଧର୍ମ ଓ ଦୀର୍ଘାୟୁଷ ପ୍ରଦାନ କରିଥିଲେ, । ୧୮ ।

ଇନ୍ଦ୍ରଙ୍କ ପ୍ରିୟସଖା ବୃହସ୍ପତିଙ୍କ ସଦୃଶ ତେଜସ୍ୱୀନ ଭଗବାନ ଗୃତ୍ସମଦ ନାମକ ମୁନି ଯୁଧିଷ୍ଠିରଙ୍କୁ କହିଲେ, (୧୯) ହେ ରାଜନ ! ପୂର୍ବେ ଦେବରାଜଙ୍କର ସହସ୍ରବର୍ଷ ପର୍ଯ୍ୟନ୍ତ ଯଜ୍ଞ ହେବାରୁ ଆମ୍ଭେ ସେହି ଯଜ୍ଞରେ ସାମବେଦପାଠ କରିଥିଲୁଁ । ସେହି ସମୟରେ ଚକ୍ଷୁଷ ମୁନିଙ୍କ ପୁତ୍ର ଭଗବାନ୍ ବରିଷ୍ଠ ନାମକ ମୁନି ଆମ୍ଭଙ୍କୁ କହିଲେ, ହେ ଦ୍ୱିଜଶ୍ରେଷ୍ଠ ! ତୁମ୍ଭର ଏହି ସାମ ବେଦପାଠ ଉତ୍ତମ ହେଉନାହିଁ । ଏତାଦୃଶ ଅବଜ୍ଞାଜନକ ପାଠକୁ ପରିତ୍ୟାଗ ପୂର୍ବକ ବିବେଚନା କରିବାର ତୁମ୍ଭର ଉଚିତ । ଯଜ୍ଞ ଦୂଷିତ କରିବାର କଦାପି ଉଚିତ ନୁହେଁ । ସେ ଏହା କହି ରୋଷାବିଷ୍ଟ ଚିତ୍ତରେ ଆମ୍ଭଙ୍କୁ ଶାପପ୍ରଦାନ ପୂର୍ବକ ପୁନଶ୍ଚ କହିଲେ, ହେ ସୁଦୁର୍ମତେ ! ତୁମ୍ଭେ ଜଳବାୟୁ ବିହୀନ ମୃଗାଦି ପଶୁ ବର୍ଜିତ, ସିଂହ ଓ ରୁରୁ ପ୍ରଭୃତି ହିଂସ୍ରଜନ୍ତୁ ସମାକୀର୍ଣ୍ଣ ଅଯଜ୍ଞୀୟ ପାଦପ ପୂର୍ଣ୍ଣ କାନ୍ତାର ମଧ୍ୟରେ ହିଂସ୍ର ମୃଗ ହୋଇ ଅତି କଷ୍ଟରେ ଏକାଦଶ ସହସ୍ର ଅଷ୍ଟଶତ ବର୍ଷ ଅବସ୍ଥାନ କରିବ । ଭଗବାନ୍ ବରିଷ୍ଠ ଏହି କଥା କହିବାମାତ୍ରେ ଆମ୍ଭେ ମୃଗରୂପ ଧାରଣ କଲୁଁ । ତତ୍ପରେ ଆମ୍ଭେ ସ୍ୱକୀୟ ଦୁର୍ଦ୍ଦଶା ଅପନୋଦନ ନିମିତ୍ତ ଶିବଙ୍କ ଶରଣାପନ୍ନ ହେଲୁଁ । ତତ୍ପରେ ମହେଶ୍ୱର ଆମ୍ଭଙ୍କୁ କହିଲେ, ହେ ପୁତ୍ର ! ତୁମ୍ଭେ ଅଜର ଅମର ଓ ପରମସୁଖୀ ହେବ, ଦେବରାଜ ଇନ୍ଦ୍ରଙ୍କ ସହିତ ତୁମ୍ଭର

ସଖ୍ୟଭାବ ସମାନ ଭାବରେ ରହିବ ଓ ତୁମ୍ଭ ଦୁହିଙ୍କର ଯଶ ପରିବର୍ଦ୍ଧିତ ହେବ । ହେ ପାର୍ଥ ! ଭଗବାନ୍ ମହେଶ୍ୱର ସମସ୍ତଙ୍କଠାରେ ଏହିପରି ଅନୁଗ୍ରହ ପ୍ରକାଶ କରନ୍ତି । ସେ ସୁଖଦୁଃଖର ବିଧାତା ଧାରଣକର୍ତ୍ତା ଓ କାୟମନୋ-ବାକ୍ୟର ଅଗୋଚର । ହେ ତାତ ! ଯକ୍ଷଶ୍ରେଷ୍ଠ ! ତାହାଙ୍କ ପ୍ରସାଦରେ ବିଦ୍ୟା ବିଷୟରେ ପଣ୍ଡିତ ଆମ୍ଭ ସଦୃଶ ଅନ୍ୟ କେହି ନାହିଁ । ୨୯ ।

ତେତେବେଳେ ମହାମତି ବାସୁଦେବ ପୁନଶ୍ଚ ଯୁଧିଷ୍ଠିରଙ୍କୁ କହିଲେ, ହେ ଧର୍ମରାଜ ! ଆମ୍ଭେ ସୁବର୍ଣ୍ଣାକ୍ଷ, ମହାଦେବଙ୍କୁ ତପସ୍ୟାଦ୍ୱାରା ପରିତୁଷ୍ଟ କରିବାରୁ ସେ ଆମ୍ଭଠାରେ ପ୍ରସନ୍ନ ହୋଇ କହିଲେ, ହେ କୃଷ୍ଣ ! ତୁମ୍ଭେ ଆମ୍ଭ ପ୍ରସାଦରେ ଅର୍ଥ ଅପେକ୍ଷା ଲୋକର ଅଧିକ ପ୍ରିୟ, ଯୁଦ୍ଧରେ ଅପରାଜିତ ଓ ଅଗ୍ନି ସଦୃଶ ତେଜସ୍ୱୀ ହେବ । ମହାଦେବ ଏହିପରି ଅନ୍ୟାନ୍ୟ ସହସ୍ର ସହସ୍ର ବର ଆମ୍ଭଙ୍କୁ ପ୍ରଦାନ କରିଥିଲେ । ୩୨ ।

ଆମ୍ଭେ ପୂର୍ବାବତାରରେ ମଣିମନ୍ଥ ପର୍ବତରେ ବହୁସହସ୍ର ବର୍ଷ ଶିବଙ୍କୁ ଆରାଧନା କରିଥିଲୁଁ । ୩୩ । ପରିଶେଷରେ ସେ ଆମ୍ଭର ଭକ୍ତି ଭାବରେ ପରିତୁଷ୍ଟ ହୋଇ ଆମ୍ଭଙ୍କୁ କହିଲେ, ହେ ବତ୍ସ ! ତୁମ୍ଭେ ମଙ୍ଗଳମୟ ଅଭିଳଷିତ ବର ପାର୍ଥନାକର । ତତ୍ପରେ ଆମ୍ଭେ ପ୍ରଣାମପୂର୍ବକ କହିଲୁଁ, ହେ ଈଶାନ ! ପ୍ରଭୋ ! ଆପଣ, ମହାଦେବ । ଆମ୍ଭଠାରେ ଭକ୍ତି ଦ୍ୱାରା ଯଦି ପ୍ରସନ୍ନ ହୋଇ ଅଛନ୍ତି, (୩୪) ତେବେ ଆମ୍ଭଙ୍କୁ ଏହି ବର ପ୍ରଦାନ କରନ୍ତୁ ଯେ, ଆପଣଙ୍କଠାରେ ଆମ୍ଭର ସର୍ବଦା ନିଶ୍ଚଳା ଭକ୍ତି ହେଉ । ତେତେ-ବେଳେ ପ୍ରଭୁ "ଏବମସ୍ତୁ" ବୋଲି ବର ପ୍ରଦାନପୂର୍ବକ ସେହି ସ୍ଥାନରୁ ଅନ୍ତର୍ହିତ ହେଲେ । ୩୬ ।

ଜୈଗୀଷବ୍ୟ ଋଷି କହିଲେ, ହେ ଯୁଧିଷ୍ଠିର ! ପୂର୍ବେ ଭଗବାନ୍ ଶିବ ସ୍ୱୟଂ ବାରଣସୀ ନଗରୀରେ ଆମ୍ଭଙ୍କୁ ନାନାବିଧ ପରମଯତ୍ନରେ ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟ ପ୍ରଦାନ କରିଥିଲେ । ୩୭ । ଗର୍ଗମୁନି କହିଲେ, ହେ ପାଣ୍ଡବ ! ପୂର୍ବେ ଶିବ ସରସ୍ୱତୀ ନଦୀତୀରରେ ଆମ୍ଭର ମନୋଯଜ୍ଞ ଅର୍ଥାତ୍ ମାନସିକ ପୂଜାଦ୍ୱାରା ସନ୍ତୁଷ୍ଟ ହୋଇ ଆମ୍ଭଙ୍କୁ ଅତି ଆଶ୍ଚର୍ଯ୍ୟ ଚତୁଃଷଷ୍ଟି କଳାଜ୍ଞାନ, ସହସ୍ର ବ୍ରହ୍ମଜ୍ଞ ପୁତ୍ର ପ୍ରଦାନ କରିଥିଲେ । ତାହାଙ୍କ

ପ୍ରସାଦରେ ଆମ୍ଭର ଓ ଆମ୍ଭ ପୂର୍ବଙ୍କର ଦଶଲକ୍ଷ ବର୍ଷ ପରମାୟୁ ହୋଇ ଥିଲା । ୩୯ ।

ପରାଶର କହିଲେ, ହେ ନୃପ ! ଯୁଧିଷ୍ଠିର ! ପୂର୍ବେ ଆମ୍ଭେ ଶିବଙ୍କୁ ପ୍ରସନ୍ନ କରାଇ ଏହିପରି ଚିନ୍ତା କରିଥିଲୁଁ ଯେ, ତାହାଙ୍କ ଅନୁଗ୍ରହରେ ଆମ୍ଭର ଗୋଟିଏ ମହାତପା ମହତ୍ତେଜା, ମହାଯୋଗୀ, ମହାଯଶା, ବେଦର ବିଭାଗ କର୍ତ୍ତା, ବ୍ରହ୍ମନିଷ୍ଠ, ଦୟାର୍ଦ୍ର ଭାବ, ପରମ ସୁପଣ୍ଡିତ ପୁତ୍ର ଜାତ ହେଉ । ଆମ୍ଭେ ଏହିପରି ଚିନ୍ତା କଲନ୍ତ୍ର ମହେଶ୍ୱର ଆମ୍ଭର ଅଭିପ୍ରାୟ ଜାଣି ଆମ୍ଭ ସମକ୍ଷରେ ଆବିର୍ଭୂତ ହୋଇ କହିଲେ, ପରାଶର ! ହେ ବତ୍ସ ! ତୁମ୍ଭେ ଆମ୍ଭ ପ୍ରସାଦରେ ଅବଶ୍ୟ ଅଭିଳାଷାନୁସାରେ ପୁତ୍ର ପ୍ରାପ୍ତ ହେବ । ତୁମ୍ଭର ସେହି ପୁତ୍ର ବେଦବେତ୍ତା, ଇତିହାସ ରଚୟିତା, ବିଶ୍ୱର ହିତକାରୀ, କୁରୁବଂଶଧର ଓ ସାବର୍ଣ୍ଣି ମନ୍ୱନ୍ତରରେ ସପ୍ତର୍ଷି ମଧ୍ୟରେ ପରିଗଣିତ ହେବେ । ଇନ୍ଦ୍ରଙ୍କ ସହିତ ତାହାଙ୍କର ଅତିଶୟ ବନ୍ଧୁତା ଜନ୍ମିବ ଏବଂ ସେ ମହାମୁନି ତୁମ୍ଭ ପୁତ୍ର ଆମ୍ଭ ପ୍ରସାଦରେ ଜରାଶୂନ୍ୟ ହୋଇ ଚିରଜୀବୀ ହେବେ ।

ହେ ଯୁଧିଷ୍ଠିର ! ଅକ୍ଷୟ ଅବ୍ୟୟ ମହାଯୋଗୀ ଶିବ ଆମ୍ଭଙ୍କୁ ଏହିପରି ବର ପ୍ରଦାନ ପୂର୍ବକ ଅନ୍ତର୍ହିତ ହେଲେ ।

ମାଣ୍ଡବ୍ୟ କହିଲେ, ହେ ଧର୍ମରାଜ ! ଆମ୍ଭେ ପୂର୍ବେ ବୃଥା ଚୌର୍ଯ୍ୟାପରାଧରେ ଶୂଳରେ ଆରୋହଣ ପୂର୍ବକ ଅତିଭକ୍ତିରେ ଶିବଙ୍କୁ ସ୍ତବ କରିଥିଲୁଁ; ସେ ଆମ୍ଭଠାରେ ତୁଷ୍ଟ ହୋଇ ଦର୍ଶନ ଦେଇ କହିଲେ, ହେ ବିପ୍ରବର ! ତୁମ୍ଭେ ଆମ୍ଭ ପ୍ରସାଦରେ ଶୀଘ୍ର ଶୂଳରୁ ମୁକ୍ତହେବ ଏବଂ ଅର୍ବୁଦବର୍ଷ ଜୀବିତ ରହିବ । ତୁମ୍ଭର ଶୂଳରୋଗ ହେବ ନାହିଁ । ତୁମ୍ଭେ ଆଧିବ୍ୟାଧି ଶୂନ୍ୟ ହେବ, ଅର୍ଥାତ୍ ମାନସିକ, ଶାରୀରିକ କୌଣସି ପୀଡ଼ାରେ ତୁମ୍ଭେ ପୀଡ଼ିତ ହେବ ନାହିଁ । ୪୮ ।

ହେ ମୁନେ ! ତୁମ୍ଭର ଏହି ଦେହ ସତ୍ୟରୁ ଉତ୍ପନ୍ନ ହୋଇଅଛି, ଏହି କାରଣରୁ ଏହି ସଂସାରରେ ତୁମ୍ଭ ସଦୃଶ ଅନ୍ୟ ବ୍ୟକ୍ତି କେହି ଉତ୍କୃଷ୍ଟ ହେବେ ନାହିଁ । ତୁମ୍ଭେ ନିଜ ଜନ୍ମକୁ ସଫଳ କର । ହେ ବିପ୍ର ! ତୁମ୍ଭେ

ନିଷ୍କଣ୍ଟକରେ ଓ ନିର୍ବିଘ୍ନରେ ସମସ୍ତ ତୀର୍ଥସ୍ଥାନର ଫଳ ପ୍ରାପ୍ତହେବ ଓ ଦେହାନ୍ତରେ ଆମ୍ଭେ ତୁମ୍ଭଙ୍କୁ ଉତ୍କୃଷ୍ଟ ସ୍ୱର୍ଗସୁଖ ପ୍ରଦାନ କରିବୁଁ । ୫୦ । ହେ ମହାରାଜ ! ବରେଣ୍ୟ ବୃଷଭ ବାହାନ ଦେବଶ୍ରେଷ୍ଠ କୃତ୍ତିବାସ, ମହାଦ୍ୟୁତି ସେହି ଭଗବାନ ମହେଶ୍ୱର ଏହି ପ୍ରକାର କହି ପ୍ରମଥଗଣଙ୍କ ସହିତ ସେଠାରୁ ଅନ୍ତର୍ହିତ ହେଲେ । ୫୧ ।

ଗାଲବ କହିଲେ, ମହାରାଜ ! ପୂର୍ବେ ଆମ୍ଭେ ମହର୍ଷି ବିଶ୍ୱାମିତ୍ରଙ୍କ ନିକଟରେ ଅଧ୍ୟୟନ କରିବାକୁ ଯାଇଥିଲୁଁ । ଅଧ୍ୟୟନ ସମାପ୍ତ ହେବାରୁ ମହର୍ଷିଙ୍କ ଅନୁଜ୍ଞାପ୍ରାପ୍ତ ହୋଇ ଆମ୍ଭେ ପିତୃଦର୍ଶନ ନିମିତ୍ତ ଆଗମନ କଲୁଁ । ସେତେବେଳେ ଆମ୍ଭ ପିତା ପରଲୋକ ପ୍ରାପ୍ତ ହୋଇଥିଲେ । ଜନନୀ ଆମ୍ଭଙ୍କୁ ଦେଖି ପୂର୍ବାପେକ୍ଷା ଅଧିକ ରୋଦନ କଲେ ଏବଂ କହିଲେ, ହେ ତାତ ! ଅନଘ ! ତୁମ୍ଭେ ନିତାନ୍ତ ବାଳକ, ତୁମ୍ଭର ପାଠ ସମାପ୍ତି ହୋଇ ନାହିଁ ବୋଲି ତୁମ୍ଭ ପିତା ଏତେବେଳେ ତୁମ୍ଭ ସହିତ ସାକ୍ଷାତ କରିବେ ନାହିଁ । ଆମ୍ଭେ ମାତାଙ୍କର ଏହିକଥା ଶୁଣି ପିତୃଦର୍ଶନରେ ହତାଶ ହୋଇ ସ୍ଥିର ମନରେ ମହାଦେବଙ୍କୁ ଆରାଧନା କଲୁଁ । ନିଯତାତ୍ମା ମହାଦେବ ଆମ୍ଭ ସମ୍ମୁଖରେ ଆବିର୍ଭୂତ ହୋଇ [illegible] ହେ ତାତ ! ତୁମ୍ଭେ ଓ ତୁମ୍ଭର ପିତା ମାତା ସମସ୍ତେ ଅମର ହେ[illegible]ତୁମ୍ଭେ ଗୃହକୁ ଶୀଘ୍ର ଗମନକର । ଗୃହଠାରେ ପିତାଙ୍କୁ ଦେଖିବ । ୫[illegible] ! ହେ ଯୁଧିଷ୍ଠିର ! ଭଗବାନ୍ ଶିବ ଆମ୍ଭଙ୍କୁ ଏହିପରି କହି ଗୃହକୁ ଗମନ କରିବା ନିମିତ୍ତ ଅନୁମତି ପ୍ରଦାନ କଲେ । ଆମ୍ଭେ ସ୍ୱୀୟଗୃହରେ ଉପସ୍ଥିତ ହୋଇ ଦେଖିଲୁଁ ପିତା ଯଜ୍ଞାନ୍ତରେ ଆଗମନ ପୂର୍ବକ ଯଜ୍ଞକାଷ୍ଠ, କୁଶ ଓ ଫଳ ଗ୍ରହଣ କରି ଗୃହରୁ ବହିର୍ଗତ ହେଉଥିଲେ । ଆମ୍ଭେ ତାହାଙ୍କୁ ଦର୍ଶନ କଲାମାତ୍ରେ ତହିଁର ଚରଣ ତଳରେ ନିପତିତ ହେଲୁଁ । ହେ ପାଣ୍ଡବ ! ସେତେବେଳେ ଅବଲମ୍ବରେ ଯଜ୍ଞୀୟ ଉପକରଣ ସବୁ ପରିତ୍ୟାଗ ପୂର୍ବକ ଆମ୍ଭର ମସ୍ତକ ଆଘ୍ରାଣ କରି ବାଷ୍ପାକୁଳିତ ନେତ୍ରରେ କହିଲେ, ତାତ ! ଆମ୍ଭର ପରମ ସୌଭାଗ୍ୟ ଯେ, ଆଜି ଆମ୍ଭେ ତୁମ୍ଭଙ୍କୁ କୃତବିଦ୍ୟ ହୋଇ ଗୃହକୁ ପ୍ରତ୍ୟାଗମନ କରିବାର ଦେଖିଲୁଁ । ୫୮ ।

ବୈଶମ୍ପାୟନ କହିଲେ, ହେ ମହାରାଜ ! ଜନମେଜୟ ! ଏଥିଉତ୍ତରେ ପାଣ୍ଡବ ଯୁଧିଷ୍ଠିର ମହାତ୍ମା ମୁନିଗଣଙ୍କ ନିକଟରୁ ଭଗବାନ୍ ଶିବଙ୍କର ଏତାଦୃଶ ଅତି ଅଦ୍ଭୁତ କାର୍ଯ୍ୟ ମାନ ଶ୍ରବଣ କରି ବିସ୍ମୟାବିଷ୍ଟ ହେଲେ । ୫୯ ।

ତତ୍ପରେ ମହାମତି ଈଶ୍ୱର ଅର୍ଥାତ୍ ବିଷ୍ଣୁ ଅବତାରୀ କୃଷ୍ଣ ଇନ୍ଦ୍ର-ସଦୃଶ ଧର୍ମନିଧି ଯୁଧିଷ୍ଠିରଙ୍କୁ କହିଲେ (୬୦) ହେ ମହାରାଜ ! ପୂର୍ବେ ପ୍ରଚଣ୍ଡ ସୂର୍ଯ୍ୟ ସଦୃଶ ତେଜସ୍ୱୀ ମହାତ୍ମା ଉପମନ୍ୟୁ ଆମ୍ଭ ନିକଟରେ କହିଥିଲେ, ଯେଉଁମାନେ ରଜ ଓ ତମୋଗୁଣ ବିଶିଷ୍ଟ ହୋଇ ଅଶୁଦ୍ଧ କାର୍ଯ୍ୟ ପରମ୍ପରା ଦ୍ୱାରା କଳୁଷିତ ହୁଅନ୍ତି, ସେମାନେ କଦାପି ମହାଦେବଙ୍କୁ ପ୍ରାପ୍ତ ହୁଅନ୍ତି ନାହିଁ । ୬୨ । ଅତ୍ୟନ୍ତ ଭକ୍ତିପରାୟଣ ବିଶୁଦ୍ଧାତ୍ମା ବ୍ରାହ୍ମଣ ଗଣ କେବଳ ତାହାଙ୍କୁ ପ୍ରାପ୍ତ ହୁଅନ୍ତି । ଯେଉଁ ବ୍ୟକ୍ତି ଶିବଙ୍କଠାରେ ନିରନ୍ତର ଓ ଏକାନ୍ତ ଭକ୍ତି-ପରାୟଣ ହୋଇ କାଳହରଣ କରନ୍ତି, ତାହାଙ୍କୁ ଯୋଗବଳଯୁକ୍ତ ଅରଣ୍ୟ ବାସୀ ମୁନିବୋଲି ନିର୍ଦ୍ଦେଶ କରାଯାଏ । ରୁଦ୍ର ତୁଷ୍ଟ ହେଲେ ଅନାୟାସରେ ବ୍ରହ୍ମତ୍ୱ, କେଶବତ୍ୱ, ଇନ୍ଦ୍ରତ୍ୱ ଓ ତ୍ରୈଲୋକ୍ୟର ଆଧିପତ୍ୟ ପ୍ରଦାନ କରନ୍ତି । ହେ ତାତ ! ଯେଉଁ ମାନବଗଣ ଇହଲୋକରେ ଶିବଙ୍କର ଶରଣାପନ୍ନ ହୁଅନ୍ତି, (୬୬) ସେମାନେ ସର୍ବପାପ ବିନିର୍ମୁକ୍ତ ହୋଇ ପରଶେଷରେ ଦେବଗଣଙ୍କ ସହିତ ବାସକରନ୍ତି । ଯେଉଁ ବ୍ୟକ୍ତି ଗୃହ, ତଡ଼ାଗ ପ୍ରଭୃତିର ଉଚ୍ଛେଦ ଓ ଲୋକସମୂହର ପ୍ରାଣ ସଂହାର କରି ସୁଦ୍ଧା ଯଦି ବିରୂପାକ୍ଷ ଦେବଙ୍କୁ ଅର୍ଚ୍ଚନାକରେ, ସେ ପାପରେ ଲିପ୍ତ ହୁଏ ନାହିଁ । ସୁଲକ୍ଷଣ ବିହୀନ ପାପାତ୍ମାମାନେ ମଧ୍ୟ ଶିବଙ୍କୁ ଉପାସନା କଲେ ସର୍ବ ପାପରୁ ବିମୁକ୍ତ ହୁଅନ୍ତି । ହେ କେଶବ ! କୀଟ, ପତଙ୍ଗ ଓ ପକ୍ଷୀ ପ୍ରଭୃତି ପ୍ରାଣୀଗଣ ମଧ୍ୟ ଶିବଙ୍କର ଶରଣାପନ୍ନ ହେଲେ ଅକୁତୋଭୟରେ ସର୍ବତ୍ର ବିଚରଣ କରିବାକୁ ସମର୍ଥ ହୁଅନ୍ତି । ପୃଥିବୀରେ ଯେଉଁ ଉକ୍ତ ମନୁଷ୍ୟଗଣ ମହାଦେବଙ୍କ ଶରଣାପନ୍ନ ହୁଅନ୍ତି, ସେମାନେ ନିଶ୍ଚୟ ସଂସାରରୁ ମୁକ୍ତ ହୁଅନ୍ତି ।

ତଦନନ୍ତର କୃଷ୍ଣ ଧର୍ମପୁତ୍ର ଯୁଧିଷ୍ଠିରଙ୍କୁ କହିଲେ, ମହାରାଜ ! ଆଦିତ୍ୟ, ଚନ୍ଦ୍ର, ପବନ, ଅଗ୍ନି, ଆକାଶ, ଭୂମି, ଜଳ, ବସୁଗଣ, ବିଶ୍ୱେଦେବଗଣ, ଧାତା, ଅର୍ଯ୍ୟମା, ଶୁକ୍ର, ବୃହସ୍ପତି, ରୁଦ୍ରଗଣ, ବରୁଣ,

ବ୍ରହ୍ମା, ଇନ୍ଦ୍ର, ମରୁଦ୍‌ଗଣ, ଉପନିଷଦ୍, ସତ୍ୟ, ବେଦସମୂହ, ଦକ୍ଷିଣା, ଦେବପାଠକ, ସୋମରସ, ଯଜ୍ଞକର୍ତ୍ତା, ହବି, ହବ୍ୟ, ରକ୍ଷା, ଦୀକ୍ଷା, ନିୟମ ସମୂହ, (୭୨) ସ୍ୱାହା, ବୈଷଟ୍, ବ୍ରାହ୍ମଣ, ସୌରଭେୟୀ, ଶ୍ରେଷ୍ଠଧର୍ମ, କାଳଚକ୍ର, ବଳ, ଯଶ, ଦମ, ବୁଦ୍ଧିମାନ୍, ବ୍ୟକ୍ତିମାନଙ୍କର ସ୍ଥିତି, ଶୁଭାଶୁଭ, ସପ୍ତର୍ଷି, ସୂକ୍ଷ୍ମବୁଦ୍ଧି, ଉତ୍କୃଷ୍ଟ ସ୍ପର୍ଶ, କାର୍ଯ୍ୟସିଦ୍ଧି, ଦେବଗଣ, ଉଷ୍ମପାୟୀଗଣ, ସୋମପାୟୀଗଣ ଲୋକସମୂହ, ସୁଯାମ, ତୁଷିତ, ବ୍ରହ୍ମକାୟ, ଆଭାସୁର, ଗନ୍ଧପ, ଧୂମପ ଓ ଦୃଷ୍ଟିପ ନାମକ ଦେବଗଣ, ବାଚଂଯମଗଣ, ଶୁଦ୍ଧମନା ମହର୍ଷିଗଣ, ବିଶୁଦ୍ଧକାର୍ଯ୍ୟ, ନିର୍ମାଣ ନିଯୁକ୍ତ, ଦେବତାଗଣ, ସ୍ପର୍ଶାଶନ, ଦର୍ଶପ, ଆଜ୍ୟପ, । ୭୫ ।

ଚକ୍ଷୁଦ୍ୟୋତ ପ୍ରଭୃତି ଦେବଗଣ, ସୁପର୍ଣ୍ଣ, ଗନ୍ଧର୍ବ, ପିଶାଚ, ଦାନବ, ଯକ୍ଷ, ଚାରଣ ଓ ପନ୍ନଗ ଗଣ,(୭୬) ସ୍ଥୂଳ, ସୂକ୍ଷ୍ମ, ଅସୂକ୍ଷ୍ମ, ମୃଦୁ, ସୁଖ, ଦୁଃଖ, ସୁଖଶେଷରେ ଦୁଃଖ ଓ ଦୁଃଖଶେଷରେ ସୁଖ, ସାଂଖ୍ୟଶାସ୍ତ୍ର, ଯୋଗଶାସ୍ତ୍ର ଏବଂ ଅନ୍ୟାନ୍ୟ ସର୍ବୋତ୍କୃଷ୍ଟ ସମସ୍ତ ପଦାର୍ଥ ସେହି ଭୂତପତି ସନାତନ ମହେଶ୍ୱରଙ୍କଠାରୁ ଜାତ ହୋଇଅଛି । ୭୭ ।

ଯେଉଁ ସମସ୍ତ ଶ୍ରେଷ୍ଠ ଦେବତା ଆକାଶ ପ୍ରଭୃତି ପଦାର୍ଥର ସୃଷ୍ଟିକର୍ତ୍ତା, ସେମାନେ ମଧ୍ୟ ସେହି ଭଗବାନ ଶିବଙ୍କଠାରୁ ଉତ୍ପନ୍ନ ହୋଇ ଏହି ପୃଥିବୀର ରକ୍ଷଣାବେକ୍ଷଣ କରୁଅଛନ୍ତି । ତତ୍ତ୍ୱଦର୍ଶୀ ମହାତ୍ମାଗଣ ନିରନ୍ତର ତାହାଙ୍କର ସୂକ୍ଷ୍ମତତ୍ତ୍ୱକୁ ଆଲୋଚନା କରୁଥାଆନ୍ତି । ଆମ୍ଭେ ମୋକ୍ଷଲାଭ ନିମିତ୍ତ ସନାତନ ପରମେଶ୍ୱରଙ୍କ ସେହି ପବିତ୍ର ତତ୍ତ୍ୱକୁ ନମସ୍କାର କରୁଅଛୁଁ । ସେହି ଭଗବାନ ଦେବାଦିଦେବ ଆମ୍ଭ ସ୍ତବରେ ତୁଷ୍ଟହୋଇ ଆମ୍ଭକୁ ଅଭୀଷ୍ଟଫଳ ପ୍ରଦାନ କରନ୍ତୁ । ୭୯ ।

ଯେଉଁ ବ୍ୟକ୍ତି ଜିତେନ୍ଦ୍ରିୟ, ଯୋଗଶୀଳ ଓ ପବିତ୍ର ହୋଇ ଏହି ପବିତ୍ର ସ୍ତବକୁ ଏକମାସ ସ୍ଥିର ମନରେ ପାଠ କରନ୍ତି, ତାହାଙ୍କର ନିଶ୍ଚୟ ଅଶ୍ୱମେଧ ଯାଗର ଫଳ ହୁଏ । ୮୦ । ଏହି ବିଶୁଦ୍ଧ ସ୍ତବ ପାଠକଲେ ବ୍ରାହ୍ମଣର ସମଗ୍ର ବେଦାର୍ଥ ଜ୍ଞାନ, କ୍ଷତ୍ରିୟର ସମଗ୍ର ପୃଥିବୀ ଜୟ, ବୈଶ୍ୟର ଅର୍ଥ ଓ ନିପୁଣତା ଏବଂ ଶୂଦ୍ରର ସୁଖ ଓ ସଦ୍‌ଗତି ଲାଭ ହୁଏ । ୮୧ ।

ହେ ଭାରତ ! ଯେଉଁ ଯଶସ୍ୱୀ ମହାତ୍ମାମାନେ ଏହି ସର୍ବଦୋଷ ବିନାଶନ ପବିତ୍ର ସ୍ତବରାଜକୁ ପାଠକରି ଭଗବାନ ଦେବଦେବଙ୍କଠାରେ ଏକାନ୍ତ ଭକ୍ତି ପରିପୂର୍ଣ ହୁଅନ୍ତି, ସେହିମାନେ ନିଜ ନିଜ ରୋମକୂପ ପରିମିତ ବହୁସଂଖ୍ୟକ ବର୍ଷ ସ୍ୱର୍ଗରେ ବାସ କରନ୍ତି । ୮୩ ।

ମେଘବାହନ ପର୍ବାଖ୍ୟାନେ ଅଷ୍ଟାଦଶ ଅଧ୍ୟାୟ ସମାପ୍ତ । ୧୮ ।



# ଏକୋନବିଂଶତିତମ ଅଧ୍ୟାୟ

ବାସୁଦେବ ଏହିପରି ଶିବଙ୍କର ମାହାତ୍ମ୍ୟ କୀର୍ତ୍ତନପୂର୍ବକ ମୌନଭାବ ଅବଲମ୍ବନ କଲେ ଉତ୍ତାରେ ଯୁଧିଷ୍ଠିର କହିଲେ, ହେ ଭରତର୍ଷଭ ! ପାଣିଗ୍ରହଣ ସମୟରେ ବେଦ ବାକ୍ୟାନୁସାରେ "ବର ଓ କନ୍ୟାଙ୍କୁ" "ତୁମ୍ଭେ ଦୁହେଁ ପରସ୍ପର ଏକମିଳିତ ହୋଇ ଏକଧର୍ମ ଆଚରଣ କର" ବୋଲି ଅନୁମତି ପ୍ରଦାନ କରାଯାଏ । ଆମ୍ଭେ ପୂର୍ବରୁ ଅଛୁଁ ବର ଓ କନ୍ୟାଙ୍କୁ ଯାଗ ଯଜ୍ଞାଦିର ଅନୁଷ୍ଠାନ ବା ସନ୍ତାନୋତ୍ପାଦନ ଅଥବା ଇନ୍ଦ୍ରିୟ ସୁଖ ସାଧନ ବିଷୟକ ଧର୍ମାଚରଣ କରିବାକୁ ଅନୁମତି ପ୍ରଦତ୍ତ ହୁଏ । ଯଦି ସମସ୍ତ ପ୍ରାଣୀ ନିଜ ନିଜ କର୍ମାନୁସାରେ ଭିନ୍ନ ଭିନ୍ନ ପ୍ରକାର ଗତି ଲାଭ କରନ୍ତି ଏବଂ ସ୍ତ୍ରୀ ପୁରୁଷ ଦୁହିଁଙ୍କ ମଧ୍ୟରେ କେହି ଅଗ୍ରେ ଓ କେହି ପଶ୍ଚାତ୍ ମୃତ୍ୟୁ ପ୍ରାପ୍ତ ହୁଅନ୍ତି, ତେବେ ସେହି ଧର୍ମ ଯେ ଯାଗ ଯଜ୍ଞାଦିର ଅନୁଷ୍ଠାନ, ତାହା କଦାପି ସମ୍ଭାବିତ ନୁହେଁ । ପୁନଶ୍ଚ ଯଦି ସ୍ତ୍ରୀବୃନ୍ଦ ପରପୁରୁଷରେ ଅନୁରକ୍ତ ହୋଇ ତାହାଦ୍ୱାରା ସନ୍ତାନ ଉତ୍ପାଦନ ଓ ଇନ୍ଦ୍ରିୟ ସୁଖସାଧନ କରୁଅଛନ୍ତି, ତେବେ ସେହି ପୂର୍ବୋକ୍ତ ଧର୍ମ ଯେ, ପୁତ୍ରୋତ୍ପାଦନ ଓ ଇନ୍ଦ୍ରିୟ ସୁଖ ସାଧନ ଅଟେ, ତାହା କଦାପି ସମ୍ଭବର ଯୋଗ୍ୟ ନୁହେଁ । ଅତଏବ ଆମ୍ଭେ ବିବେଚନ କରୁଅଛୁଁ, ସେହି ଧର୍ମ କଦାପି ସତ୍ୟଧର୍ମ ନୁହେଁ । ଯାହାହେଉ ସେହି ଧର୍ମ ନିତାନ୍ତ ଦୁର୍ବୋଧ ହେବାରୁ ତଦ୍ ବିଷୟରେ ଆମ୍ଭର ମହା ସନ୍ଦେହ ଉପସ୍ଥିତ ହୋଇଅଛି ।

ଅତଏବ ହେ ମହାପ୍ରାଜ୍ଞ ! ପିତାମହ ! ଆପଣ ସମ୍ଭବ ଅନୁସାରେ ସେ କେଉଁ ସମୟରୁ ପ୍ରବର୍ତ୍ତିତ ହୋଇଅଛି, ତଦ୍ ବିଷୟରେ ଯଥାର୍ଥ ଆମ୍ଭ ନିକଟରେ ନିଃସନ୍ଦେହରେ ସଂପୂର୍ଣ୍ଣ କୀର୍ତ୍ତନ କରିବା ହେଉନ୍ତୁ । ୯ ।

ଭୀଷ୍ମ କହିଲେ, ହେ ଭାରତ ! ଆମ୍ଭେ ଏହି ଉପଲକ୍ଷରେ ଦିଗମାନଙ୍କ ଅଧିଷ୍ଠାତ୍ରୀ ଦେବତାଙ୍କ ସହିତ ଅଷ୍ଟାବକ୍ର ଋଷିଙ୍କ କଥୋପକଥନ ସମ୍ବାଦ କୀର୍ତ୍ତନ କରୁଅଛୁଁ ଶ୍ରବଣ କର । ୧୦ ।

ପୂର୍ବେ ମହାତପା ଅଷ୍ଟାବକ୍ର ଋଷି ଗୁଣ ପ୍ରଭାବଶୀଳ ଓ ଗୃହସ୍ଥଧର୍ମଦ୍ୱାରା ଶୋଭନା ବଦାନ୍ୟ ଋଷିଙ୍କ ସୁପ୍ରଭା ନାମ୍ନୀ କନ୍ୟାଙ୍କର ରୂପଲାବଣ୍ୟ ଦର୍ଶନରେ ବସନ୍ତକାଳୀନ ବିକସିତ କୁସୁମିତ ବନରାଜି ଦର୍ଶନରେ ମୁଗ୍ଧ ହେଲାପରି ବିମୁଗ୍ଧ ହୋଇ ତାହାଙ୍କୁ କଳତ୍ରରୂପେ ପରିଗ୍ରହ କରିବାକୁ ଉତ୍ସୁକ ହେଲେ ଓ ତାହାଙ୍କ ପିତାଙ୍କ ନିକଟକୁ ଯାଇ ସ୍ୱୀୟ ଅଭିଳାଷ ବ୍ୟକ୍ତ କଲେ । ମହର୍ଷି ବଦାନ୍ୟ ଅଷ୍ଟାବକ୍ରଙ୍କ ବାକ୍ୟ ଶ୍ରବଣ ପୂର୍ବକ ତାହାଙ୍କୁ କହିଲେ, ହେ ବତ୍ସ ! ତୁମ୍ଭେ ଥରେ ଉତ୍ତର ଦିଗକୁ ଗମନକର; ସେଠାରେ ଏକ ବ୍ୟକ୍ତିଙ୍କ ସହିତ ସାକ୍ଷାତ୍ କରି ଆସ, ତପରେ ଆମ୍ଭେ ତୁମ୍ଭଙ୍କୁ କନ୍ୟାଦାନ କରିବୁଁ । ଅଷ୍ଟାବକ୍ର କହିଲେ, ହେ ମହାତ୍ମନ ! ଉତ୍ତର ଦିଗରେ କାହା ସହିତ ସାକ୍ଷାତ କରିବୁଁ କହିବା ହେଉନ୍ତୁ । ଆପଣ ଆମ୍ଭଙ୍କୁ ଯେଉଁ ବିଷୟରେ ଅନୁମତି ଦେବେ, ଆମ୍ଭେ ଏତେବେଳେ ତାହା କରିବୁଁ ।

ମହର୍ଷି ବଦାନ୍ୟ କହିଲେ, ବତ୍ସ ! ତୁମ୍ଭେ ଅଳକାପୁରୀ ଓ ହିମାଚଳ ଅତିକ୍ରମ ପୂର୍ବକ କୈଳାସ ପର୍ବତରେ ଶିବଙ୍କ ବାସସ୍ଥାନ ଅବଲୋକନ କରିବ । ସେଠାରେ ସିଦ୍ଧ, ଚାରଣ, ବିବିଧ ମୁଖ ଓ ବିନ୍ୟାଙ୍ଗ ରାଗ ସମ୍ପନ୍ନ ପିଶାଚଗଣ ଓ ଅନ୍ୟାନ୍ୟ ମହାଦେବଙ୍କ ଚତୁଃପାର୍ଶ୍ୱ ପରିବେଷ୍ଟନ ପୂର୍ବକ ଆହ୍ଲାଦରେ ତାଳ ତାନ ପ୍ରଦାନ କରି ନୃତ୍ୟଗୀତ-ଦ୍ୱାରା ତାହାଙ୍କର ପରିଚର୍ଯ୍ୟା କରୁଅଛନ୍ତି । କୈଳାସ ଗିରିର ସେହି ସ୍ଥାନ ଅତି ରମଣୀୟ । ଭଗବାନ ଭୂତପତି ସ୍ୱୀୟ ଅନୁଚରଗଣ ସହିତ ସର୍ବଦା ସେଠାରେ ଅବସ୍ଥାନ କରିଅଛନ୍ତି । ଭଗବତୀ ପାର୍ବତୀ ଭଗବାନ୍ ଭୂତନାଥଙ୍କୁ ଲାଭକରିବା ନିମିତ୍ତ ସେଠାରେ ଅତି କଠୋର ତପସ୍ୟାର ଅନୁଷ୍ଠାନ

କରିଥିଲେ ବୋଲି ସେହିସ୍ଥାନ ସେହି ଉଭୟଙ୍କର ସନ୍ତୋଷଦାୟକ ହୋଇଅଛି । ତାହାଙ୍କ ପୂର୍ବେ ଓ ଉତ୍ତର ଦିଗରେ ମୂର୍ତ୍ତିମନ୍ତ ଛଅଋତୁ, କାଳରାତ୍ରି ଏବଂ ଦେବ ଓ ମନୁଷ୍ୟ ପ୍ରଭୃତି ସମସ୍ତେ ଭଗବାନ ଶିବଙ୍କ ଉପାସନା ନିମିତ୍ତ ସର୍ବଦା ସେଠାରେ ଉପସ୍ଥିତ ହୋଇ ଥାଆନ୍ତି । ତୁମ୍ଭେ ସେହି ସ୍ଥାନ ଅତିକ୍ରମ କରି ଯାଉ ଯାଉ ମେଘସଦୃଶ ନୀଳବର୍ଣ୍ଣ ଗୋଟିଏ ରମଣୀୟ ବନ ଅବଲୋକନ କରିବ । ସେହି ସ୍ଥାନରେ ଗୋଟିଏ ବୃଦ୍ଧା ଓ ମହାଭାଗ ଦୀକ୍ଷିତା ତପସ୍ୱିନୀଙ୍କ ସହିତ ତୁମ୍ଭର ସାକ୍ଷାତ ହେବ । ତୁମ୍ଭେ ତାହାଙ୍କୁ ଦର୍ଶନ କରି ପରମଯତ୍ନରେ ତାହାଙ୍କର ସତ୍କାର କରି ପୁନଶ୍ଚ ଏହିସ୍ଥାନରେ ପ୍ରବିଷ୍ଟ ହେବ । ତୁମ୍ଭେ ସେଠାରେ ସେହି ବୃଦ୍ଧାଙ୍କ ସହିତ ସାକ୍ଷାତ୍ କରି ପ୍ରତ୍ୟାଗତ ହେଲା ଉତ୍ତାରେ ଆମ୍ଭେ ତୁମ୍ଭଙ୍କୁ କନ୍ୟାଦାନ କରିବୁଁ । ଏତେବେଳେ ତୁମ୍ଭେ ଯଦି ଏହି ନିୟମ ପ୍ରତିପାଳନ ବିଷୟରେ ସମ୍ମତ ହୁଅ ତେବେ ଶୀଘ୍ର ସେଠାକୁ ଗମନ କର ।

ଅଷ୍ଟାବକ୍ର କହିଲେ, ହେ ଭଗବାନ ! ଆପଣ ଆମ୍ଭଙ୍କୁ ଯାହା ଅନୁମତି କଲେ ଆମ୍ଭେ ନିଶ୍ଚୟ ସମ୍ପାଦନ କରିବୁଁ । ହେ ସାଧୋ ! ଆପଣଙ୍କ ବାକ୍ୟ ସତ୍ୟ ହେଉ; ଆପଣ ଯେଉଁଠାକୁ କହୁଅଛନ୍ତି ଆମ୍ଭେ ସେଠାକୁ ଯିବୁଁ । ୨୬ ।

ଭୀଷ୍ମ କହିଲେ, ତଦନନ୍ତର ଭଗବାନ ସେହି ଅଷ୍ଟାବକ୍ରଋଷି ଶ୍ରେଷ୍ଠ ଉତ୍ତର ଦିଗସ୍ଥ ସିଦ୍ଧ ଚାରଣ ସେବିତ ଗିରିଶ୍ରେଷ୍ଠ ହିମାଳୟକୁ ଗମନ କଲେ । । ୨୭ । ସେହି ଦ୍ୱିଜଶ୍ରେଷ୍ଠ ମହାଗିରି ହିମାଳୟକୁ ଯାଇ ତହିଁରେ ଧର୍ମଶାଳିନୀ ପବିତ୍ର ବାହୁଦା ନଦୀକୁ ଗମନ କଲେ ।୨୮। ସେହି ନଦୀର ପବିତ୍ର ଅଶୋକ ତୀର୍ଥରେ ସ୍ନାନ ଓ ଦେବଗଣଙ୍କୁ ତର୍ପଣ କରି ସେହି ସ୍ଥାନରେ କୁଶ ଶଯ୍ୟାରେ ଶୟନ ପୂର୍ବକ ସୁଖରେ ରଜନୀ ଅତିବାହିତ କଲେ ।୨୯। ସେହି ଦ୍ୱିଜ ପରଦିନ ପ୍ରଭାତରେ ଗାତ୍ରୋତ୍ଥାନପୂର୍ବକ ନିତ୍ୟକର୍ମ ସମାପନ ଉତ୍ତାରେ ଅଗ୍ନି ପ୍ରଜ୍ୱଳନ କରି ପ୍ରଧାନ ବେଦମନ୍ତ୍ରରେ ଆହୁତି ପ୍ରଦାନପୂର୍ବକ ଅଗ୍ନିଙ୍କୁ ସ୍ତବ କଲେ । ସେହିସ୍ଥାନରେ ଗୋଟିଏ ହ୍ରଦ ଓ ହ୍ରଦର ଅନତି ଦୂରରେ ହରପାର୍ବତୀଙ୍କର ପ୍ରତିମୂର୍ତ୍ତି ପ୍ରତିଷ୍ଠିତ ଥିଲା । ସେ ସେହି ହ୍ରଦର

ତୀରରେ କିୟତ୍‌କ୍ଷଣ ବିଶ୍ରାମକରି ହରପାର୍ବତୀଙ୍କ ପ୍ରତିମା ଦର୍ଶନପୂର୍ବକ କୈଳାସ ପର୍ବତରେ ଉପସ୍ଥିତ ହେଲେ । ୩୧ ।

ଏବଂ ସେଠାରେ ମହାତ୍ମା କୁବେରଙ୍କ କାଞ୍ଚନମୟ ପୁରଦ୍ୱାର, ମନ୍ଦାକିନୀ ନଦୀ ଓ ନଳିନୀର ଶୋଭା ଦର୍ଶନ କଲେ । ସେହି ସମୟରେ ସେହି ପଦ୍ମିନୀର ତତ୍ତ୍ୱାବଧାରକ ମଣିଭଦ୍ର ପୁରଃସର ନିଶାଚରଗଣ ତାହାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ଭଗବାନ୍ ଅଷ୍ଟାବକ୍ର ସେହି ଭୀଷଣ ବଳଶାଳୀ ରାକ୍ଷସମାନଙ୍କୁ ସମୁଚିତ ସତ୍କାର କରି କହିଲେ, ହେ ନିଶାଚର ଗଣ ! ତୁମ୍ଭେମାନେ ଶୀଘ୍ର କୁବେରଙ୍କ ନିକଟରେ ଆମ୍ଭର ଆଗମନ ସମ୍ବାଦ ଦିଅ । ୩୪ । ତେତେବେଳେ ରାକ୍ଷସଗଣ ତାହାଙ୍କୁ କହିଲେ, ହେ ଭଗବାନ୍ ! ଏହି ବୈଶ୍ରବଣ ରାଜା ସ୍ୱୟଂ ଆପଣ ନିକଟକୁ ଆସୁଅଛନ୍ତି । ୩୫ । ଆପଣ ଆଗମନ କରିଥିବାର ସେ ଜାଣନ୍ତି । ଦେଖିବା ହେଉନ୍ତୁ, ଏହି ମହାଭାଗ ତେଜରେ ପ୍ରଜ୍ୱଳିତ ହୋଇ ଆସୁଅଛନ୍ତି । ୩୬ ।

ତଦନନ୍ତର ବୈଶ୍ରବଣ ଅନିନ୍ଦିତ ବ୍ରହ୍ମର୍ଷି ଅଷ୍ଟାବକ୍ରଙ୍କ ନିକଟରେ ଉପସ୍ଥିତ ହୋଇ ତାହାଙ୍କୁ ବିଧି ଅନୁସାରେ କୁଶଳ ପ୍ରଶ୍ନପୂର୍ବକ କହିଲେ, (୩୭) ହେ ଦ୍ୱିଜ ! ଆପଣ ସୁଖୀହେବାକୁ ଆମ୍ଭଠାରୁ କି ଦ୍ରବ୍ୟ ନେବାକୁ ଇଚ୍ଛା କରୁଅଛନ୍ତି ? ଆପଣ ଆମ୍ଭଙ୍କୁ ଯାହା ଆଜ୍ଞା କରିବେ, ଆମ୍ଭେ ତାହା କରିବାକୁ ପ୍ରସ୍ତୁତ ଅଛୁଁ । ହେ ଦ୍ୱିଜବର ! ସମ୍ପ୍ରତି ଆପଣ ଆମ୍ଭ ଗୃହକୁ ଆଗମନ କରନ୍ତୁ; ସେଠାରେ ସତ୍କାର ଓ ବିଶ୍ରାମ ଗ୍ରହଣ ପୂର୍ବକ ନିର୍ବିଘ୍ନରେ ସ୍ୱସ୍ଥାନକୁ ଗମନ କରିବେ । ୩୯ । କୁବେର ତତ୍ପରେ ସେହି ଦ୍ୱିଜବର ଅଷ୍ଟାବକ୍ରଙ୍କୁ ସ୍ୱୀୟ ଗୃହକୁ ଆନୟନ ପୂର୍ବକ ଆସନ ଓ ପାଦ୍ୟ ଅର୍ଘ୍ୟ ପ୍ରଦାନ କଲେ; ଓ ତଦୀୟ ନିକଟରେ ସ୍ୱୟଂ ଉପବିଷ୍ଟ ହେଲେ । ତେତେବେଳେ ମଣିଭଦ୍ର ପ୍ରଭୃତି ଯକ୍ଷ ଗନ୍ଧର୍ବ ଓ କିନ୍ନରଗଣ ସେଠାରେ ଉପସ୍ଥିତ ହୋଇ ସେହି ଦୁହିଁଙ୍କ ନିକଟରେ ଉପବେଶନ କଲେ । ୪୧ । ତେତେବେଳେ କୁବେର ଅଷ୍ଟାବକ୍ରଙ୍କୁ କହିଲେ, ହେ ଭଗବାନ ! ଅପ୍‌ସରାଗଣ ନୃତ୍ୟ କରିବା ମାନସରେ ଉପସ୍ଥିତ ହୋଇ ଆପଣଙ୍କର ଅନୁମତି ପ୍ରାର୍ଥନା କରୁଅଛନ୍ତି । ତେତେବେଳେ ଅଷ୍ଟାବକ୍ର

ତାହାଙ୍କୁ ମଧୁର ବାକ୍ୟରେ କହିଲେ, ହେ ଯକ୍ଷରାଜ ! ଅତିଥି ସତ୍କାର ତୁମ୍ଭର ଅବଶ୍ୟ କର୍ତ୍ତବ୍ୟ କର୍ମ, ଅତଏବ ସମ୍ପ୍ରତି ଏମାନେ ନୃତ୍ୟ କରନ୍ତୁ । ୪୩ ।

ତଦନନ୍ତର ବିବିଧ ବେଶ ଧାରିଣୀ ଉର୍ବଶୀ, ମିଶ୍ରକେଶୀ, ରମ୍ଭା, ଉର୍ବଶୀ, ଅଳମ୍ବୁଷା, ଘୃତାଚୀ, ଚିତ୍ରା, ଚିତ୍ରାଙ୍ଗଦା, ରୁଚି, ମନୋହରା, ସୁକେଶୀ, ସୁମୁଖୀ, ହାସିନୀ, ପ୍ରଭା, ବିଦ୍ୟୁତା, ପ୍ରଶମୀ, ଦାନ୍ତା, ବିଦ୍ୟୋତା ଓ ରତି ପ୍ରଭୃତି ଅନ୍ୟାନ୍ୟ ଶୁଭାଙ୍ଗୀ ଅପ୍ସରାଗଣ ନୃତ୍ୟକଲେ ଏବଂ ଗନ୍ଧର୍ବଗଣ ବିବିଧବାଦ୍ୟ ବାଦନ କଲେ । ୪୬ ।

ଏଥି ଉତ୍ତାରେ ମହାତପା ଅଷ୍ଟାବକ୍ର କୁବେରଙ୍କ ଗୃହରେ ଦେବତାର୍ଷ ପରିମାଣରେ ଏକବର୍ଷ ପରମ ସୁଖରେ ଅତିବାହିତ କଲେ । ୪୭ । ତତ୍ପରେ ଦିନେ ଯକ୍ଷରାଜ କୁବେର ଅଷ୍ଟାବକ୍ର ଋଷିଙ୍କୁ କହିଲେ ହେ ଭଗବନ୍ ! ନୃତ୍ୟଗୀତାଦି ବିଷୟ ଅତି ମନୋହର । ଏହି ଉପଲକ୍ଷରେ ଗୃହୁଁ ଗୃହୁଁ ଆପଣ ଗୋଟିଏ ବର୍ଷ ଆମ୍ଭର ଗୃହରେ ଅତିବାହିତ କଲେ । ସମ୍ପ୍ରତି ଆପଣଙ୍କର ଯଦି ଇଚ୍ଛା ହୁଏ ତେବେ ଆଉ କିଛିଦିନ ଏହି ସ୍ଥାନରେ ଅବସ୍ଥାନ କରିବା ହେଉନ୍ତୁ । ଆପଣ ଅତିଥି, ଆମ୍ଭମାନଙ୍କ ପୂଜନୀୟ । ଆମ୍ଭେମାନେ ଆପଣଙ୍କର ଆଜ୍ଞାବାହକ ଭୃତ୍ୟ ଏବଂ ଆମ୍ଭ ଗୃହ ଆପଣଙ୍କ ଗୃହ ସଦୃଶ । ୫୦ ।

ଏଥିଉତ୍ତରେ ଭଗବାନ ଅଷ୍ଟାବକ୍ର ତାହାଙ୍କୁ କହିଲେ, ହେ ଧନାଧିପ ! ମହର୍ଷିଙ୍କ ପ୍ରସାଦରୁ ଆମ୍ଭେ ତୁମ୍ଭର ସମୁଚିତ ସତ୍କାର ଦ୍ୱାରା ସତ୍କୃତ ଓ ପ୍ରୀତିଯୁକ୍ତ ହୋଇଅଛୁଁ ।

ହେ ଧନେଶ୍ୱର ! ତୁମ୍ଭଠାରେ ସର୍ବ ପ୍ରକାରର ଶିଷ୍ଟାଚାର ଅଛି । ସମ୍ପ୍ରତି ଆମ୍ଭେ ମହର୍ଷିଙ୍କ ଆଦେଶାନୁସାରେ ନିର୍ଦ୍ଦିଷ୍ଟ ସ୍ଥାନକୁ ଗମନ କରିବୁଁ । ଆପଣ ବୁଦ୍ଧିଶାଳୀ ଓ ସମୃଦ୍ଧିଶାଳୀ ହେଉନ୍ତୁ । ଏଥିଉତ୍ତାରେ ଭଗବାନ୍ ଅଷ୍ଟାବକ୍ର ସେଠାରୁ ବହିର୍ଗତହୋଇ ଉତ୍ତରାଭିମୁଖରେ ପ୍ରସ୍ଥାନ କଲେ ।୫୩। ସେ ସେଠାରୁ ବହିର୍ଗତ ହୋଇ କୈଳାସ, ମନ୍ଦର ଓ ସୁମେରୁ ପ୍ରଭୃତି ମହାଶୈଳମାନଙ୍କୁ ଅତିକ୍ରମ କଲେ । ତତ୍ପରେ କିରାତ ବେଶଧାରୀ ମହା-

ଦେବଙ୍କ ସ୍ଥାନରେ ପ୍ରଦକ୍ଷିଣପୂର୍ବକ ତାହାଙ୍କୁ ମସ୍ତକ ଅବନତ ଦ୍ୱାରା ପ୍ରମାଣ କରି ପବିତ୍ର ହୋଇ ପୃଥିବୀରେ ଅବତୀର୍ଣ୍ଣ ହେଲେ । ସମଭୂମୀ ଦ୍ୱାରା ପ୍ରୀତିଯୁକ୍ତ ହୋଇ ଏବଂ କ୍ରମେ କ୍ରମେ ଉତ୍ତରାଭିମୁଖରେ ଗମନ କଲେ । । ୫୬ । ତତ୍ପରେ ସେ ଯାଉଁ ଯାଉଁ ମୃଗ ପକ୍ଷୀ ସମାକୀର୍ଣ୍ଣ ସର୍ବ ପ୍ରକାର ପୁଷ୍ପ ଫଳ ପରିପୂର୍ଣ୍ଣ ଓ ସମସ୍ତ ଋତୁଦ୍ୱାରା ଅତି ରମଣୀୟ ଅନ୍ୟ ଗୋଟିଏ ଉତ୍କୃଷ୍ଟ ଅରଣ୍ୟ ଦେଖିଲେ । ସେହି ଅରଣ୍ୟରେ ଗୋଟିଏ ଦିବ୍ୟ ଆଶ୍ରମ ଥିଲା । ସେହି ଆଶ୍ରମରେ ବିବିଧ ରତ୍ନ ଭୂଷିତ ନାନାପ୍ରକାର ପର୍ବତ ମଣି ଭୂମି ନିଖାତ ମନୋହର ସରୋବର ଓ ଅନ୍ୟାନ୍ୟ ବହୁବିଧ ଅଦ୍ଭୁତ ପଦାର୍ଥ ସମୂହର ଅଲୌକିକଶୋଭା ଦର୍ଶନରେ ମହର୍ଷି ଅଷ୍ଟାବକ୍ର ଚମତ୍କୃତ ହୋଇ ଚତୁର୍ଦ୍ଦିଗରେ ଦୃଷ୍ଟି ନିକ୍ଷେପ କଲେ ।

ସେ ବାରମ୍ବାର ଦୃଷ୍ଟି ନିକ୍ଷେପ କରି ସେହି ଆଶ୍ରମ ମଧ୍ୟରେ କୁବେରଙ୍କ ପୁରୀ ଅପେକ୍ଷା ଉତ୍କୃଷ୍ଟ ସର୍ବରତ୍ନମୟ ଅତିଆଶ୍ଚର୍ଯ୍ୟ ଅନିର୍ବଚନୀୟ ଗୋଟିଏ ଉତ୍କୃଷ୍ଟ ଗୃହ ଦେଖିଲେ । ୬୧ ।

ତାହାପାର୍ଶ୍ୱରେ ନାନାପ୍ରକାର ମଣିକାଞ୍ଚନ ପର୍ବତ ଓ ସୁବର୍ଣ୍ଣ ବିମାନ ସବୁ ବିରାଜିତ ଥିଲା । ମନ୍ଦାର ପୁଷ୍ପ ସମୂହରେ ସମ୍ୟକ୍ ଅଳଂକୃତ ମନ୍ଦାକିନୀ କଳକଳ ଶବ୍ଦକରି ପ୍ରବାହିତ ହେଉଥିଲା ଏବଂ ହୀରକ ଓ ମଣି ସମୂହ ଚତୁର୍ଦ୍ଦିଗରେ ପ୍ରଭା ବିସ୍ତାର କରୁଥିଲା । ସେହି ପୁରମଧ୍ୟରେ ବିଚିତ୍ର ମଣି ତୋରଣ ସମଳଂକୃତ ବିବିଧ ମୁକ୍ତାଜାଳଜଡ଼ିତ ମନୋହର ଗୃହ ସମୂହ ବିଦ୍ୟମାନ ଥିଲା ଏବଂ ଅନେକ ଋଷିମାନେ ମଧ୍ୟ ଥିଲେ । ଭଗବାନ୍ ଅଷ୍ଟାବକ୍ର ଋଷି ତାହାସବୁ ଦେଖି କେଉଁ ସ୍ଥାନରେ ଅବସ୍ଥାନ କରିବା ବୋଲି ଚିନ୍ତାପରାୟଣ ହେଲେ । ତତ୍ପରେ ସେ ସେହି ପୁରର ଦ୍ୱାର ଦେଶରେ ଉପସ୍ଥିତ ହୋଇ ଉଚ୍ଚୈଃସ୍ୱରରେ କହିଲେ, ( ୬୬ ) ଏହି ଗୃହରେ ଯେଉଁମାନେ ଅଛନ୍ତି ସେମାନେ ଆମ୍ଭଙ୍କୁ ଅତିଥିବୋଲି ଜାଣନ୍ତୁ । ହେ ବିଭୋ ! ତତ୍ପରେ ପୁରମଧ୍ୟସ୍ଥିତ ସର୍ବାଙ୍ଗ-ସୁନ୍ଦରୀ ସାତଗୋଟି କନ୍ୟା ଅତିଥିଙ୍କ ଅଭ୍ୟର୍ଥନା ନିମନ୍ତେ ବହିର୍ଗତା ହେଲେ । ତେତେବେଳେ ମହର୍ଷି ଅଷ୍ଟାବକ୍ର ସେହି ସାତକନ୍ୟାଙ୍କ ମଧ୍ୟରୁ ଯାହାଙ୍କୁ ଗୃହିଁ ଥିଲେ,

ସେ ତାହାଙ୍କର ଚିତ୍ତ ହରଣ କରୁଥିଲେ । ୬୮ । ସେ ସେମାନଙ୍କ ରୂପ ଲାବଣ୍ୟ ଦର୍ଶନରେ କମ୍ପିତ ସମସ୍ତ ଅଙ୍ଗ ବ୍ୟାକୁଳିତ ହୋଇ ପରିଶେଷରେ କଷ୍ଟେ କଷ୍ଟେ ଧୈର୍ଯ୍ୟ ଅବଲମ୍ବନପୂର୍ବକ ଚିତ୍ତ ବିକାରକୁ ପରିତ୍ୟାଗ କଲେ । ତଦନନ୍ତର ସେହି କନ୍ୟାମାନେ ତାହାଙ୍କୁ କହିଲେ, ହେ ଭଗବନ୍ ! ଆପଣ ଏହି ପୁରମଧ୍ୟରେ ପ୍ରବେଶ କରିବା ହେଉନ୍ତୁ । ତତ୍ପରେ ସେହି ଦ୍ୱିଜ କନ୍ୟାମାନଙ୍କ ରୂପ ମାଧୁରୀ ଓ ଗୃହ ସୌନ୍ଦର୍ଯ୍ୟ ଦର୍ଶନରେ ଏକାନ୍ତ କୁତୂହଳାକ୍ରାନ୍ତ ହୋଇ ସେହି ଗୃହରେ ପ୍ରବେଶ କଲେ । ୭୧ । ସେଠାରେ ସେ ଶୁଭ୍ର ବସ୍ତ୍ର ଧାରିଣୀ ପର୍ଯ୍ୟଙ୍କ ନିପର୍ଣ୍ଣା ସର୍ବାଳଙ୍କାର ଭୂଷିତା ଗୋଟିଏ ବୃଦ୍ଧା ସ୍ତ୍ରୀଙ୍କୁ ଦେଖି ମଙ୍ଗଳ ହେଉ ବୋଲି ଆଶୀର୍ବାଦ କଲେ । ୭୨ ।

ମହର୍ଷି ଗୃହମଧ୍ୟରେ ପ୍ରବିଷ୍ଟ ହେଲାମାତ୍ରେ ସେହି ବୃଦ୍ଧା ଗାତ୍ରୋତ୍ଥାନ ପୂର୍ବକ ତପସ୍ୱୀ ନିକଟକୁ ଯାଇ ଉପବେଶନ ନିମିତ୍ତ ତାହାଙ୍କୁ ଅନୁରୋଧ କଲେ । ୭୩ । ତେତେବେଳେ ମହର୍ଷି ଅଷ୍ଟାବକ୍ର ସେଠାରେ ଉପବେଶନ କଲେ ଓ ବିଶ୍ରାମ ସୁଖଲାଭ ପୂର୍ବକ ସେହି କନ୍ୟାମାନଙ୍କୁ କହିଲେ, ହେ ଅଙ୍ଗନା ଗଣ ! ତୁମ୍ଭମାନଙ୍କ ମଧ୍ୟରେ ଯେ ଅତ୍ୟନ୍ତ ଜ୍ଞାନବତୀ ଓ ଧୈର୍ଯ୍ୟ-ଶାଳିନୀ, ସେ ଏହିଠାରେ ଅବସ୍ଥାନ କରନ୍ତୁ, ଅନ୍ୟ ସମସ୍ତେ ସ୍ୱସ୍ୱଗୃହକୁ ଗମନ କରନ୍ତୁ । ୭୪ ।

ତଦନନ୍ତର ସେହି କନ୍ୟାମାନେ ସେହି ଋଷିଙ୍କୁ ପ୍ରଦକ୍ଷିଣପୂର୍ବକ ତଦ୍‌ଗୃହରୁ ବହିର୍ଗତା ହେଲେ । କେବଳ ସେହି ବୃଦ୍ଧା ଗୃହମଧ୍ୟରେ ଅବସ୍ଥିତି କଲେ । ତଦନନ୍ତର ଦିବସ ଅତୀତ ଓ ରାତ୍ରି ଉପସ୍ଥିତ ହେଲା । ତେତେବେଳେ ଅଷ୍ଟାବକ୍ର ଋଷି ଗୋଟିଏ ଦୁଗ୍ଧ ଫେନ ସଦୃଶ ମନୋହର ଶଯ୍ୟାରେ ଶୟନକରି ସେହି ବୃଦ୍ଧାଙ୍କୁ କହିଲେ, ହେ ଭଦ୍ରେ ! କ୍ରମେକ୍ରମେ ରାତ୍ରି ବର୍ଦ୍ଧିତ ହେଉଅଛି । ଅତଏବ ଏତେବେଳେ ତୁମ୍ଭେ ଶୟନକର । ବୃଦ୍ଧା ସେହି ତପୋଧନଙ୍କ ବାକ୍ୟ ଶ୍ରବଣପୂର୍ବକ ଅନ୍ୟ ଏକ ଉତ୍କୃଷ୍ଟ ଶଯ୍ୟାରେ ଶୟନ କଲେ । କିୟତ୍‌କ୍ଷଣ ଅତୀତ ହେବାରୁ ସେହି ବୃଦ୍ଧା କପଟରେ ଦୁରନ୍ତ ଶୀତ କ୍ଳେଶରେ ଶରୀର କମ୍ପିତ କରି ମହର୍ଷିଙ୍କ ଶଯ୍ୟାକୁ ଆଗମନକଲେ । ମହର୍ଷି ତାହାଙ୍କୁ ସ୍ୱୀୟ ଶଯ୍ୟାରେ ଉପସ୍ଥିତ ଦେଖି ସ୍ୱାଗତ ପ୍ରଶ୍ନ ପୂର୍ବକ

ତାହାଙ୍କୁ ସମ୍ବର୍ଦ୍ଧନା କଲେ । ତେତେବେଳେ ବୃଦ୍ଧା ଅଷ୍ଟାବକ୍ରଙ୍କ ଶଯ୍ୟାରେ ଶୟନ କରି ତାହାଙ୍କୁ ଆଲିଙ୍ଗନ କଲେ । କିନ୍ତୁ ମହର୍ଷି କାଷ୍ଠସଦୃଶ ନିର୍ବିକାର ହୋଇ ରହିଲେ । ବୃଦ୍ଧା ତାହାଙ୍କୁ ତାଦୃଶ ଦେଖି ଦୁଃଖିତ ଚିତ୍ତରେ କହିଲେ, ହେ ଭଗବନ୍ ! ପୁରୁଷଙ୍କୁ ସ୍ପର୍ଶକଲେ ସ୍ତ୍ରୀମାନଙ୍କର ଧୈର୍ଯ୍ୟ ରହେନାହିଁ ।

ଆମ୍ଭେ ଆପଣଙ୍କୁ ସ୍ପର୍ଶକରି କାମବାଣରେ ଅତ୍ୟନ୍ତ ଜର୍ଜରିଭୂତ ହୋଇଅଛୁଁ । ଏତେବେଳେ ଆପଣ ଆମ୍ଭର ମନୋରଥ ପୂର୍ଣ୍ଣ କରନ୍ତୁ । ହେ ବିପ୍ର ! ତୁମ୍ଭେ କାମୁକ ହୁଅ । ୮୧ । ଆମ୍ଭେ ଆପଣଙ୍କୁ ଦେଖିଲା ବେଳରୁ ଅତ୍ୟନ୍ତ କାମ ପୀଡ଼ିତା ହୋଇଅଛୁଁ । ହେ ବ୍ରହ୍ମର୍ଷେ ! ଆପଣ ଆମ୍ଭଙ୍କୁ ଆଲିଙ୍ଗନ କରନ୍ତୁ । ହେ ଧର୍ମାତ୍ମନ୍ ! ଆପଣ ଯେଉଁ କଠୋର ତପସ୍ୟା କରିଅଛନ୍ତି, ତାହାର ଫଳକୁ ପ୍ରଶଂସା କରିବା ହେଉନ୍ତୁ । ୮୨ । ସମ୍ପ୍ରତି ଏହି ଗୃହରେ ଯେଉଁ ଧନରତ୍ନ ସବୁ ଦେଖୁଅଛନ୍ତି, ଆଉ ଯେଉଁ ଅନ୍ୟାନ୍ୟ ଧନସବୁ ଅଛି, ସେ ସମସ୍ତର ଓ ଆମ୍ଭର ଆପଣ ଅଧୀଶ୍ବର ହେଉନ୍ତୁ । ଆପଣ ଆମ୍ଭର ଆଶା ସଫଳକଲେ, ଆମ୍ଭେ ଆପଣଙ୍କର ସମସ୍ତ ଅଭିଳାଷ ପୂର୍ଣ୍ଣ କରିବୁଁ । ଏହି ମନୋହର ବନମଧ୍ୟରେ ଆପଣଙ୍କର ବଶବର୍ତ୍ତିନୀ ହୋଇ ପରମ ସୁଖରେ ବିହାର କରିବାକୁ ଆମ୍ଭର ଲାଳସା ଜନ୍ମି ଅଛି ।

ଆମ୍ଭେ ଦୁହେଁ ଏହିସ୍ଥାନରେ ପରସ୍ପର ମିଳିତ ହେଲେ ଲୌକିକ ଓ ଅଲୌକିକ ବିବିଧ ସୁଖଭୋଗ ବିଷୟରେ ସମର୍ଥହେବା ସନ୍ଦେହ ନାହିଁ । ସ୍ତ୍ରୀଗଣର ପୁରୁଷ ସଂସର୍ଗ ଅପେକ୍ଷା ଅନ୍ୟ କିଛି ମାତ୍ର ଉତ୍କୃଷ୍ଟ ସୁଖ ନାହିଁ ! ସ୍ତ୍ରୀଗଣ କାମବାଣରେ ପୀଡ଼ିତାହେଲେ ସ୍ୱେଚ୍ଛାଚାରିଣୀ ହୁଅନ୍ତି ! ତେତେବେଳେ ପ୍ରଚଣ୍ଡ ସୂର୍ଯ୍ୟକିରଣ ସନ୍ତପ୍ତ ବାଲୁକା ରାଶି ଉପରେ ଗମନ କଲେ ସୁଦ୍ଧା ସେମାନଙ୍କର ପଦତଳରେ ପୀଡ଼ାଜାତ ହୁଏ ନାହିଁ । ୮୮ ।

ଅଷ୍ଟାବକ୍ର କହିଲେ, ହେ ଭଦ୍ରେ ! ଆମ୍ଭେ କଦାପି ପର ସ୍ତ୍ରୀ ଗ୍ରହଣ କରୁନାହିଁ । ଧର୍ମ ଶାସ୍ତ୍ରଜ୍ଞମାନେ ପରଦାର ହରଣ କାର୍ଯ୍ୟକୁ ଦୂଷଣୀୟ ବୋଲି କହନ୍ତି । ୮୯ । ହେ ଭଦ୍ରେ ! ଆମ୍ଭେ ସତ୍ୟରେ ନିୟମ କରି

କହୁଅଛୁ, ବିଷୟସମ୍ଭୋଗ ବିଷୟରେ ଆମ୍ଭର ପ୍ରୀତି ନଥାଏ । ଧର୍ମାନୁସାରେ ପୁତ୍ରଲାଭ କଲେ ନିଶ୍ଚୟ ଶୁଭଫଳ ହୁଏ । ୯୦ । ଆମ୍ଭେ ଛନ୍ଦାନୁସାରେ ଶୁଭ ଲୋକ ସମୂହ ପ୍ରାପ୍ତ ହେବୁଁ ସଂଶୟ ନାହିଁ, ଅତଏବ ତୁମ୍ଭେ ଧର୍ମାର୍ଥ ପରିଜ୍ଞାତ ଏତାଦୃଶ ପାପ ବ୍ୟାପାରରୁ କ୍ଷାନ୍ତ ହୁଅ ।

ସ୍ତ୍ରୀ କହିଲେ, ହେ ଭଗବନ୍ ! ସ୍ତ୍ରୀ ବୃନ୍ଦ ସ୍ୱଭାବରେ ରତିପ୍ରିୟ; ସ୍ତ୍ରୀମାନଙ୍କର ପୁରୁଷ ସଂସର୍ଗ ଯାଦୃଶ ପ୍ରୀତି ଜନକ, ଅଗ୍ନି, ବରୁଣ, ପବନ ଏବଂ ଅନ୍ୟାନ୍ୟ ଦେବଗଣ ମଧ୍ୟ ସେମାନଙ୍କର ତାଦୃଶ ପ୍ରୀତି କାରକ ହୁଅନ୍ତି ନାହିଁ । ୯୨ । ଶତସ୍ତ୍ରୀ ମଧ୍ୟରେ କଦାଚିତ୍ କେହି ଗୋଟିଏ ପତିବ୍ରତା ଦୃଷ୍ଟିଗୋଚର ହୁଏ । ୯୩ । ଯେତେବେଳେ ସେମାନଙ୍କର କାମପ୍ରବୃତ୍ତି ପରିବର୍ଦ୍ଧିତ ହୁଏ, ତେତେବେଳେ ସେମାନେ ପିତା, ମାତା, ଭ୍ରାତୃଗଣ, କୁଳ, ସ୍ୱାମୀ, ପୁତ୍ରଗଣ କିମ୍ବା ଦେବରଗଣ, ଏମାନଙ୍କ ମଧ୍ୟରୁ କାହାକୁ ସୁଦ୍ଧା ଅପେକ୍ଷା କରନ୍ତି ନାହିଁ । ୯୪ । କେବଳ ଆପଣା ଇଷ୍ଟ ସାଧନ ବିଷୟରେ ନଦୀଶ୍ରେଷ୍ଠମାନେ ନିଜ କୂଳକୁ ବିନଷ୍ଟ କଲାପରି ସେମାନେ ନିଜ ନିଜ କୁଳ ବିନଷ୍ଟ କରନ୍ତି । ପ୍ରଜାପତି ସ୍ତ୍ରୀ ସଂକ୍ରାନ୍ତ ଯେଉଁ ସମସ୍ତ ଦୋଷର କଥା ଉଲ୍ଲେଖ କରି ଅଛନ୍ତି, ଆମ୍ଭେ ଆପଣଙ୍କ ନିକଟରେ ତାହା ସବୁ କହିଲୁ । ୯୫ ।

ଭୀଷ୍ମ କହିଲେ, ତତ୍ପରେ ମହାତପା ଅଷ୍ଟାବକ୍ର ତାହାଙ୍କୁ କହିଲେ, ହେ ଭଦ୍ରେ ! କାର୍ଯ୍ୟର ଆସ୍ୱାଦ ପରିଜ୍ଞାତ ହେଲେ ତହିଁରେ ଲୋକର ପ୍ରବୃତ୍ତି ହୁଏ । ଆମ୍ଭେ କିଛିମାତ୍ର ବିଷୟ ସମ୍ଭୋଗ ଜାଣୁ ନାହିଁ । ସେହି ହେତୁରୁ ତୁମ୍ଭର ପ୍ରାର୍ଥନାରେ ସମ୍ମତ ହେଉ ନାହୁଁ । ଏତେବେଳେ ଏହି କାର୍ଯ୍ୟ ବ୍ୟତିରେକେ ତୁମ୍ଭର ଆଉ ଅନ୍ୟ କେଉଁ କାର୍ଯ୍ୟ କରିବା ତାହା କହ । ୯୬ । ସେ ସ୍ତ୍ରୀ କହିଲା, ହେ ଭଗବନ୍ ! ମହାଭାଗ ! ଆପଣ ଏହି ସ୍ଥାନରେ କିଛିଦିନ ବାସ କରନ୍ତୁ । କାଳକ୍ରମରେ ସଂଭୋଗ ସୁଖ ଅନୁଭବ କରିବେ ଏବଂ କୃତ କୃତ୍ୟ ହେବେ । ୯୭ ।

ହେ ଯୁଧିଷ୍ଠିର ! ବୃଦ୍ଧା ସ୍ତ୍ରୀ ଏହିପରି ଅନୁରୋଧ କଲାରୁ ଅଷ୍ଟାବକ୍ର ତଦୀୟ ବାକ୍ୟରେ ସମ୍ମତ ହୋଇ କହିଲେ, ହେ ଭଦ୍ରେ ! ତୁମ୍ଭର

ଯେତେଦିନ ପର୍ଯ୍ୟନ୍ତ ଉତ୍ସାହ ଥିବ ଆମ୍ଭେ ତେତେ ଦିନ ପର୍ଯନ୍ତ ଏହି ସ୍ଥାନରେ ରହିବୁ ସନ୍ଦେହ ନାହିଁ । ୯୮ । ଏଥି ଉତ୍ତାରେ ସେହି ଋଷି ଜରାଜର୍ଜରିତ ସେହି ସ୍ତ୍ରୀଙ୍କୁ ଦେଖି ଅତ୍ୟନ୍ତ ଚିନ୍ତାଗ୍ରସ୍ତ ଓ ସନ୍ତପ୍ତ ହେଲେ ।୯୯। ସେହି ବିପ୍ରବର ଯେତେବେଳେ ବୃଦ୍ଧାସ୍ତ୍ରୀଙ୍କର ଯେଉଁ ଯେଉଁ ଅଙ୍ଗ ନିରୀକ୍ଷଣ କଲେ ତାହାଙ୍କର ବୈରାଗ୍ୟ ଯୁକ୍ତ ଦୃଷ୍ଟି କୌଣସି ଅଙ୍ଗରେ ତୃପ୍ତ ହେଲା ନାହିଁ । ୧୦୦ । ମହର୍ଷି ବିଚାର କଲେ ଏହି ସ୍ତ୍ରୀ ଏହି ଗୃହର ଦେବତା, ଏ କେଉଁ ଶାପ ପ୍ରଭାବରେ ଏତାଦୃଶ ବିରୂପ ପ୍ରଭାବକୁ ପ୍ରାପ୍ତ ହୋଇ-ଅଛନ୍ତି । ଏହାର କାରଣ ହଠାତ୍ ପ୍ରଶ୍ନ କରିବା ଆମ୍ଭର ଉଚିତ ନୁହେଁ । ୧୦୧ । ମହର୍ଷି ବ୍ୟାକୁଳ ମନରେ ଏପରି ଚିନ୍ତା କରୁ କରୁ ଗୋଟିଏ ଦିନ ଅତୀତ ହେଲା । ୧୦୨ ।

ଏଥିଉତ୍ତାରେ ସେ ସ୍ତ୍ରୀ କହିଲେ, ଭଗବନ୍ ! ଦେଖିବା ହେଉନ୍ତୁ । ସୂର୍ଯ୍ୟଙ୍କ ରୂପ ସନ୍ଧ୍ୟାକାଳୀନ ଆକାଶ ସଦୃଶ ରକ୍ତବର୍ଣ୍ଣ ହେଲାଣି ଏତେବେଳେ ଆପଣଙ୍କର କେଉଁ କାର୍ଯ୍ୟ କରିବା ତାହା କହିବା ହେଉନ୍ତୁ । ୧୦୩ । ତହିଁ ଉତ୍ତାରେ ସତ୍ୟବାକ୍ୟ ପରାୟଣ ଜିତେନ୍ଦ୍ରିୟ ମୁନି ସେହି ସ୍ତ୍ରୀଙ୍କୁ କହିଲେ, ହେ ଭଦ୍ରେ ! ତୁମ୍ଭେ ଆମ୍ଭର ସ୍ନାନ ନିମିତ୍ତ ଜଳ ଆନୟନ କର । ଆମ୍ଭେ ସ୍ନାନ ଉତ୍ତାରେ ସନ୍ଧ୍ୟା ଉପାସନା କରିବୁ ।୧୦୪।

ଅଷ୍ଟାବକ୍ରଙ୍କ ଦିକ୍ ସଂବାଦେ ଊନବିଂଶ ଅଧ୍ୟାୟ ସମାପ୍ତ । ୧୯ ।



# ବିଂଶତିତମ ଅଧ୍ୟାୟ

ଭୀଷ୍ମ କହିଲେ, ଅଷ୍ଟାବକ୍ର ଏହିପରି କହିବାରୁ, ବୃଦ୍ଧା ସେହି ବିଷୟରେ ସ୍ୱୀକାର କରି ଦିବ୍ୟତୈଳ ଓ ସ୍ନାନବସ୍ତ୍ର ଆନୟନ କଲେ । ୧ । ଏଥିଉତ୍ତାରେ ସେହି ମହାତ୍ମା ମୁନିଙ୍କ ଅନୁମତି ଗ୍ରହଣ ପୂର୍ବକ ତଦୀୟ ସର୍ବାଙ୍ଗରେ ତୈଳ ମର୍ଦ୍ଦନ କଲେ । ୨ । ମହର୍ଷି ସେହି ବୃଦ୍ଧାଙ୍କ ସହିତ

ସ୍ନାନଗୃହକୁ ଗମନକରି ଅତି ବଚିତ୍ର ନୂତନ ସିଂହାସନରେ ଉପବିଷ୍ଟ ହେଲେ । ୩ । ତତ୍ପରେ ବୃଦ୍ଧା ତାହାଙ୍କ ନିକଟରେ ଉପବିଷ୍ଟା ହୋଇ ସେହି ଋଷିଙ୍କୁ ଅଳ୍ପ ଉଷ୍ଣ ଜଳଦ୍ୱାରା ଧୀରେ ଧୀରେ ସ୍ନାନ କରାଇଲେ । ସେହି ମହାବ୍ରତମୁନି ସୁଖ ଉଷ୍ଣଜଳ ଓ ବୃଦ୍ଧାଙ୍କ ହସ୍ତସ୍ପର୍ଶ ସୁଖଦ୍ୱାରା ଏପରି ପରମ ସୁଖ ଅନୁଭବ କଲେ ଯେ, ସେ ସ୍ନାନ କରୁକରୁ ସମସ୍ତ ରାତ୍ରି ଅତିକ୍ରାନ୍ତ ହେବାର ଜାଣିପାରିଲେ ନାହିଁ । ତତ୍ପରେ ସେହି ମୁନି ସ୍ନାନ ସ୍ଥାନରୁ ଉଠି ପୂର୍ବଦିଗରେ ସୂର୍ଯ୍ୟ ଉଦିତ ହେବାର ଦେଖି ଅତିବିସ୍ମିତ ହୋଇ ଭାବନା କଲେ ଆମ୍ଭର କି ମୋହ ଉପସ୍ଥିତ ହେଲା ! ଅଥବା ଯଥାର୍ଥ ପ୍ରଭାତକାଳ ଉପସ୍ଥିତ ହୋଇଅଛି । ତତ୍ପରେ ଅଳ୍ପକ୍ଷଣ ବିଳମ୍ବରେ ତାହାଙ୍କର ସେହି ସନ୍ଦେହ ଦୂରୀଭୂତ ହେବାରୁ ସେ ସୂର୍ଯ୍ୟଙ୍କୁ ଉପାସନା କରି ବୃଦ୍ଧାଙ୍କୁ କହିଲେ, ଏତେବେଳେ ଆମ୍ଭେ କଅଣ କରିବା ? ତେତେବେଳେ ବୃଦ୍ଧା ସୁସ୍ୱାଦୁ ଅନ୍ନ ଅର୍ପଣ କଲେ ।

ମହର୍ଷି ସେହି ଅନ୍ନର ରସ ଆସ୍ୱାଦନ କରୁ କରୁ ଦିବାବସାନ ହେଲା, ତତ୍ପରେ ପୁନଶ୍ଚ ସନ୍ଧ୍ୟାକାଳ ଉପସ୍ଥିତ ହେଲା । ୯ । ବୃଦ୍ଧା ଆପଣାର ଓ ମହର୍ଷିଙ୍କ ନିମିତ୍ତ ଭିନ୍ନ ଭିନ୍ନ ଶଯ୍ୟା ପ୍ରସ୍ତୁତ କରି କହିଲେ, ଭଗବନ୍ ! ଏତେବେଳେ ଆପଣ ଶଯ୍ୟାରେ ଶୟନ କରି ନିଦ୍ରାର ସୁଖ ଅନୁଭବ କରନ୍ତୁ । ତେତେବେଳେ ସେହି ମୁନି ଓ ସ୍ତ୍ରୀ ଭିନ୍ନଭିନ୍ନ ଶଯ୍ୟାରେ ଶୟନ କଲେ ଏବଂ ଅର୍ଦ୍ଧରାତ୍ର ସମୟରେ ସେହି ସ୍ତ୍ରୀ ତାହାଙ୍କ ଶଯ୍ୟାରେ ପୁନଶ୍ଚ ଉପସ୍ଥିତ ହେଲେ । ୧୧ ।

ଅଷ୍ଟାବକ୍ର କହିଲେ, ହେ ଭଦ୍ରେ ! ଆମ୍ଭେ ପର ସ୍ତ୍ରୀ ସଂସର୍ଗ ବିଷୟରେ କଦାପି ଇଚ୍ଛା କରୁନାହୁଁ, ଅତଏବ ହେ ଭଦ୍ରେ ! ତୁମ୍ଭେ ସ୍ୱୟଂ ନିବୃତ୍ତ ହୋଇ ନିଜ ଶଯ୍ୟାକୁ ଗମନ କର; ତୁମ୍ଭର ମଙ୍ଗଳ ହେଉ । ୧୨ ।

ଭୀଷ୍ମ କହିଲେ, ତେତେବେଳେ ବୃଦ୍ଧା ସେହି ବିପ୍ରଙ୍କଦ୍ୱାରା ନିବର୍ତ୍ତିତା ହେବାରୁ ସେ ଦୁଃଖିତ ମନରେ ତାହାଙ୍କୁ କହିଲେ, ହେ ଭଗବନ୍ ! ଆମ୍ଭେ ସ୍ୱତନ୍ତ୍ରା । ଆମ୍ଭ ସହିତ ସଂସର୍ଗ କଲେ ଆପଣ ପରସ୍ତ୍ରୀ ହରଣ ପାପରେ ଲିପ୍ତ ହେବେନାହିଁ । ୧୩ ।

ଅଷ୍ଟାବକ୍ର କହିଲେ, ଭଦ୍ରେ ! ଭଗବାନ ପ୍ରଜାପତି କହିଅଛନ୍ତି ଯେ, ସ୍ତ୍ରୀ ଜାତିର ସ୍ୱତନ୍ତ୍ରତା ନାହିଁ । ସେମାନେ ପ୍ରଦତ୍ତ ହୋଇ ନ ଥିବା ଯାଏ ପରାଧୀନ ହୋଇ ଥାଆନ୍ତି; ଅତଏବ ଆମ୍ଭେ ତୁମ୍ଭଙ୍କୁ ଅପ୍ରଦତ୍ତ ଭାବରେ ଗ୍ରହଣ କରିବାକୁ ଉତ୍ସାହୀ ହେବୁ ନାହିଁ । ୧୪ ।

ସ୍ତ୍ରୀ କହିଲେ, ହେ ଦ୍ୱିଜ ! ଦେଖିବା ହେଉନ୍ତୁ, ଆମ୍ଭେ କାମ ବାଣରେ ଅତ୍ୟନ୍ତ ପୀଡ଼ିତା ହୋଇ ଆପଣଙ୍କଠାରେ ଭକ୍ତି କରୁଅଛୁଁ । ଅତଏବ ଆପଣ ଯଦି ଆମ୍ଭର ଆନନ୍ଦ ବର୍ଦ୍ଧନ ନ କରିବେ ତେବେ ଅଧର୍ମଫଳ ପ୍ରାପ୍ତ ହେବେ । ୧୫ ।

ଅଷ୍ଟାବକ୍ର କହିଲେ, ଭଦ୍ରେ ! ସ୍ୱେଚ୍ଛାଚାରିଣୀମାନେ କାମ କ୍ରୋଧ ପ୍ରଭୃତି ଦୋଷରେ ଅତିଶୟ ପରାସ୍ତ ହୁଅନ୍ତି । ଆମ୍ଭେ ଧୈର୍ଯ୍ୟ ଗୁଣର ବଶବର୍ତ୍ତୀ ହୋଇ କାମାଦି ସମସ୍ତ ଶତ୍ରୁ ଜୟ କରିଅଛୁଁ, ଅତଏବ ତୁମ୍ଭେ ଅବିଳମ୍ବରେ ସ୍ୱୀୟ ଶଯ୍ୟାରେ ଶୟନ କର । ୧୬ । ସ୍ତ୍ରୀ କହିଲେ, ହେ ବିପ୍ର ! ଅନଘ ! ଆମ୍ଭେ ଭୂମିରେ ନିପତିତା ହୋଇ ଆପଣଙ୍କୁ ପ୍ରଣାମ କରୁଅଛୁଁ, ଆପଣ ପ୍ରସନ୍ନ ହୋଇ ଆମ୍ଭଙ୍କୁ ରକ୍ଷା କରନ୍ତୁ । ୧୭ ।

ହେ ଦ୍ୱିଜ ! ଅନ୍ୟ ସ୍ତ୍ରୀ ସଂସର୍ଗକୁ ନିତାନ୍ତ ଦୋଷାବହ ବୋଲି ଆପଣ ଯଦି ବିବେଚନା କରନ୍ତି, ତେବେ ଆମ୍ଭେ ଆପଣଙ୍କଠାରେ ଆତ୍ମ ସମର୍ପଣ କରୁଅଛୁଁ । ଆପଣ ଅବିଳମ୍ବରେ ଆମ୍ଭର ପାଣି ଗ୍ରହଣ କରନ୍ତୁ । ୧୮ । ତେବେ ଆମ୍ଭ ସଂସର୍ଗ ଜନିତ ଦୋଷରେ କଦାପି ଲିପ୍ତ ହେବେନାହିଁ । ସତ୍ୟ କହୁଅଛୁଁ ଯେବେ କୌଣସି ଦୋଷ ହେବ, ସେ ଦୋଷ ଆମ୍ଭର ହେବ । ଆମ୍ଭେ ସ୍ୱତନ୍ତ୍ରା, ଅତଏବ ଆମ୍ଭେ ସ୍ୱୟଂ ଆତ୍ମ ସମର୍ପଣ କରି ପାରିବୁଁ । ଆପଣ ଆମ୍ଭର ପାଣି ଗ୍ରହଣ ପୂର୍ବକ ସଂସ୍କାର ସାଧନ କରନ୍ତୁ, ଆମ୍ଭେ ଆପଣଙ୍କଠାରେ ଆସକ୍ତ ଚିତ୍ତ ହୋଇଅଛୁଁ । ୧୯ ।

ଅଷ୍ଟାବକ୍ର କହିଲେ, ହେ ଭଦ୍ରେ ! ତ୍ରିଲୋକ ମଧ୍ୟରେ କୌଣସି ସ୍ତ୍ରୀର ସ୍ୱାଧୀନତା ନାହିଁ, ତୁମ୍ଭେ କପରି ସ୍ୱତନ୍ତ୍ରା ହେଲ, ଏ ବିଷୟରେ କାରଣ କହ । ୨୦ । ଦେଖ ସ୍ତ୍ରୀଜାତିଙ୍କୁ କୌମାର ଅବସ୍ଥାରେ ପିତା,

ଯୌବନାବସ୍ଥାରେ ପତି ଓ ବୃଦ୍ଧାବସ୍ଥାରେ ପୁତ୍ରମାନେ ରକ୍ଷା କରନ୍ତି, ଅତଏବ ସ୍ତ୍ରୀଜାତିର ସ୍ୱତନ୍ତ୍ରତା ନାହିଁ । ୨୧ ।

ସ୍ତ୍ରୀ କହିଲେ, ହେ ବିପ୍ର ! ଆମ୍ଭେ କୌମାରାବସ୍ଥାକୁ ଆରମ୍ଭ କରି ବ୍ରହ୍ମଚର୍ଯ୍ୟ ବ୍ରତ ଆଚରଣ କରିଅଛୁଁ । ଆମ୍ଭେ କେବଳ କନ୍ୟା, ଏ ବିଷୟରେ ସଂଶୟ ନାହିଁ । ଆମ୍ଭଙ୍କୁ ପତ୍ନୀ କରିବା ହେଉନ୍ତୁ; ଆମ୍ଭର ଶ୍ରଦ୍ଧାକୁ ବିନଷ୍ଟ କରନ୍ତୁ ନାହିଁ । ୨୨ ।

ତଦନନ୍ତର ଅଷ୍ଟାବକ୍ର ତାହାଙ୍କୁ ଷୋଡ଼ଶ ବର୍ଷୀୟା କନ୍ୟାପରି ଅବଲୋକନ କଲେ । ତେତେବେଳେ ସେ ତାହାଙ୍କୁ କହିଲେ, ହେ ଭଦ୍ରେ ! ତୁମ୍ଭର ଆମ୍ଭଠାରେ ଯେପରି ଅନୁରାଗ ଆମ୍ଭର ମଧ୍ୟ ତୁମ୍ଭଠାରେ ତାଦୃଶ ଅନୁରାଗ । କିନ୍ତୁ ମହର୍ଷି ବଦାନ୍ୟ ପରୀକ୍ଷା କରିବା ନିମିତ୍ତ ଏହି ସ୍ଥାନକୁ ପ୍ରେରଣ କରିଅଛନ୍ତି; ସୁତରାଂ ଆମ୍ଭେ କେଉଁ ପ୍ରକାରେ ତୁମ୍ଭ ସହିତ ସଂସର୍ଗରେ ପ୍ରବୃତ୍ତ ହେବୁଁ ? ଅଷ୍ଟାବକ୍ର ସେହି କନ୍ୟାଙ୍କୁ ଏହିପରି କହି ମନେ ମନେ ବିବେଚନା କଲେ, ଏହି ସ୍ତ୍ରୀ ଏଥିପୂର୍ବେ ଅତି ବୃଦ୍ଧା ଥିଲେ, ଏତେବେଳେ ଦିବ୍ୟବସ୍ତ୍ର ଓ ଦିବ୍ୟ ଆଭରଣରେ ଭୂଷିତା ହୋଇ କନ୍ୟାର ରୂପ ଧାରଣ କରିଅଛନ୍ତି । ଏଥିଉତ୍ତାରେ ପୁନଶ୍ଚ, ଅନ୍ୟକୌଣସି ରୂପ ଧାରଣ କରିବେ, ତାହା ଆମ୍ଭଙ୍କୁ ଜଣା ନାଉ ନାହିଁ । ଯାହା ହେଉ, କାମ ଦମନଶକ୍ତି ଓ ଧୈର୍ଯ୍ୟଗୁଣ ଥାଉଁ ଥାଉଁ ଆମ୍ଭେ ସ୍ୱକୀୟ ପ୍ରତିଜ୍ଞାକୁ କଦାପି ଭଙ୍ଗ କରିବା ନାହିଁ । ଆମ୍ଭେ ଯେଉଁ ସତ୍ୟ କରିଅଛୁଁ, ସେହି ସତ୍ୟ ପାଳନ ପୂର୍ବକ ନିଶ୍ଚୟ ସେହି କନ୍ୟାର ପାଣି ଗ୍ରହଣ କରିବୁଁ । ୨୨ ।

ଅଷ୍ଟାବକ୍ରଙ୍କ ଦିକ୍‌ସମ୍ବାଦେ ବିଂଶ ଅଧ୍ୟାୟ ସମାପ୍ତ ।୨୦ ।



# ଏକବିଂଶତିତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ପିତାମହ ! ସେହି ସ୍ତ୍ରୀ ପରମ ତେଜସ୍ୱୀ ଋଷିଙ୍କଠାରୁ ଅଭିଶାପ ଆଶଙ୍କାରେ କାହିଁକି ଭୟ କଲେ ନାହିଁ ? ଭଗବାନ୍ ଅଷ୍ଟାବକ୍ର କପରି ନିବୃତ୍ତ ହୋଇ ଗୃହକୁ ଆଗମନ କଲେ ? ତାହା ଆପଣ ଆମ୍ଭଙ୍କୁ କହିବା ହେଉ । ୧ ।

ଭୀଷ୍ମ କହିଲେ, ହେ ତାତ ! ତଦନନ୍ତର ମହର୍ଷି ଅଷ୍ଟାବକ୍ର ସେହି ସ୍ତ୍ରୀଙ୍କୁ କହିଲେ, ହେ ଭଦ୍ରେ ! ତୁମ୍ଭେ କାହିଁକି ବ୍ରାହ୍ମଣ ମର୍ଯ୍ୟାଦା ଲାଭ ଇଚ୍ଛାରେ ନିଜରୂପ ପରିବର୍ତ୍ତିତ କଲ ? ମିଥ୍ୟା ନ କହି ସତ୍ୟ କହ । ୨ । ସ୍ତ୍ରୀ କହିଲେ, ହେ ବ୍ରାହ୍ମଣ ଶ୍ରେଷ୍ଠ ! ହେ ସତ୍ୟ ବିକ୍ରମ ! ସ୍ୱର୍ଗ, ମର୍ତ୍ତ୍ୟ, କି ସକଳ ଲୋକର ସ୍ତ୍ରୀ ପୁରୁଷଗଣ କାମାବିଷ୍ଟ ହୋଇଥାଆନ୍ତି । ତୁମ୍ଭେ ପରଦାରାସକ୍ତ କି ନୁହଁ ଏ ବିଷୟରେ ସଂଶୟ ଉପସ୍ଥିତ ହେବାରୁ ଆମ୍ଭେ ତୁମ୍ଭଙ୍କୁ ପରୀକ୍ଷା କଲୁଁ । ତୁମ୍ଭେ ନିଜର ନିୟମ ଭଙ୍ଗ ନ କରି ସର୍ବଲୋକ ପରାଜୟ କରିଅଛ । ଆମ୍ଭେ "ଉତ୍ତର ଦିଗ", ତୁମ୍ଭଙ୍କୁ ସ୍ତ୍ରୀର ଚପଳତା ଦେଖାଇବାର ନିମିତ୍ତ ଆମ୍ଭେ ବୃଦ୍ଧାରୂପ ଧାରଣ କରିଥିଲୁଁ । ଇହଲୋକରେ ବୃଦ୍ଧାମାନେ ମଧ୍ୟ ମଦନ ପୀଡ଼ାରେ ଆକ୍ରାନ୍ତା ହୋଇଥାଆନ୍ତି । ଆଜି ବ୍ରହ୍ମା ଓ ଇନ୍ଦ୍ରାଦି ଦେବଗଣ ତୁମ୍ଭଠାରେ ପ୍ରସନ୍ନ ହୋଇଅଛନ୍ତି । ତୁମ୍ଭେ ମହାତ୍ମା ବଦାନ୍ୟଙ୍କ ଦ୍ୱାରା ପ୍ରେରିତ ହୋଇ ଯେଉଁ କାର୍ଯ୍ୟ ନିମିତ୍ତ ଏଠାରେ ଉପସ୍ଥିତ ହୋଇଅଛ, ଆମ୍ଭେ ତୁମ୍ଭଙ୍କୁ ଉପଦେଶ ପ୍ରଦାନ ପୂର୍ବକ ସେହି କାର୍ଯ୍ୟ ସମ୍ପାଦନ କଲୁଁ । ଏଥି ଉତ୍ତାରେ ତୁମ୍ଭେ ନିର୍ବିଘ୍ନରେ ଗୃହକୁ ଗମନପୂର୍ବକ ସ୍ୱୀୟ ବାଞ୍ଛିତ କନ୍ୟାଙ୍କୁ ଲାଭ କରିବ । କାଳକ୍ରମେ ସେହି କନ୍ୟା ପୁତ୍ରବତୀ ହେବେ । ୮ ।

ତ୍ରିଲୋକ ମଧ୍ୟରେ କେହି ବ୍ରାହ୍ମଣଙ୍କ ଅନୁରୋଧକୁ ଅତିକ୍ରମ କରି ପାରନ୍ତି ନାହିଁ । ସଂପ୍ରତି ତୁମ୍ଭର ଗୃହକୁ ଗମନ କରିବାର ଉଚିତ । ହେ ବିପ୍ରର୍ଷେ ! ଅଷ୍ଟାବକ୍ର ! ଆଉ କିଛି ଶୁଣିବା ନିମିତ୍ତ ପଚାରିବାକୁ ଯଦି ଇଚ୍ଛା ଅଛି, ତେବେ ତାହା ପ୍ରଶ୍ନ କର । ତୁମ୍ଭେ ଯାହା ପଚାରିବ ଆମ୍ଭେ ତାହାର ଉତ୍ତର ଦେବା । ୧୦ । ହେ ଦ୍ୱିଜବର ! ବଦାନ୍ୟ ଋଷି ତୁମ୍ଭ ନିମିତ୍ତ ଆମ୍ଭଙ୍କୁ

ପ୍ରସନ୍ନ କରାଇ ଅଛନ୍ତି । ଆମ୍ଭେ ତାହାଙ୍କ ସମ୍ମାନ ରକ୍ଷା ନିମିତ୍ତ ତୁମ୍ଭଙ୍କୁ ଏହିପରି ଉପଦେଶ ଦେଲୁଁ । ୧୧ ।

ଭୀଷ୍ମ କହିଲେ, ମହାତ୍ମା ଅଷ୍ଟାବକ୍ର ବିପ୍ର ତାହାଙ୍କ ବାକ୍ୟ ଶ୍ରବଣକରି କୃତାଞ୍ଜଳିପୂର୍ବକ ଦଣ୍ଡାୟମାନ ହେଲେ ଏବଂ ତାହାଙ୍କ ଅନୁମତି ଗ୍ରହଣ ପୂର୍ବକ ସ୍ୱକୀୟ ଗୃହକୁ ପୁନର୍ବାଗମନ କଲେ । ୧୨ ।

ହେ କୁରୁ ନନ୍ଦନ ! ସେ ଗୃହକୁ ଆସି କିଛିକ୍ଷଣ ବିଶ୍ରାମ ଲଭି ପୂର୍ବକ ସ୍ୱଜନମାନଙ୍କୁ ଆଲିଙ୍ଗନ କରି ମହାତ୍ମା ବଦାନ୍ୟଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ୧୩ ।

ମହାତ୍ମା ବଦାନ୍ୟ ତାହାଙ୍କୁ ସମାଗତ ଦେଖି ପ୍ରୀତିଯୁକ୍ତ ହୋଇ କହିଲେ, ହେ ବିପ୍ର ! ତୁମ୍ଭେ ଯେଉଁ ଯେଉଁ ସ୍ଥାନରେ ଯେଉଁ ଯେଉଁ ଦର୍ଶନ ଦେଖି ଆସିଅଛ, ତାହାସବୁ ଆମ୍ଭ ସମ୍ମୁଖରେ କୀର୍ତ୍ତନ କର । ୧୪ । ତେତେବେଳେ ଅଷ୍ଟାବକ୍ର ମହର୍ଷି ବଦାନ୍ୟଙ୍କୁ ସମ୍ବୋଧନ କରି କହିଲେ, ହେ ପ୍ରଭୋ ! ଆମ୍ଭେ ଆପଣଙ୍କ ଆଜ୍ଞାନୁସାରେ ଗନ୍ଧମାର୍ଦ୍ଦନ ପର୍ବତରେ ଉପସ୍ଥିତ ହୋଇ ତାହାର ଉତ୍ତରାଂଶରେ ଗୋଟିଏ ଦେବୀଙ୍କ ସହିତ ସାକ୍ଷାତ କଲୁଁ । ସେ ଆପଣଙ୍କ ଅଭିପ୍ରାୟ ଆମ୍ଭ ନିକଟରେ କୀର୍ତ୍ତନ କଲେ । ତତ୍ପରେ ଆମ୍ଭେ ତାହାଙ୍କ ଅନୁମତି ଗ୍ରହଣ ପୂର୍ବକ ଗୃହକୁ ପ୍ରତ୍ୟାଗମନ କରିଅଛୁ । ୧୬ । ତତ୍ପରେ ବଦାନ୍ୟ ତାହାଙ୍କୁ କହିଲେ, ହେ ବିପ୍ର ! ତୁମ୍ଭେ କନ୍ୟାଦାନର ଉତ୍କୃଷ୍ଟ ଉପଯୁକ୍ତ ପାତ୍ର, ଶୁଭନକ୍ଷତ୍ରରେ ଆମ୍ଭ କନ୍ୟାଙ୍କ ପାଣିଗ୍ରହଣ କର । ୧୭ ।

ଭୀଷ୍ମ କହିଲେ, ହେ ରାଜନ୍ ! ପରମ ଧର୍ମାତ୍ମା ଅଷ୍ଟାବକ୍ର ଯଥା ବିଧାନରେ ସେହି କନ୍ୟାଙ୍କ ପାଣିଗ୍ରହଣ କରି ଆନନ୍ଦିତ ହେଲେ । ୧୮ । ଅଷ୍ଟାବକ୍ର ମୁନି ସେହି ପରମ ସୁନ୍ଦରୀ କନ୍ୟାଙ୍କୁ ଭାର୍ଯ୍ୟାରୂପେ ପରିଗ୍ରହ କରି ପ୍ରମୋଦପ୍ରାପ୍ତ ହୋଇ ନିଶ୍ଚିନ୍ତରେ ସ୍ୱକୀୟ ଆଶ୍ରମରେ ବାସ କଲେ । ୧୯ ।

ହେ ଧର୍ମରାଜ ! ଯଦି ମହାତ୍ମା ଅଷ୍ଟାବକ୍ର ବଦାନ୍ୟଙ୍କ କନ୍ୟାଙ୍କୁ ଦେଖି ଚଞ୍ଚଳ ଚିତ୍ତ ହୋଇ ତାହାଙ୍କ ପାଣିଗ୍ରହଣ କରିଥିଲେ, ତେବେ

ସ୍ତ୍ରୀ ପୁତ୍ରାଦି ମାନଙ୍କ ସହଧର୍ମ ଯେ ଇହଲୋକ ସୁଖସାଧକ ସେ ବିଷୟରେ ସନ୍ଦେହ ନାହିଁ ।

ଅଷ୍ଟାବକ୍ରଙ୍କ ଦିକ୍ ସମ୍ବାଦେ ଏକବିଂଶତିତମ ଅଧ୍ୟାୟ ସମାପ୍ତ । ୨୧ ।



# ଦ୍ୱାବିଂଶତିତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ପିତାମହ ! ଦଣ୍ଡ ପ୍ରଭୃତି ଚିହ୍ନଯୁକ୍ତ ଅଥବା ଉକ୍ତ ଚିହ୍ନ ବିହୀନ ବ୍ରାହ୍ମଣ ଦାନାଦିର ଉପଯୁକ୍ତ ପାତ୍ର, ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ, ହେ ମହାରାଜ ! ବ୍ରାହ୍ମଣ ବ୍ରହ୍ମଚର୍ଯ୍ୟ ପ୍ରଭୃତି ଚିହ୍ନ ବିଶିଷ୍ଟ ହେଉନ୍ତୁ ଅଥବା ନ ହେଉନ୍ତୁ ସ୍ୱଧର୍ମ ନିରତ ହେଲେ ତାହାଙ୍କୁ ଦାନ କରିବାର ଉଚିତ । ଚିହ୍ନିତ ଓ ଅଚିହ୍ନିତ ଉଭୟବିଧ ବ୍ରାହ୍ମଣ ଦାନ ଉପଯୁକ୍ତ ପାତ୍ର । ୨ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ଯଦି ଅପବିତ୍ର ବ୍ୟକ୍ତି ଅତି ଶ୍ରଦ୍ଧାରେ ବ୍ରାହ୍ମଣଙ୍କୁ ହବ୍ୟ କବ୍ୟାଦି ଓ ଅର୍ଥ ପ୍ରଭୃତି ଦାନ କରେ, ତେବେ ତାହାର କେଉଁ ଦୋଷ ହୁଏ ? ତାହା କହିବା ହେଉନ୍ତୁ । ୩ ।

ଭୀଷ୍ମ କହିଲେ, ହେ ତାତ ! ମହଦ୍ୟୁତେ ! ସର୍ବତ୍ର ଦୁର୍ଦ୍ଦାନ୍ତବ୍ୟକ୍ତି ଶ୍ରଦ୍ଧା ସମ୍ପନ୍ନ ହେଲେ ପବିତ୍ର ହୋଇଥାଏ, ଏ ବିଷୟରେ ସଂଶୟ ନାହିଁ । ସୁତରାଂ ତହିଁରେ ତାହାର ପାପ ଜନ୍ମିବାର ସମ୍ଭାବନା ନାହିଁ । ୪ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ଦୈବକାର୍ଯ୍ୟ ଅନୁଷ୍ଠାନ ସମୟରେ ଯଦି ବ୍ରାହ୍ମଣମାନଙ୍କୁ ପରୀକ୍ଷା କରିବାର ନିୟମ ନାହିଁ, ତେବେ ପିତୃକାର୍ଯ୍ୟ ସାଧନ ସମୟରେ ପଣ୍ଡିତମାନଙ୍କଦ୍ୱାରା କି ନିମିତ୍ତ ସେମାନଙ୍କର ପରୀକ୍ଷା କରାଯାଏ ? । ୫ ।

ଭୀଷ୍ମ କହିଁଲେ, ହେ ଧର୍ମରାଜ ! ଦେବତାମାନଙ୍କ ଅନୁଗ୍ରହରେ ଦୈବକାର୍ଯ୍ୟ ସିଦ୍ଧ ହୁଏ, ତଦ୍‌ବିଷୟରେ ବ୍ରାହ୍ମଣମାନଙ୍କ ସହଯୋଗିତାର ପ୍ରୟୋଜନ ନାହିଁ । ଯଜମାନଗଣ କେବଳ ଦେବଗଣଙ୍କ ଅନୁଗ୍ରହ ଉପରେ ନିର୍ଭର କରି ଦୈବ କାର୍ଯ୍ୟ ସାଧନରେ ପ୍ରବୃତ୍ତ ହୁଅନ୍ତି । କିନ୍ତୁ ବ୍ରାହ୍ମଣଙ୍କ ଅନୁଗ୍ରହ ବ୍ୟତିରେକେ ପିତୃକାର୍ଯ୍ୟ କଦାପି ସମ୍ପନ୍ନ ହୁଏ ନାହିଁ । ସୁତରାଂ ପିତୃକାର୍ଯ୍ୟ ସାଧନ ସମୟରେ ବ୍ରାହ୍ମଣଙ୍କର ବ୍ରାହ୍ମଣତ୍ୱ ଅଛି କି ନାହିଁ ତାହା ପ୍ରଥମରେ ପରୀକ୍ଷା କରିବା ଉଚିତ । ୬ । ହେ ଭରତ ଶ୍ରେଷ୍ଠ ! ପୂର୍ବେ ବୁଦ୍ଧିମାନ ମାର୍କଣ୍ଡେୟ କହିଥିଲେ, ଇହଲୋକରେ ସର୍ବଦା ବ୍ରହ୍ମବାଦୀ-ବ୍ରାହ୍ମଣମାନେ ପିତୃକାର୍ଯ୍ୟରେ ବରଣୀୟ । ୭ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ଯେଉଁମାନେ ଅପରିଚିତ, ସ୍ୱ ସମ୍ପର୍କୀୟ, ବିବିଧ ବିଦ୍ୟାବିଶାରଦ, ସମ୍ବନ୍ଧୀ, ତପଃପରାୟଣ ଓ ଯଜ୍ଞଶୀଳ ସେମାନଙ୍କୁ କେଉଁ ନିମିତ୍ତ ପାତ୍ର ବୋଲି ସ୍ୱୀକାର କରାଯାଏ ? । ୮ ।

ଭୀଷ୍ମ କହିଲେ, ହେ ଧର୍ମରାଜ ! ଅପରିଚିତ, ସ୍ୱସମ୍ପର୍କୀୟ ଓ ତପଃ-ପରାୟଣ ବ୍ୟକ୍ତି ସତ୍‌କୁଳ ସମ୍ଭୂତ, ଯାଗ-ଯଜ୍ଞାଦିର ଅନୁଷ୍ଠାତା, ବିଦ୍ୱାନ, ଅନୃଶଂସ, ଲଜ୍ଜାଶୀଳ, ସରଳ ଓ ସତ୍ୟବାଦୀ ଏବଂ ବିଦ୍ୱାନ ଓ ଯଜ୍ଞଶୀଳ ବ୍ୟକ୍ତି କୁଳୀନ ଅନୃଶଂସ ଲଜ୍ଜାସମ୍ପନ୍ନ ସରଳ ଓ ସତ୍ୟବାଦୀ ହେଲେ ଦୈବ ଓ ପିତୃ ସମ୍ବନ୍ଧ କାର୍ଯ୍ୟରେ ଯଥାର୍ଥ ପାତ୍ର ବୋଲି ପରିଗୃହୀତ ହୁଅନ୍ତି । ଏହି ବିଷୟରେ ପୃଥିବୀ, କଶ୍ୟପ, ଅଗ୍ନି ଓ ମାର୍କଣ୍ଡେୟ ଏହି ଗୁରୁଜନଙ୍କର ଯେପରି ଅଭିପ୍ରାୟ ତାହା ଶ୍ରବଣ କର । ୧୦ । ପୃଥିବୀ କହିଲେ, ମୃତ୍ତିପିଣ୍ଡ ଯେଉଁପରି ମହାସାଗରରେ ନିକ୍ଷିପ୍ତ ହେଲେ ଅବିଳମ୍ବେ ନିମଗ୍ନ ହୁଏ, ଯାଜନ, ଅଧ୍ୟାପନ ଓ ପ୍ରତିଗ୍ରହ ସମ୍ପନ୍ନ ବ୍ରାହ୍ମଣଙ୍କଠାରେ ସମସ୍ତ ଦୁଷ୍କାର୍ଯ୍ୟ ସେହିପରି ବିଲୁପ୍ତ ହୁଏ । ୧୧ ।

ହେ ନୃପ ! କାଶ୍ୟପ କହିଲେ, ଯେଉଁ ବିପ୍ର ସୁଶୀଳ ନୁହନ୍ତି, ତାହାଙ୍କୁ ଷଡ଼ଙ୍ଗ ଯୁକ୍ତ ବେଦ, ସାଂଖ୍ୟ, ପୁରାଣ ଓ କୁଳୀନତା, ଏମାନେ କଦାପି ଉଦ୍ଧାର କରି ପାରନ୍ତି ନାହିଁ । ୧୨ ।

ଅଗ୍ନି କହିଲେ, ଯେଉଁ ବ୍ରାହ୍ମଣ ଅଧ୍ୟୟନଶୀଳ ହୋଇ ଆପଣାକୁ ପଣ୍ଡିତ ବୋଲି ଅଭିମାନ କରେ ଏବଂ ଯେ ସ୍ୱେଚ୍ଛାରେ ସ୍ୱୀୟ ବିଦ୍ୟା ବଳରେ ଅନ୍ୟର ଯଶ ବିଲୁପ୍ତ କରେ, ସେ ଉତ୍କୃଷ୍ଟ ଧର୍ମରୁ ନିଶ୍ଚୟ ପରିଭ୍ରଷ୍ଟ ହୁଏ, ସତ୍ୟ ପ୍ରୟୋଗ ବିଷୟରେ ଅସମର୍ଥ ହୁଏ ଏବଂ ସେ କଦାପି ଅକ୍ଷୟ ଲୋକ ଲଭ କରିପାରେ ନାହିଁ । ୧୩ ।

ମାର୍କଣ୍ଡେୟ କହିଲେ, ସହସ୍ର ଅଶ୍ୱମେଧ ଓ ସତ୍ୟକୁ ଗୋଟିଏ ତୁଳା ଦଣ୍ଡରେ ପରିମାଣ କଲେ ସହସ୍ର ଅଶ୍ୱମେଧ ସତ୍ୟର ଅର୍ଦ୍ଧାଂଶ ହେବ କି ନାହିଁ ସନ୍ଦେହ । ଅତଏବ ସର୍ବଦା ସତ୍ୟ ପରାୟଣ ହେବା ଅପେକ୍ଷା ବ୍ରାହ୍ମଣର ଅନ୍ୟ କିଛି ଶ୍ରେୟସ୍କର ନାହିଁ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ପୃଥିବୀ, କାଶ୍ୟପ, ଅଗ୍ନି ଓ ମହାତେଜା ଭୃଗୁବଂଶ ଜାତ ଦୀର୍ଘାୟୁ ମାର୍କଣ୍ଡେୟ ଏହିମାନେ ବ୍ରାହ୍ମଣ ବିଷୟରେ ଏହିପରି ନିଜ ନିଜ ଅଭିପ୍ରାୟ ବ୍ୟକ୍ତ କରି ସ୍ୱସ୍ଥାନକୁ ପ୍ରସ୍ଥାନ କଲେ । ୧୫ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ଶ୍ରାଦ୍ଧରେ ଯଦି ବ୍ରହ୍ମଚର୍ଯ୍ୟ ବ୍ରତପରାୟଣ ବ୍ରାହ୍ମଣ ସ୍ୱୟଂ ପ୍ରାର୍ଥନା କରି ଶ୍ରାଦ୍ଧୀୟ ଦ୍ରବ୍ୟ ଭୋଜନ କରେ ତେବେ ସେହି ଶ୍ରାଦ୍ଧର ଫଳ ଅଖଣ୍ଡ ହୁଏ କି, ନାହିଁ ? । ୧୬ ।

ଭୀଷ୍ମ କହିଲେ, ହେ ରାଜେନ୍ଦ୍ର ! ଯେଉଁ ବ୍ରାହ୍ମଣ ଦ୍ୱାଦଶ ବର୍ଷ ବ୍ରହ୍ମଚର୍ଯ୍ୟ ବ୍ରତ ଅନୁଷ୍ଠାନ ପୂର୍ବକ ବେଦ ବେଦାଙ୍ଗରେ ପାରଦର୍ଶୀ ହୋଇ ଥାଆନ୍ତି, ସେମାନେ ଯଦି ଶ୍ରାଦ୍ଧକାଳରେ ପ୍ରାର୍ଥନା କରି ପିତୃ ଉଦ୍ଦେଶ୍ୟରେ ପ୍ରଦତ୍ତ ଦ୍ରବ୍ୟ ଭକ୍ଷଣ କରନ୍ତି, ତେବେ ତାହାଙ୍କର ବ୍ରତ ଲୋପ ପ୍ରାପ୍ତହୁଏ । ଶ୍ରାଦ୍ଧର କୌଣସି ଅଙ୍ଗହାନି ହୁଏ ନାହିଁ । ୧୭ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ପଣ୍ଡିତଗଣ ଧର୍ମକୁ ନିତାନ୍ତ ଜଟିଳ ଓ ଦୂରବଗାହ ବୋଲି ନିର୍ଦ୍ଦେଶ କରନ୍ତି । ଅତଏବ ଆପଣ ମୀମାଂସା କରି ଯଥାର୍ଥ ଧର୍ମ କାହାକୁ କୁହାଯାଏ, ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୧୮ ।

ଭୀଷ୍ମ କହିଲେ, ହେ ରାଜେନ୍ଦ୍ର ! ଅହିଂସା, ସତ୍ୟ, ଅକ୍ରୋଧ, ଅନୃଶଂସତା, ଇନ୍ଦ୍ରିୟ ନିଗ୍ରହ ଓ ସରଳତା ଏହି କେତେକ ଧର୍ମର ପ୍ରକୃତ ଲକ୍ଷଣ ବୋଲି ନିଶ୍ଚିତ ହୋଇଅଛି । ୧୯ । ହେ ରାଜେନ୍ଦ୍ର ! ଯେଉଁମାନେ ଧର୍ମକୁ ପ୍ରଶଂସା କରି ଏହି ପୃଥିବୀରେ ପର୍ଯ୍ୟଟନ କରନ୍ତି, ଅଥଚ ସ୍ୱୟଂ ସେହି ସମସ୍ତ ଧର୍ମ ପ୍ରତିପାଳନ ନ କରନ୍ତି ଓ ନାନାଧର୍ମରେ ଅଭିରତ ହୁଅନ୍ତି, (୨୦) ସେହିମାନଙ୍କୁ ଯେଉଁ ବ୍ୟକ୍ତି ସୁବର୍ଣ୍ଣ, ରତ୍ନ, ଗୋ ଅବା ଅଶ୍ୱ ପ୍ରଦାନ କରନ୍ତି, ସେ ନରକରେ ବାସ କରି ଦଶବର୍ଷ ପର୍ଯ୍ୟନ୍ତ ବିଷ୍ଠା ଭୋଜନ କରନ୍ତି । ୨୧ । ଏବଂ ମୃତ ଗୋ ମହିଷ ପ୍ରଭୃତିଙ୍କର ମାଂସ ଭୋଜୀ ହୁଅନ୍ତି, ଯେଉଁମାନେ ବ୍ରାହ୍ମଣମାନଙ୍କୁ ସ୍ୱଭାବରେ ହିଂସା କରନ୍ତି, ଯେଉଁ ବ୍ରାହ୍ମଣ-ମାନେ ପରକୀୟ କୃତ ଅବା ଅକୃତ ପାପକର୍ମକୁ ରାଗ ମୋହର ବଶୀଭୂତ ହୋଇ ପ୍ରକାଶ କରନ୍ତି, ସେମାନେ ମଧ ମେଦ ଓ ବିଷ୍ଠା ଭକ୍ଷଣ କରନ୍ତି । । ୨୨ । ହେ ରାଜେନ୍ଦ୍ର ! ଯେଉଁ ଗୃହସ୍ଥ ପଞ୍ଚଯଜ୍ଞ ଅନୁଷ୍ଠାନ ସମୟରେ ଅଭ୍ୟାଗତ, ବ୍ରହ୍ମଚାରୀ, ବ୍ରାହ୍ମଣଙ୍କୁ ପରିତୁଷ୍ଟ କରି ଆହାର ପ୍ରଦାନ କରନ୍ତି, ସେ ଅଶୁଭ ଲୋକମାନଙ୍କୁ ପ୍ରାପ୍ତ ହୁଅନ୍ତି । ୨୩ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! କାହାକୁ ଉତ୍କୃଷ୍ଟ ବ୍ରହ୍ମଚର୍ଯ୍ୟ କୁହାଯାଏ ? ଉତ୍କୃଷ୍ଟ ଧର୍ମ ଲକ୍ଷଣ କି ପ୍ରକାର ଅଟେ ଓ ଅତି ଉତ୍କୃଷ୍ଟ ଶୌଚ କି ପ୍ରକାର ଅଟେ ? ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୨୪ ।

ଭୀଷ୍ମ କହିଲେ, ହେ ତାତ ! ମଦ୍ୟ ମାଂସ ପରିତ୍ୟାଗ ଉତ୍କୃଷ୍ଟ ବ୍ରହ୍ମଚର୍ଯ୍ୟ, ମର୍ଯ୍ୟାଦାସ୍ଥିତ, ବେଦ ପ୍ରତିପାଦିତ ଧର୍ମ ଶ୍ରେଷ୍ଠ ଧର୍ମ, ବିଷୟ-ମାନଙ୍କରୁ ଇନ୍ଦ୍ରିୟ ନିବୃତ୍ତି ପରମ ଶୌଚ ଅଟେ । ୨୫ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ମନୁଷ୍ୟ କେଉଁ ସମୟରେ ଧର୍ମାଚରଣ କରିବେ, କେଉଁ ସମୟରେ ଅର୍ଥ ଉପାର୍ଜନ କରିବେ ଓ କେଉଁ ସମୟରେ ବିଷୟ ଭୋଗଦ୍ୱାରା ସୁଖୀ ହେବେ, ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୨୬ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ମନୁଷ୍ୟ ପୂର୍ବାହ୍ଣ ସମୟରେ ଅର୍ଥ ଉପାର୍ଜନ କରିବେ, ମଧ୍ୟାହ୍ନ ସମୟରେ ଧର୍ମ ସଞ୍ଚୟ କରିବେ ଓ ଅପରାହ୍ଣ

ସମୟରେ ବିଷୟ ଭୋଗରେ ସୁଖୀ ହେବେ । ଧର୍ମ, ଅର୍ଥ ଓ କାମ ଏହି ତିନି ମଧ୍ୟରୁ ଗୋଟିକ ଉପରେ ନିରନ୍ତର ନିର୍ଭର କରି ରହିବାର ଗୃହସ୍ଥ ବ୍ୟକ୍ତି ପକ୍ଷରେ କଦାପି ଉଚିତ ନୁହେଁ । ବ୍ରାହ୍ମଣବୃନ୍ଦଙ୍କର ସମ୍ମାନିତା, ଗୁରୁବ୍ୟକ୍ତିମାନଙ୍କ ପୂଜା ଓ ସମସ୍ତ ପ୍ରାଣୀ ସମୂହରେ ସରଳ ବ୍ୟବହାର କରିବାର ଉଚିତ । ଅନୁଦ୍ଧତ ସ୍ୱଭାବ ଓ ପ୍ରିୟବାଦୀ ହେବାର ଅତ୍ୟାବଶ୍ୟକ । ୨୮ । ଧର୍ମାଧିକରଣରେ ମିଥ୍ୟା ବାକ୍ୟ କହିଲେ, ରାଜାଙ୍କ ନିକଟରେ, ଶଠତା ବ୍ୟବହାର କଲେ ଓ ଗୁରୁଜନଙ୍କ ନିକଟରେ ମିଥ୍ୟା-ବାକ୍ୟ କହିଲେ ମନୁଷ୍ୟ ବ୍ରହ୍ମହତ୍ୟା ସଦୃଶ ପାପରେ ଲିପ୍ତହୁଏ । ୨୯ । ନରେନ୍ଦ୍ରମାନଙ୍କୁ ଓ ଗୋ ସମୂହଙ୍କୁ ପ୍ରହାର କରିବାର ଉଚିତ ନୁହେଁ । ଯେଉଁ ବ୍ୟକ୍ତି ଉକ୍ତ ଉଭୟ କାର୍ଯ୍ୟ କରନ୍ତି, ସେ ଭ୍ରୂଣ ହତ୍ୟା ପାତକରେ ଲିପ୍ତ ହୁଅନ୍ତି । ୩୦ । କଦାପି ଅଗ୍ନି ପରିତ୍ୟାଗ କରିବ ନାହିଁ ଓ ବେଦ ପରିତ୍ୟାଗ କରିବ ନାହିଁ ଏବଂ ବ୍ରାହ୍ମଣଙ୍କଠାରେ ଆକ୍ରୋଶ ପ୍ରକାଶ କରିବ ନାହିଁ । ଯେଉଁ ବ୍ୟକ୍ତି ଏହି ତିନି କାର୍ଯ୍ୟ କରନ୍ତି, ସେ ବ୍ରହ୍ମହତ୍ୟା ପାତକରେ ଲିପ୍ତ ହୁଅନ୍ତି । ୩୧ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ବ୍ରାହ୍ମଣ କିଦୃଶ ଗୁଣଶାଳୀ ହେଲେ ସାଧୁ ବୋଲି ପରିଗଣିତ ହୁଅନ୍ତି, କିଦୃଶ ବ୍ରାହ୍ମଣମାନଙ୍କୁ ଧନ ଦାନ କଲେ ମହାଫଳ ହୁଏ ଓ କିଦୃଶ ବ୍ରାହ୍ମଣମାନଙ୍କୁ ଭୋଜନ ଦେବାର ଉଚିତ । ଏହି ସବୁ ବିଷୟ ଆମ୍ଭମାନଙ୍କୁ କହିବା ହେଉନ୍ତୁ । ୩୨ ।

ଭୀଷ୍ମ କହିଲେ, ହେ ମହାରାଜ । ଯେଉଁ ବ୍ରାହ୍ମଣଗଣ, କ୍ରୋଧଶୂନ୍ୟ, ଧାର୍ମିକ, ସତ୍ୟପରାୟଣ ଜିତେନ୍ଦ୍ରିୟ ଅଟନ୍ତି ସେମାନେ ସାଧୁ ବୋଲି ପରିଚିତ ହୁଅନ୍ତି । ସେମାନଙ୍କୁ ଦାନ କଲେ ମହାଫଳ ହୁଏ ।୩୩। ଯେଉଁ-ମାନେ ଅହଂକାରଶୂନ୍ୟ, ସର୍ବ ସହିଷ୍ଣୁ, ସର୍ବଭୂତର ହିତୈଷୀ, ମିଷ୍ଟ ପରାୟଣ, ଦୃଢ଼ବ୍ରତ ଓ ଜିତେନ୍ଦ୍ରିୟ ଅଟନ୍ତି, ସେମାନଙ୍କୁ ଦାନ କଲେ ମହାଫଳ ଲବ୍ଧହୁଏ ।୩୪। ଯେଉଁମାନେ ଲୋଭଶୂନ୍ୟ, ଶୁଚି, ବିଦ୍ୱାନ, ଲଜ୍ଜା-ଶୀଳ, ସତ୍ୟବାଦୀ ଓ ସ୍ୱକର୍ମ ପରାୟଣ ସେହିମାନଙ୍କୁ ଦାନକଲେ ମହାଫଳ ହୁଏ । ୩୫ । ଯେଉଁ ବ୍ରାହ୍ମଣ ଚୃରିବେଦ ଓ ବେଦାଙ୍ଗମାନଙ୍କୁ ଅଧ୍ୟୟନ

କରିଥାଆନ୍ତି ଓ ଯେ ଷଡ଼ବିଧ କର୍ମ ଅର୍ଥାତ୍ ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ ଓ ପ୍ରତିଗ୍ରହ ଏହି ଛଅ କର୍ମରେ ପ୍ରବୃତ୍ତ ହୋଇଥାଆନ୍ତି, ତାହାଙ୍କୁ ଋଷିମାନେ ଦାନପାତ୍ର ବୋଲି ଜାଣନ୍ତି । ୩୬ । ଯେଉଁମାନେ ଏତାଦୃଶ ଗୁଣଶାଳୀ ସେହିମାନଙ୍କୁ ଦାନକଲେ ମହାଫଳ ହୁଏ । ପ୍ରଦାନ-କର୍ତ୍ତା ଗୁଣବାନ ବିପ୍ରଙ୍କୁ ଦାନକଲେ ସହସ୍ରଗୁଣ ଫଳପ୍ରାପ୍ତ ହୁଅନ୍ତି । ୩୭ । ପ୍ରଜ୍ଞାବାନ, ଶାସ୍ତ୍ରଜ୍ଞାନ ପରିପୂର୍ଣଶୀଳ, ସ୍ୱଭାବଯୁକ୍ତ ଗୋଟିଏ ବିପ୍ରଙ୍କୁ ଦାନ-କଲେ ସେ ଦାତାଙ୍କର ସମସ୍ତ କୁଳ ଉଦ୍ଧାର କରନ୍ତି । ୩୮ ।

ଅତଏବ ପୂର୍ବୋକ୍ତ ବ୍ରାହ୍ମଣଙ୍କୁ ଗୋ, ଅଶ୍ୱ, ଧନ, ଅନ୍ନ ଓ ବିବିଧ ବସ୍ତୁ ପ୍ରଦାନକଲେ ଦାତା ଶୋଚ୍ୟ ହୁଏ ନାହିଁ । ୩୯ । ଏବଂ ଉକ୍ତ ରୂପ ପାତ୍ରଙ୍କୁ ଦାନକଲେ ଦାତା ପରଲୋକରେ ଅନୁତାପ କରନ୍ତି ନାହିଁ । ଏତଏବ ଉଭୟ ପାତ୍ରରେ ପ୍ରତିପାଦନ କରିବ । ୪୦ । ସଦ୍‌ଗୁଣଶାଳୀ ସାଧୁବ୍ୟକ୍ତି ଯଦି ଦୂରରେ ଅବସ୍ଥାନ କରିଥାନ୍ତି, ତେବେ ତାହାଙ୍କୁ ଯତ୍ନପୂର୍ବକ ସେଠାରୁ ଆଣି ସର୍ବପ୍ରକାରରେ ତାହାଙ୍କର ସତ୍କାର କରିବାର ଉଚିତ । । ୪୧ ।

ଇତି ବହୁ ପ୍ରାଶ୍ନିକେ ଦ୍ୱାବିଂଶତିତମ ଅଧ୍ୟାୟ ସମାପ୍ତ । ୨୨ ।



## ତ୍ରୟୋବିଂଶତିତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ପିତାମହ ! ସୁରର୍ଷିଗଣ ଶ୍ରାଦ୍ଧ କାଳରେ ଦୈବ ଓ ପିତୃ କାର୍ଯ୍ୟରେ ଯାହା ବିଧାନ କରିଅଛନ୍ତି, ତାହା ଶ୍ରବଣ କରିବାକୁ ଆମ୍ଭେ ଇଚ୍ଛା କରୁଅଛୁଁ, ଆପଣ କହିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ମଙ୍ଗଳାଚାର ସମ୍ପନ୍ନ ଓ ପବିତ୍ର ହୋଇ ପରମ ଯତ୍ନରେ ଆଦର ସହିତ ପୂର୍ବାହ୍ଣରେ ଦୈବକାର୍ଯ୍ୟ,

ଅପରାହ୍ଣରେ ପିତୃକାର୍ଯ୍ୟ ଓ ମଧ୍ୟାହ୍ନରେ ମନୁଷ୍ୟମାନଙ୍କ ନିମିତ୍ତ ଦାନ କରିବାର ମନୁଷ୍ୟର ଉଚିତ । ଅକାଳରେ ଯେଉଁ ଦ୍ରବ୍ୟ ପ୍ରଦତ୍ତ ହୁଏ ତାହାକୁ ରାକ୍ଷସୀୟ ଭାଗ ବୋଲି ଜାଣିବ । ୩ । ଯେଉଁ ଦ୍ରବ୍ୟ ଲଙ୍ଘିତ, ଅବଲୀଢ଼ କଳହପୂର୍ବକ କୃତ ବା ରଜସ୍ୱଳା ଦ୍ୱାରା ସ୍ପୃଷ୍ଟ, ତାହା ରାକ୍ଷସୀୟ ଭାଗ ଅଟେ । ୪ । ହେ ଭାରତ ! ଯେଉଁ ଦ୍ରବ୍ୟ ଅନେକଙ୍କ ଉଦ୍ଦେଶ୍ୟରେ ସମ୍ପାଦିତ, ତାହାକୁ ଏକ ଅବ୍ରତ ବ୍ୟକ୍ତି ଯଦି ଭୋଜନ କରେ, ଯେଉଁ ଦ୍ରବ୍ୟ କୁକ୍କୁରଦ୍ୱାରା ଦୃଷ୍ଟ ଅଥବା ତାହାର ଉଚ୍ଛିଷ୍ଟ ସେହି ଦ୍ରବ୍ୟ ରାକ୍ଷସୀୟ ଭାଗ ଅଟେ । ୫ । ଯେଉଁ ଦ୍ରବ୍ୟ କେଶ, କୀଟ, ନେତ୍ରଜଳ ଓ କ୍ଷୁତଦ୍ୱାରା ଦୂଷିତ ଏବଂ କୁକ୍କୁରମାନଙ୍କର ଦ୍ୱାରା ଅବେକ୍ଷିତ ଓ ଅବଧୂତ ତାହା ରାକ୍ଷସୀୟ ଭାଗ ଅଟେ । ୬ ।

ହେ ଭାରତ ! ଯେଉଁ ଅନ୍ନ ଶ୍ରାଦ୍ଧରେ ମନ୍ତ୍ର କ୍ରିୟା ଓ ଆହୁତି-ପ୍ରଦା ବ୍ୟତିରେକେ ପରିବେଷ୍ଟ ଓ ଦୁରାଚାର ବା ଶୂଦ୍ରଙ୍କ ଭୋଜନ ନିମିତ୍ତ ପ୍ରଦତ୍ତ ତାଦୃଶ ଅନ୍ନ ରାକ୍ଷସୀୟ ଭାଗ ଅଟେ । ୭ । ପରର ଉଚ୍ଛିଷ୍ଟ ଓ ପରଭୁକ୍ତ ଅନ୍ନ ଏବଂ ଦେବତା ଅତିଥି ଓ ବାଳକମାନଙ୍କୁ ବଞ୍ଚନା କରି ଯେଉଁ ଅନ୍ନ ସ୍ୱୟଂ ଭୋଜନ କରାଯାଏ, ତାହା ରାକ୍ଷସୀୟ ଭାଗ ଅଟେ । ୮ । ହେ ନରଶ୍ରେଷ୍ଠ ! ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନିବର୍ଣ୍ଣ ମନ୍ତ୍ରହୀନ ଓ କ୍ରିୟାହୀନ ଯେଉଁ ଦ୍ରବ୍ୟ ଶ୍ରାଦ୍ଧରେ ଦାନ କରନ୍ତି, ତାହା ରାକ୍ଷସୀୟ ଭାଗ ଅଟେ । ୯ । ଘୃତ ଆହୁତି ବ୍ୟତିରେକେ ଯାହା କିଛି ପ୍ରଦତ୍ତ ହୁଏ ଓ ଦୁରାଚାରମାନଙ୍କ ଆହାର ନିମିତ୍ତ ଯାହା ପ୍ରଦତ୍ତ ହୋଇଥାଏ, ତାହା ରାକ୍ଷସୀୟ ଭାଗ ଅଟେ । ୧୦ ।

ହେ ଭରତଶ୍ରେଷ୍ଠ ! ରାକ୍ଷସମାନଙ୍କ ଭାଗର ବିବରଣ କହିଲୁଁ । ଏଥି ଉତ୍ତାରେ ଯେପରି ବ୍ରାହ୍ମଣଙ୍କୁ ଦାନ କରିବାର ଉଚିତ ତାହା କହୁଅଛୁଁ ଶ୍ରବଣ କର । ୧୧ ।

ହେ ରାଜନ୍ ! ଯେଉଁ ବିପ୍ରମାନେ ପତିତ, ଜଡ଼, ଅଥବା ଉନ୍ମତ୍ତ, ସେମାନଙ୍କୁ ଦେବକାର୍ଯ୍ୟ ଅଥବା ପିତୃ କାର୍ଯ୍ୟରେ ନିମନ୍ତ୍ରଣ କରିବ ନାହିଁ । । ୧୨ । ହେ ରାଜନ୍ ! ଯେଉଁ ବିପ୍ର ଶ୍ୱେତ କୁଷ୍ଠ ରୋଗୀ, କ୍ଳୀବ,

କୁଷ୍ଠ ରୋଗୀ, ଯକ୍ଷ୍ମାରୋଗଗ୍ରସ୍ତ, ଅପସ୍ମାରୀ ବା ଅନ୍ଧ, ତାହାଙ୍କୁ ନିମନ୍ତ୍ରଣ କରିବ ନାହିଁ । ୧୩ । ହେ ରାଜନ୍ ! ଚିକିତ୍ସକ ଗଣ, ଦେବଳକ, ବୃଥା ନିୟମଧାରୀ ଅର୍ଥାତ୍ କପଟୀ, ସୋମ ବିକ୍ରେତାମାନଙ୍କୁ ନିମନ୍ତ୍ରଣ କରିବ ନାହିଁ । ୧୪ । ହେ ରାଜନ୍ ! ଗାୟକ, ନର୍ତ୍ତକ, କୁର୍ଦ୍ଦନ ପରାୟଣ, ବାଦ୍ୟ-ବାଦକ, କଥକ ଓ ଯୋଦ୍ଧା ଏହିମାନଙ୍କୁ ନିମନ୍ତ୍ରଣ କରିବ ନାହିଁ । ୧୫ । ହେ ରାଜନ୍ ! ଶୂଦ୍ର ଯାଜ୍ୟ, ଶୂଦ୍ରମାନଙ୍କ ଅଧ୍ୟାପକ ବା ଶୂଦ୍ରମାନଙ୍କ ଦାସ ଏହିମାନଙ୍କୁ ନିମନ୍ତ୍ରଣ କରିବ ନାହିଁ । ୧୬ ।

ହେ ରାଜନ ! ଭାରତ ! ଯେଉଁ ବିପ୍ର ବେତନଭୋଗୀ ହୋଇ ଅଧ୍ୟାପନା କାର୍ଯ୍ୟ କରନ୍ତି ଓ ବେତନ ଭୋଗୀ ହୋଇ ଅଧ୍ୟୟନ କରନ୍ତି, ସେହି ଦ୍ୱିବିଧ ବ୍ରାହ୍ମଣ ବ୍ରହ୍ମ ବିକ୍ରେତା ଶ୍ରାଦ୍ଧର ଉପଯୁକ୍ତ ନୁହନ୍ତି, ଅତଏବ ତାଦୃଶ ଦ୍ୱିବିଧ ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରିବ ନାହିଁ । ୧୭ ।

ହେ ରାଜନ୍ ! ଯେଉଁ ଅଗ୍ରଣୀ ବିପ୍ର ଅର୍ଥାତ୍ ଶ୍ରେଷ୍ଠ ବ୍ରାହ୍ମଣ ଶୂଦ୍ରାସ୍ତ୍ରୀର ସ୍ୱାମୀ, ସେ ସର୍ବଶାସ୍ତ୍ର ବିଶାରଦ ହେଲେସୁଦ୍ଧା ନିମନ୍ତ୍ରଣର ଯୋଗ୍ୟ ହୁଅନ୍ତି ନାହିଁ । ୧୮ ।

ହେ ରାଜନ୍ ! ଯେଉଁ ବିପ୍ରଗଣ ଶ୍ରୌତସ୍ମାର୍ତ୍ତକର୍ମ ରହିତ ଅର୍ଥାତ୍ ବେଦୋକ୍ତ କର୍ମ ବିବର୍ଜିତ, ଯେଉଁମାନେ ମୃତ, ନିର୍ଯ୍ୟାତକ, ଯେଉଁମାନେ ସ୍ୱକର୍ମ ତ୍ୟାଗୀ, ଚୌର ଓ ପତିତ ତାଦୃଶ ବିପ୍ର ନିମନ୍ତ୍ରଣର ଅଯୋଗ୍ୟ ଅଟନ୍ତି । ୧୯ ।

ହେ ଭାରତ ! ଯେଉଁ ବିପ୍ରମାନଙ୍କର କୁଳଶୀଳ ଜଣା ନଥିବ, ଯେଉଁମାନେ ଗ୍ରାମଣୀ ଅର୍ଥାତ୍ ଗ୍ରାମର ଅଧିପତି ପୁତ୍ରିକା ପୁତ୍ର ପୁତ୍ର, ଅର୍ଥାତ ଏହାଠାରେ ଉତ୍ପନ୍ନ ପୁତ୍ର ମୋହର ଏହି ନିୟମରେ ଯେ ଦତ୍ତ ହୋଇଥାଏ, ତାହାଠାରୁ ଜାତ ହୁଏ ଯେଉଁ ପୁତ୍ର, ସେମାନେ ଶ୍ରାଦ୍ଧରେ ନିମନ୍ତ୍ରଣର ଯୋଗ୍ୟ ହୁଅନ୍ତି ନାହିଁ ।୨୦। ହେ ରାଜନ ! ଯେଉଁ ବିପ୍ର ଋଣ କରିଥାଆନ୍ତି, ଯେ ଧନ ବୃଦ୍ଧି ନିମିତ୍ତ କଳାନ୍ତରକୁ ମୂଳରୂପରେ ଗ୍ରହଣ କରି ତାହାର କଳାନ୍ତର ନିଅନ୍ତି ଓ ଯେଉଁମାନେ ପ୍ରାଣୀ ବିକ୍ରୟ କରି ଜୀବିକା ଚଳାନ୍ତି, ସେମାନେ ନିମନ୍ତ୍ରଣର

ଯୋଗ୍ୟ ହୁଅନ୍ତି ନାହିଁ । ୨୧ । ହେ ଭରତ ଶ୍ରେଷ୍ଠ ! ଯେଉଁ ବ୍ରାହ୍ମଣମାନେ ସ୍ତ୍ରୀ ଧନରେ ଜୀବିକାନିର୍ବାହ କରନ୍ତି, ଯେଉଁମାନେ ବେଶ୍ୟାମାନଙ୍କ ସଙ୍ଗେ ବିହାର କରନ୍ତି ଓ ଯେଉଁମାନେ ସନ୍ଧ୍ୟା ବନ୍ଦନାଦି କାର୍ଯ୍ୟ ନ କରନ୍ତି, ସେମାନେ ଶ୍ରାଦ୍ଧରେ ନିମନ୍ତ୍ରଣର ଯୋଗ୍ୟ ନୁହନ୍ତି । ହେ ଭରତ ଶ୍ରେଷ୍ଠ ! ପିତୃକାର୍ଯ୍ୟ ଓ ଦେବ କାର୍ଯ୍ୟରେ ଏତାଦୃଶ ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରିବାର ନିଷିଦ୍ଧ ତାହା କହିଲୁଁ । ଅତଃପର ପୁନଶ୍ଚ ଦାତା ଓ ପ୍ରତିଗ୍ରହୀତାଙ୍କ ନିଷିଦ୍ଧ ବିଷୟ ଶ୍ରବଣ କର । ୨୩ ।

ହେ ରାଜନ୍ ! ଯେଉଁ ବିପ୍ରଗଣ ବ୍ରତାଚରଣ କରନ୍ତି, ଯେଉଁମାନେ ଗୁଣଶାଳୀ, କର୍ଷକ, ସାବିତ୍ରୀଜ୍ଞ ଓ କ୍ରିୟାବନ୍ତ ସେହିମାନେ ନିମନ୍ତ୍ରଣର ଯୋଗ୍ୟ ହେବେ । ୨୪ । ହେ ତାତ ! କୁଳୀନ ବ୍ରାହ୍ମଣ ଯୁଦ୍ଧରେ କ୍ଷତ୍ରିୟ ଧର୍ମ ଆଚରଣ କଲେ ସୁଦ୍ଧା ତାହାଙ୍କୁ ନିମନ୍ତ୍ରଣ କରିବାର ଉଚିତ । କିନ୍ତୁ ଯେଉଁ ବିପ୍ର ବଣିକବୃତ୍ତି ଅବଲମ୍ବନ କରିଥାଆନ୍ତି, ତାହାଙ୍କୁ ଶ୍ରାଦ୍ଧରେ ନିମନ୍ତ୍ରଣ କରିବ ନାହିଁ । ୨୫ ।

ହେ ରାଜନ୍ । ଯେଉଁ ବିପ୍ର ଅଗ୍ନି ହୋତ୍ର ବ୍ରତ ପରାୟଣ ଗ୍ରାମବାସୀ ଚୌର୍ଯ୍ୟ ବୃତ୍ତି ବିହୀନ ଓ ଅତିଥି ସତ୍କାର ପରାୟଣ ସେ ନିମନ୍ତ୍ରଣର ଉପଯୁକ୍ତ ପାତ୍ର । ୨୬ । ହେ ରାଜନ୍ ! ଭରତ ଶ୍ରେଷ୍ଠ । ଯେଉଁ ବିପ୍ର ତ୍ରିକାଳରେ ସାବିତ୍ରୀ ଜପ କରନ୍ତି, କ୍ରିୟାବାନ୍ ଓ ଭିକ୍ଷାବୃତ୍ତିଦ୍ୱାରା ଜୀବିକା ନିର୍ବାହ କରନ୍ତି, ସେ ନିମନ୍ତ୍ରଣର ଉପଯୁକ୍ତ ପାତ୍ର । ୨୭ । ହେ ରାଜନ୍ ! ଯେଉଁ ବିପ୍ର ପୂର୍ବାହ୍ନ ଓ ମଧ୍ୟାହ୍ନ ସମୟରେ ଧନ ଉପାର୍ଜ୍ଜନ କରି ଧନାଢ଼୍ୟ ହୋଇ ଥାଆନ୍ତି କିନ୍ତୁ ସେ ତାହା ଶୀଘ୍ର ବ୍ୟୟ କରି ପରଦିନ ପ୍ରାତଃ ସମୟରେ ଦରିଦ୍ର ହୋଇ ଥାଆନ୍ତି, ଯେ ଅହିଂସ୍ର ଓ ବିଦ୍ୟାବିଶିଷ୍ଟ ପ୍ରଭୃତି ଗୁଣଶୂନ୍ୟ କିମ୍ବା ଅଦାତା ହେଲେ ସୁଦ୍ଧା ତାଦୃଶ ବିପ୍ର ନିମନ୍ତ୍ରଣର ଉପଯୁକ୍ତ ପାତ୍ର । ୨୮ । ହେ ରାଜନ୍ ! ଭରତ ଶ୍ରେଷ୍ଠ ! ଯେଉଁ ବିପ୍ର ନିଷ୍କପଟ ଅଥବା ନିଷ୍ପାପ କିମ୍ବା ସ୍ୱେଚ୍ଛାନୁସାରେ ଧର୍ମାଧର୍ମ ବିଷୟର ବିଚାରର କର୍ତ୍ତା କି ଶୁଷ୍କତର୍କ ପରାୟଣ, ଯେ ଗୃହରେ ଧନଥିଲେ ସୁଦ୍ଧା ଭିକ୍ଷାବୃତ୍ତି ଅବଲମ୍ବନ କରନ୍ତି, ତାଦୃଶ ବ୍ରାହ୍ମଣ ନିମନ୍ତ୍ରଣର ଉପଯୁକ୍ତ ପାତ୍ର । ୨୯ ।

ହେ ରାଜନ୍ ! ଯେଉଁ ବିପ୍ର ପ୍ରଥମରେ ଅଗ୍ରଜ, ଧୂର୍ତ୍ତ, ଜ୍ୟୋତିଷ ବ୍ୟବସାୟୀ, ପ୍ରାଣୀ ବିକ୍ରେତା ଓ ବାଣିଜ୍ୟ ବ୍ୟବସାୟୀ ହୋଇ ପଶ୍ଚାତ୍ ଯଜ୍ଞରେ ସୋମରସ ପାନ କରନ୍ତି, ତାଦୃଶ ବ୍ରାହ୍ମଣ ନିମନ୍ତ୍ରଣର ଉପଯୁକ୍ତ ପାତ୍ର ଅଟନ୍ତି । ୩୦ । ହେ ରାଜନ୍ ! ଯେଉଁ ବିପ୍ର ପ୍ରଥମରେ ଦାରୁଣ ଦୁଷ୍କର୍ମ ଦ୍ୱାରା ଧନ ଉପାର୍ଜନ କରି, ପଶ୍ଚାତ୍ ତାହା ସର୍ବଦେବତା ଓ ଅତିଥିମାନଙ୍କୁ ପ୍ରଦାନ କରନ୍ତି ସେ ନିମନ୍ତ୍ରଣର ଉପଯୁକ୍ତ ହୁଅନ୍ତି । ୩୧ । ବେଦ ବିକ୍ରୟ ଦ୍ୱାରା ସମ୍ପାଦିତ, ସ୍ତ୍ରୀଦ୍ୱାରା ଅର୍ଜିତ ଏବଂ ମିଥ୍ୟା ଶପଥାଦିଦ୍ୱାରା ଅର୍ଜିତ-ଧନ ପିତୃ ପୂଜ୍ୟ ନିମିତ୍ତ ବ୍ରାହ୍ମଣମାନଙ୍କୁ ଦେବାର ଅନୁପଯୁକ୍ତ । ୩୨ ।

ହେ ଭରତ ଶ୍ରେଷ୍ଠ ! ଯେଉଁ ଦ୍ୱିଜ ଶ୍ରାଦ୍ଧ ସମାପ୍ତି ସମୟରେ ଲଜ୍ଜା ହେତୁରୁ ଶ୍ରାଦ୍ଧ ସମ ପନର ଉଚିତ ସ୍ୱଧାଦି ବାକ୍ୟ ପ୍ରୟୋଗ ନ କରନ୍ତି, ସେ ଅଧର୍ମ ପଥର ଭାଗୀ ହୁଅନ୍ତି । ୩୩ । ହେ ଯୁଧିଷ୍ଠିର ! ଯେତେବେଳେ ଉପଯୁକ୍ତ ବ୍ରାହ୍ମଣ ଦଧି, ଘୃତ, ସୋମରସ ଓ ଅରଣ୍ୟ ପଶୁର ମାଂସ ପ୍ରାପ୍ତ ହେବ, ସେହି ସମୟ ଶ୍ରାଦ୍ଧର ଉପଯୁକ୍ତ କାଳ । ତତ୍‌ସମୟରେ ଶ୍ରାଦ୍ଧ କରିବା ଉଚିତ । ୩୪ । ଶ୍ରାଦ୍ଧ ସମାପ୍ତ ହେଲେ ବ୍ରାହ୍ମଣର ସ୍ୱଧା, କ୍ଷତ୍ରିୟର ପ୍ରିୟନ୍ତାଂ, ବୈଶ୍ୟର ଅକ୍ଷୟ୍ୟ ଓ ଶୂଦ୍ରର ସ୍ୱସ୍ତି ବାକ୍ୟ ପ୍ରୟୋଗ କରିବା ଉଚିତ । ତାହାହେଲେ ପିତୃଲୋକମାନେ ତୃପ୍ତହୁଅନ୍ତି । ୩୬ । ଦୈବକାର୍ଯ୍ୟ ଅନୁଷ୍ଠାନ ସମୟରେ ବ୍ରାହ୍ମଣ ପକ୍ଷରେ ପ୍ରଣବ ଉଚ୍ଚାରଣ ପୂର୍ବକ ପୁଣ୍ୟାହ ବାକ୍ୟ, କ୍ଷତ୍ରିୟର ଉଚ୍ଚାରଣ ପ୍ରଣବବିହୀନ ପୁଣ୍ୟାହ ବାକ୍ୟ ପ୍ରୟୋଗ କରିବାର ବିଧେୟ । ୩୭ । ବୈଶ୍ୟର ପ୍ରିୟନ୍ତାଂ, ଦେବତା ଏହି ବାକ୍ୟ ପ୍ରୟୋଗ କରିବାର କର୍ତ୍ତବ୍ୟ ।

ହେ ଭରତ ! ଯୁଧିଷ୍ଠିର ! ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନି ବର୍ଣ୍ଣର ଜାତ କର୍ମାଦି କ୍ରିୟା କାଳ ମନ୍ତ୍ର ଉଚ୍ଚାରଣ ପୂର୍ବକ ସମ୍ପାଦିତ ହୁଏ । ୩୯ । ହେ ଯୁଧିଷ୍ଠିର ! ବ୍ରାହ୍ମଣର ଉପନୟନ କାଳରେ ମୌଞ୍ଜୀ ମେଖଳା, କ୍ଷତ୍ରିୟର ମୌର୍ବୀ ମେଖଳା ଓ ବୈଶ୍ୟର ବାଲ୍ୱଜାତ ତୃଣ ନିର୍ମିତ ମେଖଳା ବ୍ୟବହାର କରିବାର ଯଥାର୍ଥ ଧର୍ମ ଅଟେ । ୪୦ । ଦାତା ଓ ପ୍ରତିଗ୍ରହ କର୍ତ୍ତା ଏହି ଉଭୟଙ୍କର ଧର୍ମାଧର୍ମ ବିଷୟ ଶ୍ରବଣ କର । ବ୍ରାହ୍ମଣ ମିଥ୍ୟା ବାକ୍ୟ ପ୍ରୟୋଗ କଲେ ତାହାଙ୍କର ଯେତେ ପାପ ହେବ,

କ୍ଷତ୍ରିୟଙ୍କର ତାହା ଅପେକ୍ଷା ଚତୁର୍ଗୁଣ ଓ ବୈଶ୍ୟଙ୍କର ଅଷ୍ଟଗୁଣ ହେବ । ୪୧ । ବ୍ରାହ୍ମଣ ପ୍ରଥମରେ ବ୍ରାହ୍ମଣ ଦ୍ୱାରା ନିମନ୍ତ୍ରିତ ହୋଇଥିଲେ ସେ ଅନ୍ୟତ୍ର ଭୋଜନ କରିବେ ନାହିଁ । ଯଦି ଅନ୍ୟତ୍ର ଗମନ କରନ୍ତି ତେବେ ସେ ବୃଥା ଜୀବହିଂସାର ସମ୍ପୂର୍ଣ୍ଣରୂପେ ପାପ ଭାଗୀ ହୁଅନ୍ତି । ୪୨ ଯଦି କ୍ଷତ୍ରିୟ ବୈଶ୍ୟଦ୍ୱାରା ନିମନ୍ତ୍ରିତ ହୋଇ ଅନ୍ୟତ୍ର ଗମନ ପୂର୍ବକ ଭୋଜନ କରନ୍ତି, ତେବେ ସେ ବୃଥା ଜୀବହିଂସାର ଅର୍ଦ୍ଧ ପାପଭାଗୀ ହୁଅନ୍ତି । ୪୩ । ହେ ରାଜନ୍ । ଯେଉଁ ବ୍ରାହ୍ମଣ ସ୍ନାନ ନକରି ବ୍ରାହ୍ମଣ ପ୍ରଭୃତି ବର୍ଣ୍ଣମାନଙ୍କ ଗୃହରେ ପିତୃକାର୍ଯ୍ୟ ଅଥବା ଦେବକାର୍ଯ୍ୟରେ ଭୋଜନ କରନ୍ତି, ସେ ଗୋ ଗ୍ରହଣ ନିମିତ୍ତ ମିଥ୍ୟାବାକ୍ୟ ପ୍ରୟୋଗ କରିବା ପାପରେ ଲିପ୍ତ ହୁଅନ୍ତି । ୪୪ । ହେ ରାଜନ ! ଯେଉଁ ବ୍ରାହ୍ମଣ ଜନ୍ମ ମରଣାଦି ଅଶୌଚ-ଗ୍ରସ୍ତ ହୋଇ ଜ୍ଞାନ ପୂର୍ବକ ଅଥବା ଲୋଭରେ ବ୍ରାହ୍ମଣାଦି ବର୍ଣ୍ଣମାନଙ୍କ ଗୃହରେ ଦୈବ ବା ପିତୃ କାର୍ଯ୍ୟରେ ଭୋଜନ କରନ୍ତି, ସେ ଗୋ ଗ୍ରହଣ ନିମିତ୍ତ ମିଥ୍ୟା ବାକ୍ୟ ପ୍ରୟୋଗ କରିବାରେ ଲିପ୍ତ ହୁଅନ୍ତି । ୪୫ ।

ହେ ଭରତ ! ରାଜେନ୍ଦ୍ର ! ଯେଉଁ ବିପ୍ର ତୀର୍ଥଯାତ୍ରା ଅଥବା ଅନ୍ୟାନ୍ୟ ପ୍ରୟୋଜନ ଛଳନାରେ ଅର୍ଥ ଉପାର୍ଜନ ପୂର୍ବକ ଜୀବିକା ନିର୍ବାହ କରନ୍ତି ଅଥବା ଯେଉଁ ବିପ୍ର କୌଣସି ସତ୍‌କର୍ମ କରିବେ ବୋଲି କପଟରେ ଦାତାଙ୍କୁ ପ୍ରାର୍ଥନା କରନ୍ତି, ସେ ଗୋ ଗ୍ରହଣ ନିମିତ୍ତ ମିଥ୍ୟାବାକ୍ୟ ପ୍ରୟୋଗ କରିବା ପାପରେ ଲିପ୍ତ ହୁଅନ୍ତି । ୪୬ ।

ହେ ଯୁଧିଷ୍ଠିର ! ଯେଉଁମାନେ ବେଦବ୍ରତ ପରାୟଣ ନୁହନ୍ତି ସେମାନେ ତ୍ରିବର୍ଣ୍ଣର ଯେଉଁ ବ୍ୟକ୍ତିର ଶ୍ରାଦ୍ଧରେ ଶାସ୍ତ୍ରାନୁସାରେ ପ୍ରବିଷ୍ଟ ହୁଅନ୍ତି, ସେ ଗୋ ଗ୍ରହଣ ନିମିତ୍ତ ମିଥ୍ୟାବାକ୍ୟ ପ୍ରୟୋଗ କରିବା ପାପରେ ଲିପ୍ତ ହୁଅନ୍ତି । ୪୭ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ଦେବତା ଅଥବା ପିତୃଗଣ ତୃପ୍ତିଲାଭ ନିମିତ୍ତ କେଉଁମାନଙ୍କୁ ଦାନ କଲେ ମହାଫଳ ହୁଏ ଏହା ଜାଣିବାକୁ ମୁଁ ଇଚ୍ଛା କରୁଅଛି । ୪୮ ।

ଭୀଷ୍ମ କହିଲେ, ହେ ତାତ ଯୁଧିଷ୍ଠିର ! ଯେଉଁମାନଙ୍କର ପତ୍ନୀଗଣ ସୁବୃଷ୍ଟି ପ୍ରତୀକ୍ଷାକାରୀ କୃଷିଜୀବୀ ସଦୃଶ ସ୍ୱାମୀର ଭୋଜନ ପାତ୍ରାବଶିଷ୍ଟ ଦ୍ରବ୍ୟକୁ ପ୍ରତୀକ୍ଷା କରୁଥାନ୍ତି, ସେହିମାନଙ୍କୁ ଭୋଜନ କରାଅ । ୪୯ । ହେ ରାଜନ୍ ! ଯେଉଁମାନେ ସଚ୍ଚରିତ୍ର, ଦୁର୍ବଳ, ଦରିଦ୍ର, ଯାଚକଭାବରେ ଗୃହରେ ଉପସ୍ଥିତ ହୁଅନ୍ତି, ସେହିମାନଙ୍କୁ ପ୍ରଦାନ କଲେ ମହାଫଳ ହୁଏ । ୫୦ ।

ଯେଉଁମାନେ ଭକ୍ତି ପରାୟଣ ଓ ଆଶ୍ରିତ ହୋଇଥାଆନ୍ତି, ଯେଉଁମାନେ ସଚ୍ଚରିତ୍ରକୁ ଅନ୍ନ, ଜୀବନ, ଗୃହ, ସ୍ତ୍ରୀ ଓ ବଳ ବୋଲି ଜ୍ଞାନ କରନ୍ତି, ଯେଉଁମାନେ ଦୋଷଶୂନ୍ୟ, ଯେଉଁମାନେ ପରିଗ୍ରହ ବ୍ୟତିରେକେ ପ୍ରୟୋଜନ ଥିଲେ ଅର୍ଥ ପ୍ରାର୍ଥୀ ହୁଅନ୍ତି, ସେହିମାନଙ୍କୁ ଦାନକଲେ ମହାଫଳ ହୁଏ । ୫୧ ।

ହେ ଯୁଧିଷ୍ଠିର ! ଯେଉଁ ଅର୍ଥୀମାନେ ତସ୍କର ଓ ଶତ୍ରୁମାନଙ୍କଠାରୁ ଭୟଗ୍ରସ୍ତହୋଇ ଆଗମନ ପୂର୍ବକ ଭୋଜନ କରିବାକୁ ଇଚ୍ଛାକରନ୍ତି, ସେହିମାନଙ୍କୁ ଦାନକଲେ ମହାଫଳ ହୁଏ । ୫୨ । ଯେଉଁମାନେ ଅତି ଦରିଦ୍ରତା ହେତୁରୁ କ୍ଷୁଧାର୍ତ୍ତ ହୋଇ ଆଗ୍ରହ ପୂର୍ବକ ଦରିଦ୍ର ବ୍ରାହ୍ମଣର ମଧ୍ୟ କରସ୍ଥିତ ଅନ୍ନକୁ ଦେଖି "ମତେଦିଅ" ବୋଲି ପ୍ରାର୍ଥନା କରନ୍ତି ସେହିମାନଙ୍କୁ ଦାନକଲେ ମହାଫଳ ହୁଏ । ୫୩ । ଯେଉଁମାନେ ଦେଶ ବିପ୍ଳବ ହେତୁରୁ ହୃତଦାର ଓ ହୃତ ସର୍ବସ୍ୱହୋଇ ଅର୍ଥଲାଭ ନିମିତ୍ତ ଗୃହକୁ ଆଗମନ କରନ୍ତି, ସେହିମାନଙ୍କୁ ଦାନକଲେ ମହାଫଳ ହୁଏ । ୫୪ ।

ଯେଉଁସବୁ ବ୍ରତ ନିୟମ ପରାୟଣ, ଜ୍ଞାନବାନ୍ ବ୍ରାହ୍ମଣଗଣ, ବ୍ରତାଦି ସାଧନନିମିତ୍ତ ଅର୍ଥ ଇଚ୍ଛାକରନ୍ତି, ସେହିମାନଙ୍କୁ ଦାନକଲେ ମହାଫଳ ହୁଏ । ୫୫ । ଯେଉଁମାନେ ପାଷଣ୍ଡମାନଙ୍କର ଧର୍ମପରିତ୍ୟାଗ କରନ୍ତି, ଯେଉଁମାନଙ୍କ ଶରୀର ଦୁର୍ବଳ ଓ କିଛିମାତ୍ର ଧନ ନ ଥାଏ, ସେହିମାନଙ୍କୁ ଦାନ କଲେ ମହାଫଳ ହୁଏ । ୫୬ ।

ଯେଉଁମାନେ ବଳଶାଳୀ ଦୁରାତ୍ମାମାନଙ୍କ ଦୌରାତ୍ମ୍ୟରେ ହୃତ ସର୍ବସ୍ୱ ହୋଇ କେବଳ ଉଦର ପୂରଣ ନିମିତ୍ତ ସ୍ୱାଦୁ ଅସ୍ୱାଦୁ ନ ବିଚାର

ଭୂକ୍ରାନ୍ତ ପ୍ରାର୍ଥନା କରନ୍ତି, ସେହିମାନଙ୍କୁ ଦାନକଲେ ମହାଫଳ ହୁଏ । ୫୭ । ଯେଉଁମାନେ ତପୋନିଷ୍ଠ ତପସ୍ୱିମାନଙ୍କ ନିକଟକୁ ଭିକ୍ଷା ନିମିତ୍ତ ଗମନ ପୂର୍ବକ କାଞ୍ଚନ ଧନ ଇଚ୍ଛା କରନ୍ତି, ସେହିମାନଙ୍କୁ ଦାନକଲେ ମହାଫଳ ହୁଏ । ୫୮ ।

ହେ ଭରତ ଶ୍ରେଷ୍ଠ ! ତୁମ୍ଭେ ଆମ୍ଭଠାରୁ ଦାନବିଷୟକ ମହାଫଳ ବିଧିକ ଶ୍ରବଣ କଲ । ଏବେ ମାନବମାନଙ୍କର ଯେଉଁ କାର୍ଯ୍ୟଦ୍ୱାରା ସ୍ୱର୍ଗ ଭୋଗ ହୁଏ, ତାହା କହୁଅଛୁଁ ଶ୍ରବଣକର । ୫୯ । ହେ ଯୁଧିଷ୍ଠିର ! ଯେଉଁମାନେ ଗୁରୁଙ୍କର ହିତସାଧନ ଓ ଭୟ ନିବାରଣ ବ୍ୟତିରେକେ ଅନ୍ୟ କାର୍ଯ୍ୟ ସକାଶେ ମିଥ୍ୟାବାକ୍ୟ କହନ୍ତି, ସେହିମାନେ ନରକଗାମୀ ହୁଅନ୍ତି । ୬୦ । ଯେଉଁମାନେ ପରଦାରାପହରଣ, ପରସ୍ତ୍ରୀ ସଂସର୍ଗ, ଓ ଜାର ଦାରକ କାର୍ଯ୍ୟରେ ଦୌତ୍ୟପଣରେ ନିଯୁକ୍ତ ହୋଇ ଥାଆନ୍ତି ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୬୧ । ଯେଉଁମାନେ ପରଧନ ଅପହରଣ କରନ୍ତି ଏବଂ ଯେଉଁମାନେ ପରଧନ ନାଶ କରନ୍ତି ଓ ଯେଉଁମାନେ ପରଦୋଷ କୀର୍ତ୍ତନ କରନ୍ତି, ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୬୨ ।

ହେ ଭାରତ ! ଯେଉଁମାନେ ଉଦପାନ ଅର୍ଥାତ୍ ଜଳଖାତ, ସେତୁ ଗୃହ ଓ ସଭା ପ୍ରଭୃତି ଭଗ୍ନ କରନ୍ତି, ସେମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୬୩ । ଯେଉଁମାନେ ବାଳକା, ବୃଦ୍ଧା, ଅନାଥାସ୍ତ୍ରୀ, ଭୟଗ୍ରସ୍ତା, ତପସ୍ୱିନୀଙ୍କୁ ବଞ୍ଚନା କରନ୍ତି, ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୬୪ । ହେ ଭାରତ ! ଯେଉଁମାନେ ବୃତ୍ତିଚ୍ଛେଦ, ଗୃହଚ୍ଛେଦ, ଦାରଚ୍ଛେଦ, ମିତ୍ରଚ୍ଛେଦ ଓ ଆଶାଚ୍ଛେଦ କରନ୍ତି, ସେମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୬୫ । ଯେଉଁମାନେ ପରଦୋଷ ସୂଚକ, ଆର୍ଯ୍ୟ ମର୍ଯ୍ୟାଦାଭେଦକ, ପରଭୋଗୋପଜୀବୀ ଓ ମିତ୍ରମାନଙ୍କ ନିକଟରେ ଅକୃତଜ୍ଞ ହୁଅନ୍ତି, ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୬୬ ।

ଯେଉଁମାନେ ବେଦବିରୋଧୀ, ସାଧୁମାନଙ୍କର ଦୂଷକ, ନିୟମ ବିଧ୍ୱଂସୀ, ପାପକାର୍ଯ୍ୟ ଅନୁଷ୍ଠାନଦ୍ୱାରା ପତିତ ସେହିମାନେ ନିଶ୍ଚୟ ନରକ-

ଗାମୀ ହୁଅନ୍ତି । ୬୭ । ଯେଉଁମାନେ ଜନବିରୋଧି ବ୍ୟବହାରରେ ଆସକ୍ତ, ଯେଉଁମାନେ ଅନୁଚିତ ଧନବୃଦ୍ଧି ଦ୍ୱାରା ଜୀବିକା ନିର୍ବାହ କରନ୍ତି, ଯେଉଁମାନେ ବିଷମ ଧନ ଲାଭ ବିଷୟରେ ତତ୍ପର, ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୬୮ । ଯେଉଁ ନରଗଣ ଦ୍ୟୂତକ୍ରୀଡ଼ା ପରାୟଣ, କୁତ୍ସିତ ଆଚରଣରେ ଆସକ୍ତ ଓ ପ୍ରାଣୀ ହିଂସାରେ ପ୍ରବୃତ୍ତ ଥାଆନ୍ତି, ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୬୯ ।

ଯେଉଁମାନେ ଆଶାଗ୍ରସ୍ତ, ନିର୍ଦ୍ଦିଷ୍ଟ ଲାଭାକାଂକ୍ଷି, ବେତନଭୋଗୀ ଓ କୃତ ପରିଶ୍ରମ ବ୍ୟକ୍ତିମାନଙ୍କୁ କୌଶଳକ୍ରମରେ ସ୍ୱାମୀଙ୍କ ନିକଟରୁ ଦୂରୀଭୂତ କରିବାକୁ ସଚେଷ୍ଟ ହୁଅନ୍ତି, ସେମାନେ ନିଶ୍ଚୟ ନରକକୁ ଗମନ କରନ୍ତି । ୭୦ । ଯେଉଁମାନେ ଭାର୍ଯ୍ୟା, ଭୃତ୍ୟ, ଅଗ୍ନି ଓ ଅତିଥିଗଣଙ୍କୁ ଭୋଜ୍ୟବସ୍ତୁ ପ୍ରଦାନ ନକରି ସ୍ୱୟଂ ଭୋଜନ କରନ୍ତି ଓ ଯେଉଁମାନେ ଦେବକାର୍ଯ୍ୟ ଏବଂ ପିତୃକାର୍ଯ୍ୟ ଅନୁଷ୍ଠାନ ବିଷୟରେ ପରାଙ୍ମୁଖ ହୁଅନ୍ତି, ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୭୧ । ଯେଉଁମାନେ ବେଦ-ବିକ୍ରୟ କରନ୍ତି, ଯେଉଁମାନେ ବେଦଦ୍ୱେଷୀ ଓ ବେଦ ଲେଖକ ହୁଅନ୍ତି, ସେହିମାନେ ନିଶ୍ଚୟ ନରକକୁ ଗମନ କରନ୍ତି । ୭୨ । ଯେଉଁମାନେ ଆଶ୍ରମ ଚତୁଷ୍ଟୟରୁ ବହିର୍ଭୂତ, ବେଦାଚାର ବିହୀନ ହୋଇ ଦୁଷ୍କର୍ମ ଦ୍ୱାରା ଜୀବିକା ନିର୍ବାହ କରନ୍ତି ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୭୩ । ହେ ରାଜନ ! ଯେଉଁମାନେ କେଶ ଅର୍ଥାତ୍ ଚାମର ଓ କମ୍ବଳ ପ୍ରଭୃତି ବିକ୍ରୟ କରନ୍ତି, ବିଷ ଓ କ୍ଷୀର ବିକ୍ରୟ କରନ୍ତି, ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୭୪ ।

ହେ ଯୁଧିଷ୍ଠିର ! ଯେଉଁମାନେ ଗୋ, ବ୍ରାହ୍ମଣ ଓ କନ୍ୟାମାନଙ୍କ କାର୍ଯ୍ୟରେ ବିଘ୍ନ କରନ୍ତି, ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୭୫ । ହେ ଯୁଧିଷ୍ଠିର ! ଯେଉଁମାନେ ଶସ୍ତ୍ର, ଶଲ୍ୟ ଓ ଧନୁ ପ୍ରଭୃତି ନିର୍ମାଣ ଓ ବିକ୍ରୟ କରନ୍ତି ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୭୬ । ହେ ଭରତଶ୍ରେଷ୍ଠ ! ଯେଉଁମାନେ ଶିଳା, ଶଙ୍କୁ ଓ ଗର୍ତ୍ତଦ୍ୱାରା ମାର୍ଗ ଅବରୋଧ କରନ୍ତି, ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୭୭ ।

ହେ ଭରତଶ୍ରେଷ୍ଠ ! ଯେଉଁମାନେ ଉପାଧ୍ୟାୟ, ଭୃତ୍ୟ ଓ ଭକ୍ତ ଏମାନଙ୍କୁ ବିନା ଅପରାଧରେ ତ୍ୟାଗ କରନ୍ତି, ସେହିମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୭୮ ।

ଯେଉଁମାନେ ଅପ୍ରାପ୍ତ ଦଶାରେ ବୃଷମାନଙ୍କ ବୃଷଣ ମର୍ଦ୍ଦନପୂର୍ବକ ସେମାନଙ୍କ ବଳବୀର୍ଯ୍ୟ ବିନାଶଦ୍ୱାରା ସେମାନଙ୍କୁ ଦମନ କରନ୍ତି ଓ ଯେଉଁମାନେ ସେମାନଙ୍କ ନାସା ଭେଦ କରନ୍ତି ଏବଂ ଯେଉଁମାନେ ପଶୁମାନଙ୍କୁ ବନ୍ଧନ କରି ରଖନ୍ତି, ସେମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୭୯ । ଯେଉଁ ନରପାଳଗଣ, ପ୍ରଜାବୃନ୍ଦର ପାଳନ ବିଷୟରେ ପରାଙ୍ମୁଖ ହୋଇ ସେମାନଙ୍କ ନିକଟରୁ ବଳପୂର୍ବକ ଷଷ୍ଠାଂଶକର ଗ୍ରହଣ କରନ୍ତି ଓ ଯେଉଁମାନେ ଐଶ୍ୱର୍ଯ୍ୟଶାଳୀ ହୋଇ ଧନଦାନ କରନ୍ତି ନାହିଁ, ସେମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୮୦ । ଯେଉଁମାନେ କ୍ଷମାଶୀଳ, ଜିତେନ୍ଦ୍ରିୟ, ବିଦ୍ୟାଶୀଳ, ଚିର ସହଚର ଭୃତ୍ୟମାନଙ୍କୁ ପରିତ୍ୟାଗ କରନ୍ତି, ସେମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୮୧ । ଯେଉଁ ନରଗଣ ବାଳକ, ବୃଦ୍ଧ ଓ ଦାସମାନଙ୍କୁ ଭୋଜନ ନ କରାଇ ଅଗ୍ରରେ ଭୋଜନ କରନ୍ତି, ସେମାନେ ନିଶ୍ଚୟ ନରକଗାମୀ ହୁଅନ୍ତି । ୮୨ ।

ହେ ଭରତଶ୍ରେଷ୍ଠ ! ଆମ୍ଭେ ତୁମ୍ଭଙ୍କୁ ନରକଗାମୀମାନଙ୍କ ବିଷୟ କହିଲୁଁ, ଅତଃପର ଯେଉଁମାନେ ସ୍ୱର୍ଗଗାମୀ ହୁଅନ୍ତି, ସେମାନଙ୍କ ବିଷୟ ବର୍ଣ୍ଣନ କରୁଅଛୁ । ୮୩ । ହେ ଭାରତ ! ଯେଉଁ ବ୍ୟକ୍ତି ଦୈବପୂର୍ବକ ସର୍ବ କାର୍ଯ୍ୟରେ ବ୍ରାହ୍ମଣମାନଙ୍କୁ ଅବମାନନା କରନ୍ତି, ତାହାଙ୍କର ସମସ୍ତ ପଶୁ ଓ ପୁତ୍ରମାନେ ହତ ହୁଅନ୍ତି । ୮୪ ।

ହେ ଯୁଧିଷ୍ଠିର ! ଯେଉଁମାନେ ଦାନ, ତପସ୍ୟା ଓ ସତ୍ୟଦ୍ୱାରା ଧର୍ମ ପାଳନ କରନ୍ତି, ସେହି ନରଗଣ ସ୍ୱର୍ଗଗାମୀ ହୁଅନ୍ତି । ୮୫ । ହେ ଭାରତ ! ଯେଉଁମାନେ ଗୁରୁ ଶୁଶ୍ରୂଷା ଓ ତପୋନୁଷ୍ଠାନଦ୍ୱାରା ବିଦ୍ୟାଲାଭ କରି ଦାନ ପ୍ରତିଗ୍ରହ ବିଷୟରେ ସ୍ନେହଯୁକ୍ତ ହୁଅନ୍ତି ନାହିଁ, ସେହି ନରମାନେ ସ୍ୱର୍ଗକୁ ଗମନ କରନ୍ତି । ୮୬ ।

ଯେଉଁମାନଙ୍କ ହେତୁରୁ ନରମାନେ ଭୟ, ପାପ, ବାଧା, ଦରିଦ୍ରପଣ ଓ ବ୍ୟାଧିପୀଡ଼ାରୁ ପରିତ୍ରାଣ ଲାଭ କରନ୍ତି, ସେମାନେ ସ୍ୱର୍ଗଗାମୀ ହୁଅନ୍ତି । ।୮୭। କ୍ଷମାଶୀଳ, ଧୀର ସ୍ୱଭାବ, ଧର୍ମକାର୍ଯ୍ୟରେ ଉତ୍ସାହଯୁକ୍ତ ଓ ମଙ୍ଗଳାଚରଣ ସମ୍ପନ୍ନ ପୁରୁଷମାନେ ସ୍ୱର୍ଗଗାମୀ ହୁଅନ୍ତି ।୮୮।

ଯେଉଁମାନେ ମଧୁ ମାଂସ ଭକ୍ଷଣ, ପରପତ୍ନୀ ହରଣ ଓ ମଦ୍ୟପାନରୁ ନିବୃତ୍ତ ହୋଇଥାଆନ୍ତି ସେମାନେ ସ୍ୱର୍ଗଗାମୀ ହୁଅନ୍ତି ।୮୯। ହେ ଭାରତ ! ଯେଉଁମାନେ ଆଶ୍ରମ, କୂଳ, ଦେଶ ଓ ନଗର ସ୍ଥାପନ କରନ୍ତି, ସେମାନେ ସ୍ୱର୍ଗଗାମୀ ହୁଅନ୍ତି ।୯୦।

ଯେଉଁମାନେ ଅନ୍ନ, ପାନ, ବସ୍ତ୍ର ଓ ଆଭରଣ ପ୍ରଦାନ ଓ ଅର୍ଥାଦି ସାହାଯ୍ୟ କରି ଅନ୍ୟର ବିବାହ କାର୍ଯ୍ୟ ନିର୍ବାହ କରନ୍ତି, ସେମାନେ ସ୍ୱର୍ଗଗାମୀ ହୁଅନ୍ତି ।୯୧। ଯେଉଁମାନେ ସର୍ବପ୍ରକାର ହିଂସାରୁ ନିବୃତ୍ତ ହୋଇଥାଆନ୍ତି, ଯେଉଁମାନେ ସର୍ବସହିଷ୍ଣୁ ଓ ସର୍ବଲୋକର ଆଶ୍ରୟ ହୁଅନ୍ତି, ସେମାନେ ସ୍ୱର୍ଗଗାମୀ ହୁଅନ୍ତି ।୯୨।

ଯେଉଁ ଜିତେନ୍ଦ୍ରିୟ ବ୍ୟକ୍ତିମାନେ ମାତା ପିତାଙ୍କ ଶୁଶ୍ରୂଷା କରନ୍ତି ଓ ଭ୍ରାତୃଗଣଙ୍କଠାରେ ସ୍ନେହଯୁକ୍ତ ହୁଅନ୍ତି, ସେମାନେ ସ୍ୱର୍ଗଗାମୀ ହୁଅନ୍ତି । ।୯୩। ହେ ଭାରତ ! ଯେଉଁମାନେ ଧନାଢ୍ୟ, ମହାବଳଶାଳୀ ଓ ଯୌବନାବସ୍ଥା ପ୍ରାପ୍ତ ହୋଇ ଜିତେନ୍ଦ୍ରିୟ ଓ ଧୀର ସ୍ୱଭାବଶାଳୀ ହୁଅନ୍ତି, ସେମାନେ ସ୍ୱର୍ଗକୁ ଗମନ କରନ୍ତି ।୯୪।

ଯେଉଁମାନେ ଅପରାଧିମାନଙ୍କଠାରେ ସ୍ନେହଯୁକ୍ତ ହୁଅନ୍ତି, ଯେଉଁମାନେ ସ୍ୱୟଂ ମୃଦୁ ସ୍ୱଭାବଯୁକ୍ତ ଓ ମୃଦୁ ଲୋକର ବତ୍ସଳ ହୁଅନ୍ତି ଓ ଯେଉଁମାନେ ଶୁଶ୍ରୂଷାଦ୍ୱାରା ଅନ୍ୟର ସୁଖସାଧନରେ ତତ୍ପର ହୁଅନ୍ତି, ସେମାନେ ସ୍ୱର୍ଗକୁ ଗମନ କରନ୍ତି ।୯୫। ଯେଉଁମାନେ ସହସ୍ର ବ୍ୟକ୍ତିଙ୍କର ଭୋଜନଦାତା, ସହସ୍ର ବ୍ୟକ୍ତିଙ୍କର ଧନଦାତା ଓ ଅସଂଖ୍ୟଲୋକମାନଙ୍କର ରକ୍ଷାକର୍ତ୍ତା ଅଟନ୍ତି, ସେମାନେ ସ୍ୱର୍ଗଗାମୀ ହୁଅନ୍ତି ।୯୬।

ହେ ଭରତଶ୍ରେଷ୍ଠ ! ଯେଉଁମାନେ ଯାଚକମାନଙ୍କୁ ଗୋ, ସୁବର୍ଣ୍ଣ, ଯାନ ଓ ବାହନ ପ୍ରଦାନ କରନ୍ତି, ସେମାନେ ସ୍ୱର୍ଗଗାମୀ ହୁଅନ୍ତି ।୯୭।

ହେ ଯୁଧିଷ୍ଠିର ! ଯେଉଁମାନେ ବିବାହ ନିମିତ୍ତ ବିବିଧଦ୍ରବ୍ୟ, ସ୍ତ୍ରୀ ଅଳଙ୍କାର, ବସ୍ତ୍ର ଓ ଦାସଦାସୀ ପ୍ରଦାନ କରନ୍ତି ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି । ୯୮ ।

ଯେଉଁମାନେ ପାନ୍ଥଶାଳା, ଉଦ୍ୟାନ, କୂପ, ଆଶ୍ରମ, ସଭା, ବିପ୍ରମାନଙ୍କ ନିମିତ୍ତ ଶାସନ ଓ ଜଳାଶୟ ସ୍ଥାପନ କରନ୍ତି, ସେହି ନରମାନେ ସ୍ୱର୍ଗଗାମୀ ହୁଅନ୍ତି । ୯୯ । ହେ ଭାରତ ! ଯେଉଁ ଦାତାମାନେ ପ୍ରାର୍ଥୀମାନଙ୍କୁ କ୍ଷେତ୍ର, ଗୃହ ଓ ବସତି ପ୍ରଦାନ କରନ୍ତି, ସେହି ନରମାନେ ସ୍ୱର୍ଗଗାମୀ ହୁଅନ୍ତି । ୧୦୦ । ହେ ଯୁଧିଷ୍ଠିର ! ଯେଉଁମାନେ ରସ, ବୀଜ ଓ ଧାନ୍ୟ ପ୍ରଭୃତିମାନଙ୍କୁ ସ୍ୱୟଂ ଉତ୍ପାଦନ ପୂର୍ବକ ସତ୍ପାତ୍ରଙ୍କୁ ଦାନକରନ୍ତି, ସେହି ନରମାନେ ସ୍ୱର୍ଗଗାମୀ ହୁଅନ୍ତି । ୧୦୧ । ଯେକୌଣସି କୁଳରେ ଜାତ ପୁରୁଷମାନେ ଯଦି ବହୁପୁତ୍ର, ଶତାୟୁ, ଦୟାଳୁ ଓ ଜିତେନ୍ଦ୍ରିୟ ହୋଇଥାଆନ୍ତି, ତେବେ ସେହି ପୁରୁଷମାନେ ସ୍ୱର୍ଗକୁ ଗମନ କରନ୍ତି । । ୧୦୨ । ହେ ଭାରତ ! ପରଲୋକ ନିମିତ୍ତ ଦୈବକାର୍ଯ୍ୟ ଓ ପିତୃକାର୍ଯ୍ୟରେ ଦାନ ଧର୍ମ ଫଳ ଯାହାପୂର୍ବରୁ ଋଷିମାନେ ନିର୍ଦ୍ଦେଶ କରିଅଛନ୍ତି, ତାହା ଆମ୍ଭେ ତୁମ୍ଭଙ୍କୁ କହିଲୁଁ । ୧୦୩ ।

ସ୍ୱର୍ଗ ନରକଗାମୀ ବର୍ଣ୍ଣନେ ତ୍ରୟୋବିଂଶ ଅଧ୍ୟାୟ ସମାପ୍ତ । ୨୩ ।

## ଚତୁର୍ବିଂଶତତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ଭାରତ ! ବ୍ରାହ୍ମଣ ହିଂସା ନ କରି ସୁଦ୍ଧା କପରି ତାହାର ବ୍ରହ୍ମହତ୍ୟା ହୁଏ, ତାହା ଯଥାର୍ଥ ରୂପେ କହିବା ହେଉନ୍ତୁ । । ୧ ।

ଭୀଷ୍ମ କହିଲେ, ହେ ଭରତଶ୍ରେଷ୍ଠ ରାଜେନ୍ଦ୍ର ! ଆମ୍ଭେ ପୂର୍ବେ ବ୍ୟାସଙ୍କୁ ଆମନ୍ତ୍ରଣ କରି ଯାହା ପ୍ରଶ୍ନ କରିଥିଲୁଁ ଏବଂ ସେ ଆମ୍ଭଙ୍କୁ ଯାହା ଉତ୍ତର ପ୍ରଦାନ କରିଥିଲେ ତାହା ତୁମ୍ଭଙ୍କୁ କହିବୁଁ, ସ୍ଥିରମନା ହୋଇ

ଶ୍ରବଣକର । ୨ । ଆମ୍ଭେ ବ୍ୟାସଙ୍କୁ ପ୍ରଶ୍ନକଲୁଁ, ହେ ମୁନେ ! ଆପଣ ବଶିଷ୍ଠଙ୍କର ଚତୁର୍ଥ ପୁରୁଷ ଅଟ ; ସେହି କାରଣରୁ ଆମ୍ଭେ ପଚାରୁଅଛୁଁ, ବ୍ରାହ୍ମଣ ବିନାଶ ବ୍ୟତିରେକେ ଅନ୍ୟ କେଉଁ କାର୍ଯ୍ୟଦ୍ୱାରା ବ୍ରହ୍ମହତ୍ୟା ପାତକହୁଏ, ତାହା ଆପଣ ଯଥାର୍ଥ ରୂପେ କହିବା ହେଉନ୍ତୁ । ୩ ।

ହେ ରାଜନ୍ ! ଆମ୍ଭେ ଏହିପରି ପ୍ରଶ୍ନକଲାରୁ ଧର୍ମ ପଣ୍ଡିତ ପରାଶର ପୁତ୍ର ବ୍ୟାସ, ଆମ୍ଭଙ୍କୁ ନିଃସଂଶୟରେ ଅତିଉତ୍କୃଷ୍ଟ ଉତ୍ତର ପ୍ରଦାନ କଲେ ।୪। ଯେଉଁ ବ୍ୟକ୍ତି କୃଚ୍ଛ୍ରବୃତ୍ତି ଅର୍ଥାତ୍ ଗୁଣଶାଳୀ ବ୍ରାହ୍ମଣଙ୍କୁ ସ୍ୱୟଂ ଭିକ୍ଷା ନିମିତ୍ତ ଆହ୍ୱାନ କରି ପଶ୍ଚାତ୍ ଭିକ୍ଷାଦ୍ରବ୍ୟ ନାହିଁ ବୋଲି କହନ୍ତି ତାହାଙ୍କୁ ବ୍ରହ୍ମଘାତି ବୋଲି ଜାଣିବାକୁ ହେବ । ୫ । ହେ ଭାରତ ! ଯେଉଁ ଦୁର୍ବୁଦ୍ଧି ବ୍ୟକ୍ତି ସାଙ୍ଗ ବେଦାଧ୍ୟାୟୀ ଉଦାସୀନ ବ୍ରାହ୍ମଣଙ୍କର ବୃତ୍ତି ଚ୍ଛେଦନ କରନ୍ତି ତାହାଙ୍କୁ ବ୍ରହ୍ମଘାତି ବୋଲି ଜାଣିବାକୁ ହେବ । ୬ ।

ହେ ବସୁଧାଧିପ ! ଯେଉଁ ବ୍ୟକ୍ତି ତୃଷାର୍ତ୍ତ ଗୋ ସମୂହର ଜଳପାନ ବିଷୟରେ ବିଘ୍ନ ଉତ୍ପାଦନ କରନ୍ତି, ସେହି ବ୍ୟକ୍ତିଙ୍କୁ ବ୍ରହ୍ମଘାତି ବୋଲି ଜାଣିବାକୁ ହେବ । ୭ । ଯେଉଁ ବ୍ୟକ୍ତି ଅନଭିଜ୍ଞତା ଦୋଷରେ ଉତ୍କୃଷ୍ଟ ବେଦ ଓ ବ୍ରହ୍ମର୍ଷିମାନଙ୍କ ପ୍ରଣୀତ ଶାସ୍ତ୍ରରେ ଦୋଷପ୍ରଦାନ କରନ୍ତି ସେହିମାନଙ୍କୁ ବ୍ରହ୍ମଘାତି ବୋଲି ଜାଣିବାକୁ ହେବ । ୮ ।

ଯେଉଁବ୍ୟକ୍ତି ରୂପସମ୍ପନ୍ନା ସ୍ୱକୀୟ ଉତ୍କୃଷ୍ଟ କନ୍ୟାଙ୍କୁ ଉପଯୁକ୍ତ ପାତ୍ରଙ୍କ ହସ୍ତରେ ସମର୍ପଣ ନ କରନ୍ତି, ତାହାଙ୍କୁ ବ୍ରହ୍ମଘାତି ବୋଲି ଜାଣିବାକୁ ହେବ । ୯ । ଯେଉଁ ଅଧାର୍ମିକ ମୂଢ଼ ମିଥ୍ୟାରେ ବ୍ରାହ୍ମଣଙ୍କୁ ମର୍ମାନ୍ତକ ଶୋକ ପ୍ରଦାନ କରେ, ତାହାଙ୍କୁ ବ୍ରହ୍ମଘାତି ବୋଲି ଜାଣିବାକୁ ହେବ । ୧୦ ।

ଯେଉଁ ବ୍ୟକ୍ତି ଅନ୍ଧ, ପଙ୍ଗୁ ଅଥବା ଜଡ ବ୍ୟକ୍ତିର ସର୍ବସ୍ୱ ଅପହରଣ କରେ, ତାହାକୁ ବ୍ରହ୍ମଘାତି ବୋଲି ଜାଣିବାକୁ ହେବ । ୧୧ । ଯେଉଁ ବ୍ୟକ୍ତି ବନ, ଆଶ୍ରମ, ଗ୍ରାମ ଅଥବା ପୁରରେ ଅଜ୍ଞାନ ବଶତଃ ଅଗ୍ନି ପ୍ରଦାନ କରେ, ତାହାକୁ ବ୍ରହ୍ମଘାତି ବୋଲି ଜାଣିବାକୁ ହେବ । ୧୨ ।

ବ୍ରହ୍ମଘ୍ନ କଥନେ ଚତୁର୍ବିଂଶ ଅଧ୍ୟାୟ ସମାପ୍ତ । ୨୪ ।



# ପଞ୍ଚବିଂଶତତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ମହାପ୍ରାଜ୍ଞ ଭରତଶ୍ରେଷ୍ଠ ! ତୀର୍ଥ ଦର୍ଶନ, ତୀର୍ଥରେ ସ୍ନାନ ଓ ତୀର୍ଥ ମାହାତ୍ମ୍ୟ ଶ୍ରବଣ ମଙ୍ଗଳଜନକ ଅଟେ ବୋଲି ଆମ୍ଭେ ତାହା ଯଥାର୍ଥ ରୂପେ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁ । ୧ ।

ହେ ପ୍ରଭୋ ଭରତ ଶ୍ରେଷ୍ଠ ! ଅତଏବ ଏହି ଭୂମଣ୍ଡଳରେ ଯେତେ ପୁଣ୍ୟତୀର୍ଥ ସବୁ ଅଛନ୍ତି ଆପଣ ସେହି ସମୁଦାୟ ବିଷୟ କହିବା ହେଉନ୍ତୁ ଆମ୍ଭେ ଶ୍ରବଣ କରିବୁଁ । ୨ ।

ଭୀଷ୍ମ କହିଲେ, ହେ ମହାଦ୍ୟୁତେ ! ମହର୍ଷି ଅଙ୍ଗିରା ତୀର୍ଥ ସମୂହର ବିଷୟ ଯେପରି କହିଅଛନ୍ତି ତାହା ଶ୍ରବଣ କର, ତୁମ୍ଭର ଉତ୍କୃଷ୍ଟ ଧର୍ମ ଲାଭ ହେବ । ୩ ।

ଦିନେ ସଂଶିତ ବ୍ରତ ମହର୍ଷି ଗୌତମ ତପୋଧନ ଅଙ୍ଗିରାଙ୍କ ତପୋବନରେ ଉପସ୍ଥିତ ହୋଇ ତାହାଙ୍କ ନିକଟକୁ ଯାଇ ସେହି ଧୀର ବ୍ରହ୍ମ ମହାମୁନିଙ୍କୁ ପଚାରିଥିଲେ, (୪) ହେ ଭଗବନ୍ ! ମହାମୁନେ ! ତୀର୍ଥମାନେ ପବିତ୍ର କି ପବିତ୍ର ନୁହନ୍ତି ଏହି ବିଷୟରେ ଆମ୍ଭର ଅନିର୍ବଚନୀୟ ଧର୍ମ ସଂଶୟ ଉପସ୍ଥିତ ହୋଇଅଛି, ଅତଏବ ତାହାସବୁ ଶ୍ରବଣ କରିବାକୁ ଆମ୍ଭେ ଇଚ୍ଛୁକ ଅଛୁଁ ଆପଣ କହିବା ହେଉନ୍ତୁ । ୫ ।

ହେ ମହାପ୍ରାଜ୍ଞ ! ମୁନେ ! ସେହି ତୀର୍ଥମାନଙ୍କରେ ସ୍ନାନକଲେ କେଉଁ ଶୁଭଫଳ ହୁଏ ? ଯେଉଁ ଫଳ ହୁଏ ତାହା କହିବା ହେଉନ୍ତୁ । ୬ । ଅଙ୍ଗିରା କହିଲେ, ମନୁଷ୍ୟ ତରଙ୍ଗମାଳାଯୁକ୍ତ ଚନ୍ଦ୍ରଭାଗା ଓ ବିତସ୍ତା ତୀର୍ଥରେ ନିରାହାରପୂର୍ବକ ସପ୍ତଦିବସ ସ୍ନାନ କଲେ ମୁନିମାନଙ୍କ ସଦୃଶ ନିର୍ମଳ ହୁଅନ୍ତି । ୭ । କାଶ୍ମୀର ଦେଶରେ ଯେଉଁ ନଦୀ ବୃନ୍ଦ, ମହାନଦ ସିନ୍ଧୁରେ ପତିତ ହୋଇଅଛନ୍ତି ସେହି ନଦୀମାନଙ୍କରେ ସ୍ନାନ କଲେ ମନୁଷ୍ୟ ସୁଶୀଳ ହୋଇ ସ୍ୱର୍ଗଲାଭ କରେ । ୮ ।

ପୁଷ୍କର, ପ୍ରଭାସ, ନୈମିଷ, ସାଗରୋଦକ, ଦେବିକା, ଇନ୍ଦ୍ରମାର୍ଗ ଓ ସ୍ୱର୍ଣ୍ଣବିନ୍ଦୁରେ ସ୍ନାନ କଲେ ମନୁଷ୍ୟ ସ୍ୱର୍ଗୀୟ ବିମାନରେ ଆରୂଢ଼ ହୋଇ

ଅପ୍‌ସରାଗଣଙ୍କ ସ୍ତୁତିରେ ସନ୍ତୋଷ ଲାଭପୂର୍ବକ ଜାଗରିତ ହୁଏ । ହିରଣ୍ୟ-ବିନ୍ଦୁ, କୁଶେଶୟ ଓ ଦେବବନ୍ତ ତୀର୍ଥରେ ଯେଉଁ ବ୍ୟକ୍ତି ସ୍ନାନପୂର୍ବକ ଭକ୍ତିରେ ଅଭିବାଦନ କରନ୍ତି, ସେହି ମନୁଷ୍ୟମାନଙ୍କର ସମସ୍ତ ପାପ ବିଦୂରିତ ହୁଏ । ଗନ୍ଧମାଦନ ଗିରିର ନିକଟସ୍ଥିତ ଇନ୍ଦ୍ରତୋୟା କରତୋୟା ଓ କୁରଙ୍ଗ ତୀର୍ଥରେ ସ୍ନାନ କରି ଶୁଚି ହୋଇ ତିନିରାତି ପର୍ଯ୍ୟନ୍ତ ସ୍ଥିର ମନା ହୋଇ ଉପବାସ କଲେ ମନୁଷ୍ୟ ଅଶ୍ୱମେଧ ଯଜ୍ଞର ଫଳ ଲାଭ କରେ । ୧୨ । ଗଙ୍ଗାଦ୍ୱାର, କୁଶାବର୍ତ୍ତ, ବିଲ୍ୱକ, ନୀଳପର୍ବତ ଓ କନଖଳ ତୀର୍ଥରେ ସ୍ନାନ କଲେ, ମନୁଷ୍ୟ ପାପଶୂନ୍ୟ ହୋଇ ସ୍ୱର୍ଗକୁ ଗମନ କରେ । ୧୩ ।

ବ୍ରହ୍ମଚାରୀ, କ୍ରୋଧଜୟୀ, ସତ୍ୟ ପରାୟଣ ଓ ହିଂସାଶୂନ୍ୟ ହୋଇ ସଲିଳ ହ୍ରଦ ତୀର୍ଥରେ ସ୍ନାନକଲେ ମନୁଷ୍ୟ ଅଶ୍ୱମେଧ ଯଜ୍ଞର ଫଳଲାଭ କରନ୍ତି । ୧୪ । ଯେଉଁ ସ୍ଥାନରେ ଭାଗୀରଥୀ ଗଙ୍ଗା ଉତ୍ତରବାହିନୀ ହୋଇଅଛନ୍ତି ସେହି ସ୍ଥାନର ନାମ ମହାଦେବଙ୍କ ତ୍ରିସ୍ଥାନ; ସେହି ତ୍ରିସ୍ଥାନ ତୀର୍ଥରେ ମନୁଷ୍ୟ ଏକମାସ ନିରାହାର ହୋଇ ଯଦି ସ୍ନାନ କରନ୍ତି ତେବେ ସେ ନିଶ୍ଚୟ ସ୍ୱର୍ଗଗାମୀ ହେଲେ ଦେବତାମାନଙ୍କୁ ଦର୍ଶନ କରନ୍ତି । ସପ୍ତଗଙ୍ଗ, ତ୍ରିଗଙ୍ଗ ଓ ଇନ୍ଦ୍ରମାର୍ଗ ତୀର୍ଥରେ ସ୍ନାନକରି ପିତୃଗଣଙ୍କ ତର୍ପଣ କଲେ ଯେଉଁ ଲୋକ ସ୍ୱର୍ଗଭୋଗ ଉତ୍ତାରେ ଜନ୍ମଗ୍ରହଣ କରେ ସେ ମର୍ତ୍ତ୍ୟଲୋକରେ ଅମୃତଭୋଜୀ ହୁଏ । ଯେଉଁ ବ୍ୟକ୍ତି ଅଗ୍ନିହୋତ୍ର ପରାୟଣ ଓ ପବିତ୍ର ହୋଇ ଏକମାସ ଉପବାସ ପୂର୍ବକ ମହାଶ୍ରମ ତୀର୍ଥରେ ସ୍ନାନ କରନ୍ତି, ସେ ସେହି ଏକମାସ ମଧ୍ୟରେ ସିଦ୍ଧି ଲାଭ କରନ୍ତି । ଲୋଭଶୂନ୍ୟ ହୋଇ ଭୃଗୁ ତୁଙ୍ଗ ପ୍ରଦେଶରେ ମହାହ୍ରଦ ତୀର୍ଥରେ ଅବଗାହନ ପୂର୍ବକ ତ୍ରିରାତ୍ର ଉପବାସ କଲେ ମନୁଷ୍ୟ ବ୍ରହ୍ମହତ୍ୟା ପାପରୁ ମୁକ୍ତ ହୁଅନ୍ତି । ୧୮ ।

ବଳାକା ପ୍ରଦେଶରେ କନ୍ୟାକୂପ ତୀର୍ଥରେ ସ୍ନାନ ଓ ତର୍ପଣ କଲେ ମନୁଷ୍ୟ ଦେବଲୋକରେ କୀର୍ତ୍ତି ଲାଭ କରେ ଓ ଯଶସ୍ୱୀ ହୁଏ । ୧୯ । ଦେବିକା, ସୁନ୍ଦରିକା ହ୍ରଦ ଓ ଅଶ୍ୱିନୀ ତୀର୍ଥରେ ସ୍ନାନ କଲେ ମନୁଷ୍ୟ ପରଲୋକରେ ଅପୂର୍ବ ରୂପ ଓ ତେଜ ଲାଭ କରେ । ୨୦ ।

ମହାଗଙ୍ଗା, କୃତ୍ତିକା ଓ ଅଙ୍ଗାରକ ତୀର୍ଥରେ ଏକପକ୍ଷ ଉପବାସ ପୂର୍ବକ ସ୍ନାନକଲେ ମନୁଷ୍ୟ ପାପଶୂନ୍ୟ ହୋଇ ସ୍ୱର୍ଗକୁ ଗମନ କରେ । ୨୧ । କଙ୍କିଣୀକାଶ୍ରମ ଓ ବୈମାନକ ତୀର୍ଥରେ ସ୍ନାନକଲେ ମନୁଷ୍ୟ କାମଗୃହୀ ହୋଇ ଅପ୍‌ସରାଗଣଙ୍କ ଦ୍ୱାରା ଆଳୟରେ ପୂଜିତ ହୁଅନ୍ତି । ୨୨ ।

ମନୁଷ୍ୟ କ୍ରୋଧଜୟୀ ଓ ବ୍ରହ୍ମଚାରୀ ହୋଇ କାଳକାଶ୍ରମ ଓ ବିପାଶା ତୀର୍ଥରେ ତିନିରାତି ସ୍ନାନ ତର୍ପଣ କଲେ ଜନ୍ମ ବନ୍ଧନରୁ ମୁକ୍ତହୁଏ । ୨୩ । କୃତ୍ତିକାଶ୍ରମ ତୀର୍ଥରେ ଅବଗାହନ ପୂର୍ବକ ପିତୃଲୋକଙ୍କ ତର୍ପଣ ଓ ଅର୍ଚ୍ଚନ ଦ୍ୱାରା ମହେଶ୍ୱରଙ୍କର ତୁଷ୍ଟି ସମ୍ପାଦନ କରି ପାରିଲେ ମନୁଷ୍ୟ ସ୍ୱର୍ଗପ୍ରାପ୍ତ ହୁଏ । ୨୪ । ମନୁଷ୍ୟ ତିନିରାତି ଉପବାସ କରି ଶୁଚି ହୋଇ ମହାପୁର ତୀର୍ଥରେ ସ୍ନାନକଲେ ସର୍ବପ୍ରକାର ସ୍ଥାବର ଜଙ୍ଗମ ଓ ମନୁଷ୍ୟ ପ୍ରଭୃତି ଜନ୍ତୁମାନଙ୍କ ଭୟରୁ ମୁକ୍ତ ହୁଏ । ୨୫ ।

ଦେବଦାରୁବନ ତୀର୍ଥରେ ସ୍ନାନ ଓ ପିତୃଗଣଙ୍କ ତର୍ପଣ କରି ପବିତ୍ର ହୋଇ ସେଠାରେ ସପ୍ତରାତି ବାସକଲେ ମନୁଷ୍ୟ ନିଷ୍ପାପ ହୋଇ ସ୍ୱର୍ଗକୁ ଗମନ କରେ । ୨୬ । ଯେଉଁ ବ୍ୟକ୍ତି ଶରସ୍ତମ୍ଭ, କୁଶସ୍ତମ୍ଭ ଓ ଦ୍ରୋଣ ଶର୍ମପଦ ତୀର୍ଥରେ ନିର୍ଝର ଜଳରେ ସ୍ନାନ କରନ୍ତି, ସେ ଅପ୍‌ସରୋ-ଗଣଦ୍ୱାରା ସେବିତ ହୁଅନ୍ତି । ୨୭ । ଚିତ୍ରକୂଟ ପର୍ବତରେ ଜନସ୍ଥାନ ଓ ମନ୍ଦାକିନୀ ତୀର୍ଥରେ ନିରାହାର ହୋଇ ସ୍ନାନକଲେ ମନୁଷ୍ୟ ରାଜଲକ୍ଷ୍ମୀ ପ୍ରାପ୍ତ ହୁଅନ୍ତି । ୨୮ ।

ମନୁଷ୍ୟ ଶ୍ୟାମାଶ୍ରମ ତୀର୍ଥକୁଯାଇ ସେଠାରେ ଏକପକ୍ଷ ଉପବାସ ପୂର୍ବକ ବାସ କରି ସ୍ନାନଶୀଳ ହେଲେ ଗନ୍ଧର୍ବ ପ୍ରଭୃତିଙ୍କର ସୁଖଭୋଗୀ ହୁଅନ୍ତି । ୨୯ । କୌଶିକୀ ତୀର୍ଥରେ ଲୋଭଶୂନ୍ୟ ହୋଇ ବାୟୁ ଭକ୍ଷଣ ପୂର୍ବକ ତିନିରାତି ସ୍ନାନ ଓ ଉପବାସ କଲେ ମନୁଷ୍ୟ ସ୍ୱର୍ଗବାସୀ ହୁଏ । ୩୦ । ରମ୍ୟତୀର୍ଥରେ ଏକମାସ ନିରାହାର ହୋଇ ସ୍ନାନକଲେ ମନୁଷ୍ୟ ଗନ୍ଧର୍ବ ଲୋକରେ ବାସ କରେ ଓ ଗନ୍ଧତାରକ ତୀର୍ଥରେ ଏକବିଂଶତି ରାତି ସ୍ନାନ କଲେ ସ୍ୱର୍ଗଲାଭ କରେ । ୩୧ । ମତଙ୍ଗବାପୀରେ ଯେ ସ୍ନାନ କରନ୍ତି,

ତାହାଙ୍କର ଏକ ରାତ୍ରିରେ ସିଦ୍ଧିଲାଭ ହୁଏ । ଅନାଲମ୍ବ, ସନାତନ ଓ ଅନ୍ଧକ ତୀର୍ଥରେ ଓ ନୈମି ଏବଂ ସ୍ୱର୍ଗ ତୀର୍ଥରେ ଜିତେନ୍ଦ୍ରିୟ ହୋଇ ଏକ ମାସ ସ୍ନାନ ତର୍ପଣାଦି କଲେ ମନୁଷ୍ୟ ନରମେଧଯାଗର ଫଳଭୋଗୀ ହୁଅନ୍ତି । । ୩୩ । ଗଙ୍ଗାହ୍ରଦ ଓ ଉତ୍ପଳା ବନତୀର୍ଥରେ ଏକମାସ ଅବଗାହନ ଓ ପିତୃ ତର୍ପଣ କଲେ ମନୁଷ୍ୟ ଅଶ୍ୱମେଧଯାଗର ଫଳଭୋଗୀ ହୁଅନ୍ତି । ୩୪ । ଗଙ୍ଗା-ଯମୁନା ସଙ୍ଗମ ତୀର୍ଥରେ ଓ କାଳଞ୍ଜର ପର୍ବତରେ ଏକମାସ ସ୍ନାନ ତର୍ପଣ କଲେ ମନୁଷ୍ୟ ଦଶ ଅଶ୍ୱମେଧ ଯାଗର ଫଳଭୋଗୀ ହୁଅନ୍ତି । ୩୫ ।

ଷଷ୍ଠିହ୍ରଦ ତୀର୍ଥରେ ସ୍ନାନ କଲେ ଅନ୍ନଦାନ ଅପେକ୍ଷା ଅଧିକ ଫଳଲାଭ ହୁଏ । ୩୬ । ହେ ଭରତଶ୍ରେଷ୍ଠ ! ମାଘମାସ ପୂର୍ଣ୍ଣିମାରେ ତିନ କୋଟି ଦଶ ସହସ୍ର ତୀର୍ଥ ପ୍ରୟାଗରେ ପ୍ରବେଶ କରନ୍ତି । ୩୭ । ହେ ଭରତର୍ଷଭ ! ଯେଉଁ ବ୍ୟକ୍ତି ସେହି ମାଘ ପୂର୍ଣ୍ଣିମାରେ ପ୍ରୟାଗରେ ନିୟତ ଓ ସଂଶିତବ୍ରତ ହୋଇ ସ୍ନାନ କରେ, ସେ ନିଷ୍ପାପ ହୋଇ ସ୍ୱର୍ଗଗାମୀ ହୁଏ । । ୩୮ । ମରୁଦ୍‌ଗଣତୀର୍ଥ, ପିତୃଗଣଙ୍କ ଆଶ୍ରମ ଏବଂ ବୈବସ୍ୱତ ତୀର୍ଥରେ ସ୍ନାନ କଲେ ମନୁଷ୍ୟ ତୀର୍ଥ ସଦୃଶ ପବିତ୍ରତା ଲାଭ କରେ । ୩୯ । ବ୍ରହ୍ମସର ଓ ଭାଗୀରଥୀ ତୀର୍ଥରେ ପ୍ରବେଶ କରି ସେଠାରେ ସ୍ନାନ ଓ ତର୍ପଣ କରି ଏକ ମାସ ନିରାହାର ହୋଇ ଅବସ୍ଥାନ କଲେ ମନୁଷ୍ୟ ଚନ୍ଦ୍ରଲୋକ ପ୍ରାପ୍ତ ହୁଅନ୍ତି । ୪୦ । ନର ଉତ୍ପାତକ ତୀର୍ଥରେ ସ୍ନାନ ଓ ଅଷ୍ଟାବକ୍ର ତୀର୍ଥରେ ତର୍ପଣ କରି ଦ୍ୱାଦଶ ଦିବସ ନିରାହାରରେ ରହିଲେ ଅଶ୍ୱମେଧ ଯଜ୍ଞର ଫଳ ଲାଭ ହୁଏ । ୪୧ । ମନୁଷ୍ୟ ଥରେ ମାତ୍ର ଗୟାକୁଯାଇ ଗୟାର ଅନ୍ତର୍ଗତ ଅଶ୍ମପୃଷ୍ଠ, ନିରବିନ୍ଦ ପର୍ବତ ଅର୍ଥାତ ପ୍ରେତ ପର୍ବତ ଓ କୌଞ୍ଚ-ପଦୀରେ ପ୍ରବେଶ କଲେ ବ୍ରହ୍ମହତ୍ୟା ପାତକକୁ ବିନାଶ କରି ପବିତ୍ର ହୁଅନ୍ତି । ୪୨ ।

କଳବିଙ୍କ ତୀର୍ଥର ଜଳରେ ସ୍ନାନ କଲେ ମନୁଷ୍ୟ ସମସ୍ତ ବିଷୟ ଜାଣିପାରନ୍ତି; ଅଗ୍ନିପୁର ତୀର୍ଥରେ ସ୍ନାନ କଲେ ଅଗ୍ନିକନ୍ୟା ପୁରରେ ଅବସ୍ଥାନ କରନ୍ତି । ୪୩ । କରବୀରପୁରରେ ସ୍ନାନ କରି ବିଶାଳାତୀର୍ଥରେ ତର୍ପଣ କଲେ ଓ ଦେବହ୍ରଦରେ ସ୍ନାନକଲେ ମନୁଷ୍ୟ ବ୍ରହ୍ମସ୍ୱରୂପରେ ବିରାଜିତ ହୁଅନ୍ତି । ୪୪ । ଆବର୍ତ୍ତନନ୍ଦା ଓ ମହାନନ୍ଦାକୁ ଗମନକଲେ

ମନୁଷ୍ୟ ଜିତେନ୍ଦ୍ରିୟ ଓ ହିଂସାଶୂନ୍ୟ ହୁଅନ୍ତି ଏବଂ ନନ୍ଦନବନରେ ଅବସ୍ଥାନ କରି ଅପ୍ସରୋଗଣଙ୍କଦ୍ୱାରା ସେବିତ ହୁଅନ୍ତି । ୪୫ । କାର୍ତ୍ତିକ ମାସର ପୌର୍ଣ୍ଣମୀରେ ସ୍ଥିରମନା ହୋଇ ଉର୍ବଶୀତୀର୍ଥକୁ ଗମନ କଲେ ଓ ବିଧି ଅନୁସାରେ ଲୌହିତ୍ୟ ତୀର୍ଥରେ ସ୍ନାନ କଲେ ମନୁଷ୍ୟ ପୁଣ୍ଡରୀକ ଯଜ୍ଞର ଫଳପ୍ରାପ୍ତ ହୁଅନ୍ତି । ୪୬ ।

ରାମହ୍ରଦରେ ସ୍ନାନ କରି ବିପାଶାରେ ତର୍ପଣ ପୂର୍ବକ ଦ୍ୱାଦଶ ଦିବସ ନିରାହାର ହେଲେ, ମନୁଷ୍ୟ ପାପରୁ ମୁକ୍ତିଲାଭ କରେ । ୪୭ । ମନୁଷ୍ୟ ଅତି ଶୁଦ୍ଧ ମନରେ ମହାହ୍ରଦ ତୀର୍ଥରେ ସ୍ନାନ କରି ଏକମାସ ନିରାହାର ହୋଇ ଅବସ୍ଥାନ କଲେ ଜମଦଗ୍ନି ସଦୃଶ ସଦ୍‌ଗତି ପ୍ରାପ୍ତ ହୁଅନ୍ତି । ୪୮ । ମନୁଷ୍ୟ ସତ୍ୟସନ୍ଧ ଓ ହିଂସାଶୂନ୍ୟ ଏବଂ ବିମୀତ ହୋଇ ବିନ୍ଧ୍ୟାଚଳରେ ଶରୀରକୁ ତାପ ପ୍ରଦାନପୂର୍ବକ ଏକମାସ ତପୋଽନୁଷ୍ଠାନ କଲେ ସିଦ୍ଧିପ୍ରାପ୍ତ ହୁଅନ୍ତି । ୪୯ । ନର୍ମଦା ଓ ଶୂର୍ପାରକ ଜଳରେ ସ୍ନାନ କରି ଏକପକ୍ଷ ନିରାହାର ହୋଇ ଅବସ୍ଥାନ କଲେ, ମନୁଷ୍ୟ ରାଜପୁତ୍ର ହୁଅନ୍ତି । ୫୦ ।

ମନୁଷ୍ୟ ପବିତ୍ର ଓ ସ୍ଥିରମନା ହୋଇ ଜମ୍ବୁମାର୍ଗରେ ତିନିମାସ ଗମନ କଲା ଉତ୍ତାରେ ଏକ ଅହୋରାତ୍ର ମଧ୍ୟରେ ସିଦ୍ଧିପ୍ରାପ୍ତ ହୁଅନ୍ତି । ୫୧ । କୋକାମୁଖରେ ସ୍ନାନ କଲା ଉତ୍ତାରେ ଅଞ୍ଜଳିକାଶ୍ରମକୁ ଯାଇ ସେଠାରେ କୌପୀନଧାରୀ ହୋଇ ଶାକ ଭକ୍ଷଣ କଲେ, ମନୁଷ୍ୟ ଦଶଗୋଟି କୁମାରୀ ଫଳକ ତୀର୍ଥର ସୁକୃତ ପ୍ରାପ୍ତ ହୁଅନ୍ତି । ସେ କଦାପି ଯମାଳୟକୁ ଗମନ କରନ୍ତି ନାହିଁ । ଯେଉଁ ନର କନ୍ୟାହ୍ରଦର ଉପକୂଳରେ ବାସ କରନ୍ତି ସେ ସ୍ୱର୍ଗ ନଗରବାସୀ ହୁଅନ୍ତି । ୫୩ ।

ହେ ମହାବାହୋ ! ଯେଉଁବ୍ୟକ୍ତି ସ୍ଥିରମନା ହୋଇ ପ୍ରଭାସ ତୀର୍ଥରେ ଅମାବାସ୍ୟା ତିଥିରେ ସ୍ନାନକରି ଏକରାତି ଅବସ୍ଥାନ କରନ୍ତି, ସେ ସିଦ୍ଧିଲାଭ କରନ୍ତି ଓ ଅମରତ୍ୱ ପ୍ରାପ୍ତହୁଅନ୍ତି । ୫୪ । ଉଜ୍ଜାନକତୀର୍ଥ, ଆର୍ଷ୍ଟିସେନଙ୍କ ଆଶ୍ରମ ଓ ପିଙ୍ଗାଙ୍କ ଆଶ୍ରମରେ ସ୍ନାନକଲେ ମନୁଷ୍ୟ ସର୍ବପାପରୁ ମୁକ୍ତହୁଅନ୍ତି । ୫୫ ।

ନର ତିନିରାତ୍ରି ଉପବାସ କରି କୁଳ୍ୟାତୀର୍ଥରେ ଅବଗାହନ ଓ ଅଘ-ମର୍ଷଣମନ୍ତ୍ର ଜପକଲେ ଅଶ୍ୱମେଧ ଯଜ୍ଞର ଫଳପ୍ରାପ୍ତ ହୁଅନ୍ତି । ୫୬ । ପିଣ୍ଡାରକ ତୀର୍ଥରେ ସ୍ନାନକରି ପବିତ୍ର ଭାବରେ ସେଠାରେ ଏକରାତ୍ରି ବାସକଲେ ମନୁଷ୍ୟ ପରଦିନ ପ୍ରାତଃକାଳରେ ଅଗ୍ନିଷ୍ଟୋମଯଜ୍ଞର ଫଳପ୍ରାପ୍ତ ହୁଅନ୍ତି । ୫୭ । ଧର୍ମାରଣ୍ୟରେ ସୁଶୋଭିତ ବ୍ରହ୍ମସରୋବରକୁ ଗମନକରି ସେଠାରେ ପବିତ୍ର ହୋଇ ସ୍ନାନକଲେ, ମନୁଷ୍ୟ ପୁଣ୍ଡରୀକ ଯଜ୍ଞର ଫଳପ୍ରାପ୍ତ ହୁଅନ୍ତି । ୫୮ । କାମକୁ ଜୟକରି ମୈନାକ ପର୍ବତ ତୀର୍ଥରେ ଏକମାସ ସ୍ନାନ ଓ ସନ୍ଧ୍ୟୋ-ପାସନା କଲେ ମନୁଷ୍ୟ ସର୍ବପ୍ରକାର ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି । ୫୯ । ଭ୍ରୂଣହାବ୍ୟକ୍ତି ଶତଯୋଜନ ପଥ ଅତିକ୍ରମ ପୂର୍ବକ କାଳୋଦକ, ନନ୍ଦୀକୁଣ୍ଡ, ଓ ଉତ୍ତର ମାନସ ତୀର୍ଥରେ ସ୍ନାନକଲେ ଭ୍ରୂଣହତ୍ୟା ପାପରୁ ବିମୁକ୍ତ ହୁଅନ୍ତି । ୬୦ ।

ନନ୍ଦୀଶ୍ୱର ଶିବଙ୍କ ମୂର୍ତ୍ତି ଦର୍ଶନ କଲେ ମନୁଷ୍ୟ ପାପହୀନ ହୁଅନ୍ତି । ଯେଉଁ ନର ସ୍ୱର୍ଗମାର୍ଗ ତୀର୍ଥରେ ସ୍ନାନ କରନ୍ତି, ସେ ବ୍ରହ୍ମଲୋକଗାମୀ ହୁଅନ୍ତି । । ୬୧ । ସମସ୍ତ ରତ୍ନମାନଙ୍କ ଆକର, ସିଦ୍ଧଚାରଣ ସେବିତ, ଶଙ୍କରଙ୍କ ଶ୍ୱଶୁର ପବିତ୍ର ହିମାଳୟଗିରି ବିଖ୍ୟାତ ଅଟେ; (୬୨) ଯେଉଁ ବେଦଜ୍ଞ ବ୍ରାହ୍ମଣ ଶରୀରକୁ ଅନିତ୍ୟ ବିବେଚନା କରି ସେହି ପର୍ବତକୁ ଗମନପୂର୍ବକ ତପସ୍ୟା ମୁନି ଓ ଦେବଗଣଙ୍କୁ ନମସ୍କାରପୂର୍ବକ ଅର୍ଚ୍ଚନାରେ ପ୍ରବୃତ୍ତ ହୋଇ ବିଧିଅନୁସାରେ ସେହି ସ୍ଥାନରେ ଦେହ ପରିତ୍ୟାଗ କରନ୍ତି, ସେ ସିଦ୍ଧିଲାଭ ଦ୍ୱାରା ଅନାୟାସରେ ସନାତନ ବ୍ରହ୍ମଲୋକଗାମୀ ହୁଅନ୍ତି । ୬୪ ।

ଯେଉଁ ବ୍ୟକ୍ତି କାମ, କ୍ରୋଧ ଓ ଲୋଭ ପରିତ୍ୟାଗ ପୂର୍ବକ ତୀର୍ଥସ୍ଥାନରେ ଅବସ୍ଥିତ ହୁଅନ୍ତି, ତୀର୍ଥ ପର୍ଯ୍ୟଟନ ପ୍ରଭାବରୁ ତାହାଙ୍କର କିଛି ଅପ୍ରାପ୍ତ ହୁଏ ନାହିଁ । ୬୫ । ଯେଉଁ ସମସ୍ତ ତୀର୍ଥ ଅତିବିଷମ, ଦୁର୍ଗମ ଓ ଅଗମ୍ୟ, ସେହି ତୀର୍ଥମାନଙ୍କୁ ଦେଖିବା ଇଚ୍ଛାରେ ମନ ମଧ୍ୟରେ ଚିନ୍ତା କରିବାର ବିଧେୟ । ୬୬ ।

ଏହି ରହସ୍ୟ ତୀର୍ଥ ସେବନ ଉପାଖ୍ୟାନ, ଯଜ୍ଞଫଳ ପ୍ରଦାୟକ, ପାପନାଶନ, ଉତ୍କୃଷ୍ଟ ସ୍ୱର୍ଗଫଳ ପ୍ରଦାୟକ, ଦେବଗଣଙ୍କର ପ୍ରୀତିବର୍ଦ୍ଧକ

ଅତଏବ ଗୋପନୀୟ । ୬୭ । ଏହି ତୀର୍ଥଯାତ୍ରା ଉପାଖ୍ୟାନକୁ ବ୍ରାହ୍ମଣ, ଆତ୍ମହିତକର ସାଧୁ, ସୁହୃଦ୍‌ଜନମାନଙ୍କ ନିକଟରେ ପାଠକରିବାର ବିଧେୟ ଓ ଅନୁଗତ ଶିଷ୍ୟଙ୍କ କର୍ଣ୍ଣରେ କହିବ । ୬୮ । ଅଙ୍ଗିରା ପ୍ରାର୍ଥୀ ହେବାରୁ ବୁଦ୍ଧିମାନ୍ କାଶ୍ୟପ ଏହି ଉପାଖ୍ୟାନକୁ ଅଙ୍ଗିରାଙ୍କ ନିକଟରେ କୀର୍ତ୍ତନ କରିଥିଲେ । ତତ୍ପରେ ମହାତପା ଅଙ୍ଗିରା ଗୌତମ ମୁନିଙ୍କ ନିକଟରେ କୀର୍ତ୍ତନ କରିଥିଲେ । ୬୯ । ଏହି ରହସ୍ୟ ପରମ ପବିତ୍ର ଉପାଖ୍ୟାନ ମହର୍ଷିମାନଙ୍କ ଜପ୍ୟ, ଲୋକମାନେ ଏହାକୁ ସର୍ବଦା ଜପକଲେ ପବିତ୍ର ହୋଇ ଦେହ ପରିତ୍ୟାଗ ପୂର୍ବକ ସ୍ୱର୍ଗଗାମୀ ହୁଅନ୍ତି । ୭୦ ।

ଯେଉଁ ବ୍ୟକ୍ତି ଅଙ୍ଗିରାଙ୍କ କୀର୍ତ୍ତିତ ଏହି ତୀର୍ଥଯାତ୍ରା ଉପାଖ୍ୟାନକୁ ଶ୍ରବଣ କରନ୍ତି, ସେ ଉତ୍କୃଷ୍ଟ ବଂଶରେ ଜନ୍ମଗ୍ରହଣପୂର୍ବକ ଜାତିସ୍ମର ହୁଅନ୍ତି । ୭୧ ।

ଅଙ୍ଗିରସ ତୀର୍ଥଯାତ୍ରାରେ ପଞ୍ଚବିଂଶ ଅଧ୍ୟାୟ ସମାପ୍ତ । ୨୫ ।



## ଷଡ଼ବିଂଶତିତମ ଅଧ୍ୟାୟ

ବୈଶମ୍ପାୟନ କହିଲେ, ମହାରାଜ ! ଯେତେବେଳେ ଭ୍ରାତୃଗଣ ଓ ଅନ୍ୟାନ୍ୟ ନରପାଳ ଗଣଙ୍କ ଦ୍ୱାରା ପରିବେଷ୍ଟିତ ଯୁଧିଷ୍ଠିର ବୃହସ୍ପତିଙ୍କ ସଦୃଶ ବୁଦ୍ଧିମାନ୍, ବ୍ରହ୍ମାଙ୍କ ସଦୃଶ କ୍ଷମାଶୀଳ, ଇନ୍ଦ୍ରଙ୍କ ସମାନ ପରାକ୍ରମଶାଳୀ, ସୂର୍ଯ୍ୟ ସମାନ ତେଜସ୍ୱୀ, ଯୁଦ୍ଧରେ ଅର୍ଜୁନଙ୍କ ଦ୍ୱାରା ଆହତ, ମହାତେଜା ଭୀଷ୍ମଙ୍କୁ ତୀର୍ଥ ମାହାତ୍ମ୍ୟ ପ୍ରଶ୍ନ କରିଥିଲେ, ସେତେବେଳେ ଅତ୍ରି, ବଶିଷ୍ଠ, ଭୃଗୁ, ପୁଲସ୍ତ୍ୟ ପୁଲହ, କ୍ରତୁ, ଅଙ୍ଗିରା, ଗୌତମ, ଅଗସ୍ତ୍ୟ, ସୁମନ୍ତ, ବିଶ୍ୱାମିତ୍ର, ସ୍ଥୂଳଶିରା, ସମ୍ବର୍ତ୍ତ, ପ୍ରମତି, ଦମ, ବୃହସ୍ପତି, ଶୁକ୍ରାଚାର୍ଯ୍ୟ, ବ୍ୟାସ, ଚ୍ୟବନ, କାଶ୍ୟପ, ଧ୍ରୁବ, ଦୁର୍ବାସା, ଜମଦଗ୍ନି, ମାର୍କଣ୍ଡେୟ, ଗାଲବ, ଭରଦ୍ୱାଜ, ରୈଭ୍ୟ ଯବକ୍ରୀତ, ତ୍ରିତ, ସ୍ଥୂଳାକ୍ଷ, ଶବଳାକ୍ଷ, କଣ୍ୱ, ମେଧାତିଥି, କୃଶ, ଦ, ପର୍ବତ, ସୁଧନ୍ୱା, ଏକତ, ଦ୍ୱିତ, ନିତମ୍ଭୂ, ଭୁବନ, ଧୌମ୍ୟ,

ଶତାନନ୍ଦ, ଅକୃତବ୍ରଣ, ଜମଦଗ୍ନିଙ୍କ ପୁତ୍ର ପରଶୁରାମ ଓ କଚ ପ୍ରଭୃତି ମହାତ୍ମା ମହର୍ଷିଗଣ ଶରଶଯ୍ୟାରେ ଶୟାନ, କାଳାକାଂକ୍ଷୀ ଅଚ୍ୟୁତ ଭରତଶ୍ରେଷ୍ଠ ଭୀଷ୍ମଙ୍କୁ ଦେଖିବା ଇଚ୍ଛାରେ ଆଗମନ କରିଥିଲେ । ୮ ।

ମହାତ୍ମା ମହର୍ଷିଗଣ ଭୀଷ୍ମଙ୍କୁ ଦେଖିବା ନିମିତ୍ତ ଆଗତ ହୋଇଥିଲେ । ସେହି ସମାଗତ ମହାତ୍ମାମାନଙ୍କୁ ଯୁଧିଷ୍ଠିର ଓ ତାଙ୍କ ଭ୍ରାତୃଗଣ ଯଥାବିଧି ଅର୍ଚ୍ଚନା କଲେ । ଯୁଧିଷ୍ଠିରଙ୍କଦ୍ୱାରା ପୂଜିତ ସମସ୍ତ ଇନ୍ଦ୍ରତୁଲ୍ୟ ମହର୍ଷିଗଣ ସୁଖରେ ଉପବିଷ୍ଟ ହୋଇ ଭୀଷ୍ମଙ୍କୁ ମଧୁର ବାକ୍ୟରେ ସମ୍ଭାଷଣ କଲେ ଭୀଷ୍ମ ସେହି ମହାତ୍ମା ଋଷିମାନଙ୍କର ସର୍ବେନ୍ଦ୍ରିୟ ମନୋହର ସୁମଧୁର କଥାସମୂହ ଶ୍ରବଣ କରି ଆପଣାକୁ ସ୍ୱର୍ଗସ୍ଥିତ ହେଲି ପରି ଜାଣି ପରମ ସନ୍ତୋଷ ପ୍ରାପ୍ତ ହେଲେ । ତଦନନ୍ତର ସେହି ସମସ୍ତ ମହର୍ଷିଗଣ ଭୀଷ୍ମଙ୍କୁ ଓ ପାଣ୍ଡବଗଣଙ୍କୁ ଆମନ୍ତ୍ରଣ କରି (୧୨) ସମସ୍ତଙ୍କ ସାକ୍ଷାତରେ ଅନ୍ତର୍ହିତ ହେଲେ । ସମସ୍ତ ପାଣ୍ଡବମାନେ ଅନ୍ତର୍ହିତ ସେହି ମହାଭାଗ ଋଷିମାନଙ୍କୁ ବାରମ୍ବାର ସ୍ତବ ଓ ପ୍ରଣାମ କଲେ । ମନ୍ତ୍ରକୋବିଦ ଋଷିଗଣ ପ୍ରସନ୍ନ ମନରେ ଗମନୋନ୍ମୁଖ ସୂର୍ଯ୍ୟଙ୍କ ପରି ଭୀଷ୍ମଙ୍କ ଚତୁର୍ଦ୍ଦିଗ ବେଷ୍ଟନ କରିଥିଲେ । ସେମାନଙ୍କ ତପଃ ପ୍ରଭାବରେ ଦିକ୍‌ସମୂହ ପ୍ରକାଶିତ ହୋଇଥିବାର ଦେଖି ପାଣ୍ଡବମାନେ ପରମ ବିସ୍ମୟ ପ୍ରାପ୍ତ ହେଲେ । ୧୫ । ପାଣ୍ଡବମାନେ ସେହି ଋଷିମାନଙ୍କର ଉତ୍କୃଷ୍ଟ ଐଶ୍ୱର୍ଯ୍ୟ ଚିନ୍ତା କରି ଭୀଷ୍ମଙ୍କ ସହିତ ସେମାନଙ୍କ ସମ୍ବନ୍ଧ କଥୋପକଥନ କଲେ । ୧୬ ।

ବୈଶମ୍ପାୟନ କହିଲେ, କଥା ଶେଷରେ ପାଣ୍ଡବ ଧର୍ମପୁତ୍ର ଯୁଧିଷ୍ଠିର ମସ୍ତକଦ୍ୱାରା ଭୀଷ୍ମଙ୍କ ପାଦଦ୍ୱୟ ସ୍ପର୍ଶ କରି ଧର୍ମବିଷୟକ ପ୍ରଶ୍ନ ପଚାରିଲେ । ୧୭ । ଯୁଧିଷ୍ଠିର କହିଲେ, ହେ ପିତାମହ ! କେଉଁ କେଉଁ ଦେଶ, କେଉଁ କେଉଁ ଜନପଦ, କେଉଁ କେଉଁ ଆଶ୍ରମ, କେଉଁ କେଉଁ ପର୍ବତ, କେଉଁ କେଉଁ ନଦୀମାନଙ୍କୁ ଆପଣ ଉତ୍କୃଷ୍ଟ ପବିତ୍ର ବୋଲି ଜାଣନ୍ତି । ୧୮ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ଆମ୍ଭେ ଏହି ବିଷୟରେ ଶିଳୋଞ୍ଛ ବୃତ୍ତି ଓ ସିଦ୍ଧ ଏହି ଦୁଇ ବ୍ରାହ୍ମଣଙ୍କର ପୁରାତନ ଇତିହାସ କହୁଅଛୁଁ । ୧୯ ।

କୌଣସି ସମୟରେ ଜଣେ ସିଦ୍ଧ ମହର୍ଷି ଗିରିମାଳାବ୍ୟାପ୍ତ ଏହି ପୃଥିବୀକି ଭ୍ରମଣ କରି ଗୋଟିଏ ଗୃହମେଧୀ ଶିଳବୃତ୍ତିଙ୍କ ଗୃହରେ ପ୍ରବିଷ୍ଟ ହୋଇ-ଥିଲେ । ସେହି ଶିଳବୃତ୍ତି ତାହାଙ୍କୁ ବିଧି ଅନୁସାରେ ଅର୍ଚ୍ଚନା କରିଥିଲେ । ସେହି ସିଦ୍ଧ ମହର୍ଷି ତାହାଙ୍କ ଦ୍ୱାରା ସତ୍କାର ପ୍ରାପ୍ତ ହୋଇ ତଦୀୟ ଗୃହରେ ପରମ ସୁଖରେ ଏକରାତି ବାସ କଲେ । ପରଦିନ ପ୍ରାତଃକାଳରେ ମହାତ୍ମା ଶିଳବୃତ୍ତି ଗାତ୍ରୋତ୍ଥାନ କରି ଶୁଚି ହୋଇ ପ୍ରାତଃକୃତ୍ୟାଦି ସମାପନ ପୂର୍ବକ ଅତିଥି ସିଦ୍ଧଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ସେହି ମହାତ୍ମା ଦୁହେଁ ବେଦ ଓ ଉପନିଷଦର ବିଷୟ କଥୋପକଥନ କଲେ । ୨୩ ।

ହେ ଯୁଧିଷ୍ଠିର ! ତୁମ୍ଭେ ଆମ୍ଭଙ୍କୁ ଯାହା ପଚାରୁଅଛ, ତାହା କଥା ଶେଷରେ ମେଧାବୀ ଶିଳବୃତ୍ତି ସିଦ୍ଧଙ୍କୁ ଆମନ୍ତ୍ରଣ କରି ପଚାରିଥିଲେ । ୨୪ । ଶିଳବୃତ୍ତି କହିଲେ, ହେ ଭଗବନ୍ ! କେଉଁ ଦେଶ, କେଉଁ ଜନପଦ, କେଉଁ ପର୍ବତ, କେଉଁ ଆଶ୍ରମ ଓ କେଉଁ ନଦୀ ସମୂହ ଅତି ପବିତ୍ର ବୋଲି ଆପଣ ଜାଣନ୍ତି ତାହା କହିବା ହେଉନ୍ତୁ । ୨୫ ।

ସିଦ୍ଧ କହିଲେ, ହେ ମହର୍ଷେ ! ନଦୀ ଶ୍ରେଷ୍ଠା ଭାଗୀରଥୀ ଗଙ୍ଗା ଯେଉଁ ସମସ୍ତ ଦେଶ, ରାଜ୍ୟ, ଆଶ୍ରମ ଓ ପର୍ବତମାନଙ୍କ ମଧ୍ୟରେ ପ୍ରବାହିତ ହେଉଅଛନ୍ତି, ସେହି ସମସ୍ତ ଦେଶ-ପ୍ରଭୃତି ପରମ ପବିତ୍ର ଅଟନ୍ତି । ୨୬ । ଜନ୍ତୁଗଣ ଭାଗୀରଥୀଙ୍କ ଆରାଧନା ଦ୍ୱାରା ଯେଉଁ ଗତିକି ଲାଭ କରନ୍ତି, ତପସ୍ୟା, ବ୍ରହ୍ମଚର୍ଯ୍ୟ, ଯଜ୍ଞ, ଓ ଦାନଦ୍ୱାରା ତାହା ଲବ୍ଧ ହୁଏ ନାହିଁ । ୨୭ ।

ଯେଉଁମାନେ ଗଙ୍ଗାଜଳରେ ସ୍ନାନ କରି ଦେହ ପରିତ୍ୟାଗ କରନ୍ତି, ସେମାନେ ପୁନଶ୍ଚ କଦାପି ସ୍ୱର୍ଗରୁ ଭ୍ରଷ୍ଟ ହୁଅନ୍ତି ନାହିଁ । ୨୮ । ହେ ବିପ୍ର ! ଯେଉଁମାନେ ଗଙ୍ଗାଜଳ ଦ୍ୱାରା ସକଳ କାର୍ଯ୍ୟ ନିର୍ବାହ କରନ୍ତି, ସେହି ମନୁଷ୍ୟମାନେ ପୃଥିବୀ ପରିତ୍ୟାଗ ପୂର୍ବକ ସ୍ୱର୍ଗରେ ବାସ କରନ୍ତି । ୨୯ । ଯେଉଁ ମନୁଷ୍ୟଗଣ ଯୌବନାବସ୍ଥାରେ ବିବିଧପାପମାନଙ୍କୁ କରି ପଶ୍ଚାତ୍ ଗଙ୍ଗାଙ୍କୁ ସେବା କରନ୍ତି, ସେମାନେ ମଧ୍ୟ ଉତ୍କୃଷ୍ଟ ଗତିକି ପ୍ରାପ୍ତ ହୁଅନ୍ତି । ୩୦ । ଜଳକ୍ଳେଦିତ ପୁରୁଷମାନେ ଗଙ୍ଗାର ପବିତ୍ର ଜଳରେ ସ୍ନାନ କଲେ ଯେଉଁ ଗତି ପ୍ରାପ୍ତ ହୁଅନ୍ତି, ତାହା ଶତଶତ ଯଜ୍ଞରେ ମଧ୍ୟ ମିଳେ ନାହିଁ । ୩୧ ।

ଯେତେକାଳ ପର୍ଯ୍ୟନ୍ତ ମନୁଷ୍ୟର ଅସ୍ଥି ଗଙ୍ଗା ଜଳରେ ପତିତ ହୋଇଥାଏ, ତାବତ୍ କାଳ ପର୍ଯ୍ୟନ୍ତ ଅର୍ଥାତ୍ ସହସ୍ର ସହସ୍ର ବର୍ଷ ପର୍ଯ୍ୟନ୍ତ ମନୁଷ୍ୟ ସ୍ୱର୍ଗରେ ପୂଜିତ ହେଉଥାଏ ।୩୨। ସୂର୍ଯ୍ୟଦେବ ଯେଉଁପରି ଉଦୟ ସମୟରେ ପ୍ରଗାଢ଼ ଅନ୍ଧକାରକୁ ବିନଷ୍ଟ କରନ୍ତି, ସେହିପରି ଗଙ୍ଗାଜଳରେ ସ୍ନାନଶୀଳ ବ୍ୟକ୍ତି ସ୍ୱକୀୟ ପାପ କ୍ଷୟକରି ବିରାଜିତ ହୁଅନ୍ତି । ୩୩ । ଯେଉଁ ଦେଶ ଓ ଦିକ୍ ସମୂହରେ ପବିତ୍ର ଗଙ୍ଗା ଜଳ ପ୍ରବାହିତ ହେଉ ନାହିଁ, ତାହା ସବୁ ଚନ୍ଦ୍ରଶୂନ୍ୟ ରାତ୍ରି ଓ ପୁଷ୍ପହୀନ ବୃକ୍ଷପରି ହତଶ୍ରୀ ହୋଇ ଅଛନ୍ତି । ୩୪ । ସମସ୍ତ ବର୍ଣ୍ଣ ଓ ଆଶ୍ରମ ଧର୍ମଜ୍ଞାନ ବିବର୍ଜିତ ହେଲେ, ଯାଗସମୂହ ସୋମରସ ଶୂନ୍ୟହେଲେ ଯେଉଁପରି ନିନ୍ଦନୀୟ ହୁଅନ୍ତି, ଗଙ୍ଗା ବ୍ୟତିରେକେ ଭୂଭାଗ ତାଦୃଶ ନିନ୍ଦନୀୟ ହୁଏ । ୩୫ । ଶୈଳହୀନ ଭୂମଣ୍ଡଳ, ସୂର୍ଯ୍ୟ ଓ ବାୟୁହୀନ ଆକାଶମଣ୍ଡଳ ଯେଉଁପରି, ଗଙ୍ଗା ବିହୀନ ଦେଶ ଓ ଦିଗ ସମୂହ ମଧ୍ୟ ସେହି-ପରି ଅଟନ୍ତି । ଏହି ବିଷୟରେ ସଂଶୟ ନାହିଁ । ୩୬ ।

ତ୍ରିଭୁବନର ସମସ୍ତ ପ୍ରାଣୀଗଣ ପବିତ୍ର ଗଙ୍ଗାଜଳରେ ତର୍ପ୍ୟମାଣ ହୋଇ ପରମ ତୃପ୍ତି ଲାଭ କରନ୍ତି ।୩୭। ଯାବକ ବ୍ରହ୍ମ ଋଷିଗଣ, ଗୋବୃନ୍ଦଙ୍କୁ ଯବ ଭକ୍ଷଣ କରାଇ ସେମାନଙ୍କ ଗୋମୟରୁ ନିର୍ଗତ ଯବ ସମୂହ ଅଗ୍ନିରେ ପାକ କରି ତାହା ଆହାରପୂର୍ବକ ଅତି ପବିତ୍ର ହେଲେ ବୋଲି ଜାଣନ୍ତି, କିନ୍ତୁ ଯେଉଁ ବ୍ୟକ୍ତି ସୂର୍ଯ୍ୟ କିରଣରେ ସୁତପ୍ତ ଗଙ୍ଗାଜଳକୁ ପାନ କରନ୍ତି, ସେ ଉକ୍ତ ଜଳକୁ ଗୋ ସମୂହର ଗୋମୟରୁ ନିର୍ମୁକ୍ତ ଯବ ଅପେକ୍ଷା ଉତ୍କୃଷ୍ଟ ବୋଲି ଜାଣନ୍ତି । ୩୮ । ଯେ ଶରୀର ଶୋଧନ ସହସ୍ର ଚାନ୍ଦ୍ରାୟଣ ବ୍ରତ କରନ୍ତି ଓ ଯେ ଗଙ୍ଗାଜଳ ପାନ କରନ୍ତି, ସେହି ଦୁହେଁ ପବିତ୍ରତା ବିଷୟରେ ସମାନ କି ଅସମାନ ଏ ବିଷୟରେ ସନ୍ଦେହ ।୩୯। ଯେଉଁ ପୁରୁଷ ସହସ୍ର ଯୁଗ ପର୍ଯ୍ୟନ୍ତ ଗୋଟିଏ ପାଦରେ ଦଣ୍ଡାୟମାନ ହୋଇ ଥାଆନ୍ତି ଓ ଯେଉଁ ବ୍ୟକ୍ତି ଏକମାସ ଗଙ୍ଗା ତଟରେ ଅବସ୍ଥାନ କରି ଥାଆନ୍ତି, ସେହି ଦୁହେଁ ପବିତ୍ରତା ବିଷୟରେ ସମାନ କି ଅସମାନ ଏହି ବିଷୟରେ ସନ୍ଦେହ । ୪୦ ।

ଯେଉଁ ବ୍ୟକ୍ତି ଦଶ ସହସ୍ର ଯୁଗ ପର୍ଯ୍ୟନ୍ତ ଅଧୋମୁଖରେ ବୃକ୍ଷରେ ଲମ୍ବମାନ ହୋଇଥାଆନ୍ତି ଓ ଯେଉଁ ବ୍ୟକ୍ତି ଗଙ୍ଗାତୀରରେ ସ୍ୱେଚ୍ଛାନୁସାରେ

ବାସ କରନ୍ତି, ସେହି ଉଭୟଙ୍କ ମଧ୍ୟରେ ପବିତ୍ରତା ବିଷୟରେ ଗଙ୍ଗାତୀର ବାସୀ ଅଧିକ ଉତ୍କୃଷ୍ଟ । ୪୧ । ତୁଳାରାଶି ଅଗ୍ନିରେ ପତିତ ହେଲେ ଯେଉଁ-ପରି ଭସ୍ମସାତ୍ ହୁଏ, ଗଙ୍ଗାରେ ସ୍ନାନଶୀଳ ବ୍ୟକ୍ତିର ସର୍ବପାପ ସେହିପରି ବିଦୂରିତ ହୁଏ । ୪୨ । ଏହି ସଂସାରରେ ଦୁଃଖରେ ହତଚେତନ ଗତି ଅନ୍ୱେଷଣକାରୀ ସର୍ବପ୍ରାଣୀ ସମୂହର ଗଙ୍ଗା ସଦୃଶ୍ୟ ଅନ୍ୟଗତି ନାହିଁ । ୪୩ । ସର୍ପବୃନ୍ଦ ଗରୁଡ଼ଙ୍କୁ ଦେଖିଲେ ଯେଉଁପରି ବିଷଶୂନ୍ୟ ହୁଅନ୍ତି, ମନୁଷ୍ୟଗଣ ଗଙ୍ଗାକୁ ଦର୍ଶନ କଲେ ତଦବତ୍ ସର୍ବପାପରୁ ବିମୁକ୍ତ ହୁଅନ୍ତି । ୪୪ । ଇହଲୋକରେ ଯେଉଁମାନେ ଅଧର୍ମ ପରିପୂର୍ଣ ଓ ଯେଉଁମାନେ ଅପ୍ରତିଷ୍ଟ, ସେମାନଙ୍କୁ ଗଙ୍ଗାଦେବୀ କେବଳ ପ୍ରତିଷ୍ଠା, ଧର୍ମ, ଆଶ୍ରୟ ସୁଖ ଓ ଶୁଭଫଳ ପ୍ରଦାନ କରନ୍ତି । ୪୫ । ଯେଉଁ ପୁରୁଷାଧାମମାନେ ଅନେକ ଗୁରୁତର ପାପ ସମୂହରେ ଗ୍ରସ୍ତ ହୋଇ ଥାଆନ୍ତି ଏବଂ ନରକରେ ପତନୋନ୍ମୁଖ ହୋଇ ଥାଆନ୍ତି, ସେହିମାନେ ଯଦି ଗଙ୍ଗାଦେବୀଙ୍କର ଆଶ୍ରିତ ହୁଅନ୍ତି, ତେବେ ସେ ସେହିମାନଙ୍କୁ ପାପରୁ ପରିତ୍ରାଣ କରନ୍ତି । ୪୬ ।

ହେ ବୁଦ୍ଧିଯୁକ୍ତ ପ୍ରବର ! ଯେଉଁମାନେ ସର୍ବଦା ଗଙ୍ଗାଦର୍ଶନ କରନ୍ତି, ସେହିମାନେ ପରଲୋକରେ ମୁନିଗଣ ଓ ଇନ୍ଦ୍ରାଦି ଦେବଗଣଙ୍କର ସମକକ୍ଷ ହୁଅନ୍ତି । ୪୭ । ହେ ବିପ୍ର ! ଯେଉଁ ନରାଧମମାନେ ଅଶୁଭକର୍ମା-ନୁଷ୍ଠାନକାରୀ ଓ ବିନୟ ଏବଂ ଆଚାର ଶୂନ୍ୟ, ସେହିମାନେ ଗଙ୍ଗାଦେବୀଙ୍କ ଆଶ୍ରିତ ହେଲେ ସହଜରେ ସଦାଚାର ପରିପୂର୍ଣ ଓ ନିଷ୍ପାପ ହୁଅନ୍ତି । ୪୮ । ସୁରମାନଙ୍କର ଅମୃତ, ପିତୃଗଣଙ୍କର ସ୍ୱଧା, ନାଗଗଣଙ୍କର ସୁଧା ଯାଦୃଶ ପ୍ରୀତିକର, ନରମାନଙ୍କର ଗଙ୍ଗାଜଳ ତାଦୃଶ ପାପହାରକ ଓ ପ୍ରୀତିକାରକ ଅଟେ । ୪୯ । କ୍ଷୁଧାର୍ତ୍ତ ବାଳକମାନେ ଯେଉଁପରି ମାତାଙ୍କୁ ଉପାସନା କରନ୍ତି, ଶ୍ରେୟଃକାମ ବ୍ୟକ୍ତିମାନେ ଗଙ୍ଗାଦେବୀଙ୍କୁ ତାଦୃଶ ଉପାସନା କରନ୍ତି । ୫୦ । ଇହଲୋକରେ ବ୍ରହ୍ମଲୋକ ଯେଉଁପରି ସମସ୍ତ ଲୋକ ଅପେକ୍ଷା ଶ୍ରେଷ୍ଠ, ନଦୀଶ୍ରେଷ୍ଠା ଗଙ୍ଗା ସେହିପରି ସ୍ନାନଶୀଳ ବ୍ୟକ୍ତିମାନଙ୍କ ପକ୍ଷରେ ସମସ୍ତ ନଦୀ ଅପେକ୍ଷା ଉତ୍କୃଷ୍ଟା । ୫୧ ।

ପୃଥିବୀ ଓ ଧେନୁ ଯେଉଁପରି ଦେବାଦିମାନଙ୍କର ଉପଜୀବ, ଏହି ପୃଥିବୀରେ ସମସ୍ତ ପ୍ରାଣୀକୁଳର ଗଙ୍ଗା ସେହିପରି ଉପଜୀବ । ୫୨ ।

ସୁରଗଣ ଯେଉଁପରି ସବାଦ୍ଧ ସଙ୍ଗରେ ଚନ୍ଦ୍ର ସୂର୍ଯ୍ୟସ୍ଥିତ ଅମୃତ ପାନ କରନ୍ତି, ମାନବଗଣ ତଦ୍‌ବତ ଗଙ୍ଗାଜଳ ପାନ କରନ୍ତି । ୫୩ । ଜାହ୍ନବୀ ପୁଳିନସ୍ଥିତ ବାଲୁକା ଦେହରେ ଲିପ୍ତ କଲେ ମନୁଷ୍ୟ ଦେବତା ସଦୃଶ ହୁଅନ୍ତି । ୫୪ । ଯେଉଁ ବ୍ୟକ୍ତି ଜାହ୍ନବୀତୀର ମୃତ୍ତିକାକୁ ମସ୍ତକରେ ଧାରଣ କରନ୍ତି, ସେ ତମୋନାଶ ନିମିତ୍ତ ସୂର୍ଯ୍ୟ ସଦୃଶ ନିର୍ମଳ ରୂପ ଧାରଣ କରନ୍ତି । ୫୫ । ଗଙ୍ଗାଜଳ ସଂଯୁକ୍ତ ବାୟୁ ଯେତେବେଳେ ଯାହାକୁ ସ୍ପର୍ଶ କରେ, ସେ ତେତେବେଳେ ତାହାର ସମସ୍ତପାପ ନଷ୍ଟ କରେ । ୫୬ । ମାନବଗଣ ଦୁଃଖରେ ନିତାନ୍ତ କାତର ହୋଇ ଯଦି ଗଙ୍ଗା ଦର୍ଶନ କରନ୍ତି, ତେବେ ସେମାନଙ୍କର ତତ୍‌କ୍ଷଣାତ୍ ସମସ୍ତ ଦୁଃଖ ଦୂରୀଭୂତ ହୁଏ । ୫୭ । ଗଙ୍ଗା ହଂସ ଓ କୋକ ପ୍ରଭୃତି ବିହଙ୍ଗଗଣଙ୍କର ଗୀତଶବ୍ଦରେ ଗନ୍ଧର୍ବମାନଙ୍କୁ ଓ ସ୍ୱୀୟ ଉତ୍ତୁଙ୍ଗ ପୁଳିନଦ୍ୱାରା ପର୍ବତମାନଙ୍କୁ ପରାସ୍ତ କରୁଅଛନ୍ତି । ୫୮ । ହଂସ ପ୍ରଭୃତି ବିବିଧ ଅସଂଖ୍ୟ ପକ୍ଷୀଗଣାକୀର୍ଣ୍ଣ ଗୋକୁଳ ପରିପୂର୍ଣ୍ଣ ଗଙ୍ଗାକୁ ଦର୍ଶନ କଲେ ସ୍ୱର୍ଗଲୋକ ବିସ୍ମୃତ ହୁଏ । ୫୯ ।

ଗଙ୍ଗାତୀରରେ ବାସ କଲେ ମନୁଷ୍ୟମାନଙ୍କର ଯାଦୃଶ ପ୍ରୀତି ଜନ୍ମେ, ସ୍ୱର୍ଗଲୋକରେ ଅବସ୍ଥାନ ପୂର୍ବକ ବିବିଧ ସୁଖଭୋଗ କଲେ ସୁଦ୍ଧା ତାଦୃଶ ପ୍ରୀତିଲାଭ ହେବାର ସମ୍ଭାବନା ନାହିଁ । ୬୦ । ଏହି ଭୂମଣ୍ଡଳରେ କାୟ ମନୋବାକ୍ୟ କର୍ମ ଜନିତ ପାପଗ୍ରସ୍ତ ପୁରୁଷ ଗଙ୍ଗାକୁ ଦର୍ଶନ କଲେ ପବିତ୍ର ହୁଅନ୍ତି, ଏହି ବିଷୟରେ ଆମ୍ଭର ସଂଶୟ ନାହିଁ । ୬୧ । ମନୁଷ୍ୟ ଗଙ୍ଗାକୁ ଦର୍ଶନ କଲେ, ଗଙ୍ଗାଜଳ ସ୍ପର୍ଶ କଲେ ଓ ଗଙ୍ଗାଜଳରେ ସ୍ନାନ କଲେ ସେ ଊର୍ଦ୍ଧ୍ୱତନ ସପ୍ତପୁରୁଷ, ଅଧସ୍ତନ ସପ୍ତ ପୁରୁଷ ଓ ଅନ୍ୟାନ୍ୟ ଅତିରିକ୍ତ ପିତୃମାନଙ୍କୁ ପରିତ୍ରାଣ କରନ୍ତି । ୬୨ । ଯେଉଁମାନେ ଗଙ୍ଗାଙ୍କ ମାହାତ୍ମ୍ୟ ଶ୍ରବଣ କରନ୍ତି, ଯେଉଁମାନେ ଗଙ୍ଗା ଦର୍ଶନ ଅଭିଳାଷ କରନ୍ତି, ଯେଉଁମାନେ ଗଙ୍ଗାଙ୍କୁ ଦର୍ଶନ କରନ୍ତି, ଯେଉଁମାନେ ଗଙ୍ଗାଜଳ ସ୍ପର୍ଶ କରନ୍ତି, ଯେଉଁମାନେ ଗଙ୍ଗାଜଳ ପାନ କରନ୍ତି ଓ ଗଙ୍ଗାଜଳରେ ସ୍ନାନ କରନ୍ତି, ସେମାନଙ୍କର ଉଭୟ କୁଳକୁ ଗଙ୍ଗାଦେବୀ ବିଶେଷରୂପେ ପରିତ୍ରାଣ କରନ୍ତି । ୬୩ । ଗଙ୍ଗାଦେବୀଙ୍କ ଦର୍ଶନ, ଗଙ୍ଗାଜଳ ସ୍ପର୍ଶନ, 'ଗଙ୍ଗା' ବୋଲି ନାମକୀର୍ତ୍ତନ ଓ ଗଙ୍ଗାରେ ସ୍ନାନ କରିବାରୁ ସେହି ଗଙ୍ଗାଦେବୀ ଶତ ଶତ ସହସ୍ର ସହସ୍ର ପାପାତ୍ମାମାନଙ୍କୁ ପବିତ୍ର

କରି ଅଛନ୍ତି । ୭୪ । ଯେଉଁ ନର ସ୍ୱକୀୟ ଜନ୍ମ ଜୀବନ ଓ ଶାସ୍ତ୍ରାଧ୍ୟୟନଙ୍କୁ ସଫଳ କରିବାକୁ ଇଚ୍ଛୁକ ହେବେ, ସେ ଗଙ୍ଗାଦ୍ୱାରକୁ ଯାଇ ଦେବତା ଓ ପିତୃଗଣଙ୍କୁ ତର୍ପଣ କରିବେ । ୭୫ ।

ପୁରୁଷ ଗଙ୍ଗାଦ୍ୱାରରେ ବାସ କଲେ ଯେଉଁ ଉତ୍କୃଷ୍ଟ ଫଳ ପ୍ରାପ୍ତ ହୁଅନ୍ତି, ତାଦୃଶ ଫଳ ପୁତ୍ରଦ୍ୱାରା ପ୍ରାପ୍ତ ହୁଅନ୍ତି ନାହିଁ, ଧନ ଦ୍ୱାରା ପ୍ରାପ୍ତ ହୁଅନ୍ତି ନାହିଁ ଓ ଯଜ୍ଞ ପ୍ରଭୃତି ସତ୍କର୍ମ ଅନୁଷ୍ଠାନ ଦ୍ୱାରା ମଧ୍ୟ ପ୍ରାପ୍ତ ହୁଅନ୍ତି ନାହିଁ । ୭୬ । ଯେଉଁ ସମର୍ଥ ବ୍ୟକ୍ତିମାନେ ମଙ୍ଗଳଦାୟିନୀ ପବିତ୍ର ଗଙ୍ଗାଜଳକୁ ଦର୍ଶନ କରନ୍ତି ନାହିଁ, ସେହିମାନେ ମୃତଜନ, ଜନ୍ମାନ୍ଧ ଓ ପଙ୍ଗୁ ବ୍ୟକ୍ତି ସଦୃଶ ଅଟନ୍ତି । ୭୭ । ତ୍ରିକାଳଜ୍ଞ ମହର୍ଷିଗଣ ଓ ଇନ୍ଦ୍ରାଦିଦେବଗଣ ଯେଉଁ ଗଙ୍ଗାଙ୍କୁ ସେବା କରନ୍ତି, ତାହାଙ୍କୁ କେଉଁ ମାନବ ସେବା ନ କରିବ ।୭୮। ବାନପ୍ରସ୍ଥ, ଗୃହସ୍ଥ, ଯତି, ଆଶ୍ରମବାସୀ ଓ ବ୍ରହ୍ମଚାରୀଗଣ ଯେଉଁ ଗଙ୍ଗାଙ୍କ ଆଶ୍ରୟ ଗ୍ରହଣ କରନ୍ତି, ତାହାଙ୍କୁ କେଉଁ ପୁରୁଷ ଅବା ଆଶ୍ରୟ ନ କରିବ । ୭୯ । ପ୍ରାଣ ଯିବା ସମୟରେ ଯେଉଁ ଜିତେନ୍ଦ୍ରିୟ ବ୍ୟକ୍ତି ସ୍ଥିର ମନରେ ଗଙ୍ଗାଙ୍କୁ ସ୍ମରଣ କରନ୍ତି; ସେ ପରମଗତି ପ୍ରାପ୍ତ ହୁଅନ୍ତି ବୋଲି ଏହି କଥା ଶିଷ୍ଟଜନ ସମ୍ମତ ଅଟେ । ୮୦ ।

ଏହି ପୃଥିବୀରେ ଯେଉଁ ପୁରୁଷ ଯାବଜ୍ଜୀବନ ଗଙ୍ଗାଙ୍କୁ ଉପାସନା କରନ୍ତି, ସେହି ଭୟଙ୍କର ବ୍ୟାଘ୍ରାଦି ହିଂସଜନ୍ତୁମାନଙ୍କଠାରୁ, ପିଶାଚ ପ୍ରଭୃତି-ମାନଙ୍କଠାରୁ ବ୍ରହ୍ମହତ୍ୟା ପ୍ରଭୃତି ପାପହେତୁରୁ କିମ୍ବା ରାଜାଙ୍କଠାରୁ ଭୟଗ୍ରସ୍ତ ହୁଅନ୍ତି ନାହିଁ । ୮୧ । ଉତ୍କୃଷ୍ଟ ପୁଣ୍ୟ ପ୍ରଦାୟିନୀ ଗଙ୍ଗା ଗଗନରୁ ପତିତ ହେବା ସମୟରେ ତାହାଙ୍କୁ ମହେଶ୍ୱରଦେବ ମସ୍ତକରେ ଧାରଣ କଲେ ଓ ସ୍ୱର୍ଗରେ ଅମରଗଣ ମଧ୍ୟ ତାହାଙ୍କୁ ସେବା କରନ୍ତି । ୮୨ । ଗଙ୍ଗାଦେବୀଙ୍କର ତିନଗୋଟି ନିର୍ମଳ ପଥଦ୍ୱାରା ତ୍ରିଲୋକ ଅଳଂକୃତ ହୋଇଅଛି । ଯେଉଁ ପୁରୁଷ ତାହାଙ୍କ ଜଳସେବା କରିବେ ସେ କୃତକୃତ୍ୟ ହେବେ । ୮୩ ।

ଦେବଗଣ ମଧ୍ୟରେ ଜ୍ୟୋତିର୍ମୟ ସୂର୍ଯ୍ୟ ଯେଉଁପରି ଶ୍ରେଷ୍ଠ, ପିତୃଗଣ ମଧ୍ୟରେ ଚନ୍ଦ୍ର ଯେଉଁପରି ଶ୍ରେଷ୍ଠ ଓ ମନୁଷ୍ୟକୁଳ ମଧ୍ୟରେ ରାଜେନ୍ଦ୍ର ଯେଉଁ-ପରି ଶ୍ରେଷ୍ଠ, ତଦ୍‌ବତ ଗଙ୍ଗାଦେବୀ ସମସ୍ତ ନଦୀ ମଧ୍ୟରେ ଉତ୍କୃଷ୍ଟା । ୮୪ ।

ଗଙ୍ଗାହୀନ ବ୍ୟକ୍ତିର ଯାଦୃଶ ଦୁଃଖ ଉପସ୍ଥିତ ହୁଏ, ମାତୃହୀନ, ପିତୃହୀନ, ସ୍ତ୍ରୀହୀନ, ପୁତ୍ରହୀନ ଓ ଧନହୀନ ବ୍ୟକ୍ତିର ମଧ୍ୟ ତାଦୃଶ ଦୁଃଖ ଉପସ୍ଥିତ ହୁଏ ନାହିଁ । ୭୫ । ଗଙ୍ଗାଙ୍କୁ ଦର୍ଶନ କଲେ ମନରେ ଯାଦୃଶ ଆହ୍ଲାଦ ଜାତ ହୁଏ, ବ୍ରହ୍ମଲୋକ ଜାତ ଦ୍ରବ୍ୟ ସମୂହଦ୍ୱାରା, ଅଗ୍ନିଷ୍ଟୋମ ଅର୍ଥାତ୍ ଯାଗାଦି ପ୍ରାପ୍ୟ ସ୍ୱର୍ଗୀୟ ବିଷୟ ସମୂହଦ୍ୱାରା ପୁତ୍ର ଓ ଧନସମୂହ ଦ୍ୱାରା ମଧ୍ୟ ତାଦୃଶ ଆନନ୍ଦ ଜାତ ହୁଏ ନାହିଁ ।୭୬। ପୂର୍ଣ୍ଣଚନ୍ଦ୍ରଙ୍କୁ ଦର୍ଶନ କଲେ ମନୁଷ୍ୟମାନଙ୍କର ଦୃଷ୍ଟି ଯେଉଁପରି ପ୍ରସନ୍ନା ହୁଏ, ତ୍ରିପଥଗାମିନୀ ଗଙ୍ଗାଙ୍କୁ ଦର୍ଶନ କଲେ ମନୁଷ୍ୟ-ମାନଙ୍କର ଦୃଷ୍ଟି ତାଦୃଶ ପ୍ରସନ୍ନା ହୁଏ । ୭୭ । ଯେଉଁ ବ୍ୟକ୍ତି ଗଙ୍ଗାଙ୍କଠାରେ ଶ୍ରଦ୍ଧା କରନ୍ତି, ଯେଉଁ ବ୍ୟକ୍ତି ସ୍ତ୍ରୀ, ପୁତ୍ର ପ୍ରଭୃତିଙ୍କଠାରେ ମନ ନ ରଖି ଗଙ୍ଗାଙ୍କଠାରେ ମନ ରଖିଥାଆନ୍ତି, ଯେଉଁ ବ୍ୟକ୍ତି ଗଙ୍ଗାଙ୍କୁ ଆରାଧ୍ୟ ଦେବତା ବୋଲି ଜାଣନ୍ତି, ଯେଉଁମାନେ ଗଙ୍ଗାଙ୍କୁ ଗତି ବୋଲି ଜାଣି ତଦୀୟ ତଟରେ ନିରନ୍ତର ବାସ କରନ୍ତି ଓ ଯେଉଁମାନେ ଗଙ୍ଗାଙ୍କ-ଠାରେ ଅତିଶୟ ଭକ୍ତିଦ୍ୱାରା ଅନୁଗତ ହୁଅନ୍ତି, ସେହିମାନେ ଗଙ୍ଗାଦେବୀଙ୍କ ପ୍ରସନ୍ନତା ଲାଭ କରନ୍ତି । ୭୮ ।

ଭୂଚରଗଣ, ଖେଚରଗଣ, ଦେବଗଣ କିମ୍ବା ଅନ୍ୟାନ୍ୟ ପ୍ରାଣୀଗଣ ସମସ୍ତଙ୍କର ଗଙ୍ଗାଜଳରେ ସ୍ନାନ କରିବାର ବିଧେୟ । ସାଧୁମାନେ ଗଙ୍ଗା ସ୍ନାନକୁ ଉତ୍କୃଷ୍ଟ କର୍ମ ବୋଲି ଜାଣନ୍ତି । ୭୯ । ଗଙ୍ଗାଦେବୀ ସଗର ନରପାଳଙ୍କର ଭସ୍ମୀଭୂତ ପୁତ୍ରମାନଙ୍କୁ ପବିତ୍ର କରି ଇହଲୋକରୁ ସ୍ୱର୍ଗକୁ ନେଇଥିଲେ, ସେହି କାରଣରୁ ତାହାଙ୍କର ପବିତ୍ର ଯଶ ବିଶ୍ୱଲୋକ ମଧ୍ୟରେ ଖ୍ୟାତ ହୋଇଅଛି । ୮୦ । ଯେଉଁମାନଙ୍କ ଶରୀର ଗଙ୍ଗାଦେବୀଙ୍କ ପବନୋଦ୍ଧୂତ ବେଗଶାଳୀ ପବିତ୍ର ତରଙ୍ଗରେ ଅଭିଷିକ୍ତ ହୁଏ, ସେହିମାନେ ସୂର୍ଯ୍ୟଦେବଙ୍କ ସଦୃଶ ନିର୍ଦ୍ଦୋଷରୂପ ବିଷୟରେ ଦେଦୀପ୍ୟମାନ ହୁଅନ୍ତି । । ୮୧ । ଯେଉଁମାନେ ସୁନ୍ଦର ଜଳପୂର୍ଣ୍ଣ ପ୍ରଶାନ୍ତମୂର୍ତ୍ତି ବେଗବତୀ ଦୂରବଗାହା ଗଙ୍ଗାରେ ପ୍ରବିଷ୍ଟ ହୋଇ ଶରୀର ବିସର୍ଜନ କରିଥିଲେ, ସେହି ଧୀର ବ୍ୟକ୍ତିମାନେ ଦେବଗଣଙ୍କର ସାରୂପ୍ୟଲାଭ କରିଅଛନ୍ତି । ୮୨ ।

ଯଶସ୍ୱିନୀ, ଶ୍ରେଷ୍ଠ, ବିଶ୍ୱରୂପା, ଗଙ୍ଗା ଇନ୍ଦ୍ରାଦି ଦେବଗଣ, ମୁନିଗଣ ଓ ନରଗଣଙ୍କଦ୍ୱାରା ପୂଜିତା ଅଟନ୍ତି । ସେ ଅନ୍ଧ, ଜଡ଼ ଓ ଦ୍ରବ୍ୟ-

ହୀନ ବ୍ୟକ୍ତିମାନଙ୍କଠାରେ ପ୍ରସନ୍ନା ହୋଇ ସେହିମାନଙ୍କର ସମସ୍ତ ମନୋରଥ ପୂର୍ଣ୍ଣ କରନ୍ତି । ୮୩ । ଯେଉଁମାନେ ଅନ୍ନପ୍ରଦା, କର୍ମଫଳଦାୟିନୀ, ଅମୃତଜଳା, ତ୍ରିପଥଗାମିନୀ, ତ୍ରିଲୋକ ରକ୍ଷଣସମର୍ଥା ଗଙ୍ଗାଙ୍କର ଆଶ୍ରୟ ଗ୍ରହଣ କରିଥିଲେ, ସେହିମାନେ ସ୍ୱର୍ଗଗାମୀ ହୋଇଥିଲେ । ୮୪ । ଯେଉଁ ବ୍ୟକ୍ତି ଗଙ୍ଗାତଟରେ ବାସ କରିବେ ଅବା ଗଙ୍ଗାଙ୍କୁ ଦର୍ଶନ କରିବେ, ସ୍ପର୍ଶନ ଦର୍ଶନ ଦ୍ୱାରା ମହତ୍ତ୍ୱପ୍ରାପ୍ତ ଦେବତାମାନେ ତାହାଙ୍କୁ ଇହଲୋକରେ ସୁଖ, ପରଲୋକରେ ଅଭୀଷ୍ଟ ଗତି ପ୍ରଦାନ କରନ୍ତି । ୮୫ । ଯେଉଁମାନେ ପତିତୋଦ୍ଧାରିଣୀ, ବିଷ୍ଣୁମାତା, ବେଦମୟୀ, ଷଡ଼ୈଶ୍ୱର୍ଯ୍ୟଶାଳିନୀ, ପ୍ରକାଶିକା, ବିପ୍ରକୃଷ୍ଟା, ସର୍ବଲୋକଜନନୀ, ଦୂରବାହିନୀ, ମଙ୍ଗଳସ୍ୱରୂପା, ସର୍ବଭୋଗମୟୀ, ସୁନିର୍ମଳା, ସର୍ବଭୂତନିବାସା ଗଙ୍ଗାଙ୍କ ତୀରରେ ବାସ କରନ୍ତି, ସେମାନେ ସ୍ୱର୍ଗଗାମୀ ହୁଅନ୍ତି । ୮୬ ।

ପୂର୍ବକାଳରେ ସଗର ନରପାଳ ପୁତ୍ରଗଣଙ୍କ ଉଦ୍ଧାର ସମୟରେ ଯାହାଙ୍କ ଖ୍ୟାତି ଭୂମଣ୍ଡଳ, ଆକାଶମଣ୍ଡଳ, ପାତାଳତଳ ସମସ୍ତ ଦିଗବିଦିଗ ବ୍ୟାପିଥିଲା, ସେହି ନଦୀ ଶ୍ରେଷ୍ଠା ଗଙ୍ଗାଙ୍କ ଜଳପାନ କରି ମନୁଷ୍ୟଗଣ କୃତକୃତ୍ୟ ହୁଅନ୍ତି ।୮୭। କାର୍ତ୍ତିକେୟ ଓ ସୁବର୍ଣ୍ଣର ଜନନୀ, ଇହଲୋକରେ ତ୍ରିବର୍ଗ ଦାୟିନୀ, ଅମୃତବାହିନୀ, ପାପନାଶିନୀ, ସର୍ବତୀର୍ଥମୟୀ ଗଙ୍ଗା ଗଙ୍ଗା ନାମ ଧାରଣ କରି ଆକାଶରୁ ଅବତୀର୍ଣ୍ଣା ହୋଇଅଛନ୍ତି । ୮୮ । ହେ ରାଜନ୍ ! ସ୍ୱର୍ଗ ଓ ପୃଥିବୀର ଅଳଙ୍କାର ସ୍ୱରୂପା, ହିମାଳୟ ଦୁହିତା, ହରଙ୍କ ଭାର୍ଯ୍ୟା, ସୁଦର୍ଶନା, ତ୍ରିଲୋକର ପବିତ୍ରକାରିଣୀ, ଷଡ଼ୈଶ୍ୱର୍ଯ୍ୟ-ଶାଳିନୀ, ମଙ୍ଗଳଦାୟିନୀ ଗଙ୍ଗା ପୃଥିବୀରେ ପ୍ରବାହିତ ହେଉଅଛନ୍ତି । ୮୯ । ମଧୁସ୍ରାବିଣୀ, ଘୃତଧାରାବାହିନୀ, ଅର୍ଚ୍ଚିଷ୍ମତୀ, ଊର୍ମ୍ମି ଓ ତରଙ୍ଗମାଳାସଙ୍କୁଳା ଓ ଦ୍ୱିଜଗଣ ଶୋଭିତା ତ୍ରିଦିବ ଜନନୀ ଗଙ୍ଗା ଯେତେବେଳେ ସ୍ୱର୍ଗରୁ ପତିତା ହେଲେ, ସେତେବେଳେ ଶିବ ତାହାଙ୍କୁ ମସ୍ତକରେ ଧାରଣ କରିଥିଲେ । ତତ୍ପରେ ସେ ଶିବଙ୍କ ମସ୍ତକରୁ ହିମାଳୟରେ ତଦନନ୍ତର ପୃଥିବୀରେ ଅବତୀର୍ଣ୍ଣା ହେଲେ । ଭୁବନର ପରମ କାରଣ, ବିରଜା, ନିର୍ମଳା, ସୂକ୍ଷ୍ମା, ଧର୍ଦ୍ଧ ନିଦ୍ରାର ଶଯ୍ୟାସ୍ୱରୂପା, ଶୀଘ୍ରଗାମିନୀ, ବିଶ୍ୱପାଳନ କର୍ତ୍ତ୍ରୀ, ପବିତ୍ରଜଳା, ଯଶୋଦାୟିନୀ, ସିଦ୍ଧଗଣଙ୍କରଇଷ୍ଟା, ପୂଜନୀୟା

ଗଙ୍ଗାଦେବୀ, ନିଜ ଜଳରେ ସ୍ନାନଶୀଳ ବ୍ୟକ୍ତିମାନଙ୍କ ପକ୍ଷରେ ସ୍ୱର୍ଗର ପନ୍ଥା ସ୍ୱରୂପା ଅଟନ୍ତି । ୯୧ ।

ଯେ କ୍ଷମାଧାରଣ ଓ ରକ୍ଷା ବିଷୟରେ ପୃଥିବୀ ସଦୃଶା, ତେଜରେ ସୂର୍ଯ୍ୟ ଓ ଅଗ୍ନି ସ୍ୱରୂପା, ବ୍ରାହ୍ମଣଗଣ ଯାହାଙ୍କୁ ସର୍ବଦା ଆରାଧନା କରନ୍ତି, ଗଙ୍ଗାଦେବୀ ବ୍ରାହ୍ମଣକୁଳର ହିତକାରିଣୀ ବୋଲି କାର୍ତ୍ତିକେୟ ତ ତାଙ୍କୁ ନିତ୍ୟପୂଜା କରୁଥାଆନ୍ତି । ୯୨ । ଯେଉଁ ବ୍ୟକ୍ତିମାନେ ମନେ ମନେ ସର୍ବପ୍ରକାରରେ ବିଷ୍ଣୁ ପାଦଜାତା, ମହର୍ଷିଗଣ ପୂଜ୍ୟା, ଅତି ପବିତ୍ରଜଳା ପୁରାତମୀ ଜାହ୍ନବୀଙ୍କୁ ସମ୍ୟକ୍ ରୂପେ ପ୍ରସନ୍ନ ହୁଅନ୍ତି, ସେହିମାନେ ବ୍ରହ୍ମଲୋକକୁ ଗମନ କରନ୍ତି । ୯୩ ।

ଗଙ୍ଗାଦେବୀ ସର୍ବଗୁଣଯୁକ୍ତ ନଶ୍ୱର ଲୋକମାନଙ୍କୁ ଦେଖି ସେମାନଙ୍କ-ଠାରେ ମାତୃ ସଦୃଶ ସଦୟ ବ୍ୟବହାର କରି ଅଭୀଷ୍ଟଦାୟିନୀ ହୁଅନ୍ତି । ଅତଏବ ବ୍ରହ୍ମଲୋକ ଗମନୋତ୍ସୁକ ନରଗଣ ସର୍ବପ୍ରକାରରେ ଗଙ୍ଗାଙ୍କୁ ଉପାସନା କରିବେ । ୯୪ । ମୋକ୍ଷାଭିଳାଷୀ ବୁଦ୍ଧିମାନ୍ ବ୍ୟକ୍ତି ଅମୃତଦୁଗ୍ଧା ଧେନୁ ସ୍ୱରୂପା, ସର୍ବଜ୍ଞା, ଅନ୍ନବତୀ, ବିଶ୍ୱମାତା, ବ୍ରହ୍ମକାନ୍ତା, ଶତହ୍ରଦା, ବିଶ୍ୱଭୋଜ୍ୟା, ଶିଷ୍ଟଜନଗଣର ଆଶ୍ରୟସ୍ୱରୂପା, ଅମୃତଦାୟିନୀ ଗଙ୍ଗାଙ୍କୁ ଆଶ୍ରୟ କରିବେ । ୯୫ ।

ଭଗୀରଥ କଠୋର ତପସ୍ୟାଦ୍ୱାରା ଇନ୍ଦ୍ରଙ୍କ ସହିତ ସମସ୍ତ ଦେବଗଣଙ୍କୁ ପ୍ରସନ୍ନ କରାଇ ଗଙ୍ଗାଙ୍କୁ ପୃଥିବୀକୁ ଆଣିଥିଲେ । ନରଗଣ ତାହାଙ୍କ ଶରଣାପନ୍ନ ହେଲେ ସେମାନଙ୍କର ଇହଲୋକ ଓ ପରଲୋକରେ କୌଣସି ଭୟ ରହିବ ନାହିଁ । ୯୬ । ଆମ୍ଭେ ତୁମ୍ଭ ନିକଟରେ ନିଜବୁଦ୍ଧିର ସାଧ୍ୟାନୁସାରେ ଗଙ୍ଗାଙ୍କ ଗୁଣ ମଧ୍ୟରୁ କିଛି ଅଂଶ କୀର୍ତ୍ତନ କଲୁଁ, ଗଙ୍ଗାଦେବୀଙ୍କ ସମସ୍ତ ଗୁଣମାନଙ୍କୁ ସର୍ବପ୍ରକାରରେ ପରିମାଣ ଓ କୀର୍ତ୍ତନ କରିବାକୁ ଆମ୍ଭର କଦାପି ଶକ୍ତି ନାହିଁ । ୯୭ ।

ସୁମେରୁର ରତ୍ନସମୂହ ଓ ସମୁଦ୍ରର ଜଳରାଶି ସଂଖ୍ୟା କରାଯାଇ ପାରେ, କିନ୍ତୁ ଗଙ୍ଗା ଜଳରାଶିର ଗୁଣ ପରିମାଣ ଓ ଗୁଣକୀର୍ତ୍ତନ କରିବାକୁ

କେହି କଦାପି ସମର୍ଥ ହେବେ ନାହିଁ । ୯୮ । ଅତଏବ ଭକ୍ତି ପରାୟଣ ହୋଇ ସର୍ବଦା କାୟ ମନୋବାକ୍ୟରେ ଓ କର୍ମଦ୍ୱାରା ଗଙ୍ଗାଙ୍କର ମଧୁର ଗୁଣମାନଙ୍କୁ ସ୍ତୋତ୍ର, ଧ୍ୟାନ ଓ ସ୍ନାନାଦି ସମୟରେ ଶ୍ରଦ୍ଧା କରିବାର ଉଚିତ । । ୯୯ । ତୁମ୍ଭେ ଗଙ୍ଗାଙ୍କୁ ଆରାଧନା କଲେ, ତ୍ରିଲୋକରେ ସ୍ୱକୀୟ ଯଶ ବିସ୍ତାର କରି ଅବିଳମ୍ବରେ ଦୁର୍ଲ୍ଲଭ ପରମ ସିଦ୍ଧି ଲାଭପୂର୍ବକ ଅଖିଷ୍ଟ-ଲୋକରେ ବିହାର କରିବ । ୧୦୦ ।

ମହାନୁଭାବା ଶ୍ରଦ୍ଧାଳୁ ଜନବତ୍ସଳା ଗଙ୍ଗା ଇହଲୋକରେ ଭକ୍ତି-ପରାୟଣ ଲୋକଙ୍କୁ ସୁଖପ୍ରଦାନ କରନ୍ତି । ଅତଏବ ତାହାଙ୍କୁ ପ୍ରାର୍ଥନା କରୁଅଛୁଁ ଯେ ସେ ତୁମ୍ଭର ଓ ଆମ୍ଭର ସ୍ୱଧର୍ମଯୁକ୍ତ ଗୁଣସମୂହଦ୍ୱାରା ନିରନ୍ତର ପ୍ରସନ୍ନା ହୁଅନ୍ତୁ । ୧୦୧ । ଭୀଷ୍ମ କହିଲେ, ହେ ଧର୍ମରାଜ ! ତେଜସ୍ୱୀ ବିଦ୍ୱାନ୍ ମହାମତି ସିଦ୍ଧ, ଶିଳବୃତ୍ତିଙ୍କ ନିକଟରେ ଏହିପରି ଗଙ୍ଗାଙ୍କ ଅନୁରୂପ ଗୁଣ ଓ ମାହାତ୍ମ୍ୟ ବହୁପ୍ରକାର କୀର୍ତ୍ତନ କରି ସ୍ୱର୍ଗ ମାର୍ଗରେ ଅଧିରୂଢ଼ ହେଲେ । ୧୦୨ ।

ଶିଳବୃତ୍ତି ମଧ୍ୟ ସେହି ମହାପୁରୁଷଙ୍କ ଉପଦେଶାନୁସାରେ ଗଙ୍ଗାଙ୍କୁ ଯଥାବିଧି ଆରାଧନା କରି ଦୁର୍ଲ୍ଲଭ ସିଦ୍ଧି ପ୍ରାପ୍ତ ହେଲେ । ୧୦୩ । ହେ କୌନ୍ତେୟ ! ଏତେବେଳେ ତୁମ୍ଭେ ମଧ୍ୟ ପରମ ଭକ୍ତିଯୁକ୍ତ ହୋଇ ନିରନ୍ତର ଗଙ୍ଗାଙ୍କୁ ଉପାସନା କର, ଉତ୍ତମ ସିଦ୍ଧି ପ୍ରାପ୍ତ ହେବ । ୧୦୪ । ବୈଶମ୍ପାୟନ କହିଲେ, ହେ ଜନମେଜୟ ! ଯୁଧିଷ୍ଠିର ଭ୍ରାତୃମାନଙ୍କ ସହିତ ଭୀଷ୍ମୋକ୍ତ ଗଙ୍ଗାଙ୍କ ସ୍ତବ ସଂଯୁକ୍ତ ଇତିହାସ ଶ୍ରବଣ କରି ପରମ ପ୍ରୀତ ହେଲେ । ୧୦୫ ।

ଯେଉଁ ବ୍ୟକ୍ତି ଗଙ୍ଗା ସ୍ତବ ସଂଯୁକ୍ତ ଏହି ପବିତ୍ର ଇତିହାସକୁ ଶ୍ରବଣ କିମ୍ବା ପଠନ କରିବେ, ତାହାଙ୍କର ସମସ୍ତ କଳୁଷ ବିଦୂରିତ ହେବ । ୧୦୬ ।

ଇତି ଗଙ୍ଗାମାହାତ୍ମ୍ୟ କଥନେ ଷଡ଼ବିଂଶ ଅଧ୍ୟାୟ ସମାପ୍ତ । ୨୬ ।



# ସପ୍ତବିଂଶତତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ଧାର୍ମିକ ଶ୍ରେଷ୍ଠ ପିତାମହ ! ଆପଣ ପ୍ରଜ୍ଞା, ଶାସ୍ତ୍ରଜ୍ଞାନ, ସଚ୍ଚରିତ୍ର ବିବିଧ ସମସ୍ତ ସଦ୍‌ଗୁଣ ଓ ବୟସରେ ଯେଉଁପରି ଯୁକ୍ତ ହୋଇଅଛନ୍ତି, (୧) ଆପଣଙ୍କର ବୁଦ୍ଧି, ପ୍ରଜ୍ଞା ଓ ତପସ୍ୟା ମଧ୍ୟ ତଦନୁରୂପ ଅଟେ; ସେହି କାରଣରୁ ଆମ୍ଭେ ଆପଣଙ୍କୁ ଧର୍ମସମ୍ବନ୍ଧୀୟ ପ୍ରଶ୍ନ ପଚାରୁ ଅଛୁଁ । ୨ ।

ହେ ନରାଧିପ ! ନରଶ୍ରେଷ୍ଠ ! ଯାହାଙ୍କୁ ଧର୍ମ ବିଷୟକ ପ୍ରଶ୍ନ ହେବାର ଉଚିତ, ତ୍ରିଲୋକ ମଧ୍ୟରେ ଆପଣଙ୍କ ବ୍ୟତିରେକେ ତାଦୃଶ ଅନ୍ୟ ବ୍ୟକ୍ତି କେହି ନାହାନ୍ତି । କ୍ଷତ୍ରିୟ, ବୈଶ୍ୟ ଅଥବା ଶୂଦ୍ର ଯେଉଁ କର୍ମଦ୍ୱାରା ବ୍ରାହ୍ମଣତ୍ୱ ପ୍ରାପ୍ତହେବେ ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୩ । ହେ ପିତାମହ ! ତପସ୍ୟା, ସତ୍କାର୍ଯ୍ୟ ଅଥବା ଶାସ୍ତ୍ରଜ୍ଞାନ, ଏତନ୍ମଧ୍ୟରୁ କାହାଦ୍ୱାରା ଲୋକ ବ୍ରାହ୍ମଣତ୍ୱ ଲାଭର ଉପଯୋଗୀ ହୁଅନ୍ତି, ତାହା ଆପଣ କହିବା ହେଉନ୍ତୁ । ୪ । ଭୀଷ୍ମ କହିଲେ, ହେ ତାତ ଯୁଧିଷ୍ଠିର ! କ୍ଷତ୍ରିୟ ପ୍ରଭୃତି ବର୍ଣ୍ଣତ୍ରୟର ବ୍ରାହ୍ମଣତ୍ୱ ଲାଭ ହେବାର ଅତି କଠିନ କାରଣ, ସର୍ବଭୂତଙ୍କ ପକ୍ଷରେ ବ୍ରାହ୍ମଣତ୍ୱ ଉତ୍କୃଷ୍ଟ ଅଟେ । ୫ ।

ହେ ତାତ ଯୁଧିଷ୍ଠିର ! ଜୀବ ବାରମ୍ବାର ଜନ୍ମ ମୃତ୍ୟୁ ଲାଭ ଓ ନାନା ଯୋନିରେ ପରିଭ୍ରମଣ ପୂର୍ବକ ପରିଶେଷରେ କଦାଚିତ ବ୍ରାହ୍ମଣ ହୋଇ ଜାତ ହୁଅନ୍ତି । ଏହି ଉପଲକ୍ଷରେ ଆମ୍ଭେ ମତଙ୍ଗ ଓ ଗର୍ଦ୍ଦଭୀଙ୍କର ପୁରାତନ ଇତିହାସ ସମ୍ବାଦ କୀର୍ତ୍ତନ କରୁଅଛୁଁ ଶ୍ରବଣ କର । ୬ ।

ପୂର୍ବେ ଏକ ବ୍ରାହ୍ମଣଙ୍କର ସ୍ତ୍ରୀ ଗର୍ଭରୁ ଶୂଦ୍ରର ଔରସରେ ଗୋଟିଏ ପୁତ୍ର ଜାତ ହୋଇଥିଲା, ତାହାର ନାମ ମତଙ୍ଗ । ସେ ଅନ୍ୟ ବର୍ଣ୍ଣଜ ହେଲେ ସୁଦ୍ଧା ଜାତକର୍ମାଦି ସଂସ୍କାର ଯୋଗରୁ ତୁଲ୍ୟ ବର୍ଣ୍ଣତ୍ୱକୁ ପ୍ରାପ୍ତ ହୋଇଥିଲେ । ବ୍ରାହ୍ମଣ ମତଙ୍ଗଙ୍କୁ ଆପଣାର ଔରସ ଜାତ ଜାଣି ତାହାଙ୍କର ସମସ୍ତ ଜାତକର୍ମ ପ୍ରଭୃତି ଅନୁଷ୍ଠାନ କରିଥିଲେ, ସେ ସର୍ବଗୁଣଯୁକ୍ତ ଥିଲେ । ୮ ।

ହେ ପରନ୍ତପ ଯୁଧିଷ୍ଠିର ! ଏକଦା ସେହି ବ୍ରାହ୍ମଣ ଯଜ୍ଞ କରାଇବା ନିମିତ୍ତ ମତଙ୍ଗଙ୍କୁ ପ୍ରେରଣ କରିଥିଲେ । ମତଙ୍ଗ ଆଜ୍ଞା ପ୍ରାପ୍ତିମାତ୍ରେ ଗର୍ଦ୍ଦଭ ଯୁକ୍ତ ବେଗଗାମୀରଥରେ ଆରୋହଣ ପୂର୍ବକ ଯାତ୍ରାକଲେ । ୯ । କିନ୍ତୁ ସେ ଯେଉଁ ସ୍ଥାନକୁ ଗମନୋଦ୍ୟତ ହୋଇଥିଲେ, ରଥଯୋଜିତ ଅଶିକ୍ଷିତ ଗର୍ଦ୍ଦଭ ସେହିଦଗକୁ ନଯାଇ ସ୍ୱୀୟ ଜନନୀର ଅଭିମୁଖକୁ ଗମନକଲା । ସେହି କାରଣରୁ ମତଙ୍ଗ ତାହାର ନାସିକାରେ ବାରମ୍ବାର କଶାଘାତ କଲେ । ୧୦ ।

ପୁତ୍ରବତ୍ସଳା ଗର୍ଦ୍ଦଭୀ, ପୁତ୍ରର ନାସିକାରେ ତୀବ୍ର ବ୍ରଣଦେଖି କହିଲା, ହେ ପୁତ୍ର ! ତୁମ୍ଭେ ଶୋକ କରନା, ରଥରେ ଗୋଟିଏ ଚଣ୍ଡାଳ ବସିଅଛି । ୧୧ । ବ୍ରାହ୍ମଣ ଏତାଦୃଶ ନିଷ୍ଠୁର ସ୍ୱଭାବ ହୁଅନ୍ତି ନାହିଁ । ବ୍ରାହ୍ମଣ ସମସ୍ତଙ୍କର ମିତ୍ର, ପିତୃ ମାତୃ ସଦୃଶ ଅଟନ୍ତି । ବ୍ରାହ୍ମଣ ସମସ୍ତଙ୍କର ଆଚାର୍ଯ୍ୟ ଓ ଉପଦେଷ୍ଟା, ସେ କାହିଁକି କାହାକୁ ପ୍ରହାର କରିବେ ? । ୧୨ ।

ଏହି ପାପପ୍ରକୃତି ବ୍ୟକ୍ତି ତୁମ୍ଭଙ୍କୁ ବାଳକ ଦେଖିସୁଦ୍ଧା ଦୟା କରୁନାହିଁ । ଏ ଯଦୃଶ ନିର୍ଦ୍ଦୟ ବ୍ୟକ୍ତିର ଔରସରେ ଜନ୍ମିଅଛି, ତଦନୁସାରେ କାର୍ଯ୍ୟକରିବା ବୁଦ୍ଧି ହୋଇଅଛି । କାର୍ଯ୍ୟ କାରଣର ଅନୁଗତ । ୧୩ । ମତଙ୍ଗ ଗର୍ଦ୍ଦଭୀର ଏହି ପ୍ରକାର ଦାରୁଣ ବାକ୍ୟ ଶ୍ରବଣକରି ଶୀଘ୍ର ରଥରୁ ଅବତରଣ ପୂର୍ବକ ତାହାକୁ କହିଲେ, (୪) ହେ କଲ୍ୟାଣି ! ରାସଭି ! ଆମ୍ଭ ମାତା ଯେଉଁ କାରଣରୁ ଦୂଷିତା ହୋଇଅଛନ୍ତି, ତାହା ତୁମ୍ଭେ କହ । ହେ ଗର୍ଦ୍ଦଭି ! ତୁମ୍ଭେ ଆମ୍ଭଙ୍କୁ ଚଣ୍ଡାଳବୋଲି କପରି ଜାଣିଅଛ, ତାହା କହ । ୧୫ ।

ହେ ମହାପ୍ରାଜ୍ଞେ ! ତୁମ୍ଭେ ଆମ୍ଭଙ୍କୁ କପରି ଚଣ୍ଡାଳ ବୋଲି ଜାଣିଅଛ ଓ ଯେଉଁ ହେତୁରୁ ଆମ୍ଭର ବ୍ରାହ୍ମଣତ୍ୱ ନଷ୍ଟ ହୋଇଅଛି, ତାହା ସବୁ ଯଥାର୍ଥ ରୂପରେ ନିଃଶେଷ କରି ଆମ୍ଭଙ୍କୁ କହ । ୧୬ ।

ଗର୍ଦ୍ଦଭୀ କହିଲା, ତୁମ୍ଭେ କାମାତୁରା ବ୍ରାହ୍ମଣୀର ଗର୍ଭରେ ଶୂଦ୍ର ନାପିତ ଔରସରେ ଜାତ ହୋଇଅଛ, ସେହି କାରଣରୁ ତୁମ୍ଭେ ଚଣ୍ଡାଳତ୍ୱକୁ ପ୍ରାପ୍ତ ହୋଇଅଛ ଓ ତୁମ୍ଭର ବ୍ରାହ୍ମଣତ୍ୱ ନଷ୍ଟ ହୋଇଅଛି । ୧୭ ।

ଭୀଷ୍ମ କହିଲେ, ମତଙ୍ଗ ଏହି କଥା ଶ୍ରବଣକରି ଗୃହକୁ ପ୍ରତ୍ୟାଗତ ହେଲେ । ତତ୍ପରେ ତାହାଙ୍କ ପିତା ତାହାଙ୍କୁ ପ୍ରତ୍ୟାଗତ ହେବାର ଦେଖି କହିଲେ, (୧୮) ହେ ପୁତ୍ର ! ଆମ୍ଭେ ଗୁରୁକର୍ମରେ ଯଜ୍ଞସାଧନ ନିମିତ୍ତ ତୁମ୍ଭଙ୍କୁ ପ୍ରେରଣ କରିଥିଲୁଁ, ତୁମ୍ଭେ କାହିଁକି ଫେରିଆସିଲ ? ଆମ୍ଭେ ପଚାରୁଅଛୁଁ ତୁମ୍ଭର କୁଶଳ ତ ? । ୧୯ ।

ମତଙ୍ଗ କହିଲେ, ହେ ତାତ ! ଚଣ୍ଡାଳ କି କୁଶଳୀ ହୋଇପାରେ, ଏ ଯାହାର ଜନନୀ ସେ ଅନ୍ତ୍ୟଜ ହେଉ କମ୍ୱା ନ ହେଉ ତାହାର କୁଶଳ କିପରି ହେବ ? । ୨୦ ।

ହେ ପିତଃ ! ମୁଁ ବ୍ରାହ୍ମଣୀଙ୍କ ଗର୍ଭରେ ବୃଷଳର ଔରସରେ ଜାତ ହୋଇଅଛି ବୋଲି ମୋତେ ଅମାନୁଷୀ ଗର୍ଦ୍ଦଭୀ କହିଅଛି, ସେହି କାରଣରୁ ମୁଁ ଉତ୍କୃଷ୍ଟ ତପସ୍ୟା କରିବି । ୨୧ ।

ସେହି ମତଙ୍ଗ ପିତାଙ୍କୁ ଏହିପରି କହି ତପସ୍ୟା ବିଷୟରେ କୃତ ନିଶ୍ଚୟ ହୋଇ ବନକୁ ପ୍ରସ୍ଥାନ କଲେ । ତଦନନ୍ତର ସେ ମହାରଣ୍ୟକୁ ଯାଇ ବ୍ରାହ୍ମଣ୍ୟ ଲାଭ ବିଷୟରେ ଘୋରତର ତପୋଽନୁଷ୍ଠାନ କଲେ । ୨୨ । ସୁଖରେ ବ୍ରାହ୍ମଣତ୍ୱ ଲାଭ କରିବା ବିଷୟରେ ଇଚ୍ଛୁକ ମତଙ୍ଗ ସୁଚରିତ ତପସ୍ୟାରେ ନିଯୁକ୍ତ ହୋଇ ଦେବତାମାନଙ୍କୁ ତାପ ପ୍ରଦାନ କଲେ । ୨୩ । ଦେବରାଜ ତାହାଙ୍କୁ ତପସ୍ୟା ପରାୟଣ ହେବାର ଦେଖି କହିଲେ, ହେ ମତଙ୍ଗ ! ତୁମ୍ଭେ କେଉଁ ନିମିତ୍ତ ମନୁଷ୍ୟର ଉପଭୋଗମାନଙ୍କୁ ପରିତ୍ୟାଗ ପୂର୍ବକ ତପସ୍ୟା କରୁଅଛ ? । ୨୪ । ଆମ୍ଭେ ତୁମ୍ଭଙ୍କୁ ବର ପ୍ରଦାନ କରିବା, ତୁମ୍ଭେ ଯାହା ଇଚ୍ଛା କରୁଅଛ ତାହା ପ୍ରାର୍ଥୀ ହୁଅ; ତୁମ୍ଭେ ଯେଉଁବର ପ୍ରାପ୍ତ ହେବାକୁ ଇଚ୍ଛା ରଖିଅଛ ଅବିଳମ୍ବରେ ତାହାସବୁ ଆମ୍ଭଙ୍କୁ କହ । ୨୫ ।

ମତଙ୍ଗ କହିଲେ, ହେ ଭଗବନ୍ ! ଆମ୍ଭେ ବ୍ରାହ୍ମଣତ୍ୱକୁ କାମନା କରି ଏହି ତପସ୍ୟାରେ ନିଯୁକ୍ତ ହୋଇଅଛୁ, ତାହା ପ୍ରାପ୍ତ ହେଲେ ଏଠାରୁ ଗୃହକୁ ଗମନ କରିବୁଁ । ଅତଏବ ଆପଣଙ୍କ ନିକଟରେ ବ୍ରାହ୍ମଣତ୍ୱ ବର ପ୍ରାର୍ଥନା କରୁଅଛୁଁ । ୨୬ । ଭୀଷ୍ମ କଲେ, ପୁରନ୍ଦର ଏହି ବାକ୍ୟ ଶ୍ରବଣକରି ତାହାଙ୍କୁ କହିଲେ, ହେ ମତଙ୍ଗ ! ତୁମ୍ଭେ ଦୁର୍ଲ୍ଲଭ ବ୍ରାହ୍ମଣତ୍ୱ ପ୍ରାର୍ଥନା କରୁଅଛ । ୨୭ ।

ସୁକୃତ ହୀନ ଜନମାନେ ବ୍ରାହ୍ମଣତ୍ୱକୁ ପ୍ରାପ୍ତ ହୋଇପାରନ୍ତି ନାହିଁ । ହେ ଦୁର୍ବୁଦ୍ଧେ ! ତୁମ୍ଭେ ତାହା ପ୍ରାର୍ଥନା କଲେ ବିନାଶ ପ୍ରାପ୍ତ ହେବ । ଅତଏବ ଅବିଳମ୍ବେ ତହିଁରୁ ନିବୃତ୍ତ ହୁଅ । ୨୮ । ବ୍ରାହ୍ମଣତ୍ୱ ସର୍ବଭୂତର ଶ୍ରେଷ୍ଠ, ତାହା ତପସ୍ୟା ଦ୍ୱାରା ଅଧିକୃତ ହୋଇପାରେ ନାହିଁ । ସେହି ଉତ୍କୃଷ୍ଟ ବ୍ରାହ୍ମଣତ୍ୱକୁ ପ୍ରାର୍ଥନା କଲେ ଶୀଘ୍ର ବିନାଶ ପ୍ରାପ୍ତ ହେବ । ୨୯ ।

ଦେବତା, ଅସୁର ଓ ମନୁଷ୍ୟମାନଙ୍କ ମଧ୍ୟରେ ଯାହା ପରମ ପବିତ୍ର ବୋଲି ସମାଦୃତ ହୋଇଅଛି, ତୁମ୍ଭେ ଚଣ୍ଡାଳ ଯୋନିରେ ଜନ୍ମଗ୍ରହଣ କରି ତାହା କଦାପି ପ୍ରାପ୍ତ ହୋଇପାରିବ ନାହିଁ । ୩୦ ।

ଇନ୍ଦ୍ର ମତଙ୍ଗ ସମ୍ବାଦେ ସପ୍ତବିଂଶ ଅଧ୍ୟାୟ ସମାପ୍ତ । ୨୭ ।



## ଅଷ୍ଟବିଂଶତତମ ଅଧ୍ୟାୟ

ଭୀଷ୍ମ କହିଲେ, ଦେବରାଜ ଏହିପରି କହିବାରୁ ସଂଶିତାତ୍ମା ବ୍ରତଧାରୀ ମତଙ୍ଗ ତାହାଙ୍କ ବାକ୍ୟରେ ନିବୃତ୍ତ ନ ହୋଇ ଏକ ପାଦରେ ଶତବର୍ଷ ପର୍ଯ୍ୟନ୍ତ ଦଣ୍ଡାୟମାନ ହୋଇ ରହିଲେ । ୧ । ତଦନନ୍ତର ମହାଯଶା ଇନ୍ଦ୍ର ପୁନଶ୍ଚ ତାହାଙ୍କୁ କହିଲେ, ହେ ତାତ ! ତୁମ୍ଭେ ଦୁର୍ଲ୍ଲଭ ବ୍ରାହ୍ମଣତ୍ୱକୁ ପ୍ରାର୍ଥନା କଲେ ତାହା କଦାପି ପ୍ରାପ୍ତ ହୋଇ ପାରିବ ନାହିଁ । ୨ । ହେ ପୁତ୍ର ମତଙ୍ଗ ! ପରମ ସ୍ଥାନ ବ୍ରାହ୍ମଣତ୍ୱକୁ ପ୍ରାର୍ଥନାକଲେ ବିନାଶ ପ୍ରାପ୍ତ ହେବ । ସାହସ କରନା, ତୁମ୍ଭର ଏ ଧର୍ମପଥ ନୁହେ । ୩ ।

ହେ ଦୁର୍ବୁଦ୍ଧେ ! ତୁମ୍ଭେ ଇହଲୋକରେ ବ୍ରାହ୍ମଣତ୍ୱ ଲାଭ କରିବାକୁ ସମର୍ଥ ନୁହଁ । ଅପ୍ରାପ୍ୟ ପଦାର୍ଥକୁ ପ୍ରାର୍ଥନା କଲେ ନିଶ୍ଚୟ ଅବିଳମ୍ବରେ ବିନଷ୍ଟ ହେବ । ୪ । ହେ ମତଙ୍ଗ ! ବ୍ରାହ୍ମଣତ୍ୱ ପ୍ରାପ୍ତି ବିଷୟରେ ମୁଁ ତୁମ୍ଭଙ୍କୁ ବାରମ୍ବାର ନିଷେଧ କରୁଅଛି, ତଥାପି ଯଦି ତପସ୍ୟା ଦ୍ୱାରା ତାହା ପାଇବାକୁ ଇଚ୍ଛା କରୁଅଛ, ତେବେ ତାହା ତୁମ୍ଭର ସିଦ୍ଧ ହେବ ନାହିଁ । ୫ ।

ସମସ୍ତ ଜୀବ ତର୍ଯ୍ୟକ୍ ଯୋନରେ ଭ୍ରମଣ କଲା ଉତ୍ତାରେ ଯଦ୍ଦ ମନୁଷ୍ୟ ଯୋନରେ ଜାତ ହୁଅନ୍ତି, ତେବେ ପ୍ରଥମରେ ଚଣ୍ଡାଳ ଅବା ପୁକ୍‌କସ ଯୋନରେ ଜନ୍ମଗ୍ରହଣ କରନ୍ତି, ଏଥିରେ ସଂଶୟ ନାହିଁ । ୬ । ହେ ମତଙ୍ଗ ! ଯେଉଁ ବ୍ୟକ୍ତି ମନୁଷ୍ୟ ମଧ୍ୟରେ ପୁକ୍‌କସ ଅଥବା ଚଣ୍ଡାଳ ଯୋନରେ ଜନ୍ମଗ୍ରହଣ କରିଥାଆନ୍ତି, ସେ ସେହି ଯୋନରେ ଅତି ଦୀର୍ଘକାଳ ପର୍ଯ୍ୟନ୍ତ ଜନ୍ମଗ୍ରହଣ କରୁଥାଆନ୍ତି । ୭ ।

ସହସ୍ର ବର୍ଷ ପର୍ଯ୍ୟନ୍ତ ସେହି ନିକୃଷ୍ଟ ଯୋନରେ ପରିଭ୍ରମଣ ପୂର୍ବକ ଶୂଦ୍ରତ୍ୱ ପ୍ରାପ୍ତ ହୁଅନ୍ତି । ତତ୍ପରେ ସେ ବହୁ ଶତବର୍ଷ ପର୍ଯ୍ୟନ୍ତ ଶୂଦ୍ର ଯୋନରେ ଜନ୍ମଗ୍ରହଣ କରୁଥାଆନ୍ତି । ୮ । ତତ୍ପରେ ତ୍ରିଂଶତ୍ ସହସ୍ରବର୍ଷ ଅତୀତ ହେଲେ ସେ ବୈଶ୍ୟତ୍ୱ ପ୍ରାପ୍ତ ହୁଅନ୍ତି । ତତ୍‌ପରେ ସେହି ବୈଶ୍ୟ ଯୋନରେ ସେ ଚିରକାଳ ପର୍ଯ୍ୟନ୍ତ ଜନ୍ମଗ୍ରହଣ କରୁଥାଆନ୍ତି । ୯ । ବୈଶ୍ୟ ଯୋନରେ ଏକଲକ୍ଷ ଅଶୀତି ସହସ୍ର ବର୍ଷ ପରିଭ୍ରମଣ କଲା ଉତ୍ତାରେ କ୍ଷତ୍ରିୟ ଯୋନରେ ଜନ୍ମଗ୍ରହଣ କରନ୍ତି । କ୍ଷତ୍ରିୟତ୍ୱ ଲାଭ ଉତ୍ତାରେ ଏକଶତ ଅଶୀତିଲକ୍ଷ ବର୍ଷ ସେହି କ୍ଷତ୍ରିୟ ଯୋନରେ ପରିଭ୍ରମଣ କଲା ଉତ୍ତାରେ ପତିତ ବ୍ରାହ୍ମଣତ୍ୱ ପ୍ରାପ୍ତ ହୁଅନ୍ତି । । ୧୦ ।

ତତ୍ପରେ ସେ ସେହି ପତିତ ବ୍ରାହ୍ମଣ କୁଳରେ ଦ୍ୱିଶତ ଷୋଡ଼ଶ କୋଟିବର୍ଷ ପରିଭ୍ରମଣ କରି ତତ୍ପରେ ଅସ୍ତ୍ରଜୀବୀ ବ୍ରାହ୍ମଣ କୁଳରେ ଜାତ ହୁଏ । ୧୧ । ଅସ୍ତ୍ରଜୀବୀ ବ୍ରାହ୍ମଣ କୁଳରେ ଚିରକାଳ ପର୍ଯ୍ୟନ୍ତ ଜନ୍ମଗ୍ରହଣ କରି ତତ୍ପରେ ଅଷ୍ଟଶତ କୋଟି ଚତୁଃଷଷ୍ଟି ବର୍ଷ ଅତୀତ ହେଲାରୁ ଗାୟତ୍ରୀସେବୀ ବ୍ରାହ୍ମଣ ବଂଶରେ ଜନ୍ମଗ୍ରହଣ କରେ । ସେହି କୁଳରେ ଚିରକାଳ ମଧ୍ୟ ଜନ୍ମଗ୍ରହଣ କରୁଥାଏ । ୧୨ ।

ତତ୍ପରେ ଦୁଇଶତ ଊନଷଷ୍ଟି ଲକ୍ଷ ବିଂଶତି ସହସ୍ର କୋଟି ବର୍ଷର ଉତ୍ତାରେ ଶ୍ରୋତ୍ରିୟ କୁଳରେ ଜନ୍ମଗ୍ରହଣ କରେ । ସେହି ଶ୍ରୋତ୍ରିୟ କୁଳରେ ଚିରକାଳ ଜନ୍ମଗ୍ରହଣ କରୁଥାଏ । ୧୩ ।

ହେ ପୁତ୍ର ! ଶ୍ରୋତ୍ରିୟ କୁଳରେ ପରିଭ୍ରମଣ କରୁଥିବା ସମୟରେ ହର୍ଷ, ଶୋକ, କାମ, ଦ୍ୱେଷ, ଅଭିମାନ ଓ ବୃଥା ବାଗ୍‌ବିତଣ୍ଡା ସେହି ଦ୍ୱିଜାଧମକୁ ଆକ୍ରମଣ କରନ୍ତି । ୧୪ ।

ତେତେବେଳେ ସେ ଯଦି ସେହି ଶତ୍ରୁମାନଙ୍କୁ ଜୟ କରିପାରେ, ତେବେ ସଦ୍‌ଗତି ପ୍ରାପ୍ତ ହୁଏ; ଯଦି ସେମାନେ ସେହି ବିପ୍ରଙ୍କୁ ପରାଭବ କରନ୍ତି ତେବେ ତାଳବୃକ୍ଷର ଅଗ୍ରରୁ ପତନଶୀଳ ବ୍ୟକ୍ତିପରି ତାହାଙ୍କର ଅଧୋଗତି ହୁଏ । ୧୫ । ହେ ମତଙ୍ଗ ! ଏତେବେଳେ ଆମ୍ଭେ ତୁମ୍ଭଙ୍କୁ ଯେଉଁକଥା କହିଲୁଁ ତାହା ତୁମ୍ଭେ ସମ୍ପୂର୍ଣ୍ଣ ଅବଗତ ହୋଇ ଅନ୍ୟ ଅଭିଳଷିତ ବର ପ୍ରାର୍ଥନା କର, ତୁମ୍ଭ ପକ୍ଷରେ ବ୍ରାହ୍ମଣତ୍ୱ ଅତିଦୁର୍ଲ୍ଲଭ ଅଟେ । ୧୬ ।

ଇତି ଇନ୍ଦ୍ର ମତଙ୍ଗ ସମ୍ବାଦେ ଅଷ୍ଟାବିଂଶ ଅଧ୍ୟାୟ ସମାପ୍ତ । ୨୮ ।



## ଏକୋନତ୍ରିଂଶତମ ଅଧ୍ୟାୟ

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ଇନ୍ଦ୍ର ଏହିପରି କହିବାରୁ ବ୍ରତଧାରୀ ମତଙ୍ଗ ତପସ୍ୟାରୁ ନିବୃତ୍ତ ନ ହୋଇ ସଂଯତ ଚିତ୍ତରେ ପୁନଶ୍ଚ ସହସ୍ର ବର୍ଷ ଏକ ପାଦରେ ଦଣ୍ଡାୟମାନ ହୋଇ ଧ୍ୟାନରେ ମନୋନିବେଶ କରି ରହିଲେ । ୧ । ତଦନନ୍ତର ସହସ୍ର ବର୍ଷ ପରିପୂର୍ଣ୍ଣ ନ ହେଉଣୁ ବଳବୃତ୍ରଘାତୀ ଇନ୍ଦ୍ର ପୁନଶ୍ଚ ସେଠାକୁ ଆଗମନପୂର୍ବକ ପୂର୍ବୋକ୍ତ ବାକ୍ୟ ସବୁ କହିଲେ । ୨ । ମତଙ୍ଗ କହିଲେ, ହେ ଇନ୍ଦ୍ର ! ଆମ୍ଭେ ସ୍ଥିର ଚିତ୍ତରେ ଏକ ସହସ୍ର ବର୍ଷ ବ୍ରହ୍ମଚାରୀ ହୋଇ ଏକ ପାଦରେ ଦଣ୍ଡାୟମାନ ହୋଇଅଛୁଁ, କେଉଁ କାରଣରୁ ବ୍ରାହ୍ମଣତ୍ୱ ପ୍ରାପ୍ତ ହେଲୁ ନାହିଁ ? । ୩ ।

ଇନ୍ଦ୍ର କହିଲେ, ହେ ପୁତ୍ର ! ତୁମ୍ଭେ ଚଣ୍ଡାଳ ଯୋନିରେ ଜନ୍ମ ଗ୍ରହଣ କରିଥିବାରୁ କଦାପି ବ୍ରାହ୍ମଣତ୍ୱ ପ୍ରାପ୍ତ ହୋଇ ପାରିବ ନାହିଁ । ଅନ୍ୟ ବର ପ୍ରାର୍ଥନା କର; ତୁମ୍ଭେ ଆଉ ବୃଥା ପରିଶ୍ରମ କର ନାହିଁ । ୪ । ତେତେବେଳେ ମତଙ୍ଗ ଇନ୍ଦ୍ରଙ୍କର ଏହି ପ୍ରକାର ବାକ୍ୟ ଶ୍ରବଣ କରି ଅତ୍ୟନ୍ତ ଶୋକାର୍ତ୍ତ ହୋଇ ଗୟାତୀର୍ଥକୁ ଗମନପୂର୍ବକ ସେଠାରେ ଅଙ୍ଗୁଷ୍ଠ

ଉପରେ ନିର୍ଭର କରି ଏକଶତ ବର୍ଷ ଦଣ୍ଡାୟମାନ ହୋଇ ରହିଲେ । ୫ । ଆମ୍ଭେମାନେ ଶୁଣିଅଛୁଁ ଏହିପରି ସେହି ଧର୍ମାତ୍ମା ଅତି କଠୋର ତପସ୍ୟା କରିବାରୁ କୃଶ ଅସ୍ଥି ଚର୍ମାବଶିଷ୍ଟ ଓ ଶିରା ସମୂହରେ ପରିବ୍ୟାପ୍ତ ହୋଇ ପତିତ ହେଲେ । ୬ । ସର୍ବଭୂତମାନଙ୍କର ହିତ ବିଷୟରେ ରତ, ବରଦାତା ଦେବରାଜ ବାସବ ତାହାଙ୍କ ନିକଟକୁ ଗମନପୂର୍ବକ ତାହାଙ୍କୁ ଧାରଣ କଲେ । । ୭ । ଇନ୍ଦ୍ର କହିଲେ, ହେ ମତଙ୍ଗ ! ଆମ୍ଭେ ଦେଖୁଅଛୁଁ ତୁମ୍ଭ ପକ୍ଷରେ ବ୍ରାହ୍ମଣତ୍ୱ ଅତି ଦୁର୍ଲ୍ଲଭ; ବିଶେଷତଃ ବିବିଧ ବିଘ୍ନରେ ଜଡ଼ିତ ଥିବାରୁ ବ୍ରାହ୍ମଣତ୍ୱ ଅତି ଦୁର୍ଲ୍ଲଭ ଅଟେ । ୮ ।

ବ୍ରାହ୍ମଣଙ୍କୁ ପୂଜା କଲେ ବିବିଧ ସୁଖ ଏବଂ ପୂଜା ନ କଲେ ବିବିଧ ଦୁଃଖ ଲାଭ ହୁଏ । ବ୍ରାହ୍ମଣ ସର୍ବପ୍ରାଣୀର ଯୋଗଦାତା ଓ ମଙ୍ଗଳଦାତା । । ୯ । ହେ ମତଙ୍ଗ ! ଇହଲୋକରେ ବ୍ରାହ୍ମଣ ସର୍ବାପେକ୍ଷା ଶ୍ରେଷ୍ଠ । ଦେବ-ଗଣ ଓ ପିତୃଗଣ ସମସ୍ତେ ବ୍ରାହ୍ମଣଙ୍କ ହେତୁରୁ ତୃପ୍ତ ହୁଅନ୍ତି । ୧୦ । ହେ ତାତ ! ବ୍ରାହ୍ମଣ ଯାହା ଯାହା ଇଚ୍ଛା କରନ୍ତି ତାହ, ତାହା ସମ୍ପାଦନ କରନ୍ତି । ଜୀବ ପର୍ଯ୍ୟାୟ କ୍ରମରେ ବହୁତ ଯୋନି ବାରମ୍ବାର ପରିଭ୍ରମଣ କରି ପରିଶେଷରେ କୌଣସି କାଳରେ ବ୍ରାହ୍ମଣତ୍ୱ ଲଭ କରନ୍ତି । ୧୧ ।

ଅତଏବ ଇହ ସଂସାରେ ଅକୃତାତ୍ମାମାନଙ୍କର ଦୁଷ୍ପ୍ରାପ୍ୟ ବ୍ରାହ୍ମଣତ୍ୱ ଲାଭ ଆଶାକୁ ପରିତ୍ୟାଗ ପୂର୍ବକ ଅନ୍ୟ ବର ପ୍ରାର୍ଥନା କର ; ତୁମ୍ଭ ପକ୍ଷରେ ବ୍ରାହ୍ମଣତ୍ୱ ଲାଭ କରିବାର କଠିନ ଅଟେ । ୧୨ । ମତଙ୍ଗ କହିଲେ, ହେ ଇନ୍ଦ୍ର ! ଆପଣ ପୀଡ଼ିତ ବ୍ୟକ୍ତିକୁ କାହିଁକି ପୀଡ଼ା ଦେଉଅଛନ୍ତି ଓ ମୃତବ୍ୟକ୍ତିକୁ କାହିଁପାଇଁ ମାରୁଅଛନ୍ତି । ମାଦୃଶ ତପସ୍ୱୀ ବ୍ୟକ୍ତିଠାରେ ଆପଣଙ୍କର ଯାହା କରୁଣା ହେଲା ନାହିଁ, ସେହି କାରଣରୁ ଆମ୍ଭେ ଦୁଃଖିତ ହେଉଅଛୁଁ । ୧୩ । ହେ ଶତକ୍ରତୋ ! ଅନେକ ବ୍ୟକ୍ତି କ୍ଷତ୍ରିୟ ପ୍ରଭୃତି ବର୍ଣ୍ଣତ୍ରୟର ଅତି ଦୁର୍ଲ୍ଲଭ ବ୍ରାହ୍ମଣତ୍ୱକୁ ପ୍ରାପ୍ତ ହୋଇ ସୁଦ୍ଧା ତାହାକୁ ନିୟମିତ ରୂପେ ପାଳନ କରି ପାରନ୍ତି ନାହିଁ । ୧୪ । ଯେଉଁ ବ୍ୟକ୍ତି ଦୁର୍ଲ୍ଲଭ ବ୍ରାହ୍ମଣତ୍ୱ ପ୍ରାପ୍ତ ହୋଇ ତାହା ରକ୍ଷା କରିବାକୁ ସମର୍ଥ ହୁଅନ୍ତି ନାହିଁ, ସେ ପାପାତ୍ମାମାନଙ୍କ ଅପେକ୍ଷା ଅଧିକ ପାପୀ ଓ ଅଧମ ଅପେକ୍ଷା ଅଧିକ ଅଧମ ଅଟନ୍ତି । ୧୫ ।

ଯେଉଁମାନେ ଦୁରନୁପାଳନ, ଦୁଃଖୋପହ, ଦୁଷ୍ପ୍ରାପ୍ୟ ବ୍ରାହ୍ମଣତ୍ୱ ପ୍ରାପ୍ତ ହୋଇ ତାହା ପାଳନ କରି ପାରନ୍ତି ନାହିଁ, ସେମାନେ ସୁଦ୍ଧା ବ୍ରାହ୍ମଣ ବୋଲି ପରିଗଣିତ ହୁଅନ୍ତି । ୧୬ । ଅନେକ ବ୍ୟକ୍ତି ଯଦି ଅହିଂସା, ଶମ, ଦମ ପ୍ରଭୃତି ଧର୍ମର ଅନୁଷ୍ଠାନ ନ କରି ବ୍ରାହ୍ମଣ ବୋଲି ପରିଗଣିତ ହୁଅନ୍ତି, ତେବେ ହେ ଶକ୍ର ! ଆମ୍ଭେ ଆତ୍ମାରାମ, ନିର୍ଦ୍ୱନ୍ଦ୍ୱ, ନିଷ୍ପରିଗ୍ରହ, ଅହିଂସା, ଦମ ପ୍ରଭୃତି ଧର୍ମାବଲମ୍ବୀ ହୋଇ କି ନିମିତ୍ତ ବ୍ରାହ୍ମଣତ୍ୱ ଲାଭ କରି ପାରିବୁଁ ନାହିଁ ? । ୧୭ । ହେ ପୁରନ୍ଦର ! ଆମ୍ଭର କି ଦୁରଦୃଷ୍ଟ ! ଆମ୍ଭେ ଧର୍ମଜ୍ଞ ହୋଇ ସୁଦ୍ଧା କେବଳ ମାତୃ ଦୋଷରେ ଏତାଦୃଶ ବ୍ରାହ୍ମଣତ୍ୱହୀନ ଦୁରବସ୍ଥାକୁ ପ୍ରାପ୍ତ ହେଲୁଁ । ୧୮ । ହେ ବିଭୋ ! ଆମ୍ଭେ ଏତାଦୃଶ ଯତ୍ନଶୀଳ ହୋଇ ଯଦି ବ୍ରାହ୍ମଣତ୍ୱ ଲାଭ କରି ନ ପାରିଲୁ, ତେବେ ନିଶ୍ଚୟ ଜଣାଗଲା ଯେ ପୌରୁଷଦ୍ୱାରା ଦୈବଙ୍କୁ ଅତିକ୍ରମ କରିବାକୁ କେହି କଦାପି ସମର୍ଥ ହୁଅନ୍ତି ନାହିଁ । ୧୯ । ଅତଏବ ଆମ୍ଭେ ବ୍ରାହ୍ମଣତ୍ୱ ଲାଭର ଆଶାକୁ ପରିତ୍ୟାଗ କଲୁଁ । ହେ ଧର୍ମଜ୍ଞ ! ଆପଣ ଯଦି ଆମ୍ଭଠାରେ ଅନୁକୂଳ ହୋଇଅଛନ୍ତି ଅଥବା ଆମ୍ଭର ଯଦି ସୁକୃତ ଅଛି, ତେବେ ଅନ୍ୟ ପ୍ରକାର ଅଭିଳଷିତ ବର ପ୍ରଦାନ କରିବା ହେଉନ୍ତୁ । ୨୦ ।

ବୈଶମ୍ପାୟନ କହିଲେ, ହେ ଜନମେଜୟ ! ତେତେବେଳେ ବଳବୃତ୍ରହନ୍ତା ଇନ୍ଦ୍ର ତାହାଙ୍କୁ ବର ପ୍ରାର୍ଥନା କର ବୋଲି କହିଲେ । ମତଙ୍ଗ ମହେନ୍ଦ୍ରଙ୍କ ଆଦେଶ ପ୍ରାପ୍ତ ହୋଇ ତାହାଙ୍କୁ କହିଲେ, (୨୧) ହେ ପୁରନ୍ଦର ! ଆମ୍ଭେ ଆପଣଙ୍କୁ ମସ୍ତକଦ୍ୱାରା ପ୍ରଣାମ କରି ପ୍ରସନ୍ନ କରାଇ ପ୍ରାର୍ଥୀ ହେଉଅଛୁଁ ଯେ ଯେଉଁପରି ଆପଣଙ୍କ ବର ପ୍ରଭାବରେ ଆମ୍ଭେ କାମଗୃଷ କାମରୂପୀ ବିହଙ୍ଗମ ହେବୁଁ । ବ୍ରାହ୍ମଣ ଓ କ୍ଷତ୍ରିୟ ପ୍ରଭୃତି ବର୍ଣ୍ଣମାନଙ୍କଠାରୁ ଅବିରୋଧରେ ପୂଜାପ୍ରାପ୍ତ ହେବୁଁ । ୨୨ । ଆମ୍ଭର ଅକ୍ଷୟ କୀର୍ତ୍ତି ହେବ ଏହି ବର ପ୍ରଦାନ କରିବା ହେଉନ୍ତୁ । ୨୩ । ଶକ୍ର କହିଲେ, ହେ ବତ୍ସ ! ତୁମ୍ଭେ ଛନ୍ଦୋଦେବ ନାମରେ ବିଖ୍ୟାତ ହୋଇ ସ୍ତ୍ରୀ ବୃନ୍ଦର ପୂଜ୍ୟ ହେବ । ତ୍ରିଲୋକ ମଧ୍ୟରେ ତୁମ୍ଭର ଅନୁପମକୀର୍ତ୍ତି ରହିବ । ୨୪ ।

ହେ ଭରତ ! ବାସବ ତାହାଙ୍କୁ ଏହିପରି ବର ପ୍ରଦାନ କରି ଅନ୍ତର୍ହିତ ହେଲେ ଓ ମତଙ୍ଗ ପ୍ରାଣତ୍ୟାଗ କରି ଉତ୍କୃଷ୍ଟଗତି

ଲାଭକଲେ । ୨୫ । ମହେନ୍ଦ୍ରଙ୍କ ଏହିପରି ବଚନ ଅନୁସାରେ ପରମପଦ ବ୍ରାହ୍ମଣତ୍ୱ ଦୁର୍ଲ୍ଲଭ ଅଟେ । ୨୬ ।

ଇତି ଇନ୍ଦ୍ର ମତଙ୍ଗ ସମ୍ବାଦେ ଏକୋନତ୍ରିଂଶ ଅଧ୍ୟାୟ ସମାପ୍ତ । ୨୯ ।



## ତ୍ରିଂଶତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ କୁରୁକୁଳୋଦ୍‌ବହ ! ବାଗ୍ମୀଶ୍ରେଷ୍ଠ ବ୍ରାହ୍ମଣତ୍ୱ ଅତି ଦୁର୍ଲ୍ଲଭ ବୋଲି ଆପଣ ଯେଉଁ ଆଖ୍ୟାନ କୀର୍ତ୍ତନ କଲେ, ତାହା ଆମ୍ଭେ ଶୁଣିଲୁଁ । ୧ । ହେ ସାଧୁଶ୍ରେଷ୍ଠ ! ପୂର୍ବେ ବିଶ୍ୱାମିତ୍ର ଦୁର୍ଲ୍ଲଭ ବ୍ରାହ୍ମଣତ୍ୱକୁ ପ୍ରାପ୍ତ ହୋଇଥିଲେ ବୋଲି ଶୁଣିଅଛୁଁ, ତେବେ ବ୍ରାହ୍ମଣତ୍ୱ କାହିଁକି ଦୁର୍ଲ୍ଲଭ ବୋଲି କହୁଅଛନ୍ତି । ୨ । ହେ ଗାଙ୍ଗେୟ ! ଆମ୍ଭେ ଶୁଣିଅଛୁଁ ବୀତହବ୍ୟ ରାଜା ବିପ୍ରତ୍ୱକୁ ପ୍ରାପ୍ତ ହୋଇଥିଲେ । ହେ ବିଭୋ ! ତାହା ତାହାଙ୍କ ପକ୍ଷରେ କିପରି ଘଟିଥିଲା, ତାହା ଆମ୍ଭେ ସମ୍ପୂର୍ଣ୍ଣରୂପେ ଶୁଣିବାକୁ ଇଚ୍ଛାକରୁଅଛୁଁ । ୩ । ସେହି ନୃପଶ୍ରେଷ୍ଠ ବୀତହବ୍ୟ କେଉଁ କର୍ମ ଓ କେଉଁ ବର ଏବଂ କେଉଁ ତପସ୍ୟାଦ୍ୱାରା ବିପ୍ରତ୍ୱ ପ୍ରାପ୍ତ ହୋଇଥିଲେ, ତାହା ବିସ୍ତାରିତ କରି କହିବା ହେଉନ୍ତୁ । ୪ । ଭୀଷ୍ମ କହିଲେ, ହେ ରାଜନ୍ ! ମହାଯଶା ରାଜର୍ଷି ରାଜା ବୀତହବ୍ୟ ଯେଉଁପରି ଲୋକରେ ସତ୍କାର ପ୍ରାପ୍ତ ଦୁର୍ଲ୍ଲଭ ବିପ୍ରତ୍ୱ ପ୍ରାପ୍ତ ହୋଇଥିଲେ ତାହା ଶ୍ରବଣ କର । ୫ ।

ହେ ତାତ ! ମହାତ୍ମା ମନୁଙ୍କର ପ୍ରଜାମାନଙ୍କୁ ଧର୍ମରେ ପାଳନ-କରିବା ବିଷୟରେଁ ତତ୍ପର ଧର୍ମାତ୍ମା ଶର୍ଯ୍ୟାତି ନାମରେ ଖ୍ୟାତ ଗୋଟିଏ ପୁତ୍ର ଥିଲେ । ୬ । ହେ ବିଜୟିଶ୍ରେଷ୍ଠ ! ସେହି ଶର୍ଯ୍ୟାତିଙ୍କ ପୁତ୍ର ବତ୍ସଙ୍କ ଔରସରେ ହୈହୟ ଓ ତାଳଜଂଘ ନାମକ ଦୁଇଗୋଟି ପୁତ୍ର ଜନ୍ମ ଗ୍ରହଣ କରିଥିଲେ । ୭ । ହେ ଭାରତ ! ହୈହୟଙ୍କର ଦଶ ଗୋଟି ସ୍ତ୍ରୀ ଥିଲେ । ସେହିମାନଙ୍କ ଗର୍ଭରେ ବଳିଷ୍ଠ, ଯୁଦ୍ଧଶାଳୀ, ଯୁଦ୍ଧରେ ଅନିବର୍ତ୍ତୀ, ତୁଲ୍ୟରୂପ

ପ୍ରଭାବଶାଳୀ ଶତସଂଖ୍ୟକ ବୀରପୁତ୍ର ଜନ୍ମଗ୍ରହଣ କରିଥିଲେ । ସେମାନେ ସମସ୍ତେ ଧନୁର୍ବେଦ ଓ ବେଦଶାସ୍ତ୍ରରେ କୃତଶ୍ରମ । ୯ ।

ହେ ରାଜନ୍ ! କାଶୀରେ ହର୍ଯ୍ୟଶ୍ୱ ନାମକ ଜୟଶୀଳ ଜଣେ ବିଖ୍ୟାତ ନରପାଳ ଥିଲେ । ସେ ଦିବୋଦାସଙ୍କର ପିତାମହ ଥିଲେ । ୧୦ । ହେ ପୁରୁଷଶ୍ରେଷ୍ଠ ! ବୀତହବ୍ୟଙ୍କ ପୁତ୍ରଗଣ ଗଙ୍ଗା ଯମୁନାର ସଙ୍ଗମ ସ୍ଥାନରେ ପ୍ରବିଷ୍ଟ ହୋଇ ଯୁଦ୍ଧରେ ହର୍ଯ୍ୟଶ୍ୱଙ୍କୁ ନିପାତ କଲେ । ୧୧ । ହୈହୟଙ୍କର ସେହି ମହାରଥ ପୁତ୍ରମାନେ ହର୍ଯ୍ୟଶ୍ୱଙ୍କୁ ବିନାଶକରି ଅକୁତୋଭୟରେ ବହୁ ନରପାଳଙ୍କ ରମ୍ୟପୁରୀକୁ ପ୍ରତ୍ୟାଗମନ କଲେ । ୧୨ । ଦେବସଦୃଶ ହର୍ଯ୍ୟଶ୍ୱଙ୍କ ପୁତ୍ର ସୁଦେବ ସାକ୍ଷାତ୍ ଦ୍ୱିତୀୟ ଧର୍ମ ତୁଲ୍ୟ ଥିଲେ । ସେ କାଶୀରେ ରାଜପଦରେ ଅଭିଷିକ୍ତ ହୋଇଥିଲେ । ୧୩ ।

ସେହି ଧର୍ମାତ୍ମା ସୁଦେବ ପୃଥିବୀକୁ ପାଳନ କରୁଥିଲେ । ବୀତହବ୍ୟଙ୍କ ସମସ୍ତ ପୁତ୍ରଗଣ ସେଠାରେ ପ୍ରବିଷ୍ଟ ହୋଇ ଯୁଦ୍ଧରେ ତାହାଙ୍କୁ ଜୟ-କଲେ । ୧୪ । ତତ୍ପରେ ବୀତହବ୍ୟଙ୍କ ପୁତ୍ରଗଣ ଯୁଦ୍ଧରେ ସୁଦେବଙ୍କୁ ପରାଭବ ଦେଇ ସ୍ୱସ୍ଥାନକୁ ପ୍ରତ୍ୟାଗମନ କଲେ । ଅନନ୍ତର ସୁଦେବଙ୍କ ପୁତ୍ର ଦିବୋଦାସ କାଶୀରେ ରାଜାହେଲେ । ୧୫ ।

ହେ ଜୟଶୀଳ ମହାରାଜ ! ଦିବୋଦାସ ମଧ୍ୟ ସେହି ମହାତ୍ମାମାନଙ୍କ ପରାକ୍ରମକୁ ଜାଣି ଇନ୍ଦ୍ରଙ୍କ ଶାସନରେ ଦ୍ୱିତୀୟ ଅମରାବତୀ ନଗରୀ ସଦୃଶା ଗଙ୍ଗାଙ୍କ ଉତ୍ତର ଓ ଗୋମତୀ ନଦୀଙ୍କ ଦକ୍ଷିଣତଟସ୍ଥିତା, ବିପ୍ରକ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ସମାକୁଳା ଅନେକ ଦ୍ରବ୍ୟ ପରିପୂର୍ଣ୍ଣା ସମୃଦ୍ଧ ବିପଣାପଣଯୁକ୍ତା ବାରାଣସୀ ନଗରୀକୁ ନିର୍ମାଣକଲେ । ୧୮ ।

ହେ ଭାରତ । ହୈହୟଙ୍କ ପୁତ୍ରଗଣ ସେଠାରେ ପୁନଶ୍ଚ ପ୍ରବିଷ୍ଟ ହୋଇ ସେଠାରେ ବାସକରିଥିବା ମହୀପତି ନୃପଶ୍ରେଷ୍ଠ ଦିବୋଦାସଙ୍କୁ ଆକ୍ରମଣ କଲେ । ୧୯ । ସେହି ମହାଦ୍ୟୁତି ମହାବଳ ରାଜା ଦିବୋଦାସ ବହିର୍ଗତ ହୋଇ ସେମାନଙ୍କ ସହିତ ଦେବାସୁର ସଦୃଶ ଭୟଙ୍କର ଯୁଦ୍ଧ କଲେ । ୨୦ । ହେ ମହାରାଜ ! ଦିବୋଦାସ ଶତଦିବସ ପର୍ଯ୍ୟନ୍ତ ଯୁଦ୍ଧ

କରିବାରୁ ତାହାଙ୍କର ଅସଂଖ୍ୟ ସୈନ୍ୟ ଓ ବାହନ ହତ ହେଲେ । ସେହି କାରଣରୁ ସେ ଦୈନ୍ୟଦଶା ପ୍ରାପ୍ତହେଲେ । ୨୧ ।

ହେ ରାଜନ୍ ! ତତ୍ପରେ କ୍ଷୀଣକୋଶ ହତଯୋଧ ଭୂମିପାଳ ଦିବୋଦାସ ବାରାଣସୀ ପୁରୀକୁ ତ୍ୟାଗକରି ପୋପ୍ୟନ ପରାଯୁଣହେଲେ । ୨୨ । ହେ ଶତ୍ରୁଦଳନ ! ରାଜା ଦିବୋଦାସ, ଧୀମାନ ଭରଦ୍ୱାଜଙ୍କ ରମ୍ୟ ଆଶ୍ରମକୁ ଗମନ ପୂର୍ବକ କୃତାଞ୍ଜଳି ହୋଇ ତାହାଙ୍କ ଶରଣାଗତ ହେଲେ । ୨୩ ।

ବୃହସ୍ପତିଙ୍କ ଜ୍ୟେଷ୍ଠପୁତ୍ର ଶୀଳ ସମ୍ପନ୍ନ ପୁରୋଧା ଭରଦ୍ୱାଜ ସେହି ମହୀପତି ଦିବୋଦାସଙ୍କୁ କହିଲେ, (୨୪) ହେ ନୃପ ! ତୁମ୍ଭେ କି ନିମିତ୍ତ ଆଗମନ କରିଅଛ, ତାହାସବୁ ଆମ୍ଭ ନିକଟରେ କହ । ଆମ୍ଭେ କିଛି ବିଚାର ନ କରି ତୁମ୍ଭର ପ୍ରିୟକାର୍ଯ୍ୟ ସାଧନ କରିବୁଁ । ୨୫ ।

ରାଜା ଦିବୋଦାସ କହିଲେ, ହେ ଭଗବନ୍ ! ବୀତହବ୍ୟଙ୍କ ପୁତ୍ରବୃନ୍ଦ ଯୁଦ୍ଧରେ ଆମ୍ଭର ବଂଶନାଶ କରିଅଛନ୍ତି । ସମ୍ପ୍ରତି ଆମ୍ଭେ ଏକାକୀ ସର୍ବ-ପ୍ରକାରରେ ନିରସ୍ତ୍ର ହୋଇ ଆପଣଙ୍କର ଶରଣାଗତ ହେଲୁଁ । ୨୬ । ହେ ଭଗବନ୍ ! ଆପଣ ଶିଷ୍ୟ ସ୍ନେହରେ ଆମ୍ଭଙ୍କୁ ରକ୍ଷାକରିବା ହେଉନ୍ତୁ । ସେହି ପାପାତ୍ମାମାନେ ମହାନ୍ ବଂଶରୁ ଆମ୍ଭଙ୍କୁ କେବଳ ଏକଶେଷ କରି ରଖିଅଛନ୍ତି । ୨୭ । ପ୍ରତାପଶାଳୀ ମହାଭାଗ ଭରଦ୍ୱାଜ ତାହାଙ୍କୁ କହିଲେ, ହେ ସୌଦେବ ନୃପ ! ତୁମ୍ଭର ଭୟ ଦୂରୀଭୂତ ହେଉ, ତୁମ୍ଭେ ଭୟ କରନା, ଭୟ କରନା । ୨୮ । ତୁମ୍ଭର ପୁତ୍ରଲାଭ ନିମିତ୍ତ ଆମ୍ଭେ ଗୋଟିଏ ଯାଗ କରିବୁଁ, ସେହି ଯାଗ ପ୍ରଭାବରେ ତୁମ୍ଭର ଯେଉଁ ପୁତ୍ର ଜାତ ହେବ, ତାହାଦ୍ୱାରା ତୁମ୍ଭେ ବୀତହବ୍ୟଙ୍କର ଅସଂଖ୍ୟ ସୈନ୍ୟ ଓ ସମସ୍ତ ବଂଶ ସଂହାର କରିବ । ୨୯ । ଋଷି ଭରଦ୍ୱାଜ ଦିବୋଦାସଙ୍କ ପୁତ୍ରଲାଭ ନିମିତ୍ତ ପୁତ୍ରେଷ୍ଟି ଯାଗ କଲେ । ତତ୍ପରେ ତାହାଙ୍କର ପ୍ରତର୍ଦ୍ଦନ ନାମରେ ଖ୍ୟାତ ଗୋଟିଏ ପୁତ୍ର ଜାତ ହେଲେ । ୩୦ ।

ହେ ଭାରତ ! ପ୍ରତର୍ଦ୍ଦନ ଜାତହେଲା ମାତ୍ରେ ତତ୍କ୍ଷଣାତ ତ୍ରୟୋଦଶବର୍ଷ ବୟସ୍କ ସଦୃଶ ପରିବର୍ଦ୍ଧିତ ହେଲେ ଏବଂ ସମସ୍ତ ବେଦ

ଓ ଧନୁର୍ବେଦ ପାଠକଲେ । ୩୧ । ତତ୍ପରେ ମେଧାବୀ ମହର୍ଷି ଭରଦ୍ୱାଜ ଯୋଗବଳରେ ତାହାଙ୍କୁ ଉପଦେଶ ପ୍ରଦାନ କଲେ ଯେ, ସେହି ଯୋଗ ପ୍ରଭାବରେ ପ୍ରତର୍ଦ୍ଦନଙ୍କ ଦେହରେ ତ୍ରିଲୋକ ମଧ୍ୟସ୍ଥ ସମସ୍ତ ତେଜ ସଂଗୃହୀତ ହୋଇ ପ୍ରବିଷ୍ଟ ହେଲା । ୩୨ । ତତ୍ପରେ ସେ କବଚଧାରୀ, ଧନୁର୍ଦ୍ଧାରୀ, ସୁରର୍ଷିଗଣଙ୍କଦ୍ୱାରା ସ୍ତୂୟମାନ ଓ ବନ୍ଦିସମୂହ ଦ୍ୱାରା ବନ୍ଦ୍ୟମାନ ହୋଇ ଉଦିତସୂର୍ଯ୍ୟ ସଦୃଶ ଶୋଭା ପାଇଲେ । ୩୩ ।

ଅନନ୍ତର ସେହି ଦିବୋଦାସଙ୍କ ପୁତ୍ର ଶରାସନ, ଖଡ୍‌ଗ, ଚର୍ମ ଓ ବର୍ମ ଧାରଣ କରି ଧନୁ କମ୍ପନ କରି ରଥାରୋହଣପୂର୍ବକ ପିତାଙ୍କ ନିକଟକୁ ଗମନ କଲେ । ୩୪ । ନରପାଳ ସୁଦେବ ପୁତ୍ର ତାହାଙ୍କୁ ଦେଖି ପରମ ହର୍ଷପ୍ରାପ୍ତ ହେଲେ ଏବଂ ମନରେ ବିଚାର କଲେ ଯେ ଏ ବୀତହବ୍ୟ ପୁତ୍ର-ମାନଙ୍କୁ ଅବଶ୍ୟ ଦଗ୍ଧ କରିବ । ୩୫ । ତଦନନ୍ତର ଦିବୋଦାସ ପ୍ରତର୍ଦ୍ଦନଙ୍କୁ ଯୌବରାଜ୍ୟରେ ସ୍ଥାପନ କରି ଆନନ୍ଦିତ ହେଲେ ଏବଂ ଆପଣାକୁ କୃତକୃତ୍ୟ ଜ୍ଞାନ କଲେ । ୩୬ ।

ତଦନନ୍ତର ରାଜା ଦିବୋଦାସ ବୀତହବ୍ୟ ପୁତ୍ରମାନଙ୍କ ବଧ ନିମିତ୍ତ ସ୍ୱୀୟ ପୁତ୍ର ଅରିନ୍ଦମ ପ୍ରତର୍ଦ୍ଦନଙ୍କୁ ପ୍ରେରଣ କଲେ । ୩୭ । ସେହି ଶତ୍ରୁପୁର ବିଜୟୀ ପରାକ୍ରମଶାଳୀ ପ୍ରତର୍ଦ୍ଦନ ଶୀଘ୍ର ରଥାରୋହଣପୂର୍ବକ ଗଙ୍ଗା ପାର ହୋଇ ବୀତହବ୍ୟଙ୍କ ନଗରୀକୁ ଗମନ କଲେ । ୩୮ ।

ବୀତହବ୍ୟଙ୍କ ପୁତ୍ରମାନେ ପ୍ରତର୍ଦ୍ଦନଙ୍କ ସମୁଦ୍ଧତ ରଥ ନିର୍ଘୋଷକୁ ଶ୍ରବଣ କରି ଶତ୍ରୁ ରଥ ସଂହାରକ ନଗରାକାର ରଥମାନଙ୍କରେ ଆରୋହଣ ପୂର୍ବକ ଯୁଦ୍ଧନିମିତ୍ତ ନିର୍ଗତ ହେଲେ । ୩୯ । ଆୟୁଧ ଉତ୍ତୋଳନକାରୀ ଚିତ୍ରଯୋଧୀ ସେହି ଶତ୍ରୁହନ୍ତା ନରଶ୍ରେଷ୍ଠମାନେ ନିର୍ଗତ ହୋଇ ତାହାଙ୍କ ନିକଟରେ ପ୍ରବିଷ୍ଟ ହେଲେ ଏବଂ ଶରବୃଷ୍ଟି ଦ୍ୱାରା ପ୍ରତର୍ଦ୍ଦନଙ୍କୁ ଆକ୍ରମଣ କଲେ । ୪୦ ।

ମେଘମାନେ ହିମାଳୟ ପର୍ବତ ଉପରେ ଗର୍ଜନ କରି ଜଳଧାରା ବର୍ଷା କଲାପରି ସେହିମାନେ ରଥଘୋଷ ପ୍ରକାଶ ପୂର୍ବକ ବିବିଧାକାର ଶସ୍ତ୍ର ସମୂହକୁ ରାଜା ପ୍ରତର୍ଦ୍ଦନଙ୍କ ଉପରେ ବର୍ଷଣ କଲେ । ୪୧ ।

ମହାତେଜା ରାଜା ପ୍ରତର୍ଦ୍ଦନ ସେହିମାନଙ୍କର ଅସ୍ତ୍ରସମୂହକୁ ସ୍ୱକୀୟ ଅସ୍ତ୍ରସମୂହ ଦ୍ୱାରା ନିବାରଣପୂର୍ବକ ବଜ୍ରାଗ୍ନି ସଦୃଶ ଶର ସମୂହରେ ସେହିମାନଙ୍କୁ ବିନଷ୍ଟ କଲେ । ୪୨ ।

ହେ ରାଜନ୍ ! ବୀତହବ୍ୟଙ୍କ ରକ୍ତାକ୍ତ କଳେବର ପୁତ୍ରଗଣ ଶତ ସହସ୍ର ଭଲ୍ଲ ଅସ୍ତ୍ର ଦ୍ୱାରା ଛିନ୍ନ ମସ୍ତକ ହୋଇ କୁଠାରଛିନ୍ନ କିଂଶୁକ ବୃକ୍ଷ ପରି ଧରା ପୃଷ୍ଠରେ ପତିତ ହେଲେ । ୪୩ । ଅନନ୍ତର ସେହି ସମସ୍ତ ପୁତ୍ରଗଣ ହତ ହେବାରୁ ବୀତହବ୍ୟ, ନଗର ପରିତ୍ୟାଗପୂର୍ବକ ଭୃଗୁ ମୁନିଙ୍କ ଆଶ୍ରମକୁ ପଳାୟନ କଲେ । ୪୪ । ହେ ରାଜନ ! ନରପାଳ ବୀତହବ୍ୟ ଭୃଗୁ ମୁନିଙ୍କର ଶରଣାଗତ ହେବାରୁ ସେ ସେହି ରାଜାଙ୍କୁ ଅଭୟ ପ୍ରଦାନ କଲେ । ୪୫ ।

ବୀତହବ୍ୟ ପଳାୟନ ପରାୟଣ ହୁଅନ୍ତେ ଦିବୋଦାସ ପୁତ୍ର ପ୍ରତର୍ଦ୍ଦନ ତାହାଙ୍କ ପଶ୍ଚାତ୍ ପଶ୍ଚାତ୍ ଧାବମାନ ହୋଇଥିଲେ । ବୀତହବ୍ୟଙ୍କର ପ୍ରବେଶର ଅନତି ବିଳମ୍ବରେ ସେ ଭୃଗୁଙ୍କ ଆଶ୍ରମରେ ଉପସ୍ଥିତ ହୋଇ କହିଲେ, ( ୪୬ ) ଭୋ ! ଭୋ ! ଭୃଗୁ ମୁନିଙ୍କର ଆଶ୍ରମସ୍ଥିତ ମହାତ୍ମା ଶିଷ୍ୟଗଣ ! ଆମ୍ଭେ ମୁନିଙ୍କୁ ଦେଖିବାକୁ ଇଚ୍ଛା କରୁଅଛୁଁ, ଅତଏବ ଆପଣମାନେ ଆମ୍ଭର ଆଗମନ ବାର୍ତ୍ତା ମୁନିଙ୍କୁ କହିବା ହେଉନ୍ତୁ । ୪୭ । ଭୃଗୁ ମୁନି ତେତେବେଳେ ସେ ଉପସ୍ଥିତ ହୋଇଥିବାର ଜାଣି ଆଶ୍ରମରୁ ନିର୍ଗତ ହେଲେ । ତଦନନ୍ତର ନୃପଶ୍ରେଷ୍ଠଙ୍କୁ ବିଧି ପୂର୍ବକ ସତ୍କାର କଲେ (୪୮) ଏବଂ କହିଲେ, ହେ ରାଜେନ୍ଦ୍ର ! ପାର୍ଥିବ ! କେଉଁ ନିମିତ୍ତ ଆଗମନ କରିଅଛ ତାହା କହ । ସେହି ନୃପ ପ୍ରତର୍ଦ୍ଦନ ମଧ୍ୟ ତାହାଙ୍କୁ ଆଗମନର କାରଣ କହିଲେ । ୪୯ ।

ରାଜା ପ୍ରତର୍ଦ୍ଦନ କହିଲେ, ହେ ବ୍ରହ୍ମନ୍ । ଆପଣ ଏଠାରୁ ବୀତହବ୍ୟ ରାଜାଙ୍କୁ ପରିତ୍ୟାଗ କରିବା ହେଉନ୍ତୁ । ହେ ବ୍ରହ୍ମନ୍ ! ତାହାଙ୍କର ପୁତ୍ରମାନେ ଆମ୍ଭର ସମସ୍ତ ବଂଶ ବିନାଶ କରି ଅଛନ୍ତି (୫୦) ଏବଂ ଆମ୍ଭର କାଶୀରାଜ୍ୟ ସମସ୍ତ ଧନ ରତ୍ନ ଉଚ୍ଛିନ୍ନ କରି ଅଛନ୍ତି । ଆମ୍ଭେ ଏହି ବଳଦର୍ପିତ ବୀତହବ୍ୟଙ୍କର ଶତପୁତ୍ର ସଂହାର କରିଅଛୁ । ୫୧ । ଏତେବେଳେ ଏହାଙ୍କୁ ବିନଷ୍ଟ କରି ପିତୃଋଣରୁ ମୁକ୍ତ ହେବୁଁ । ତେତେବେଳେ ଧାର୍ମିକ ଶ୍ରେଷ୍ଠ

କୃପାଳୁ ଭୃଗୁ ତାହାଙ୍କୁ କହିଲେ, ( ୫୨ ) ହେ ରାଜନ୍ ! ଏହି ସ୍ଥାନରେ କେହି ଜଣେ କ୍ଷତ୍ରିୟ ନାହାନ୍ତି, ଏମାନେ ସମସ୍ତେ ବ୍ରାହ୍ମଣ । ପ୍ରତର୍ଦ୍ଦନ ଭୃଗୁ ମୁନିଙ୍କର ଏହି ତଥ୍ୟ ବଚନ ଶ୍ରବଣକରି ( ୫୩ ) ତାହାଙ୍କର ପାଦସ୍ପର୍ଶ-ପୂର୍ବକ ମନ୍ଦହାସ କରି କହିଲେ, ହେ ଭଗବନ୍ ! ଆମ୍ଭେ କୃତକୃତ୍ୟ ହେଲୁଁ, ଏ ବିଷୟରେ ସଂଶୟ ନାହିଁ । ୫୪ । ଏହି ରାଜା ଆପ୍ନ ବୀର୍ଯ୍ୟ ପ୍ରଭାବରେ ବ୍ରାହ୍ମଣତ୍ୱ ପ୍ରାପ୍ତ ହୋଇ ସ୍ୱଜାତି ତ୍ୟାଗ କଲେ । ହେ ବ୍ରହ୍ମନ୍ ! ଆପ୍ନର ମଙ୍ଗଳ କାମନା କରି ଗମନ ନିମିତ୍ତ ଆପ୍ନଙ୍କୁ ଅନୁମତି ପ୍ରଦାନ କରିବା ହେଉନ୍ତୁ । ୫୫ ।

ହେ ଭୃଗୁକୁଳୋଦ୍‌ଭବ ! ଏହି ରାଜା ଆପ୍ନଦ୍ୱାରା ଜାତି ତ୍ୟାଗ କଲେ । ତଦନନ୍ତର ପ୍ରତର୍ଦ୍ଦନ ରାଜା ଭୃଗୁ ମୁନିଙ୍କ ଅନୁମତି ପ୍ରାପ୍ତହୋଇ ମହାରାଜ ବୀତହବ୍ୟଙ୍କୁ ସର୍ପ ବିଷ ମୁକ୍ତ କଲପରି ଦାରୁଣ ବାକ୍ୟ ପ୍ରୟୋଗପୂର୍ବକ ସ୍ୱସ୍ଥାନକୁ ପ୍ରସ୍ଥାନ କଲେ ଏବଂ ସେହି ବୀତହବ୍ୟ ରାଜା ଭୃଗୁଙ୍କ ବଚନ ମାତ୍ରେ ବ୍ରହ୍ମର୍ଷିତ୍ୱକୁ ପ୍ରାପ୍ତହେଲେ ।୫୬। ହେ ମହାରାଜ ! ବୀତହବ୍ୟ ଭୃଗୁଙ୍କ ବଚନମାତ୍ରେ ବ୍ରହ୍ମବାଦିତ୍ୱ ପ୍ରାପ୍ତ ହୋଇଥିଲେ । ରୂପରେ ଦ୍ୱିତୀୟ ଇନ୍ଦ୍ର ସଦୃଶ ତାହାଙ୍କର "ଗୃତସମଦ" ନାମକ ଗୋଟିଏ ପୁତ୍ର ଜନ୍ମିଥିଲେ ।୫୮।

ତେବେ ଅସୁରଗଣ ତାହାଙ୍କୁ ଇନ୍ଦ୍ର ବୋଲି ଜାଣି ପୀଡ଼ା ପ୍ରଦାନ କରିଥିଲେ । ଋକ୍ ବେଦରେ ସେହି ମହାତ୍ମାଙ୍କର ଉତ୍କୃଷ୍ଟ ଗୁଣ କୀର୍ତ୍ତିତ ହୋଇଅଛି । ୫୯ । ହେ ରାଜନ୍ ! ସେହି "ଗୃତସମଦ" ବ୍ରାହ୍ମଣ-ମାନଙ୍କ ଦ୍ୱାରା ପୂଜିତ ହେଉଥିଲେ । ସେହି ଶ୍ରୀମାନ୍ ଗୃତସମଦ ବ୍ରହ୍ମର୍ଷି ଏବଂ ବ୍ରହ୍ମଚାରୀ ହୋଇଥିଲେ ।୬୦। ଗୃତସମଦଙ୍କ ପୁତ୍ର ସୁଚେତା ନାମକ ଦ୍ୱିଜ ଜନ୍ମ ଗ୍ରହଣ କରିଥିଲେ । ସୁଚେତାଙ୍କ ପୁତ୍ର ବର୍ଚ୍ଚା । ବର୍ଚ୍ଚାଙ୍କ ପୁତ୍ର ବିହବ୍ୟ । ୬୧ ।

ବିହବ୍ୟଙ୍କ ପୁତ୍ର ବିତତ୍ୟ, ବିତତ୍ୟଙ୍କ ପୁତ୍ର ସତ୍ୟ, ସତ୍ୟଙ୍କ ପୁତ୍ର ସନ୍ତ, (୬୨) ସନ୍ତଙ୍କ ପୁତ୍ର ଶ୍ରବା, ଶ୍ରବା ଋଷିଙ୍କ ପୁତ୍ର ତମ, ତମଙ୍କଠାରୁ ଦ୍ୱିଜଶ୍ରେଷ୍ଠ ପ୍ରକାଶ ନାମକ ପୁତ୍ର ଜନ୍ମଗ୍ରହଣ କରିଥିଲେ । ପ୍ରକାଶଙ୍କର ବାଗିନ୍ଦ୍ର ନାମକ ଜୟଯୁକ୍ତ ଶ୍ରେଷ୍ଠ ପୁତ୍ର ଜନ୍ମଗ୍ରହଣ କରିଥିଲେ, ( ୬୩ ) ବାଗିନ୍ଦ୍ରଙ୍କର ବେଦ ବେଦାଙ୍ଗ ପାରଗ ଆତ୍ମଜ ପ୍ରମତି, ପ୍ରମତି ଘୃତାଚୀଙ୍କ

ଗର୍ଭରେ ରୁରୁ ନାମକ ପୁତ୍ର ଉତ୍ପାଦନ କରିଥିଲେ । ୬୪ । ରୁରୁଙ୍କ ଔରଷରେ ପ୍ରମଦ୍‌ବରାଙ୍କ ଗର୍ଭରେ ଶୁନକ ନାମକ ବ୍ରହ୍ମର୍ଷି ଜନ୍ମିଥିଲେ, ଶୁନକଙ୍କର ଶୌନକ ନାମକ ପୁତ୍ର ଜାତ ହୋଇଥିଲେ । ୬୫ ।

ହେ ରାଜେନ୍ଦ୍ର ! କ୍ଷତ୍ରିୟବର ! ଏହିପରି କ୍ଷତ୍ରିୟରାଜା ବୀତହବ୍ୟ ଭୃଗୁଙ୍କ ପ୍ରସାଦରୁ ବ୍ରହ୍ମତ୍ୱ ପ୍ରାପ୍ତ ହୋଇଥିଲେ । ୬୬ । ହେ ମହାରାଜ ! ଆମ୍ଭେ ଗୃତ୍ସମଦଙ୍କ ବଂଶର ବିବରଣ ବିସ୍ତରରୂପେ ଏହିପରି କୀର୍ତ୍ତନକଲୁଁ । ଏଥି ଉତ୍ତାରେ ପୁନଶ୍ଚ ଯାହା ପ୍ରଶ୍ନ କରିବାକୁ ଇଚ୍ଛାହୁଏ, ତାହା ପ୍ରଶ୍ନ କର । ୬୭ ।

ଇତି ବୀତହବ୍ୟୋପାଖ୍ୟାନେ ତ୍ରିଂଶ ଅଧ୍ୟାୟ ସମାପ୍ତ । ୩୦ ।



## ଏକତ୍ରିଂଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ଭରତଶ୍ରେଷ୍ଠ ! ଏହି ତ୍ରିଲୋକ ମଧ୍ୟରେ କେଉଁ ମନୁଷ୍ୟମାନେ ପୂଜ୍ୟ, ତାହା ବିସ୍ତରରୂପେ କହିବା ହେଉନ୍ତୁ । ଆପଣଙ୍କ ଉପଦେଶ ଶ୍ରବଣକରି ଆମ୍ଭେ ତୃପ୍ତ ହେଉନାହୁଁ । ୧ ।

ଭୀଷ୍ମ କହିଲେ, ହେ ତାତ ! ଆମ୍ଭେ ଏହି ବିଷୟରେ ନାରଦ ଓ ବାସୁଦେବ ଏହି ଉଭୟଙ୍କର ସମ୍ବାଦରୂପ ଗୋଟିଏ ପୁରାତନ ଇତିହାସ କୀର୍ତ୍ତନ କରୁଅଛୁଁ ।୨। ଥରେ ନାରଦ କୃତାଞ୍ଜଳି ପୁଟରେ ବ୍ରାହ୍ମଣଶ୍ରେଷ୍ଠମାନଙ୍କୁ ନମସ୍କାର କରୁଥିବାର ଦେଖି କେଶବ ପଚାରିଲେ, ହେ ଭଗବନ୍ ! ଆପଣ କେଉଁମାନଙ୍କୁ ନମସ୍କାର କରିବା ହେଉଅଛନ୍ତି ? ୩ ।

ହେ ଧାର୍ମିକଶ୍ରେଷ୍ଠ ! ଭଗବନ୍ ! ଆପଣ ପରମଭକ୍ତି ପରାୟଣ ହୋଇ କେଉଁମାନଙ୍କୁ ନମସ୍କାର କରିବା ହେଉଅଛନ୍ତି ? ତାହା ଶ୍ରବଣକରିବାକୁ ଆମ୍ଭେ ଇଚ୍ଛୁକ ଅଛୁଁ । ଯଦି ବକ୍ତବ୍ୟ ହୁଏ, ତେବେ କହିବା ହେଉନ୍ତୁ । ୪ ।

ନାରଦ କହିଲେ, ହେ ଅରିମର୍ଦ୍ଦନ ! ଗୋବିନ୍ଦ ! ଆମ୍ଭେ ଏହି ଯେଉଁମାନଙ୍କୁ ପୂଜା କରୁଅଛୁଁ ତାହା ଶ୍ରବଣ କରିବା ହେଉନ୍ତୁ । ଇହ ଲୋକରେ ଆପଣଙ୍କ ବ୍ୟତିରେକେ ଅନ୍ୟ କେଉଁ ବ୍ୟକ୍ତି ଏହା ଶ୍ରବଣ କରିବାକୁ ଉପଯୁକ୍ତ ଅଛି । ୬ । ହେ ବିଭୋ ! ଯେଉଁମାନେ ବରୁଣ, ବାୟୁ, ଆଦିତ୍ୟ, ପର୍ଜ୍ଜନ୍ୟ, ଅଗ୍ନି, ଶିବ, କାର୍ତ୍ତିକେୟ, ଲକ୍ଷ୍ମୀ, ବିଷ୍ଣୁ, ବ୍ରହ୍ମା, ବୃହସ୍ପତି, ଚନ୍ଦ୍ର, ଜଳ, ପୃଥିବୀ ଓ ସରସ୍ୱତୀ ଏହିମାନଙ୍କୁ ସର୍ବଦା ନମସ୍କାର କରନ୍ତି, ଆମ୍ଭେ ସେହିମାନଙ୍କୁ ନମସ୍କାର କରୁଅଛୁଁ ।୭। ହେ ବୃଷ୍ଣିଶାର୍ଦ୍ଦୂଳ ! ଆମ୍ଭେ ପୂଜନୀୟ ବେଦଜ୍ଞ ନିତ୍ୟ ବେଦପରାୟଣ ତପୋଧନମାନଙ୍କୁ ସର୍ବଦା ନମସ୍କାର କରୁଅଛୁଁ । ୮ ।

ହେ ବିଭୋ ! ଯେଉଁମାନେ ଅନାହାରରେ ଦେବକାର୍ଯ୍ୟ ସମ୍ପାଦନ କରନ୍ତି, ଯେଉଁମାନେ ଆତ୍ମଶ୍ଳାଘା କରନ୍ତିନାହିଁ, ଯେଉଁମାନେ ସନ୍ତୁଷ୍ଟ ଓ କ୍ଷମାଯୁକ୍ତ ଅଟନ୍ତି, ଆମ୍ଭେ ସେହିମାନଙ୍କୁ ନମସ୍କାର କରୁଅଛୁଁ । ୯ । ହେ ଯାଦବ ! ଯେଉଁମାନେ କ୍ଷମାଶୀଳ, ଦାନ୍ତ ଓ ଜିତେନ୍ଦ୍ରିୟହୋଇ ଉତ୍ତମରୂପେ ଯଜ୍ଞ ଅନୁଷ୍ଠାନ କରନ୍ତି, ଯେଉଁମାନେ ସତ୍ୟ, ଧର୍ମ, ପୃଥିବୀ, ଗୋ ଏବଂ ଦ୍ୱିଜମାନଙ୍କୁ ପୂଜା କରନ୍ତି, ଆମ୍ଭେ ସେହିମାନଙ୍କୁ ନମସ୍କାର କରୁଅଛୁଁ । ୧୦ । ହେ ଯାଦବ ! ଯେଉଁମାନେ ସଞ୍ଚୟଶୂନ୍ୟ, କ୍ରିୟାବାନ, ଓ ଫଳମୂଳାହାରୀ ହୋଇ ବନରେ ତପସ୍ୟା କରନ୍ତି, ଆମ୍ଭେ ସେହିମାନଙ୍କୁ ନମସ୍କାର କରୁଅଛୁଁ । ୧୧ ।

ହେ ଯାଦବ ! ଯେଉଁମାନେ ସର୍ବଦା ଭୃତ୍ୟଭରଣ ସମର୍ଥ, ଅତିଥି ବ୍ରତ ପରାୟଣ ହୋଇ ଦେବତା ଭୁକ୍ତଦ୍ରବ୍ୟରୁ ଅବଶିଷ୍ଟ ଦ୍ରବ୍ୟ ଭୋଜନ କରନ୍ତି, ଆମ୍ଭେ ସେହିମାନଙ୍କୁ ନମସ୍କାର କରୁଅଛୁଁ । ୧୨ । ଯେଉଁମାନେ ଯଥା ନିୟମରେ ବେଦାଧ୍ୟୟନ କରି ବ୍ରହ୍ମଚର୍ଯ୍ୟ ଅବଲମ୍ବନ ପୂର୍ବକ ନିତ୍ୟ ଯାଜନ ଓ ଅଧ୍ୟାପନ କାର୍ଯ୍ୟରେ ନିଯୁକ୍ତ ହୋଇ ଥାଆନ୍ତି, ଆମ୍ଭେ ସେହିମାନଙ୍କୁ ପୂଜା କରୁଅଛୁଁ । ୧୩ ।

ଯେଉଁମାନେ ପ୍ରତିଦିନ ସର୍ବପ୍ରକାର ପ୍ରାଣୀସମୂହରେ ପ୍ରସନ୍ନ ହୃଦୟ ହୋଇ ମଧ୍ୟାହ୍ନ ପର୍ଯ୍ୟନ୍ତ ବେଦାଧ୍ୟୟନ କାର୍ଯ୍ୟରେ ନିଯୁକ୍ତ ହୋଇ ଥାଆନ୍ତି,

ଆମ୍ଭେ ସେହିମାନଙ୍କୁ ପୂଜା କରୁଅଛୁଁ । ୧୪ । ହେ ଯାଦବ ! ଯେଉଁମାନେ ଅସୂୟାଶୂନ୍ୟ, ଗୁରୁସେବା ପରାୟଣ ଓ ସ୍ଥିରବ୍ରତ ହୋଇ ଗୁରୁପ୍ରସାଦ ନିମିତ୍ତ ମନ୍ତ୍ର ଜପ ବିଷୟରେ ଯତ୍ନଶୀଳ ହୋଇଥାଆନ୍ତି, ଆମ୍ଭେ ସେହିମାନଙ୍କୁ ନମସ୍କାର କରୁଅଛୁଁ । ୧୫ । ହେ ଯାଦବ ! ଯେଉଁ ମୁନିମାନେ ବ୍ରତନିଷ୍ଠ, ବ୍ରହ୍ମଣ୍ୟନିଷ୍ଠ, ସତ୍ୟପ୍ରତିଜ୍ଞ ଓ ହବ୍ୟକବ୍ୟ ଅନୁଷ୍ଠାନ କରନ୍ତି, ଆମ୍ଭେ ସେହି-ମାନଙ୍କୁ ନମସ୍କାର କରୁଅଛୁଁ । ୧୬ । ହେ ଯାଦବ ! ଯେଉଁମାନେ ଭିକ୍ଷା-ବୃତ୍ତିଦ୍ୱାରା ଜୀବନ ଧାରଣ କରନ୍ତି, ଗୁରୁଙ୍କ ଗୃହରେ ରହି କଷ୍ଟ ସହ୍ୟ କରନ୍ତି, ସୁଖ ଇଚ୍ଛା କରନ୍ତି ନାହିଁ ଓ ଅକିଞ୍ଚନ, ଆମ୍ଭେ ସେହିମାନଙ୍କୁ ନମସ୍କାର କରୁଅଛୁଁ । ୧୭ । ହେ କେଶବ ! ଯେଉଁମାନେ ମମତାଶୂନ୍ୟ, ବିବାଦ ବିହୀନ, ଦିଗମ୍ବର, ପ୍ରୟୋଜନ ରହିତ, ଯେଉଁ ବ୍ରହ୍ମବାଦୀ ମହାତ୍ମା-ମାନେ ବେଦାଧ୍ୟୟନକରି ବାଗ୍ମୀତ୍ୱପ୍ରାପ୍ତ ହୋଇ ଅଛନ୍ତି, ହିଂସାଶୂନ୍ୟ, ଯେଉଁ ନରମାନେ ସତ୍ୟବ୍ରତ, ଦାନ୍ତ ଓ ଶମଗୁଣ ପରାୟଣ ଆମ୍ଭେ ସେହିମାନଙ୍କୁ ନମସ୍କାର କରୁଅଛୁଁ । ୧୯ ।

ହେ ଯାଦବ ! ଯେଉଁ କପୋତବୃତ୍ତି ଗୃହସ୍ଥମାନେ ନିତ୍ୟ ଦେବତା ଓ ଅତିଥି ପୂଜାରେ ନିଯୁକ୍ତ ହୋଇଥାଆନ୍ତି, ଆମ୍ଭେ ସେହିମାନଙ୍କୁ ନମସ୍କାର କରୁଅଛୁଁ । ୨୦ । ଯେଉଁମାନଙ୍କର ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ କାର୍ଯ୍ୟରେ ପ୍ରବୃତ୍ତି ସର୍ବଦା ବିଦ୍ୟମାନ ଥାଏ, କଦାପି କ୍ଷୟ ହୁଏ ନାହିଁ ଏବଂ ଯେଉଁମାନେ ଶିଷ୍ଟାଚାର ସମ୍ପନ୍ନ, ଆମ୍ଭେ ସେହିମାନଙ୍କୁ ସର୍ବଦା ନମସ୍କାର କରୁଅଛୁଁ । ୨୧ । ହେ କେଶବ ! ଯେଉଁ ବ୍ରାହ୍ମଣମାନେ ତ୍ରିବର୍ଗର ଅନୁଷ୍ଠାନ କରନ୍ତି, ଶାସ୍ତ୍ରଜ୍ଞ, ଲୋଭ ବିହୀନ ଏବଂ ପୁଣ୍ୟଶୀଳ ଅଟନ୍ତି, ଆମ୍ଭେ ସେହି-ମାନଙ୍କୁ ନମସ୍କାର କରୁଅଛୁଁ । ୨୨ ।

ହେ ମାଧବ ! ଯେଉଁମାନେ ସର୍ବଦା ଜଳଭକ୍ଷଣ, ବାୟୁଭକ୍ଷଣ ଓ ସୁଧା ଭକ୍ଷଣ କରନ୍ତି ଏବଂ ଯେଉଁମାନେ ନାନାପ୍ରକାର ବ୍ରତରେ ନିଯୁକ୍ତ ହୋଇଥାଆନ୍ତି, ଆମ୍ଭେ ସେହିମାନଙ୍କୁ ନମସ୍କାର କରୁଅଛୁ । ୨୩ । ଯେଉଁମାନେ ଦାରପରିଗ୍ରହ କରନ୍ତି ନାହିଁ, ଯେଉଁମାନେ ଦାର ସହିତ ଅଗ୍ନିହୋତ୍ର ପରାୟଣ ହୁଅନ୍ତି, ଯେଉଁମାନେ ବେଦର ଏକମାତ୍ର

ଆଧାର ଏବଂ ଯେଉଁମାନେ ସମସ୍ତ ପ୍ରାଣୀମାନଙ୍କର ଆଶ୍ରୟ ସ୍ୱରୂପ ଅଟନ୍ତି, ଆମ୍ଭେ ସର୍ବଦା ସେହିମାନଙ୍କୁ ନମସ୍କାର କରୁଅଛୁ । ୨୪ ।

ହେ କୃଷ୍ଣ ! ଲୋକକର୍ତ୍ତା, ଲୋକଜ୍ୟେଷ୍ଠ, ଲୋକଶ୍ରେଷ୍ଠ ଓ କୁଳଜ୍ୟେଷ୍ଠ ଏବଂ ତମୋଃପହ ଏହି ଋଷିମାନଙ୍କୁ ଆମ୍ଭେ ସର୍ବଦା ନମସ୍କାର କରୁଅଛୁ । ୨୫ । ହେ ଅନଘବାର୍ଷ୍ଣେୟ ! ତୁମ୍ଭେ ସେହି କାରଣରୁ ସର୍ବଦା ଦ୍ୱିଜମାନଙ୍କୁ ପୂଜା କର । ପୂଜାର୍ହ ବ୍ରାହ୍ମଣମାନେ ପୂଜିତ ହେଲେ ତୁମ୍ଭଙ୍କୁ ନିଶ୍ଚୟ ସୁଖ ଦେବେ । ୨୬ । ଇହଲୋକ ଓ ପରଲୋକରେ ସୁଖ ପ୍ରଦାୟକ ଯେଉଁ ମାନନୀୟ ବ୍ରାହ୍ମଣମାନେ ପୃଥିବୀରେ ଭ୍ରମଣ କରୁଅଛନ୍ତି, ସେହିମାନେ ପୂଜିତ ହେଲେ ତୁମ୍ଭଙ୍କୁ ସୁଖ ପ୍ରଦାନ କରିବେ । ୨୭ । ଯେଉଁ ମାନେ ସମସ୍ତଙ୍କ ଗୃହରେ ଅତିଥି ହୋଇ ଗୋ ବ୍ରାହ୍ମଣମାନଙ୍କଠାରେ ଓ ସତ୍ୟ କହିବା ବିଷୟରେ ଅନୁରକ୍ତ ହୁଅନ୍ତି, ସେହିମାନେ ଆପଦ୍‌ମାନଙ୍କୁ ତରନ୍ତି । ୨୮ । ଯେଉଁମାନେ ନିତ୍ୟ ଶାନ୍ତ ଗୁଣାବଲମ୍ବୀ, ହିଂସା ଶୂନ୍ୟ ଓ ବେଦାଧ୍ୟୟନରେ ରତ, ସେହିମାନେ ଆପଦ୍‌ମାନଙ୍କୁ ତରନ୍ତି । ୨୯ ।

ଯେଉଁମାନେ ଜିତେନ୍ଦ୍ରିୟ ହୋଇ ଶ୍ରଦ୍ଧାରେ କେବଳ ଏକମାତ୍ର ବେଦକୁ ଅବଲମ୍ବନ ପୂର୍ବକ ସମସ୍ତ ଦେବଗଣଙ୍କୁ ନମସ୍କାର କରନ୍ତି, ସେହିମାନେ ଆପଦ୍‌ମାନଙ୍କୁ ତରନ୍ତି । ୩୦ । ଯେଉଁମାନେ ବ୍ରତ ଅନୁଷ୍ଠାନ କରି ଶ୍ରେଷ୍ଠ ବ୍ରାହ୍ମଣମାନଙ୍କୁ ନମସ୍କାର ପୂର୍ବକ ଦାନରେ ରତ ହୁଅନ୍ତି, ସେହିମାନେ ଆପଦ୍‌ମାନଙ୍କୁ ତରନ୍ତି । ୩୧ । ଯେଉଁମାନେ କୌମାର ବ୍ରହ୍ମଚାରୀହୋଇ ତପସ୍ୟାଦ୍ୱାରା ଆତ୍ମାକୁ ନିତ୍ୟ ପବିତ୍ର କରନ୍ତି, ସେହିମାନେ ଆପଦ୍‌ମାନଙ୍କୁ ତରନ୍ତି । ୩୨ । ଯେଉଁମାନେ ଦେବତା, ଅତିଥି, ଭୃତ୍ୟବର୍ଗ ଓ ପିତୃଗଣଙ୍କୁ ଯଥା ନିୟମରେ ଭୋଜ୍ୟବସ୍ତୁ ପ୍ରଦାନପୂର୍ବକ ସ୍ୱୟଂ ଅବଶିଷ୍ଟ ଅଂଶ ଆହାର କରନ୍ତି, ସେହିମାନେ ଆପଦ୍‌ମାନଙ୍କୁ ତରନ୍ତି । ୩୩ । ଯେଉଁମାନେ ପ୍ରଣତ ହୋଇ ଅଗ୍ନିସ୍ଥାପନ ପୂର୍ବକ ତାହାଙ୍କୁ ଧ୍ୟାନକରି ଯଥାବିଧିରେ ସୋମରସ ଆହୁତି ପ୍ରଦାନ କରନ୍ତି, ସେହିମାନେ ଆପଦ୍‌ମାନଙ୍କୁ ତରନ୍ତି । ୩୪ । ହେ ବୃଷ୍ଣିଶାର୍ଦ୍ଦୂଳ ! ଯେଉଁମାନେ ତୁମ୍ଭ ସଦୃଶ ମାତା ପିତା ଓ ଗୁରୁଜନମାନଙ୍କଠାରେ ଉତ୍ତମରୂପେ ଭକ୍ତି କରନ୍ତି, ସେହିମାନେ ଆପଦ୍‌ମାନଙ୍କୁ ତରନ୍ତି । ହେ କୌନ୍ତେୟ ! ସେହି ଦେବର୍ଷି ନାରଦ କୃଷ୍ଣଙ୍କୁ

ଏହି କଥା କହି ନିବୃତ୍ତ ହେଲେ । ଏତେବେଳେ ତୁମ୍ଭେ ମଧ୍ୟ ତଦନୁସାରେ ଦେବତା, ବ୍ରାହ୍ମଣ, ପିତୃଗଣ ଓ ଅତିଥିମାନଙ୍କୁ ନିତ୍ୟ ଉତ୍ତମରୂପେ ପୂଜା କର । ତାହାହେଲେ ଅଖିଷ୍ଟଗତି ପ୍ରାପ୍ତ ହେବ । ୩୬ ।

ଇତି କୃଷ୍ଣ ନାରଦ ସମ୍ବାଦେ ଏକତ୍ରିଂଶ ଅଧ୍ୟାୟ ସମାପ୍ତ । ୩୧ ।



# ଦ୍ୱାତ୍ରିଂଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ଭରତଶ୍ରେଷ୍ଠ ! ସର୍ବଶାସ୍ତ୍ର ବିଶାରଦ ! ମହାପ୍ରାଜ୍ଞ ପିତାମହ ! ଆମ୍ଭେ ଆପଣଙ୍କଠାରୁ ଧର୍ମ ବିଷୟ ଶ୍ରବଣ କରିବାକୁ ଉତ୍ସୁକ ଅଛୁଁ । ୧ । ହେ ଭରତ ପ୍ରବର ! ଯେଉଁମାନେ ଶରଣାଗତ ଜରାୟୁଜ ପ୍ରଭୃତି ଚତୁର୍ବିଧ ପ୍ରାଣୀସମୂହକୁ ରକ୍ଷାକରନ୍ତି, ସେମାନଙ୍କର କେଉଁଫଳ ହୁଏ, ତାହା ଯଥାର୍ଥରୂପେ କହିବା ହେଉନ୍ତୁ । ୨ ।

ଭୀଷ୍ମ କହିଲେ, ହେ ମହାପ୍ରାଜ୍ଞ ! ମହାଯଶଃ ! ଧର୍ମପୁତ୍ର ! ଶରଣାଗତମାନଙ୍କୁ ରକ୍ଷା କରିବାରେ ଯେଉଁ ମହାଫଳ ହୁଏ ତଦ୍‌ବିଷୟରେ ଏହି ପୁରାବୃତ୍ତ ଇତିହାସକୁ ଶ୍ରବଣ କର । ୩ ।

ପୂର୍ବେ ପ୍ରିୟଦର୍ଶନ ଗୋଟିଏ କପୋତ ଶ୍ୟେନ ଭୟରେ ଆକାଶରୁ ଆସି ମହାଭାଗ ଔଶୀନର ଶିବି ନରପାଳଙ୍କର ଶରଣାଗତ ହୋଇଥିଲା । ୪ । ସେହି ବିଶୁଦ୍ଧାତ୍ମା ରାଜା, ଭୟ ହେତୁରୁ ଅଙ୍କ ସମାଗତ କପୋତକୁ ଦେଖି ଆଶ୍ୱାସନା କରି "ହେ ଅଣ୍ଡଜ ! ତୁମ୍ଭର କିଛି ଭୟ ନାହିଁ, ତୁମ୍ଭେ ଆଶ୍ୱାସ ପ୍ରାପ୍ତହୁଅ, ତୁମ୍ଭର କାହାଠାରୁ ମହାଭୟ ଉପସ୍ଥିତ ହୋଇଅଛି, ତୁମ୍ଭେ ଅବା କେଉଁଠାରେ କେଉଁକର୍ମ କରିଅଛ ? ଯେଉଁ କାରଣରେ ତୁମ୍ଭେ ଏତାଦୃଶ ଅଜ୍ଞାନ ଓ ଭ୍ରାନ୍ତଚେତନ ହୋଇ ଏଠାରେ ଉପସ୍ଥିତ ହୋଇଅଛ, ତାହା ପ୍ରକାଶ କର । ୬ ।

ହେ ସୁଦର୍ଶନ ! କପୋତ ! ତୁମ୍ଭର ମନୋହରବର୍ଣ୍ଣ, ନୂତନ ନୀଳୋତ୍ପଳ ସଦୃଶ ଶ୍ୟାମଳ, ଚକ୍ଷୁ ଦାଡ଼ିମ୍ବ ଓ ଅଶୋକପୁଷ୍ପ ସଦୃଶ ରକ୍ତବର୍ଣ୍ଣ; ତୁମ୍ଭର କିଛି ଭୟନାହିଁ, ତୁମ୍ଭେ ସୁସ୍ଥ ହୁଅନା । ୭ । ରକ୍ଷା କରିବାର ଅଧ୍ୟକ୍ଷ ତୁମ୍ଭର ଅଗ୍ରଭାଗରେ ଦଣ୍ଡାୟମାନ ହୋଇଅଛି; ଏତେବେଳେ ଆମ୍ଭ ନିକଟରୁ ତୁମ୍ଭଙ୍କୁ ଗ୍ରହଣ କରିବାକୁ କେହି ମନରେ ଉତ୍ସାହ କରିବ ନାହିଁ । ୮ ।

ହେ କପୋତ ! ତୁମ୍ଭର କିଛି ଭୟନାହିଁ; ଅଦ୍ୟ ଆମ୍ଭେ ତୁମ୍ଭର ରକ୍ଷା ନିମିତ୍ତ କାଶୀରାଜ୍ୟ ଓ ପ୍ରାଣ ପରିତ୍ୟାଗ କରି ପାରିବୁଁ । ତୁମ୍ଭେ ଆମ୍ଭ କଥାରେ ବିଶ୍ୱାସ କର”, ଏହିପରି କହିଲେ । ୯ । ତପୂରେ ଶ୍ୟେନ କହିଲା, ମହାରାଜ ! ଏହି ମୃତକଳ୍ପ କପୋତ ଆମ୍ଭର ଭକ୍ଷ, ଆମ୍ଭେ ବହୁ ଯତ୍ନରେ ଏହାକୁ ଲାଭ କରିଅଛୁଁ । ସମ୍ପ୍ରତି ଏ ପଳାଇ ଆସିଅଛି, ଅତଏବ ଏହାକୁ ରକ୍ଷା କରିବାର ଆପଣଙ୍କର କଦାପି ଉଚିତନୁହେ । ୧୦ ।

ଏହି କପୋତର ମାଂସ, ରକ୍ତ, ମଜ୍ଜା ଓ ମେଦ ଆମ୍ଭର ହିତ ଓ ତୃପ୍ତିକାରକ; ଅତଏବ ଆପଣ ମୋହର ଆହାରର ବ୍ୟାଘାତ କରନ୍ତୁ ନାହିଁ । ୧୧ । ହେ ରାଜନ୍ ! ଅତି ଉଗ୍ରତୃଷ୍ଣା ମୋତେ ବାଧା ଦେଉଅଛି, କ୍ଷୁଧାରେ ମୋର ଦେହ ଦଗ୍ଧ ହେଲାପରି ଜଣାଯାଉଅଛି, କ୍ଷୁଧାକୁ ନିବାରଣ କରିବା ନିମିତ୍ତ ମୋର ଶକ୍ତିନାହିଁ, ଅତଏବ ଆପଣ ଏହାକୁ ପରିତ୍ୟାଗ କରିବା ହେଉନ୍ତୁ । ୧୨ । ଏହାକୁ ମୁଁ ଆକ୍ରମଣ କରି ପକ୍ଷ ଓ ନଖଦ୍ୱାରା କ୍ଷତବିକ୍ଷତ କରିଅଛି । ଏହାର ଜୀବିତ ଅଳ୍ପମାଣରେ ନିଶ୍ୱାସ ପ୍ରଶ୍ୱାସ ପରି-ଗୃହୀତ ହେଉଅଛି, ଅତଏବ ଆପଣ ଏହାକୁ ରକ୍ଷା କରିବା ନିମିତ୍ତ ଉଦ୍ୟତ ହେଉନ୍ତୁ ନାହିଁ । ୧୩ । ହେ ରାଜନ୍ ! ହେ ସାଧୋ ! ତୁମ୍ଭେ ସ୍ୱକୀୟ ରାଜ୍ୟସ୍ଥିତ ନରମାନଙ୍କର ପ୍ରଭୁ । କିନ୍ତୁ ତୃଷାତୁର ବିହଙ୍ଗମର ପ୍ରଭୁ ନୁହଁ । ୧୪ । ଶତ୍ରୁ, ଭୃତ୍ୟ, ସ୍ୱଜନ, ଇନ୍ଦ୍ରିୟମାନଙ୍କ ଦମନ ଓ ବ୍ୟବହାର ବିଷୟରେ କ୍ଷମତା ପ୍ରକାଶ କରିବାର ଆପଣଙ୍କର ଉଚିତ ଅଟେ, କିନ୍ତୁ ଆକାଶଚର ବିହଙ୍ଗମ-ମାନଙ୍କ ଉପରେ ପରାକ୍ରମ ପ୍ରକାଶ କରିବାର ଆପଣଙ୍କର କଦାପି ଉଚିତ ନୁହେ । ୧୫ ।

ଶତ୍ରୁମାନଙ୍କଠାରେ ପରାକ୍ରମ ପ୍ରକାଶ ପୂର୍ବକ ପ୍ରଭୁତ୍ୱ ସ୍ଥାପନ କରିବାର ଆପଣଙ୍କର ଉଚିତ । ମୁଁ ଆପଣଙ୍କର ଶତ୍ରୁ ନୁହେଁ, ଆପଣ ଧର୍ମାର୍ଥୀ ହୋଇ ମୋ ଖାଦ୍ୟଦ୍ରବ୍ୟରେ ବାଧା ଦେଲେ ନିଶ୍ଚୟ ପାପଭାଗୀ ହେବେ । ୧୬ । ଭୀଷ୍ମ କହିଲେ, ହେ ରାଜନ୍ ! କପୋତାର୍ଥୀ ରାଜର୍ଷି ଶିବି ଶ୍ୟେନର ସେହି ବାକ୍ୟ ଶ୍ରବଣକରି ବିସ୍ମୟାବିଷ୍ଟ ହେଲେ ଏବଂ ତାହାକୁ ବିନୟୟୁକ୍ତ ହୋଇ ପ୍ରତ୍ୟୁତ୍ତର ଦେଲେ । ୧୭ । ହେ ବିହଙ୍ଗମ ! ଅଦ୍ୟ ଆମ୍ଭେ ତୁମ୍ଭଙ୍କୁ ବୃଷ, ବରାହ, ମୃଗ, ଅଥବା ମହିଷ ମାଂସ ପ୍ରଦାନ କରୁଅଛୁଁ, ତାହାଦ୍ୱାରା ତୁମ୍ଭେ କ୍ଷୁଧା ନିବାରଣ କର । ୧୮ । ହେ ବିହଙ୍ଗମ ! ଶରଣାଗତ ପ୍ରତିପାଳନ ରୂପ ମହାବ୍ରତକୁ ଆମ୍ଭେ ପରିତ୍ୟାଗ କରିପାରିବୁ ନାହିଁ । ଦେଖ; ଏହି କପୋତ ଆମ୍ଭର କୋଡ଼ ପରିତ୍ୟାଗ କରୁନାହିଁ । ୧୯ ।

ତେତେବେଳେ ଶ୍ୟେନ କହିଲା, ହେ ମହାରାଜ ! ମୁଁ ବୃଷ, ବରାହ ଓ ଅନ୍ୟାନ୍ୟ ବିବିଧ ପକ୍ଷୀମାନଙ୍କର ମାଂସ ଭୋଜନ କରେ ନାହିଁ । ସୁତରାଂ ସେହି ସକଳ ଜନ୍ତୁର ମାଂସରେ ମୋର କି ପ୍ରୟୋଜନ । ୨୦ । ଦେବଗଣ କପୋତମାନଙ୍କୁ କେବଳ ଆମ୍ଭମାନଙ୍କର ଭକ୍ଷ୍ୟବୋଲି ନିର୍ଦ୍ଦିଷ୍ଟ କରିଅଛନ୍ତି । ଶ୍ୟେନ ପକ୍ଷୀମାନେ ଯେ କପୋତମାନଙ୍କୁ ଭକ୍ଷଣ କରନ୍ତି, ଏହିକଥା ସମସ୍ତେ ଜାଣନ୍ତି ଓ ଏହିକଥା ସନାତନୀ ଅଟେ । ୨୧ । ହେ ଅନଘଦର୍ଶୀନର । ତୁମ୍ଭର କପୋତଠାରେ ଯଦି ସ୍ନେହ ଅଛି, ତେବେ ଏହି କପୋତ ପରିମିତ ସ୍ୱକୀୟ ଦେହର ମାଂସ ପ୍ରଦାନ କର । ୨୨ । ରାଜା ଶିବି କହିଲେ, ହେ ବିହଙ୍ଗମ ! ତୁମ୍ଭେ ଏତେବେଳେ ଆମ୍ଭଙ୍କୁ ଏପରି କହି ମହାନ୍ ଅନୁଗ୍ରହ କଲ । ଆମ୍ଭେ ଅବିଳମ୍ବରେ ତୁମ୍ଭଙ୍କୁ କପୋତ ପରିମିତ ସ୍ୱ ଦେହର ମାଂସ ପ୍ରଦାନ କରିବୁଁ । ନୃପଶ୍ରେଷ୍ଠ ଶିବି ଏହିପ୍ରକାର କହି ତୁଳାଦଣ୍ଡ ସଂସ୍ଥାପନ ପୂର୍ବକ ତାହାର ଏକପାର୍ଶ୍ୱରେ କପୋତକୁ ସନ୍ନିବେଶିତ କରି ଅପର ପାର୍ଶ୍ୱରେ ସ୍ୱୀୟ ଶରୀର ମାଂସଚ୍ଛେଦନ ପୂର୍ବକ ତୁଳନକଲେ । ନାନାରତ୍ନ ବିଭୂଷିତା ତାହାଙ୍କର ଅନ୍ତପୁର ଚାରିଣୀ ଅଙ୍ଗନାଗଣ, (୨୪) ଏହି ସମ୍ବାଦ ଶ୍ରବଣକରି ପରମ ଦୁଃଖିତାହୋଇ ହାହାକାର କରି ଅନ୍ତଃପୁରରୁ ବହିର୍ଗତା ହେଲେ । ସେହିମାନଙ୍କର ଏବଂ ମନ୍ତ୍ରୀ ଓ ଭୃତ୍ୟ ବର୍ଗଙ୍କର କ୍ରନ୍ଦନ କୋଳାହଳରେ ରାଜଭବନ ଓ ଆକାଶମଣ୍ଡଳ ମେଘପୂର୍ଣ୍ଣ

ହେଲା । ସେହି ସମୟରେ ନରପତିଙ୍କର ସେହି ସତ୍ୟ ପାଳନ ପ୍ରଭାବରେ ଆକାଶମଣ୍ଡଳ ମେଘାଚ୍ଛନ୍ନ ଓ ଭୂମଣ୍ଡଳ ବିଚଳିତ ହେଲା । ସେହି ରାଜା ପାର୍ଶ୍ୱଦ୍ୱୟ, ବାହୁଦ୍ୱୟ ଓ ଉରୁଦ୍ୱୟରୁ, (୨୭) ମାଂସ ଛେଦନକରି ତୁଳାଦଣ୍ଡକୁ ପୂରଣକଲେ, ତଥାପି ସେହି ମାଂସସବୁ କପୋତର ସମାନ ପରିମିତ ହେଲାନାହିଁ । ୨୮ । ପରିଶେଷରେ ଯେତେବେଳେ ମାଂସ ଶେଷ ହେବାରୁ ରାଜା ନିର୍ମାଂସ ରୁଧିରସ୍ରବ ଓ ଅସ୍ଥିଭୂତ ହେଲେ, ତତ୍ସମୟରେ ସେ ସ୍ୱୟଂ ତୁଳାଦଣ୍ଡରେ ଆରୋହଣ କଲେ । ୨୯ ।

ତଦନନ୍ତର ଦେବରାଜ ତ୍ରିଲୋକ ବାସୀମାନଙ୍କ ସହିତ ସମବେତ ହୋଇ ତାହାଙ୍କ ନିକଟରେ ଉପସ୍ଥିତ ହେଲେ । ଦେବଗଣ ଭେରୀ ଓ ଦୁନ୍ଦୁଭି ବାଦ୍ୟ ବାଦନକରି ତାହାଙ୍କ ମସ୍ତକରେ ବାରମ୍ବାର ଅମୃତ ଓ ପୁଷ୍ପବୃଷ୍ଟି କଲେ । ଦେବ ଗନ୍ଧର୍ବଗଣ ଓ ଅପ୍ସରାଗଣ ପ୍ରଭୁ ପିତାମହଙ୍କୁ ସନ୍ତୋଷ କଲାପରି ତାହାଙ୍କର ଚତୁର୍ଦ୍ଦିଗରେ ନୃତ୍ୟ ଗୀତ କଲେ । ୩୨ । ହେ ଯୁଧିଷ୍ଠିର ! କଣ୍ଠମଧ୍ୟ ପରେ ସେହି ରାଜର୍ଷି ଶିବି, ସେହି ସତ୍କର୍ମ ପ୍ରଭାବରେ ସୁବର୍ଣ୍ଣମୟ ଅଟ୍ଟାଳିକା, ମଣି କାଞ୍ଚନମୟ ତୋରଣ ଓ ବୈଦୁର୍ଯ୍ୟ ମଣିମୟ ସ୍ତମ୍ଭରେ ଅଳଂକୃତ ବିମାନରେ ଆରୋହଣପୂର୍ବକ ସ୍ୱର୍ଗକୁ ପ୍ରସ୍ଥାନ କଲେ । ତୁମ୍ଭେ ତାହାଙ୍କ ସଦୃଶ ହୋଇ ଶରଣାଗତ ଜନମାନଙ୍କୁ ରକ୍ଷା କରିବା ନିମିତ୍ତ କୃତସଂକଳ୍ପ ହୁଅ । ୩୪ ।

ଯେ ସର୍ବଭୂତରେ ଦାୟାଳୁ, ଭକ୍ତ ଅନୁରକ୍ତ ଓ ଆଶ୍ରିତମାନଙ୍କର ରକ୍ଷକ, ସେ ପରଲୋକରେ ସୁଖଭୋଗୀ ହୁଅନ୍ତି । ୩୫ । ଯେଉଁ ନରପାଳ ସତ୍ସ୍ୱଭାବ ସମ୍ପନ୍ନ ଓ ଶିଷ୍ଟାଚାର ନିରତ ହୋଇ କପଟ ପରିତ୍ୟାଗ କରନ୍ତି, ତାହାଙ୍କର କିଛିମାତ୍ର ଅପ୍ରାପ୍ୟ ହୁଅଇ ନାହିଁ । ୩୬ । ବିଶୁଦ୍ଧାତ୍ମା, ଧୀର, ସତ୍ୟପରାକ୍ରମ, କାଶୀ ନରପାଳ ରାଜର୍ଷି ଶିବି, ସ୍ୱୀୟ ସତ୍କର୍ମଦ୍ୱାରା ତ୍ରିଭୁବନରେ ଖ୍ୟାତ ହୋଇ ଅଛନ୍ତି । ୩୭ । ହେ ଭରତ ସତ୍ତମ ! ଯେଉଁ ଅନ୍ୟ ବ୍ୟକ୍ତି ଏହିପରି ଶରଣାଗତ ଜନମାନଙ୍କୁ ରକ୍ଷା କରିବେ, ସେ ମଧ୍ୟ ସେହି ଶିବି ନରପାଳଙ୍କ ପରି ସଦ୍ଗତି ପ୍ରାପ୍ତ ହେବେ । ୩୮ ।

ଇହଲୋକରେ ଯେଉଁ ବ୍ୟକ୍ତି ପ୍ରତର୍ଦ୍ଦନ ରାଜର୍ଷି ଶିବିଙ୍କର ଏହି ଉପାଖ୍ୟାନ ଶ୍ରବଣ ବା କୀର୍ତ୍ତନ କରନ୍ତି, ସେ ପୁଣ୍ୟାତ୍ମା ହୁଅନ୍ତି । ୩୯ ।

ଇତି ଶ୍ୟେନ କପୋତ ଉପାଖ୍ୟାନେ ଦ୍ୱାତ୍ରିଂଶ ଅଧ୍ୟାୟ ସମାପ୍ତ । ୩୨ ।



# ତ୍ରୟସ୍ତ୍ରିଂଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ପିତାମହ ! ରାଜାଙ୍କର ସମସ୍ତ କୃତ୍ୟକର୍ମ-ମାନଙ୍କ ମଧ୍ୟରେ କେଉଁ କାର୍ଯ୍ୟ ସର୍ବୋତ୍କୃଷ୍ଟ ଅଟେ ? ନୃପତି କେଉଁ କର୍ମକୁ କଲେ ଇହଲୋକ ଓ ପରଲୋକରେ ମଙ୍ଗଳ ଲାଭ କରିବାକୁ ସମର୍ଥ ହୁଏ ? ୧ । ଭୀଷ୍ମ କହିଲେ, ହେ ଭାରତ ! ଅଧିକ ସୁଖେଚ୍ଛୁକ ନୃପବରଙ୍କର ବ୍ରାହ୍ମଣମାନଙ୍କୁ ଆରାଧନା କରିବାର ଉଚିତ । ହେ ଭରତର୍ଷଭ ! ଅଭିଷିକ୍ତ ରାଜାଙ୍କର ଏହା ସର୍ବଶ୍ରେଷ୍ଠ କାର୍ଯ୍ୟ ଅଟେ । ନରପତିଶ୍ରେଷ୍ଠ ଶ୍ରୋତ୍ରିୟ-ବ୍ରାହ୍ମଣଗଣଙ୍କୁ ସର୍ବଦା ପୂଜା କରିବେ । ୩ । ଯେଉଁ ବହୁଶାସ୍ତ୍ରଜ୍ଞ ବ୍ରାହ୍ମଣଗଣ ପୁର ଅଥବା ଜନପଦରେ ବାସ କରି-ଥାଆନ୍ତି, ସେହିମାନଙ୍କୁ ରାଜା ଶାନ୍ତଭାବରେ ଭୋଗ୍ୟବସ୍ତୁ ଦାନଦ୍ୱାରା ଓ ନମସ୍କାର ଦ୍ୱାରା ଅର୍ଚ୍ଚନା କରିବେ । ୪ । ରାଜାଙ୍କର ଏହି କାର୍ଯ୍ୟ ସର୍ବାପେକ୍ଷା ଉତ୍କୃଷ୍ଟ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ରାଜା, ଆପଣାର ଆତ୍ମା ଓ ପୁତ୍ର ସଦୃଶ ବ୍ରାହ୍ମଣଗଣଙ୍କୁ ପ୍ରତିପାଳନ କରିବେ । ୫ ।

ଯେଉଁମାନେ ବ୍ରାହ୍ମଣମାନଙ୍କ ମଧ୍ୟରେ ପୂଜନୀୟ, ସେହିମାନଙ୍କୁ ଦୃଢ଼ରୂପେ ପୂଜା କରିବ, ସେହିମାନେ ଶାନ୍ତ ହେଲେ ରାଜାଙ୍କର ରାଜ୍ୟ ସର୍ବପ୍ରକାରରେ ବିରାଜିତ ହୁଏ । ୬ । ପିତୃସଦୃଶ ସେହିମାନେ ପୂଜ୍ୟ, ସେହିମାନେ ନମସ୍କରଣୀୟ, ସେହିମାନେ ମାନ୍ୟ ଅଟନ୍ତି । ବର୍ଷଣଶୀଳ ମେଘ ଯେଉଁପରି ଶସ୍ୟୋତ୍ପାଦନ ପୂର୍ବକ ଜୀବନରକ୍ଷା କରୁଅଛି, ସେହିପରି ବ୍ରାହ୍ମଣମାନଙ୍କ ପ୍ରସାଦରୁ ମଧ୍ୟ ଲୋକଯାତ୍ରା ନିର୍ବାହ ହେଉଅଛି । ୭ । ଉଗ୍ରସତ୍ୟ ପରାକ୍ରମ ବ୍ରାହ୍ମଣମାନେ କୁପିତ ହେଲେ ସଂକଳ୍ପମାତ୍ରେ ଅଭିଚାର

ପ୍ରଭୃତି କୌଳିକ ଶାସ୍ତ୍ର ପ୍ରସିଦ୍ଧ ଉପାୟମାନଙ୍କ ଦ୍ୱାରା ବିଦ୍ୱେଷୀମାନଙ୍କୁ ନିଃଶେଷରୂପେ ଦଗ୍ଧକରି ପାରନ୍ତି । ୮ ।

ଏହିମାନଙ୍କର ନାଶକର ଉପାୟ କର୍ତ୍ତବ୍ୟ ନୁହେଁ । ଏମାନଙ୍କର ଗତି କୌଣସିଠାରେ ପ୍ରତିହତ ହୁଏ ନାହିଁ । ଏମାନେ କୁପିତ ହେଲେ ବନାଗ୍ନିର ଶିଖାପରି ସମସ୍ତ ଦଗ୍ଧ କରିବେ । ୯ । ଏହିମାନଙ୍କୁ ଦର୍ଶନ କଲେ ଅତି ସାହସିକ ବ୍ୟକ୍ତିର ମଧ୍ୟ ଅନ୍ତଃକରଣରେ ଭୟ ସଞ୍ଚାର ହୁଏ । ଏମାନେ ଅସୀମ ଗୁଣ ସମ୍ପନ୍ନ । ଏହିମାନଙ୍କ ମଧ୍ୟରେ କେହି କେହି ତୃଣାଚ୍ଛନ୍ନ କୂପ ସଦୃଶ ପ୍ରଚ୍ଛନ୍ନ ଭାବରେ ଅବସ୍ଥାନ କରନ୍ତି ଏବଂ କେହି କେହି ଅବା ମେଘ ବିମୁକ୍ତ ଆକାଶ ମଣ୍ଡଳ ସଦୃଶ ବ୍ୟକ୍ତଭାବ ଧାରଣ କରନ୍ତି ।୧୦। କେହି କେହି କ୍ଷିପ୍ରକାରୀ ଓ କେହି କେହି କାର୍ପାସ ସଦୃଶ ମୃଦୁ ଏବଂ କେତେକ ବ୍ୟକ୍ତି ଅତିଶୟ ଶଠ ଓ କେତେକ ବ୍ୟକ୍ତି ତପସ୍ୱୀ ଅଟନ୍ତି । ୧୧ ।

ଏହିମାନଙ୍କ ମଧ୍ୟରେ କେହି କେହି କୃଷି କାର୍ଯ୍ୟର ଅନୁଷ୍ଠାନ କରନ୍ତି । କେହି କେହି ଗୋରକ୍ଷଣ କରନ୍ତି । କେହି କେହି ଭିକ୍ଷାଚରଣ କରନ୍ତି । କେହି କେହି ଚୌର୍ଯ୍ୟ ବୃତ୍ତି ଅବଲମ୍ବନ କରନ୍ତି । କେହି କେହି କଳହ ପ୍ରିୟ ହୁଅନ୍ତି ଏବଂ କେହି କେହି ନଟ ନର୍ତ୍ତକର କାର୍ଯ୍ୟ ସାଧନ କରନ୍ତି । ୧୨ । ହେ ଭରତ ଶ୍ରେଷ୍ଠ ! ବ୍ରାହ୍ମଣମାନଙ୍କ ମଧ୍ୟରେ ଅନେକ ବ୍ୟକ୍ତି ପାର୍ଥିବ ଓ ଇତର ପଦାର୍ଥ ବିଷୟରେ ସବ ପ୍ରକାର କଠିନ କର୍ମ ଅର୍ଥାତ୍ ସମୁଦ୍ର ଶୋଷଣାଦି କାର୍ଯ୍ୟ କରନ୍ତି ଓ ବିବିଧ କାର୍ଯ୍ୟୋପଜୀବୀ ହୁଅନ୍ତି ଅର୍ଥାତ୍ ବିବିଧ କାର୍ଯ୍ୟ ଅବଲମ୍ବନଦ୍ୱାରା ଜୀବିକା ନିର୍ବାହ କରନ୍ତି । ୧୩ ।

ନାନା କର୍ମରେ ଅନୁରକ୍ତ, ବିବିଧ କର୍ମୋପଜୀବୀ ଧର୍ମଜ୍ଞ ଉତ୍କୃଷ୍ଟ ବ୍ରାହ୍ମଣମାନଙ୍କ କୀର୍ତ୍ତନ କରିବ । ୧୪ । ହେ ନରେନ୍ଦ୍ର ! ମହାତ୍ମା ବ୍ରାହ୍ମଣଗଣ ପୂର୍ବକାଳରୁ ପିତୃ, ଦେବତା, ମନୁଷ୍ୟ, ଉରଗ ଓ ରାକ୍ଷସ ଗଣଙ୍କର ପୂଜନୀୟ । ୧୫ । ଦେବତା, ପିତୃଲୋକ, ଗନ୍ଧର୍ବ, ରାକ୍ଷସ, ଅସୁର ଓ ପିଶାଚଗଣଙ୍କ ମଧ୍ୟରେ କେହି ସୁଦ୍ଧା ବ୍ରାହ୍ମଣମାନଙ୍କୁ ପରାଜୟ କରିବାକୁ

ସମର୍ଥ ହୁଅନ୍ତିନାହିଁ । ୧୬ । ଏମାନେ ଅଦେବତାଙ୍କୁ ଦେବତା ଓ ଦେବତାଙ୍କୁ ଅଦେବତା କରି ପାରନ୍ତି । ଏମାନେ ଯାହାଙ୍କୁ ଇଚ୍ଛା କରନ୍ତି ସେ ରାଜା ହୁଏ । ଯେ ବ୍ରାହ୍ମଣଙ୍କୁ ପୂଜା ନ କରନ୍ତି, ସେ ପରାଭବଗ୍ରସ୍ତ ହୁଅନ୍ତି ।୧୭ ।

ହେ ରାଜନ୍ ! ଆମ୍ଭେ ତୁମ୍ଭଙ୍କୁ ସତ୍ୟ କହୁଅଛୁଁ, ଯେଉଁ ମୂର୍ଖ ବ୍ୟକ୍ତିମାନେ ବ୍ରାହ୍ମଣମାନଙ୍କର ନିନ୍ଦା କରିବେ, ସେମାନେ ନିଶ୍ଚୟ ବିନାଶ ପ୍ରାପ୍ତ ହେବେ, ଏ ବିଷୟରେ ସଂଶୟ ନାହିଁ । ୧୮ । ହେ ରାଜନ୍ ! ପରର ନିନ୍ଦା ଓ ପ୍ରଶଂସାରେ ନିରତ, କୀର୍ତ୍ତି ଓ ଅକୀର୍ତ୍ତିର କାରଣ ବ୍ରାହ୍ମଣଗଣ ବିଦ୍ୱେଷୀମାନଙ୍କ ଉପରେ ସର୍ବଦା କ୍ରୋଧାବିଷ୍ଟ ହୋଇଥାଆନ୍ତି । ୧୯ । ବ୍ରାହ୍ମଣଗଣ ଯେଉଁ ବ୍ୟକ୍ତିଙ୍କୁ ପ୍ରଶଂସା କରନ୍ତି, ସେହି ପୁରୁଷ ଅଭ୍ୟୁଦୟଶାଳୀ ହୁଅନ୍ତି । ବ୍ରାହ୍ମଣମାନେ ଯେଉଁ ପୁରୁଷଙ୍କୁ ନିନ୍ଦା କରନ୍ତି, ସେ ଅବିଳମ୍ବରେ ପରାଭବଗ୍ରସ୍ତ ହୁଅନ୍ତି । ୨୦ । ଶକ, ଯବନ, କାମ୍ବୋଜ କ୍ଷତ୍ରିୟମାନେ ବ୍ରାହ୍ମଣମାନଙ୍କର କୃପାଦୃଷ୍ଟି ପ୍ରାପ୍ତ ନ ହୋଇଥିବାରୁ ଶୂଦ୍ରତ୍ୱ ପ୍ରାପ୍ତ ହୋଇଥିଲେ । ୨୧ ।

ଦ୍ରାବିଡ଼, କଳିଙ୍ଗ, ପୁଳିନ୍ଦ, ଉଶୀନର, କୋଳସର୍ପ ଓ ମାହିଷକ ପ୍ରଭୃତି କ୍ଷତ୍ରିୟଗଣ ( ୨୨ ) ବ୍ରାହ୍ମଣଗଣଙ୍କ କୃପାଦୃଷ୍ଟି ବ୍ୟତିରେକେ ଶୂଦ୍ରତ୍ୱକୁ ପ୍ରାପ୍ତ ହୋଇଥିଲେ । ହେ ବିଜୟି ଶ୍ରେଷ୍ଠ ! ବ୍ରାହ୍ମଣମାନଙ୍କଠାରୁ ପରାଜୟ ପ୍ରାପ୍ତ ହେବାର ଶ୍ରେୟ, ସେହିମାନଙ୍କୁ ପରାଜୟ କରିବାର କଦାପି ଉଚିତ ନୁହେଁ । ୨୩ । ସର୍ବ ଜନ୍ତୁ ବଧର ପାପ ଅପେକ୍ଷା ବ୍ରାହ୍ମଣ ବଧ ଗୁରୁତର । ପରମ ଋଷିମାନେ ବ୍ରାହ୍ମଣ ବଧକୁ ମହାପାତକ ବୋଲି କହନ୍ତି । ୨୪ ।

ବ୍ରାହ୍ମଣଗଣର ନିନ୍ଦାକୁ କଦାପି ଶ୍ରବଣ କରିବାର ଉଚିତ୍ ନୁହେଁ । ଯେଉଁ ସ୍ଥାନରେ ବ୍ରାହ୍ମଣମାନଙ୍କର ନିନ୍ଦା ହେଉଥିବ, ସେଠାରେ କିଛି ନ କହି ଅଧୋମୁଖ ହୋଇ ବସିବ ଅଥବା ସେଠାରୁ ପଳାୟନ କରିବ । ୨୫ । ଯେଉଁ ବ୍ୟକ୍ତି ବ୍ରାହ୍ମଣଙ୍କ ବିରୋଧରେ ସୁଖରେ ଜୀବନ ଧାରଣ କରିବାକୁ ଉତ୍ସାହୀ, ତାଦୃଶ କୌଣସି ପୁରୁଷ ଆଜପର୍ଯ୍ୟନ୍ତ ପୃଥିବୀରେ ଜନ୍ମଗ୍ରହଣ କରି ନାହାନ୍ତି ବା କଦାପି ଜନ୍ମିବେ ନାହିଁ । ୨୬ । ମୁଷ୍ଟି ଦ୍ୱାରା

ବାୟୁ ଗ୍ରହଣ, କରଦ୍ୱାରା ଚନ୍ଦ୍ରଦେବଙ୍କ ସ୍ପର୍ଶନ ଓ ପୃଥିବୀ ଧାରଣ ଯେଉଁପରି ଦୁଷ୍କର, ପୃଥିବୀରେ ବ୍ରାହ୍ମଣମାନଙ୍କୁ ପରାଭବ ଦେବାର ମଧ୍ୟ ତଦ୍‌ବତ ସୁକଠିନ । ୨୭ ।

ଇତି ବ୍ରାହ୍ମଣ ପ୍ରଶଂସା ଗର୍ଭକ ତ୍ରୟସ୍ତ୍ରିଂଶ ଅଧ୍ୟାୟ ସମାପ୍ତ । ୩୩ ।



# ଚତୁସ୍ତ୍ରିଂଶତ୍ତମ ଅଧ୍ୟାୟ

ଭୀଷ୍ମଦେବ କହିଲେ, ହେ ଯୁଧିଷ୍ଠିର ! ସର୍ବଦା ବ୍ରାହ୍ମଣମାନଙ୍କୁ କେବଳ ବିଶେଷରୂପେ ପୂଜା କରିବାର ଉଚିତ । କାରଣ ସୋମ ସେମାନଙ୍କର ରାଜା ଓ ସେମାନେ ସୁଖ ଦୁଃଖର ଈଶ୍ୱର ଅର୍ଥାତ୍ ବ୍ରାହ୍ମଣଗଣ ସମସ୍ତଙ୍କୁ ସୁଖ ଦୁଃଖ ପ୍ରଦାନ କରିବାକୁ ସମର୍ଥ ଅଟନ୍ତି । ୧ । ବ୍ରାହ୍ମଣମାନଙ୍କୁ ତଥାପି ଅଭୀଷ୍ଟ ବିବିଧ ଭୋଗ୍ୟ ବସ୍ତୁ ଓ ଅଳଙ୍କାର ପ୍ରଦାନଦ୍ୱାରା ଏବଂ ନମସ୍କାର ଦ୍ୱାରା ପୂଜା କରିବାର ଏବଂ ପିତୃ ସଦୃଶ ସେମାନଙ୍କୁ ରକ୍ଷା କରିବାର ବିଧେୟ ।୨।

ବର୍ଷଣଶୀଳ ମେଘ ହେତୁରୁ ପ୍ରାଣୀଗଣର ଯେଉଁପରି ମଙ୍ଗଳଲାଭ ହୁଏ, ବ୍ରାହ୍ମଣମାନଙ୍କ ହେତୁରୁ ସେହିପରି ରାଜ୍ୟର ଶାନ୍ତିଲାଭ ହୁଏ । ତୁମ୍ଭ ରାଜ୍ୟରେ ବ୍ରହ୍ମବର୍ଚ୍ଚସ୍ୱୀ ଅର୍ଥାତ୍ ତେଜସ୍ୱୀ ଓ ଶୁଦ୍ଧାଚାର ସମ୍ପନ୍ନ ବ୍ରାହ୍ମଣ ଜନ୍ମ ଗ୍ରହଣ କରନ୍ତୁ ।୩। ହେ ରାଜନ୍ ! ସର୍ବପ୍ରକାର ସମ୍ପତ୍ତି ଲାଭ ନିମିତ୍ତ ଦେଶ ମଧ୍ୟରେ ଶତ୍ରୁତାପନ ମହାରଥ କ୍ଷତ୍ରିୟଙ୍କୁ ରଖିବାର ଓ ଗୃହରେ ସର୍ବଦା ଜାତିଶୀଳ, ସଂଶିତ ବ୍ରତ, ଧର୍ମଜ୍ଞ ବ୍ରାହ୍ମଣଙ୍କୁ ବାସଦେବା ଅପେକ୍ଷା ଆଉ କିଛି ଉତ୍କୃଷ୍ଟ ନାହିଁ । ବ୍ରାହ୍ମଣମାନଙ୍କୁ ଯେଉଁ ହବି ପ୍ରଦତ୍ତ ହୁଏ, ତାହାକୁ ଦେବଗଣ ପ୍ରତିଗ୍ରହ କରନ୍ତି । ୫ ।

ବ୍ରାହ୍ମଣଙ୍କ ଅପେକ୍ଷା କେହି ଉତ୍କୃଷ୍ଟ ନୁହନ୍ତି । ସମସ୍ତ ପ୍ରାଣୀକୁଳର ପିତୃଗଣ, ଆଦିତ୍ୟ, ଚନ୍ଦ୍ରମା, ବାୟୁ, ଜଳ, ଆକାଶ, ପୃଥିବୀ ଓ ଦିଗ ସମୂହ, ( ୬ ) ଏହିମାନେ ସମସ୍ତେ ବ୍ରାହ୍ମଣମାନଙ୍କ ଶରୀରରେ ପ୍ରବେଶ

ପୂର୍ବକ ସର୍ବଦା ଅନ୍ନ ଭୋଜନ କରୁଅଛନ୍ତି । ଯେଉଁ ପାପାତ୍ମାର ଗୃହରେ ବ୍ରାହ୍ମଣମାନେ ଭୋଜନ କରନ୍ତି ନାହିଁ, ସେହି ବ୍ରହ୍ମଦ୍ୱେଷୀ ପାପାତ୍ମାର ଗୃହରେ ପିତୃଗଣ ଓ ଦେବଗଣ ଅନ୍ନଭୋଜନ କରନ୍ତି ନାହିଁ । ବ୍ରାହ୍ମଣମାନେ ସନ୍ତୁଷ୍ଟ ହେଲେ ପିତୃଗଣ ଓ ଦେବଗଣ ସର୍ବଦା ପ୍ରୀତିଯୁକ୍ତ ହୁଅନ୍ତି । ଯେଉଁମାନେ ଯଜ୍ଞୀୟଦ୍ରବ୍ୟ ବ୍ରାହ୍ମଣଙ୍କୁ ଅର୍ପଣ କରନ୍ତି, ସେମାନେ ପରଲୋକରେ ବିନଷ୍ଟ ନ ହୋଇ ପରମଗତି ପ୍ରାପ୍ତହୋଇ ପରମ ତୃପ୍ତି ଲାଭ କରନ୍ତି । ହେ ରାଜନ୍ ! ନର, ଯେଉଁ ଯେଉଁ ଯଜ୍ଞୀୟ ଦ୍ରବ୍ୟଦ୍ୱାରା ବ୍ରାହ୍ମଣଗଣଙ୍କର ତୃପ୍ତି ସାଧନ କରନ୍ତି, ସେହି ସେହି ଦ୍ରବ୍ୟଦ୍ୱାରା ଦେବଗଣ ଓ ପିତୃଗଣ ମଧ୍ୟ ପ୍ରୀତ ହୁଅନ୍ତି । ଯେଉଁ ଯଜ୍ଞ ହେତୁରୁ ପ୍ରଜାଗଣ ଉତ୍ପନ୍ନ ହୁଅନ୍ତି, ବ୍ରାହ୍ମଣଗଣ ସେହି ଯଜ୍ଞର ମୂଳ କାରଣ ଅଟନ୍ତି । ୧୧ । ଏହି ବିଶ୍ୱ ଯାହାଙ୍କଠାରୁ ଉତ୍ପନ୍ନ ହୋଇଅଛି ଓ ଯାହାଙ୍କଠାରେ ଲୀନ ହେବ, ତାହା ବ୍ରାହ୍ମଣଗଣ ଉତ୍ତମରୂପେ ଜାଣନ୍ତି । ବ୍ରାହ୍ମଣ, ସ୍ୱର୍ଗ ଓ ନରକର ମାର୍ଗ ସ୍ୱରୂପ ଅର୍ଥାତ୍ କେବଳ ବ୍ରାହ୍ମଣମାନଙ୍କ ପ୍ରଭାବରେ ମନୁଷ୍ୟ ସ୍ୱର୍ଗଗାମୀ ଅଥବା ନରକଗାମୀ ହୁଅନ୍ତି । ୧୨ ।

ହେ ଭରତଶ୍ରେଷ୍ଠ ! ଯେଉଁ ବ୍ରାହ୍ମଣ ସ୍ୱଧର୍ମଜ୍ଞ ଅଟନ୍ତି, ସେହି ନରଶ୍ରେଷ୍ଠ ବ୍ରାହ୍ମଣ ଭୂତ ଓ ଭବିଷ୍ୟତ୍ ଏହି ଉଭୟ କାଳର ବିଷୟ ସବୁ ଜାଣନ୍ତି । ୧୩ । ଯେଉଁମାନେ ବ୍ରାହ୍ମଣଙ୍କର ଅନୁଗତ ହୁଅନ୍ତି, ସେମାନେ କୌଣସିଠାରେ ପରାଭବ ପ୍ରାପ୍ତ ହୁଅନ୍ତି ନାହିଁ । ସେମାନେ ପରଲୋକରେ ମଧ୍ୟ ବିନଷ୍ଟ ହୁଅନ୍ତି ନାହିଁ କି ପରାଭବ ପ୍ରାପ୍ତ ହୁଅନ୍ତି ନାହିଁ ସୁତରାଂ ପରମ-ଗତି ପ୍ରାପ୍ତ ହୁଅନ୍ତି । ୧୪ ।

ଯେଉଁ ବଶୀକୃତମନା ମହାତ୍ମାମାନେ ବ୍ରାହ୍ମଣଙ୍କ ମୁଖରୁ ଅଭସ୍ତ୍ବରର ବଚନ ପ୍ରତିଗ୍ରହ କରିଥାଆନ୍ତି, ସେହିମାନେ କୌଣସିଠାରେ ପରାସ୍ତ ହୁଅନ୍ତି ନାହିଁ । ୧୫ । ବ୍ରାହ୍ମଣମାନଙ୍କ ତେଜ ଓ ବଳଦ୍ୱାରା ପ୍ରତାପଶାଳୀ କ୍ଷତ୍ରିୟମାନଙ୍କର ବଳ ଓ ତେଜ ନିବାରିତ ହୁଏ ।୧୬। ହେ ଭରତଶ୍ରେଷ୍ଠ ! ଭୃଗୁବଂଶୀୟମାନେ ତାଳଜଂଘମାନଙ୍କୁ, ଅଙ୍ଗୀରା ବଂଶୀୟଗଣ ନୀପଗଣଙ୍କୁ ଓ ଭରଦ୍ୱାଜ ବଂଶୀୟମାନେ ବୈତହବ୍ୟ ଓ ଐଳମାନଙ୍କୁ ଜୟକରି ଅଛନ୍ତି ।

। ୧୭ । କୃଷ୍ଣାଜିନଧ୍ୱଜ ମୁନିଙ୍କ ବଂଶଧରମାନେ ଶସ୍ତ୍ରାୟୁଧମାନଙ୍କୁ ଜୟ କରିଥିଲେ । ବ୍ରାହ୍ମଣଙ୍କୁ ପୃଥିବୀ ଦାନକଲେ, ସେ ଉଭୟଲୋକ ବିଷୟରେ ଖ୍ୟାତି ପ୍ରକାଶ କରନ୍ତି ଓ ପରଲୋକର ହିତକାରକ କର୍ମ ଆରମ୍ଭ କରନ୍ତି । । ୧୮ । ଲୋକମାନେ ଯାହା କଥୋପକଥନ କରନ୍ତି, ଯାହା ଶ୍ରବଣ କରନ୍ତି ଅଥବା ଯାହା ପାଠ କରନ୍ତି, ତାହାସବୁ କାଷ୍ଠରେ ଗୂଢ଼ ରୂପରେ ଅଗ୍ନି ଥିଲା ପରି ବ୍ରାହ୍ମଣଙ୍କ ହୃଦୟରେ ନିବଦ୍ଧ ହୋଇଥାଏ । ୧୯ ।

ହେ ଭରତ ଶ୍ରେଷ୍ଠ ! ଏହି ବିଷୟରେ ପୃଥିବୀ ଓ ବାସୁଦେବଙ୍କର ଗୋଟିଏ ପୁରାତନ ଇତିହାସ ସମ୍ବାଦ କହିବା । ୨୦ । ଏକଦା ବାସୁଦେବ ସର୍ବଭୂତର ଜନନୀ ପୃଥିବୀଙ୍କୁ କହିଲେ, ହେ ଶୁଭେ ! ଆମ୍ଭ ମନରେ ସଂଶୟ ଉପସ୍ଥିତ ହେବାରୁ ପଚାରୁଅଛୁଁ ଗୃହସ୍ଥବ୍ୟକ୍ତି କେଉଁ କର୍ମଦ୍ୱାରା ପାପରୁ ମୁକ୍ତ ହୁଅନ୍ତି ? ୨୧ ।

ପୃଥିବୀ କହିଲେ, ହେ ଭଗବାନ ! ମନୁଷ୍ୟ ବ୍ରାହ୍ମଣମାନଙ୍କୁ କେବଳ ସେବା କରିବେ । ଏହି ପବିତ୍ର କର୍ମ ଉତ୍କୃଷ୍ଟ ଅଟେ । ବ୍ରାହ୍ମଣମାନଙ୍କୁ ସେବା କରିବା ଲୋକଙ୍କର ସମସ୍ତ ପାପ ବିନଷ୍ଟ ହୁଏ । ତଦନନ୍ତର ଐଶ୍ୱର୍ଯ୍ୟ, କୀର୍ତ୍ତି ଓ ଆତ୍ମଜ୍ଞାନ ଜାତହୁଏ । ୨୨ । ଶତ୍ରୁତାପନ ମହାରଥ ରାଜନ୍ୟ ବାର୍ଷ୍ଣେୟ ନାରଦ ଆମ୍ଭଙ୍କୁ ଏହା କହିଥିଲେ ଯେ, ଜାତିସମ୍ପନ୍ନ ସଂଶିତବ୍ରତ ଶୁଚିଧର୍ମଜ୍ଞ ବ୍ରାହ୍ମଣଙ୍କୁ ସମସ୍ତଙ୍କର ଐଶ୍ୱର୍ଯ୍ୟ ନିମିତ୍ତ ଇଚ୍ଛା କରିବାର ଉଚିତ । ଶ୍ରେଷ୍ଠ ଓ ଅଶ୍ରେଷ୍ଠ ସମସ୍ତଙ୍କ ମଧ୍ୟରେ ଯେଉଁମାନେ ଶ୍ରେଷ୍ଠ ଅପେକ୍ଷା ଅଧିକ ଶ୍ରେଷ୍ଠ ସେହି (୨୪) ବ୍ରାହ୍ମଣଗଣ ଯାହାଙ୍କୁ ପ୍ରଶଂସା କରନ୍ତି, ସେହି ମନୁଷ୍ୟ ଅଭ୍ୟୁଦୟଶାଳୀ ହୁଅନ୍ତି । ଯେ ବ୍ରାହ୍ମଣମାନଙ୍କୁ ନିନ୍ଦା କରନ୍ତି, ସେ ମହାର୍ଣ୍ଣବରେ ନିକ୍ଷିପ୍ତ ବିନଷ୍ଟ ମୃତପିଣ୍ଡ ସଦୃଶ ଶୀଘ୍ର ପରାଭବ ପ୍ରାପ୍ତ ହୁଅନ୍ତି । ବ୍ରାହ୍ମଣଗଣଙ୍କ ସର୍ବପ୍ରକାର ଅନିଷ୍ଟାଚରଣ ପରାଭବର କାରଣ ଅଟେ । ୨୬ ।

ହେ ମାଧବ ! ଦେଖ, ବ୍ରାହ୍ମଣଙ୍କ ଶାପରେ ଚନ୍ଦ୍ର କଳଙ୍କ ଯୁକ୍ତ ଓ ସମୁଦ୍ର ଲବଣ ଜଳରେ ପରିପୂର୍ଣ୍ଣ ହୋଇଅଛନ୍ତି ଏବଂ ମହେନ୍ଦ୍ର ପ୍ରଥମରେ ସହସ୍ର ଭଗ ଚିହ୍ନରେ ପରିବ୍ୟାପ୍ତ ହୋଇଥିଲେ କିନ୍ତୁ ବ୍ରାହ୍ମଣମାନଙ୍କ

ପ୍ରସାଦରୁ ସହସ୍ର ନୟନରେ ଯୁକ୍ତ ହୋଇଅଛନ୍ତି । ୨୮ । ହେ ମଧୁସୂଦନ ! ଆତ୍ମବାନ ପୁରୁଷ, କୀର୍ତ୍ତି, ଐଶ୍ୱର୍ଯ୍ୟ ଓ ଉତ୍କୃଷ୍ଟ ଲୋକମାନଙ୍କୁ ଇଚ୍ଛାକଲେ ଶୁଚି ହୋଇ ବ୍ରାହ୍ମଣମାନଙ୍କ ଅନୁବର୍ତ୍ତୀ ହୋଇ ରହିବେ । ୨୯ ।

ଭୀଷ୍ମ କହିଲେ, ହେ କୌରବ୍ୟ ! ମଧୁସୂଦନ, ମେଦିନୀଙ୍କର ଏହି ବଚନକୁ ଶ୍ରବଣ କରି ତାହାଙ୍କୁ ଧନ୍ୟ ଧନ୍ୟ ବୋଲି ପ୍ରଶଂସା କଲେ । ୩୦ । ହେ ପାର୍ଥ ! ଏହି ଉପମାକୁ ଶ୍ରବଣ କରି ଅତି ଯତ୍ନରେ ବ୍ରାହ୍ମଣଶ୍ରେଷ୍ଠମାନଙ୍କୁ ସର୍ବଦା ପୂଜାକର । ତଦ୍ଦ୍ୱାରେ ତୁମ୍ଭେ ଶ୍ରେୟ ପ୍ରାପ୍ତ ହେବ । ୩୧ ।

ଇତି ପୃଥିବୀ ବାସୁଦେବଙ୍କ ସମ୍ବାଦ ଗର୍ଭକ ଚତୁସ୍ତ୍ରିଂଶ ଅଧ୍ୟାୟ ସମାପ୍ତ । ୩୪ ।



# ପଞ୍ଚତ୍ରିଂଶତମ ଅଧ୍ୟାୟ

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ମହାତ୍ମା ବ୍ରାହ୍ମଣ ଜନ୍ମାବଧି ବ୍ରାହ୍ମଣ ନାମ ଧାରଣ କରି ସମସ୍ତଙ୍କର ନମସ୍କରଣୀୟ, ସର୍ବଭୂତ-ଗଣଙ୍କର ଅତିଥି ଏବଂ ସର୍ବଭୂତଗଣଙ୍କର ଅଗ୍ରରେ ସିଦ୍ଧାନ୍ନ ଭୋଜନ କରନ୍ତି । ୧ ।

ହେ ତାତ ! ବ୍ରାହ୍ମଣମାନେ ଦେବତାମାନଙ୍କର ମୁଖ ସ୍ୱରୂପ, ସେମାନେ ସମସ୍ତଙ୍କର ସୁହୃଦ୍; ସେହିମାନଙ୍କ ହେତୁରୁ ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ ଉତ୍ପନ୍ନ ହୁଏ । ସେମାନେ ପୂଜିତ ହେଲେ ମଙ୍ଗଳଯୁକ୍ତ ବାକ୍ୟରେ ଆଶୀର୍ବାଦ କରନ୍ତି । ୨ । ହେ ତାତ ! ବ୍ରାହ୍ମଣମାନେ ଆମ୍ଭମାନଙ୍କ ଶତ୍ରୁଗଣଙ୍କ ଦ୍ୱାରା ଅପୂଜିତ ଓ ଦ୍ୱେଷାବିଷ୍ଟ ହୋଇ ଦାରୁଣ ବାକ୍ୟରେ "ତୁମ୍ଭର ସମସ୍ତ ଶତ୍ରୁ ବିନଷ୍ଟ ହୁଅନ୍ତୁ" ଏହିପରି ବାକ୍ୟ କହି ଆଶୀର୍ବାଦ ଦ୍ୱାରା ସର୍ବପ୍ରକାରରେ ସେମାନଙ୍କୁ ବିନାଶ କରନ୍ତୁ । ୩ । ପୂର୍ବେ ବିଧାତା ବ୍ରାହ୍ମଣମାନଙ୍କୁ ସୃଷ୍ଟି କରି ଯେଉଁପରି ନିୟମ ସ୍ଥାପନ କରିଥିଲେ,

ପୂର୍ବକାଳ ପଣ୍ଡିତଗଣ ତଦ୍ ବିଷୟରେ ଯେଉଁସବୁ କାହାଣୀ କୀର୍ତ୍ତନ କରି ଅଛନ୍ତି ତାହା ଶ୍ରବଣ କର । ୪ ।

ବ୍ରହ୍ମା ବ୍ରାହ୍ମଣଗଣଙ୍କୁ ସୃଷ୍ଟି କରି କହିଲେ, ହେ ବ୍ରାହ୍ମଣଗଣ ! ତୁମ୍ଭେମାନେ ଯଥାବିଧି ସୁରକ୍ଷିତ ହୋଇ ସମସ୍ତଙ୍କୁ ରକ୍ଷା କରିବ । ଏହା କେବଳ ତୁମ୍ଭମାନଙ୍କର ସର୍ବୋତ୍କୃଷ୍ଟ କାର୍ଯ୍ୟ, ଏହା ଅପେକ୍ଷା କତ୍ଥମାନ ଇହଲୋକରେ ତୁମ୍ଭମାନଙ୍କର ଉତ୍କୃଷ୍ଟ କର୍ତ୍ତବ୍ୟ କର୍ମ ନାହିଁ । ଏହି ନିୟମ ବ୍ରତପାଳନ କଲେ ତୁମ୍ଭମାନଙ୍କର ଉତ୍ତମ ମଙ୍ଗଳ ଲାଭ ହେବ । ୫ । ତୁମ୍ଭେମାନେ ସ୍ୱକୀୟ କର୍ତ୍ତବ୍ୟ କର୍ମ ସାଧନ କଲେ ବ୍ରହ୍ମ ସମ୍ପତ୍ତି ପ୍ରାପ୍ତ ହେବ ଓ ପ୍ରାଣୀକୁଳର ଦମନକ୍ଷମ ରଜ୍ଜୁ ସ୍ୱରୂପ ହେବ, ଏହିକଥା ପ୍ରମାଣ ଅଟେ । ୬ ।

ବିପଶ୍ଚିତ ବ୍ରାହ୍ମଣ ଶୂଦ୍ରକର୍ମ ଅର୍ଥାତ ସେବା କରିବେ ନାହିଁ । ବ୍ରାହ୍ମଣ ଶୂଦ୍ର କର୍ମକଲେ ଧର୍ମଭ୍ରଷ୍ଟ ହେବେ । ୭ । ବ୍ରାହ୍ମଣ ବେଦ ଅଧ୍ୟୟନ କଲେ, ତାହାଙ୍କର ଶ୍ରୀ, ବୁଦ୍ଧି, ତେଜ, ପ୍ରତାପଶାଳିତା ବିଭୂତି ଓ ବେଦ ବିଦ୍ୟାରେ ବିପୁଳ ମାହାତ୍ମ୍ୟ ପରିବର୍ଦ୍ଧିତ ହେବ । ୮ । ତୁମ୍ଭେମାନେ ବ୍ରାହ୍ମୀ ଶ୍ରୀ ଅର୍ଥାତ୍ ବିଦ୍ୟା ପ୍ରଭାବରେ ପାତ୍ରୀଭୂତ ହୋଇ ଦେବଗଣଙ୍କୁ ଆହୂତି ପ୍ରଦାନ କଲେ ମହାଭାଗ୍ୟରେ ପ୍ରତିଷ୍ଠିତ ହେବ । ତୁମ୍ଭେମାନେ ଯେଉଁ ବ୍ୟକ୍ତିଙ୍କ ଗୃହରେ ଅତିଥି ହେବ, ସେହି ଗୃହସ୍ଥ ସ୍ତ୍ରୀପୁ ଶିଶୁମାନଙ୍କ ଆହାର ପୂର୍ବେ ପ୍ରଥମରେ ତୁମ୍ଭମାନଙ୍କୁ ଭୋଜନ କରାଇବେ । ୯ । ତୁମ୍ଭେମାନେ ହିଂସାଶୂନ୍ୟ, ପରମଶ୍ରଦ୍ଧାଯୁକ୍ତ, ଜିତେନ୍ଦ୍ରିୟ ଓ ବେଦାଧ୍ୟୟନ ନିରତ ହୋଇ ସମସ୍ତ ଅଭୀଷ୍ଟ ଫଳ ଲାଭ କରିବ । ୧୦ । ନରଲୋକ ଓ ଦେବଲୋକରେ ଯେତେ ପଦାର୍ଥ ଅଛି ତାହାସବୁ ଜ୍ଞାନ, ନିୟମ ଓ ତପସ୍ୟାଦ୍ୱାରା ଲବ୍ଧ ହୁଏ । ଅତଏବ ଜ୍ଞାନୋପାର୍ଜନ, ନିୟମ ଅନୁଷ୍ଠାନ ଓ ତପଶ୍ଚରଣ କରିବାର ତୁମ୍ଭମାନଙ୍କର ପରମ ଧର୍ମ । ୧୧ ।

ହେ ଅନଘ ! ଧୀମାନ ବ୍ରହ୍ମା ବିପ୍ରମାନଙ୍କ ଅନୁକମ୍ପାର୍ଥ ଏହି ପ୍ରକାରରେ ଯେଉଁ ବ୍ରହ୍ମଗୀତା କହିଥିଲେ, ଆମ୍ଭେ ତାହା ତୁମ୍ଭଙ୍କୁ କହିଲୁ । ୧୨ । ବ୍ରାହ୍ମଣମାନଙ୍କ ତପସ୍ୟାବଳ କ୍ଷତ୍ରିୟଗଣଙ୍କ ବାହୁବଳ ଅପେକ୍ଷା

ଉତ୍କୃଷ୍ଟ । ବ୍ରାହ୍ମଣମାନଙ୍କ ମଧ୍ୟରେ କେହି ତପସ୍ୱୀ, କେହି ଉଗ୍ର ସ୍ୱଭାବ, କେହି କ୍ଷିପ୍ରକାରୀ, କେହି ଚଭସ ଓ କେହି ଦୁରାସଦ । ୧୩ । କେହି ସିଂହ ସଦୃଶ, କେହି ବ୍ୟାଘ୍ର ସଦୃଶ, କେହି ବରାହ ସଦୃଶ, କେହି ମୃଗ ସଦୃଶ, କେହି ମକର ପ୍ରଭୃତି ଜଳଜନ୍ତୁ ସଦୃଶ ଅଟନ୍ତି । ୧୪ । କେହି କେହି ମହାବିଷଧର ସର୍ପ ସଦୃଶ ପ୍ରଭାବଶାଳୀ, କେହି କେହି ନୟନଘାତୀ ଅର୍ଥାତ ବିଷଦୃଷ୍ଟିରେ ବିନାଶକରି ପାରନ୍ତି, କେହି କେହି ବାକ୍ୟଘାତୀ, ଅର୍ଥାତ୍ ଅଭିଶାପ ପ୍ରଦାନ ପୂର୍ବକ ବିନାଶ କରି ପାରନ୍ତି । ୧୫ ।

ହେ ଯୁଧିଷ୍ଠିର ! କେଉଁ କେଉଁମାନଙ୍କ ସ୍ୱଭାବ ସର୍ପ ସଦୃଶ କ୍ରୂର, କେହି କେହି ମୃଦୁ ସ୍ୱଭାବ, ବ୍ରାହ୍ମଣମାନଙ୍କର ଏହିପରି ନାନାବିଧ ସ୍ୱଭାବ ସବୁ ଅଛି, ସେମାନେ ଏହିପରି ନାନାବିଧ ସ୍ୱଭାବ ସମ୍ପନ୍ନ ହେଲେ ସୁଦ୍ଧା ସେମାନଙ୍କୁ ପୂଜା କରିବାର ଉଚିତ । ୧୬ । କେବଳ ଦ୍ରାବିଡ଼, ଲାଟ, ପୌଣ୍ଡ୍ର, କାନ୍ୱଶିର, ଶୌଣ୍ଡିକ, ଦରଦ, ଦାର୍ବ, ଚୌର, ଶବର, ବର୍ବର, (୧୭) କିରାତ, ଯବନ ପ୍ରଭୃତି କ୍ଷତ୍ରିୟଜାତି ବ୍ରାହ୍ମଣମାନଙ୍କ କୋପ ହେତୁରୁ ଶୂଦ୍ରତ୍ୱକୁ ପ୍ରାପ୍ତ ହୋଇଥିଲେ । ୧୮ । ବ୍ରାହ୍ମଣମାନଙ୍କ ପରାଭବ ହେତୁରୁ ଅସୁରଗଣ ଜଳଶାୟୀ ହେଲେ । ବ୍ରାହ୍ମଣମାନଙ୍କ ପ୍ରସାଦରୁ ମଧ୍ୟ ଦେବତାଗଣ ସ୍ୱର୍ଗରେ ବାସକଲେ । ୧୯ । ଯେଉଁପରି ଆକାଶକୁ ସ୍ପର୍ଶକରି ହୁଏନାହିଁ, ହିମାଳୟ ପର୍ବତର ପରିଚାଳନ କରାଯାଇ ନ ପାରେ, ସେତୁବନ୍ଧନ ଦ୍ୱାରା ଗଙ୍ଗା ସ୍ରୋତର ପ୍ରତିରୋଧ କରାଯାଇ ନ ପାରେ, ତଦ୍‌ବତ୍ ପୃଥିବୀରେ ବ୍ରାହ୍ମଣମାନେ ଦୁର୍ଜୟ ଅଟନ୍ତି । ୨୦ ।

ବ୍ରହ୍ମଣ ବିରୋଧରେ କୌଣସି ରାଜା ପୃଥିବୀ ଶାସନ କରିବାକୁ ସମର୍ଥ ହୁଅନ୍ତି ନାହିଁ । ମହାତ୍ମା ବ୍ରାହ୍ମଣମାନେ ଦେବତାମାନଙ୍କର ଦେବତା ଅଟନ୍ତି । ୨୧ । ହେ ରାଜନ୍ ! ତୁମ୍ଭେ ଯଦି ଏହି ସସାଗରା ପୃଥିବୀକୁ ଭୋଗ କରିବାକୁ ଇଚ୍ଛୁକ ଅଛ, ତେବେ ସେମାନଙ୍କୁ ସର୍ବଦା ଦାନ ଓ ପରିଚର୍ଯ୍ୟା ଦ୍ୱାରା ପୂଜାକର । ୨୨ । ହେ ଅନଘ ! ନୃପ ! ପ୍ରତିଗ୍ରହ ଦ୍ୱାରା ବ୍ରାହ୍ମଣ-ଗଣଙ୍କର ତେଜର ହ୍ରାସହୁଏ । ଯେଉଁମାନେ ପ୍ରତିଗ୍ରହ ବିଷୟରେ ଇଚ୍ଛୁକ

ନ ହେବେ, ସର୍ବଦା ସାବଧାନ ହୋଇ ସେହିମାନଙ୍କଠାରୁ କୁଳରକ୍ଷା କରିବ । ୨୩ ।

ଇତି ବ୍ରାହ୍ମଣ ପ୍ରଶଂସା ଗର୍ଭକ ବ୍ରହ୍ମଗୀତା ନାମକ
ପଞ୍ଚତ୍ରିଂଶ ଅଧ୍ୟାୟ ସମାପ୍ତ । ୩୫ ।



# ଷଟ୍‌ତ୍ରିଂଶତ୍ତମ ଅଧ୍ୟାୟ

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ଏଥି ଉତ୍ତାରେ ଆମ୍ଭେ ଶକ୍ର ଶମ୍ବର ସମ୍ବାଦ ସ୍ୱରୂପ ଗୋଟିଏ ପୁରାତନ ଇତିହାସ କୀର୍ତ୍ତନ କରୁଅଛୁଁ, ତାହା ଶ୍ରବଣ କର । ୧ । ଦିନେ ଇନ୍ଦ୍ର ଜଟାଧାରୀ ଓ ଭସ୍ମାଚ୍ଛାଦିତ କଳେବର ହୋଇ ଛଦ୍ମବେଶରେ ବିରୂପ ରଥରେ ଆରୋହଣ ପୂର୍ବକ ଶମ୍ବରଙ୍କ ନିକଟକୁ ଯାଇ ତାହାଙ୍କୁ ପ୍ରଶ୍ନ ପଚାରିଲେ । ୨ ।

ଇନ୍ଦ୍ର କହିଲେ, ଅସୁରରାଜ ! ହେ ଶମ୍ବର ! ତୁମ୍ଭେ କେଉଁ ବ୍ୟବହାର ଦ୍ୱାରା ସ୍ୱଜାତୀୟମାନଙ୍କୁ ଅତିକ୍ରମ କରିଅଛ ଏବଂ କେଉଁ ବ୍ୟବହାର ବଳରେ ସେମାନେ ତୁମ୍ଭଙ୍କୁ ଶ୍ରେଷ୍ଠ ବୋଲି ଜାଣନ୍ତି, ତାହା ତୁମ୍ଭେ ଆମ୍ଭଙ୍କୁ ଯଥାର୍ଥରୂପେ କହ । ୩ । ଶମ୍ବର କହିଲେ, ହେ ମହାତ୍ମନ ! ଆମ୍ଭେ କଦାପି ବ୍ରାହ୍ମଣମାନଙ୍କଠାରେ ବିଦ୍ୱେଷ ପ୍ରକାଶ କରୁନାହୁଁ; ବ୍ରାହ୍ମଣଗଣ ଯେଉଁ ଉପଦେଶ ଦିଅନ୍ତି ଆମ୍ଭେ ତାହା ଗ୍ରହଣ କରୁଁ । ସେମାନେ ଶାସ୍ତ୍ରବ୍ୟାଖ୍ୟା କରୁଥିବା ସମୟରେ ଆମ୍ଭେ ଅନନ୍ୟ ମନରେ ତାହା ଶ୍ରବଣ କରୁଁ ଓ ଯଥା ସୁଖରେ ସମ୍ମାନ କରୁଁ । ୪ ।

ଆମ୍ଭେ ସେମାନଙ୍କ ବାକ୍ୟ ଶ୍ରବଣକରି କଦାପି ଅବଜ୍ଞା କରୁନାହୁଁ ଓ କଦାପି ସେମାନଙ୍କ ନିକଟରେ ଅପରାଧୀ ହେଉନାହୁଁ । ଆମ୍ଭେ ସେମାନଙ୍କ ସହିତ ଆଦର ସମ୍ଭାଷଣ ଓ ସେମାନଙ୍କର ଚରଣ ବନ୍ଦନା

କରୁଁ । ୫ । ସେମାନେ ବିଶ୍ୱସ୍ତ ଚିତ୍ତରେ ଆମ୍ଭଙ୍କୁ କୁଶଳ ପ୍ରଶ୍ନ କରନ୍ତି ଓ ଆମ୍ଭ ବାକ୍ୟର ପ୍ରତ୍ୟୁତ୍ତର ପ୍ରଦାନ କରନ୍ତି, ସେମାନେ ସର୍ବଦା ଗର୍ବ ପ୍ରକାଶକଲେ ସୁଦ୍ଧା ଆମ୍ଭେ ଗର୍ବ ପ୍ରକାଶ କରୁନାହୁଁ । ସେମାନେ ଅସାବଧାନ ଥିଲେ ଆମ୍ଭେ ସାବଧାନ ଥାଉଁ ଓ ସେମାନେ ଶୟନ କରିଥିଲେ ଆମ୍ଭେ ଜାଗରିତ ଥାଉଁ । ୬ । ସେହି ଧର୍ମଶାସନ କର୍ତ୍ତାମାନେ ଆମ୍ଭଙ୍କୁ ବ୍ରାହ୍ମଣ ଭକ୍ତ, ଅସୂୟା ଶୂନ୍ୟ ଓ ଶାସ୍ତ୍ର ପଥରେ ନିଯୁକ୍ତ ଥିବାର ଜାଣି ମଧୁ ମକ୍ଷିକାମାନେ କ୍ଷୌଦ୍ର ପଟଳକୁ ମଧୁଧାରାରେ ଅଭିଷିକ୍ତ କଲାପରି ଆମ୍ଭଙ୍କୁ ଅମୃତ ସଦୃଶ ବିଦ୍ୟାରସରେ ଆର୍ଦ୍ର କରନ୍ତି । ୭ ।

ସେମାନେ ସନ୍ତୁଷ୍ଟ ଚିତ୍ତରେ ଆମ୍ଭଙ୍କୁ ଯେଉଁ ଉପଦେଶ ପ୍ରଦାନ କରନ୍ତି, ଆମ୍ଭେ ତାହା ନିଜ ବୁଦ୍ଧି ବଳରେ ଗ୍ରହଣ କରୁଁ ଏବଂ ଏକାଗ୍ରଚିତ୍ତରେ ବ୍ରାହ୍ମଣମାନଙ୍କଠାରେ ନିଷ୍ଠାରଖି ସେମାନଙ୍କର ଶ୍ରେଷ୍ଠତାର ବିଷୟକୁ ଅନୁଚିନ୍ତା କରୁଥାଉଁ । ୮ । ଆମ୍ଭେ ସେହି ବ୍ରାହ୍ମଣମାନଙ୍କ ନିକଟରେ ଯୁକ୍ତିରୂପ ସୁଧା ଅବଲେହନ କରିଥିଲୁଁ ବୋଲି ସ୍ୱଜାତୀୟମାନଙ୍କ ମଧ୍ୟରେ ତାରାଗଣ ମଧ୍ୟସ୍ଥିତ ଚନ୍ଦ୍ର ସଦୃଶ ଶ୍ରେଷ୍ଠ ହୋଇଅଛୁଁ । ୯ ।

ବ୍ରାହ୍ମଣମାନଙ୍କ ମୁଖନିର୍ଗତଶାସ୍ତ୍ର ଭୂମଣ୍ଡଳ ମଧ୍ୟରେ ଅମୃତ ସଦୃଶ ଏବଂ ଉତ୍କୃଷ୍ଟ ଚକ୍ଷୁ ସଦୃଶ ଅଟେ । ତାହା ଶ୍ରବଣକରି ଯୁଦ୍ଧରେ ପ୍ରବୃତ୍ତ ହେଲେ ଜୟଲାଭ ହୁଏ । ୧୦ । ପୂର୍ବେ ଆମ୍ଭ ପିତା ଦେବାସୁର ଯୁଦ୍ଧରେ ମହାତ୍ମା ବ୍ରାହ୍ମଣମାନଙ୍କ ମହିମାକୁ ଦର୍ଶନକରି ହୃଷ୍ଟମନା ଓ ବିସ୍ମିତ ହୋଇଥିଲେ । କେଉଁ କାରଣରୁ ବ୍ରାହ୍ମଣମାନେ ଏତାଦୃଶ ସିଦ୍ଧ ହୋଇଅଛନ୍ତି, ତାହା ଜାଣିବା ନିମିତ୍ତ ନିଶାକରଙ୍କୁ ପଚାରିଥିଲେ । ୧୨ ।

ଚନ୍ଦ୍ର କହିଲେ, ହେ ଦୈତ୍ୟରାଜ ! ବ୍ରାହ୍ମଣମାନେ ସର୍ବଦା ତପସ୍ୟାଦ୍ୱାରା ସିଦ୍ଧି ଲାଭ କରନ୍ତି । ରାଜାମାନେ ଯେଉଁପରି ଭୁଜବୀର୍ଯ୍ୟଶାଳୀ, ବ୍ରାଣମାନେ ସେହିପରି ବଚନବଳ ସମ୍ପନ୍ନ ଅଟନ୍ତି । ଦ୍ୱିଜାତିମାନଙ୍କର ବଚନ ଅସ୍ତ୍ର ସ୍ୱରୂପ ଅଟେ । ୧୩ । ବ୍ରାହ୍ମଣ ନୈଷ୍ଠିକ ବ୍ରହ୍ମଚାରୀ ହୋଇ ଗୁରୁଗୃହରେ ଅବସ୍ଥାନପୂର୍ବକ କଷ୍ଟ ସହ୍ୟକରି ବେଦାଧ୍ୟୟନ କରି

କ୍ରୋଧବର୍ଜ୍ଜିତ ହେଲେ କେବଳ ନିର୍ବାଣ ପଦ ଲାଭ କରନ୍ତି ଓ ସମଦର୍ଶନ ହେଲେ ସନ୍ନ୍ୟାସୀ ହୁଅନ୍ତି । ୧୪ । ଅପିଚ, ସେ ସ୍ୱୀୟ ଗୃହରେ ଅବସ୍ଥାନପୂର୍ବକ ସମସ୍ତ ବେଦ ପିତାଙ୍କ ନିକଟରୁ ଅଧ୍ୟୟନପୂର୍ବକ ଜ୍ଞାନସମ୍ପନ୍ନ ଓ ପ୍ରଶଂସମାୟ ହେଲେ ସୁଦ୍ଧା ଲୋକମାନେ ତାହାଙ୍କୁ ଗ୍ରାମ୍ୟ ବୋଲି ଜାଣନ୍ତି । ୧୫ । ସର୍ପ ଯେଉଁପରି ବିଳଶାୟୀ ମୂଷିକମାନଙ୍କୁ ଗ୍ରାସକରେ, ପୃଥିବୀ ସେହିପରି ଯୁଦ୍ଧ ପରାଙ୍ମୁଖ ରାଜା ଓ ଅପ୍ରବାସୀ ବ୍ରାହ୍ମଣ ଏହି ଦୁହିଁଙ୍କୁ ଗ୍ରାସ କରନ୍ତି । ୧୬ ।

ଅଭିମାନ ଅଳ୍ପବୁଦ୍ଧିଯୁକ୍ତ ପୁରୁଷର ସମ୍ପତ୍ତିକି ହରଣ କରେ । ବ୍ରାହ୍ମଣ ଅପ୍ରବାସୀ ଓ କନ୍ୟା ଗର୍ଭବତୀ ହେଲେ ଜନସମାଜରେ ଦୂଷିତ ହୁଅନ୍ତି । ୧୭ । ହେ ଭଗବନ୍ ! ଆମ୍ଭ ପିତା ଅଦ୍ଭୁତ ଦର୍ଶନ ଚନ୍ଦ୍ରଙ୍କଠାରୁ ଏହିକଥା ଶ୍ରବଣକରି ମହାବ୍ରତ ବ୍ରାହ୍ମଣମାନଙ୍କୁ ଯେଉଁପରି ପୂଜା କରୁଥିଲେ, ଏତେବେଳେ ଆମ୍ଭେ ସେମାନଙ୍କୁ ସେହିପରି ପୂଜା କରୁଅଛୁଁ । ୧୮ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ଶକ୍ର ଅସୁରରାଜଙ୍କ ମୁଖ ନିର୍ଗତ ଏହି ବାକ୍ୟ ଶ୍ରବଣକରି ଦ୍ୱିଜମାନଙ୍କୁ ପୂଜାକଲେ ଏବଂ ମହେନ୍ଦ୍ରତ୍ୱ ପ୍ରାପ୍ତ ହେଲେ । ୧୯ ।

ଇତି ଇନ୍ଦ୍ର ଶମ୍ବର ସମ୍ବାଦେ ଷଟ୍‌ତ୍ରିଂଶ ଅଧ୍ୟାୟ ସମାପ୍ତ । ୩୬ ।



## ସପ୍ତତ୍ରିଂଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ପିତାମହ ! ଅଦୃଷ୍ଟପୂର୍ବ, ଚିରାଶ୍ରିତ ଓ ଦୂରରୁ ଅଭ୍ୟାଗତ ଏହି ତ୍ରିବିଧ ବ୍ୟକ୍ତିଙ୍କ ମଧ୍ୟରେ କାହାକୁ ସତ୍ପାତ୍ର ବୋଲି ନିର୍ଦ୍ଦେଶ କରାଯିବ, କହିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ଅଦୃଷ୍ଟପୂର୍ବ, ଚିରାଶ୍ରିତ ଓ ଦୂରାଗତ ଏହି ତ୍ରିବିଧ ବ୍ୟକ୍ତିମାନଙ୍କ ମଧ୍ୟରେ କେହି ଯଜ୍ଞ ନିମିତ୍ତ, କେହି

ଗୁରୁଦକ୍ଷିଣା ନିମିତ୍ତ ଓ କେହି କୁଟୁମ୍ବ ପୋଷଣ ନିମିତ୍ତ ପ୍ରାର୍ଥନା କରନ୍ତି । ସେମାନେ ସମସ୍ତେ ସତ୍ପାତ୍ର । ସେମାନଙ୍କମଧ୍ୟରୁ ଯେଉଁମାନେ ଯାହା ପ୍ରାର୍ଥନା କରିବେ, ସେମାନଙ୍କୁ ପ୍ରାର୍ଥନାନୁସାରେ ତାହାମାନଙ୍କୁ ଦାନ କରିବାର ଉଚିତ । ଭୃତ୍ୟ ବର୍ଗଙ୍କୁ ପୀଡ଼ା ନ ଦେଇ ଦାନ କରିବାର ଉଚିତ । କାରଣ ଭୃତ୍ୟ ବର୍ଗଙ୍କୁ ପୀଡ଼ା ପ୍ରଦାନ କଲେ ସ୍ୱୟଂ ଆପଣାକୁ କ୍ଲେଶ ପ୍ରଦାନ କରନ୍ତି । ୩ । ଅଦୃଷ୍ଟପୂର୍ବ, ଚିରାଶ୍ରିତ ଓ ଦୂରରୁ ଅଭ୍ୟାଗତ ଏ ସମସ୍ତଙ୍କୁ ସତ୍ପାତ୍ର ବୋଲି ନିର୍ଦ୍ଦିଷ୍ଟ କରିଅଛନ୍ତି । ୪ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ପ୍ରାଣୀଗଣଙ୍କୁ ପୀଡ଼ା ପ୍ରଦାନ ନ କରି ଓ ଧର୍ମ ହିଂସା ନ କରି ଯାହାଙ୍କୁ ପ୍ରଦାନ କଲେ ମନୁଷ୍ୟ ସନ୍ତାପ-ଯୁକ୍ତ ହୁଅନ୍ତି ନାହିଁ, ତାଦୃଶ ସତ୍ପାତ୍ର କିଏ ? ତାହା କହିବା ହେଉନ୍ତୁ । ୫ । ଭୀଷ୍ମ କହିଲେ, ହେ ବତ୍ସ ! ଋତ୍ୱିକ, ପୁରୋହିତ, ଆଚାର୍ଯ୍ୟ, ଶିଷ୍ୟ, ସମ୍ବନ୍ଧୀ ଓ ବାନ୍ଧବଗଣ ଏମାନେ ସମସ୍ତେ ଅସୂୟାଶୂନ୍ୟ ଓ ଶାସ୍ତ୍ର ପରାୟଣ ହେଲେ ପୂଜନୀୟ ଓ ମାନ୍ୟ ହୁଅନ୍ତି । ୬ ।

ଅତଏବ ଯେଉଁମାନେ ଅସୂୟା ବିହୀନ ଓ ଶାସ୍ତ୍ର ପରାୟଣ ନୁହନ୍ତି, ସେମାନେ ସତ୍କାରର ପାତ୍ର ହୁଅନ୍ତି ନାହିଁ । ସେହି କାରଣରୁ ନିତ୍ୟ ସ୍ଥିର ଚିତ୍ତ ହୋଇ ପୁରୁଷମାନଙ୍କୁ ପରୀକ୍ଷା କରିବାର ଉଚିତ । ୭ । ହେ ଭାରତ ! ଯେଉଁ ବ୍ୟକ୍ତି ଅକ୍ରୋଧ, ସତ୍ୟ ବାକ୍ୟ, ଅହିଂସା, ତପସ୍ୟା, ସରଳତା, ଅଦ୍ରୋହ, ଲଜ୍ଜା, ତିତିକ୍ଷା, ଜିତେନ୍ଦ୍ରିୟତା ଓ ଶାନ୍ତି ଏହି ସମସ୍ତ ଗୁଣରେ ଅଳଂକୃତ ହୋଇ ଥାଆନ୍ତି, କଦାପି ଅସତ୍କାର୍ଯ୍ୟ କରନ୍ତି ନାହିଁ ଓ ସତ୍ସ୍ୱଭାବଶାଳୀ ହୋଇ ଥାଆନ୍ତି, ସେହି ସତ୍ପାତ୍ର ପୂଜାର ଯୋଗ୍ୟ ଅଟନ୍ତି ।୯। ଦୃଷ୍ଟପୂର୍ବ, ଅଦୃଷ୍ଟ ପୂର୍ବ, ଚିରାଶ୍ରିତ ଓ ଦୂରରୁ ସମାଗତ ଏହି ଚତୁର୍ବିଧ ବ୍ୟକ୍ତିମାନଙ୍କ ମଧ୍ୟରେ ଯେଉଁ ଲୋକ ଉକ୍ତ ସମସ୍ତ ଗୁଣରେ ଅଳଂକୃତ ହୋଇ ଥାଆନ୍ତି, ସେ ସମ୍ମାନର ପାତ୍ର ଅଟନ୍ତି । ୧୦ ।

ବେଦର ଅପ୍ରାମାଣ୍ୟ ନିର୍ଦ୍ଦେଶ, ଶାସ୍ତ୍ର ଲଙ୍ଘନ ଓ ସାମାଜିକ ନିୟମ ଭଙ୍ଗକଲେ ମନୁଷ୍ୟ ଅସତ୍ ପାତ୍ର ମଧ୍ୟରେ ପରିଗଣିତ ହୁଏ । ୧୧ । ହେ ତାତ ! ଯେଉଁ ବ୍ରାହ୍ମଣ ପଣ୍ଡିତାଭିମାନୀ, ବେଦନିନ୍ଦକ, ଶ୍ରୁତି ବିରୋଧୀ,

ଆନ୍ୱୀକ୍ଷିକୀ, ତର୍କ ବିଦ୍ୟାରେ ଅନୁରକ୍ତ, ବିଜୟାର୍ଥ ଯୁକ୍ତିଦ୍ୱାରା ହେତୁବାଦ-ମାନଙ୍କୁ କହିଲେ ମଧ୍ୟ ଶାସ୍ତ୍ରୋକ୍ତ ହେତୁବାଦ ବିରୋଧ ହେତୁରୁ ଅହେତୁବାଦକ, ଆକ୍ରୋଶ ନିରତ, ବହୁଭାଷୀ, ସର୍ବାଭିଶଙ୍କୀ ଅର୍ଥାତ୍ ବାଳକ ସଦୃଶ ଅବ୍ୟବସ୍ଥିତଚିତ୍ତ, ମୂଢ଼, ବାଳ, କଟୁବାକ୍ୟବାଦୀ, ତାଦୃଶ ପୁରୁଷମାନଙ୍କୁ ସ୍ପର୍ଶ କରିବାର ଉଚିତ ନୁହେଁ । କାରଣ ପଣ୍ଡିତଗଣ ତାଦୃଶ ପୁରୁଷଙ୍କୁ କୁକ୍‌କୁର ସଦୃଶ ଜ୍ଞାନ କରନ୍ତି । କୁକ୍‌କୁର ଯେଉଁପରି ଭକ୍ଷଣ ଓ ହନନ କରିବା ନିମିତ୍ତ ସର୍ବଦା ଧାବିତ ହୋଇଥାଏ, ମୂର୍ଖ ବ୍ୟକ୍ତି ସେହିପରି ସମ୍ଭାଷଣ ଓ ସର୍ବଶାସ୍ତ୍ର ବିନଷ୍ଟ କରିବା ନିମିତ୍ତ ଉଦ୍‌ଯୋଗୀ ହୋଇ ରହେ । ଲୋକଯାତ୍ରା ନିର୍ବାହ ନିମିତ୍ତ ଶିଷ୍ଟାଚାର ପ୍ରଭୃତି ବ୍ୟବହାର, ଶ୍ରୁତି ଓ ସ୍ମୃତି ଦ୍ୱାରା ନିୟମିତ ଧର୍ମ ଏବଂ ଆତ୍ମହିତକର ଶମଦମାଦିରେ ଦୃଷ୍ଟି ରଖିବାର ପୁରୁଷର କର୍ତ୍ତବ୍ୟକର୍ମ । ଯେଉଁ ବ୍ୟକ୍ତି ଏହିପରି ଜୀବନ ଯାପନ କରନ୍ତି, ସେ ସର୍ବଦା ବର୍ଦ୍ଧିତ ହୁଅନ୍ତି । ଯଜ୍ଞଦ୍ୱାରା ଦେବଋଣ, ବେଦପାଠ ଦ୍ୱାରା ଋଷିଋଣ, ପୁତ୍ରଉତ୍ପାଦନ ଦ୍ୱାରା ପିତୃଋଣ, ଦାନ ଓ ମାନଦ୍ୱାରା ବିପ୍ରଋଣ ଓ ବୈଶ୍ୱଦେବ ଶେଷରେ ସମାଗତ ବ୍ୟକ୍ତିଗଣଙ୍କ ସତ୍କାର ଦ୍ୱାରା ଅତିଥିଋଣ, ଏହିପଞ୍ଚବିଧ ଋଣରୁ ଉନ୍ମୋଚନ ପୂର୍ବକ ଯଥାକ୍ରମେ ବିଶୁଦ୍ଧ ଓ ସୁବିନୀତ କର୍ମଦ୍ୱାରା ଗୃହସ୍ଥର ସମୁଚିତ କାର୍ଯ୍ୟ ସମୂହ ନିର୍ବାହ କଲେ ମନୁଷ୍ୟ ଧର୍ମହୀନ ହୁଅନ୍ତି ନାହିଁ । ୧୮ ।

ପାତ୍ର ପରୀକ୍ଷା ନାମ ସପ୍ତତ୍ରିଂଶ ଅଧ୍ୟାୟ ସମାପ୍ତ । ୩୭ ।



## ଅଷ୍ଟତ୍ରିଂଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ଭରତଶ୍ରେଷ୍ଠ ! ଆମ୍ଭେ ସ୍ତ୍ରୀମାନଙ୍କର ସ୍ୱଭାବ ଶୁଣିବାକୁ ଇଚ୍ଛା କରୁଅଛୁଁ, କାରଣ ସ୍ତ୍ରୀ ଗଣ ଦୋଷ ସମୂହର ମୂଳ । ସେମାନଙ୍କ ଚିତ୍ତ ବାୟୁ ସଦୃଶ ଲଘୁ ବୋଲି ସ୍ମୃତ ହୋଇଅଛି । ୧ । ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ପ୍ରାଚୀନ ପଣ୍ଡିତଗଣ ଏହି ବିଷୟରେ ପଞ୍ଚଚୂଡ଼ା

ପୁଂଶ୍ଚଳୀଙ୍କ ସହିତ ନାରଦଙ୍କ ସମ୍ବାଦସମ୍ବଳିତ ଏହି ପୁରାତନ ଇତିହାସ କହିଅଛନ୍ତି । ୨ ।

ପୂର୍ବ କାଳରେ ଦେବର୍ଷି ନାରଦ ଲୋକ ସମୂହରେ ବିଚରଣକରି ବ୍ରହ୍ମଲୋକ ବାସିନୀ ଅନିନ୍ଦିତା ପଞ୍ଚଚୂଡ଼ା ନାମ୍ନୀ ଅପ୍‌ସରାଙ୍କୁ ଦର୍ଶନ କଲେ ।୩। ମୁନି ସେହି ସୁନ୍ଦରସର୍ବାଙ୍ଗୀ ଅପ୍‌ସରାଙ୍କୁ ଅବଲୋକନ କରି ପଚାରିଲେ, ହେ ସୁମଧ୍ୟମେ ! ଆମ୍ଭ ଅନ୍ତଃକରଣରେ କୌଣସି ସଂଶୟ ଉପସ୍ଥିତ ହୋଇଅଛି, ତୁମ୍ଭେ ତାହା ଅପନୋଦନ କର । ୪ ।

ଭୀଷ୍ମ କହିଲେ, ଅନନ୍ତର ଅପ୍‌ସରା ନାରଦଙ୍କୁ ପ୍ରତ୍ୟୁତ୍ତର କଲେ, ଆପଣ ଆମ୍ଭଙ୍କୁ ସମର୍ଥାବୋଲି ଜାଣିଅଛନ୍ତି କିନ୍ତୁ ଆମ୍ଭର କହିବାର ଯୋଗ୍ୟତା ଥିଲେ ଆମ୍ଭେ ଅବଶ୍ୟ କହିବୁଁ । ୫ । ନାରଦ କହିଲେ, ହେ ଭଦ୍ରେ ! ତୁମ୍ଭର ଯୋଗ୍ୟତା ନ ଥିଲେ ଆମ୍ଭେ ତୁମ୍ଭଙ୍କୁ ଏହି ବିଷୟରେ କଦାପି ନିଯୁକ୍ତା କରନ୍ତୁ ନାହିଁ । ହେ ବରାନନେ ! ଆମ୍ଭେ ତୁମ୍ଭ ନିକଟରୁ ସ୍ତ୍ରୀଗଣଙ୍କର ସ୍ୱଭାବର ବିଷୟ ଶ୍ରବଣ କରିବାକୁ ଅଭିଳାଷୀ ହୋଇଅଛୁଁ ।୬। ଭୀଷ୍ମ କହିଲେ, ଅପ୍‌ସରାଃ ଶ୍ରେଷ୍ଠା ପଞ୍ଚଚୂଡ଼ା ଦେବର୍ଷିଙ୍କର ଏହିକଥା ଶ୍ରବଣ କରି କହିଲେ, ଆମ୍ଭେ ସ୍ତ୍ରୀ ହୋଇ ସ୍ତ୍ରୀଗଣଙ୍କର ନିନ୍ଦା କରିପାରିବୁ ନାହିଁ ।୭।

ହେ ଦେବର୍ଷେ ! ସ୍ତ୍ରୀମାନେ ଯାଦୃଶ ଓ ସେମାନଙ୍କର ସ୍ୱଭାବ ଯେଉଁ ପ୍ରକାର, ତାହା ଆପଣ ଜାଣନ୍ତି, ଅତଏବ ଆମ୍ଭଙ୍କୁ ଈଦୃଶ କାର୍ଯ୍ୟରେ ନିଯୁକ୍ତ କରିବାର ଆପଣଙ୍କର ଉଚିତ ନୁହେଁ । ୮ । ଦେବର୍ଷି ନାରଦ ତାହାଙ୍କୁ ପୁନଶ୍ଚ କହିଲେ, ହେ ସୁମଧ୍ୟମେ ! ତୁମ୍ଭେ ଯାହା କହୁଅଛ ତାହା ସତ୍ୟ, କିନ୍ତୁ ମିଥ୍ୟା କହିବାରେ ଦୋଷ ହୁଏ, ସତ୍ୟ ବଚନରେ କୌଣସି ଦୋଷ ନାହିଁ । ୯ । ସୁରୁହାସିନୀ ପଞ୍ଚଚୂଡ଼ା ଦେବର୍ଷିଙ୍କଠାରୁ ଏହି ପ୍ରକାର ବାକ୍ୟ ଶ୍ରବଣକରି ଉତ୍ତର ଦେବାକୁ ନିଶ୍ଚୟ କରି ସ୍ତ୍ରୀଗଣଙ୍କର ଶାଶ୍ୱତ ସତ୍ୟ ଦୋଷ କହିବାକୁ ଉପକ୍ରମ କଲେ । ୧୦ ।

ପଞ୍ଚଚୂଡ଼ା କହିଲେ, ହେ ନାରଦ ! ସତ୍କୁଳଜାତ, ରୂପବତୀ ଓ ନାଥବତୀ ସ୍ତ୍ରୀବୃନ୍ଦ ଯେ ମର୍ଯ୍ୟାଦା ଅତିକ୍ରମ କରନ୍ତି, ତାହା ସ୍ତ୍ରୀଗଣଙ୍କର ଦୋଷ । ୧୧ । ସ୍ତ୍ରୀମାନଙ୍କ ଅପେକ୍ଷା ଅନ୍ୟ କେହି ପାପିଷ୍ଠତର ନାହାନ୍ତି,

ସ୍ତ୍ରୀମାନେ କେବଳ ସମସ୍ତ ଦୋଷର ମୂଳ, ତାହା ଆପଣ ମଧ୍ୟ ଜାଣନ୍ତି ।୧୨। ନାରୀଗଣ ଆକାଙ୍କ୍ଷିତ ସମୃଦ୍ଧିଶାଳୀ ରୂପସମ୍ପନ୍ନ ବଶୀଭୂତ ପତିମାନଙ୍କୁ ଅବକାଶ ପାଇଲେ ପ୍ରତୀକ୍ଷା କରିବାକୁ ସମର୍ଥ ହୁଅନ୍ତି ନାହିଁ । ହେ ପ୍ରଭୋ ! ଆମ୍ଭେମାନେ ସ୍ତ୍ରୀଜାତି, ଅତଏବ ଆମ୍ଭମାନଙ୍କର ଏହି ଧର୍ମ ଉତ୍ତମ ନୁହେଁ, ଆମ୍ଭେମାନେ ଯେ ଲଜ୍ଜା ପରିତ୍ୟାଗପୂର୍ବକ ପାପିଷ୍ଠ ପୁରୁଷମାନଙ୍କୁ ସେବାକରୁଁ, ଏହା ଅତ୍ୟନ୍ତ ଅସତ୍‌ଧର୍ମ । ଯେଉଁ ପୁରୁଷ ସ୍ତ୍ରୀଙ୍କୁ ପ୍ରାର୍ଥନା କରନ୍ତି ଏବଂ ସ୍ତ୍ରୀଲୋକଙ୍କ ନିକଟକୁ ଯାଆନ୍ତି ଓ ଈଷତ୍ ସେବା କରନ୍ତି, ସ୍ତ୍ରୀଗଣ ସେହି ପୁରୁଷଙ୍କୁ ଇଚ୍ଛା କରନ୍ତି । ପୁରୁଷଗଣଙ୍କର ପ୍ରାର୍ଥନାଭାବ ଓ ପରିଜନଗଣଙ୍କର ଭୟ ହେତୁରୁ ମର୍ଯ୍ୟାଦାଶୂନ୍ୟ ସ୍ତ୍ରୀଗଣ ପତିଙ୍କ ନିକଟରେ ମର୍ଯ୍ୟାଦାରକ୍ଷା କରନ୍ତି । ସ୍ତ୍ରୀଗଣଙ୍କର କେହି ଅଗମ୍ୟ ନାହିଁ । ସେମାନଙ୍କର ବୟସ ବିଷୟରେ କିଛି ନିଶ୍ଚୟ ନାହିଁ । ବିରୂପ ହେଉନ୍ତୁ ଅଥବା ରୂପବାନ୍ ହେଉନ୍ତୁ ପୁରୁଷ ହେଲେ ତାହାଙ୍କୁ ଭୋଗ କରନ୍ତି । କାମିନୀଗଣ ଭୟ, ଦୟା ଓ ଅର୍ଥ ହେତୁରୁ ଅଥବା ଜ୍ଞାତିକୁଳ ସମ୍ବନ୍ଧ ବଶରୁ ପତିଙ୍କ ନିକଟରେ ଅନୁଗତା ଥାଆନ୍ତି ନାହିଁ । ଯୌବନବତୀ ବିଶୁଦ୍ଧ ବସନାଭରଣ ଭୂଷିତା ସ୍ୱେଚ୍ଛାଗୃହିଣୀ ସ୍ତ୍ରୀମାନଙ୍କୁ କୁଳାଙ୍ଗନାଗଣ ସ୍ପୃହା କରନ୍ତି । ଯେଉଁ ସମସ୍ତ ବହୁମତାଦୟିତା ବନିତା ନିରନ୍ତର ରକ୍ଷିତା ହୁଅନ୍ତି, ସେମାନେ ମଧ୍ୟ କୁବ୍‌ଜ, ଅନ୍ଧ, ଜଡ଼ ଓ ବାମନ ଗଣଙ୍କ ସହିତ ଉତ୍ତମରୂପେ ପ୍ରସକ୍ତ ହୋଇଥାଆନ୍ତି । ହେ ମହାମୁନେ ! ଦେବର୍ଷେ ! ପଙ୍ଗୁମଧ୍ୟରେ ଯେଉଁମାନେ କୁତ୍ସିତ ଲୋକ ଏବଂ ଯେଉଁ ଅନ୍ୟ ବ୍ୟକ୍ତିମାନେ ଯେକୌଣସି ରୂପରେ କୁତ୍ସିତ ହେଉନ୍ତୁ ପଛକେ, ସେମାନଙ୍କ ମଧ୍ୟରୁ କେହି ଇହଲୋକରେ ସ୍ତ୍ରୀକୁଳର ଅଗମ୍ୟ ହୁଅନ୍ତି ନାହିଁ ।

ହେ ବ୍ରହ୍ମନ୍ ! ସ୍ତ୍ରୀଗଣ ଯଦି କୌଣସି ପ୍ରକାରରେ ପୁରୁଷପ୍ରାପ୍ତ ହୁଅନ୍ତି ନାହିଁ, ତେବେ ସ୍ତ୍ରୀ ପୁରୁଷରୂପରେ ମୈଥୁନାର୍ଥ ପ୍ରସକ୍ତ ହୋଇଥାଆନ୍ତି । ତଥାପି ଦୂରସ୍ଥିତ ପତିଙ୍କ ଅପେକ୍ଷାରେ ଧୈର୍ଯ୍ୟ ଧାରଣ କରନ୍ତି ନାହିଁ । ସ୍ତ୍ରୀବୃନ୍ଦ ପୁରୁଷ ପ୍ରାପ୍ତ ନ ହେଲେ, ପରିଜନମାନଙ୍କ ଭୟ ହେତୁରେ ଏବଂ ବଧବନ୍ଧ ଭୟରେ ସ୍ୱୟଂ ରକ୍ଷିତା ହୁଅନ୍ତି । ଇହଲୋକରେ ପ୍ରାଜ୍ଞ ପୁରୁଷଙ୍କ କଥାପରି ଅଙ୍ଗନାକୁଳ ଚଳସ୍ୱଭାବା, ଦୁଃସେବ୍ୟା ଏବଂ ସ୍ୱଭାବତଃ ଦୁର୍ଗ୍ରାହ୍ୟା ଅର୍ଥାତ୍ ସେମାନଙ୍କ ଅଭିପ୍ରାୟ ଜଣାଯାଏ ନାହିଁ ।

ଅଗ୍ନିଦେବ କାଷ୍ଠସମୂହଦ୍ୱାରା ତୃପ୍ତ ହୁଅନ୍ତି ନାହିଁ, ସମୁଦ୍ର ନଦୀବୃନ୍ଦଦ୍ୱାରା ତୃପ୍ତ ହୁଅନ୍ତି ନାହିଁ, ଯମଦେବ ସମସ୍ତ ଭୂତସମୂହଦ୍ୱାରା ତୃପ୍ତ ହୁଅନ୍ତି ନାହିଁ ଏବଂ ରମଣୀଗଣ ପୁରୁଷବୃନ୍ଦଙ୍କଦ୍ୱାରା ତୃପ୍ତିଲାଭ କରନ୍ତି ନାହିଁ। ହେ ଦେବର୍ଷେ ! ସମସ୍ତ ସ୍ତ୍ରୀକୁଳଙ୍କର ଏହି ଗୋଟିଏ ରହସ୍ୟ ବିଷୟ ଯେ, ମନୋହର ପୁରୁଷଙ୍କୁ ଦର୍ଶନ କଲାମାତ୍ରେ ସ୍ତ୍ରୀମାନଙ୍କର ଯୋନି କ୍ଲେଦଯୁକ୍ତ ହୁଏ। ନିଜ ଭର୍ତ୍ତା କାମଦାତା, ମାନସ ପ୍ରୀତିକର ଓ ରକ୍ଷିତାହେଲେ ସୁଦ୍ଧା ନାରୀଗଣ ତାହାଙ୍କୁ ସମ୍ୟକ୍‌ରୂପେ କ୍ଷମାଦାନ କରନ୍ତି ନାହିଁ।

କାମିନୀଗଣ ରତି ବିଷୟରେ ଯେଉଁପରି ପତିଙ୍କ ଅନୁଗ୍ରହକୁ ଇଚ୍ଛା କରନ୍ତି, ବିପୁଳ କାମଭୋଗ ସମୂହ, ଅଳଂକାର ଓ ଆବାସ ସମୂହକୁ ତଦ୍‌ବତ୍ ବହୁମାନ କରନ୍ତି ନାହିଁ। କେବଳ ସ୍ତ୍ରୀଗଣ ଅନ୍ତକ, ପବନ, ମୃତ୍ୟୁ ପାତାଳ, ବଡ଼ବାମୁଖ, କ୍ଷୁରଧାର, ବିଷ, ସର୍ପ ଓ ଅଗ୍ନି ଏହିମାନଙ୍କ ପରି ତତ୍‌କ୍ଷଣାତ୍ ବିନାଶ ସାଧନ କରନ୍ତି। ୨୯।

ହେ ନାରଦ ! ଯେଉଁ ହେତୁରୁ ପଞ୍ଚ ମହାଭୂତ ବିହିତ ହୋଇ ଅଛନ୍ତି, ବିଧାତା ଯହିଁରୁ ଲୋକ ସମୂହକୁ ବିଧାନ କରି ଅଛନ୍ତି, ଯହିଁରୁ ପୁରୁଷ ଓ ସ୍ତ୍ରୀ ନିର୍ମିତ ହୋଇ ଅଛନ୍ତି, ସେହି ସ୍ୱଭାବ ବଶରେ ସ୍ତ୍ରୀ ସମୂହଙ୍କଠାରେ ଦୋଷ ସମୂହ ଅଗ୍ନିରେ ଉଷ୍ଣତା ଥିଲା ପରି ସ୍ୱଭାବ ଜାତ ହୋଇ ରହିଅଛି। ୩୦।

ପଞ୍ଚଚୂଡ଼ା ନାରଦ ସମ୍ବାଦେ ଅଷ୍ଟତ୍ରିଂଶ ଅଧ୍ୟାୟ ସମାପ୍ତ। ୩୮।



## ଏକୋନଚତ୍ୱାରିଂଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ରାଜନ୍ ! ଲୋକ ମଧ୍ୟରେ ଏହି ସମସ୍ତ ମାନବ ଦେବସୃଷ୍ଟ ମୋହଦ୍ୱାରା ଏକାନ୍ତ ଆବିଷ୍ଟ ହୋଇ କାମିନୀଗଣଙ୍କର ପ୍ରତି ଅତ୍ୟନ୍ତ ଆସକ୍ତ ହୁଅନ୍ତି ଏବଂ ସ୍ତ୍ରୀଗଣମଧ୍ୟ ପୁରୁଷଠାରେ ଅତିଶୟ

ଅନୁରକ୍ତା ହୋଇ ଥାଆନ୍ତି । ଏହା ସମସ୍ତ ଲୋକେ ପ୍ରତ୍ୟକ୍ଷ କରୁଅଛନ୍ତି, ଅତଏବ ଏହି ବିଷୟରେ ଆମ୍ଭ ହୃଦୟରେ ଗୁରୁତର ସଂଶୟ ରହିଅଛି ।୨। ହେ କୁରୁ ନନ୍ଦନ ! ନରଗଣ କି ନିମିତ୍ତ ସେମାନଙ୍କ ସଙ୍ଗ କରନ୍ତି ଏବଂ ରମଣୀଗଣ ତାହାଙ୍କଠାରେ ଅନୁରକ୍ତା ହୁଅନ୍ତି ଓ କେଉଁ କାରଣରେ ସେମାନେ ପୁନଶ୍ଚ ବିରକ୍ତା ହୁଅନ୍ତି । ୩ । ହେ ପୁରୁଷ ଶ୍ରେଷ୍ଠ ! ପୁରୁଷମାନେ କେଉଁ ପ୍ରକାରରେ ସେମାନଙ୍କୁ ରକ୍ଷା କରିବାକୁ ସମର୍ଥ ହୁଅନ୍ତି, ତାହା ଆମ୍ଭ ନିକଟରେ ବ୍ୟାଖ୍ୟା କରିବାର ଆପଣଙ୍କର ଉଚିତ । ୪ ।

ସେମାନେ ଅନୁରକ୍ତ ପୁରୁଷମାନଙ୍କୁ ବଞ୍ଚନା କରନ୍ତି ଅଥଚ କୌଣସି ପୁରୁଷ ସେମାନଙ୍କ ହସ୍ତଗତ ହେଲେ ମୁକ୍ତହୋଇ ପାରନ୍ତି ନାହିଁ । ଗୋବୃନ୍ଦ ଯେଉଁପରି ନୂତନ ନୂତନ ତୃଣ ଗ୍ରହଣ କରନ୍ତି, ସେମାନେ ମଧ୍ୟ ସେହିପରି ନୂତନ ପୁରୁଷକୁ ଆଶ୍ରୟ କରନ୍ତି । ୫ । ଶମ୍ବରାସୁରଙ୍କର ଯେଉଁ ମାୟା, ନମୁଚିଙ୍କର ଯେଉଁ ମାୟା, ବଳି ଓ କୁମ୍ଭୀନସିଙ୍କର ଯେଉଁ ମାୟା ଥିଲା ସେହି ମାୟାକୁ ସ୍ତ୍ରୀମାନେ ଜାଣନ୍ତି । ୬ ।

ପୁରୁଷମାନେ ରୋଦନ କଲେ ସେମାନେ କପଟରେ ରୋଦନ କରନ୍ତି, ପୁରୁଷମାନେ ହାସ୍ୟକଲେ ସେମାନେ କପଟରେ ହାସ୍ୟ କରନ୍ତି, କାଳକ୍ରମରେ ଆବଶ୍ୟକ ହେଲେ ସେମାନେ ଅପ୍ରିୟବ୍ୟକ୍ତିଙ୍କୁ ମଧ୍ୟ ପ୍ରିୟ ବାକ୍ୟ ଦ୍ୱାରା ଗ୍ରହଣ କରନ୍ତି । ୭ । ଶୁକ୍ରାଚାର୍ଯ୍ୟ ଯେଉଁ ଶାସ୍ତ୍ର ଜାଣନ୍ତି, ବୃହସ୍ପତି ଯେଉଁ ଶାସ୍ତ୍ର ଜାଣନ୍ତି, ତାହା ସ୍ତ୍ରୀମାନଙ୍କ ବୁଦ୍ଧି ଅପେକ୍ଷା ଶ୍ରେଷ୍ଠ ନୁହେଁ । ଅତଏବ ନରମାନେ ତାଦୃଶ ସ୍ତ୍ରୀମାନଙ୍କୁ କପରି ରକ୍ଷା କରିବେ । ୮ ।

ହେ ବୀର ! ଇହଲୋକରେ ଯେଉଁମାନେ ମିଥ୍ୟାକୁ ସତ୍ୟ ବୋଲି କହନ୍ତି ଏବଂ ସତ୍ୟକୁ ମିଥ୍ୟା ବୋଲି କହନ୍ତି, ତାଦୃଶ ସ୍ତ୍ରୀଗଣଙ୍କୁ ପୁରୁଷମାନେ କପରି ରକ୍ଷା କରିବେ । ୯ । ହେ ଶତ୍ରୁହନ୍ ! ଜଣାଯାଏ ବୃହସ୍ପତି ପ୍ରଭୃତି ସାଧୁଗଣ ସ୍ତ୍ରୀମାନଙ୍କର ଧୀଶକ୍ତିର ଅର୍ଥ ନିଷ୍କର୍ଷରୁ ଅର୍ଥଶାସ୍ତ୍ର ସମୂହକୁ ରଚନା କରିଥିଲେ । ୧୦ । ହେ ନୃପ ! ସ୍ତ୍ରୀ ବୃନ୍ଦ ପୁରୁଷ କର୍ତ୍ତୃକ ପୂଜ୍ୟମାନ

ହେଲେ ପୁରୁଷଙ୍କଠାରେ ମନବିକାର ପ୍ରାପ୍ତ କରନ୍ତି ଓ ଅବଜ୍ଞା ପ୍ରାପ୍ତ ହେଲେ ସୁଦ୍ଧା ପୁରୁଷଙ୍କଠାରେ ମନବିକାର ପ୍ରାପ୍ତ କରନ୍ତି । ୧୧ ।

ହେ ମହାବାହୋ ! ଆମ୍ଭେ ଶୁଣିଅଛୁ ସ୍ତ୍ରୀମାନେ ଧର୍ମଶୀଳା ଅଟନ୍ତି, ସେମାନେ ସତ୍କୃତା ବା ଅସତ୍କୃତା ହେଉନ୍ତୁ ପଛକେ ସର୍ବଦା ପୁରୁଷଙ୍କ ବିଷୟରେ ମନରେ ବିକାର ଧାରଣ କରନ୍ତି । ୧୨ । ହେ କୁରୁବଂଶ ବର୍ଦ୍ଧନ ମହାଭାଗ ! ସେମାନଙ୍କୁ କିଏ ରକ୍ଷା କରିବାକୁ ସମର୍ଥ ହୁଅନ୍ତି, ଏହି ବିଷୟରେ ଆମ୍ଭର ଅତିଶୟ ସଂଶୟ ଜନ୍ମିଅଛି । ଆପଣ ତାହା କୀର୍ତ୍ତନ କରନ୍ତୁ । ୧୩ ।

ହେ କୁରୁଶ୍ରେଷ୍ଠ ! କଦାଚିତ୍ ଯଦି ସେମାନଙ୍କୁ ରକ୍ଷାକରି ହୁଏ, ଅଥବା ପୂର୍ବେ କେଉଁ ବ୍ୟକ୍ତି ସେମାନଙ୍କୁ ରକ୍ଷା କରିଥିଲେ, ଏହିପରି ଯଦି କୌଣସି ସ୍ଥାନରେ ଘଟିଥିବ, ତାହା ଆମ୍ଭ ନିକଟରେ କହିବା ହେଉନ୍ତୁ । ୧୪ ।

ସ୍ତ୍ରୀ ସ୍ୱଭାବ କଥନେ ଏକୋନଚତ୍ୱାରିଂଶ ଅଧ୍ୟାୟ ସମାପ୍ତ । ୩୯ ।



# ଚତ୍ୱାରିଂଶତ୍ତମ ଅଧ୍ୟାୟ

ଭୀଷ୍ମ କହିଲେ, ହେ କୁରୁକୁଳ ଧୁରନ୍ଧର ! ନରନାଥ ! ମହାବାହୋ ! ତୁମ୍ଭେ ସ୍ତ୍ରୀଗଣଙ୍କର ବିଷୟରେ ଯାହା କହିଲ, ତାହା ସତ୍ୟ ଅଟେ, ତହିଁରେ କିଛିମାତ୍ର ମିଥ୍ୟା ନାହିଁ । ୧ ।

ପୂର୍ବକାଳରେ ମହାତ୍ମା ବିପୁଳ ଯେଉଁ ପ୍ରକାରରେ ସ୍ତ୍ରୀଙ୍କୁ ରକ୍ଷା କରିଥିଲେ, ତଦ୍ ବିଷୟରେ ଆମ୍ଭେ ତୁମ୍ଭ ନିକଟରେ ପୁରାତନ ଇତିହାସ ବର୍ଣ୍ଣନ କରିବୁଁ । ୨ । ହେ ତାତ ଭରତଶ୍ରେଷ୍ଠ ନରନାଥ ! ପ୍ରଜାପତି ଯେଉଁ ପ୍ରକାରରେ ଯେଉଁ କାରଣରେ ସ୍ତ୍ରୀଗଣଙ୍କର ସୃଷ୍ଟି କରିଥିଲେ, ଆମ୍ଭେ ତୁମ୍ଭ ନିକଟରେ ତାହା କୀର୍ତ୍ତନ କରିବୁଁ । ୩ ।

ହେ ଧର୍ମ ରାଜନ୍ ! ସ୍ତ୍ରୀଲୋକଙ୍କ ଅପେକ୍ଷା ଅନ୍ୟ କେହି ପାପିଷ୍ଠତର ନାହାନ୍ତି । ପ୍ରମଦା, ପ୍ରଜ୍ୱଳିତ ଅଗ୍ନି ଅଥବା ମୟଦାନବର ମାୟା ସ୍ୱରୂପ ।୪। ହେ ମହାବାହୋ ! କେବଳ ସ୍ତ୍ରୀଗଣ କ୍ଷୁରଧାର, ବିଷ, ସର୍ପ ଓ ଅଗ୍ନି ଏହିମାନଙ୍କ ସଦୃଶ ଅଟନ୍ତି । ଆମ୍ଭେ ଶୁଣିଅଛୁଁ ସ୍ତ୍ରୀ ରୂପ ପ୍ରଜାବୃନ୍ଦ ପୂର୍ବେ ଧାର୍ମିକ ଥିଲେ । ୫ । ହେ ଅରିନ୍ଦମ ! ଏମାନେ ସ୍ୱୟଂ ଦେବତ୍ୱ ପ୍ରାପ୍ତ ହୋଇଥିଲେ । ସେହିଦିନଠାରୁ ଦେବଗଣ ଭୟାବିଷ୍ଟ ହୋଇ ପିତାମହଙ୍କ ନିକଟକୁ ଆଗମନ କଲେ ଏବଂ ସ୍ୱୀୟ ଅଭିପ୍ରାୟ ନିବେଦନ ପୂର୍ବକ ମୌନାବଲମ୍ବନ କରି ଅଧୋମୁଖରେ ଦଣ୍ଡାୟମାନ ହୋଇ ରହିଲେ । ସର୍ବ ଶକ୍ତିମାନ୍ ପ୍ରଜାପତି ଦେବଗଣଙ୍କ ଅନ୍ତର୍ଗତ ଅଭିପ୍ରାୟ ଅବଗତ ହୋଇ ( ୭ ) ମାନବଗଣଙ୍କର ମୋହ ନିମିତ୍ତ କୃତ୍ୟାରୂପ ନାରୀଗଣଙ୍କୁ ସୃଷ୍ଟି କଲେ । ହେ କୁନ୍ତୀପୁତ୍ର ! ନାରୀଗଣ ପ୍ରଥମ ସୃଷ୍ଟି ସମୟରେ ପତିବ୍ରତା ଥିଲେ । ୮ ।

ପ୍ରଜାପତିଙ୍କର କୃତ୍ୟା ସୃଷ୍ଟି ଉତ୍ତାରେ ଅସାଧ୍ୱୀ ରୂପରେ ସମୁତ୍ପନ୍ନା ହେଲେ । ପିତାମହ ସେମାନଙ୍କୁ ଯଥାକାମ କାମନା ସମୂହ ପ୍ରଦାନ କଲେ । ୯ । ସେହି କାମଲୁବ୍ଧ ପ୍ରମଦାଗଣ ନରମାନଙ୍କୁ ସର୍ବଦା ବାଧା ଦେଲେ । ପ୍ରଭୁ ଦେବେଶ କ୍ରୋଧକୁ କାମର ସହାୟ ରୂପରେ ସର୍ଜନ କଲେ । ୧୦ । ସମସ୍ତ ପ୍ରଜାଗଣ କାମ କ୍ରୋଧର ବଶୀଭୂତ ହୋଇ ଧର୍ମାଚରଣରେ ଆସକ୍ତ ହେଲେ, ସ୍ତ୍ରୀଗଣଙ୍କର କୌଣସି କ୍ରିୟା ରହିଲା ନାହିଁ, ଏହି ଧର୍ମ ବ୍ୟବସ୍ଥିତ ହେଲା । ୧୧ ।

ନିରିନ୍ଦ୍ରିୟ ଶାସ୍ତ୍ର ବର୍ଜିତ ସ୍ତ୍ରୀଗଣ ମିଥ୍ୟା ସ୍ୱରୂପ ଅଟନ୍ତି; ଏହି ପ୍ରକାର ଶାସ୍ତ୍ର ଅଛି । ପ୍ରଜାପତି ସ୍ତ୍ରୀମାନଙ୍କୁ ଶଯ୍ୟା, ଆସନ, ଅଳଙ୍କାର, ଅନ୍ନ, ପାନ, ଅନାର୍ଯ୍ୟତା, ଦୁର୍ବାକ୍ୟ ଓ ରତି ପ୍ରଦାନ କରିଥିଲେ । ପୁରୁଷମାନେ ସେମାନଙ୍କୁ କଦାପି ରକ୍ଷାକରିବାକୁ ସମର୍ଥ ହେବେ ନାହିଁ । ୧୩ । ହେ ତାତ ! ବିଶ୍ୱକର୍ତ୍ତା ସ୍ୱୟଂ ଯଦି ରକ୍ଷା କରି ନ ପାରିଲେ, ତେବେ ଇହଲୋକରେ ଅନ୍ୟ ପୁରୁଷମାନେ ବାକ୍ୟ, ବଧ ବନ୍ଧ ଓ ବିବିଧ କ୍ଲେଶ ସମୂହଦ୍ୱାରା କି ପ୍ରକାରରେ ସ୍ତ୍ରୀମାନଙ୍କୁ ରକ୍ଷା କରିବାକୁ ସମର୍ଥ ହେବେ ? ୧୪ । ହେ ପୁରୁଷସିଂହ ! କାରଣ ସେମାନେ ସର୍ବଦା ଅସଂଯତା । ପୂର୍ବକାଳରେ

ବିପୁଳ ନାମକ ମହର୍ଷି ଗୁରୁପତ୍ନୀଙ୍କୁ ଯେଉଁପରି ରକ୍ଷା କରିଥିଲେ, ଆମ୍ଭେ ତାହା ପୂର୍ବେ ଶ୍ରବଣ କରିଅଛୁଁ । ଦେବଶର୍ମା ନାମରେ ବିଖ୍ୟାତ ଏକ ମହାଭାଗ ଋଷିଥିଲେ । ୧୫, ୧୬ । ତାହାଙ୍କ ଭାର୍ଯ୍ୟାଙ୍କ ନାମ ରୁଚି, ଭୂମଣ୍ଡଳରେ ତାହାଙ୍କ ସଦୃଶ ସୁନ୍ଦରୀ କେହି ନଥିଲେ । ହେ ରାଜେନ୍ଦ୍ର ! ଦେବ, ଗନ୍ଧର୍ବ, ଦାନବଗଣ ବିଶେଷତଃ ବୃତ୍ରହନ୍ତା ଇନ୍ଦ୍ର ତାହାଙ୍କ ସୌନ୍ଦର୍ଯ୍ୟଦ୍ୱାରା ମତ୍ତ ହୋଇଥିଲେ । ନାରୀ ଚରିତଜ୍ଞ ମହାତ୍ମା ଦେବଶର୍ମା ଶକ୍ତି ଓ ଉତ୍ସାହ ଅନୁସାରେ ସେହି ଭାର୍ଯ୍ୟାଙ୍କୁ ସର୍ବତୋଭାବରେ ରକ୍ଷା କରୁଥିଲେ । ସେ ପୁରନ୍ଦରଙ୍କୁ ପର ସ୍ତ୍ରୀ ବିଷୟରେ ସ୍ୱେଚ୍ଛାଚାରୀ ବୋଲି ଜାଣନ୍ତି । ୧୯ । ସେହି କାରଣରୁ ଭାର୍ଯ୍ୟାଙ୍କୁ ବଳପୂର୍ବକ ରକ୍ଷା କରିବାକୁ ଯତ୍ନ ପରାୟଣ ହୋଇଥିଲେ । ୨୦ ।

ହେ ତାତ ! କୌଣସି ସମୟରେ ସେହି ଋଷି ଯଜ୍ଞ କରିବାକୁ ଇଚ୍ଛୁକ ହୋଇ ତେତେବେଳେ ସେ "ଭାର୍ଯ୍ୟାଙ୍କୁ କିପରି ରକ୍ଷା କରିବି" ଏହିକଥା ଚିନ୍ତା କରିଥିଲେ । ୨୧ । ସେହି ମହାତପା ମନରେ ରକ୍ଷା ବିଧାନକୁ ଚିନ୍ତା କରି ଭାର୍ଗବ ଗୋତ୍ରପ୍ରିୟ ଶିଷ୍ୟ ବିପୁଳଙ୍କୁ ଆହ୍ୱାନ କରି କହିଲେ । ୨୨ ।

ଭୃଗୁବର ! ଆମ୍ଭେ ଯଜ୍ଞ କରିବାକୁ ଯିବୁଁ । ସୁରେଶ୍ୱର ସର୍ବଦା ଏହି ରୁଚିଙ୍କୁ ପ୍ରାର୍ଥନା କରନ୍ତି, ଅତଏବ ତୁମ୍ଭେ ଏହାଙ୍କୁ ସାଧ୍ୟାନୁସାରେ ରକ୍ଷାକର । ପୁରନ୍ଦରଙ୍କ ପ୍ରତି ତୁମ୍ଭେ ସର୍ବଦା ଅପ୍ରମତ୍ତ ଅର୍ଥାତ୍ ସାବଧାନ ଥିବ । କାରଣ ସେ ବିବିଧରୂପ ଧାରଣ କରନ୍ତି । ୨୩-୨୪ । ଭୀଷ୍ମ କହିଲେ, ହେ ରାଜନ୍ ! ଅଗ୍ନି ଓ ସୂର୍ଯ୍ୟ ସଦୃଶ ଦ୍ୟୁତି ସମ୍ପନ୍ନ, ସର୍ବଦା ଉଗ୍ରତପା, ଜିତେନ୍ଦ୍ରିୟ, ଧର୍ମଜ୍ଞ, ସତ୍ୟବାଦୀ, ତପସ୍ୱୀ, ବିପୁଳଙ୍କୁ ଗୁରୁ ଏହିପରି କହିବାରୁ, ସେ "ତାହା କରିବି" ବୋଲି ପ୍ରତ୍ୟୁତ୍ତର ଦେଲେ । ହେ ମହାରାଜ ! ଗୁରୁ ପ୍ରସ୍ଥାନ ନିମିତ୍ତ ଅନୁକୂଳ କଲାରୁ ସେ ପୁନଶ୍ଚ ତାହାଙ୍କୁ ପଚାରିଲେ, (୨୬) ହେ ମୁନେ ! ଦେବରାଜ ଆଗମନ କଲେ ତାହାଙ୍କର କେଉଁ କେଉଁ ରୂପ ହୁଏ ? ତାହାଙ୍କର ଶରୀର ଓ ତେଜ କେଉଁପ୍ରକାର ଅଟେ, ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୨୭ ।

ଭୀଷ୍ମ କହିଲେ, ହେ ଭାରତ ! ତଦନନ୍ତର ଭଗବାନ୍ ଦେବଶର୍ମା ମହାନୁଭବ ବିପୁଳଙ୍କୁ ଯଥାର୍ଥରୂପେ ଇନ୍ଦ୍ରଙ୍କ ମାୟା କହିଲେ । ୨୮ । ଦେବଶର୍ମା କହିଲେ, ହେ ବିପ୍ରର୍ଷେ ! ଭଗବାନ୍ ଇନ୍ଦ୍ର ବହୁବିଧ ମାୟା ଜାଣନ୍ତି, ସେ ବାରମ୍ବାର ବହୁବିଧ ଭାବ ଆବିଷ୍କାର କରନ୍ତି । ୨୯ । ସେ କେତେବେଳେ କିରୀଟଧାରୀ, କେତେବେଳେ ବଜ୍ରଧାରୀ, କେତେବେଳେ ଧନୁର୍ଦ୍ଧାରୀ, କେତେବେଳେ ମୁକୁଟଧାରୀ ଓ କେତେବେଳେ ବଦ୍ଧମୁକୁଟ ଓ ବଦ୍ଧକୁଣ୍ଡଳ ହୁଅନ୍ତି । ଅଥଚ ମୁହୂର୍ତ୍ତମାତ୍ର କାଳମଧ୍ୟରେ ଚଣ୍ଡାଳରୂପ ଧାରଣ କରନ୍ତି । ୩୦ । ହେ ବତ୍ସ ! ସେ କେତେବେଳେ ଶିଖାବାନ୍, କେତେବେଳେ ଜଟାଯୁକ୍ତ ହୁଅନ୍ତି, କେତେବେଳେ ଚୀରବସନ ପରିଧାରଣ କରନ୍ତି, କେତେବେଳେ ବୃହତ୍ ଶରୀର ଧାରଣ ପୂର୍ବକ କୌପୀନଧାରୀ ହୁଅନ୍ତି, କେତେବେଳେ ଅବା କୃଶାଙ୍ଗ ଧାରଣ କରନ୍ତି । ସେ କେତେବେଳେ ଗୌର, କେତେବେଳେ ଶ୍ୟାମ ଓ କେତେବେଳେ କୃଷ୍ଣ ପ୍ରଭୃତି ବିବିଧ ବର୍ଣ୍ଣ ଧାରଣ କରନ୍ତି । ୩୧ ।

ସେ କେତେବେଳେ ବିରୂପ, କେତେବେଳେ ସୁରୂପ, କେତେବେଳେ ଯୁବା, କେତେବେଳେ ବୃଦ୍ଧ, କେତେବେଳେ ବ୍ରାହ୍ମଣ, କେତେବେଳେ କ୍ଷତ୍ରିୟ, କେତେବେଳେ ବୈଶ୍ୟ ଏବଂ କେତେବେଳେ ଶୂଦ୍ର ହୁଅନ୍ତି । ୩୨ । ଶତକ୍ରତୁ ପ୍ରତିଲୋମ ହୁଅନ୍ତି ଓ ଅନୁଲୋମ ମଧ୍ୟ ହୁଅନ୍ତି । ସେ ଶୁକ ଓ ବାୟସ ରୂପ ଧାରଣ କରନ୍ତି, କେତେବେଳେ କୋକିଳ ଓ କେତେବେଳେ ହଂସର ଆକାର ଧାରଣ କରନ୍ତି । ୩୩ ।

ପୁନଶ୍ଚ ସିଂହ, ବ୍ୟାଘ୍ର ଓ ଗଜ ରୂପଧାରଣ କରନ୍ତି, କେତେବେଳେ ଦେବ, କେତେବେଳେ ଦୈତ୍ୟ ଓ କେତେବେଳେ ରାଜାମାନଙ୍କ ସଦୃଶ ଶରୀର ଧାରଣ କରନ୍ତି । ୩୪ । ସେ ଅକୃଶ, ବାୟୁଭଗ୍ନାଙ୍ଗ, ଶକୁନ, ବିକୃତ, ଚତୁଷ୍ପଦ, ବହୁରୂପ ଓ ପୁନଶ୍ଚ ମୂର୍ଖ ହୁଅନ୍ତି । ୩୫ । ହେ ବିପୁଳ ! ସେ ମକ୍ଷିକା ଓ ମଶକ ଶରୀର ଧାରଣ କରନ୍ତି । ଅନ୍ୟର କଥା ଅବା କି କହିବା, ଯେ ଏହି ବ୍ରହ୍ମାଣ୍ଡ ସର୍ଜନ କରିଅଛନ୍ତି, ସେହି ବିଶ୍ୱକର୍ତ୍ତା ପଧ୍ୟ ତାହାଙ୍କୁ ଜାଣିବାକୁ ସମର୍ଥ ହୁଅନ୍ତି ନାହିଁ । ଶକ୍ର ଅନ୍ତର୍ହିତ ହେଲେ

ପୁନଶ୍ଚ ଜ୍ଞାନନେତ୍ରଦ୍ୱାରା ଦୃଶ୍ୟ ହୁଅନ୍ତି । ୩୬-୩୭ । ସେ କେତେବେଳେ ବାୟୁରୂପ ଓ କେତେବେଳେ ପୁନଶ୍ଚ ଇନ୍ଦ୍ରରୂପ ଧାରଣ କରନ୍ତି । ସେହି ଇନ୍ଦ୍ର ସର୍ବଦା ଏହି ପ୍ରକାରରେ ରୂପମାନଙ୍କୁ ଧାରଣ କରନ୍ତି । ୩୮ । ହେ ଭୃଗୁସତ୍ତମ ! ବିପୁଳ ! ଅତଏବ ଏହି କ୍ଷୀଣମଧ୍ୟାଙ୍କୁ ଯତ୍ନପୂର୍ବକ ରକ୍ଷାକର । ଦେବରାଜ ଇନ୍ଦ୍ର, ଉପସ୍ଥିତ ଯଜ୍ଞରେ ନ୍ୟସ୍ତ ହବିକୁ ଦୁରାତ୍ମା କୁକ୍କୁର ସଦୃଶ ଯେଉଁପରି ଅବଲେହନ ନ କରିବେ । ହେ ଭରତସତ୍ତମ ! ତତ୍ପରେ ସେହି ମହାତ୍ମା ଯଜ୍ଞକାରୀ ଦେବଶର୍ମା ମୁନି, ତେତେବେଳେ ଏହିପରି କହି ଗମନ କଲେ । ବିପୁଳ ମଧ୍ୟ ଗୁରୁଙ୍କ ବାକ୍ୟ ଶ୍ରବଣକରି ଚିନ୍ତାପ୍ରାପ୍ତ ହେଲେ । ୪୧ ।

ଏବଂ ମହାବଳ ଇନ୍ଦ୍ରଙ୍କଠାରୁ ଗୁରୁପତ୍ନୀଙ୍କୁ ରକ୍ଷାକରିବା ନିମିତ୍ତ ଯତ୍ନ ପରାୟଣ ହେଲେ । ସେ ଭାବନା କଲେ, ଇନ୍ଦ୍ର ଅତିଶୟ ପରାକ୍ରମଶାଳୀ, ଦୁର୍ଦ୍ଧର୍ଷ ଏବଂ ମାୟାବୀ ଅଟନ୍ତି । ଅତଏବ ଆମ୍ଭେ ତାହାଙ୍କଠାରୁ କେଉଁ ପ୍ରକାରରେ ଗୁରୁପତ୍ନୀଙ୍କୁ ରକ୍ଷାକରିବୁଁ । ୪୩ । ଆଶ୍ରମ ଅଥବା ପର୍ଣ୍ଣ-ଶାଳା ଆବରଣ ନ କରି ଇନ୍ଦ୍ରଙ୍କୁ ନିବାରଣ କରିବା ଦୁଃସାଧ୍ୟ, କାରଣ ତାହାଙ୍କର ନାନାବିଧ ରୂପଧାରଣ କରିବା ବିଷୟରେ ଶକ୍ତି ଅଛି । ସେ ବାୟୁରୂପରେ ଗୁରୁପତ୍ନୀଙ୍କୁ ଦର୍ଶନ କରିପାରିବେ । ୪୪ । ଅତଏବ ଆମ୍ଭେ ଆଜଠାରୁ ତାହାଙ୍କଠାରେ ଆବେଶ କରିବୁଁ, ନଚେତ୍ ପୌରୁଷଦ୍ୱାରା ତାହାଙ୍କୁ ରକ୍ଷାକରି ପାରିବୁ ନାହିଁ । ୪୫ ।

କାରଣ ଆମ୍ଭେ ଶୁଣିଅଛୁଁ ଭଗବାନ ଇନ୍ଦ୍ର ନାନା ପ୍ରକାର ରୂପ ଧାରଣ କରନ୍ତି । ଅତଏବ ଆମ୍ଭେ ଏହାଙ୍କୁ ରକ୍ଷା କରିବା ନିମିତ୍ତ ଯଦି ଯୋଗବଳରେ ନିଜ ଗାତ୍ରଦ୍ୱାରା ଏହାଙ୍କ ଶରୀରରେ ପ୍ରବେଶ କରିବୁଁ, ତେବେ ଇନ୍ଦ୍ରଙ୍କଠାରୁ ଏହାଙ୍କୁ ରକ୍ଷାକରି ପାରିବୁଁ । ଦିବ୍ୟଜ୍ଞାନ ସମ୍ପନ୍ନ ମହାତପା ମହାମୁନି ଗୁରୁ ଯଦି ଆଜି ଏହି ପତ୍ନୀଙ୍କୁ ଉଚ୍ଛିଷ୍ଟା ହୋଇଥିବାର ଦେଖିବେ, ତେବେ କୋପ ହେତୁରୁ ଆମ୍ଭଙ୍କୁ ଅଭିଶାପ ପ୍ରଦାନ କରିବେ, ସଂଶୟ ନାହିଁ । ମନୁଷ୍ୟମାନେ ଯେଉଁପରି ଅନ୍ୟ ପ୍ରମଦା ସ୍ତ୍ରୀଙ୍କୁ ରକ୍ଷାକରି ପାରନ୍ତି ନାହିଁ, ସେହିପରି ଆମ୍ଭେ ମଧ୍ୟ ଏହାଙ୍କୁ ରକ୍ଷା କରି ପାରିବୁ ନାହିଁ ୪୮ ।

କାରଣ ଇନ୍ଦ୍ରଦେବ ଅତିଶୟ ମାୟାବୀ । ଓଃ ! ଆମ୍ଭେ କି ସଂଶୟାପନ୍ନ ହେଲୁଁ । ଏତେବେଳେ ଗୁରୁଙ୍କ ଆଜ୍ଞା ପ୍ରତିପାଳନ କରିବାର ଆମ୍ଭର ଅବଶ୍ୟ କର୍ତ୍ତବ୍ୟ କର୍ମ । ୪୯ । ଆମ୍ଭେ ଯଦି ଏହାଙ୍କୁ ପ୍ରତିପାଳନ କରି ପାରିବୁଁ, ତେବେ ମହତ୍ ଆଶ୍ଚର୍ଯ୍ୟ କାର୍ଯ୍ୟ ହେବ । ଆମ୍ଭେ ଯୋଗ ବଳରେ ଗୁରୁପତ୍ନୀଙ୍କ କଳେବରରେ ପ୍ରବେଶ କରିବୁଁ । ୫୦ । ଓ ପଦ୍ମପତ୍ରସ୍ଥ ଜଳବିନ୍ଦୁ ସଦୃଶ ଚଞ୍ଚଳ ଓ ଅସକ୍ତ ହୋଇ ରହିବୁଁ । ୫୧ ।

ରଜୋରୂପରୁ ବିମୁକ୍ତ ଅର୍ଥାତ୍ ପାପମନା ନ ହେଲେ ଆମ୍ଭର କୌଣସି ଅପରାଧ ହେବ ନାହିଁ । ପଥିକ ବ୍ୟକ୍ତି ପଥ ମଧ୍ୟରେ ଯେଉଁପରି ଶୂନ୍ୟ ଗୃହରେ ବାସ କରନ୍ତି, (୫୨) ଆଜ ଆମ୍ଭେ ସେହିପରି ଗୁରୁପତ୍ନୀଙ୍କ କଳେବରରେ ବାସ କରିବୁଁ । ଏହିପରି ସ୍ଥିର ଚିତ୍ତରେ ଏହାଙ୍କ ଶରୀରରେ ଅବସ୍ଥିତ ହୋଇ ରହିବୁଁ । ୫୩ । ହେ ରାଜନ୍ ! ଭୃଗୁବଂଶୋଦ୍ଭବ ବିପୁଳ ଏହି ପ୍ରକାରରେ ଧର୍ମ ଆଲୋଚନା କରି, ସର୍ବ ପ୍ରକାରରେ ବେଦାର୍ଥ ଆଲୋଚନା କରି ଓ ଗୁରୁ ଏବଂ ଆପଣାର ବିପୁଳ ତପସ୍ୟା ଅବଲୋକନ-ପୂର୍ବକ ଗୁରୁପତ୍ନୀଙ୍କ ରକ୍ଷା ବିଷୟରେ ମନେ ମନେ ଏହି କଥା ନିଶ୍ଚୟ କରି ଯେଉଁପରି ଅତିଶୟ ଯତ୍ନଶୀଳ ହୋଇଥିଲେ, ତାହା ଶ୍ରବଣ କର । ୫୪ ।

ସେହି ମହାତପା ବିପୁଳ, ଉପବିଷ୍ଟ ହୋଇ ନିକଟରେ ସମାସୀନା ଅନିନ୍ଦ୍ୟସୁନ୍ଦରୀ ଗୁରୁପତ୍ନୀଙ୍କୁ ଯଥାର୍ଥ ବିଷୟରେ ସମ୍ୟକ୍ ରୂପେ ଲୋଭ ପ୍ରଦର୍ଶନ କରାଇଥିଲେ । ବିପୁଳ ନିଜ ନେତ୍ରର ରଶ୍ମି ଦ୍ୱାରା ତାହାଙ୍କ ନେତ୍ର ଯୁଗଳର ରଶ୍ମି ସଂଯୋଜନା କରି ପବନ ଦେବ ଯେଉଁପରି ଗଗନରେ ପ୍ରବେଶ କରନ୍ତି, ତଦ୍ବତ୍ ତାହାଙ୍କ କଳେବରରେ ପ୍ରବିଷ୍ଟ ହେଲେ । ୫୭ । ମୂନ ଛାୟା ସଦୃଶ ଅନ୍ତର୍ହିତ ହୋଇ ଲକ୍ଷଣ ଦ୍ୱାରା ଲକ୍ଷଣ ଓ ବଦନ ଦ୍ୱାରା ବଦନକୁ ବିଚେଷ୍ଟନ ନ କରି ଅବସ୍ଥିତ ହେଲେ । ୫୮ ।

ତଦନନ୍ତର ବିପୁଳ ଗୁରୁପତ୍ନୀଙ୍କ ଶରୀର ସ୍ତମ୍ଭନ ପୂର୍ବକ ତାହାଙ୍କ ରକ୍ଷା ବିଷୟରେ ନିଯୁକ୍ତ ହୋଇ ଅବସ୍ଥାନ କଲେ । କିନ୍ତୁ ସେ ତାହା ଜାଣି

ପାରିଲେ ନାହିଁ । ୫୯ । ହେ ରାଜନ୍ ! ଯେତେବେଳଯାଏ ସେହି ମହାତ୍ମାଙ୍କ ଗୁରୁ ଯଜ୍ଞ ସମାପନ ପୂର୍ବକ ନିଜ ଗୃହକୁ ଆଗମନ କରି ନ ଥିଲେ, ତାବତ୍ କାଳ ପର୍ଯ୍ୟନ୍ତ ସେ ଗୁରୁପତ୍ନୀଙ୍କୁ ସର୍ବତୋଭାବରେ ରକ୍ଷାକଲେ । ୬୦ ।

ବିପୁଳଙ୍କ ଉପାଖ୍ୟାନ ଚତ୍ୱାରିଂଶ ଅଧ୍ୟାୟ ସମାପ୍ତ । ୪୦ ।



## ଏକ ଚତ୍ୱାରିଂଶତ୍ତମ ଅଧ୍ୟାୟ

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ତଦନନ୍ତର କୌଣସି ସମୟରେ ଦେବରାଜ ଦିବ୍ୟ ସୌନ୍ଦର୍ଯ୍ୟ ସମ୍ପନ୍ନ ଶରୀର ଧାରଣ କରି "ଏହି ସମୟ ଯଥାର୍ଥ ଉପଯୁକ୍ତ" ଏହି କଥା ବିବେଚନା କରି ସେହି ଆଶ୍ରମକୁ ଆଗମନ କଲେ । ୧ । ହେ ନରନାଥ ! ସେ ଅପ୍ରତିମ ଶୋଭମାୟ ରୂପ ଧାରଣ କରି ଅତିଶୟ ଦର୍ଶନୀୟ ହୋଇ ସେହି ଆଶ୍ରମରେ ପ୍ରବିଷ୍ଟ ହେଲେ । ୨ । ସେତେବେଳେ ସେ ଆଲେଖ୍ୟ ଲିଖିତ ସଦୃଶ ନିଶ୍ଚେଷ୍ଟ ଓ ସ୍ତବ୍ଧ ନେତ୍ରରେ ଉପବିଷ୍ଟ ବିପୁଳଙ୍କ କଳେବର ଅବଲୋକନ କଲେ ଏବଂ ନିବିଡ଼ ନିତମ୍ବା, ପୀନ ପୟୋଧରା, ପଦ୍ମପତ୍ର ସଦୃଶ ବିଶାଳ ନୟନା, ପୂର୍ଣ୍ଣଚନ୍ଦ୍ରନିଭାନନା, ରୁଚିରାପାଙ୍ଗୀ ରୁଚିଙ୍କୁ ମଧ୍ୟ ଦେଖିଲେ । ରୁଚି ଦେବରାଜଙ୍କୁ ଦେଖି ସହସା ଉତ୍ଥିତ ହେବାକୁ ଇଚ୍ଛାକଲେ ଏବଂ ତାହାଙ୍କ ରୂପରେ ବିସ୍ମିତା ହୋଇ "ତୁମ୍ଭେ କିଏ ?" ଏହିକଥା କହିବାକୁ ଇଚ୍ଛାକଲେ । ହେ ନରନାଥ ! ସେହି ସତୀ ବିପୁଳଙ୍କ ଦ୍ୱାରା ବିଷ୍ଟବ୍ଧ ଓ ନିଗୃହୀତ ହୋଇ ଥିବାରୁ ସେ ଉଠିବାକୁ ଇଚ୍ଛାକଲେ ସୁଦ୍ଧା ଉତ୍ଥିତ ହୋଇ ପାରିଲେ ନାହିଁ । ସେତେବେଳେ ଦେବରାଜ ତାହାଙ୍କୁ ପରମ ମନୋହର ପ୍ରିୟ ବାକ୍ୟରେ କହିଲେ, ହେ ଶୁଚିସ୍ମିତେ ! ଆମ୍ଭେ ଦେବରାଜ, ତୁମ୍ଭ ନିମିତ୍ତ ଆଗମନ କରିଅଛୁ । ୭ ।

ହେ ସୁଭ୍ରୁ ! ଆମ୍ଭେ ପୂର୍ବେ ତୁମ୍ଭ ନିମିତ୍ତ ଯେଉଁ ସଂକଳ୍ପ କରିଥିଲୁଁ, ତତ୍‌ଜନିତ ଅନଙ୍ଗକାମଦ୍ୱାରା କ୍ଳେଶ୍ୟମାନ ହୋଇ ଆସିଅଛୁଁ । ଆମ୍ଭଙ୍କୁ ସମାଗତ ଅତିଥି ଜ୍ଞାନକର । ସମୟ ଅତୀତ ହେଉଅଛି ।୮। ଇନ୍ଦ୍ର ଏହିପରି କହୁଥିବା ସମୟରେ ବିପୁଳ ମୁନି ତାହା ଶ୍ରବଣ କଲେ ଏବଂ ଗୁରୁପତ୍ନୀଙ୍କ ଶରୀରରେ ଥାଇ ତ୍ରିଦଶାଧିପତି ଇନ୍ଦ୍ରଙ୍କୁ ଦେଖିଲେ ।୯। ହେ ମହାରାଜ ! ସେହି ଅନିନ୍ଦିତା, ବିପୁଳଙ୍କଦ୍ୱାରା ବିଷ୍ଟବ୍ଧ ଥିବାରୁ ପ୍ରତ୍ୟୁତ୍‌ଥାନ କରି ପାରିଲେ ନାହିଁ ଅଥବା କିଛି କହି ପାରିଲେ ନାହିଁ ।୧୦।

ହେ ପ୍ରଭୋ ! ସେହି ଭୃଗୁକୁଳ ଧୁରନ୍ଧର ମହାତେଜା ବିପୁଳ ଗୁରୁ-ପତ୍ନୀଙ୍କ ଆକାରକୁ ଜାଣିକରି ଯୋଗଦ୍ୱାରା ବଳପୂର୍ବକ ନିଗ୍ରହ କରି ରହିଲେ ।୧୧। ସେ ଯୋଗବନ୍ଧଦ୍ୱାରା ତାହାଙ୍କର ସମସ୍ତ ଇନ୍ଦ୍ରିୟ ବନ୍ଧନ କରି ରଖିଲେ । ଶଚୀପତି ତାହାଙ୍କୁ ଯୋଗବଳରେ ମୋହିତା ଓ ବିକାର ବିହୀନା ଦେଖି ଲଜ୍ଜିତ ହୋଇ ପୁନଶ୍ଚ ତାହାଙ୍କୁ ଆସ, ଆସ, ବୋଲି କହିଲେ । ତଦନନ୍ତର ରୁଚି ତାହାଙ୍କୁ ପ୍ରତ୍ୟୁତ୍ତର ଦେବାକୁ ଇଚ୍ଛାକଲେ, (୧୩) କିନ୍ତୁ ବିପୁଳ, ଗୁରୁ ପତ୍ନୀଙ୍କର ସେହି ବାକ୍ୟକୁ ପରିବର୍ତ୍ତନ କରିଦେଲେ । ରୁଚିଙ୍କ ଚନ୍ଦ୍ର ସଦୃଶ ମୁଖରୁ "ଅହୋ ! ତୁମ୍ଭେ କାହିଁକି ଆସିଅଛ ?" ଏହିପରି ସଂସ୍କୃତବାକ୍ୟ ନିର୍ଗତ ହେଲା । ପରାଧୀନା ରୁଚି ତେତେବେଳେ ଏହିକଥା କହି ଲଜ୍ଜିତା ହେଲେ । ଇନ୍ଦ୍ରଦେବ ମଧ୍ୟ ସେଠାରେ ଅତିଶୟ ବିମନା ହୋଇ ରହିଲେ ।

ହେ ବିଶାଂପତେ ! ଦେବରାଜ ସହସ୍ରାକ୍ଷ ତାହାଙ୍କର ସେହି ବିକୃତ ଭାବକୁ ଲକ୍ଷ୍ୟକରି ତେତେବେଳେ ଦିବ୍ୟଦୃଷ୍ଟି ଦ୍ୱାରା ଦର୍ଶନ କଲେ । ସେ ଦର୍ପଣର ପ୍ରତି-ବିମ୍ବ ସଦୃଶ ଗୁରୁପତ୍ନୀଙ୍କ ଶରୀରସ୍ଥ ଏବଂ ଶରୀରାନ୍ତର ଗୋଚର୍, ମୁନିଙ୍କୁ ଦର୍ଶନ କଲେ ।୧୭। ହେ ବିଭୋ ! ଇନ୍ଦ୍ର, ତାହାଙ୍କୁ ଘୋର ତପସ୍ୟାଯୁକ୍ତ ଦର୍ଶନ କରି ଅତିଶୟ ତ୍ରସ୍ତ ଓ ଶାପ ଭୟରେ ଭୀତହୋଇ ତେତେବେଳେ କମ୍ପମାନ କଳେବରରେ ଦଣ୍ଡାୟମାନହୋଇ ରହିଲେ ।୧୮। ତେତେବେଳେ ସୁମହାତପା ବିପୁଳ ଗୁରୁପତ୍ନୀଙ୍କୁ ପରିତ୍ୟାଗ ପୂର୍ବକ ସ୍ୱକୀୟ କଳେବରରେ ଆବିଷ୍ଟ ହୋଇ ଭୟାକୁଳଇନ୍ଦ୍ରଦେବଙ୍କୁ କହିଲେ, (୧୯) ହେ ଦୁର୍ବୁଦ୍ଧେ !

·ଅଜିତେନ୍ଦ୍ରିୟ ପାପାତ୍ମନ୍ ପୁରନ୍ଦର ! ତୁମ୍ଭଙ୍କୁ ଦେବତାଗଣ ଓ ମନୁଷ୍ୟଗଣ ଚିରକାଳ ପର୍ଯ୍ୟନ୍ତ ପୂଜା କରିବେ· ନାହିଁ । ୨୦ । ହେ ଶକ୍ର ! ତୁମ୍ଭେ ଗୌତମଙ୍କ ଦ୍ୱାରା ଭଗାଙ୍କ ପରିଚହ୍ନିତ ହୋଇ ଯେ ମୁକ୍ତ ହୋଇଅଛ, ତାହା କି ବିସ୍ମୃତ ହୋଇଅଛ ? ତାହା କି ତୁମ୍ଭ ମନରେ ନାହିଁ ? ଆମ୍ଭେ ତୁମ୍ଭଙ୍କୁ ମୂର୍ଖ ବୁଦ୍ଧି ଅକୃତାତ୍ମାମାନଙ୍କର ଅଧୀଶ୍ୱର ବୋଲି ଜାଣୁଅଛୁ । ହେ ମୂଢ଼ ! ହେ ପାପ ! ଏ ଆତ୍ମଦ୍ୱାରା ରକ୍ଷିତା ହୋଇଅଛନ୍ତି, ତୁମ୍ଭେ ଯେଉଁ ସ୍ଥାନରୁ ଆସିଅଛ ସେହି ସ୍ଥାନକୁ ଗମନ କର । ୨୨ ।

ହେ ବାସବ ! ହେ ମୂଢ଼ାତ୍ମନ୍ ! ଆମ୍ଭେ ଆଜି ସ୍ୱକୀୟ ତେଜଦ୍ୱାରା ତୁମ୍ଭଙ୍କୁ ଦହନ କଲୁ ନାହିଁ । ଆମ୍ଭେ କୃପାକରି ତୁମ୍ଭଙ୍କୁ ଦଗ୍ଧ କରିବାକୁ ଇଚ୍ଛୁକ ହେଲୁନାହିଁ । ୨୩ । ଆମ୍ଭର ସେହି ଘୋରତର ବୁଦ୍ଧିଶାଳୀ ଗୁରୁ ତୁମ୍ଭଙ୍କୁ ଏତାଦୃଶ ପାପଚେତା ଦେଖିଲେ କ୍ରୋଧୋଦ୍ଦୀପ୍ତ ଚକ୍ଷୁଦ୍ୱାରା ଆଜି ନିଃଶେଷରୂପେ ଦଗ୍ଧ କରିବେ । ୨୪ ।

ହେ ଶକ୍ର ! ତୁମ୍ଭେ ପୁନଶ୍ଚ ଏପରି କର୍ମ କରିବ ନାହିଁ, ବ୍ରାହ୍ମଣଗଣ ତୁମ୍ଭର ମାନ୍ୟ, ଅତଏବ ବ୍ରହ୍ମବଳରେ ପୀଡ଼ିତହୋଇ ପୁତ୍ର ଓ ଅମାତ୍ୟ ସହିତ ବିନଷ୍ଟ ହୁଅନାହିଁ । ୨୫ । "ଆମ୍ଭେ ଅମର" ଏହା ବିବେଚନା କରି ଆମ୍ଭଙ୍କୁ ଅବମାନନା କରିବ ନାହିଁ, ତପସ୍ୟାର କିଛି ଅସାଧ୍ୟ ନାହିଁ । ୨୬ ।

ଭୀଷ୍ମ କହିଲେ, ହେ ରାଜନ୍ ! ଇନ୍ଦ୍ର ମହାତ୍ମା ବିପୁଳଙ୍କର ଏହି ବାକ୍ୟ ଶ୍ରବଣପୂର୍ବକ ଲଜ୍ଜାରେ ଆର୍ତ୍ତହୋଇ କିଛି ନ କହି ସେହି ସ୍ଥାନରୁ ଅନ୍ତର୍ହିତ ହେଲେ । ୨୭ । ମୁହୂର୍ତ୍ତକାଳ ଉତ୍ତାରେ ମହାତପା ଦେବଶର୍ମା ଯଜ୍ଞକାର୍ଯ୍ୟ ସମାପନପୂର୍ବକ ଇଚ୍ଛାନୁସାରେ ସ୍ୱୀୟ ଆଶ୍ରମକୁ ଆଗମନ କଲେ । । ୨୮ । ହେ ରାଜନ୍ ! ଗୁରୁ ଆଗମନ କଲାରୁ ପ୍ରିୟକର୍ମକାରୀ ବିପୁଳ ଅନିନ୍ଦିତା ଗୁରୁପତ୍ନୀଙ୍କୁ ଯେଉଁ ପ୍ରକାରରେ ରକ୍ଷା କରିଥିଲେ, ତାହା ତାହାଙ୍କ ନିକଟରେ ନିବେଦନ କଲେ ।୨୯। ସେହି ଶାନ୍ତଚିତ୍ତ ଗୁରୁବତ୍ସଳ ବିପୁଳ ଗୁରୁଙ୍କୁ ଅଭିବାଦନପୂର୍ବକ ପୂର୍ବ ସଦୃଶ ଆଶଙ୍କିତ ଚିତ୍ତରେ ସେବା କଲେ । ୩୦ ।

ସେ ବିଶ୍ରାମ ଲାଭକରି ଭାର୍ଯ୍ୟାଙ୍କ ସହିତ ସମାସୀନ ହେବାରୁ ସେତେବେଳେ ବିପୁଳ ତାହାଙ୍କ ନିକଟରେ ଇନ୍ଦ୍ରଙ୍କ କର୍ମ ନିବେଦନ କଲେ । ୩୧ । ସେହି ପ୍ରତାପଶାଳୀ ମୁନିଶ୍ରେଷ୍ଠ ଦେବଶର୍ମା, ବିପୁଳଙ୍କ ବାକ୍ୟ ଶ୍ରବଣକରି ତାହାଙ୍କ ସ୍ୱଭାବ, ଚରିତ୍ର, ତପସ୍ୟା, ନିୟମ, ଗୁରୁସେବା ଓ ଗୁରୁଭକ୍ତି ଏବଂ ଧର୍ମ ନିଷ୍ଠା ଦେଖି ଧନ୍ୟ ଧନ୍ୟ ବୋଲି ପ୍ରଶଂସା କଲେ । ୩୨-୩୩ । ଧର୍ମାତ୍ମା ମହାମନ୍ତ ଦେବଶର୍ମା ଶିଷ୍ୟଙ୍କୁ ଧର୍ମ ପରାୟଣ ଜାଣି ତାହାଙ୍କୁ ବର ପ୍ରାର୍ଥନା କର ବୋଲି କହିଲେ । ୩୪ । ସେହି କାରଣରୁ ଗୁରୁବତ୍ସଳ ବିପୁଳ ଗୁରୁଙ୍କ ନିକଟରୁ ଧର୍ମ ସ୍ଥିତି ଗ୍ରହଣ କଲେ ଏବଂ ଗୁରୁଙ୍କ ଅନୁଜ୍ଞା ଗ୍ରହଣପୂର୍ବକ ଅତି ଉତ୍କୃଷ୍ଟ ତପସ୍ୟା ଆଚରଣରେ ପ୍ରବୃତ୍ତ ହେଲେ । ୩୫ । ସେହି ମହାତପା ଦେବଶର୍ମା ମଧ୍ୟ ଇନ୍ଦ୍ରଙ୍କଠାରୁ ନିର୍ଭୟହୋଇ ଭାର୍ଯ୍ୟାଙ୍କ ସହିତ ନିର୍ଜନ ବନରେ ବିଚରଣ କଲେ । ୩୬ ।

ବିପୁଳଙ୍କ ଉପାଖ୍ୟାନେ ଏକଚତ୍ୱାରିଂଶ ଅଧ୍ୟାୟ ସମାପ୍ତ । ୪୧ ।



# ଦ୍ୱିଚତ୍ୱାରିଂଶତ୍ତମ ଅଧ୍ୟାୟ

ଭୀଷ୍ମ କହିଲେ, ହେ ମହାରାଜ ! ତତ୍ପରେ ପରାକ୍ରମଶାଳୀ ବିପୁଳ ଗୁରୁଙ୍କ ବାକ୍ୟ ପ୍ରତିପାଳନପୂର୍ବକ ତୀବ୍ରତର ତପସ୍ୟା କରି ଆପଣାକୁ ତପୋଯୁକ୍ତ ବୋଲି ଜ୍ଞାନ କଲେ । ୧ । ହେ ନୃପ ! ଭୂପତେ ! ସେ ସେହି କର୍ମଦ୍ୱାରା କୀର୍ତ୍ତି ଓ ବରଲାଭ କରି ପ୍ରୀତିଯୁକ୍ତ ହୋଇ ସ୍ପର୍ଦ୍ଧା କରି ନିର୍ଭୟରେ ଭୂମଣ୍ଡଳରେ ବିଚରଣ କଲେ । ୨ । ହେ କୌରବ ! ସେହି ସମର୍ଥ ମୁନି ପୂର୍ବୋକ୍ତ କାର୍ଯ୍ୟ ଓ ବିପୁଳ ତପସ୍ୟାଦ୍ୱାରା ଇହଲୋକ ଓ ପରଲୋକ ଜୟ କରିଅଛନ୍ତି ବୋଲି ଜାଣିଲେ । ୩ ।

ହେ କୁରୁ ନନ୍ଦନ ! ତଦନନ୍ତର କିୟତ୍କାଳ ଅତୀତ ହେଲା ଉତ୍ତାରେ କୌଣସି ସମୟରେ ରୁଚିଙ୍କ ଭଗିନୀଙ୍କର ପ୍ରଭୂତ ଧନଧାନ୍ୟଯୁକ୍ତ ବିବାହ ଉତ୍ସବ ହୋଇଥିଲା । ୪ । ସେତେବେଳେ କୌଣସି ଦିବ୍ୟା

ବରାଙ୍ଗନା ପରମରୂପ ଧାରଣ କରି ଆକାଶ ପଥରେ ଗମନ କଲେ ।୫। ହେ ଭାରତ ! ସେହି ଆଶ୍ରମର ଅନତି ଦୂରରେ ସେହି ଦିବ୍ୟାଙ୍ଗନାଙ୍କ ଅଙ୍ଗରୁ ଦିବ୍ୟଗନ୍ଧଯୁକ୍ତ ପୁଷ୍ପସମୂହ ପୃଥିବୀରେ ପତିତ ହେଲା ।୬। ହେ ରାଜନ୍ ! ତତ୍ପରେ ଲଳିତ ଲୋଚନା ରୁଚି ସେହି କୁସୁମ ରାଶିକୁ ଗ୍ରହଣ କରୁ ଅଛନ୍ତି, ଏହି ସମୟରେ ତାହାଙ୍କ ନିକଟରେ ଅବିଳମ୍ବେ ଅଙ୍ଗଦେଶରୁ ଗୋଟିଏ ନିମନ୍ତ୍ରକ ଅର୍ଥାତ୍ ଦୂତ ପ୍ରବିଷ୍ଟ ହେଲା ।୭।

ହେ ତାତ ! ତାହାଙ୍କର ପ୍ରଭାବତୀ ନାମ୍ନୀ ଜ୍ୟେଷ୍ଠ ଭଗିନୀ ଅଙ୍ଗ ଦେଶାଧିପତି ଚିତ୍ରରଥଙ୍କର ଭାର୍ଯ୍ୟା ଥିଲେ ।୮। ବରବର୍ଣ୍ଣିନୀ ରୁଚି ଆମନ୍ତ୍ରିତ ହୋଇ କେଶରେ ସେହି ପୁଷ୍ପରାଶି ଧାରଣ କରି ଅଙ୍ଗପତିଙ୍କ ଗୃହକୁ ଗଲେ ।୯। ତେତେବେଳେ ଅଙ୍ଗରାଜଙ୍କର ଚାରୁଲୋଚନା ବରାଙ୍ଗନା ସେହି ସମସ୍ତ ପୁଷ୍ପ ଅବଲୋକନ କରି "ଆମ୍ଭ ନିମିତ୍ତ ଏତାଦୃଶ ପୁଷ୍ପ ଆନୟନ କର" ବୋଲି ଭଗିନୀଙ୍କୁ ପ୍ରାର୍ଥନା କଲେ ।୧୦। ସୁରୁଚିର ବଦନା ରୁଚି ପତିଙ୍କ ନିକଟରେ ଭଗିନୀଙ୍କ ବାକ୍ୟ କହିଲେ, ଋଷି ସେହି ବାକ୍ୟକୁ ସମାଦର କଲେ ।୧୧।

ହେ ଭରତ ! ତଦନନ୍ତର ମହାତପା ଦେବଶର୍ମା ବିପୁଳଙ୍କୁ ଆହ୍ୱାନ ପୂର୍ବକ ପୁଷ୍ପ ନିମିତ୍ତ ଯାଅ ଯାଅ ବୋଲି ପ୍ରେରଣ କଲେ ।୧୨। ହେ ରାଜନ୍ ! ମହାତପା ବିପୁଳ ଗୁରୁବାକ୍ୟରେ କିଛି ବିଚାର ନ କରି ତାହା କରିବି ବୋଲି କହିଲେ ଏବଂ ଯେଉଁ ପ୍ରଦେଶରେ ସେହି ପୁଷ୍ପସମୂହ ଆକାଶରୁ ପତିତ ହୁଏ, ସେହି ପ୍ରଦେଶକୁ ଗମନ କଲେ । ସେଠାରେ ଆଉ କେତେ ଗୁଡ଼ିଏ ଅମ୍ଳାନ ପୁଷ୍ପ ପଡ଼ିଥିଲା ।୧୩-୧୪।

ହେ ଭାରତ ! ତତ୍ପରେ ସେ ନିଜ ତପୋବଳରେ ପ୍ରାପ୍ତ ସେହି ଦିବ୍ୟଗନ୍ଧଯୁକ୍ତ ମନୋହର ଦିବ୍ୟ କୁସୁମମାନଙ୍କୁ ଗ୍ରହଣ କଲେ ।୧୫। ଗୁରୁବଚନ ପାଳନକାରୀ ବିପୁଳ ତେତେବେଳେ ସେହି ସମସ୍ତ କୁସୁମମାନଙ୍କୁ ଲାଭ କରି ପ୍ରୀତମନା ହୋଇ ଶୀଘ୍ର ଚମ୍ପକ ମାଳିନୀ ଚମ୍ପାନଗରୀକୁ ଗମନ କଲେ ।୧୬। ହେ ତାତ ! ସେ ସେହି ନିର୍ଜନବନ ମଧ୍ୟରେ ଚାଲି

ଦ୍ୱାରା କର ଗ୍ରହଣ ପୂର୍ବକ ଚନ୍ଦ୍ର ମଣ୍ଡଳ ଭ୍ରମଣ କରୁଥିବା ନରଯୁଗଳଙ୍କୁ ଦର୍ଶନ କଲେ । ୧୭ । ହେ ରାଜନ୍ ! ସେହି ଦୁହିଙ୍କ ମଧ୍ୟରେ ଜଣେ ଶୀଘ୍ର ଗମନ କରୁଥିଲା, ଅନ୍ୟ ବ୍ୟକ୍ତି ତଦ୍ଧାପୂ ଗମନରେ ବିଷମତା ପ୍ରତିପାଦନ କରି ସଙ୍ଗରେ ଯାଉଥିଲା । ତତ୍ପରେ ତେତେବେଳେ ସେହି ଦୁହେଁ କଳହ କରୁଥିଲେ । ୧୮ । ହେ ରାଜନ୍ ! ସେହି ଦୁଇ ଜଣଙ୍କ ମଧ୍ୟରୁ ଜଣେ କହୁଥିଲା ତୁମ୍ଭେ ଶୀଘ୍ର ଗମନ କରୁଅଛ ? ଅନ୍ୟ ବ୍ୟକ୍ତି କହୁଥିଲା କି ଆମ୍ଭେ ଶୀଘ୍ର ଗମନ କରୁନାହୁଁ, ତେତେବେଳେ ସେହି ଦୁହେଁ ପରସ୍ପର ନାହିଁ ନାହିଁ ବୋଲି କହୁଥିଲେ । ୧୯ ।

ତତ୍ ସମୟରେ ଏହିପରି ବିବାଦ ହେବାରୁ ସହସା ବିପୁଳଙ୍କୁ ଉଦ୍ଦେଶ କରି ସେହି ଦୁହିଙ୍କର ଏହିପରି ଶପଥ ହେଲା କି ଏହି ବିପ୍ର ପରଲୋକରେ ଯେଉଁଗତି ପ୍ରାପ୍ତ ହେବେ, ଆମ୍ଭ ଦୁହିଁଙ୍କ ମଧ୍ୟରେ ଯେଉଁ ବ୍ୟକ୍ତି ମିଥ୍ୟା କହୁଅଛନ୍ତି, ସେ ସେହି ଗତି ପ୍ରାପ୍ତ ହେବେ । ସେହି ଦୁହେଁ ଏହିପରି କହୁଥିଲେ । ୨୧ । ବିପୁଳ ଏହି କଥା ଶ୍ରବଣ କରି ବିଷର୍ଣ୍ଣ ବଦନ ହେଲେ ଏବଂ ଭାବିଲେ ଆମ୍ଭେ ଅତିକଷ୍ଟରେ କଠୋର ତପସ୍ୟା କରିଅଛୁଁ, କିନ୍ତୁ ଏହି ନର ମିଥୁନଙ୍କର ବାକ୍ୟ ଶ୍ରବଣରେ ଜଣାଯାଉଅଛି ଯେ, ଆମ୍ଭର ଅତିଶୟ ଦୁର୍ଗତି ଲାଭ ହେବ । ଆମ୍ଭେ ଏପରି କେଉଁ ପାପ କରିଅଛୁଁ ଯେ ଏହି ଦୁହିଙ୍କର ସେହି ଗତି ହେବ । ଏହି ଦୁହେଁ ଏତେବେଳେ ଆମ୍ଭର ଯେଉଁ ଗତି ବିଷୟକ କହିଲେ, ତାହା ସର୍ବ ପ୍ରାଣୀଙ୍କର ଅଭିଳଷିତ ନୁହେଁ । । ୨୩ । ହେ ରାଜ ସତ୍ତମ ! ବିପୁଳ ଏହି ପ୍ରକାର ଚିନ୍ତାକରି ଅଧୋମୁଖ ଓ ଦୀନମନା ହୋଇ ଆପଣାର ଦୁଷ୍କୃତ ବିଷୟ ଧ୍ୟାନ କଲେ । ୨୪ । ତଦନନ୍ତର ସେ ସୁବର୍ଣ୍ଣ ଓ ରଜତ ନିର୍ମିତ ଅକ୍ଷଦ୍ୱାରା କ୍ରୀଡ଼ାକାରୀ ଲୋଭ, ହର୍ଷ ଯୁକ୍ତ ଅନ୍ୟ ଛଅ ଜଣ ପୁରୁଷଙ୍କୁ ଦର୍ଶନ କଲେ । ୨୫ । ପୂର୍ବୋକ୍ତ ନରମିଥୁନ ବିପୁଳଙ୍କୁ ଉଲ୍ଲେଖ କରି ଯେଉଁପରି ଶପଥ କରିଥିଲେ, ସେମାନେ ମଧ୍ୟ ସେହିପରି ବିପୁଳଙ୍କୁ ଉଲ୍ଲେଖ କରି ଶପଥପୂର୍ବକ କହୁଥିଲେ । ୨୬ । ସେମାନେ ବିପୁଳଙ୍କୁ ଉଦ୍ଦେଶ କରି ଏହି କଥା କହିଲେ ଯେ ଆମ୍ଭମାନଙ୍କ ମଧ୍ୟରେ ଯେ ବିଧର୍ମାଚରଣ କରିବେ, ବିପୁଳଙ୍କର ପରଲୋକରେ ଯେଉଁ ଅପକୃଷ୍ଟଗତି ହେବ ସେ ସେହିଗତି ପ୍ରାପ୍ତ ହେବେ ।୨୭।

ହେ କୌରବ୍ୟ ! ବିପୁଳ ଏହି କଥା ଶ୍ରବଣକରି ସେ ଜନ୍ମାବଧି ସ୍ୱୟଂ କେଉଁ ଅଧର୍ମ ସଞ୍ଚୟ କରିଥିଲେ, ତାହା ଦେଖି ପାରିଲେ ନାହିଁ । ୨୮ । ହେ ରାଜନ୍ ! ସେ ତଥାବିଧ ଶାପ ଶ୍ରବଣ କରି ଅଗ୍ନିରେ ଅଗ୍ନି ଅର୍ପିତ ହେଲାପରି ଦହ୍ୟମାନ ହୃଦୟରେ ଚିନ୍ତାକଲେ । ୨୯ ।

ହେ ତାତ ! ସେ ଚିନ୍ତା କରୁଁ କରୁଁ ବହୁତ ଦିନ ରାତି ଅତୀତ ହେଲା ଉତ୍ତାରେ, ତାହାଙ୍କ ହୃଦୟରେ ଗୁରୁପତ୍ନୀ ରୁଚିଙ୍କ ରକ୍ଷଣ ଜନିତ ବ୍ୟବହାର ଉଦିତ ହେଲା । ୩୦ । ସ୍ତ୍ରୀ ପୁରୁଷଙ୍କର ଅସାଧାରଣ ଲକ୍ଷଣ ଦ୍ୱାରା ଲକ୍ଷଣଥିବାର ଏବଂ ବଦନ ଦ୍ୱାରା ବଦନ ବିଧାନ କରି ଥିବାର ଆମ୍ଭେ ଗୁରୁଙ୍କ ନିକଟରେ ସତ୍ୟରୂପେ କହିନାହୁଁ । ୩୧ । ହେ ମହାଭାଗ ! ହେ କୌରବ ! ଚେତେବେଳେ ମହାତପା ବିପୁଳ ଆପଣାଠାରେ ଏହି ଦୁଷ୍କୃତ ଜ୍ଞାନ କଲେ ଏବଂ ତାହା ନିଶ୍ଚୟ ପାପ ସଂଶୟ ନାହିଁ ।

ତଦନନ୍ତର ସେ ଚମ୍ପାନଗରୀକୁ ଆଗମନ କରି ଗୁରୁଙ୍କ ପୁଷ୍ପ ସମୂହ ପ୍ରଦାନ କଲେ ଏବଂ ସେହି ଗୁରୁପ୍ରିୟ ବିପୁଳ ଗୁରୁଙ୍କୁ ବିଧିବତ୍ ପୂଜା କଲେ । ୩୨-୩୩ ।

ବିପୁଳଙ୍କ ଉପାଖ୍ୟାନେ ଦ୍ୱିଚତ୍ୱାରିଂଶ ଅଧ୍ୟାୟ ସମାପ୍ତ । ୪୨ ।



# ତ୍ରିଚତ୍ୱାରିଂଶତ୍ତମ ଅଧ୍ୟାୟ

ଭୀଷ୍ମ କହିଲେ, ହେ ନରେଶ୍ୱର ! ଅନନ୍ତର ମହାତେଜା ଦେବଶର୍ମା ସେହି ଶିଷ୍ୟଙ୍କୁ ସମାଗତ ହୋଇଥିବାର ଦର୍ଶନ କରି ଯେଉଁ କଥା କହିଥିଲେ ଶ୍ରବଣ କର । ୧ । ଦେବଶର୍ମା କହିଲେ, ହେ ଶିଷ୍ୟ ବିପୁଳ ! ତୁମ୍ଭେ ସେହି ମହାରଣ୍ୟରେ କଅଣ ଦେଖିଥିଲ ? ହେ ବିପୁଳ ! ସେମାନେ ଆମ୍ଭଙ୍କୁ, ରୁଚିଙ୍କୁ ଏବଂ ତୁମ୍ଭଙ୍କୁ ଜାଣନ୍ତି । ୨ । ବିପୁଳ କହିଲେ, ହେ ବ୍ରହ୍ମର୍ଷେ ! ହେ ବିଦ୍ୱନ୍ ! ଯେଉଁମାନେ ଆମ୍ଭଙ୍କୁ ଯଥାର୍ଥ ରୂପ ଜାଣନ୍ତି

ଏବଂ ଯେଉଁମାନଙ୍କର ବିଷୟ ଆପଣ ଆମ୍ଭଙ୍କୁ ପ୍ରଶ୍ନ କରି ଅଛନ୍ତି, ସେମାନେ କିଏ ? ଏବଂ ସେହି ନର ଦୁହେଁ ବା କିଏ ? ୩ । ଦେବଶର୍ମା କହିଲେ, ହେ ବ୍ରହ୍ମନ୍ ! ତୁମ୍ଭେ ଯେଉଁ ନର ଯୁଗଳ ଦର୍ଶନ କରିଅଛ ଓ ଯେଉଁ ନରଯୁଗଳ ଚକ୍ର ସଦୃଶ ଭ୍ରମଣ କରୁଅଛନ୍ତି, ତୁମ୍ଭେ ଜାଣ, ସେହି ଦୁହେଁ ଦିବସ ରଜନୀ ଅଟନ୍ତି, ସେ ଦୁହେଁ ତୁମ୍ଭର ଦୁଷ୍କୃତ କର୍ମକୁ ଜାଣନ୍ତି । ୪ ।

ହେ ବିପ୍ର ! ଯେଉଁ ଛଅ ଜଣ ପୁରୁଷ ହୃଷ୍ଟହୋଇ ପାଶ କ୍ରୀଡ଼ା କରୁ ଅଛନ୍ତି, ଜାଣ ସେମାନେ ଛଅ ଋତୁ ଅଟନ୍ତି । ସେମାନେ ତୁମ୍ଭର ଦୁଷ୍କୃତ ଜାଣନ୍ତି । ୫ । ହେ ଦ୍ୱିଜ ! ଆମ୍ଭଙ୍କୁ କେହି ଜାଣନ୍ତି ନାହିଁ, ଏହା ବିବେଚନା କରି ବିଶ୍ୱାସ କରିବାର ଉଚିତ ନୁହେଁ । ପାପାତ୍ମା ମନୁଷ୍ୟ ନିର୍ଜନରେ ପାପାଚରଣ କରନ୍ତି, ମନୁଷ୍ୟ ସର୍ବଦା ନିର୍ଜନରେ ପାପାଚରଣ କଲେ ସୁଦ୍ଧା ଋତୁଗଣ ଓ ଦିବା ରାତ୍ର ତାହା ଦର୍ଶନ କରନ୍ତି । ୬-୭ । ଆମ୍ଭର ନିକଟରେ ତୁମ୍ଭେ ଯେଉଁପରି ପାପକର୍ମ କରି କହିନାହିଁ, କିନ୍ତୁ ତାଦୃଶ ପାପ କର୍ମଦ୍ୱାରା ଯେଉଁ ଲୋକରେ ଗତି ହୁଏ, ତାହା ମଧ୍ୟ ସେମାନେ ଜାଣନ୍ତି । ୮ । ତୁମ୍ଭେ ଗୁରୁଙ୍କ ନିକଟରେ ନିଜ କର୍ମ ନିବେଦନ କରି ହର୍ଷରେ ଗର୍ବଯୁକ୍ତ ହୋଇଥିଲ, ଋତୁ ପ୍ରଭୃତି ତୁମ୍ଭକୁ ତାଦୃଶ୍ୟ ଗର୍ବିତ ଦେଖି ତାହା ସ୍ମରଣ କରାଇବା ନିମିତ୍ତ ଯାହା କହିଥିଲେ, ତୁମ୍ଭେ ତାହା ଶ୍ରବଣ କରିଅଛ । ୯ । ଅହୋରାତ୍ର ଓ ଋତୁଗଣ ଶୁଭ ଅବା ଅଶୁଭ କର୍ମଶୀଳ ବ୍ୟକ୍ତିଙ୍କର ଶୁଭ ଅବା ଅଶୁଭ କର୍ମମାନଙ୍କୁ ସର୍ବଦା ଜାଣନ୍ତି ।୧୦। ହେ ଦ୍ୱିଜ ! ତୁମ୍ଭେ ଆମ୍ଭ ନିକଟରେ ବ୍ୟଭିଚାର ବଶରୁ ଭୟାତ୍ମକ କର୍ମ ପ୍ରକାଶ କରିନାହିଁ, ସେମାନେ ତାହା ଜାଣି ତୁମ୍ଭଙ୍କୁ ସେ ପ୍ରକାର କହି ଅଛନ୍ତି । ୧୧ ।

ତୁମ୍ଭେ ଆମ୍ଭ ନିକଟରେ ଯାହା କରିଅଛ, ତଦ୍‌ବତ୍ କର୍ମ କରି ନ କହିଲେ ସେହି ପାପକର୍ମକାରୀଙ୍କର ଯେଉଁ ଲୋକକୁ ଗତି ହୁଏ, ତୁମ୍ଭର ମଧ୍ୟ ଉକ୍ତ କର୍ମ ବଶରୁ ସେହି ଲୋକକୁ ଗତି ହେବ । ୧୨ । ହେ ଦ୍ୱିଜ ! ତୁମ୍ଭେ ଦୁଷ୍ଟଚରିତ୍ରା ସ୍ତ୍ରୀମାନଙ୍କୁ ରକ୍ଷା କରିବା ନିମିତ୍ତ ସମର୍ଥ, ତଦ୍ ବିଷୟରେ ତୁମ୍ଭେ କୌଣସି ପାପ କର୍ମ କରିନାହିଁ, ସେହି କାରଣରୁ ଆମ୍ଭେ ତୁମ୍ଭଠାରେ ପ୍ରୀତ ଅଛୁଁ । ୧୩ । ହେ ଦ୍ୱିଜ ସତ୍ତମ ! ଆମ୍ଭେ ତୁମ୍ଭଙ୍କୁ ଯଦି ଦୁର୍ବୃତ୍ତ

ଦେଖି ଥାଆନ୍ତୁ, ତେବେ କ୍ରୋଧବଶରେ ଅଭିଶାପ ପ୍ରଦାନ କରିଥାଆନ୍ତୁ । ଏହି ବିଷୟରେ ଆମ୍ଭର କୌଣସି ବିଚାରଣା ନାହିଁ । ୧୪ । ନାରୀଗଣ ପୁରୁଷମାନଙ୍କଠାରେ ଯେ ଅନୁରାଗିଣୀ ହୁଅନ୍ତି, ପୁରୁଷମାନଙ୍କର ତାହା ପୁଷ୍କଳ ଅର୍ଥ ତୁମ୍ଭେ ଯଦି ଅନ୍ୟଥାଚରଣ ଦ୍ୱାରା ରକ୍ଷା କରିଥାନ୍ତ, ତେବେ ଆମ୍ଭେ ତାହା ଜାଣି ଥାଆନ୍ତୁ, ସୁତରାଂ ତୁମ୍ଭଙ୍କୁ ଅବଶ୍ୟ ଅଭିସମ୍ପାତ କରି ଥାଆନ୍ତୁ । ୧୫ ।

ହେ ତାତ ! ତୁମ୍ଭେ ଯଥାର୍ଥ ରୂପେ ରକ୍ଷା କରିଅଛ ଏବଂ ତାହା ଆମ୍ଭଙ୍କୁ ନିବେଦନ କରିଅଛ; ଅତଏବ ହେ ପୁତ୍ର ! ଆମ୍ଭେ ତୁମ୍ଭଠାରେ ପ୍ରୀତିଯୁକ୍ତ ହୋଇଅଛୁ, ତୁମ୍ଭେ ସୁସ୍ଥଥାଇ ସ୍ୱର୍ଗକୁ ଗମନ କରିବ । ୧୬ । ମହର୍ଷିଦେବ ଶର୍ମା ପ୍ରୀତ ହୋଇ ବିପୁଳଙ୍କୁ ଏହି କଥା କହି ଭାର୍ଯ୍ୟା ଓ ଶିଷ୍ୟଙ୍କ ସହିତ ସ୍ୱର୍ଗରେ ବାସକରି ଆନନ୍ଦିତ ହେଲେ । ୧୭ । ହେ ରାଜନ୍ ! ପୂର୍ବକାଳରେ ମହାମୁନି ମାର୍କଣ୍ଡେୟ ଗଙ୍ଗାକୂଳରେ କଥା ପ୍ରସଙ୍ଗରେ ଆମ୍ଭ ନିକଟରେ ଏହି ଉପାଖ୍ୟାନ କହିଥିଲେ । ୧୮ । ହେ ପାର୍ଥ ! ଏହି ନିମିତ୍ତ ତୁମ୍ଭଙ୍କୁ କହୁଅଛୁଁ ଯେ ସ୍ତ୍ରୀମାନଙ୍କୁ ସର୍ବଦା ରକ୍ଷା କରିବାର ଉଚିତ୍, ସେମାନଙ୍କ ମଧ୍ୟରେ ସାଧୁ ଓ ଅସାଧୁ ଉଭୟବିଧ ସ୍ତ୍ରୀ ସର୍ବଦା ଦୃଷ୍ଟ ହୁଅନ୍ତି । ୧୯ । ହେ ରାଜନ୍ ! ମହାଭାଗା ପତିବ୍ରତା ସ୍ତ୍ରୀ ସମୂହ ସମସ୍ତ ଲୋକବୃନ୍ଦର ମାତା, ସେହିମାନେ ସାଗର, ଅରଣ୍ୟ ଓ ଗିରିଯୁକ୍ତ ଭୂମଣ୍ଡଳକୁ ଧାରଣ କରି ଅଛନ୍ତି । ୨୦ । ହେ ନୃପ ! ଅସାଧ୍ୱୀ, ଦୁର୍ବୃତ୍ତ, କୁଳଘ୍ନୀ ପାପ ନିଶ୍ଚୟା ନାରୀମାନଙ୍କୁ ସେହିମାନଙ୍କର ସ୍ୱଗାତ୍ର ସହଜାତ ଅର୍ଥାତ୍ ପାଣି ପାଦ ରେଖା ପ୍ରଭୃତି ଦୁଷ୍ଟ ଲକ୍ଷଣମାନଙ୍କ ଦ୍ୱାରା ଜାଣି ପାରିବ । ୨୧ । ମହାତ୍ମା ମାନବଗଣ ଏହିପରି ନାରୀମାନଙ୍କୁ ସୁନ୍ଦର ରୂପେ ରକ୍ଷା କରିବାକୁ ସମର୍ଥ ହୁଅନ୍ତି । ହେ ରାଜ ଶାର୍ଦ୍ଦୂଳ ! ଅନ୍ୟଥା ସ୍ତ୍ରୀ ସମୂହ ରକ୍ଷଣୀୟ ନୁହନ୍ତି । ୨୨ ।

ହେ ନର ଶ୍ରେଷ୍ଠ ! ସେମାନେ ତୀକ୍ଷ୍ଣା ଓ ତୀକ୍ଷ୍ଣ ପରାକ୍ରମଶାଳିନୀ ଅଟନ୍ତି । ଯେଉଁମାନେ ମୈଥୁନରେ ସେମାନଙ୍କ ସଙ୍ଗ କରନ୍ତି, ସେହିମାନେ କେବଳ ସେମାନଙ୍କର ପ୍ରିୟ, ତଦ୍‌ଭିନ୍ନ କେହି ପ୍ରିୟ ହୁଅନ୍ତି ନାହିଁ ।୨୩। ହେ ଭରତ ପ୍ରବର ! ପାଣ୍ଡୁନନ୍ଦନ ! ସେମାନେ କୃତ୍ୟା ଅର୍ଥାତ୍ ପ୍ରାଣ

ଯାହିମା ଦେବତା ସ୍ୱରୂପା, ବ୍ୟଭିଚାରିଣୀ ହେଲେ ପ୍ରାଣ ଧାରଣ କରନ୍ତି, କାର୍ଯ୍ୟରୂପା ଅର୍ଥାତ୍ ପ୍ରଥମରେ ଗୋଟିଏ ପୁରୁଷ ସହିତ ସ୍ୱୀକୃତା ହୋଇ ପଶ୍ଚାତ୍ ଅନ୍ୟବ୍ୟକ୍ତି ସହିତ ବିହାର କରନ୍ତି । ସେମାନେ ଗୋଟିଏ ପୁରୁଷ-ଠାରେ ରତ ହୁଅନ୍ତି ନାହିଁ ।୨୪। ହେ ନରେଶ୍ୱର ! ନାରୀଗଣଙ୍କଠାରେ ସ୍ନେହ ଅଥବା ଈର୍ଷା କରିବାର ମନୁଷ୍ୟମାନଙ୍କର ଉଚିତ୍ ନୁହେଁ । ଋତୁକାଳ ଅନୁରୋଧରେ ଅପ୍ରୀତିପୂର୍ବକ ସେମାନଙ୍କୁ ଭୋଗ କରିବ । ୨୫ । ହେ କୌରବ ନନ୍ଦନ ! ମନୁଷ୍ୟ ଏହା ଅନ୍ୟଥା କଲେ ନିହତ ହୁଅନ୍ତି । ହେ ରାଜ ଶାର୍ଦ୍ଦୂଳ ! ସ୍ତ୍ରୀମାନଙ୍କଠାରେ ଅନାସକ୍ତ ପୁରୁଷ ସର୍ବଦା ପୂଜନୀୟ ହୁଅନ୍ତି । ୨୬ ।

ହେ ନୃପ ! ସର୍ବଦା ଯୋଗ ସର୍ବ ପ୍ରକାରରେ ଆଦରଣୀୟ, କେବଳ ସେହି ବିପୁଳ ସ୍ତ୍ରୀଙ୍କୁ ରକ୍ଷା କରିଥିଲେ, ତ୍ରିଲୋକ ମଧ୍ୟରେ ଅନ୍ୟ କୌଣସି ବ୍ୟକ୍ତି ସ୍ତ୍ରୀ ଗଣଙ୍କୁ ରକ୍ଷା କରିବାକୁଁ ସମର୍ଥ ହୁଅନ୍ତି ନାହିଁ । ୨୭ ।

ବିପୁଳୋପାଖ୍ୟାନେ ତ୍ରିଚତ୍ୱାରିଂଶ ଅଧ୍ୟାୟ ସମାପ୍ତ । ୪୩ ।



# ଚତୁଶ୍ଚତ୍ୱାରିଂଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ପିତାମହ ! ସ୍ୱଜନ ଗୃହ, ପିତୃଲୋକ, ଦେବତା, ଅତିଥି ଓ ସମସ୍ତ ଧର୍ମର ଯାହା ମୂଳ ଅଟେ, ତାହା ଆପଣ ଆମ୍ଭଙ୍କୁ କହିବା ହେଉନ୍ତୁ । ୧ । ହେ ବସୁଧାଧିପ ! କାଦୃଶ ବରଙ୍କୁ କନ୍ୟା ପ୍ରଦାନ କରିବାର ଉଚିତ୍, ଏହିକଥା ସମସ୍ତ ଧର୍ମ ମଧ୍ୟରେ ଅତିଶୟ ଚିନ୍ତନୀୟ । ୨ । ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ସ୍ୱଭାବ, ଚରିତ୍ର, ବିଦ୍ୟା, ଯୋନି ଅର୍ଥାତ୍ ମାତୃକୁଳ ଓ ପିତୃକୁଳ ଶୁଦ୍ଧି ଏହି କର୍ମକୁ ଉତ୍ତମରୂପେ ଜାଣି ସାଧୁଗଣ ଗୁଣକାମ୍ୟ ବରଙ୍କୁ କନ୍ୟା ପ୍ରଦାନ କରିବେ । ୩ ।

ହେ ଯୁଧିଷ୍ଠିର ! ଉକ୍ତ ଗୁଣଯୁକ୍ତ ବିବାହ ଯୋଗ୍ୟ ବରଙ୍କୁ ଆହ୍ୱାନ ପୂର୍ବକ ଧନ ନାନାବିଧ ଦ୍ୱାରା ସନ୍ତୁଷ୍ଟ କରି ଯେଉଁ କନ୍ୟାଦାନ କରାହୁଏ, ସାଧୁ

ବ୍ରାହ୍ମଣ ଗଣଙ୍କର ତାହା ବ୍ରାହ୍ମଧର୍ମ ଅଟେ । ଏ ବଶିଷ୍ଟ କ୍ଷତ୍ରିୟ ଗଣଙ୍କର ମଧ୍ୟ ସନାତନ ଧର୍ମ ଅଟେ । ହେ ଯୁଧିଷ୍ଠିର ! ଆପଣାର ଅଭିପ୍ରାୟ ବ୍ୟତିରେକେ ଯେଉଁ ବର, କନ୍ୟାର ଅଭିପ୍ରେତ ହେବେ, ଏବଂ ଯେଉଁ କନ୍ୟା ବରର ଅଭିପ୍ରେତ ହେବେ, ସେହି ବରଙ୍କୁ ସେହି କନ୍ୟା ପ୍ରଦାନ କଲେ, ତାଦୃଶ ବିବାହକୁ ବେଦଜ୍ଞ ବ୍ୟକ୍ତିଗଣ ଗାନ୍ଧର୍ବ ବିବାହ ବୋଲି କହନ୍ତି ।୬। ହେ ନୃପ ! ବାନ୍ଧବୀଗଣଙ୍କୁ ପ୍ରଲୋଭନ ପୂର୍ବକ ବହୁଧନ ଦ୍ୱାରା କ୍ରୟ କରି ଯେଉଁ ବିବାହ ହୁଏ, ମନୀଷିଗଣ ତାହାକୁ ଅସୁର ବିବାହ ବୋଲି କହନ୍ତି । ୭ ।

ହେ ତାତ ! ରୋରୁଦ୍ୟମାନ ମାନବଗଣଙ୍କୁ ହନନ ଓ ସେମାନଙ୍କର ଶୀର୍ଷ ଛେଦନ କରି ରୋରୁଦ୍ୟମାନା କନ୍ୟାଙ୍କୁ ଗୃହ ମଧ୍ୟରୁ ବଳପୂର୍ବକ ହରଣ କରି ଯେଉଁ ବିବାହ ହୁଏ, ତାହାକୁ ରାକ୍ଷସ ବିବାହ ବୋଲି କହନ୍ତି । ୮ । ହେ ଯୁଧିଷ୍ଠିର ! ଏହି ପଞ୍ଚବିଧ ବିବାହ ମଧ୍ୟରେ ତିନିଗୋଟି ଧର୍ମ ସଙ୍ଗତ ଏବଂ ଦୁଇଗୋଟି ଧର୍ମ ବିରୁଦ୍ଧ । ପୈଶାଚ ବିବାହ ରାକ୍ଷସ ବିବାହର ଅନ୍ତର୍ଗତ ଅଟେ । ସେହି ବିବାହର କନ୍ୟା-ହରଣାନନ୍ତର ବିବାହ ହୁଏ । ତାହା ଆସୁର ବିବାହ କଦାପି କର୍ତ୍ତବ୍ୟ ନୁହେଁ । ୯ ।

ହେ ନରଶ୍ରେଷ୍ଠ ! ବ୍ରାହ୍ମ, କ୍ଷାତ୍ର ଓ ଗାନ୍ଧର୍ବ ଏହି ତ୍ରିବିଧ ବିବାହ ଧର୍ମସଙ୍ଗତ ଅଟେ । ପୃଥକ ଅଥବା ମିଶ୍ର ରୂପରେ ଏହି ତ୍ରିବିଧ ବିବାହ କର୍ତ୍ତବ୍ୟ, ଏହି ବିଷୟରେ ସନ୍ଦେହ ନାହିଁ । ୧୦ । ବ୍ରାହ୍ମଣଙ୍କର ବ୍ରାହ୍ମଣ, କ୍ଷତ୍ରୀୟ ଓ ବୈଶ୍ୟ ଜାତୀୟା ତିନିଗୋଟି ଭାର୍ଯ୍ୟା, କ୍ଷତ୍ରିୟର କ୍ଷତ୍ରିୟ ଓ ବୈଶ୍ୟ ଜାତୀୟା ଦୁଇଗୋଟି ଭାର୍ଯ୍ୟା ଏବଂ ବୈଶ୍ୟର ସ୍ୱଜାତୀୟା କନ୍ୟା କେବଳ ଭାର୍ଯ୍ୟା ହେବେ । ସେହି ସମସ୍ତ ଭାର୍ଯ୍ୟାଙ୍କଠାରେ ଯେଉଁ ସନ୍ତାନ ସମୂହ ଜନ୍ମିବେ ସେମାନେ ସମାନ ସମ୍ମାନ ପ୍ରାପ୍ତ ହେବେ । ୧୧ ।

ବ୍ରାହ୍ମଣଙ୍କର ବ୍ରାହ୍ମଣୀଭାର୍ଯ୍ୟା, କ୍ଷତ୍ରୀୟଙ୍କର କ୍ଷତ୍ରୀୟାଭାର୍ଯ୍ୟା, ଜ୍ୟେଷ୍ଠା ଅପର ଅର୍ଥାତ୍ ଯାଜ୍ଞବଲ୍କ୍ୟାଦିମାନେ କହନ୍ତି ବ୍ରାହ୍ମଣଙ୍କର ଓ କ୍ଷତ୍ରିୟଙ୍କର ରତି ନିମିତ୍ତ ଶୂଦ୍ରକନ୍ୟା ଭାର୍ଯ୍ୟା ହେବେ ନାହିଁ । ୧୨ । ଶୂଦ୍ରା ପତ୍ନୀଙ୍କଠାରେ ସନ୍ତାନ ଉତ୍ପାଦନ ସାଧୁଗଣଙ୍କର ପ୍ରଶଂସିତ ନୁହେଁ । ବିପ୍ର ଯଦି ଶୂଦ୍ରାଠାରେ

ପୁତ୍ର ଉତ୍ପାଦନ କରନ୍ତି, ତେବେ ସାଧୁମାନେ ତାହାଙ୍କୁ ପ୍ରଶଂସା କରନ୍ତି ନାହିଁ । ଶୂଦ୍ରାଠାରେ ପୁତ୍ର ଉତ୍ପାଦନ କଲେ ସେ ପ୍ରାୟଶ୍ଚିତର ଯୋଗ୍ୟ ହୁଅନ୍ତି । ୧୩ । ତ୍ରିଂଶତ ବର୍ଷୀୟ ପୁରୁଷ ନଗ୍ନିକା ଅର୍ଥାତ ସ୍ତ୍ରୀ ଲକ୍ଷଣ ଶୂନ୍ୟା ଏକବସ୍ତ୍ରା ଦଶବର୍ଷିୟା କନ୍ୟାଙ୍କୁ ଏବଂ ଏକ ବିଂଶତି ବର୍ଷିୟ ପୁରୁଷ ସପ୍ତ ବର୍ଷିୟା କନ୍ୟାଙ୍କୁ ଭାର୍ଯ୍ୟା ରୂପେ ଗ୍ରହଣ କରିବେ । ୧୪ ।

ହେ ଭରତ ଶ୍ରେଷ୍ଠ ! ଯେଉଁ କନ୍ୟାର ଭ୍ରାତା ଅଥବା ପିତା ନଥିବେ ତାହାଙ୍କୁ କଦାପି ବିବାହ କରିବ ନାହିଁ । କାରଣ ସେହି କନ୍ୟା ତାହା ପିତାର ପୁତ୍ର ସ୍ଥାନୀୟା ହୋଇ ପାରନ୍ତି । ୧୫ । ସତ୍ପ କନ୍ୟା ଋତୁମତି ହୋଇ ତିନବର୍ଷ ପର୍ଯ୍ୟନ୍ତ ଅପେକ୍ଷା କରିବେ । ଚତୁର୍ଥ ବର୍ଷ ଉପସ୍ଥିତ ହେଲାରୁ ସ୍ୱୟଂ ସ୍ୱାମୀ ଅନ୍ୱେଷଣ ପୂର୍ବକ ଗ୍ରହଣ କରିବେ । ୧୬ । ସ୍ୱୟଂ ପତି ଗ୍ରହଣ କଲେ ସ୍ତ୍ରୀ ସନ୍ତାନହୀନା କ ରତି ହୀନା ହୁଅନ୍ତି ନାହିଁ । ଯେଉଁ ସ୍ତ୍ରୀ ଏହାର ଅନ୍ୟଥାଚରଣ କରନ୍ତି, ସେ ପ୍ରଜାପତିଙ୍କ ନିକଟରେ ଓ ଜନ ସମାଜରେ ନିନ୍ଦନୀୟା ହୁଅନ୍ତି । ୧୭ । ଯେଉଁ କନ୍ୟା ମାତାର ସପିଣ୍ଡା ଓ ପିତାର ସଗୋତ୍ରା ନୁହନ୍ତି, ତାହାଙ୍କୁ ବିବାହ କରିବ । ମନୁ ତାହାଙ୍କୁ ଧର୍ମ ବୋଲି କହିଅଛନ୍ତି । ୧୮ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! କେହି ଶୁଳ୍କଦାନ କରନ୍ତି ଅପରେ "ଦାନକଲୁ" ଏହି କଥା କହନ୍ତି, କେହି ଅବା "ବଳପୂର୍ବକ ହରଣ କରିବୁଁ" ବୋଲି କହନ୍ତି । ଅନ୍ୟ ବ୍ୟକ୍ତି ଧନ ପ୍ରଦର୍ଶନ କରନ୍ତି । ୧୯ । ହେ ପିତାମହ ! କେହି ଅବା ପାଣିଗ୍ରହଣ କରନ୍ତି ଅତଏବ ସେହି କନ୍ୟା କାହାର ଭାର୍ଯ୍ୟା ହେବେ ? ଆମ୍ଭେ ଯଥାର୍ଥ ତତ୍ତ୍ୱ ଜାଣିବାକୁ ଇଚ୍ଛା କରୁଅଛୁଁ, ଆପଣ ଆମ୍ଭମାନଙ୍କର ଚକ୍ଷୁ ସ୍ୱରୂପ ହେଉନ୍ତୁ । ୨୦ ।

ଭୀଷ୍ମ କହିଲେ, ମନୁଷ୍ୟଗଣଙ୍କର ହିତଜନକ "ଏହି କନ୍ୟା ଏହାଙ୍କର ଭାର୍ଯ୍ୟା" ଇତ୍ୟାଦି ବ୍ୟବସ୍ଥା ନିମନ୍ତେ ମନ୍ତ୍ରବିତ୍ ବ୍ୟକ୍ତିମାନଙ୍କ ଦ୍ୱାରା ଯେଉଁ କୌଣସି କର୍ମ ମନ୍ତ୍ରିତ ହେବାର ଦୃଷ୍ଟ ହୋଇଥାଏ, ତାହାକୁ ମିଥ୍ୟା କଲେ ପାତକ ହୁଏ । ୨୧ । ଭାର୍ଯ୍ୟା, ପୁତ୍ର, ଋତ୍ୱିକ, ଆଚାର୍ଯ୍ୟ,

ଶିଷ୍ୟ, ଉପାଧ୍ୟାୟ ଏହିମାନେ ମିଥ୍ୟା କହିଲେ ପ୍ରାୟଶ୍ଚିତ୍ତର ଯୋଗ୍ୟ ହୁଅନ୍ତି । ଅପର ଜନମାନେ ତାହାନୁହେ ଏହି କଥା କହନ୍ତି । ୨୨ ।

ଆକାମ ମନୁଷ୍ୟଙ୍କ ସହିତ ସହବାସ କରିବାକୁ ମନୁ ପ୍ରଶଂସା କରନ୍ତି ନାହିଁ । ମିଥ୍ୟା ଧର୍ମକୋପନ ଅଯଶସ୍କର ଓ ଅଧର୍ମ କର ଅଟେ । ୨୩ । ଏକ ବ୍ୟକ୍ତିଙ୍କଠାରେ ଏକାନ୍ତ ଦୋଷ ଉତ୍ପନ୍ନ ହୁଏନାହିଁ । ବନ୍ଧୁଗଣ ପାଣିଗ୍ରହଣ ବିଧି ଅନୁସାରେ ଯେଉଁ କନ୍ୟାଙ୍କୁ ଦାନକରନ୍ତି, ତାହାଙ୍କୁ ହରଣ କଲେ ଦୋଷ ନାହିଁ । ହେ ଭରତ ! ବନ୍ଧୁଗଣ ଧର୍ମାନୁସାରେ ଯେଉଁ କନ୍ୟାଙ୍କୁ ପ୍ରଦାନ କରନ୍ତି ଅଥବା ଯାହାକୁ ନିୟ କରାଯାଏ, ବନ୍ଧୁଗଣଙ୍କର ଅନୁଜ୍ଞାହେଲେ ତତ୍ ସମ୍ବନ୍ଧରେ ମନ୍ତ୍ର ଓ ହୋମ ପ୍ରୟୋଗ କରିବ । ତାହାହେଲେ ସେହି ମନ୍ତ୍ରସମୂହ ସିଦ୍ଧହୁଏ । ବନ୍ଧୁଗଣ କର୍ତ୍ତୃକ ଅଦତ୍ତ କନ୍ୟାଙ୍କ ସମ୍ବନ୍ଧରେ ମନ୍ତ୍ରପ୍ରୟୋଗ କଲେ ତାହା କଦାପି ସିଦ୍ଧହୁଏ ନାହିଁ । ୨୪ ।

ଯଦ୍ୟପି ଜ୍ଞାତିଗଣଙ୍କ ଦ୍ୱାରା କୃତ ସମ୍ପ୍ରଦାନ ନିୟମ ଗୁରୁ ଅଟେ; କିନ୍ତୁ ବନ୍ଧୁଗଣଙ୍କର ସମ୍ପ୍ରଦାନ ଉତ୍ତରେ ଭାର୍ଯ୍ୟା ପତି ଦୁହିଁଙ୍କର ନିର୍ଜନରେ ମନ୍ତ୍ରକୃତ ନିୟମ ଅତଏବ ଦୃଢ଼ତର ଏହିକଥା ପଣ୍ଡିତମାନେ କହନ୍ତି । ପତି ଧର୍ମର ଶାସନ ବଶରେ ଭାର୍ଯ୍ୟାଙ୍କୁ ପ୍ରାକ୍ତନକର୍ମଦତ୍ତ ଅଥବା ଈଶ୍ୱର-ଦତ୍ତ ଜ୍ଞାନକରି ଲାଭକରନ୍ତି । ସେ ଦୈବୀ ଏବଂ ମାନୁଷୀ ବାଣୀକୁ ଅନୃତ ଜ୍ଞାନ ପୂର୍ବକ ପରିତ୍ୟାଗ କରନ୍ତି । ୨୫ ।

ଯୁଧିଷ୍ଠିର କହିଲେ, ଯେଉଁ ଅନ୍ୟ ବ୍ୟକ୍ତିମାନେ କନ୍ୟା ନିମିତ୍ତ ଶୁଳ୍କ ଦାନ କରିଥାନ୍ତି, ଧର୍ମ କାମାର୍ଥଯୁକ୍ତ କୁଳ ଶୀଳାଦି ସମ୍ପନ୍ନ ଅନ୍ୟ ବର ଯଦି ସେହି କନ୍ୟାକୁ ଗ୍ରହଣ କରିବେ, ତେବେ ସେ ନିନ୍ଦନୀୟ ହେବେ କି ? ସେହି ବିବାହ ଅସିଦ୍ଧ ହେବ କି ? ୨୮ ।

ଶିଷ୍ଟାଭିନନ୍ଦନ ଏବଂ ବନ୍ଧୁ ସମ୍ମତିପୂର୍ବକ ବିନିଯୋଜନ, ଏ ଉଭୟ ପ୍ରକାରରେ ଦୋଷ ଉପସ୍ଥିତ ହେଲେ, କର୍ତ୍ତା କେଉଁ ପ୍ରଶସ୍ତତର ଶ୍ରେୟକୁ ଆଶ୍ରୟ କରିବେ ? ଆମ୍ଭମାନଙ୍କ ସମସ୍ତଧର୍ମ ମଧ୍ୟରେ ଏହା କେବଳ

ଅନ୍ତଃଶସ୍ତ୍ର ତନ୍ତ୍ରମାସ୍ତ । ୨୯ । ଆମ୍ଭେମାନେ ଆପଣଙ୍କ ନିକଟରୁ ଯଥାର୍ଥ ତତ୍ତ୍ୱ ଜାଣିବାକୁ ପ୍ରଶ୍ନ କରୁଅଛୁଁ । ଆପଣ ଆମ୍ଭମାନଙ୍କର ଚକ୍ଷୁ ସ୍ୱରୂପ ହେଉନ୍ତୁ । ଏହି ସମସ୍ତ ବିଷୟ ନିର୍ଣ୍ଣୟ କରିବା ହେଉନ୍ତୁ । ଆପଣଙ୍କର ବାକ୍ୟ ଶ୍ରବଣ କରି ଆମ୍ଭର ତୃପ୍ତିର ସୀମା ହେଉନାହିଁ । ୩୦ ।

ଭୀଷ୍ମ କହିଲେ, ଶୁଳ୍କ ଗ୍ରହଣ କଲେ ବି ବିବାହ ଶୁଦ୍ଧହୁଏ । କର୍ତ୍ତା ଏହା ଜାଣି କିଛି ଶୁଳ୍କ ଗ୍ରହଣ କରିବେ ନାହିଁ । ଏବଂ ସାଧୁଗଣ ଶୁଳ୍କଗ୍ରହଣ ପୂର୍ବକ କଦାପି କନ୍ୟାଦାନ କରନ୍ତି ନାହିଁ । ଅତଏବ ଯାଦୃଚ୍ଛିକ ବିଷୟ ବିଷୟ ବ୍ୟବହାରରେ କନ୍ୟାର ଅପହରଣ ପାପର କାରଣ ହୁଏନାହିଁ । । ୩୧ । ବର ଯଦି ବର୍ତ୍ତମାନାଧିକ ହୁଅନ୍ତି, ତେବେ ବାନ୍ଧବଗଣ ଶୁଳ୍କ ପ୍ରାର୍ଥନା କରନ୍ତି, ଯେ ଅନୁକୂଳ ଭାବରେ ଦାନ କରନ୍ତି, ସେ "କନ୍ୟାଙ୍କୁ ଅଳଙ୍କାର ଦେଇ ବିବାହ କର" ଏହି କଥା କହନ୍ତି । ୩୨ ।

ଯେଉଁମାନେ ଏହି ପ୍ରକାରରେ କନ୍ୟା ଦାନ କରନ୍ତି, ତାଦୃଶ ବିବାହ ଶୁଳ୍କ ଗ୍ରହଣପୂର୍ବକ ବିନିମୟ ହୁଏ ନାହିଁ । ପ୍ରତିଗ୍ରହ କଲେ ଦେବାକୁ ହେବ । ଏହା ସନାତନ ଧର୍ମ । ୩୩ । ଯେଉଁମାନେ ପୂର୍ବେ "ଆମ୍ଭେ ତୁମ୍ଭଙ୍କୁ କନ୍ୟାଦାନ କରିବୁଁ" ଏହି କଥା କହିଥାନ୍ତି, ଯେଉଁମାନେ "ଅବଶ୍ୟ ଦାନ କରିବୁଁ" ଏହିକଥା କହନ୍ତି, ତାହାସବୁ ଅନୃତବାକ୍ୟ ସଦୃଶ । ।୩୪। ଅତଏବ ଯେତେବେଳଯାଏ ପାଣିଗ୍ରହଣ ହୋଇନାହିଁ, ତାବତ୍‌କାଳ ପର୍ଯ୍ୟନ୍ତ ବର କନ୍ୟା ପରସ୍ପର ପ୍ରାର୍ଥନା କରୁଥାନ୍ତି । ଆମ୍ଭେମାନେ ଶୁଣିଅଛୁଁ ଯେ ଯାବତ୍ କାଳ ପର୍ଯ୍ୟନ୍ତ କନ୍ୟା ସମ୍ପ୍ରଦାନ ହୋଇ ନଥାଏ, ତାବତ୍ ପର୍ଯ୍ୟନ୍ତ ତାହାକୁ ସମସ୍ତେ ପ୍ରାର୍ଥନା କରିପାରିବେ । ଦେବଗଣ କନ୍ୟା ସମ୍ବନ୍ଧରେ ଏହିପରି ବରଦାନ କରି ଅଛନ୍ତି; ଅନିଷ୍ଟ ପାତ୍ରଙ୍କୁ କନ୍ୟାଦାନ କରିବ ନାହିଁ; ଏହା ଋଷି ବାକ୍ୟ ଅଟେ ।

କନ୍ୟା କାମର ମୂଳ ଏବଂ ଅପତ୍ୟର ମୂଳ; ଅତଏବ ଯେଉଁ ବ୍ୟକ୍ତି ଉତ୍କୃଷ୍ଟ ଦୌହିତ୍ର ପ୍ରାର୍ଥନା କରନ୍ତି, ସେ କଲ୍ୟାଣ ନିମିତ୍ତ ଉତ୍କୃଷ୍ଟପାତ୍ରଙ୍କୁ କନ୍ୟାଦାନ କରିବେ । ଆମ୍ଭେ ଏହା ବିବେଚନା କରୁଅଛୁ । ୩୬ । ଉତ୍ତର

ମନ୍ଥରପୂ ବଶରଃ ଜୟ ବନ୍ଧପୁର ବନ୍ଧୁଳ ଦୋଷ ଦର୍ଶନ କର କ୍ଲାନ୍ତ ହୁଅ। ଅନଷ୍ଟଙ୍କର ଶୁଳ୍କ ବିବାହ ସିଦ୍ଧ ନିମିତ୍ତ ଯେ କଦାପି କାରଣ ନୁହେଁ, ତାହା ଶ୍ରବଣ କର । ୩୭ । ଆମ୍ଭେ ପୂର୍ବେ ମଗଧ କାଶୀ ଓ କୋଶଳ ଭୂପାଳ-ଗଣଙ୍କୁ ଜୟ କରି ବିଚିତ୍ରବୀର୍ଯ୍ୟଙ୍କ ନିମିତ୍ତ ଦୁଇଗୋଟି କନ୍ୟା ହରଣ କରିଥିଲୁ । ୩୮ । ତନ୍ମଧ୍ୟରୁ ଗୋଟିଏ କନ୍ୟାର ପାଣିଗ୍ରହଣ ହୋଇଥିଲା । ଅନ୍ୟଟି ପରାକ୍ରମଦ୍ୱାରା ବର୍ଜିତ ହୋଇ ମଧ୍ୟ ଗୃହୀତା ହୋଇ ନ ଥିଲେ । କାରଣ ମହାପୂ ପିତୃବ୍ୟ କୁରୁ ବଂଶୀୟ ବାହ୍ଲୀକଙ୍କ ବଚନାନୁସାରେ ଆମ୍ଭେ ତାହାଙ୍କୁ ସେହିଠାରେ ତ୍ୟାଗ କରିଥିଲୁଁ ଓ ଅପର କନ୍ୟାଙ୍କୁ ଆଣିଥିଲୁଁ । ୩୯ ।

ଆମ୍ଭେ ତାହାଙ୍କ ବାକ୍ୟରେ ଶଙ୍କାଯୁକ୍ତ ହୋଇ ଅନ୍ୟାନ୍ୟ ବ୍ୟକ୍ତିଙ୍କୁ ତଦ୍‌ବିଷୟ ପ୍ରଶ୍ନ କଲୁଁ । ପିତୃବ୍ୟଙ୍କ ନିକଟରୁ ଧର୍ମ ଜାଣିବାର ଇଚ୍ଛା ଆମ୍ଭର ଅତିଶୟ ପ୍ରବଳ ହୋଇଥିଲା । ହେ ରାଜନ ! ସେହି କାରଣରୁ ଆମ୍ଭେ ଆଗୁର ଜାଣିବା ନିମିତ୍ତ ଅଭିଳାଷୀ ହୋଇ ତାହାଙ୍କୁ ବାରମ୍ବାର କହିଲୁ । ହେ ପିତୃବ୍ୟ ! ଆମ୍ଭେ ଆପଣଙ୍କ ନିକଟରୁ ଯଥାର୍ଥ ଆଗୁର ଜାଣିବାକୁ ଇଚ୍ଛା କରୁଅଛୁ । ମହାରାଜ ! ଆମ୍ଭେ ଏହିପରି କହିବାରୁ ଧାର୍ମିକ ପ୍ରବର ମହାପୂ ପିତୃବ୍ୟ ବାହ୍ଲୀକ ଆମ୍ଭଙ୍କୁ ଏହି ବାକ୍ୟ କହିଲେ ଯେ, (୪୨) ଶୁଳ୍କ ଦ୍ୱାରା ବିବାହ ସିଦ୍ଧ ହୁଏ । ଏହା ଯଦି ତୁମ୍ଭମାନଙ୍କ ଅଭିପ୍ରେତ ହୋଇଥାଏ, ତେବେ ଆଉ ପାଣିଗ୍ରହଣର ଆବଶ୍ୟକ କି ? ଯେଉଁ କନ୍ୟା ଶୁଳ୍କ ପ୍ରଦତ୍ତ ହୋଇ-ଅଛି, ତାହା ନିମିତ୍ତ ଲାଜାପ୍ରଭୃତି ହୋମୀୟଦ୍ରବ୍ୟ ଆୟୋଜନ କରିବାରେ ପ୍ରୟୋଜନ କି ? ୪୩ ।

ଧର୍ମଜ୍ଞ ବ୍ୟକ୍ତିଗଣ ବଚନ ଦାନକୁ କନ୍ୟାଦାନର ପ୍ରମାଣ ବୋଲି କହନ୍ତି ନାହିଁ । ଯେଉଁମାନଙ୍କର ଶୁଳ୍କଦାନ ଦ୍ୱାରା ବିବାହ ସିଦ୍ଧ ହୁଏ, ପାଣି-ଗ୍ରହଣ ତାଦୃଶ କାର୍ଯ୍ୟକର ନୁହେଁ, ଏହିପରି ଅଭିପ୍ରାୟ ଥାଏ । ସେହି-ମାନଙ୍କର ଦାନ ବିଷୟରେ ଅଭିପ୍ରେତ ନ ଥାଏ ଏବଂ ତହିଁରେ ଲୋକ-ମାନଙ୍କର ପ୍ରତୀତ ଜନ୍ମେ ନାହିଁ । ଯେଉଁମାନେ ଶୁଳ୍କକୁ କ୍ରୟ ମୂଲ୍ୟ ବୋଲି ଜାଣନ୍ତି, ସେମାନେ ଧର୍ମଜ୍ଞ ନୁହନ୍ତି । ୪୫ । ତାଦୃଶ ବ୍ୟକ୍ତିମାନଙ୍କୁ କନ୍ୟା ଦାନ କରିବାର ଉଚିତ ନୁହେଁ ଏବଂ ତଥାବିଧ କନ୍ୟାଙ୍କ ମଧ୍ୟ ବିବାହ

କରିବାର ଅନୁଚିତ । ଭାର୍ଯ୍ୟାଙ୍କୁ କଦାପି କ୍ରୟ ଅବା ବିକ୍ରୟ କରିବାର ବିଧେୟ ନୁହେଁ । ଯେଉଁମାନେ ଭାର୍ଯ୍ୟାଙ୍କୁ ଦାସୀ ସଦୃଶ କ୍ରୟ ଓ ବିକ୍ରୟ କରନ୍ତି, ସେହି ପାପ ଚେତା ନରଗଣଙ୍କର ତଦ୍‌ବତ୍ ବିବାହ କର୍ମ ନିଷ୍ପତ୍ତି ହୋଇଥାଏ; କିନ୍ତୁ ତହିଁରେ ଭାର୍ଯ୍ୟାତ୍ୱ ସିଦ୍ଧ ହୁଏ ନାହିଁ । ୪୭ ।

ଏହି ବିଷୟରେ ପୂର୍ବକାଳରେ ଜନଗଣ ସତ୍ୟବାନଙ୍କୁ ପଚାରିଥିଲେ ଯେ, ଯେଉଁ କୌଣସି ବ୍ୟକ୍ତି କନ୍ୟା ନିମିତ୍ତ ଶୁଳ୍କ ପ୍ରଦାନ କରିଥିଲେ, ସେ ଉପରତ ହେବାରୁ ଅନ୍ୟବ୍ୟକ୍ତି ସେହି ପ୍ରାପ୍ତ ଶୁଳ୍କା କନ୍ୟାଙ୍କର ପାଣିଗ୍ରହଣ ଯେବେ କରନ୍ତି, 'ଅତଏବ ଏ ବିଷୟରେ ଆମ୍ଭମାନଙ୍କର ଧର୍ମ ସଂଶୟ ହେଉଅଛି । ଅତଏବ ହେ ମହାପ୍ରାଜ୍ଞ ! ଆପଣ ପ୍ରାଜ୍ଞ ସମ୍ମତ ସେହି କାରଣରୁ ଆମ୍ଭମାନଙ୍କର ଏହି ସଂଶୟ ଛେଦନ କରନ୍ତୁ । ଆମ୍ଭେମାନେ ତତ୍ତ୍ୱ ପ୍ରଶ୍ନ କରୁଅଛୁ । ଆପଣ ଆମ୍ଭମାନଙ୍କର ଚକ୍ଷୁସ୍ୱରୂପ ହେଉନ୍ତୁ । ସେମାନେ ସମସ୍ତେ ଏହିପରି କହିବାରୁ ସତ୍ୟବାନ କହିଲେ । ୫୦ ।

ଯାହାକୁ ଇଚ୍ଛା ହେବ ତାହାକୁ କନ୍ୟା ଦାନ କରିବ । ଏହି ବିଷୟରେ କିଛି ବିଚାରଣା କରିବ ନାହିଁ । ଶିଷ୍ଟଗଣ ଜୀବିତ ଶୁଳ୍କଦାତାଙ୍କୁ ଏହିପରି ଅନାଦର କରି ଯାହାଙ୍କୁ ଇଚ୍ଛାହୁଏ ସେହି ବ୍ୟକ୍ତିଙ୍କୁ ଦାନ କରିଥାଆନ୍ତି । ଅତଏବ ମୃତ ଶୁଳ୍କଦାତାଙ୍କ ବିଷୟରେ କୌଣସି ସଂଶୟ ନାହିଁ । ୫୧ । ଶୁଳ୍କଦାତା ମୃତ ହେଲାରୁ କନ୍ୟା ଯୁଗାନ୍ତର ନିୟମାନୁସାରେ ଦେବରଙ୍କୁ ବରଣ କରିବେ । ଅଥବା ସେହି ଶୁଳ୍କଦାତାଙ୍କ ପାଣିଗ୍ରହଣ କାମନାରେ ବ୍ରତାବଲମ୍ବନପୂର୍ବକ ତପସ୍ୟା କରିବେ । ୫୨ । କୌଣସି କୌଣସି ବ୍ୟକ୍ତିଙ୍କ ମତରେ ଦେବର ପ୍ରଭୃତି ଅନୁପଭୁକ୍ତ ଭ୍ରାତୃଭାର୍ଯ୍ୟାଙ୍କୁ ସୁରତ କାର୍ଯ୍ୟରେ ପ୍ରବୃତ୍ତ କରିବେ । ଅପରଙ୍କ ମତରେ ଏହି ପ୍ରବୃତ୍ତି ମନ୍ଥର ଅର୍ଥାତ୍ ଶୈଥିଲ୍ୟ ପ୍ରବୃତ୍ତି ଅଟେ କିନ୍ତୁ ବିଧିଦୃଷ୍ଟା ନୁହେଁ । ୫୩ ।

ଏ ବିଷୟରେ ଯେଉଁମାନେ ବିବାଦ କରନ୍ତି, ସେମାନେ ପୂର୍ବୋକ୍ତ ରୂପ ନିଶ୍ଚୟ ଜ୍ଞାନ କରିଥାନ୍ତି । ଅତଏବ ପାଣିଗ୍ରହଣରେ ପୂର୍ବରେ ଅଥବା ତନ୍ମଧ୍ୟରେ ଯେଉଁ ସମସ୍ତ ହରିଦ୍ରା ଲେପନ, ସ୍ନାନ ପ୍ରଭୃତି ମଙ୍ଗଳକାର୍ଯ୍ୟ ନି

ମନ୍ତ୍ର ପାଠାଦି ସମ୍ବନ୍ଧରେ ନିଷ୍ପନ୍ନ ହୁଏ, ତାଦୃଶ ଅବକାଶ କାଳ ସମ୍ବନ୍ଧରେ ଥାଏ, ତନ୍ମଧ୍ୟରେ, ପୂର୍ବୋକ୍ତ ନିୟମ ସଙ୍ଗତ ହୁଏ । ଏବଂ ସଂକଳ୍ପ ପୂର୍ବକ ପ୍ରଦତ୍ତ କନ୍ୟାଙ୍କ ଅପହରଣ ଓ ସେହି ନିମିତ୍ତ ମିଥ୍ୟା କଥା କହିଲେ ପାତକ ହୁଏ । ୫୪ ।

ସପ୍ତପଦୀ ଗମନ ଉତ୍ତାରେ ପାଣିଗ୍ରହଣ ମନ୍ତ୍ର ସମସ୍ତଙ୍କର ନିଷ୍ପତ୍ତି ହୋଇଥାଏ । ଜଳସ୍ପର୍ଶ ପୂର୍ବକ ଯାହାକୁ ପ୍ରଦାନ କରାଯାଏ, କନ୍ୟା ସେହି ପାଣିଗ୍ରହୀତାର ଭାର୍ଯ୍ୟା ହୁଏ । ସପ୍ତମପଦର ପୂର୍ବେ ଭର୍ତ୍ତାଙ୍କ ମରଣ ସଗୋତ୍ର ପ୍ରଭୃତି ଜ୍ଞାନ ଜାତ ହେଲେ ସୁଦ୍ଧା ଅନ୍ୟ ବ୍ୟକ୍ତିଙ୍କୁ ପ୍ରଦାନ କଲେ ମିଥ୍ୟାବାଦ ଦୋଷ ହୁଏ ନାହିଁ । ବକ୍ଷ୍ୟମାଣ ରୂପେ କନ୍ୟା ସମ୍ପ୍ରଦାନ କର୍ତ୍ତବ୍ୟ; ପଣ୍ଡିତମାନେ ଏହା ନିଶ୍ଚୟ କରି ଜାଣନ୍ତି । ଦ୍ୱିଜଶ୍ରେଷ୍ଠ ଅନୁକୂଳା ସ୍ୱବଂଶର ଅନୁରୂପା ଭ୍ରାତୃ ଜରା କନ୍ୟାଙ୍କୁ ଅଗ୍ନିସମୀପରେ ପରିକ୍ରମ ପୂର୍ବକ ଯଥା ନ୍ୟାୟରେ ଗ୍ରହଣ କରିବେ । ୫୬ ।

ବିବାହ କଥନେ ଚତୁଶ୍ଚତ୍ୱାରିଂଶ ଅଧ୍ୟାୟ ସମାପ୍ତ । ୪୪ ।



# ପଞ୍ଚ ଚତ୍ୱାରିଂଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ପିତାମହ ! କନ୍ୟାଙ୍କର ଶୁଳ୍କ ଦାତା ପତି ଯଦି ଚିର ପ୍ରବାସୀ ହୁଅନ୍ତି, ତେବେ ତଦ୍‌ବିଷୟରେ ତାହାଙ୍କର କି ପ୍ରକାର ବ୍ୟବହାର କର୍ତ୍ତବ୍ୟ, ଆପଣ ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୧ । ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ସମୃଦ୍ଧିଶାଳୀ ପୁତ୍ରହୀନ ପିତାର ପ୍ରତିପାଳ୍ୟା କନ୍ୟା ନିମିତ୍ତ ଯେଉଁ ଶୁଳ୍କ ଗୃହୀତ ହୋଇଥାଏ, ତାହା ଯଦି ବର ପକ୍ଷୀୟ ବ୍ୟକ୍ତିଗଣଙ୍କୁ ପ୍ରତ୍ୟର୍ପଣ କରାଯାଏ, ତେବେ ସେହି କନ୍ୟା ପିତାଙ୍କର ପ୍ରତିପାଲ୍ୟା କନ୍ୟା ହେବ । ଯଦି କନ୍ୟା ପିତା ବର ପକ୍ଷୀୟମାନଙ୍କୁ ଶୁଳ୍କ

ପ୍ରତ୍ୟର୍ପଣ ନ କରନ୍ତି, ତେବେ କନ୍ୟା ଶୁଳ୍କଦାତାଙ୍କର ଗୀତା ହୋଇ ରହିବେ । ୨ ।

ଏପରି ସ୍ଥଳରେ ସେହି କନ୍ୟା ଶୁଳ୍କଦାତାଙ୍କ ଉପକାର ନିମିତ୍ତ ନ୍ୟାୟାନୁସାରେ ଅନ୍ୟ ପୁରୁଷ ଦ୍ୱାରା ସନ୍ତାନ ଉତ୍ପାଦନ କରିବାକୁ ଚେଷ୍ଟା କରିବେ, ଅତଏବ ସେହି ଶୁଳ୍କଦାତାଙ୍କ ଭିନ୍ନ ଅନ୍ୟ କେହି ସେହି କନ୍ୟାଙ୍କୁ ମନ୍ତ୍ରୋଚ୍ଚାରଣ ପୂର୍ବକ ପରିଣୟ କରିବେ ନାହିଁ । ୩ । ସାବିତ୍ରୀ ପିତାଙ୍କ ଆଦେଶାନୁସାରେ ସ୍ୱୟଂ ଯାହାଙ୍କୁ ବରଣ କରିଥିଲେ, ତାହାଙ୍କୁ ବିବାହ କଲେ । ତାହାଙ୍କର ସେହି କାର୍ଯ୍ୟକୁ କେହି କେହି ପ୍ରଶଂସା କରନ୍ତି, କିନ୍ତୁ ଧର୍ମଜ୍ଞ ମାନବମାନେ ତଦ୍ବିଷୟରେ ଅନୁମୋଦନ କରନ୍ତି ନାହିଁ; କାରଣ ଅନ୍ୟାନ୍ୟ ସାଧୁଗଣ ଏ ପ୍ରକାର ଆଚରଣ କରନ୍ତି ନାହିଁ । ସାଧୁଗଣଙ୍କର ଆଚରଣ ଗୁରୁତର ଧର୍ମଲକ୍ଷଣ ବିଦେହ ରାଜ ମହାତ୍ମା ଜନକଙ୍କ ପୌତ୍ର ସୁକ୍ରତୁ ଏହି ପ୍ରକରଣରେ ବକ୍ଷ୍ୟମାଣ ବାକ୍ୟ କହିଥିଲେ । ୬ । ଅସାଧୁଗଣ କର୍ତ୍ତୃକ ଆଚରିତ ପଥରେ କେଉଁପରି ଅନୁବର୍ତ୍ତନ କରାଯାଇ ପାରେ ? ଏ ବିଷୟରେ ପ୍ରଶ୍ନ ଅଥବା ପରିପୃଚ୍ଛା ସାଧୁମାନଙ୍କ ନିକଟରେ କୀର୍ତ୍ତନ କରିବ । ୭ ।

ସ୍ତ୍ରୀମାନଙ୍କର ଅସ୍ୱାଧୀନତା ଧର୍ମକୁ ଖଣ୍ଡନ କରିବାର ଅସୁର ଧର୍ମ ଅଟେ; ପୂର୍ବ ବୃଦ୍ଧଗଣଙ୍କର ବିବାହ କାର୍ଯ୍ୟରେ ସ୍ତ୍ରୀ ଲୋକଙ୍କର ସ୍ୱାଧୀନତା ପଦ୍ଧତିକ ଆମ୍ଭେମାନେ କଦାପି ଶ୍ରବଣ କରିନାହୁଁ । ୮ । ଭାର୍ଯ୍ୟା ଓ ପତିଙ୍କର ଅଦୃଷ୍ଟ ସନ୍ଧାନରୂପ ସମ୍ବନ୍ଧ ଅତି ସୂକ୍ଷ୍ମ, ତାହା ସର୍ବାଙ୍ଗ ସୁନ୍ଦର ନ ହେଲେ ସିଦ୍ଧ ହୁଏ ନାହିଁ, ଅତଏବ ତାଦୃଶ ସମ୍ବନ୍ଧ ନ ଘଟିଲେ କେବଳ ରତି ନିମିତ୍ତ ଯଥା କଥଂଚିତ୍ ରୂପରେ ଦାରପରିଗ୍ରହ କରିବାର ଉଚିତ ନୁହେଁ; କିନ୍ତୁ ସେହି ପାର୍ଥିବ ରତିକୁ ସାଧାରଣ ଧର୍ମ ବୋଲି ମଧ୍ୟ କହିଥିଲେ । ୯ । ଯୁଧିଷ୍ଠିର କହିଲେ, ସେହି ପୁତ୍ରହୀନ ପିତାଙ୍କର କନ୍ୟା ଯଦି ପୁତ୍ର ସଦୃଶ ଅଟେ, ତେବେ ପୁରୁଷଗଣ କେଉଁ ପ୍ରମାଣାନୁସାରେ ଧନ ଗ୍ରହଣ କରନ୍ତି ? ୧୦ ।

ଭୀଷ୍ମ କହିଲେ, ଆତ୍ମା ଅର୍ଥାତ୍ ଆପେ ଯେଉଁପରି ପୁତ୍ର ସେହିପରି, ଦୁହିତା ମଧ୍ୟ ପୁତ୍ରର ସମାନ, ଅତଏବ ଆତ୍ମସ୍ୱରୂପା ଦୁହିତା ବିଦ୍ୟମାନ

ସତ୍ତ୍ୱେ ଅନ୍ୟାନ୍ୟ ଭ୍ରାତୃ ପ୍ରଭୃତି ବ୍ୟକ୍ତିଗଣ କେଉଁ ପ୍ରକାରରେ ଧନହରଣ କରିପାରିବେ ? ୧୧ । ପୁତ୍ର ଥାଆନ୍ତୁ ଅଥବା ନଥାଆନ୍ତୁ, ମାତାଙ୍କର ଯେଉଁ ଯୌତୁକ ଧନ ଥାଏ, ତତ୍ ସମୁଦାୟରେ କୁମାରୀର ଅଧିକାର, ତହିଁରେ ପୁତ୍ର ପ୍ରଭୃତିଙ୍କର ଅଂଶ ନାହିଁ । ଦୌହିତ୍ର କେବଳ ପୁତ୍ରହୀନ ବ୍ୟକ୍ତିଙ୍କ ଧନ ଗ୍ରହଣ କରିବା ବିଷୟରେ ଅଧିକାରୀ । ୧୨ । କାରଣ ଦୌହିତ୍ର କେବଳ ନିଜ ପିତା ଓ ମାତାମହଙ୍କ ପିଣ୍ଡଦାନ କରନ୍ତି, ଅତଏବ ଧର୍ମାନୁସାରେ ପୁତ୍ର ଓ ଦୌହିତ୍ରଙ୍କ ମଧ୍ୟରେ କୌଣସି ବିଶେଷ ନାହିଁ । ୧୩ ।

ପୁତ୍ରୋତ୍ପତ୍ତିର ପୂର୍ବେ ଦୁହିତା ଜନ୍ମିଲେ ସେହି କନ୍ୟାଙ୍କୁ ପୁତ୍ରୀକରଣର ନିୟମାନୁସାରେ ଯଦି ପୁତ୍ର ସ୍ଥାପିତ କରାହୁଏ ଏବଂ ତଦନନ୍ତର ପୁତ୍ର ଜନ୍ମେ, ତେବେ ପିତୃଧନ ପଞ୍ଚଧା ବିଭକ୍ତ କରି ପୁତ୍ର ତିନିଅଂଶ ଓ କନ୍ୟା ଦୁଇଅଂଶ ଗ୍ରହଣ କରିବେ । ୧୪ । ଦତ୍ତକାଦି ପୁତ୍ର ଅପେକ୍ଷା ଔରସ ଜାତ କନ୍ୟା ଉତ୍କୃଷ୍ଟା ଅଟେ, ଅତଏବ ପୁତ୍ରୀକରଣ ଧର୍ମର କୌଣସି କାରଣ ଦୃଷ୍ଟ ହେଉନାହିଁ । ଔରସାତିରିକ୍ତ ଯେଉଁ କୌଣସି ପୁତ୍ର ବିଦ୍ୟମାନ ସତ୍ତ୍ୱେ ବିକ୍ରିତା କନ୍ୟାଙ୍କ ଗର୍ଭଜାତ ପୁତ୍ର ଦାୟଭାଗୀ ହେବେ ନାହିଁ । ୧୫ । ଯେଉଁମାନେ କନ୍ୟା ବିକ୍ରୟପୂର୍ବକ ଅସୁର ବିବାହ କରନ୍ତି, ସେହିମାନଙ୍କର ଅସୂୟାଯୁକ୍ତ ଅଧର୍ମିଷ୍ଠ ପରସ୍ୱାଦାୟୀଶଠ ପ୍ରଭୃତି ବିଷମ ବୃତ୍ତି ପୁତ୍ର ସମୂହ ଜାତ ହୁଅନ୍ତି । ୧୬ । ଧର୍ମଶାସ୍ତ୍ରଜ୍ଞ ଏବଂ ଧର୍ମଶାସ୍ତ୍ର ଓ ଧର୍ମସେତୁରେ ନିବଦ୍ଧ ପୁରାବୃତ୍ତ ପଣ୍ଡିତଗଣ ଏହି ଅସୁର ବିବାହ ନିନ୍ଦା ବିଷୟରେ ଯମ କର୍ତ୍ତୃକ ଉଦ୍‌ଗୀତ ଗାଥା ସମୂହକୁ କୀର୍ତ୍ତନ କରିଥାନ୍ତି । ୧୭ ।

ଯେଉଁ ମନୁଷ୍ୟ ସ୍ୱକୀୟ ପୁତ୍ରକୁ ବିକ୍ରୟ କରି ଧନପ୍ରାପ୍ତ ହୁଅନ୍ତି ଅଥବା ଜୀବିକା ନିର୍ବାହ ନିମିତ୍ତ ଶୁଳ୍କ ଗ୍ରହଣ ପୂର୍ବକ କନ୍ୟା ପ୍ରଦାନ କରନ୍ତି, (୧୮) ସେହି ସମସ୍ତ ମୂଢ଼ଗଣ କାଳସୂତ୍ର ନାମକ ଘୋରତର ସପ୍ତ ନରକର ପରବର୍ତ୍ତୀ ନରକରେ ସ୍ୱେଦ, ମୂତ୍ର ଓ ପୁରୀଷ ଭୋଗ କରନ୍ତି । । ୧୯ । ହେ ରାଜନ୍ ! କେହି କେହି ଆର୍ଷ ବିବାହରେ ଗୋ ମିଥୁନ ଶୁଳ୍କ ରୂପେ ପ୍ରଦାନ କରିବାକୁ କହନ୍ତି । ତାହା ମଧ୍ୟ ମିଥ୍ୟା ବାକ୍ୟ; କାରଣ

ଶୁଳ୍କ ଅଳ୍ପ ହେଉ ଅଥବା ଅଧିକ ହେଉ, ତାହା ଗ୍ରହଣ କଲେ ବିକ୍ରୟ ହୁଏ । ୨୦ । ଯଦ୍ୟପି କୌଣସି କୌଣସି ବ୍ୟକ୍ତିଙ୍କ ଦ୍ୱାରା ଏହା ଆଚରିତ ହୁଏ, ତଥାପି ଏହା ସନାତନ ଧର୍ମ ନୁହେଁ । ବଳପୂର୍ବକ କନ୍ୟା ହରଣଶୀଳ ରାକ୍ଷସଗଣଙ୍କର ମଧ୍ୟ ଲୋକ ମଧ୍ୟରେ ଏହିପରି ପ୍ରବୃତ୍ତି ସବୁ ଦୃଷ୍ଟ ହୁଏ । ୨୧ ।

ଯେଉଁମାନେ ବଶୀଭୂତା କୁମାରୀଙ୍କୁ ବଳପୂର୍ବକ ଉପଭୋଗ କରନ୍ତି, ସେହି ପାପାଚାରୀ ମନୁଷ୍ୟମାନେ ଅନ୍ଧ ତାମସରେ ଶୟନ କରନ୍ତି । ୨୨ । ଅନ୍ୟ ପ୍ରକାର ପଶୁ ମଧ୍ୟ ଯଦି ବିକ୍ରୟ ନୁହନ୍ତି, ତେବେ ମନୁଷ୍ୟ ସନ୍ତାନର ବିକ୍ରୟ କଦାପି ଧର୍ମସଙ୍ଗତ ନୁହେଁ । କନ୍ୟା ବିକ୍ରୟ ଜନ୍ୟ ଅଧର୍ମ, ମୂଳଧନ ଦ୍ୱାରା କୌଣସି ଧର୍ମ ହୁଏ ନାହିଁ । ୨୩ ।

ବିବାହ କଥନେ ପଞ୍ଚଚତ୍ୱାରିଂଶ ଅଧ୍ୟାୟ ସମାପ୍ତ । ୪୫ ।



# ଷଟ୍‌ଚତ୍ୱାରିଂଶ ଅଧ୍ୟାୟ

ଭୀଷ୍ମ କହିଲେ, ପୁରାବିତ୍ ପଣ୍ଡିତଗଣ ପ୍ରାଚେତ ଦକ୍ଷଙ୍କର ବଚନ କୀର୍ତ୍ତନ କରନ୍ତି ଯେ କନ୍ୟା ଦାନ କାଳରେ ବରପକ୍ଷୀୟ ଜ୍ଞାତିଗଣ ଯଦି କିଛିମାତ୍ର ଧନ ଗ୍ରହଣ ନ କରି କେବଳ କନ୍ୟାଙ୍କ ନିମିତ୍ତ ଅଳଙ୍କାର ପ୍ରାର୍ଥୀ ହୁଅନ୍ତି, ତେବେ କନ୍ୟା ବିକ୍ରୟ ହୁଏନାହିଁ । କୁମାରୀଗଣଙ୍କଠାରେ ଅନୃଶଂସ ବ୍ୟବହାର କଲେ ସେମାନଙ୍କର ସତ୍କାର କରିବାର ହୁଏ । ଦୁହିତାଙ୍କୁ ସମସ୍ତ ବସ୍ତୁ ଅଶେଷ ପ୍ରକାରରେ ଦାନ କରିବାର ଉଚିତ୍ । ୨ । ବହୁକଲ୍ୟାଣାର୍ଥୀ ପିତା, ଭ୍ରାତା, ଶ୍ୱଶୁର ଓ ଦେବରଗଣ ସ୍ତ୍ରୀ ଲୋକମାନଙ୍କୁ ସମ୍ମାନ ଓ ଭୂଷଣ ଦାନ କରିବେ । ୩ ।

ସ୍ତ୍ରୀ ଯଦି ପୁରୁଷକୁ କାମନା ନ କରେ ଓ ତାହାକୁ ପ୍ରୀତ ନକରେ ତେବେ ସେ ପୁରୁଷ ତାହାକୁ ଆହ୍ଲାଦିତ କରିପାରେ ନାହିଁ । ଅପ୍ରମୋଦ ହେତୁରୁ ପୁରୁଷର ପ୍ରଜନନ ଶକ୍ତି ପରିବର୍ଦ୍ଧିତ ହୁଏ ନାହିଁ, ସେହି

କାରଣରୁ ସନ୍ତାନ ଲାଭରେ ଅସମର୍ଥ ହୁଏ । ୪ । ହେ ନରେଶ୍ୱର ! ସ୍ତ୍ରୀ ବୃନ୍ଦ ସର୍ବଦା ପୂଜ୍ୟ ଓ ଲାଳନର ଯୋଗ୍ୟ । ଯେଉଁ ଗୃହରେ ସ୍ତ୍ରୀ ବୃନ୍ଦ ପୂଜ୍ୟ ହୁଅନ୍ତି, ସେହି ଗୃହରେ ଦେବତାମାନେ ପ୍ରୀତି ପ୍ରକାଶପୂର୍ବକ ଅବସ୍ଥାନ କରନ୍ତି । ୫ ।

ଯେଉଁ ଗୃହରେ ସ୍ତ୍ରୀ ବୃନ୍ଦ ପୂଜିତ ହୁଅନ୍ତି ନାହିଁ, ସେଠାରେ ସମସ୍ତ କ୍ରିୟା ନିଷ୍ଫଳ ହୁଏ । ଯେଉଁ ସମୟରେ କୁଳବଧୂଗଣ ଶୋକ ପ୍ରକାଶ କରନ୍ତି, ସେହି ସମୟରେ ସେହି କୁଳ ବିନଷ୍ଟ ହୁଏ । ୬ । ହେ ରାଜନ୍ ! ସ୍ତ୍ରୀଗଣ ଯେଉଁ କୁଳକୁ ଅଭିଶାପ ପ୍ରଦାନ କରନ୍ତି, ସେହି ସମସ୍ତ ଗୃହ ବିଚ୍ଛିନ୍ନ ହୁଏ, ତାହା ଶ୍ରୀ ବିହୀନ ହୋଇ ଶୋଭାଯୁକ୍ତ, କ ପରିବର୍ଦ୍ଧିତ ହୁଏ ନାହିଁ । ୭ । ସ୍ୱର୍ଗ ଗମନେଚ୍ଛୁ ମନୁ ପୁରୁଷଗଣଙ୍କୁ ସ୍ତ୍ରୀ ଦାନ କରିଥିଲେ । ଅବଳାମାନଙ୍କର ଆବରଣ ବସ୍ତ୍ର, ଅଳ୍ପ ଆୟାସରେ ଅପହରଣ କରାଯାଏ । ଏହାଙ୍କୁ ସୁହୃତ୍ ସତ୍ୟ ଜିଷ୍ଣୁ ମାନବ ଈର୍ଷାଯୁକ୍ତ ହୋଇ କାମନା କରନ୍ତି, ଉଗ୍ରସ୍ୱଭାବ ସୌହାର୍ଦ୍ଦ କରେ ନାହିଁ ଏବଂ କଣ୍ଟା ମାନ ବୁଝେ ନାହିଁ । ସ୍ତ୍ରୀଗଣ ସମ୍ମାନରେ ଭାଜନ, 'ଅତଏବ ହେ ମାନବଗଣ ! ସେହିମାନଙ୍କୁ ସମ୍ମାନ କର । ୯ ।

ସ୍ତ୍ରୀମାନଙ୍କ ହେତୁରୁ ଧର୍ମ ଓ ରତି ଭୋଗହୁଏ । ତୁମ୍ଭମାନଙ୍କର ପରିଚର୍ଯ୍ୟା ଓ ନମସ୍କାର ସ୍ତ୍ରୀକୁଳର ଆୟତ୍ତ ହେଉ । ୧୦ । ଅପତ୍ୟ ଉତ୍ପାଦନ, ଜାତ ପୁତ୍ରର ପରିପାଳନ ଏବଂ ଲୋକ ଯାତ୍ରା ବିଷୟରେ ପ୍ରୀତି ନିମିତ୍ତ ସ୍ତ୍ରୀଙ୍କୁ କାରଣ ବୋଲି ଦେଖ । ୧୧ । ସ୍ତ୍ରୀମାନଙ୍କୁ ସମ୍ମାନ କଲେ, ସମସ୍ତ କାର୍ଯ୍ୟ ପ୍ରାପ୍ତହେବ । ବିଦେହ ରାଜଦୁହିତା ଏହି ସ୍ତ୍ରୀ ଧର୍ମ ବିଷୟରେ ଶ୍ଳୋକ ଗାନ କରିଥିଲେ । ୧୨ ।

ସ୍ତ୍ରୀମାନଙ୍କର କୌଣସି ଯଜ୍ଞ କ୍ରିୟା ନାହିଁ, ଶ୍ରାଦ୍ଧନାହିଁ, ଉପବାସ ନାହିଁ । ସେହିମାନଙ୍କର ନିଜ ପତିସେବା କେବଳ ଧର୍ମ, ତାହା ଦ୍ୱାରା ସେମାନେ ସ୍ୱର୍ଗକୁ ଯାଇ ପାରନ୍ତି । ୧୩ । କୁମାରିକା ଅବସ୍ଥାରେ ପିତା ରକ୍ଷା କରନ୍ତି, ଯୌବନ ସମୟରେ ସ୍ୱାମୀ ରକ୍ଷା କରନ୍ତି ଓ

ସ୍ଥବିରାବସ୍ଥାରେ ପୁତ୍ରମାନେ ରକ୍ଷାକରନ୍ତି । ଅତଏବ ସ୍ତ୍ରୀଗଣ ସ୍ୱାଧୀନତା ଲାଭ ବିଷୟରେ କଦାପି ଯୋଗ୍ୟ ନୁହନ୍ତି । ୧୪ । ସ୍ତ୍ରୀ ବୃନ୍ଦ ଲକ୍ଷ୍ମୀ ସ୍ୱରୂପ । ଐଶ୍ୱର୍ଯ୍ୟ ଇଚ୍ଛୁକ ନରଗଣ ସେମାନଙ୍କୁ ସମ୍ମାନ କରିବେ । ହେ ଭାରତ ! ସ୍ତ୍ରୀଲୋକ ପାଳିତ ଓ ସୁରକ୍ଷିତ ହେଲେ ଲକ୍ଷ୍ମୀ ସ୍ୱରୂପ ହୁଅନ୍ତି । ୧୫ ।

ସ୍ତ୍ରୀ ପ୍ରଶଂସା କଥନେ ଷଟ୍‌ଚତ୍ୱାରିଂଶ ଅଧ୍ୟାୟ ସମାପ୍ତ । ୪୬ ।



# ସପ୍ତଚତ୍ୱାରିଂଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ସର୍ବଶାସ୍ତ୍ର ବିଧାନଜ୍ଞ ! ରାଜ ଧର୍ମଜ୍ଞ ପ୍ରବର ! ପିତାମହ ! ଆପଣ ଅତୀବ ସଂଶୟ ଛେଦନ କର୍ତ୍ତାବୋଲି ପୃଥିବୀରେ ଖ୍ୟାତ ହୋଇ ଅଛନ୍ତି । ୧ । ହେ ପିତାମହ ! ଆମ୍ଭର କୌଣସି ସଂଶୟ ଅଛି, ଆପଣ ତାହା ଅପନୋଦନ କରିବା ହେଉନ୍ତୁ । ହେ ରାଜନ୍ ! ଏହି ସଂଶୟ ଜନ୍ମିଲେ ଆମ୍ଭେ ଅନ୍ୟ କୌଣସି ବ୍ୟକ୍ତିଙ୍କୁ ପ୍ରଶ୍ନ କରିବୁ ନାହିଁ । ୨ । ହେ ମହାବାହୋ ! ଧର୍ମ ମାର୍ଗାନୁବର୍ତ୍ତି ନରଙ୍କର ଯାହା କର୍ତ୍ତବ୍ୟ ତାହାସବୁ ଆପଣ କୀର୍ତ୍ତନ କରିବା ହେଉନ୍ତୁ । ୩ । ହେ ପିତାମହ ! ରତିକାମ ବ୍ରାହ୍ମଣଙ୍କର ବ୍ରାହ୍ମଣୀ, କ୍ଷତ୍ରିୟା, ବୈଶ୍ୟା ଓ ଶୂଦ୍ରା ଏହି ଚତୁର୍ବିଧ ଭାର୍ଯ୍ୟା ବିହିତ ହେଉଅଛି । ୪ ।

ହେ କୁରୁ ସତ୍ତମ ! ସେହି ସମସ୍ତଙ୍କର ପୁତ୍ର ଜାତ ହେଲେ ସେହି-ମାନଙ୍କ ମଧ୍ୟରେ ଆନୁପୂର୍ବିକ କ୍ରମରେ କେଉଁ ବ୍ୟକ୍ତି ପୈତୃକ ଅଂଶର ଯୋଗ୍ୟ ହେବେ । ୫ । ହେ ପିତାମହ ! ସେହିମାନଙ୍କ ମଧ୍ୟରେ କେଉଁ ବ୍ୟକ୍ତି ପୈତୃକ ଧନ ମଧ୍ୟରୁ କେତେ ପରିମାଣରେ ହରଣ କରିବେ । ଶାସ୍ତ୍ରାନୁସାରେ ସେହିମାନଙ୍କର ଯେଉଁ ବିଭାଗ ଅଛି, ତାହା ଆପଣ କୀର୍ତ୍ତନ କରିବା ହେଉନ୍ତୁ, ଆମ୍ଭେ ତାହା ଶୁଣିବାକୁ ଇଚ୍ଛା କରୁଅଛୁ । ୬ । ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନ ବର୍ଣ୍ଣ କେବଳ ଦ୍ୱିଜାତି । ଏହିମାନଙ୍କଠାରେ ବ୍ରାହ୍ମଣ ଧର୍ମ ବିହିତ ଅଟେ । ୭ ।

ହେ ଶତ୍ରୁତାପନ ! ବୈଷମ୍ୟ ଅଥବା ଲୋଭ କମ୍ବା କାମ ହେତୁରୁ ବ୍ରାହ୍ମଣଙ୍କର ଶୂଦ୍ରା ପତ୍ନୀ ହୁଏ, ନଚେତ୍ ଶାସ୍ତ୍ରାନୁସାରେ ତାହା ହୋଇପାରେ ନାହିଁ । ୮ । ବ୍ରାହ୍ମଣ ଶୂଦ୍ରାସ୍ତ୍ରୀକୁ ଶଯ୍ୟାରେ ଶୟନ କରାଇଲେ ଅଧୋଗତି ପ୍ରାପ୍ତ ହୁଅନ୍ତି ଏବଂ ବିଧିଦୃଷ୍ଟ କର୍ମଦ୍ୱାରା ପ୍ରାୟଶ୍ଚିତର ଯୋଗ୍ୟ ହୁଅନ୍ତି । ୯ । ହେ ଯୁଧିଷ୍ଠିର ! ଶୂଦ୍ରାଠାରେ ସନ୍ତାନ ଜାତହେଲେ ବ୍ରାହ୍ମଣ ଦ୍ୱିଗୁଣ ପ୍ରାୟଶ୍ଚିତ୍ତ କରିବେ । ହେ ଭାରତ ! ଯେଉଁ ସନ୍ତାନ ଯେଉଁପରି ଅଂଶ ପ୍ରାପ୍ତ ହେବେ ତାହା କହୁଛୁଁ । ୧୦ ।

ବ୍ରାହ୍ମଣୀପୁତ୍ର ପିତୃଧନ ମଧ୍ୟରୁ ସୁଲକ୍ଷଣ ଗୋ, ବୃଷ ଓ ଯାନ ପ୍ରଭୃତି ଉତ୍କୃଷ୍ଟ ବସ୍ତୁ ସମୂହକୁ ମୁଖ୍ୟାଂଶ ସ୍ୱରୂପ ଗ୍ରହଣ କରିବେ । ୧୧ । ହେ ଯୁଧିଷ୍ଠିର ! ଯେଉଁ ଅବଶିଷ୍ଟ ବ୍ରାହ୍ମଣସ୍ୱ ଥିବ, ତାହା ଦଶ ଭାଗରେ ବିଭକ୍ତ ହେବ । ବ୍ରାହ୍ମଣୀପୁତ୍ର ସେଥିରୁ ପିତୃଧନରୁ ଚାରିଭାଗ ଗ୍ରହଣ କରିବେ । ୧୨ । କ୍ଷତ୍ରିୟା ଗର୍ଭଜାତ ଯେଉଁ ପୁତ୍ର ସେ ମଧ୍ୟ ବ୍ରାହ୍ମଣ ସଂଶୟ ସେହି ପୁତ୍ର ମାତାଙ୍କର ବୈଶିଷ୍ଟ୍ୟ ଅନୁସାରେ ତିନ ଅଂଶ ପ୍ରାପ୍ତ ହେବେ । ୧୩ । ହେ ଯୁଧିଷ୍ଠିର ! ତୃତୀୟା ବର୍ଣ୍ଣ ବୈଶ୍ୟାଠାରେ ବ୍ରାହ୍ମଣଙ୍କଠାରୁ ଯେଉଁ ପୁତ୍ର ଜନ୍ମ ଗ୍ରହଣ କରନ୍ତି, ସେ ବ୍ରାହ୍ମଣସ୍ୱରୂପ ଦୁଇ ଅଂଶ ହରଣ କରିବେ । ୧୪ । ବ୍ରାହ୍ମଣଙ୍କଠାରୁ ଶୂଦ୍ରାସ୍ତ୍ରୀଙ୍କଠାରେ ଯେ ଜନ୍ମ ଗ୍ରହଣ କରନ୍ତି, ତାହାଙ୍କୁ ନତ୍ୟା-ଦେୟ ଧନ ବୋଲଯାଏ ଅର୍ଥାତ ତାହାଙ୍କୁ ସର୍ବଥା ଧନ ଅଦେୟ । ହେ ଭାରତ ! ଶୂଦ୍ରା ପୁତ୍ରଙ୍କୁ ଏକାଂଶ ଧନ ପ୍ରଦାନ କରିବା କର୍ତ୍ତବ୍ୟ । ୧୫ ।

ଦଶଧା ବିଭକ୍ତ ଧନର ଅଂଶାନୁସାରେ ସବର୍ଣ୍ଣା ସ୍ତ୍ରୀଠାରେ ସମୁତ୍ପନ୍ନ ପୁତ୍ରମାନଙ୍କ ନିମିତ୍ତ ସମାନ ଭାଗ କଳ୍ପନା କରିବ । ୧୬ । ଶୂଦ୍ରା ଗର୍ଭ ଜାତ ସନ୍ତାନ ସମନ୍ତ୍ରକ ସଂସ୍କାର ନ ହେବାରୁ ସେ ଅବ୍ରାହ୍ମଣ; ବ୍ରାହ୍ମଣୀ, କ୍ଷତ୍ରିୟା ଓ ବୈଶ୍ୟା ଗର୍ଭଜାତ ବ୍ରାହ୍ମଣସନ୍ତାନ ବ୍ରାହ୍ମଣ ହେବେ । ୧୭ । ଚାରିଗୋଟି ବର୍ଣ୍ଣ ଶାସ୍ତ୍ର ସିଦ୍ଧ । ତଦ୍ଭିନ୍ନ ପଞ୍ଚମ ବର୍ଣ୍ଣ ନାହିଁ । ଶୂଦ୍ରା ପୁତ୍ର ପିତୃଧନରୁ ଦଶମ ଅଂଶ ଗ୍ରହଣ କରିବେ । ୧୮ । ଶୂଦ୍ରାପୁତ୍ରକୁ ପିତା ଯାହା ଦାନ କରିବେ ସେ ତାହାକୁ ଗ୍ରହଣ କରିବେ । ଅଦତ୍ତ ଧନ ଗ୍ରହଣ କରି ପାରିବେ ନାହିଁ । ହେ ଭାରତ ! ଶୁଦ୍ରାପୁତ୍ରକୁ ଅବଶ୍ୟ ଧନ ଦାନ କରିବାର କର୍ତ୍ତବ୍ୟ । ୧୯ ।

ଅନୃଶଂସ୍ୟ ପରମ ଧର୍ମ ଏହି ହେତୁରୁ ତାହାକୁ ପ୍ରଦାନ କରିବାର କର୍ତ୍ତବ୍ୟ । ଅନୃଶଂସ୍ୟ ଯେଉଁ ସ୍ଥାନରେ ଅନୁଷ୍ଠିତ ହୁଏ ସେହି ସ୍ଥାନରେ ଗୁଣ ସମୂହ ଉତ୍ପନ୍ନ ହୁଏ । ୨୦ । ହେ ଭାରତ ! ବ୍ରାହ୍ମଣ ସପୁତ୍ର ଅଥବା ଅପୁତ୍ର ହେଉନ୍ତୁ ଶୂଦ୍ରାପୁତ୍ରଙ୍କୁ ଦଶମଭାଗରୁ ଅଧିକ ଦାନ କରିବେ ନାହିଁ ।୨୧। ବ୍ରାହ୍ମଣଙ୍କର ତ୍ରୈବାର୍ଷିକ ଅନ୍ନ ଅପେକ୍ଷା ଯଦି ଅଧିକ ଧନ ଉଦ୍‌ବୃତ୍ତ ହେବ, ତେବେ ସେ ସେହି ଧନ ଦ୍ୱାରା ଯଜ୍ଞ କରିବେ । ଯଜ୍ଞାଦି ପ୍ରୟୋଜନ ବ୍ୟତିରେକେ ବୃଥା ଧନ ବ୍ୟୟ କରିବାର ଉଚିତ୍ ନୁହେଁ ।୨୨। ବହୁ ବିତ୍ତ ସମ୍ପନ୍ନ ବ୍ୟକ୍ତି ସ୍ତ୍ରୀଙ୍କୁ ତିନି ସହସ୍ରରୁ ଅଧିକ ଧନ ଦାନ କରିବେ ନାହିଁ । ଭର୍ତ୍ତା ଭାର୍ଯ୍ୟାଙ୍କୁ ଯେଉଁ ଧନ ଦାନ କରିବେ, ସେ ତାହା ଭୋଗ କରିବେ । ଭର୍ତ୍ତା ଭାର୍ଯ୍ୟାଙ୍କୁ ଭୋଗ କରିବାକୁ ନ ଦେଲେ ସେ ତାହା ଭୋଗ କରି ପାରିବେ ନାହିଁ ।୨୩। ସ୍ତ୍ରୀ ଲୋକମାନେ ପତିଙ୍କ ବିଷୟକୁ କେବଳ ଉପଭୋଗ କରିବେ । ତାହାଙ୍କ ପୁତ୍ର କି ସେମାନେ ତାହା କଦାପି ବିନଷ୍ଟ କରି ପାରିବେ ନାହିଁ । ୨୪ ।

ହେ ଯୁଧିଷ୍ଠିର ! ବ୍ରାହ୍ମଣୀ ସ୍ତ୍ରୀଙ୍କର ଯେଉଁ ପିତୃଦତ୍ତ ଧନ ଥିବ, ତାହା ତାହାଙ୍କ କନ୍ୟା ଗ୍ରହଣ କରିବେ । କାରଣ ପୁତ୍ର ଯେଉଁପରି କନ୍ୟା ମଧ୍ୟ ସେହିପରି ଅଟନ୍ତି । ହେ ରାଜନ୍ ! କୁରୁ ନନ୍ଦନ ! ଭରତ ଶ୍ରେଷ୍ଠ ! କନ୍ୟା ପୁତ୍ରର ସମାନ ରୂପେ ବିହିତା ହୋଇଅଛି ଏବଂ ଧର୍ମ ଏହିପରି ସମ୍ୟକ୍ ରୂପେ ନିବଦ୍ଧ ଅଛି; ଅତଏବ ଏହି ଧର୍ମକୁ ଅନୁସରଣପୂର୍ବକ ଧନ ବୃଥା ବ୍ୟୟ କରିବେ ନାହିଁ, ବୃଥା ବ୍ୟୟ କଲେ କୃତ ଯାଗ ପ୍ରଭୃତି ନିଷ୍ଫଳ ହେବ । ୨୫ । ଯୁଧିଷ୍ଠିର କହିଲେ, ଶୂଦ୍ରା ଗର୍ଭଜାତ ବ୍ରାହ୍ମଣଙ୍କ ପୁତ୍ରଙ୍କୁ ଧନ ଯଦି ଅଦେୟ ହେଲା, ତେବେ କେଉଁ ବିଶେଷ କାରଣରୁ ତାହାଙ୍କୁ ଦଶମ ଅଂଶ ପ୍ରଦତ୍ତ ହେବ ? ୨୬ । ବ୍ରାହ୍ମଣଙ୍କଠାରୁ ବ୍ରାହ୍ମଣୀଙ୍କ ଗର୍ଭରେ ଜନ୍ମିତ ସନ୍ତାନ ବ୍ରାହ୍ମଣ ହେବେ, ଏ ବିଷୟରେ ସଂଶୟ ନାହିଁ । କ୍ଷତ୍ରିୟା [illegible] ବୈଶ୍ୟା ଗର୍ଭଜାତ ବ୍ରାହ୍ମଣ ସନ୍ତାନ ସେହି [illegible] ଅଟନ୍ତି । ୨୮ ।

ହେ ନୃପଶ୍ରେଷ୍ଠ ! ଆପଣ କହନ୍ତୁ ଏହି ତିନି ବର୍ଣ୍ଣ ଯଦି ବ୍ରାହ୍ମଣ ହେଲେ, ତେବେ ସେମାନେ କେଉଁ କାରଣରୁ ଅସମାନ ଅଂଶ ଭୋଗ

କରିବେ ? ୨୯ । ଋଷି କହିଲେ, ହେ ପରନ୍ତପ ! ଲୋକ ମଧ୍ୟରେ ଧର୍ମ କାମାର୍ଥ ବ୍ୟକ୍ତିଗଣଙ୍କର ଦାରା ଆଦରଣୀୟ । ଏହି ନାମ ଦ୍ୱାରା ତାହାଙ୍କୁ ଭାର୍ଯ୍ୟା ବୋଲି କୁହାଯାଏ । ପୂର୍ବୋକ୍ତ ନାମ ଦ୍ୱାରା ଏହି ଅର୍ଥ ମହାତ୍ମ ବିଶେଷ ହୁଏ ଯେ ବ୍ରାହ୍ମଣ ପ୍ରଥମରେ କ୍ଷତ୍ରିୟା ପ୍ରଭୃତି ଦାରଦ୍ୱୟଙ୍କୁ ପରିଣୟ କରି ପରିଶେଷରେ ଯଦି ବ୍ରାହ୍ମଣୀ ପତ୍ନୀଙ୍କର ପାଣିଗ୍ରହଣ କରନ୍ତି, ତେବେ ସେହି ବ୍ରାହ୍ମଣୀ ପତ୍ନୀ ବୟସରେ କନିଷ୍ଠା ହେଲେ ସୁଦ୍ଧା ପିତୃଗୌରବ ବଶରୁ ସେ ଜ୍ୟେଷ୍ଠା, ସେ ପୂଜ୍ୟା ଓ ସେ ଗରୀୟସୀ ଭାର୍ଯ୍ୟା ହୁଅନ୍ତି । ୩୧ ।

ପତିଙ୍କର ସ୍ନାନ, ପ୍ରସାଧନ, ଦନ୍ତଧାବନ, ଅଞ୍ଜନ ଓ ହବ୍ୟକବ୍ୟ ପ୍ରଭୃତି ଯାହା କିଛି ଧର୍ମ କର୍ମ ଗୃହରେ କରିବାର ଉଚିତ୍, ବ୍ରାହ୍ମଣୀ ଗୃହରେ ବିଦ୍ୟମାନା ଥିଲେ କ୍ଷତ୍ରୀୟା ପ୍ରଭୃତି ଅନ୍ୟ ଭାର୍ଯ୍ୟା ତାହା କଦାପି କରି ପାରିବେ ନାହିଁ । ହେ ଯୁଧିଷ୍ଠିର ! ବ୍ରାହ୍ମଣୀ କେବଳ ବ୍ରାହ୍ମଣଙ୍କର ସେହି ସମସ୍ତ କାର୍ଯ୍ୟ ନିର୍ବାହ କରିବେ । ୩୩ । ବ୍ରାହ୍ମଣୀ କେବଳ ଭର୍ତ୍ତାଙ୍କୁ ଅନ୍ନ, ପାନ, ମାଲ୍ୟ, ବସ୍ତ୍ର ଓ ଆଭରଣ ପ୍ରଭୃତି ପ୍ରଦାନ କରିବେ । କାରଣ ସେ ଭର୍ତ୍ତାଙ୍କର ଗରୀୟସୀ ଭାର୍ଯ୍ୟା । ୩୪ । ହେ କୁରୁ ନନ୍ଦନ ! ମହାରାଜ ମନୁଙ୍କ ଦ୍ୱାରା ଯେଉଁ ଶାସ୍ତ୍ର ଅଭିହିତ ହୋଇଅଛି ତହିଁରେ ଏହି ସନାତନ ଧର୍ମ ଦୃଷ୍ଟ ହେଉଅଛି । ୩୫ ।

ହେ ଯୁଧିଷ୍ଠିର ! କେହି ଯଦି ଇଚ୍ଛାପୂର୍ବକ ଏହାର ଅନ୍ୟଥା-ଚରଣ କରିବେ, ତେବେ ସେ ପୂର୍ବୋକ୍ତ ବ୍ରାହ୍ମଣ ଚଣ୍ଡାଳ ବ୍ରାହ୍ମଣ କ୍ଷେତ୍ରରେ ଶୂଦ୍ରଠାରୁ ଜାତ ମାତଙ୍ଗ ସଦୃଶ ହେବେ । ୩୬ । ହେ ରାଜନ୍ ! କ୍ଷତ୍ରିୟାର ପୁତ୍ର ବ୍ରାହ୍ମଣୀର ପୁତ୍ର ସଦୃଶ ଅଟେ । କିନ୍ତୁ ଉଭୟଙ୍କ ମଧ୍ୟରେ ବର୍ଣ୍ଣଗତ ବିଶେଷତା ଅଛି । ୩୭ । ଲୋକରେ କ୍ଷତ୍ରିୟା ଜାତିଦ୍ୱାରା ବ୍ରାହ୍ମଣୀର ସମାନ ହୋଇ ପାରିବ ନାହିଁ । ହେ ନୃପଶ୍ରେଷ୍ଠ ! ଯୁଧିଷ୍ଠିର ! ବ୍ରାହ୍ମଣୀର ପୁତ୍ର ପ୍ରଥମ ଓ ଜ୍ୟେଷ୍ଠ ଅଟନ୍ତି । ସେ ଅଧିକାଂଶ ପିତୃଧନର ଅଧିକାରୀ । କ୍ଷତ୍ରିୟା ଯେଉଁପରି କଦାପି ବ୍ରାହ୍ମଣୀଙ୍କ ସମାନ ହୋଇ ନ ପାରନ୍ତି । ବୈଶ୍ୟା ମଧ୍ୟ ସେହିପରି କ୍ଷତ୍ରିୟାଙ୍କ ସଦୃଶୀ ହେବାକୁ ଯୋଗ୍ୟା ନୁହନ୍ତି ହେ ଯୁଧିଷ୍ଠିର ! ରାଜ୍ୟ, ସମ୍ପତ୍ତି, ଧନାଗାର ଏବଂ ସାଗର ମେଖଳା ମେଦିନୀ କ୍ଷତ୍ରିୟଗଣଙ୍କ ନିମିତ୍ତ ବିହିତ ହୋଇଥିବାର ଦୃଷ୍ଟ ହୁଏ । କାରଣ କ୍ଷତ୍ରିୟ ସ୍ୱଧର୍ମ ଦ୍ୱାରା ଭୂୟସୀ ସମ୍ପତ୍ତି ଲାଭ କରନ୍ତି । ୪୧ ।

ହେ ରାଜନ୍ ! କ୍ଷତ୍ରିୟ କେବଳ ରାଜା ହୋଇ ରାଜଦଣ୍ଡ ଧାରଣ କରନ୍ତି । କ୍ଷତ୍ରିୟଙ୍କ ବ୍ୟତିରେକେ ଅନ୍ୟ କୌଣସି ବ୍ୟକ୍ତି ରକ୍ଷା କରିବାକୁ ସମର୍ଥ ହୁଅନ୍ତି ନାହିଁ । ମହାଭାଗ ! ବ୍ରାହ୍ମଣଗଣ ଦେବତାମାନଙ୍କର ଦେବତା । ହେ ରାଜନ୍ ! କ୍ଷତ୍ରିୟ ଋଷିଗଣ ପ୍ରଣୀତ ଶାଶ୍ୱତ ଅବ୍ୟୟ ଧର୍ମ ଆଲୋଚନା କରିବ । ଧୀପୂର୍ବକ ବ୍ରାହ୍ମଣଗଣଙ୍କର ପୂଜା କରିବାକୁ ପ୍ରବୃତ୍ତ ହେବେ । ଦସ୍ୟୁଗଣ କର୍ତ୍ତୃକ ଲୁପ୍ୟମାନ ଧନ ଓ ହ୍ରିୟମାଣ ଦାରା ବ୍ରାହ୍ମଣ ପ୍ରଭୃତିଙ୍କୁ କ୍ଷତ୍ରିୟ କେବଳ ସର୍ବତୋଭାବେ ରକ୍ଷା କରନ୍ତି । ନୃପତି କେବଳ ସମସ୍ତ ବର୍ଣ୍ଣର ପ୍ରତିକର୍ତ୍ତା ଅଟନ୍ତି । ୪୪ । ଅତଏବ ବୈଶ୍ୟା ପୁତ୍ର ଅପେକ୍ଷା କ୍ଷତ୍ରିୟା ପୁତ୍ର ଶ୍ରେଷ୍ଠ ଅଟେ, ତଦ୍‌ବିଷୟରେ ସଂଶୟ ନାହିଁ । ହେ ଯୁଧିଷ୍ଠିର! ପୂର୍ବୋକ୍ତ କାରଣରୁ କ୍ଷତ୍ରିୟାପୁତ୍ର ବୈଶ୍ୟାପୁତ୍ର ଅଧିକତର ପିତୃଧନ ହରଣ କରିବେ । । ୪୫ । ଯୁଧିଷ୍ଠିର କହିଲେ, ହେ ପିତାମହ ! ରାଜନ୍ ! ଆପଣ ବ୍ରାହ୍ମଣଙ୍କ ଦାୟ ବିଭାଗର ନିୟମ ବିଧି ପୂର୍ବକ କୀର୍ତ୍ତନ କଲେ ଅପରାପର କ୍ଷତ୍ରିୟାଦି ବର୍ଣ୍ଣର ଉକ୍ତ ନିୟମ କେଉଁପରି ହେବ ? ୪୬ ।

ଭୀଷ୍ମ କହିଲେ, ହେ କୁରୁ ନନ୍ଦନ ! କ୍ଷତ୍ରିୟର କ୍ଷତ୍ରିୟା ଓ ବୈଶ୍ୟା ଏହି ଦୁଇ ଭାର୍ଯ୍ୟା ବିହିତ ଅଟେ । ତୃତୀୟା ଶୂଦ୍ରା ଭାର୍ଯ୍ୟା ଯଦି ଶାସ୍ତ୍ରାନୁସାରେ ସମ୍ଭବ ହୁଏ ନାହିଁ, ତେବେ କାମ ଭୋଗ ନିମିତ୍ତ ହୋଇଥାଏ । ୪୭ । ହେ ଜନାଧିପ ! ଯୁଧିଷ୍ଠିର ! କ୍ଷତ୍ରିୟଗଣଙ୍କ ଦାୟ ବିଭାଗର ନିୟମ ଏହି ଯେ କ୍ଷତ୍ରିୟ ସମ୍ପତ୍ତି ଅଷ୍ଟ ଭାଗରେ ବିଭକ୍ତ କରିବାକୁ ହେବ । ୪୮ । କ୍ଷତ୍ରିୟା ପୁତ୍ର ସେହି ପିତୃଧନରୁ ଚାରିଅଂଶ ଗ୍ରହଣ କରିବେ ଏବଂ ରଥ ଗଜ ତୁରଙ୍ଗ ପ୍ରଭୃତି ଯୁଦ୍ଧୋପଯୋଗି ଯାହା ଥିବ ତାହାସବୁ ଗ୍ରହଣ କରିବେ । ୪୯ । ବୈଶ୍ୟା ପୁତ୍ର ତିନ ଭାଗ ଏବଂ ଶୂଦ୍ରାପୁତ୍ର ଏକ ଭାଗମାତ୍ର ପ୍ରାପ୍ତ ହେବେ । ସେହି ଦ୍ରବ୍ୟ ସବୁ ଯଦି ପିତା ସେହି ଶୂଦ୍ରା ପୁତ୍ରଙ୍କୁ ଦାନ କରିବେ, ତେବେ ସେ ପ୍ରାପ୍ତ ହେବେ, ନଚେତ୍ ତାହାଙ୍କ ଅଦତ୍ତ ଧନକୁ ସେ ହରଣ କରିବାର ଯୋଗ୍ୟ ନୁହନ୍ତି । ୫୦ ।

ହେ କୁରୁ ନନ୍ଦନ! ବୈଶ୍ୟର ଗୋଟିଏ ମାତ୍ର ଭାର୍ଯ୍ୟା ବିହିତ ଅଟେ । ଦ୍ୱିତୀୟା ଶୂଦ୍ରା ଭାର୍ଯ୍ୟା ଶାସ୍ତ୍ରାନୁସାରେ ହୋଇପାରେ ନାହିଁ, ତଥା ରତି ନିମିତ୍ତ ହୋଇପାରେ ।୫୧। ହେ ଭରତ ପ୍ରବର ! କୁନ୍ତୀପୁତ୍ର ! ବୈଶ୍ୟା ଅବା

ଶୂଦ୍ରା ପତ୍ନୀଠାରେ ବର୍ତ୍ତମାନ ବୈଶ୍ୟର ଉକ୍ତ ଉଭୟ ଭାର୍ଯ୍ୟାଙ୍କ ଠାରେ ସମାନ ନିୟମ ହେବ ନାହିଁ । ୫୨ । ହେ ଜନାଧିପ ! ଭରତଶ୍ରେଷ୍ଠ ! ବୈଶ୍ୟ ସ୍ୱକୀୟ ଭାଗରେ ବିଭକ୍ତ କରିବାକୁ ହେବ । ବୈଶ୍ୟା ଓ ଶୂଦ୍ରାପୁତ୍ରଙ୍କ ବିଷୟରେ ଯେଉଁପରି ବିଭାଗ ହେବ ତାହା କହୁଅଛୁ । ୫୩ । ହେ ଭାରତ ! ବୈଶ୍ୟା ପୁତ୍ର ପିତୃଧନରୁ ଚାରି ଅଂଶ ଗ୍ରହଣ କରିବେ ଏବଂ ଶୁଦ୍ରାପୁତ୍ରଙ୍କ ନିମିତ୍ତ ଗୋଟିଏ ଭାଗ ସ୍ଥିତ ହୋଇଅଛି । ୫୪ ।

ଶୁଦ୍ରା ପୁତ୍ର ପିତୃଧନ ଗ୍ରହଣ କରିବେ କିନ୍ତୁ ପିତା ତାହାଙ୍କୁ ଦାନ ନ କଲେ ସେ ତାହା ହରଣ କରି ପାରିବେ ନାହିଁ । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ବର୍ଣ୍ଣତ୍ରୟ କର୍ତ୍ତୃକ ଉତ୍ପାଦିତ ଶୂଦ୍ର ପୁତ୍ର ପିତୃଧନରେ ଅଧିକାରୀ ହୁଏ ନାହିଁ । ତଥାପି ପିତା ଇଚ୍ଛାକଲେ ତାହାଙ୍କୁ ଗୋଟିଏ ଭାଗ ମାତ୍ର ଦେଇ ପାରନ୍ତି । ଶୂଦ୍ରଙ୍କର ଗୋଟିଏ ମାତ୍ର ସବର୍ଣ୍ଣା ଭାର୍ଯ୍ୟା ହେବ । କଦାପି ଅନ୍ୟଭାର୍ଯ୍ୟା ହେବ ନାହିଁ । ତାହାଙ୍କର ଯଦି ଶତ ପୁତ୍ର ହେବେ ତେବେ ସେମାନେ ପିତୃଧନକୁ ସମାନ ଅଂଶରେ ଗ୍ରହଣ କରିବେ । ୫୬ ।

ସମାନ ବର୍ଣ୍ଣା ଭାର୍ଯ୍ୟାଙ୍କ ଗର୍ଭଜାତ ସମସ୍ତ ପୁତ୍ର ଅବିଶେଷ ରୂପରେ ପିତୃଧନରେ ସମଭାଗୀ ହେବେ । ୫୭ । ଜ୍ୟେଷ୍ଠପୁତ୍ରଙ୍କର ପ୍ରଧାନତା ହେତୁରୁ ସେ ଗୋଟିଏ ଅଂଶ ପୃଥକ୍ ରୂପେ ଗ୍ରହଣ କରିବେ । ହେ ପାର୍ଥ ! ପୂର୍ବେ ସ୍ୱୟମ୍ଭୂଙ୍କ ଦ୍ୱାରା ଏହି ଦାୟ ଭାଗର ବିଧି କଥିତ ହୋଇଅଛି । ୫୮ । ହେ ରାଜନ୍ ! ସବର୍ଣ୍ଣା ଭାର୍ଯ୍ୟାଙ୍କ ଠାରେ ଉତ୍ପନ୍ନ ପୁତ୍ରମାନଙ୍କର ଅପର କୌଣସି ବିଶେଷ ଅଛି, ବିବାହର ବୈଶିଷ୍ଟ୍ୟ ହେତୁରୁ ପୂର୍ବପୁତ୍ର କେବଳ ଉତ୍କୃଷ୍ଟ ହୁଅନ୍ତି । ୫୯ । ସବର୍ଣ୍ଣା ଭାର୍ଯ୍ୟା ସମାନ ହେଲେ ସୁଦ୍ଧା ଜ୍ୟେଷ୍ଠପୁତ୍ର ପ୍ରଧାନ ଅଂଶ ଗ୍ରହଣ କରିବେ । ମଧ୍ୟମ ପୁତ୍ର ମଧ୍ୟମ ଅଂଶ ଓ କନିଷ୍ଠ ପୁତ୍ର କନିଷ୍ଠ ଅଂଶ ପ୍ରାପ୍ତ ହେବେ ।୬୦। ଏହିପରି ସକଳ ଜାତିରେ ସବର୍ଣ୍ଣ ଜ୍ୟେଷ୍ଠପୁତ୍ରମାନେ ଶ୍ରେଷ୍ଠତ୍ୱ ପ୍ରାପ୍ତ ହୋଇଅଛନ୍ତି । ମହର୍ଷି ମରୀଚଙ୍କ ପୁତ୍ର କାଶ୍ୟପ ଏହା କହିଥିଲେ । ୬୧ ।

ଧନବିଭାଗ କଥନେ ସପ୍ତଚତ୍ୱାରିଂଶଅଧ୍ୟାୟ ସମାପ୍ତ । ୪୭ ।



# ଅଷ୍ଟଚତ୍ୱାରିଂଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ପିତାମହ ! ଲୋଭ ଅବା କାମ ବଶରୁ ଏବଂ ବର୍ଣ୍ଣ ସମୂହର ନିଶ୍ଚୟ ଜଣା ନ ହେବାରୁ ଅର୍ଥାତ୍ ଉତ୍ତମ ବର୍ଣ୍ଣ ସ୍ତ୍ରୀ ହୀନ ବର୍ଣ୍ଣକୁ ଗମନ କରନ୍ତି ବୋଲି ପ୍ରସିଦ୍ଧି ଅଛି । ତନ୍ନିମିତ୍ତ ଗୂଢ଼ ଉତ୍ପତ୍ତି ସମ୍ଭବ ହେତୁରୁ ବର୍ଣ୍ଣର ନିଶ୍ଚୟ ହୁଏ ନାହିଁ, ସୁତରାଂ ବର୍ଣ୍ଣ ସମୂହର ଅଜ୍ଞାନ ବଶରୁ ବର୍ଣ୍ଣସଙ୍କର ଜାତ ହୁଅନ୍ତି । ଏବଂବିଧ ବିଧି ଅନୁସାରେ ବର୍ଣ୍ଣସଙ୍କରଙ୍କ ଦ୍ୱାରା ସମୁତ୍ପନ୍ନ ବ୍ୟକ୍ତି ସମୂହ କେଉଁ ଧର୍ମ ଓ କେଉଁ କର୍ମ କରିବେ, ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୨ । ଭୀଷ୍ମ କହିଲେ, ପୂର୍ବକାଳରେ ପ୍ରଜାପତି ଯଜ୍ଞ ନିମିତ୍ତ ଚତୁର୍ବର୍ଣ୍ଣର କର୍ମ ସମୂହ ଏବଂ କେବଳ ବର୍ଣ୍ଣ ଚତୁଷ୍ଟୟର ସୃଷ୍ଟି କରିଥିଲେ । ତନ୍ମଧ୍ୟରୁ ଶୂଦ୍ରମାନଙ୍କର ସାକ୍ଷାତ ସମ୍ବନ୍ଧରେ ଯଜ୍ଞକାର୍ଯ୍ୟ ନାହିଁ, ଶୁଶ୍ରୂଷା ଦ୍ୱାରା କେବଳ ତାହା ସିଦ୍ଧ ହୁଏ । ୩ ।

ବ୍ରାହ୍ମଣଙ୍କର ଚତୁର ଭାର୍ଯ୍ୟା, ତନ୍ମଧ୍ୟରେ ବ୍ରାହ୍ମଣୀ ପତ୍ନୀଙ୍କଠାରେ ଯେଉଁ ପୁତ୍ର ଜନ୍ମେ ସେ ବ୍ରାହ୍ମଣ, କ୍ଷତ୍ରିୟା ଭାର୍ଯ୍ୟାଙ୍କଠାରେ ଯେଉଁ ପୁତ୍ର ଜନ୍ମେ ସେ ତଦପେକ୍ଷା କିଞ୍ଚିତ ହୀନ, କ୍ରମାନ୍ୱୟରେ ମାତୃଜାତିପ୍ରଯୁକ୍ତ ପୁତ୍ରଗଣ ପୂର୍ବୋକ୍ତ ଉଭୟ ପୁତ୍ର ଅପେକ୍ଷା ହୀନ ରୂପେ ପ୍ରସୂତ ହୁଅନ୍ତି । ବ୍ରାହ୍ମଣଙ୍କଠାରୁ ଶୂଦ୍ରା ଗର୍ଭରେ ଯେଉଁ ପୁତ୍ର ଜନ୍ମେ ସେ ଶବ ଅର୍ଥାତ୍ ଶବସ୍ଥାନ ଶ୍ମଶାନ ସଦୃଶ ଶୂଦ୍ର ଅପେକ୍ଷା ପର ଅର୍ଥାତ୍ ଶ୍ରେଷ୍ଠ । ଏହି ନିମିତ୍ତ ପଣ୍ଡିତଗଣ ଶୂଦ୍ରା ପୁତ୍ରକୁ ପାରଶବ କହନ୍ତି । ଏହି ପୁତ୍ର ସ୍ୱକୀୟ କୁଳକୁ ଶୁଶ୍ରୂଷା କରିବେ ଏବଂ ନିୟତ ନିଜ ଚରିତ୍ରକୁ ପରିତ୍ୟାଗ କରିବେ ନାହିଁ । ୫ । ସେ ସମସ୍ତ ଉପାୟ ଅବଧାରଣ କରି ନିଜ କୁଳର ଉପକରଣ ସମ୍ୟକ୍ ରୂପେ ଉଦ୍ଧାର କରିବେ, ପାରଶବ ବ୍ରାହ୍ମଣ ଅପେକ୍ଷା ବୟୋଜ୍ୟେଷ୍ଠ ହେଲେ ସୁଦ୍ଧା ବ୍ରାହ୍ମଣଙ୍କ ନିକଟରେ କନିଷ୍ଠ ସଦୃଶ ବ୍ୟବହାର କରିବେ ଏବଂ ଶୁଶ୍ରୂଷା ସହିତ ଦାନ ପରାୟଣ ହେବେ । ୬ ।

କ୍ଷତ୍ରିୟଙ୍କ ତିନି ଭାର୍ଯ୍ୟାଙ୍କ ମଧ୍ୟରେ କ୍ଷତ୍ରିୟା ଓ ବୈଶ୍ୟା ଏହି ଦୁଇ ପତ୍ନୀଙ୍କ ଗର୍ଭରେ କ୍ଷତ୍ରିୟ ପୁତ୍ର ଜନ୍ମେ ଏବଂ ଶୂଦ୍ରା ଭାର୍ଯ୍ୟାଙ୍କ ଗର୍ଭରେ ହୀନ

ବର୍ଣ୍ଣ ଉଗ୍ର ନାମକ ଶୂଦ୍ର ଜାତି ଜାତ ହୁଏ; ଏହା ସ୍ମରଣ ଅଛି । ୭ । ବୈଶ୍ୟଙ୍କର ଦୁଇ ଭାର୍ଯ୍ୟା, ସେହି ଦୁଇ ଭାର୍ଯ୍ୟାଙ୍କଠାରେ ଯେଉଁ ଦୁଇ ପୁତ୍ର ଜନ୍ମଗ୍ରହଣ କରନ୍ତି ସେ ବୈଶ୍ୟ ହୁଅନ୍ତି । ଶୂଦ୍ରଙ୍କର ଗୋଟିଏ ମାତ୍ର ଶୂଦ୍ରା ସ୍ତ୍ରୀ ଭାର୍ଯ୍ୟା ହୁଅନ୍ତି । ତାହାଙ୍କ ଗର୍ଭରେ ଯେଉଁ ପୁତ୍ର ଜନ୍ମଗ୍ରହଣ କରନ୍ତି ସେ ଶୂଦ୍ର ବୋଲନ୍ତି । ୮ । ନିଜ ଜନକଠାରୁ ଅବଶିଷ୍ଟ ଅଧମ ଶୂଦ୍ର ଯଦି ବ୍ରାହ୍ମଣ-ଦାରାଦି ପ୍ରଧର୍ଷଣ କରନ୍ତି ତେବେ ସେ ଚତୁର୍ବର୍ଣ୍ଣର ବହିର୍ଭୂତ ଚଣ୍ଡାଳ ପ୍ରଭୃତି ଅନ୍ୟବର୍ଣ୍ଣ ଉତ୍ପାଦନ କରନ୍ତି । ୯ । କ୍ଷତ୍ରିୟ, ବ୍ରାହ୍ମଣୀ ଗର୍ଭରେ ଚତୁର୍ବେଦର ବହିର୍ଭୂତ ଭୂପତିଗଣଙ୍କର ସ୍ତୁତିକାରକ ସୂତ ଜାତୀୟ ସନ୍ତାନକୁ ଜାତ କରନ୍ତି । ବୈଶ୍ୟ ବ୍ରାହ୍ମଣୀ ଗର୍ଭରେ ଅନ୍ତଃପୁରର ରକ୍ଷଣ କାର୍ଯ୍ୟକାରୀ, ସଂସ୍କାରର ଅଯୋଗ୍ୟ ବୈଦେହ ଜାତୀୟ ପୁତ୍ର ଉତ୍ପାଦନ କରନ୍ତି । ୧୦ । ଶୂଦ୍ର, ବ୍ରାହ୍ମଣୀ ଗର୍ଭରେ ଅତି ଉଗ୍ର ସ୍ୱଭାବ ବଧ ଯୋଗ୍ୟ ଚୋର ପ୍ରଭୃତିର ଶିରଚ୍ଛେଦାଦି କାର୍ଯ୍ୟ ସମ୍ପାଦକ, ଗ୍ରାମର ବହିର୍ଭାଗରେ ବସତିକାରୀ ଚଣ୍ଡାଳପୁତ୍ର ଉତ୍ପାଦନ କରନ୍ତି । ଏହି ସମସ୍ତ ପୁତ୍ର ଲୋମ ଜାତ ଜାତି ସମୂହ, କୁଳ ପାଂସନ ଅଟନ୍ତି । ହେ ମତିମାନ ଶ୍ରେଷ୍ଠ ବିଭୋ ! ଏମାନେ ବର୍ଣ୍ଣସଙ୍କର ଜାତି ଅଟନ୍ତି । ୧୧ ।

ବୈଶ୍ୟଠାରୁ କ୍ଷତ୍ରିୟା ଗର୍ଭରେ ବାକ୍ୟଜୀବୀ ବନ୍ଦୀ ମାଗଧ ଜାତୀୟ ପୁତ୍ର ଜାତ ହୁଅନ୍ତି । ଶୂଦ୍ରଠାରୁ କ୍ଷତ୍ରିୟା ଗର୍ଭରେ ବ୍ୟତିକ୍ରମ ଅର୍ଥାତ ପାପ ସଂଯୋଗ ହେତୁରୁ ମତ୍ସ୍ୟଘାତୀ ନିଷାଦ ପୁତ୍ର ଉତ୍ପନ୍ନ ହୁଅନ୍ତି । ୧୨ । ଶୂଦ୍ରଠାରୁ ବୈଶ୍ୟା ଗର୍ଭରେ ଗ୍ରାମ୍ୟ ଧର୍ମ ବିଶିଷ୍ଟ ପୁତ୍ର ଜାତ ହୁଅନ୍ତି । ତାହାଙ୍କୁ ଆୟୋଗବ ବୋଲାଯାଏ । ସ୍ୱଧନ ଜୀବୀ ତକ୍ଷ ଅର୍ଥାତ୍ ସୂତ୍ରଧରମାନେ ବ୍ରାହ୍ମଣଗଣଙ୍କର ଅପ୍ରତିଗ୍ରାହ୍ୟ ଅଟନ୍ତି, ଅର୍ଥାତ୍ ବ୍ରାହ୍ମଣ ସୂତ୍ରଧରଙ୍କ ନିକଟରୁ ଦାନ ଗ୍ରହଣ କରିବେ ନାହିଁ । ୧୩ । ଅମ୍ବଷ୍ଠ, ପାରଶବ, ଉଗ୍ର, ସୂତ, ବୈଦେହକ, ଚଣ୍ଡାଳ, ମାଗଧ, ନିଷାଦ ଓ ଆୟୋଗବ ଏମାନେ ସ୍ୱଜାତୀୟ ଓ ଅପର ବମାନିକଟ ଅର୍ଥାତ ବ୍ୟବହାର ନୀଚ ଲୋକରେ ସଦୃଶ ବର୍ଣ୍ଣ ଓ ମାତୃ ଜାତୀୟ ପୁତ୍ର ପ୍ରସବ କରନ୍ତି । ଅର୍ଥାତ, ସେହିମାନେ ସ୍ୱଜାତୀୟ ଭାର୍ଯ୍ୟାଠାରେ ଯେଉଁ ପୁତ୍ରଗଣ ଉତ୍ପାଦନ କରନ୍ତି, ସେମାନେ ସେମାନଙ୍କର ସ୍ୱଜାତୀୟ ବୋଲି ପରିଗଣିତ ହୁଅନ୍ତି ଓ ସେମାନେ ନିଜ ଅପେକ୍ଷା ନୀଚ

ଜାତିରେ ଯେଉଁ ସନ୍ତାନ ସମୂହ ଉତ୍ପାଦନ କରନ୍ତି, ସେମାନେ ନିଜ ନିଜ ମାତୃ ଜାତି ପ୍ରାପ୍ତ ହୁଅନ୍ତି । ୧୪ । ବର୍ଣ୍ଣ ଚତୁଷ୍ଟୟ ମଧ୍ୟରେ ବ୍ରାହ୍ମଣାଦି ଭାର୍ଯ୍ୟା ଦ୍ୱୟରେ ସ୍ୱଜାତିୟ ସନ୍ତାନ ଜାତ ହୁଅନ୍ତି । ସ୍ୱଜାତିର ଆନନ୍ତର୍ଯ୍ୟବଶରୁ ପ୍ରାଧାନ୍ୟ ଅନୁସାରେ ବାହ୍ୟ ବର୍ଣ୍ଣ ସମୂହ ଜାତ ହୁଅନ୍ତି । ୧୫ । ସେମାନେ ମଧ୍ୟ ସ୍ୱଯୋନିରେ ସଦୃଶ ବର୍ଣ୍ଣ ଉତ୍ପାଦନ କରନ୍ତି ଓ ପରସ୍ପରର ପତ୍ନୀଙ୍କ-ଠାରେ ବିଗର୍ହିତ ପୁତ୍ରସମୂହର ଜନ୍ମଦାତା ଅଟନ୍ତି । ୧୬ । ଶୂଦ୍ର ଯେଉଁ-ପରି ବ୍ରାହ୍ମଣୀଙ୍କ ଗର୍ଭରେ ଅତିହୀନ ବର୍ଣ୍ଣ ଚଣ୍ଡାଳର ଜନ୍ମଦାତା ହୁଅନ୍ତି, ସେହିପରି ଚତୁର୍ବର୍ଣ୍ଣର ବହିର୍ଭୂତ ହୀନ ବର୍ଣ୍ଣରୁ ଅତିଶୟ ହୀନତର ବର୍ଣ୍ଣ ଜନ୍ମ ଗ୍ରହଣ କରନ୍ତି । ୧୭ । ପୁନଶ୍ଚ ହୀନତରଠାରୁ ପ୍ରତିଲୋମ ଜାତ ବର୍ଣ୍ଣର ବୃଦ୍ଧି ହୁଏ, ହୀନରୁ ଦାସ ପ୍ରଭୃତି ପଞ୍ଚଦଶ ହୀନତର ବର୍ଣ୍ଣ ଜାତ ହୁଅନ୍ତି । ୧୮ । ଅଗମ୍ୟା ଗମନ ହେତୁରୁ ବର୍ଣ୍ଣସଙ୍କରର ଉତ୍ପତ୍ତି ହୁଏ । ଚତୁର୍ବର୍ଣ୍ଣର ବହିର୍ଭୂତ ବର୍ଣ୍ଣସମୂହର ମଧ୍ୟରେ ସୈରନ୍ଧ୍ରୀ ଓ ମାଗଧ ଜାତିରେ ଭୂପାଳଗଣଙ୍କର ପ୍ରସାଧନକାର୍ଯ୍ୟ ବିଜ୍ଞ ଏବଂ ସେମାନଙ୍କର ଦିବ୍ୟ ଅଙ୍ଗରାଗ ଘର୍ଷଣ ଓ ସ୍ତବାଦି ଦ୍ୱାରା ସନ୍ତୋଷଜନକ ଅଦାସ ଅଥଚ ଦାସ ଜୀବନ ଜାତିର ଜନ୍ମହୁଏ । ୧୯ । ମାଗଧ ବିଶେଷ ସୈରନ୍ଧ୍ର ଯୋନିରେ ବାଗୁରାବନ୍ଧ ଜୀବୀ ଆୟୋଗବ ଜାତିର ଉତ୍ପତ୍ତି ହୁଏ । ମାଗଧୀଠାରେ ବୈଦେହ କର୍ତ୍ତୃକ ମଦ୍ୟକର ମୈରେୟକ ନାମକ ପୁତ୍ର ଉତ୍ପାଦିତ ହୁଏ ।୨୦। ନିଷାଦଜାତି ମଦ୍‌ଗୁର ଅର୍ଥାତ ମଦ୍‌ଗୁନାମକ ମତ୍ସ୍ୟୋପଜୀବୀ ଓ ନୌକା ଉପଜୀବୀ ଦାସ ସନ୍ତାନ ପ୍ରସବ କରେ ଏବଂ ଚଣ୍ଡାଳ, ଶ୍ୱପାକ ନାମରେ ବିଖ୍ୟାତ ମୃତପ ଅର୍ଥାତ୍ ଶ୍ମଶାନାଧିକାରୀ ପୁତ୍ର ପ୍ରସବ କରେ । ୨୧ । ମାଗଧୀ ମାଂସୋପଜୀବୀ ଅର୍ଥାତ ମୃଗବନ୍ଧନ ସାଧକ ଜାଳୋପଜୀବୀ କ୍ରୂର ପୁତ୍ର ଚତୁଷ୍ଟୟ ପ୍ରସବ କରେ । ସେମାନଙ୍କର କାର୍ଯ୍ୟ ମାଂସ ବିକ୍ରୟ ଓ ମାଂସ ସଂସ୍କାର ବଶରୁ ମାଂସ ଓ ସ୍ୱାଦୁକର ନାମ ହୋଇଅଛି; ଅପର ଦୁଇ ଜଣ କ୍ଷୌଦ୍ର ଓ ସୌଗନ୍ଧ ନାମରେ କଥିତ ହୁଅନ୍ତି । ଅତଏବ ମାଗଧ ଜାତିର ବୃତ୍ତି ଚତୁଷ୍ଟୟ ନିର୍ଦ୍ଦିଷ୍ଟ ହୋଇଅଛି । ୨୨ । ପାପିଷ୍ଠ ବୈଦେହକଠାରୁ ଆୟୋଗବ ଗର୍ଭରେ ମାଂସୋପଜୀବୀ କ୍ରୂରପୁତ୍ର ଜାତ ହୁଏ । ଆୟୋଗବୀ ଗର୍ଭରେ ନିଷାଦଠାରୁ ଖରଯାନଗାମୀ । ୨୩ । ମଦ୍ୟନାଭ ଏବଂ ଚଣ୍ଡାଳଠାରୁ ଖର, ଅଶ୍ୱ, ଗଜ, ଭୋଜୀ ପୁକ୍‌କସ ଜାତି ଜାତ ହୁଅନ୍ତି, ସେମାନେ ମୃତ ବ୍ୟକ୍ତିର ବସ୍ତ୍ର ଆବରଣ କରନ୍ତି । ୨୪ ।

ଆୟୋଗବୀଠାରେ ଏହି ତିନବର୍ଣ୍ଣ ଜନ୍ମ ହୁଅନ୍ତି । ବୈଦେହକଠାରୁ ନିଷାଦୀ ଗର୍ଭରେ କ୍ଷୁଦ୍ର, ଅନ୍ଧ୍ର ଓ ଅରଣ୍ୟପଶୁ-ହିଂସୋପଜୀବୀ କୌମାର ନାମକ ଚର୍ମକାର—ଏହି ତିନଗୋଟି ପୁତ୍ର ଜାତ ହୁଅନ୍ତି । ସେମାନେ ଗ୍ରାମର ବହିର୍ଭାଗରେ ବସତି କରନ୍ତି । ଚର୍ମକାରଠାରୁ ନିଷାଦୀ ଗର୍ଭରେ କାରବାର ନାମକ ପୁତ୍ର ଜାତ ହୁଅନ୍ତି ଓ ନିଷାଦୀ ଗର୍ଭରେ ଚଣ୍ଡାଳଠାରୁ ବେଣୁ ବ୍ୟବହାରୋପଜୀବୀ ପାଣ୍ଡୁସୌପାକ ନାମକ ( ପାଣ ) ଜାତି ଜନ୍ମ ଗ୍ରହଣ କରନ୍ତି । ୨୬ । ନିଷାଦଦ୍ୱାରା ବୈଦେହୀ ଗର୍ଭରେ ଆହିଣ୍ଡିକ ନାମକ ପୁତ୍ର ଜାତ ହୁଅନ୍ତି । ସୌପାକଠାରେ ଚଣ୍ଡାଳ କର୍ତ୍ତୃକ ଚଣ୍ଡାଳ ସଦୃଶ ବ୍ୟବହାର ବିଶିଷ୍ଟ ପୁତ୍ର ଜାତ ହୁଏ । ୨୭ । ନିଷାଦୀ ଚଣ୍ଡାଳଠାରୁ ବାହ୍ୟ ବର୍ଣ୍ଣର ବହିଷ୍କୃତ ଶ୍ମଶାନବାସୀ ଅନ୍ତେବସାୟୀ ପୁତ୍ର ପ୍ରସବ କରେ । ୨୮ । ପିତୃମାତୃଙ୍କ ବ୍ୟତିକ୍ରମ ବଶରୁ ଏହି ସମସ୍ତ ସଙ୍କର ଜାତି ଉତ୍ପନ୍ନ ହୁଅନ୍ତି । ସେମାନେ ପ୍ରଚ୍ଛନ୍ନ ହୋଇଥାନ୍ତି ଅଥବା ପ୍ରକାଶ ଭାବରେ ଥାଆନ୍ତି ନିଜ କର୍ମଦ୍ୱାରା ଅମୁକ ଯୋନି ବୋଲି ପରିଚିତ ହୁଅନ୍ତି । ୨୯ ।

ଶାସ୍ତ୍ରରେ ବ୍ରାହ୍ମଣାଦି ବର୍ଣ୍ଣଚତୁଷ୍ଟୟର ଧର୍ମ ବିହିତ ହୋଇଅଛି । ଅନ୍ୟାନ୍ୟ ଧର୍ମହୀନ ଜାତିମାନଙ୍କର ମଧ୍ୟରେ କାହାର ମଧ୍ୟ ଧର୍ମର ନିୟମ ଅଥବା ଇୟତ୍ତା ନାହିଁ । ଅର୍ଥାତ୍ ବ୍ରାହ୍ମଣାଦି ବର୍ଣ୍ଣଚତୁଷ୍ଟୟରୁ ଛଅଗୋଟି ଅନୁଲୋମ ଏବଂ ଛଅଗୋଟି ବିଲୋମ ଜାତ । ଏହି ଦ୍ୱାଦଶବିଧ ସଙ୍କୀର୍ଣ୍ଣ-ବର୍ଣ୍ଣରୁ ଷଟ୍‌ଷଷ୍ଟି ଅନୁଲୋମ ଜାତ ଏବଂ ଷଟ୍‌ଷଷ୍ଟି ପ୍ରତିଲୋମ ଜାତ; ଏତଦ୍‌ଦ୍ୱାରା ଦ୍ୱାତ୍ରିଂଶଦଧିକ ଶତବର୍ଣ୍ଣ ସଙ୍କର ଜାତି ହୁଅନ୍ତି । ଅପିଚ ସେମାନଙ୍କର ଅନୁଲୋମ ଓ ପ୍ରତିଲୋମ ଗଣନା ଦ୍ୱାରା ଅନନ୍ତ ଭେଦ ହୋଇ ଉଠେ । ଅତଏବ ସେହି ସମସ୍ତ ଭେଦ ପୂର୍ବୋକ୍ତ ପଞ୍ଚଦଶ ଭେଦର ଅନ୍ତର୍ଗତ, ଏହି କାରଣରୁ ସମସ୍ତଙ୍କର ପରିସଂଖ୍ୟା ପ୍ରଦର୍ଶିତ ହେଲା ନାହିଁ । ୩୦ ।

ସ୍ୱେଚ୍ଛାକ୍ରମେ ଅର୍ଥାତ୍ ଜାତିଗତ ନିୟମ ନଥିବାରୁ ମିଥୁନୀଭାବ ପ୍ରାପ୍ତ ଯଜ୍ଞ ଓ ସାଧୁଗଣଙ୍କଠାରୁ ବହିଷ୍କୃତ ବାହ୍ୟାବାହ୍ୟ ବର୍ଣ୍ଣସଙ୍କର

ଜାତିବୃନ୍ଦ ଯଦୃଚ୍ଛାକ୍ରମେ କର୍ମାନୁସାରେ ଜୀବିକା ଓ ଜାତିବିଶେଷକୁ ପ୍ରାପ୍ତ ହୁଅନ୍ତି । ଏମାନେ ଚତୁଷ୍ପଥ ଶ୍ମଶାନ, ଶୈଳ ଓ ଅନ୍ୟାନ୍ୟ ବନସ୍ପତି ସନ୍ନିଧାନରେ ନିଯୁକ୍ତ କୃଷ୍ଣବର୍ଣ୍ଣ ଲୌହମୟ ଅଳଙ୍କାର ପରିଧାନପୂର୍ବକ ନିଜ କର୍ମଦ୍ୱାରା ଜୀବିକା ଯାପନ କରି ସମସ୍ତଙ୍କ ବିଜ୍ଞାତ ହୋଇ ବାସ କରିବେ । ଅଳଙ୍କାର ଓ ଗୃହର ଉପକରଣ ଦ୍ରବ୍ୟ ସମୂହ ପ୍ରସ୍ତୁତ କରୁଥିବେ । ୩୩ । ସେମାନେ ଗୋ ବ୍ରାହ୍ମଣମାନଙ୍କୁ ସାହାଯ୍ୟ କରିବେ, ଏହି ବିଷୟରେ ସଂଶୟ ନାହିଁ—ହେ ନରବର ! ଆନୃଶଂସ, ଦୟା, ସତ୍ୟବାକ୍ୟ, କ୍ଷମା ଏବଂ ସ୍ୱଶରୀର ମଧ୍ୟ ବିପଦଗ୍ରସ୍ତମାନଙ୍କର ପରିତ୍ରାଣର କାରଣ ଓ ବାହ୍ୟବର୍ଣ୍ଣମାନଙ୍କର ସିଦ୍ଧିର କାରଣ । ସେହି ବିଷୟରେ ଆମ୍ଭର ସଂଶୟ ନାହିଁ । ୩୫ ।

ବୁଦ୍ଧିମାନ ମନୁଷ୍ୟ ଉପଦେଶାନୁସାରେ ପରିକୀର୍ତ୍ତି ଓ ହୀନଜାତି ବିବେଚନା କରି ପୁତ୍ରୋତ୍ପାଦନ କରିବେ; କାରଣ ପ୍ରସ୍ତର ଯେଉଁପରି ଜଳ ମଧ୍ୟରେ ତରଣେଚ୍ଛୁ ନରକୁ ଅବସନ୍ନ କରେ, ନିତାନ୍ତ ହୀନଯୋନି ଜାତ ପୁତ୍ର ବଂଶକୁ ତଦ୍‌ବତ୍ ଅବସନ୍ନ କରେ । ୩୬ । ଇହଲୋକରେ ସ୍ତ୍ରୀଗଣ ବିଦ୍ୱାନ ଅଥବା ଅବିଦ୍ୱାନ ବ୍ୟକ୍ତିକୁ କାମ କ୍ରୋଧର ବଶୀଭୂତ କରି ନିତାନ୍ତ କୁପଥକୁ ନେଇ ଯାଆନ୍ତି । ୩୭ । ନାରୀଗଣଙ୍କ ସ୍ୱଭାବ ଦୋଷର ଆକର; ଅତଏବ ବିପଣ୍ଡିତ ବ୍ୟକ୍ତିଗଣ ପ୍ରମଦାମାନଙ୍କ-ଠାରେ ଅତିଶୟ ପ୍ରସକ୍ତ ହୁଅନ୍ତି ନାହିଁ । ୩୮ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ଯେଉଁ ବ୍ୟକ୍ତି ଉତ୍କୃଷ୍ଟ ବର୍ଣ୍ଣର ସ୍ତ୍ରୀ ଗର୍ଭରେ ଅପକୃଷ୍ଟ ବର୍ଣ୍ଣର ଔରସରେ ଜନ୍ମଗ୍ରହଣପୂର୍ବକ ଆର୍ଯ୍ୟ ବ୍ୟକ୍ତି ସଦୃଶ ରୂପ ବେଶାଦି ସମ୍ପନ୍ନ ହୋଇଥାଏ, ଆମ୍ଭେମାନେ ତାହାକୁ କେଉଁପରି ବର୍ଣ୍ଣସଙ୍କର ବୋଲି ପରିଜ୍ଞାତ ହେବୁଁ ? ୩୯ । ଭୀଷ୍ମ କହିଲେ—ହେ ଯୁଧିଷ୍ଠିର ! ଅନାର୍ଯ୍ୟଗଣଙ୍କଠାରେ ପୃଥକ୍ ପୃଥକ୍ ଭାବ ଓ ଚେଷ୍ଟାଯୁକ୍ତ ମାନବଙ୍କୁ ସଙ୍କର ଜାତି ବୋଲି ଜାଣିବ ଓ ସଜ୍ଜନାଚରିତ କର୍ମଦ୍ୱାରା ଯୋନିଶୁଦ୍ଧତା ବିଜ୍ଞାତ ହେବ । ୪୦ । ଇହଲୋକରେ ଅନାର୍ଯ୍ୟତ୍ୱ, ଅନାଚାର, କ୍ରୂରତା ଓ ନିଷ୍କ୍ରିୟାତ୍ମତା—ଏହି ସମସ୍ତ କଳୁଷ

ଯୋନିଜ ପୁରୁଷକୁ ପ୍ରକାଶ କରିଦିଅନ୍ତି । ୪୧ । ସଂକୀର୍ଣ୍ଣଜାତ ପିତୃ-ସ୍ୱଭାବ, ମାତୃ-ସ୍ୱଭାବ ଅଥବା ପିତାମାତା ଉଭୟଙ୍କ ସ୍ୱଭାବକୁ ପ୍ରାପ୍ତ ହୁଅନ୍ତି । ସେ କଦାପି ଆପଣାର ପ୍ରକୃତିକୁ ଗୋପନ କରି ରଖିପାରେ ନାହିଁ । ୪୨ ।

ତିର୍ଯ୍ୟକ-ଯୋନି-ଜାତ ବ୍ୟାଘ୍ର ପ୍ରଭୃତି ଯେଉଁପରି ବିଚିତ୍ର ବର୍ଣ୍ଣ ସହିତ ମାତାପିତାଙ୍କ ରୂପ ସାଦୃଶ୍ୟ ଧାରଣକରି ଜନ୍ମଗ୍ରହଣ କରନ୍ତି, ପୁରୁଷ ସେହିପରି ନିଜ ଯୋନି ସ୍ୱଭାବ ପ୍ରାପ୍ତ ହୁଅନ୍ତି । ୪୩ । ବଂଶସ୍ରୋତ ସଂଛନ୍ନ ହେବାରୁ ଯାହାଙ୍କର ଯୋନି ସଙ୍କର ହୁଏ, ସେହି ନର ଯେଉଁ ବ୍ୟକ୍ତିର ଔରସରେ ଜନ୍ମଗ୍ରହଣ କରେ, ତାହାର ଅଳ୍ପ ଅଥବା ବହୁଚରିତ୍ର ଅବଶ୍ୟ ତାହାଠାରେ ଆଶ୍ରୟ କରେ ।୪୪। କୃତ୍ରିମ ପଥରେ ଆର୍ଯ୍ୟରୂପରେ ବିଚରଣଶୀଳ ବ୍ୟକ୍ତି ଉତ୍କୃଷ୍ଟ ବର୍ଣ୍ଣ ଅଥବା ନିକୃଷ୍ଟ ବର୍ଣ୍ଣ, ଏହା ନିଶ୍ଚୟ କରିବାକୁ ହେଲେ ତାହାର ସ୍ୱଭାବ ତାହା ପ୍ରକାଶ କରିଦିଏ । ସୁବର୍ଣ୍ଣ ଯେଉଁ-ପରି ବାହ୍ୟରେ କଠିନ ହୋଇ ସୁଦ୍ଧା କାର୍ଯ୍ୟ ସମୟରେ ମୃଦୁ ହୁଏ ଏବଂ ଦୁର୍ବର୍ଣ୍ଣ ଅର୍ଥାତ୍ ରଜତ ଯେଉଁପରି ମୃଦୁ ହୋଇ କାର୍ଯ୍ୟ କାଳରେ କଠିନ ହୁଏ, ସୁଜାତ ଓ କୁଜାତ ପୁରୁଷଗଣଙ୍କର ଜନ୍ମ ଓ ଚରିତ୍ର ସେହିପରି ଅଟେ । ୪୫ ।

ବିବିଧ କର୍ମରତ ବହୁବିଧ ଚରିତ୍ର ଜୀବଗଣଙ୍କର ଜନ୍ମ ଓ ଚରିତ୍ର ଉପଚିତ ବ୍ୟବହାରକୁ ପରିହାର କରି ଅନ୍ୟଥା ରୂପେ ଅବସ୍ଥାନ କରେ । ୪୬ । ସଙ୍କରଜାତ ବର୍ଣ୍ଣର ଶରୀର ଶାସ୍ତ୍ରୀୟ ବୁଦ୍ଧି ଦ୍ୱାରା ନୀଚ ମାର୍ଗରୁ ଆକୃଷ୍ଟ ହୁଏ ନାହିଁ । ବୀଜ ଗୁଣର ପ୍ରବଳତା ହେତୁରୁ କାଳ ଭେଦରେ ବୁଦ୍ଧି ବୃତ୍ତିର ପ୍ରାଧାନ୍ୟ ହେଲେ ସୁଦ୍ଧା ଶରୀରାରମ୍ଭକ ସତ୍ତ୍ୱର ଜ୍ୟେଷ୍ଠତ୍ୱ; ମଧ୍ୟମତ୍ୱ ଓ ଅବରତ୍ୱ ଅନୁସାରେ ଯାହା ସମାନ ହୁଏ, ତାହା କେବଳ ପ୍ରକାଶ ହୁଏ । ଅନ୍ୟ ସତ୍ତ୍ୱ ଉତ୍ପନ୍ନ ହେବା ମାତ୍ରେ ଶରତ୍କାଳିକ ମେଘ ସଦୃଶ ଲୀନ ହୋଇ-ଯାଏ । ୪୭ । ବର୍ଣ୍ଣ ଜ୍ୟେଷ୍ଠ ବ୍ୟକ୍ତି ଯଦି ସଦାଚାର ବିହୀନ ହୁଅନ୍ତି ତେବେ ତାହାଙ୍କୁ ସମ୍ମାନ କରିବ ନାହିଁ ଓ ଶୂଦ୍ର ଯଦି ଧର୍ମଜ୍ଞ ଓ ସଦାଚାର ସମ୍ପନ୍ନ ହୁଅନ୍ତି, ତେବେ ତାହାଙ୍କୁ ସମ୍ମାନ କରିବ । ୪୮ । ମନୁଷ୍ୟ ଶୁଭାଶୁଭ କର୍ମ,

ସୁଶୀଳତା, ସଚ୍ଚରିତ୍ର ଓ କୁଳହାଗ ଆପଣାକୁ ପ୍ରକାଶ କରନ୍ତି । କୁଳନଷ୍ଟ ହେଲେ ପୁରୁଷ ନିଜ କର୍ମ ଦ୍ୱାରା ପୁନଶ୍ଚ ତାହାକୁ ଅବଲମ୍ବରେ ଉଦ୍ଧାର କରନ୍ତି । ୪୯ । ଏହି ସମସ୍ତ ସଙ୍କୀର୍ଣ୍ଣ ଓ ଇତର ଯୋନି ମଧ୍ୟରେ ଯାହାଠାରେ ପୁତ୍ରୋତ୍ପାଦନ କରିବାର ଉଚିତ ନୁହେଁ; ପଣ୍ଡିତବ୍ୟକ୍ତି ସଦୃଶ ସ୍ତ୍ରୀଙ୍କୁ ପରିତ୍ୟାଗ କରିବେ । ୫୦ ।

ବର୍ଣ୍ଣସଙ୍କର କଥନେ ଅଷ୍ଟଚତ୍ୱାରିଂଶ ଅଧ୍ୟାୟ ସମାପ୍ତ । ୪୮ ।



# ଏକୋନପଞ୍ଚାଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ତାତ କୁରୁଶ୍ରେଷ୍ଠ ! ଆପଣ ବର୍ଣ୍ଣସମୂହର ପୃଥକ୍ ପୃଥକ୍ ବିଷୟ ବର୍ଣ୍ଣନ କରିବା ହେଉନ୍ତୁ । କୀଦୃଶ ପତ୍ନୀଠାରେ କୀଦୃଶ ପୁତ୍ର ହେବେ ? ସେମାନେ କାହାର ପୁତ୍ର ଏବଂ ସେମାନେ କିଏ ? ୧। ହେ ରାଜନ୍ ! ପୁତ୍ର ବିଷୟରେ ବିବିଧ ପ୍ରବାଦ ଶୁଣାଯାଏ, ସୁତରାଂ ସେହି ବିଷୟରେ ଆମ୍ଭେମାନେ ମୁଗ୍ଧ ହୋଇଅଛୁଁ । ଅତଏବ ଆପଣ ଆମ୍ଭମାନଙ୍କର ସଂଶୟ ଛେଦନ କରିବା ହେଉନ୍ତୁ । ୨ ।

ଭୀଷ୍ମ କହିଲେ, ଔରସ ଜାତ ପୁତ୍ର ଆତ୍ମା ସ୍ୱରୂପ । ଯେଉଁ ସ୍ତ୍ରୀ ସ୍ୱାମୀଙ୍କ ଆଜ୍ଞାନୁସାରେ ଅନ୍ୟ ପୁରୁଷଦ୍ୱାରା ପୁତ୍ରୋତ୍ପାଦନ କରନ୍ତି, ତାହାଙ୍କର ସେହି ପୁତ୍ର ନିରୁକ୍ତଜ ଏବଂ ଯେଉଁ ସ୍ତ୍ରୀ ସ୍ୱାମୀଙ୍କ ଅନୁମତି ବ୍ୟତିରେକେ ଜାର ଦ୍ୱାରା ପୁତ୍ର ଉତ୍ପାଦନ କରନ୍ତି ତାହାଙ୍କର ସେହି ପୁତ୍ର ପ୍ରସୃତଜ ଅଟନ୍ତି । । ୩ । ପତିତବ୍ୟକ୍ତି ସ୍ୱୀୟ ଭାର୍ଯ୍ୟା ଗର୍ଭରେ ପୁତ୍ରୋତ୍ପାଦନ କଲେ, ସେହି ପୁତ୍ର କୁପତିତଜ ବୋଲାଯାଏ । ବିନା ମୂଲ୍ୟରେ ଅନ୍ୟଠାରୁ ଯେଉଁ ପୁତ୍ରକୁ ଲାଭ କରାଯାଏ, ତାହାକୁ ଦତ୍ତକପୁତ୍ର ବୋଲାଯାଏ ଓ ମୂଲ୍ୟ ଦ୍ୱାରା ଯେଉଁ ପୁତ୍ରକୁ ଲାଭ କରାଯାଏ ସେ କ୍ରୀତପୁତ୍ର ହୁଏ । ଯେଉଁ ବ୍ୟକ୍ତି ଗର୍ଭବତୀ ସ୍ତ୍ରୀଙ୍କ ପାଣିଗ୍ରହଣ କରନ୍ତି, ତାହାଙ୍କର ସେହି ସ୍ତ୍ରୀଙ୍କ ଗର୍ଭଜାତ ପୁତ୍ରକୁ

ଅବ୍ୟୂଢ଼ କହନ୍ତି । ୪ । ଅବିବାହିତା କୁମାରୀର ଗର୍ଭଜାତ ପୁତ୍ରକୁ କାନୀନ ପୁତ୍ର ବୋଲିଯାଏ । ଏମାନଙ୍କ ଭିନ୍ନ ଛଅ ପ୍ରକାର ଅପଧ୍ୱଂଶଜ ପୁତ୍ର ଓ ଛଅ ପ୍ରକାର ଅପସଦପୁତ୍ର ଅଛନ୍ତି । ହେ ଭରତ ! ଏମାନଙ୍କୁ ଜାଣ । ୫ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! କେଉଁମାନେ ଷଡ଼୍‌ବିଧ ଅପଧ୍ୱଂଶଜ ଓ କେଉଁମାନେ ଛଅ ପ୍ରକାର ଅପସଦ ଅଟନ୍ତି, ସେମାନଙ୍କର ବିଷୟ ଯଥାର୍ଥ ରୂପେ ଆମ୍ଭଙ୍କୁ କହିବା ହେଉନ୍ତୁ । ୭ । ଭୀଷ୍ମ କହିଲେ, ହେ ଭରତ ଯୁଧିଷ୍ଠିର ! ବ୍ରାହ୍ମଣଙ୍କର ଅପର ତିନି ବର୍ଣ୍ଣରେ ଅନୁଲୋମ ଜାତ ଯେଉଁ ତ୍ରିବିଧ ପୁତ୍ର ହୁଅନ୍ତି, କ୍ଷତ୍ରିୟଙ୍କର ଅପର ଦୁଇ ବର୍ଣ୍ଣରେ ଅନୁଲୋମଜାତ ଯେଉଁ ଦ୍ୱିବିଧ ପୁତ୍ର ହୁଅନ୍ତି ଏବଂ ବୈଶ୍ୟର ଅନ୍ୟ ବର୍ଣ୍ଣରେ ଯେଉଁ ଏକପ୍ରକାର ପୁତ୍ର ଜାତ ହୁଅନ୍ତି, ସେହି ଛଅ ଜଣଙ୍କୁ ଅପଧ୍ୱଂଶଜ ବୋଲି ଜାଣ । ଏଥୁ ଉତ୍ତାରେ ଅପସଦମାନଙ୍କର ବିଷୟ ଶ୍ରବଣ କର । ୮ ।

ବ୍ରାହ୍ମଣୀଠାରେ ଶୂଦ୍ର ସନ୍ତାନ, ଚଣ୍ଡାଳ କ୍ଷତ୍ରିୟାଠାରେ ବ୍ରାତ୍ୟ ଅର୍ଥାତ୍ ସଂସ୍କାର-ବିବର୍ଜିତ-ପୁତ୍ର ଏବଂ ବୈଶ୍ୟାଠାରେ ବୈଦ୍ୟ ଏହି ତ୍ରିବିଧ ପୁତ୍ର ଅପସଦ ବୋଲି ଲକ୍ଷିତ ହୁଅନ୍ତି । ୯ । ଏବଂ ବୈଶ୍ୟର ବ୍ରାହ୍ମଣୀଠାରେ ମାଗଧ ଓ କ୍ଷେତ୍ରିୟାଠାରେ ବାମକ ଏହି ଦ୍ୱିବିଧ ପୁତ୍ର ଅପସଦ ବୋଲି ଦୃଷ୍ଟ ହୁଅନ୍ତି ଏବଂ କ୍ଷତ୍ରିୟଙ୍କର ବ୍ରାହ୍ମଣୀଠାରେ କେବଳ ସୂତ ଜାତୀୟ ପୁତ୍ର ବିଲୋକିତ ହୁଅନ୍ତି । ଅତଏବ ଏହି ଛଅ ପ୍ରକାର ପୁତ୍ର ଅପସଦ ନାମରେ ସ୍ମୃତ ହୁଅନ୍ତି । ହେ ନରାଧିପ ! ଏହି ସମସ୍ତ ପୁତ୍ରଗଣଙ୍କୁ ମିଥ୍ୟା କରିବାକୁ ଅର୍ଥାତ୍ ଏମାନେ ପୁତ୍ର ନୁହନ୍ତି ଏହି କଥା କହିବାକୁ କେହି ସମର୍ଥ ହୁଅନ୍ତି ନାହିଁ । ୧୧ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! କେଉଁ କେଉଁ ପୁତ୍ରଙ୍କୁ କ୍ଷେତ୍ରଜ, କେଉଁ କେଉଁ ପୁତ୍ରଙ୍କୁ ଶୁକ୍ରଜ ବୋଲିଯାଏ ଓ ସେହି ଦ୍ୱିବିଧ ପୁତ୍ର କେଉଁ ବ୍ୟକ୍ତିଙ୍କର ସମାନ ଅଟନ୍ତି ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୧୨ । ଭୀଷ୍ମ କହିଲେ, ନିଜ ପତ୍ନୀ ଗର୍ଭରେ ସ୍ୱକୀୟ ;ରେତ ଜାତ ପୁତ୍ରକୁ ଔରସ ପୁତ୍ର କହନ୍ତି । ଯଦି କେହି ପରସ୍ତ୍ରୀ ଗର୍ଭରେ ସନ୍ତାନ ଉତ୍ପାଦନ କରନ୍ତି,

କ୍ଷେତ୍ର ପୁତ୍ରକୁ ସେହି ସ୍ତ୍ରୀଙ୍କ ପତିର କ୍ଷେତ୍ରଜ ପୁତ୍ର ବୋଲାଯାଏ । ସେହି ପୁତ୍ର ଉତ୍ପାଦକଙ୍କର ଆତ୍ମଜ ଅଟେ ବୋଲି ସେହି ଉତ୍ପାଦକ ବ୍ୟକ୍ତି ଉକ୍ତ ପୁତ୍ରର ଅଧିକାରୀ ଅଟନ୍ତି । କିନ୍ତୁ ସେ ତାହାଙ୍କୁ ତ୍ୟାଗ କଲେ, ସେହି ପୁତ୍ରର ଜନନୀର ସ୍ୱାମୀ ତାହାର ଅଧିକାରୀ ହେବେ । ଯଦି କୌଣସି ବ୍ୟକ୍ତି ନିୟମ ଭଙ୍ଗ କରି ଗର୍ଭବତୀ ସ୍ତ୍ରୀଙ୍କର ପାଣିଗ୍ରହଣ କରନ୍ତି, ତାହାଙ୍କ ଗର୍ଭରୁ ଉତ୍ପନ୍ନ ପୁତ୍ରକୁ ଅଧ୍ୟୂଢ଼ ବୋଲାଯାଏ, ଏହି କଥା ଆମ୍ଭଠାରୁ ଜାଣ । ୧୩ ।

ଯୁଧିଷ୍ଠିର କହିଲେ, ଆମ୍ଭେମାନେ ଔରସ ପୁତ୍ରକୁ ପୁତ୍ର ବୋଲି ଜାଣୁଁ କିନ୍ତୁ କ୍ଷେତ୍ରଜ ପୁତ୍ରର କିପରି ପୁତ୍ରତ୍ୱ ସିଦ୍ଧ ହୋଇ ପାରେ ଏବଂ ସମୟ ଭଙ୍ଗ କଲା ଉତ୍ତାରେ ଅଧ୍ୟୂଢ଼ ବ୍ୟକ୍ତି କେଉଁପରି ପୁତ୍ର ହୋଇ ପାରନ୍ତି, ଆମ୍ଭେ ତାହା ଜାଣିବାକୁ ଅଭିଳାଷ କରୁଅଛୁଁ । ୧୪ ।

ଭୀଷ୍ମ କହିଲେ, ଯେଉଁ ବ୍ୟକ୍ତି ଆତ୍ମଜ ପୁତ୍ର ଉତ୍ପାଦନ କରି ଲୋକାପବାଦ ଭୟରେ ତାହାକୁ ପରିତ୍ୟାଗ କରନ୍ତି, ତାହାଠାରେ ରେତ କାରଣ ହୁଏନାହିଁ; କ୍ଷେତ୍ର ସ୍ୱାମୀର ସେହି ପୁତ୍ରଙ୍କଠାରେ ଅଧିକାର ହୁଏ । ୧୫ । ହେ ରାଜନ୍ ! ପୁତ୍ର କାମ ବ୍ୟକ୍ତି ପୁତ୍ର ନିମିତ୍ତ ଯେଉଁ ଗର୍ଭବତୀ କନ୍ୟାଙ୍କୁ ଗ୍ରହଣ କରନ୍ତି, ତାହାଙ୍କର ଯେଉଁ ପୁତ୍ର ଉତ୍ପନ୍ନ ହୁଏ; ସେ ପରିଣେତାର କ୍ଷେତ୍ରଜ ରୂପେ ପ୍ରମାଣୀକୃତ ହେବେ । ସେ ରେତଃ ସେଚନ-କାରୀଙ୍କର ଆତ୍ମଜ ହେବେ ନାହିଁ । ୧୬ ।

ହେ ଭରତଶ୍ରେଷ୍ଠ ! ପରକ୍ଷେତ୍ରରେ ଜାତ ହୋଇଥିବା ପୁତ୍ର ଅମୁକ ସଦୃଶ ବୋଲି ତଦୀୟ ରୂପରେ ଲକ୍ଷ୍ୟ ହୁଏ; ସେହି ହେତୁରୁ ଆପଣାକୁ ଗୋପନ କରିହୁଏ ନାହିଁ, ତାହା ପ୍ରତ୍ୟକ୍ଷରେ ଜଣା ଯାଉଥାଏ । ଅତଏବ ଅଧ୍ୟୂଢ଼ ପୁତ୍ର ଅପ୍ରକାଶିତ ହୋଇ ରହେ ନାହିଁ । ପରିଣେତାର ପୁତ୍ର କାମନା ନଥିଲେ, ଅଧ୍ୟୂଢ଼ ପୁତ୍ର ରେତଃପତିଙ୍କର ଅଧିକାରଭୁକ୍ତ ହୁଅନ୍ତି । । ୧୭ । ହେ ଭାରତ ! ଶୁକ୍ର ଓ କ୍ଷେତ୍ର ଯଦି ପୁତ୍ରତ୍ୱର ପ୍ରମାଣ ବା ଲକ୍ଷ୍ୟ ନୁହେ, ତେବେ କୌଣସିଠାରେ ସଂଗ୍ରହ ବଶରୁ କୃତକ ପୁତ୍ର ଲକ୍ଷ୍ୟ ହୋଇ-ଥାନ୍ତି । ୧୮ ।

ଯୁଧିଷ୍ଠିର କହିଲେ, ହେ ଭରତ ! ଯେତେବେଳେ ଶୁକ୍ର ଓ କ୍ଷେତ୍ର ପ୍ରକାଶ ବା ଲକ୍ଷ୍ୟ ନୁହେ; ତେତେବେଳେ ସଂଗ୍ରହ ବଶରୁ ଯେଉଁ କୃତକ ପୁତ୍ର ଲକ୍ଷ୍ୟ ହୋଇଥାନ୍ତି, ସେ କାଦୃଶ ଅଟନ୍ତି ? ୧୯ ।

ଭୀଷ୍ମ କହିଲେ, ଯେଉଁ ପୁତ୍ର ପିତାମାତାଙ୍କ ଦ୍ୱାରା ମାର୍ଗମଧ୍ୟରେ ପରିତ୍ୟକ୍ତ ହୋଇଥିବାରୁ ଅନ୍ୟ କୌଣସି ବ୍ୟକ୍ତି ତାହାକୁ ପୁତ୍ର ବୋଲି କଳ୍ପନା କରେ, ଅଥଚ ତାହାର ମାତାପିତା ଦୁହେଁ ସେହି ବିଷୟକୁ ନ ଜାଣନ୍ତି, ସେହି ପୁତ୍ରକୁ କୃତକ ପୁତ୍ର ଅଥବା କୃତ୍ରିମ ପୁତ୍ର ବୋଲିଯାଏ ।୨୦। ଯେଉଁ ପୁତ୍ରଠାରେ ଅସ୍ୱାମୀକ ବ୍ୟକ୍ତିର ସ୍ୱାମୀତ୍ୱ ଦୃଷ୍ଟ ହେବ, ତାହାକୁ ଯେଉଁ ବର୍ଣ୍ଣର ବ୍ୟକ୍ତି ପ୍ରତିପାଳନ କରେ, ସେହି ପୁତ୍ର ସେହି ପ୍ରତିପାଳକର ବର୍ଣ୍ଣ ପ୍ରାପ୍ତ ହେବ । ୨୧ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ଯେଉଁ ବ୍ୟକ୍ତି ପିତାମାତାଙ୍କ ଦ୍ୱାରା ପରିତ୍ୟକ୍ତ ହୋଇଥାଏ, ସେ କେଉଁ ପ୍ରକାରରେ କାହାଦ୍ୱାରା ସଂସ୍କାରପ୍ରାପ୍ତ ହେବ, ସେ କାହାର ପୁତ୍ର ବୋଲାଇବ ଓ ତାହାକୁ କି ପ୍ରକାରେ କନ୍ୟାଦାନ କରାଯିବ—ସେହି ବିଷୟ ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୨୨ ।

ଭୀଷ୍ମ କହିଲେ, ପିତାମାତା କର୍ତ୍ତୃକ ପରିତ୍ୟକ୍ତ ଅସ୍ୱାମୀକ ବ୍ୟକ୍ତି ଯେଉଁ ପାଳନକର୍ତ୍ତା ସ୍ୱାମୀଙ୍କର ବର୍ଣ୍ଣପ୍ରାପ୍ତ ହୁଏ, ସେହି ସ୍ୱାମୀଙ୍କ ଦ୍ୱାରା ତାହାଙ୍କର ସଂସ୍କାର କର୍ତ୍ତବ୍ୟ, ଅତଏବ ସେହି ପାଳନକର୍ତ୍ତା ସ୍ୱାମୀ ଆତ୍ମସଦୃଶ ତାହାଙ୍କର ସଂସ୍କାର କରିବେ । ୨୩ । ହେ ଅଚ୍ୟୁତ ଯୁଧିଷ୍ଠିର ! ଯେତେବେଳେ ତାହାଙ୍କର ଅନ୍ୟ ବର୍ଣ୍ଣ ନିଷ୍ଟସ୍ତ ହେବ, ତେତେବେଳେ ସ୍ୱାମୀ ତାହାଙ୍କର ଗୋତ୍ର ଓ ବର୍ଣ୍ଣ ଅନୁସାରେ ସଂସ୍କାର କରିବେ ଏବଂ ତାହାଙ୍କର ବର୍ଣ୍ଣାନୁସାରିଣୀ କନ୍ୟା ପ୍ରଦାନ କରିବେ । ଯଦି ତାହାର ବର୍ଣ୍ଣ ନିଷ୍ଟସ୍ତ ନହୁଏ, ତାହାହେଲେ ସ୍ୱାମୀ ଆପଣାର ବର୍ଣ୍ଣ ସଂସ୍କାର ଓ ନିଜଜାତିରେ ବିବାହ କରିବ । ୨୪ । ସଂସ୍କାର ସାମର୍ଥ୍ୟ ଅନୁସାରେ ବାଳକ ବର୍ଣ୍ଣ ପ୍ରାପ୍ତ ହୁଏ । ଭିନ୍ନ ଗୋତ୍ର ଓ ଭିନ୍ନ ବର୍ଣ୍ଣ ହେଲେ ସୁଦ୍ଧା ବାଳକ ସଂସ୍କାର କର୍ତ୍ତାଙ୍କ ବର୍ଣ୍ଣ ଓ ଗୋତ୍ରକୁ ପ୍ରାପ୍ତ ହୁଅନ୍ତି । ସଂସ୍କାର-

କରିବାର କାରଣ ବର୍ଣ୍ଣ ଓ ଗୋତ୍ରର ପ୍ରୟୋଜନ ହୋଇଥାଏ । ମାତ୍ର ବର୍ଣ୍ଣର ନିଶ୍ଚୟ ହେଲାରୁ, କାମଜ ଓ ଅଧ୍ୟୂଢ଼ ପୁତ୍ର—ଏହି ଦୁହିଁଙ୍କୁ ନିକୃଷ୍ଟ ବୋଲି ଜାଣିବାକୁ ହେବ । ୨୫ । ସେହି ଦୁହିଁଙ୍କର ସଂସ୍କାର ନିଜପୁତ୍ର ସଦୃଶ କର୍ତ୍ତବ୍ୟ । ଏହି କଥା ଶାସ୍ତ୍ରରେ ନିଶ୍ଚୟ ହୋଇଅଛି । କ୍ଷେତ୍ରଜ, ଅପସଦ, ଅଥବା ଯେଉଁମାନେ ଅଧ୍ୟୂଢ଼ପୁତ୍ର ବ୍ରାହ୍ମଣ ପ୍ରଭୃତି ଜାତିମାନେ ଆତ୍ମସଦୃଶ ସେମାନଙ୍କର ସଂସ୍କାର କରିବେ । ଧର୍ମଶାସ୍ତ୍ର ସମୂହରେ ବର୍ଣ୍ଣ-ମାନଙ୍କର ଏହିପରି ନିଶ୍ଚୟ ଦୃଷ୍ଟ ହୋଇଅଛି । ୨୬ । ଏହି ସମସ୍ତ ବିଷୟ ତୁମକୁ କହିଲୁଁ । ପୁନଶ୍ଚ କେଉଁ ବିଷୟ ଶୁଣିବାକୁ ଇଚ୍ଛାହୁଏ । ତାହା ପ୍ରଶ୍ନକର । ୨୮ ।

ଦାନଧର୍ମେ ଏକୋନପଞ୍ଚାଶତ୍ତମ ଅଧ୍ୟାୟ ସମାପ୍ତ । ୪୯ ।



# ପଞ୍ଚାଶତ୍ତମ ଅଧ୍ୟାୟ

ଯୁଧିଷ୍ଠିର କହିଲେ, ହେ ପିତାମହ ! ପରପୀଡ଼ା ଦର୍ଶନରେ କୀଦୃଶ ସ୍ନେହ କର୍ତ୍ତବ୍ୟ ଏବଂ ପର ସହବାସରେ କେଉଁପ୍ରକାର ଆନୃଶଂସ୍ୟ ଅନୁଷ୍ଠାନ କରିବାର ଉଚିତ ଓ ଗୋମାନଙ୍କର କି ପ୍ରକାର ମାହାତ୍ମ୍ୟ ଅଛି, ଆପଣ ଆମ୍ଭ ନିକଟରେ ତାହା କୀର୍ତ୍ତନ କରିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ, ହେ ମହାଦ୍ୟୁତେ ! ଆମ୍ଭେ ତୁମ୍ଭ ନିକଟରେ ନହୁଷ ନୃପତି ଓ ମହର୍ଷି ଚ୍ୟବନଙ୍କ ସମ୍ବାଦ ସମ୍ବଳିତ ପୁରାତନ ଇତିହାସ କୀର୍ତ୍ତନ କରିବୁଁ । ୨ । ହେ ଭରତ ପ୍ରବର ! ପୂର୍ବ କାଳରେ ଭୃଗୁ ବଂଶୋଦ୍ଭବ ମହାବ୍ରତ ମହର୍ଷି ଚ୍ୟବନ ଜଳ ମଧ୍ୟରେ ବାସ କରିବାକୁ ଆରମ୍ଭ କରିଥିଲେ । । ୩ । ସେ ଅଭିମାନ, କ୍ରୋଧ, ହର୍ଷ ଓ ଶୋକକୁ ବିନାଶ କରି ଦ୍ୱାଦଶ ବର୍ଷକାଳ ମୌନାବଲମ୍ବନ ପୂର୍ବକ ଜଳ ମଧ୍ୟରେ ବାସ କରି ବ୍ରତଧାରୀ ହୋଇଥିଲେ । ୪ । ପ୍ରଭୁ ଶୀତରଶ୍ମିଙ୍କ ସଦୃଶ ସମସ୍ତ ଜଳଚର ଜୀବଗଣଙ୍କ-

ଠାରେ ପରମ ପବିତ୍ର ବିଶ୍ରାମ ସ୍ଥାପନ ପୂର୍ବକ ସ୍ଥାଣୁ, ଭୂତ ଓ ଶୁଚି ହୋଇ ଦେବତାଙ୍କୁ ପ୍ରଣାମ କରି ଗଙ୍ଗା ଓ ଯମୁନାର ମଧ୍ୟ ଭାଗରେ ଜଳ ଭିତରେ ପ୍ରବେଶ କରିଥିଲେ । ୬ । ଗଙ୍ଗା-ଯମୁନାର ବାତବେଗ ସମ ଅତିଶୟ ଭୟଙ୍କର ଭୀମ ନିସ୍ୱନ ବେଗ ମସ୍ତକ ଦ୍ୱାରା ଗ୍ରହଣ କରିଥିଲେ । ୭ । ଗଙ୍ଗା ଯମୁନା ପ୍ରଭୃତି ନଦୀ ସମୂହ ଓ ସରୋବରଗଣ ଋଷିଙ୍କୁ ପ୍ରଦକ୍ଷିଣ କରୁଥିଲେ । କଦାପି ଏହାଙ୍କୁ ପୀଡ଼ା ଦେଉ ନଥିଲେ । ୮ ।

ହେ ଭରତର୍ଷଭ ! ମହାମୁନି କାଷ୍ଠ ସ୍ୱରୂପ ହୋଇ ଜଳ ମଧ୍ୟରେ ଶୟନ କରିଥିଲେ । ଅନନ୍ତର ସେହି ବୁଦ୍ଧିମାନ ମୁନି ଉତ୍ଥିତ ହୋଇ ଜଳ ଉପରେ ଅବସ୍ଥାନ କରିଥିଲେ । ୯ । ସେ ଜଳବାସୀ ଜୀବଗଣଙ୍କର ପ୍ରିୟଦର୍ଶନ ହୋଇଥିଲେ । ତେତେବେଳେ ଜଳଚର ସମୂହ ହୃଷ୍ଟମନା ହୋଇ ତାହାଙ୍କର ଓଷ୍ଠକୁ ଆଘ୍ରାଣ କରୁଥିଲେ । ୧୦ । ସେ ସେହି ଜଳ ମଧ୍ୟରେ ଆସୀନ ହେବାର ବହୁତ କାଳ ଅତୀତ ହୋଇଥିଲା । ହେ ମହାଦ୍ୟୁତେ ! ତଦନନ୍ତର କୌଣସି ସମୟରେ କୌଣସି ଦେଶର ମତ୍ସ୍ୟ-ଜୀବୀଗଣ ଜାଲହସ୍ତହୋଇ ସେହି ସ୍ଥାନକୁ ଆଗମନ କରିଥିଲେ । ମତ୍ସ୍ୟଧାରଣରେ କୃତ ନିଶ୍ଚୟ ବଳବାନ୍ ଶୂର ଜଳ ସଞ୍ଚରଣରେ ଅପରାଙ୍ମୁଖ ଦୀର୍ଘକାୟ ନିଷାଦଗଣ ସେଠାରେ ଜାଲ ବିସ୍ତାର କରିବାକୁ ନିଶ୍ଚୟ କଲେ । ହେ ଭରତଶ୍ରେଷ୍ଠ ନରାଧିପ ! ସେମାନେ ସେହି ପ୍ରଦେଶରେ ମତ୍ସ୍ୟଯୁକ୍ତ ଜଳପ୍ରାପ୍ତ ହୋଇ ନିଃଶେଷରେ ଜାଲ ବିସ୍ତାର କଲେ । ୧୪ । ତଦନନ୍ତର ସେହି ମତ୍ସ୍ୟାକାଂକ୍ଷୀ କୈବର୍ତ୍ତଗଣ ବହୁବିଧ ଉପାୟ ଅବଲମ୍ବନ ପୂର୍ବକ ଜାଲ ବିସ୍ତାରଦ୍ୱାରା ଗଙ୍ଗା ଓ ଯମୁନାର ଜଳକୁ ଆବରଣ କଲେ । । ୧୫ ।

ସେମାନେ ସେହି ସ୍ଥାନରେ ଯେଉଁ ଜାଲ ନିକ୍ଷେପ କରିଥିଲେ, ତାହା ଅତିଶୟ ବିଚିତ୍ର ନବସୂତ୍ର ନିର୍ମିତ ଏବଂ ବିସ୍ତାର ଓ ଦୈର୍ଘ୍ୟ ସମନ୍ୱିତ ହୋଇଥିଲା । ୧୬ । ତଦନନ୍ତର ସେମାନେ ଜଳରେ ଅବତରଣ କରି ସୁମହତ୍, ବଳବତ୍ ଓ ସୁବର୍ତ୍ତିତ ଜାଲକୁ ଆକର୍ଷଣ କଲେ । ୧୭ । ସେମାନେ ନିର୍ଭୟ, ପ୍ରହୃଷ୍ଟ ଓ ପରସ୍ପର ବଶବର୍ତ୍ତୀ ହୋଇ ମତ୍ସ୍ୟ ଓ ଅନ୍ୟାନ୍ୟ ଜଳଚର ଜନ୍ତୁମାନଙ୍କୁ ବନ୍ଧନ କଲେ । ୧୮ । ହେ ମହାରାଜ ! ସେମାନେ

ଦୈବ ବଶରେ ମତ୍ସ୍ୟଗଣ ଦ୍ୱାରା ପରିବୃତ ଭୃଗୁନନ୍ଦନ ଚ୍ୟବନଙ୍କୁ ଜାଲ ଦ୍ୱାରା ଆକର୍ଷଣ କଲେ । ୧୯ ।

ସମସ୍ତ କୈବର୍ତ୍ତଗଣ ସେହି ହରିତ ଶ୍ମଶ୍ରୁ, ଜଟାଧର, ନଦୀଶୈବାଳ ଲିପ୍ତାଙ୍ଗ ଏବଂ ଶଙ୍ଖ ନାମକ ଜଳଜନ୍ତୁର ନଖଦ୍ୱାରା ଲିପ୍ତଗାତ୍ର ଅତଏବ ଚିତ୍ର ପ୍ରତିମା ସଦୃଶ ବେଦ ପାରଗ ମୁନିଙ୍କୁ ଜାଲ ଦ୍ୱାରା ଉଦ୍ଧୃତ ହେବାର ଦେଖି କୃତାଞ୍ଜଳିପୂର୍ବରେ ଅବନତ ମସ୍ତକ ହୋଇ ଭୂତଳରେ ପତିତ ହେଲେ । ୨୧ । ଜାଲର ଆକର୍ଷଣ ହେତୁରୁ ଖେଦ ଓ ତ୍ରାସ ବଶରୁ ସ୍ଥଳ ସ୍ପର୍ଶ କଲା ମାତ୍ରେ ମତ୍ସ୍ୟଗଣ ବିପଦାଗ୍ରସ୍ତ ହେଲେ । ୨୨ । ସେତେବେଳେ ମୁନି ସେହି ମତ୍ସ୍ୟଗଣଙ୍କର ମହାପୀଡ଼ା ଦେଖି ବାରମ୍ବାର ନିଶ୍ୱାସ ପରିତ୍ୟାଗ କରି ଅତିଶୟ କୃପାବିଷ୍ଟ ହେଲେ । ୨୩ । ନିଷାଦଗଣ କହିଲେ, ହେ ମହାମୁନେ ! ଆମ୍ଭେମାନେ ଅଜ୍ଞାନ ବଶରୁ ଯେଉଁ ପାପ କରିଅଛୁଁ, ଆପଣ ତଦ୍‌ବିଷୟରେ କ୍ଷମା ପ୍ରଦାନ କରନ୍ତୁ । ଆପଣଙ୍କର କେଉଁ ପ୍ରିୟ କାର୍ଯ୍ୟ କରିବୁଁ ତାହା ଆମ୍ଭମାନଙ୍କୁ ଆଦେଶ କରନ୍ତୁ । ୨୪ ।

ମତ୍ସ୍ୟ ମଧ୍ୟସ୍ଥିତ ଚ୍ୟବନ କୈବର୍ତ୍ତଗଣ କର୍ତ୍ତୃକ ଏହିପରି କଥିତ ହେବାରୁ କହିଲେ, ଏତେବେଳେ ଆମ୍ଭର ଯେଉଁ ମହତ ଅଭିଳାଷ ଅଛି ତୁମ୍ଭେମାନେ ସ୍ଥିର ଚିତ୍ତ ହୋଇ ତାହା ଶ୍ରବଣ କର । ୨୫ । ଆମ୍ଭେ ମତ୍ସ୍ୟଗଣଙ୍କ ସହିତ ପ୍ରାଣତ୍ୟାଗ କରିବୁଁ ଅଥବା ଏହିମାନଙ୍କ ସହିତ ଆତ୍ମ ବିକ୍ରୟ କରିବୁ, ଜଳ ମଧ୍ୟରେ ଏକତ୍ର ସହବାସ ହେତୁରୁ ଆମ୍ଭେ ଏମାନଙ୍କୁ ପରିତ୍ୟାଗ କରି ପାରିବୁ ନାହିଁ । ୨୬ । ମୁନି ନିଷାଦଗଣଙ୍କୁ ଏହିପରି କହିବାରୁ ସେମାନେ ସମସ୍ତେ ଅତିଶୟ ଭୟରେ କମ୍ପିତ ଓ ବିବର୍ଣ୍ଣବଦନ ହୋଇ ନହୁଷ ନରପାଳଙ୍କ ନିକଟରେ ସମସ୍ତ ବିଷୟ ନିବେଦନ କଲେ । । ୨୭।

ଚ୍ୟବନଙ୍କ ଉପାଖ୍ୟାନେ ପଞ୍ଚାଶ ଅଧ୍ୟାୟ ସମାପ୍ତ । ୫୦ ।



# ଅଧ୍ୟାୟ—୫୧

ଭୀଷ୍ମ କହିଲେ, ତତ୍ପରେ ଚ୍ୟବନ ତାଦୃଶ ଅବସ୍ଥାରେ ଗ୍ରସ୍ତ ହୋଇ ଥିବାର ନହୁଷ ରାଜା ଶ୍ରବଣ କରି ଅମାତ୍ୟ ଓ ପୁରୋହିତଙ୍କ ସହିତ ସତ୍ୱର ହୋଇ ସେଠାକୁ ଗମନ କଲେ । ୧ । ନରପତି ଯଥା ନ୍ୟାୟରେ ଶରୀର ଶୁଦ୍ଧି ସମାପନ କରି ପ୍ରଯତ ଓ ପ୍ରାଞ୍ଜଳି ହୋଇ ମହାନୁଭବ ଚ୍ୟବନଙ୍କ ନିକଟରେ ଆତ୍ମ ନିବେଦନ କଲେ ଅର୍ଥାତ୍ ଆତ୍ମ ପରିଚୟ ପ୍ରଦାନ କଲେ । ୨ । ହେ ମହାରାଜ ! ସେହି ନୃପତିଙ୍କ ପୁରୋହିତ ସେହି ସତ୍ୟବ୍ରତ ଦେବ ସଦୃଶ ମହାତ୍ମା ମୁନିଙ୍କୁ ପୂଜାକଲେ । ୩ ।

ନହୁଷ କହିଲେ, ହେ ଦ୍ୱିଜବର ! ଆମ୍ଭେ ଆପଣଙ୍କର କେଉଁ ପ୍ରିୟ କାର୍ଯ୍ୟ କରିବୁଁ, ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ଭଗବାନ ! ଯଦି କର୍ତ୍ତବ୍ୟ କାର୍ଯ୍ୟ ଅତିଶୟ ଦୁଷ୍କର ହୁଏ, ତଥାପି ତାହା ଆମ୍ଭେ ସାଧନ କରିବ କୁ ସମର୍ଥ । ୪ । ଚ୍ୟବନ କହିଲେ, ମତ୍ସ୍ୟଜୀବୀ କୈବର୍ତ୍ତଗଣ ଅତିଶୟ ଶ୍ରାନ୍ତ ଯୁକ୍ତ ହୋଇ ଅଛନ୍ତି । ଅତଏବ ଏହିମାନଙ୍କୁ ମତ୍ସ୍ୟ ବିକ୍ରୟ ମୂଲ୍ୟ ସହିତ ଆମ୍ଭର ମୂଲ୍ୟ ପ୍ରଦାନ କର । ୫ ।

ନହୁଷ କହିଲେ, ପୁରୋହିତ ! ଭଗବାନ ଭୃଗୁ ନନ୍ଦନ ଯାହା କହିଲେ, ଏହାଙ୍କ ନିଷ୍କ୍ରିୟ ଅର୍ଥାତ ବିନିମୟ ନିମିତ୍ତ ନିଷାଦଗଣଙ୍କୁ ସହସ୍ର ମୁଦ୍ରା ପ୍ରଦାନ କରିବା ହେଉନ୍ତୁ । ୬ । ଚ୍ୟବନ କହିଲେ, ହେ ମହାରାଜ ! ଆପଣ କ ବିବେଚନା କରୁ ଅଛନ୍ତି । ଆମ୍ଭେ ସହସ୍ର ମୁଦ୍ରା ମୂଲ୍ୟର ଉପଯୁକ୍ତ ନୋହୁଁ । ଅତଏବ ନିଜ ବୁଦ୍ଧି ଦ୍ୱାରା ନିଶ୍ଚୟ କରି ଆମ୍ଭର ଉପଯୁକ୍ତ ମୂଲ୍ୟ ପ୍ରଦାନ କରନ୍ତୁ । ୭ ।

ନହୁଷ କହିଲେ, ହେ ବିପ୍ର ! ନିଷାଦଗଣଙ୍କୁ ଲକ୍ଷ ମୁଦ୍ରା ପ୍ରଦାନ କଲେ ସେହି ମୂଲ୍ୟ ଯଥାର୍ଥ ହେବ କି ? ଅଥବା ଆପଣ କେଉଁ ବିବେଚନା କରି ଅଛନ୍ତି । ୮ । ଚ୍ୟବନ କହିଲେ, ହେ ପାର୍ଥିବ ପ୍ରବର ! ଏକଲକ୍ଷ ମୁଦ୍ରା ଆମ୍ଭର ଉପଯୁକ୍ତ ମୂଲ୍ୟ ନୁହେଁ । ଅତଏବ ଆପଣ ଅମାତ୍ୟଗଣଙ୍କ ସହିତ

ପରାମର୍ଶ କରି ଆମ୍ଭର ଯାହା ଉଚିତ ମୂଲ୍ୟ ହେବ, ତାହା ଏମାନଙ୍କୁ ପ୍ରଦାନ କରନ୍ତୁ । ୯ ।

ନହୁଷ କହିଲେ, ହେ ପୁରୋହିତ ! ତେବେ ଏହି ନିଷାଦ ଗଣଙ୍କୁ କୋଟିଏ ମୁଦ୍ରା ପ୍ରଦାନ କରାଯାଉ । ଏହା ମଧ୍ୟ ଯଦି ଆପଣଙ୍କର ଉପଯୁକ୍ତ ମୂଲ୍ୟ ନୁହେଁ, ତେବେ କହିବା ହେଉନ୍ତୁ । ଏହା ଅପେକ୍ଷା ଅଧିକ ପ୍ରଦାନ କରିବା । ୧୦ । ଚ୍ୟବନ କହିଲେ, ହେ ରାଜନ ମହାଦ୍ୟୁତେ ! ଏକକୋଟି କିମ୍ବା ତଦପେକ୍ଷା ଅଧିକ ମୁଦ୍ରା ଆମ୍ଭର ଉପଯୁକ୍ତ ମୂଲ୍ୟ ନୁହେଁ । ଅତଏବ ଆପଣ ବ୍ରାହ୍ମଣମାନଙ୍କ ସହିତ ପରାମର୍ଶ କରି ଆମ୍ଭର ଯଥାର୍ଥ ମୂଲ୍ୟ ପ୍ରଦାନ କରିବା ହେଉନ୍ତୁ । ୧୧ ।

ନହୁଷ କହିଲେ, ହେ ଦ୍ୱିଜ ! ନିଷାଦମାନଙ୍କୁ ଆପଣଙ୍କ ମୂଲ୍ୟରୂପ ଅର୍ଦ୍ଧରାଜ୍ୟ ଅଥବା ସମଗ୍ର ରାଜ୍ୟ ପ୍ରଦାନ କରାଯିବ ବୋଲି ବିବେଚନା କରଅଛୁଁ । ଆପଣଙ୍କର କି ଅଭିପ୍ରାୟ ? ତାହା ପ୍ରକାଶ କରିବା ହେଉନ୍ତୁ । ୧୨ । ଚ୍ୟବନ କହିଲେ, ହେ ପାର୍ଥିବ । ଆପଣଙ୍କର ଅର୍ଦ୍ଧରାଜ୍ୟ ଅଥବା ସମସ୍ତ ରାଜ୍ୟ ଆମ୍ଭର ଉପଯୁକ୍ତ ମୂଲ୍ୟ ନୁହେଁ । ଅତଏବ ଆପଣ ଋଷି-ମାନଙ୍କ ସହିତ ପରାମର୍ଶ କରି ଆମ୍ଭର ସଦୃଶ ମୂଲ୍ୟ ପ୍ରଦାନ କରନ୍ତୁ । ୧୩ । ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ସେହି ନହୁଷ ନରପତି ମହର୍ଷି ଚ୍ୟବନଙ୍କ ବାକ୍ୟ ଶ୍ରବଣ କରି ଦୁଃଖରେ ଆକୃଷ୍ଟ ହୋଇ ତେତେବେଳେ ଅମାତ୍ୟ ଓ ପୁରୋହିତଙ୍କ ସହିତ ଚିନ୍ତା କରୁଥିଲେ । ୧୪ ।

ଏମନ୍ତ ସମୟରେ ଗୋ ଗର୍ଭଜାତ ଫଳମୂଳାହାରୀ ଅନ୍ୟ ଏକ ବନଚର ମୁନି ନହୁଷ ନରପାଳଙ୍କ ନିକଟରେ ଉପସ୍ଥିତ ହେଲେ । ୧୫ । ସେହି ଦ୍ୱିଜସତ୍ତମ ରାଜାଙ୍କୁ ସମ୍ଭାଷଣ କରି କହିଲେ, ଆପଣ ଯେଉଁପରି ତୁଷ୍ଟ ହେବେ ଅମ୍ଭେ ତାଦୃଶ ଉପାୟରେ ଏହାଙ୍କୁ ଅବଲମ୍ବନରେ ତୋଷିତ କରିବୁ । ୧୬ । ଆମ୍ଭେ ଆପଣା ଇଚ୍ଛାରେ କଦାପି ମିଥ୍ୟା କଥା କହୁନାହୁଁ, ଅନ୍ୟ ବ୍ୟକ୍ତିଙ୍କ ପ୍ରବର୍ତ୍ତନାରେ ଅବା କାହିଁକି କହିବୁ । ଆମ୍ଭେ ଆପଣଙ୍କୁ ଯାହା କହିବୁଁ ଆପଣ ତାହା ନିଃଶଙ୍କ ହୋଇ ପ୍ରତିପାଳନ କରିବେ । ୧୭ ।

ନହୁଷ କହିଲେ, ଭଗବନ୍ ! ଆପଣ ମହର୍ଷି ଭୃଗୁନନ୍ଦନଙ୍କର ସଦୃଶ ମୂଲ୍ୟ କହିବା ହେଉନ୍ତୁ । ଆପଣ ଆମ୍ଭଙ୍କୁ ଆମ୍ଭର ରାଜ୍ୟ ଓ ବଂଶକୁ ପରିତ୍ରାଣ କରିବା ହେଉନ୍ତୁ । ୧୮ । ଭଗବାନ୍ ଭାର୍ଗବ କ୍ରୁଦ୍ଧ ହେଲେ ତ୍ରୈଲୋକ୍ୟକୁ ସଂହାର କରି ପାରିବେ । ଅତଏବ ଆମ୍ଭେ କେବଳ ବାହୁବୀର୍ଯ୍ୟ ପରାୟଣ ତପସ୍ୟା ବର୍ଜିତ, ଆମ୍ଭଙ୍କୁ ଯେ ବିନଷ୍ଟ କରିବେ ତାହା ବିଚିତ୍ର ନୁହଇଁ । ୧୯ । ହେ ମହର୍ଷେ ! ଆମ୍ଭେ ଅମାତ୍ୟ ଓ ପୁରୋହିତଙ୍କ ସହିତ ଅଗାଧ ଜଳରେ ନିମଗ୍ନ ହୋଇଅଛୁ । ଆପଣ ଆମ୍ଭମାନଙ୍କର ପ୍ଳବ ଅର୍ଥାତ୍ ଭେଳା ସ୍ୱରୂପ ହୋଇ ମହର୍ଷିଙ୍କ ମୂଲ୍ୟ ବିଶେଷରୂପେ ନିଶ୍ଚୟ କରନ୍ତୁ । ୨୦ ।

ଭୀଷ୍ମ କହିଲେ, ପ୍ରତାପଶାଳୀ ଗୋଜାତମୁନି ନହୁଷଙ୍କ ବାକ୍ୟ ଶ୍ରବଣ ପୂର୍ବକ ଅମାତ୍ୟଗଣଙ୍କୁ ଓ ସେହି ନରପତିଙ୍କୁ ହର୍ଷଯୁକ୍ତ କରି ସେ କହିଲେ, (୨୧) ହେ ପୁରୁଷଶ୍ରେଷ୍ଠ ମହାରାଜ ! ସମସ୍ତ ବର୍ଣ୍ଣ ମଧ୍ୟରେ ଉତ୍କୃଷ୍ଟ ବ୍ରାହ୍ମଣଗଣ ଓ ଗୋଗଣ ଅନର୍ଘେୟ, ଅର୍ଥାତ୍ ଗୋ ଏବଂ ବ୍ରାହ୍ମଣଙ୍କର ମୂଲ୍ୟନାହିଁ, ଅତଏବ ଗୋଟିଏ ଗୋରୁକୁ ମୂଲ୍ୟରୂପେ କଳ୍ପନା କରିବା ହେଉନ୍ତୁ । ୨୨ ।

ହେ ମହାରାଜ ! ତଦୁତ୍ତରେ ନହୁଷ ମହର୍ଷିଙ୍କ ବାକ୍ୟ ଶ୍ରବଣ ପୂର୍ବକ ଅମାତ୍ୟ ଓ ପୁରୋହିତଙ୍କ ସହିତ ଅତ୍ୟନ୍ତ ହର୍ଷଯୁକ୍ତ ହେଲେ, ସଂଶିତବ୍ରତ ଭୃଗୁନନ୍ଦନ ଚ୍ୟବନଙ୍କ ନିକଟକୁ ଯାଇ ତାହାଙ୍କୁ ବାକ୍ୟଦ୍ୱାରା ସନ୍ତର୍ପିତ କରି କହିଲେ, (୨୪) ହେ ଭୃଗୁନନ୍ଦନ ବିପ୍ରର୍ଷେ ! ଆପଣ ଉଠିବା ହେଉନ୍ତୁ, ଉଠିବା ହେଉନ୍ତୁ; ଆପଣ ଗୋଦ୍ୱାରା କ୍ରୀତ ହେଲେ । ହେ ଧାର୍ମିକ ପ୍ରବର ! ଆମ୍ଭେ ଏହାକୁ ଆପଣଙ୍କର ମୂଲ୍ୟରୂପେ ବିବେଚନା କଲୁଁ । ୨୫ ।

ଚ୍ୟବନ କହିଲେ, ହେ ଅନଘ ରାଜେନ୍ଦ୍ର ! ଆମ୍ଭେ ଉଠୁଅଛୁଁ । ଆପଣ ଆମ୍ଭଙ୍କୁ ଯଥାର୍ଥରୂପରେ କିଣିକଲ । ହେ ଅଚ୍ୟୁତ ! ଇହଲୋକରେ ଗୋ ସଦୃଶ କିଛି ଧନ ଆମ୍ଭେ ଦେଖୁନାହୁଁ । ୨୬ । ହେ ପାର୍ଥିବ ବୀର ! ଗୋକୁଳର କୀର୍ତ୍ତନ, ଶ୍ରବଣ, ଦାନ ଓ ଦର୍ଶନ ସମସ୍ତ ପାପ ହରଣ କରେ ଓ କଲ୍ୟାଣ ସାଧନ କରେ ବୋଲି ପ୍ରଶଂସିତ । ୨୭ । ଗୋଗଣ ସର୍ବଦା

ଲକ୍ଷ୍ମୀର ମୂଳ, ଗୋବୃନ୍ଦଙ୍କଠାରେ ପାପ ରହେ ନାହିଁ, ଗୋବୃନ୍ଦ ସର୍ବଦା ଦେବତାମାନଙ୍କର ହବ୍ୟ ସ୍ୱରୂପ ପରମ ଅନ୍ନ । ୨୮ । ଗୋବୃନ୍ଦଙ୍କଠାରେ ସ୍ୱାହାକାର ଓ ବଷଟ୍‌କାର ଦୁହେଁ ସର୍ବଦା ପ୍ରତିଷ୍ଠିତ, ଗୋବୃନ୍ଦ ଯଜ୍ଞ ସମ୍ପାଦନ କରନ୍ତି ଓ ସେମାନେ ଯଜ୍ଞର ମୁଖ ସ୍ୱରୂପ ଅଟନ୍ତି । ୨୯ ।

ଗୋଗଣ ଦିବ୍ୟ ଅବ୍ୟୟ ଅମୃତକୁ ବହନ କରନ୍ତି ଓ କ୍ଷରଣ କରନ୍ତି, ସେମାନେ ସର୍ବଲୋକର ନମସ୍କୃତ ଓ ସମସ୍ତ ଅମୃତର ଆୟତନ । ୩୦ । ଭୂଲୋକରେ ଗୋ ସମୂହ ତେଜ ଓ ବପୁଦ୍ୱାରା ଅଗ୍ନି ସଦୃଶ, ଗୋବୃନ୍ଦ ପ୍ରାଣୀଗଣର ସୁମହତ୍ ତେଜ ଓ ସୁଖ ପ୍ରଦାୟକ ଅଟନ୍ତି । । ୩୧ । ଯେଉଁ ସ୍ଥାନରେ ଗୋକୁଳ ନିବିଷ୍ଟ ହୋଇ ନିର୍ଭୟରେ ନିଶ୍ୱାସ ମୋଚନ କରନ୍ତି, ସେହି ସ୍ଥଳକୁ ଭୂଷିତ କରି ତାହାର ପାପକୁ ବିଦୂରିତ କରନ୍ତି । ୩୨ । ଗୋବୃନ୍ଦ ସ୍ୱର୍ଗର ସୋପାନ ସ୍ୱରୂପ, ଗୋଗଣ ସ୍ୱର୍ଗରେ ପୂଜିତ ହୁଅନ୍ତି, ଦେବୀ ସ୍ୱରୂପ ଗୋ ସମୂହ ସମସ୍ତ ମନୋରଥ ପ୍ରଦାନ କରନ୍ତି, କୌଣସି ପଦାର୍ଥ ଗୋ ଅପେକ୍ଷା ଶ୍ରେଷ୍ଠ ନୁହନ୍ତି ବୋଲି ସ୍ମୃତି ଅଛି । ୩୩ ।

ହେ ଭରତ ଶ୍ରେଷ୍ଠ ! ଗୋବୃନ୍ଦ ବିଷୟରେ ଆମ୍ଭେ ଏହି ମାହାତ୍ମ୍ୟ କୀର୍ତ୍ତନ କଲୁଁ, କେହି ସେମାନଙ୍କର ସମସ୍ତ ଗୁଣ କୀର୍ତ୍ତନ କରିବାକୁ ସମର୍ଥ ହୁଅନ୍ତି ନାହିଁ, ଅତଏବ ଆମ୍ଭେ ଏକ ଅଂଶଗୁଣ କୀର୍ତ୍ତନ କଲୁଁ । ୩୪ । ନିଷାଦଗଣ କହିଲେ, ହେ ମୁନେ ! ଆପଣ ଆମ୍ଭମାନଙ୍କ ସହିତ ଦର୍ଶନ ଓ କଥୋପକଥନ କରିଅଛନ୍ତି, ସାଧୁମାନଙ୍କ ସହିତ ସପ୍ତପଦ କଥୋପକଥନ କଲେ ମିତ୍ରତା ସ୍ଥାପିତ ହୁଏ । ଅତଏବ ହେ ପ୍ରଭୋ ! ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହେଉନ୍ତୁ । ୩୫ । ହୁତାଶନ ଯେଉଁପରି ସମସ୍ତ ହବି ଉପଭୋଗ କରନ୍ତି, ଆପଣ ମଧ୍ୟ ତଦ୍‌ବତ୍ ଧର୍ମାତ୍ମା ପ୍ରତାପଶାଳୀ ପୁରୁଷାଗ୍ନି ଅଟନ୍ତି । ହେ ବିଦ୍ୱନ୍ ! ଆମ୍ଭେମାନେ ପ୍ରଣତ ହୋଇ ଆପଣଙ୍କୁ ପ୍ରସନ୍ନ କରାଉଅଛୁଁ ଯେ, ଆପଣ ଆମ୍ଭମାନଙ୍କ ଅନୁଗ୍ରହ ନିମିତ୍ତ ଗୋପ୍ରତିଗ୍ରହ କରିବା ହେଉନ୍ତୁ । ୩୬ ।

ଚ୍ୟବନ କହିଲେ, ପ୍ରଜ୍ୱଳିତ ଅଗ୍ନି ଯେଉଁପରି ଶୁଷ୍କତୃଣ ପ୍ରଭୃତିକୁ ଦହନ କରେ, ତଦ୍‌ବତ୍ ଅଶୀ, ବିଷ ସଦୃଶ କୃପଣ ମୁନିଙ୍କର ଚକ୍ଷୁ ମନୁଷ୍ୟକୁ

ସମ୍ମୂଳରେ ଦଗ୍ଧକରେ । ୩୮ । ହେ କୈବର୍ତ୍ତଗଣ ! ଆମ୍ଭେ ତୁମ୍ଭମାନଙ୍କର ଧେନୁ ପରିଗ୍ରହ କଲୁଁ; ତୁମ୍ଭେମାନେ ପାପମୁକ୍ତ ହୋଇ ଜଳୋଦ୍ଭବ ମତ୍ସ୍ୟଗଣଙ୍କ ସହିତ ଶୀଘ୍ର ସ୍ୱର୍ଗକୁ ଗମନ କର । ୩୯ ।

ଭୀଷ୍ମ କହିଲେ, ତଦନନ୍ତର ନିଷାଦଗଣ ସେହି ପବିତ୍ର ଚିତ୍ତ ମହର୍ଷିଙ୍କ ପ୍ରଭାବରୁ ତାଙ୍କର ବାକ୍ୟରେ ମତ୍ସ୍ୟଗଣଙ୍କ ସହିତ ସ୍ୱର୍ଗକୁ ଗମନ କଲେ । ୪୦ । ହେ ଭରତ ଶ୍ରେଷ୍ଠ ! ତଦନନ୍ତର ନହୁଷ ରାଜା ଧୀବରମାନଙ୍କୁ ଏବଂ ମତ୍ସ୍ୟମାନଙ୍କୁ ସ୍ୱର୍ଗାରୋହଣ କରିବାର ଦେଖି ବିସ୍ମିତ ହେଲେ । ୪୧ । ପରିଶେଷରେ ସେହି ଗବିଜ ଓ ଭୃଗୁନନ୍ଦନ ଚ୍ୟବନ ଏହି ଋଷି ଦୁହେଁ ନହୁଷ ନୃପଙ୍କୁ ଅନୁପମ ବର ଯୁଗଳ ଦ୍ୱାରା ସମ୍ମାନନା କରିବାକୁ ପ୍ରବୃତ୍ତ ହେଲେ । ୪୨ । ହେ ଭରତସତ୍ତମ ! ତଦନନ୍ତର ମହାବୀର୍ଯ୍ୟ ପୃଥ୍ୱୀପତି ନହୁଷ ରାଜା ସେତେବେଳେ ପ୍ରୀତ ହୋଇ "ଉତ୍ତମ" ଏହିକଥା କହିଲେ । ୪୩ ।

ସେହି ଇନ୍ଦ୍ର ସଦୃଶ ନୃପତି ସେହି ଦୁହିଁଙ୍କ ବାକ୍ୟରେ ସ୍ୱୀକୃତ ହୋଇ କହିଲେ, "ଆମ୍ଭର ଧର୍ମ ବିଷୟରେ ଅଚଳା ଭକ୍ତି ରହୁ ।" ସେ ଏହି ପ୍ରକାର ବର ପ୍ରାର୍ଥନା କଲାରୁ ସେହି ଦୁହେଁ "ତଥାସ୍ତୁ" ଅର୍ଥାତ୍ ତାହା ହେଉ, ଏହିକଥା କହିଲେ । ସେତେବେଳେ ରାଜା ପ୍ରୀତି ଯୁକ୍ତ ହୋଇ ଋଷି ଯୁଗଳଙ୍କ ପ୍ରତି ପୂଜା କଲେ । ୪୪ । ଚ୍ୟବନ, ଦୀକ୍ଷା ସମାପନ ପରେ ନିଜ ଆଶ୍ରମକୁ ଗମନ କଲେ, ମହାତେଜା ଗବିଜ ମୁନି ମଧ୍ୟ ନିଜ ଆଶ୍ରମକୁ ଗମନ କଲେ । ୪୫ । ହେ ଜନାଧିପ ! ସେହି ନିଷାଦଗଣ ଓ ମତ୍ସ୍ୟ ବୃନ୍ଦ ସ୍ୱର୍ଗକୁ ଗମନ କଲେ । ନୃପତି ନହୁଷ ମଧ୍ୟ ବର ଲଭିକରି ନିଜ ନଗରରେ ପ୍ରବିଷ୍ଟ ହେଲେ । ୪୬ ।

ହେ ତାତ ଯୁଧିଷ୍ଠିର ! ଦର୍ଶନରେ ଓ ସହବାସରେ ଯାଦୃଶ ସ୍ନେହ ହୁଏ ଏବଂ ଗୋଗଣଙ୍କ ମାହାତ୍ମ୍ୟ ଓ ଧର୍ମ ନିଶ୍ଚୟ ବିଷୟ, ତୁମ୍ଭେ ଯାହା ପ୍ରଶ୍ନ କରିଥିଲ ସେହି ସମସ୍ତ ବିଷୟ ତୁମ୍ଭ ନିକଟରେ କୀର୍ତ୍ତନ କଲୁଁ । ହେ ବୀର ! ତୁମ୍ଭ ହୃଦୟରେ ଆଉ କେଉଁ ସଂଶୟ ବିଷୟ ଅଛି ତାହା ପୁନଶ୍ଚ ପ୍ରଶ୍ନ କର ଆମ୍ଭେ ତାହା କହିବା । ୪୮ ।



# ଅଧ୍ୟାୟ—୫୨

ଯୁଧିଷ୍ଠିର କହିଲେ, ହେ ମହାପ୍ରାଜ୍ଞ ମହାବାହୋ ! ଆମ୍ଭର ସାଗର ସଦୃଶ ଅତିମହାନ୍ ସଂଶୟ ଅଛି । ଆପଣ ତାହା ଶ୍ରବଣ କରନ୍ତୁ ଏବଂ ଶ୍ରବଣ କଲାପରେ ତତ୍ତ୍ୱବିଷୟ ବ୍ୟାଖ୍ୟା କରିବା ହେଉନ୍ତୁ । ୧ ।

ହେ ପ୍ରଭୋ ! ଧାର୍ମିକ ଶ୍ରେଷ୍ଠ ଜାମଦଗ୍ନ୍ୟ ପରଶୁରାମଙ୍କ ବିଷୟରେ ଆମ୍ଭର ଅତିଶୟ କୌତୂହଳ ରହିଅଛି । ଆପଣ ଆମ୍ଭ ନିକଟରେ ଏହି ବିଷୟକୁ କୀର୍ତ୍ତନ କରନ୍ତୁ । ୨ । ସେହି ସତ୍ୟ ପରାକ୍ରମ ରାମ କି ପ୍ରକାରରେ ଉତ୍ପନ୍ନ ହୋଇଥିଲେ ଏବଂ ବ୍ରହ୍ମର୍ଷିବଂଶରେ ଜନ୍ମ ପରିଗ୍ରହ କରି କେଉଁ ପ୍ରକାରରେ କ୍ଷତ୍ରିୟ ଧର୍ମା ହୋଇଥିଲେ । ୩ ।

ଅତଏବ ତାହାଙ୍କର ଉତ୍ପତ୍ତିର ବିଷୟ ସମ୍ପୂର୍ଣ୍ଣରୂପେ କୀର୍ତ୍ତନ କରନ୍ତୁ । ହେ ରାଜନ୍ ! ପୁନଶ୍ଚ କ୍ଷତ୍ରୀୟ କୌଶିକ ବଂଶରୁ କେଉଁ ପ୍ରକାରରେ ବ୍ରାହ୍ମଣ ଜାତ ହୋଇଥିଲେ । ୪ । ହେ ନରବର ! ମହାନୁଭବ ରାମ ଓ ବିଶ୍ୱାମିତ୍ରଙ୍କର ଉତ୍କୃଷ୍ଟ ଆଶ୍ଚର୍ଯ୍ୟ ପ୍ରଭାବ ଥିଲା । ୫ । ଏହି ଦୋଷ ପୁତ୍ରଗଣଙ୍କୁ ଛାଡ଼ି ନପ୍ତୃଗଣଙ୍କଠାରେ କେଉଁ ପ୍ରକାରରେ ସମ୍ଭବ ହେଲା, ଆପଣ ତାହା ଯଥାର୍ଥରୂପେ କୀର୍ତ୍ତନ କରନ୍ତୁ । ୬ । ଭୀଷ୍ମ କହିଲେ, ହେ ଭାରତ ! ପୁରାତନ ବ୍ୟକ୍ତିମାନେ ଏହି ବିଷୟରେ ଚ୍ୟବନ ଓ କୁଶିକଙ୍କ ସମ୍ବାଦ ସମ୍ବଳିତ ପୁରାତନ ଇତିହାସ କହନ୍ତି । ୭ । ମହାବୁଦ୍ଧି ଭୃଗୁନନ୍ଦନ ମୁନିସତ୍ତମ ତପୋଧନ ଚ୍ୟବନ ତେତେବେଳେ ସ୍ୱବଂଶରେ ଏହି ଭବିଷ୍ୟତ ଦୋଷକୁ ପ୍ରଥମରେ ଦର୍ଶନ କରି ମନେ ମନେ ସମସ୍ତ ଗୁଣ, ଦୋଷ ଓ ବଳାବଳ ନିଶ୍ଚୟ କରି କୁଶିକ କୁଳକୁ ଦଗ୍ଧ କରିବାକୁ ଇଚ୍ଛୁକ ହେଲେ । ୯ ।

ଚ୍ୟବନ କୁଶିକଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, ହେ ଅନଘ ନୃପ ! ଆପଣଙ୍କ ସହିତ ଏକତ୍ରବାସ କରିବାକୁ ଆମ୍ଭର ଇଚ୍ଛା ହୋଇଅଛି । ୧୦ ।

କୁଶିକ ରାଜା କହିଲେ, ହେ ଭଗବାନ ! ପଣ୍ଡିତଗଣ କହନ୍ତି ଯେ କନ୍ୟାପ୍ରଦାନସମୟରେ ଏହି ସହଧର୍ମ ବୁଧଜଣେ କର୍ତ୍ତୃକ ଅବଧାରିତ ହୋଇଥାଏ । ୧୧ । ହେ ତପୋଧନ ! ସେହି ଧର୍ମଦ୍ୱାର ଯାହା ଅତିକ୍ରାନ୍ତ ହୋଇଅଛି ତାହା କରିବାର ଉଚିତ, ଅତଏବ ତାହା ଆମ୍ଭେ କରିବୁଁ । ସେହି ବିଷୟରେ ଆପଣ ଅନୁଜ୍ଞା ପ୍ରଦାନ କରନ୍ତୁ ।୧୨।

ଭୀଷ୍ମ କହିଲେ, ତଦନନ୍ତର କୁଶିକରାଜା ଭାର୍ଯ୍ୟାଙ୍କ ସହିତ ମହାମୁନି ଚ୍ୟବନଙ୍କ ନିମିତ୍ତ ଆସନଗ୍ରହଣ ପୂର୍ବକ ଯେଉଁ ସ୍ଥାନରେ ଦଣ୍ଡାୟମାନ ଥିଲେ ସେହି ସ୍ଥାନକୁ ଆଗମନ କଲେ ।୧୩। ରାଜା, ଭୃଙ୍ଗାର ଅର୍ଥାତ ଜଳପାତ୍ର ଗ୍ରହଣପୂର୍ବକ ମୁନିଙ୍କୁ ପାଦ ପ୍ରକ୍ଷାଳନ ନିମିତ୍ତ ଜଳ ପ୍ରଦାନକଲେ ଏବଂ ସେହି ମହାତ୍ମାଙ୍କର ସମସ୍ତ କ୍ରିୟା ସମ୍ପାଦନ କଲେ ।୧୪।

ତଦନନ୍ତର ମହାତ୍ମା ନିୟତବ୍ରତ ସେହି ରାଜା ବ୍ୟଗ୍ର ନ ହୋଇ ଚ୍ୟବନଙ୍କୁ ଯଥାନିୟମରେ ମଧୁପର୍କ ଗ୍ରହଣ କରାଇଲେ ।୧୫।

ସେ ତାଦୃଶ ଭାବରେ ସେହି ବିପ୍ରଙ୍କୁ ସତ୍କାର କରି ପୁନଶ୍ଚ ଏହି କଥା କହିଲେ , ହେ ଭଗବନ୍ ! ଆମ୍ଭେ ଦୁହେଁ ଆପଣଙ୍କର ଅଧୀନ , ଅତଏବ କଣ କରିବୁଁ କହନ୍ତୁ ହେଉନ୍ତୁ ।୧୬।

ହେ ସଂଶିତବ୍ରତ ! ଆପଣଙ୍କର ଯଦି ରାଜ୍ୟ ଧନ, ପଶୁବୃନ୍ଦ ଅଥବା ଯଜ୍ଞୀୟ ଦାନସମୂହ ପ୍ରୟୋଜନ ଅଛି ତେବେ ଆମ୍ଭଙ୍କୁ ଆଦେଶ କରନ୍ତୁ, ତେବେ ଆମ୍ଭେ ତାହା ସବୁ ଆପଣଙ୍କୁ ପ୍ରଦାନ କରିବୁଁ । ୧୭ । ଏହି ରାଜ୍ୟ, ଏହି ଗୃହ, ଏହି ଧର୍ମାସନ ଏହି ସମସ୍ତ ଆପଣଙ୍କର । ଆପଣ ରାଜା ହୋଇ ପୃଥିବୀ ଶାସନ କରନ୍ତୁ, ଆମ୍ଭେ ଆପଣଙ୍କର ଅଧୀନ ହୋଇଅଛୁଁ ।୧୮।

ରାଜା କୁଶିକ ଏହି ପ୍ରକାର ବାକ୍ୟ କହିବାରୁ ଭୃଗୁନନ୍ଦନ ଚ୍ୟବନ ଅତିଶୟ ହର୍ଷଯୁକ୍ତ ହୋଇ ତାହାଙ୍କୁ ଏହି ପ୍ରକାର ପ୍ରତ୍ୟୁତ୍ତର କଲେ । ୧୯।

ହେ ରାଜନ ! ଆମ୍ଭେ ରାଜ୍ୟଲାଭ ବିଷୟରେ କାମନା କରୁନାହୁଁ; କି ଧନ, ସ୍ତ୍ରୀ, ପଶୁ, ଦେଶ ଅଥବା ଯଜ୍ଞାର୍ଥନ କରୁନାହୁଁ, ଆମ୍ଭର ଯାହା ଅଭିଳାଷ ଅଛି ତାହା ଶ୍ରବଣକରିବା ହେଉନ୍ତୁ ।୨୦।

ଆମ୍ଭେ କୌଣସି ନିୟମ ଆରମ୍ଭ କରିବୁଁ । ଆପଣ ଦୁହିଁଙ୍କର ଯଦି ଅଭିଳାଷ ହୁଏ ତେବେ ଆପଣ ଦୁହେଁ ନିଃଶଙ୍କ ହୃଦୟରେ ପ୍ରଯତ୍ନ ହୋଇ ଆମ୍ଭର ପରିଚର୍ଯ୍ୟା କରନ୍ତୁ ।୨୧।

ହେ ଭାରତ ! ଚ୍ୟବନ ମୁନି ତେତେବେଳେ ଏହିପରି କହିବାରୁ ରାଜା ଓ ରାଜ୍ଞୀ ଅତିଶୟ ହୃଷ୍ଟ ହେଲେ ଓ "ଏବମସ୍ତୁ" ଅର୍ଥାତ "ହେ 'ଭଗବନ୍ ! ଆପଣ ଯେଉଁ ଆଦେଶ କରୁ ଅଛନ୍ତି ଆମ୍ଭେ ଦୁହେଁ ଅବଶ୍ୟ ସେହି କାର୍ଯ୍ୟ ସମ୍ପାଦନ କରିବୁ"—ଏହି କଥା କହି ଋଷିଙ୍କୁ ପ୍ରତି ଉତ୍ତର କଲେ ।୨୨।

ତପୂରେ କୁଶିକ ହୃଷ୍ଟହୋଇ ତାହାଙ୍କୁ ଅତି ରମଣୀୟ ଗୃହ ମଧ୍ୟରେ ପ୍ରବେଶ କରାଇଲେ ଏବଂ ତାହାଙ୍କର ଦର୍ଶନୀୟ ବିଷୟ ସମୂହ ଦର୍ଶନ କରାଇଲେ (୨୩) ଏବଂ କହିଲେ, ହେ ତପୋଧନ ! ଏ ଆପଣଙ୍କର ଶଯ୍ୟା, ଆପଣ ଇଚ୍ଛାନୁସାରେ ଏହି ସ୍ଥାନରେ ବାସ କରନ୍ତୁ । ଆମ୍ଭେ ଦୁହେଁ ଆପଣଙ୍କର ପ୍ରୀତି ସମ୍ପାଦନ ନିମିତ୍ତ ପ୍ରକୃଷ୍ଟ ଯତ୍ନ କରିବୁଁ ।୨୪।

ସେମାନଙ୍କର ଏହିପରି କଥୋପକଥନ ହେଉଥିବା ସମୟରେ ସୂର୍ଯ୍ୟଦେବ ଅସ୍ତାଚଳକୁ ଅତିକ୍ରମ କଲେ । ଅନନ୍ତର ମହର୍ଷି ଚ୍ୟବନ ଅନ୍ନ ଓ ପାନୀୟ ଆହରଣ ନିମିତ୍ତ କୁଶିକଙ୍କୁ ଆଦେଶ କଲେ ।୨୫।

ନରପାଳ କୁଶିକ ତେତେବେଳେ ପ୍ରଣତ ହୋଇ ଋଷିଙ୍କୁ ପ୍ରଶ୍ନ କଲେ । ହେ ଭଗବନ୍ ! ଆପଣ କୀଦୃଶ ଅନ୍ନ ସମୂହକୁ ଅଭିଳାଷ କରୁଅଛନ୍ତି ? କୀଦୃଶ ଅନ୍ନ ସମୂହ ଆଣାଇବା ।୨୬।

ହେ ଭାରତ ! ତଦନନ୍ତର ସେହି ମହର୍ଷି ପରମ ଆନନ୍ଦରେ ନରପତିଙ୍କୁ ପ୍ରତ୍ୟୁତ୍ତର ଦେଲେ ଯେ ଯୁକ୍ତିଯୁକ୍ତ, ସଙ୍ଗତ ଅନ୍ନ ପ୍ରଦାନ କର ।୨୭।

କୁଶିକରାଜା ମହର୍ଷି ଚ୍ୟବନଙ୍କ ବାକ୍ୟରେ ସମାଦର ପୂର୍ବକ ତାହା ହେଉ ବୋଲି କହିଲେ । ନରପତି କୁଶିକ ତାହାଙ୍କୁ ଉପଯୁକ୍ତ ଅନ୍ନ ପ୍ରଦାନ-କଲେ । ୨୮ । ଧର୍ମଜ୍ଞ ଭଗବାନ ଚ୍ୟବନ ଭୋଜନ ଉତ୍ତାରେ ରାଜଦମ୍ପତିଙ୍କୁ କହିଲେ, ହେ ରାଜନ୍ ! ଆମ୍ଭଙ୍କୁ ନିଦ୍ରା ବାଧା ଦେଉଅଛି । ଅତଏବ ଆମ୍ଭେ ଶୟନ ନିମିତ୍ତ ଇଚ୍ଛା କରୁଅଛୁଁ । ୨୯ । ଅନନ୍ତର ଋଷି ଶ୍ରେଷ୍ଠ ଭଗବାନ ଚ୍ୟବନ ଶଯ୍ୟା ଗୃହକୁ ଗମନ ପୂର୍ବକ ଶୟନ କଲେ । ନରପତି ମଧ୍ୟ ସପତ୍ନୀକ ହୋଇ ସେଠାରେ ଅବସ୍ଥାନ କଲେ । ୩୦ । ତଦନନ୍ତର ଭୃଗୁ ନନ୍ଦନ କହିଲେ, ଆମ୍ଭେ ନିଦ୍ରିତ ହେଲେ ଆମ୍ଭଙ୍କୁ ଜାଗରିତ କରିବ ନାହିଁ । ତୁମ୍ଭେ ଦୁହେଁ ଆମ୍ଭର ପାଦ ସେବା କରି ନିରନ୍ତର ଜାଗ୍ରତ ଅବସ୍ଥାରେ ଅବସ୍ଥିତ ହୁଅ । ୩୧ ।

ଧର୍ମଜ୍ଞ କୁଶିକରାଜା ନିଃଶଙ୍କ ହୋଇ "ତାହା କରିବା"—ଏହିକଥା କହିଲେ ଏବଂ ରଜନୀର ଅବସାନ ହେଲେ ସୁଦ୍ଧା ସେ ଦୁହେଁ ତାହାଙ୍କୁ ଜାଗ୍ରତ କଲେ ନାହିଁ । ୩୨ । ହେ ମହାରାଜ ! ସେତେବେଳେ ସେହି ଦମ୍ପତି ମହର୍ଷିଙ୍କ ଆଦେଶାନୁସାରେ ଅତିଶୟ ଯତ୍ନପରାୟଣ ହୋଇ ତାହାଙ୍କର ଶୁଶ୍ରୂଷା କରୁଥିଲେ । ୩୩ । ତଦନନ୍ତର ସେହି ଭଗବାନ ଚ୍ୟବନ ନରପତିଙ୍କୁ ପୂର୍ବୋକ୍ତରୂପେ ଆଦେଶ କରି ଏକ ପାର୍ଶ୍ୱରେ ଏକ ବିଂଶତି ଦିବସ ପର୍ଯ୍ୟନ୍ତ ଶୟନକଲେ ।୩୮। ହେ କୁରୁନନ୍ଦନ ! ଚ୍ୟବନଙ୍କ ଆରାଧନାରେ ହୃଷ୍ଟ ଓ ଅନୁରକ୍ତ କୁଶିକନରପାଳ ପତ୍ନୀଙ୍କ ସହିତ ନିରାହାର ହୋଇ ସର୍ବତୋଭାବରେ ତାହାଙ୍କୁ ଉପାସନା କଲେ । ୩୫ ।

ତପୋଧନ ଭୃଗୁନନ୍ଦନ ସ୍ୱୟଂ ଗାତ୍ରୋତ୍ଥାନକଲେ । ସେହି ମହାତପା ମୁନି କିଛି କଥା ନକହି ଗୃହରୁ ବହିର୍ଗତ ହେଲେ । ୩୬ । ରାଜା ଏବଂ ରାଜ୍ଞୀ କ୍ଷୁଧାବିଷ୍ଟ ଓ ଶ୍ରମକର୍ଷିତ ହୋଇ ତାହାଙ୍କର ଅନୁସରଣ କଲେ । ସେ ଦୁହେଁ ଅନୁଗମନ କଲେ ସୁଦ୍ଧା ମୁନିବର ସେହି ଦୁହିଁଙ୍କୁ ଅବଲୋକନ କଲେ ନାହିଁ । ୩୭ । ହେ ରାଜେନ୍ଦ୍ର ! ସପତ୍ନୀକ କୁଶିକ ତାହାଙ୍କୁ ଦର୍ଶନ କରୁଥିବା ସମୟରେ ଭୃଗୁକୁଳ ଶ୍ରେଷ୍ଠ ଚ୍ୟବନ ସେହି ଦୁହିଁଙ୍କୁ ଅନାଦର କରି ଅନ୍ତର୍ହିତ ହେଲେ । ସେ ଅନ୍ତର୍ହିତ ହେବା ମାତ୍ରେ ରାଜା ଧରା ତଳରେ ନିପତିତ ହେଲେ । ୩୮ ।

ମହାଦ୍ୟୁତି ମହୀପତି ମୁହୂର୍ତ୍ତକାଳରେ ଆଶ୍ୱାସ ଲାଭକରି ତେତେବେଳେ ମହିଷୀଙ୍କ ସହିତ ପୁନଶ୍ଚ ତାହାଙ୍କ ଅନ୍ୱେଷଣ କରିବାକୁ ଅତିଶୟ ଯତ୍ନ କରିଥିଲେ । ୩୯ ।



## ଅଧ୍ୟାୟ—୫୩

ଯୁଧିଷ୍ଠିର କହିଲେ, ହେ ପିତାମହ ! ତପ୍ରମସ୍ୱରେ ସେହି ବିପ୍ର ଅନ୍ତର୍ହିତ ହେବାରୁ ରାଜା ଏବଂ ତାହାଙ୍କର ମହାଭାଗ୍ୟବତୀ ଭାର୍ଯ୍ୟା ତେତେବେଳେ କଅଣ କରିଥିଲେ—ତାହା ଆପଣ ଆମ୍ଭଙ୍କୁ କହିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ, ମହୀଷିଙ୍କ ସହିତ ସେହି ରାଜା ଋଷିଙ୍କୁ ନ ଦେଖି ଅତିଶୟ ପରିଶ୍ରାନ୍ତ, ଲଜ୍ଜିତ ଓ ନଷ୍ଟଚେତନ ହୋଇ ନିବୃତ୍ତ ହେଲେ । ୨ । ସେ ଦୁଃଖିତ ହୋଇ ପୁରୀ ମଧ୍ୟରେ ପ୍ରବେଶ ପୂର୍ବକ କିଛି କହିଲେ ନାହିଁ, କେବଳ ଚ୍ୟବନଙ୍କର ସେହି କାର୍ଯ୍ୟକୁ ଚିନ୍ତା କରୁଥିଲେ ।୩। ଅନନ୍ତର ନୃପ ଶୂନ୍ୟମନରେ ଗୃହରେ ପ୍ରବେଶ କରି ଭୃଗୁନନ୍ଦନ ଚ୍ୟବନଙ୍କୁ ସେହି ଶଯ୍ୟାରେ ଶୟନ କରିଥିବାର ଦେଖିଲେ । ୪ । ସେହି ରାଜା ଓ ରାଜ୍ଞୀ ଦୁହେଁ ତେତେବେଳେ ଋଷିଙ୍କୁ ଦର୍ଶନକରି ବିସ୍ମିତ ହେଲେ ଏବଂ ତାହା ଆଶ୍ଚର୍ଯ୍ୟ ଭାବ ତଦ୍ଦ୍ୱାରା ଦର୍ଶନ ହେଉନ୍ତୁ ବିଶ୍ରାମ କଲେ । ୫ ।

ସେ ଦୁହେଁ ଯଥା ସ୍ଥାନରେ ରହି ପୁନଶ୍ଚ ଋଷିଙ୍କ ପଦସେବା କଲେ । ମହାମୁନି ଚ୍ୟବନ ପାର୍ଶ୍ୱ ପରିବର୍ତ୍ତନ ପୂର୍ବକ ଶୟନ କରିଥିଲେ । । ୬ । ବୀର୍ଯ୍ୟବାନ ଚ୍ୟବନ ଯାବତକାଳ ପର୍ଯ୍ୟନ୍ତ ଏକ ପାର୍ଶ୍ୱରେ ନିଦ୍ରିତ ଥିଲେ, ସେ ତାବଦ୍‌କାଳ ପର୍ଯ୍ୟନ୍ତ ଅନ୍ୟ ପାର୍ଶ୍ୱରେ ମଧ୍ୟ ନିଦ୍ରିତ ହୋଇ ଜାଗରିତ ହେଲେ । ସେହି ସଭାର୍ଯ୍ୟା ନୃପତି ଭୟ ଶଙ୍କିତ ହୋଇ କିଛି ବିକାର ପ୍ରାପ୍ତ ହେଲେ ନାହିଁ । ୭ । ହେ ବିଶାମ୍ପତେ ! ଭାରତ ! ସେହି ମୁନି ପ୍ରତିବୁଦ୍ଧ ଅର୍ଥାତ ଜାଗ୍ରତ ହୋଇ ସେ ଦୁହିଁଙ୍କୁ କହିଲେ, ଆମ୍ଭ ସର୍ବାଙ୍ଗରେ ତୈଳ ପ୍ରଦାନ କର । ଆମ୍ଭେ ସ୍ନାନ କରିବୁ । ୮ । ନୃପତି କୁଶିକ ଏବଂ ତାହାଙ୍କ ଭାର୍ଯ୍ୟା କ୍ଷୁଧାବସ୍ଥ ଓ ଶ୍ରମକର୍ଷିତ ହୋଇ ସୁଦ୍ଧା

ତାହା ସ୍ୱୀକାରକର ମହାମୂଲ୍ୟ ଶତପାକ ତୈଳ ଆନୟନ ପୂର୍ବକ ଉପସ୍ଥିତ ହେଲେ । ୯ ।

ତଦନନ୍ତର ସେ ଦୁହେଁ ବାକ୍‌ସଂଯମନ ପୂର୍ବକ ମେନ୍ଦ୍ର ପ୍ରାଖାପରବସ୍ଥ ମୁନିଙ୍କ ଶରୀରରେ ତୈଳ ମର୍ଦ୍ଦନ କଲେ । ମୁନିମନ ତପା ଭାର୍ଗବ ଏହା ପର୍ଯ୍ୟାପ୍ତ ହେଲା ବୋଲି କହିଲେ ନାହିଁ । ୧୦ । ଯେତେବେଳେ ଭାର୍ଗବ ସେହି ଦୁହିଁଙ୍କୁ ନିର୍ବିକାର ଦର୍ଶନ କଲେ ତେତେବେଳେ ଶୀଘ୍ର ଉତ୍ଥିତ ହୋଇ ସ୍ନାନଶାଳାରେ ପ୍ରବିଷ୍ଟ ହେଲେ ।୧୧। ସେହି ସ୍ନାନଶାଳାରେ ପାର୍ଥିବୋଚିତ ସ୍ନାନୀୟ ଦ୍ରବ୍ୟ ସବୁ ପ୍ରସ୍ତୁତ ଥିଲା, କିନ୍ତୁ ମହର୍ଷି ସେହିସବୁ ଦ୍ରବ୍ୟକୁ ଅସତ୍କାର କରି ଅର୍ଥାତ ତାହା ଅଦର୍ଶନ କରି ନୃପତିଙ୍କ ସାକ୍ଷାତରେ ପୁନଶ୍ଚ ସେଠାରେ ଅନ୍ତର୍ହିତ ହେଲେ । ୧୨ ।

ହେ ଭରତ କୁଳ ପ୍ରଦୀପ ! ତାହାଙ୍କ ସାକ୍ଷାତରେ ମୁନି ଅନ୍ତର୍ହିତ ହେବାରୁ ରାଜଦମ୍ପତି ସେହି ନିମିତ୍ତ କିଛି ବିରକ୍ତି ପ୍ରକାଶ କଲେ ନାହିଁ । । ୧୩ । ହେ କୁରୁନନ୍ଦନ ! ତତ୍ପରେ ନିଗ୍ରହାନୁଗ୍ରହ ସମର୍ଥ ଭଗବାନ ଚ୍ୟବନ ସ୍ନାନକରି ସିଂହାସନରେ ଆସୀନ ହୋଇ ସପତ୍ନୀକ କୁଶିକ ନୃପତିଙ୍କୁ ଦର୍ଶନ କଲେ । ୧୪ ।

ପ୍ରଜ୍ଞା ସଂପନ୍ନ କୁଶିକ ନରପାଳ ଭାର୍ଯ୍ୟାଙ୍କ ସହିତ ହୃଷ୍ଟ ବଦନରେ ଓ ନିର୍ବିକାର ଚିତ୍ତରେ ମୁନିଙ୍କୁ 'ଅନ୍ନ ପ୍ରସ୍ତୁତ ହୋଇଅଛି' ଏହିକଥା ନିବେଦନ କଲେ । ୧୫ । ମୁନି ନରପତିଙ୍କୁ 'ଆନୟନକର'—ଏହିକଥା କହିଲେ । ରାଜା ଭାର୍ଯ୍ୟାଙ୍କ ସହିତ ସେହି ପ୍ରସ୍ତୁତ ଅନ୍ନ ମୁନିଙ୍କ ନିକଟକୁ ଆଣିଲେ । ୧୬ । ବହୁବିଧ ମାଂସ, ବିବିଧ ଶାକ ନାନାବିଧ ରସବିଶିଷ୍ଟ ପିଷ୍ଟକ, ବିଚିତ୍ର ମୋଦକ, ଅଥବା ଖାଣ୍ଡବ, ନାନାପ୍ରକାର ରସ, ମୁନି-ମାନଙ୍କ ଭୋଜନୋପଯୋଗୀ ବନ୍ୟଫଳସମୂହ, ତଦ୍‌ଭିନ୍ନ ରାଜଭୋଗ୍ୟ ଭୂରି ଭୂରି ବିଚିତ୍ର ଫଳ ସମୂହ, ବଦରୀ, ଇଙ୍ଗୁଦ, କାଶ୍ମର୍ଯ୍ୟ ଭଲ୍ଲାତକ, ପ୍ରଭୃତି ଗୃହସ୍ଥ ଓ ବନବାସିମାନଙ୍କ ଭୋଜ୍ୟ ଯେଉଁ ସବୁ ଫଳ ଅଛି. ତାହା ସବୁ ନରପତି ତାହାଙ୍କ ଅଭିଶାପ ଭୟରେ ଆହରଣ କରାଇଥିଲେ ୨୦ ।

ତତ୍ପରେ ସେହି ସମସ୍ତ ଖାଦ୍ୟଦ୍ରବ୍ୟ ଚ୍ୟବନଙ୍କ ଅଗ୍ରଭାଗରେ ଉପନ୍ୟସ୍ତ ହେଲା । ଭୃଗୁନନ୍ଦନ ଚ୍ୟବନ ମୁନି ସେହି ସମସ୍ତ ଭୋଜନପାତ୍ର ସହିତ ଶଯ୍ୟା ଓ ଆସନ ଆନୟନ ପୂର୍ବକ ଶୁଭ୍ରବସ୍ତ୍ରଦ୍ୱାରା ଆଚ୍ଛାଦନ କରି ପ୍ରଦୀପିତ କଲେ । ୨୨ । ଅତି ମହାମତି ଦମ୍ପତି ତହିଁରେ ମଧ୍ୟ କ୍ରୋଧ ପ୍ରକାଶ କଲେ ନାହିଁ । ଯେହି ଦୁହେଁ ଚାହୁଁ ଚାହୁଁ ସେହି ମୁନି ପୁନଶ୍ଚ ଅନ୍ତର୍ହିତ ହେଲେ । ୨୩ । ରାଜର୍ଷି ଶ୍ରୀମାନ୍ କୁଶିକ ଭାର୍ଯ୍ୟାଙ୍କ ସହିତ ବାଗ୍ୟତ ହୋଇ ସେହି ରଜନୀରେ ତାଦୃଶ ଭାବରେ ଅବସ୍ଥାନ କଲେ । ତେତେବେଳେ ସେ କୋପାବିଷ୍ଟ ହେଲେ ନାହିଁ । ୨୪ ।

ପ୍ରତିଦିନ ରାଜ ଭବନରେ ବିବିଧ ସଂସ୍କୃତ ଅନ୍ନ ରହିଥାଏ । ଉତ୍କୃଷ୍ଟ ଶଯ୍ୟା ସମୂହ ପ୍ରସ୍ତୁତ ହୋଇଥାଏ । ପ୍ରଚୁର ସ୍ନାନୀୟ ଓ ନାନାବିଧ ବସ୍ତ୍ର ସୁସଜ୍ଜିତ ହୋଇ ରହିଥାଏ । ସେହି କାରଣରୁ ଚ୍ୟବନ କୌଣସି ତ୍ରୁଟି ଦେଖି ପାରିଲେ ନାହିଁ । ୨୬ ।

ବିପ୍ରର୍ଷି କୁଶିକ ନୃପତିଙ୍କୁ ପୁନଶ୍ଚ କହିଲେ, ଆମ୍ଭେ ଯେଉଁ ସ୍ଥାନକୁ କହିବୁଁ ଆପଣ ଭାର୍ଯ୍ୟାଙ୍କ ସହିତ ରଥ ଦ୍ୱାରା ଶୀଘ୍ର ଆମ୍ଭଙ୍କୁ ସେହି ସ୍ଥାନକୁ ବହନ କର ।୨୭। ତେତେବେଳେ ନୃପତି ନିଃଶଙ୍କ ହୋଇ ତପୋଧନଙ୍କୁ "ତାହା ହେଉ"—ଏହା କଥା କହି କହିଲେ, ହେ ଭଗବନ୍ ! ଆପଣଙ୍କୁ କ୍ରୀଡ଼ା ରଥରେ କି ସଂଗ୍ରାମ ସମ୍ବନ୍ଧୀୟ ରଥରେ ବହନ କରିବୁଁ ?୨୮। ରାଜା ହୃଷ୍ଟଚିତ୍ତରେ ମୁନିଙ୍କୁ ଏହିକଥା କହିବାରୁ, ତେତେବେଳେ ଚ୍ୟବନ ହର୍ଷାନ୍ୱିତ ହୋଇ ପରପୁରଞ୍ଜୟୀ ନରପାଳଙ୍କୁ କହିଲେ, (୨୯) ଆପଣଙ୍କର ଯେଉଁ ସଂଗ୍ରାମିକ ରଥ ଅଛି ତାହାକୁ ଶୀଘ୍ର ସଜ୍ଜୀକୃତ କରନ୍ତୁ, ଯେଉଁ ରଥ ଶସ୍ତ୍ରଯୁକ୍ତ, ପତାକାଯୁକ୍ତ, ଶକ୍ତି ଓ ସୁବର୍ଣ୍ଣ ନିବଦ୍ଧ ତୋରଣ ଯୁକ୍ତ ଓ ଶତ ଶତ ଉତ୍ତମ ଅସ୍ତ୍ର ସଂପନ୍ନ ତାହାକୁ ଆନୟନ କରନ୍ତୁ ।୩୧।

ତତ୍ପରେ ନୃପତି "ତାହା ହେଉ" ଏହିକଥା କହି ମହାରଥ ସଜ୍ଜୀକୃତ କରି ତାହାର ବାମଭାଗରେ ଭାର୍ଯ୍ୟାଙ୍କୁ ଓ ଦକ୍ଷିଣ ଭାଗରେ ଆପଣାକୁ ଯୋଜିତ କରି ନିଦନ୍ତ୍ରି ଓ ବଜ୍ର ସୂଚ୍ୟଗ୍ର ପ୍ରତୋଦ ସଂସ୍ଥାପନ କଲେ । ନୃପତି ରଥରେ ଏହା ସବୁ ସ୍ଥାପନ ପୂର୍ବକ କହିଲେ, (୩୩)

ହେ ଭଗବନ୍ ! ଭୃଗୁନନ୍ଦନ ! କେଉଁ ସ୍ଥାନକୁ ରଥ ଗମନ କରିବ ? ଆଜ୍ଞା-କରିବା ହେଉନ୍ତୁ । ହେ ବିପ୍ରର୍ଷେ ! ଆପଣ ଯେଉଁ ସ୍ଥାନକୁ କହିବେ ରଥ ସେହି ସ୍ଥାନକୁ ଗମନ କରିବ । ୩୪ ।

ରାଜା ଏହିପରି କହିବାରୁ ମହର୍ଷି ତାହାଙ୍କୁ ପ୍ରତ୍ୟୁତ୍ତର କଲେ, ହେ ରାଜନ୍ ! ଏହି ସ୍ଥାନରୁ ଧୀରେ ଧୀରେ ଗୋଟିଏ ଗୋଟିଏ ପଦ ଗମନ କରିବାକୁ ହେବ, (୩୫) ଯେ ଯେଉଁ ପରି ଆମ୍ଭଙ୍କୁ ପରିଶ୍ରମ ବାଧା ହେବନାହିଁ । ସେହି ଅନୁସାରେ ତୁମ୍ଭେ ଦୁହେଁ ଆମ୍ଭ ଅଭିପ୍ରାୟାନୁସାରେ ରଥକୁ ବହନ କରି ମନ୍ଦ ମନ୍ଦ ପରମ ସୁଖରେ ଗମନ କରିବ । ସମସ୍ତ ଲୋକେ ତାହା ଦର୍ଶନ କରନ୍ତୁ ।୩୬। ମାର୍ଗ ମଧ୍ୟରେ କୌଣସି ପଥିକମାନଙ୍କୁ ନିଃସାରଣ କରିବ ନାହିଁ, କାରଣ ଆମ୍ଭେ ସେମାନଙ୍କୁ ଧନ ଦାନ କରିବୁଁ । ପଥ ମଧ୍ୟରେ ଯେଉଁ ବ୍ରାହ୍ମଣଗଣ ଆମ୍ଭ ନିକଟରେ ଯାହା ପ୍ରାର୍ଥନା କରିବେ, ଆମ୍ଭେ ସେହିମାନଙ୍କୁ ଅଶେଷ ପ୍ରକାରରେ ସେହି ଧନରତ୍ନ ସମୂହ ପ୍ରଦାନ କରିବୁଁ । ହେ ରାଜନ୍ ! ଆମ୍ଭେ ଯାହା କହିଲୁ ଆପଣ ତାହାସବୁ ସମ୍ପାଦନ କରନ୍ତୁ । ଏହି ବିଷୟରେ କିଛି ବିଚାର କରନ୍ତୁ ନାହିଁ । ୩୮ । ନୃପତି ତାହାଙ୍କର ସେହିବାକ୍ୟ ଶ୍ରବଣକରି ଭୃତ୍ୟଗଣଙ୍କୁ କହିଲେ, ହେ ଭୃତ୍ୟଗଣ ! ମୁନି ଯାହା କହିବେ ତୁମ୍ଭେମାନେ ଅଶଙ୍କିତ ଚିତ୍ତରେ ତାହାସବୁ ଦାନ କରିବ । ୩୯ । ତତ୍ପରେ ବିବିଧରତ୍ନ, ସ୍ତ୍ରୀବୃନ୍ଦ, ବାହକ ସମୂହ, ଅଜା ଓ ମେଷ ସମୂହ, ବିଶୁଦ୍ଧ ଓ ଅବିଶୁଦ୍ଧ ସୁବର୍ଣ୍ଣ ଏବଂ ଅଚଳ ସଦୃଶ ଗଜେନ୍ଦ୍ରନିକର ଓ ରାଜାଙ୍କ ସମସ୍ତ ଅମାତ୍ୟବୃନ୍ଦ ସେହି ଋଷିଙ୍କ ପଶ୍ଚାତ୍ ପଶ୍ଚାତ୍ ଗମନ କଲେ । ନଗରବାସୀ ଲୋକବୃନ୍ଦ ଆର୍ତ୍ତବ୍ୟକ୍ତି ସଦୃଶ ହାହାକାର କଲେ । । ୪୧ । ରାଜା ଓ ମହିଷୀ ତୀକ୍ଷ୍ଣାଗ୍ର ପ୍ରତୋଦଦ୍ୱାରା ତାଡ଼ିତ ଏବଂ ପୃଷ୍ଠ ଓ କଟିଭାଗରେ ବିଦ୍ଧ ହୋଇସୁଦ୍ଧା ନିର୍ବିକାର ଭାବରେ ତାହାଙ୍କୁ ବହନ କରୁଥିଲେ । ୪୨ ।

ସେହି ବୀର ଦମ୍ପତି ପଞ୍ଚାଶତ୍‌ରାତ୍ରି ନିରାହାରରେ କ୍ଳେଶଯୁକ୍ତ ଓ କମ୍ପମାନ ହୋଇ ସେହି ଉତ୍ତମ ରଥକୁ ଅତି କଷ୍ଟରେ ବହନ କରୁଥିଲେ । । ୪୩ । ହେ ମହାରାଜ ! ସେହି ଦୁହେଁ ବାରମ୍ବାର ଅତିଶୟ ବିଦ୍ଧହୋଇ

କ୍ଷତଜ ରୁଧିର କ୍ଷରଣ କରି ପୁଷ୍ପିତ କିଂଶୁକତରୁପରି ଦୃଷ୍ଟ ହେଲେ । ୪୪ । ପୁରବାସୀ ଜନଗଣ ସେହି ଦୁହିଁଙ୍କୁ ଦେଖି ଅତିଶୟ ଶୋକରେ ଆକୁଳ ହେଲେ ସୁଦ୍ଧା ଅଭିଶାପଭୟବଶରୁ ବ୍ୟସ୍ତହୋଇ କିଛି କହିପାରିଲେ ନାହିଁ । । ୪୫ । ସେମାନେ ପରସ୍ପର କହୁଥିଲେ କି "ତପସ୍ୟାର ବଳଦେଖ" । ଆମ୍ଭେମାନେ କ୍ରୋଧଯୁକ୍ତ ହୋଇ ସୁଦ୍ଧା ମୁନିବରଙ୍କୁ ଗୃହିଁବାକୁ ସମର୍ଥ ହେବା ନାହିଁ ।୪୬। ଏହି ଭାବିତାତ୍ମା ମହର୍ଷିଙ୍କର କି ଆଶ୍ଚର୍ଯ୍ୟ ବୀର୍ଯ୍ୟ ! ତାହାଦେଖ ଓ ସପତ୍ନୀକ ନୃପଙ୍କର କୀଦୃଶ ଧୈର୍ଯ୍ୟ ଅଛି ତାହାମଧ୍ୟ ଅବଲୋକନ କର । । ୪୭ ।

ଏହି ଦୁହେଁ ଶ୍ରାନ୍ତ ହୋଇ ସୁଦ୍ଧା କଷ୍ଟରେ ଏହି ରଥକୁ ବହନ କରୁଥିଲେ । ଭୃଗୁନନ୍ଦନ ସେହି ଦୁହିଁଙ୍କର କୌଣସି ମାନସିକ ବିକାର ଦେଖି ନଥିଲେ । ୪୮ ।

ଭୀଷ୍ମ କହିଲେ, ତତ୍ପରେ ଭୃଗୁକୁଳନନ୍ଦନ ଚ୍ୟବନ ସେହି ରାଜଦମ୍ପତିଙ୍କୁ ନିର୍ବିକାର ଦେଖି କୁବେର ସଦୃଶ ଅସଂଖ୍ୟ ଧନ ବିତରଣ କଲେ । ୪୯ । ତଥାପି ନୃପତି ପ୍ରୀତିଯୁକ୍ତ ହୋଇ ଋଷିଙ୍କ ଆଦେଶାନୁସାରେ ସମସ୍ତ କାର୍ଯ୍ୟ ସାଧନ କରୁଥିଲେ । ପରିଶେଷରେ ଭଗବାନ ମୁନିଶ୍ରେଷ୍ଠ ଚ୍ୟବନ ତାହାଙ୍କଠାରେ ପ୍ରସନ୍ନ ହେଲେ । ୫୦ । ଏବଂ ସେ ପ୍ରକୃଷ୍ଟରଥରୁ ଅବତୀର୍ଣ୍ଣ ହୋଇ ସେହି ଦମ୍ପତିଙ୍କୁ ମୋଚନ କଲେ । ହେ ଭାରତ ! ଭୃଗୁନନ୍ଦନ ସେହି ରାଜଦମ୍ପତିଙ୍କୁ ବିଧି ଅନୁସାରେ ମୋଚନ କରି ସ୍ନିଗ୍ଧ ଗମ୍ଭୀର ଓ ସୁପ୍ରସନ୍ନ ବାକ୍ୟରେ କହିଲେ, ଆମ୍ଭେ ତୁମ୍ଭ ଦୁହିଁଙ୍କୁ ଉତ୍କୃଷ୍ଟବର ପ୍ରଦାନ କରିବା, ତୁମ୍ଭେ ଦୁହେଁ ତାହା ପ୍ରାର୍ଥନା କର । ୫୨ ।

ହେ ଭରତ ଶ୍ରେଷ୍ଠ ! ସେହି ମୁନିସତ୍ତମ ତେତେବେଳେ ସ୍ନେହ ହେତୁରୁ ଅମୃତ କଳ୍ପ ହୋଇ ନିତାନ୍ତବଦ୍ଧ ସୁକୁମାର କଳେବର ସେହି ରାଜଦମ୍ପତିଙ୍କୁ ସ୍ପର୍ଶକଲେ । ୫୩ । ତତ୍ପରେ ନରପତି ଓ ରାଜମହିଷୀ ଉଭୟେ ଭାର୍ଗବଙ୍କୁ କହିଲେ, ଆପଣଙ୍କ ଅନୁଗ୍ରହରେ ଆମ୍ଭ ଦୁହିଙ୍କର କିଛି ଶ୍ରମ ହୋଇ ନାହିଁ । ଏତେବେଳେ ଆମ୍ଭେ ଦୁହେଁ ବିଶ୍ରାନ୍ତ ହେଇଅଛୁ । ୫୪ । ପରିଶେଷରେ ଭଗବାନ ଚ୍ୟବନ ଅତିଶୟ ହର୍ଷଯୁକ୍ତ ହୋଇ ତେତେବେଳେ

ସେ ଦୁହିଁଙ୍କୁ କହିଲେ, ଆମ୍ଭେ କଦାପି ବୃଥାବାକ୍ୟ କହୁନାହୁଁ, ଆମ୍ଭେ ପୂର୍ବେ ଯେଉଁ କଥା କହିଅଛୁଁ ତାହା ଅବଶ୍ୟ ହେବ । ୫୫ । ହେ ପାର୍ଥିବ ! ପବିତ୍ର ଶୁଭପ୍ରଦ ଗଙ୍ଗାତୀରର ଅତି ରମଣୀୟ ଉତ୍କୃଷ୍ଟ ସ୍ଥଳ, ଆମ୍ଭେ କଯୁକ୍ତ ସମସ୍ତ ବ୍ରତନିଷ୍ଠ ହୋଇ ଏହି ସ୍ଥାନରେ ଅବସ୍ଥିତି କରିବୁଁ । ୫୬ । ତୁମ୍ଭେ ନିଜପୁରକୁ ଗମନ କର । ସେଠାରେ ବିଶ୍ରାମ ଲାଭ ପୂର୍ବକ ପୁନଶ୍ଚ ଏହି ସ୍ଥଳକୁ ଆଗମନ କରିବ । ହେ ନରାଧିପ ! କଲ୍ୟ ତୁମ୍ଭେ ଭାର୍ଯ୍ୟାଙ୍କ ସହିତ ଏହି ସ୍ଥାନକୁ ଆଗମନ କରି ଆମ୍ଭଙ୍କୁ ଏହିଠାରେ ଥିବାର ଦେଖିବ । ୫୭ ।

ତୁମ୍ଭେ କ୍ରୋଧ ଅଥବା ଶୋକ କରନା, ତୁମ୍ଭର ଶ୍ରେୟ ଉପସ୍ଥିତ ହୋଇଅଛି । ତୁମ୍ଭେ ହୃଦୟରେ ଯାହା ଯାହା ଅଭିଳାଷ କରିଅଛ, ତାହାସବୁ ସିଦ୍ଧହେବ; ମୁନି ଏହିପରି କହିବାରୁ କୁଶିକ ହୃଷ୍ଟ ମନରେ, ସେହି ମୁନିବରଙ୍କୁ ଏହି ଅର୍ଥଯୁକ୍ତ ବାକ୍ୟ କହିଲେ, ହେ ମହାଭାଗ ! ଆମ୍ଭ ଦୁହିଁଙ୍କର କ୍ରୋଧ ଅବା ଶୋକ ନାହିଁ । ୫୮ । ହେ ଭଗବନ୍ ! ଆମ୍ଭେ ଦୁହେଁ ଆପଣଙ୍କ ପ୍ରସାଦରେ ପବିତ୍ର ହେଲୁଁ । ୫୯ । ଆମ୍ଭେ ଦୁହେଁ ବପୁଷ୍ମାନ ବଳଯୁକ୍ତ ଓ ଯୌବନସ୍ଥ ହୋଇଅଛୁଁ । ଆପଣ ପ୍ରତୋଦ ଦ୍ୱାରା ଆମ୍ଭର ଓ ଆମ୍ଭ ପତ୍ନୀଙ୍କ ଦେହରେ ଯେଉଁ ବ୍ରଣ ଉତ୍ପାଦନ କରିଥିଲେ, ତାହା ଆମ୍ଭେ ଦୁହେଁ ଆଉ ଦେଖୁନାହୁଁ । ସଂପ୍ରତି ଆମ୍ଭେ ଭାର୍ଯ୍ୟାଙ୍କ ସହିତ ସୁସ୍ଥ ହୋଇଅଛୁଁ । ଆମ୍ଭେ ଏହି ଦେବୀଙ୍କୁ ପୂର୍ବେ ଯେଉଁପରି ଦେଖିଥିଲୁଁ, ସଂପ୍ରତି ତଦପେକ୍ଷା ଅଧିକ ଶ୍ରୀ ସମ୍ପନ୍ନା ଏବଂ ଶରୀର ସୌନ୍ଦର୍ଯ୍ୟରେ ଅପ୍‌ସରୋ-ପମା ଦେଖୁଅଛୁଁ । ହେ ମହାମୁନେ ! ଆପଣଙ୍କ ପ୍ରସାଦରେ ଏହାସବୁ ହୋଇ ଅଛି । ହେ ସତ୍ୟପରାକ୍ରମ ! ଭଗବନ୍ ! ଆପଣଙ୍କ ପ୍ରସାଦରେ ଏହାସବୁ ଆଶ୍ଚର୍ଯ୍ୟ ନୁହେଁ । ତେତେବେଳେ ରାଜା ଏହିପରି କହିବାରୁ ଚ୍ୟବନ କୁଶିକଙ୍କୁ କହିଲେ, ହେ ରାଜନ୍ ! ତୁମ୍ଭେ ଭାର୍ଯ୍ୟାଙ୍କ ସହିତ ଏହିସ୍ଥାନକୁ ଆଗମନ କରିବ । ମହର୍ଷି ଏହିପ୍ରକାର କହି ଅନୁଜ୍ଞା ଦେବାରୁ ରାଜର୍ଷି କୁଶିକ ତାହାଙ୍କୁ ଅଭିବାଦନ ପୂର୍ବକ ( ୬୪ ) ସୌନ୍ଦର୍ଯ୍ୟ ଯୁକ୍ତ ଶରୀରରେ ଦେବରାଜଙ୍କ ସଦୃଶ ନଗରକୁ ଗମନ କଲେ । ତତ୍ପରେ ପୁରୋହିତଙ୍କ ସହିତ ଅମାତ୍ୟଗଣ (୬୫) ସୈନ୍ୟବୃନ୍ଦ, ଗଣିକ ମାନଙ୍କ ସହିତ ସମସ୍ତ ପ୍ରଜାଗଣ ତାହାଙ୍କ ସନ୍ନିହିତ ହେଲେ । କୁଶିକ ସେହି ସମସ୍ତ ପ୍ରକୃତ

ଦ୍ୱାରା ପରିବୃତ, ପରମ ଶ୍ରୀ ସମ୍ପନ୍ନ ଏବଂ ବନ୍ଦୀଗଣ କର୍ତ୍ତୃକ ପୂଜ୍ୟମାନ ହୋଇ ପୁରମଧ୍ୟରେ ପ୍ରବେଶ କଲେ । ତଦନନ୍ତର ମହାଦ୍ୟୁତି ନରପତି ନଗରରେ ପ୍ରବେଶ ପୂର୍ବକ ପୂର୍ବାହ୍ନିକୀ କ୍ରିୟା ସମାପନ ଉତ୍ତାରେ ଭୋଜନ କରି ଭାର୍ଯ୍ୟାଙ୍କ ସହିତ ରଜନୀ ଯାପନ କଲେ । ୬୭ ।

ସେତେବେଳେ ସେହି ଦୁହେଁ ବିଗତଜ୍ୱର ଅମର ଯୁଗଳ ସଦୃଶ ପରସ୍ପର ନବ ଯୌବନ ନିରୀକ୍ଷଣ କରି ଦ୍ୱିଜବରଙ୍କ ପ୍ରଦତ୍ତ ଶ୍ରୀ ସମ୍ପନ୍ନ ଶରୀର ଧାରଣ ପୂର୍ବକ ଶଯ୍ୟାରେ ଥାଇ ଆନନ୍ଦିତ ହେଉଥିଲେ । ୬୮ । ତଦନନ୍ତର ଭୃଗୁକୁଳ କୀର୍ତ୍ତିବର୍ଦ୍ଧନ ଚ୍ୟବନ ତପୋଧନ ସ୍ୱୀୟ ବୁଦ୍ଧି ଦ୍ୱାରା ବହୁବିଧ ରତ୍ନ ଭୂଷିତ ସମୃଦ୍ଧି ସମ୍ପନ୍ନ ଅତି ରମଣୀୟ ଏତାଦୃଶ ବନ ସର୍ଜ୍ଜନ କଲେ ଯେ ତାହା ଦେବରାଜଙ୍କ ଅମରାବତୀରେ ମଧ୍ୟ ଦେଖିବାର ଦୁର୍ଲ୍ଲଭ । ୬୯ ।



## ଅଧ୍ୟାୟ—୫୪

ଭୀଷ୍ମ କହିଲେ, ତତ୍ପରେ ମହାମନା କୁଶିକ ନରପତି ନିଶାବସାନରେ ଜାଗ୍ରତ ହୋଇ ପୂର୍ବାହ୍ଣର କ୍ରିୟା ସମୂହ ନିର୍ବାହ ପୂର୍ବକ ମହିଷୀଙ୍କ ସହିତ ସେହି ବନକୁ ଗମନ କଲେ । ୧ । ହେ ଭାରତ ! ତତ୍ପରେ କୁଶିକ ରାଜା ଗନ୍ଧର୍ବ ନଗରୋପମ ସହସ୍ର ମଣିମୟ ସ୍ତମ୍ଭ ସମ୍ପନ୍ନ ଗୋଟିଏ ସୁବର୍ଣ୍ଣମୟ ପ୍ରାସାଦ ଅବଲୋକନ କଲେ । ସେତେବେଳେ ସେଠାରେ ଦିବ୍ୟ ଅଭିପ୍ରାୟ ସମୂହ ଦର୍ଶନ କଲେ । ରମଣୀୟ ରୌପ୍ୟ ଶୃଙ୍ଗଯୁକ୍ତ ପର୍ବତବୃନ୍ଦ, ପଙ୍କଜଯୁକ୍ତ ପୁଷ୍କରିଣୀ ସମୂହ, ନାନାବିଧ ଚିତ୍ରଶାଳା ଏବଂ ପବିତ୍ର ତୋରଣ ସମୂହ ନିରୀକ୍ଷଣ କଲେ । କାଞ୍ଚନ ପ୍ରାସାଦର ତଳ ଭାଗରେ ଶାଦ୍ୱଳ ଶସ୍ୟୋପଶିତ ଭୂମି, ପ୍ରଫୁଲ୍ଲ ସହକାର, କେତକ, ଉଦ୍ଦାଳକ, ଧବ, ଅଶୋକ, କୁନ୍ଦ, ବିକସିତ ଅତିମୁକ୍ତକ, ଚମ୍ପକ, ତିଳକ, ସୁନ୍ଦର ପନସ, ବଞ୍ଜୁଳ ଓ କୁସୁମିତ କର୍ଣ୍ଣିକାର ତରୁଗଣଙ୍କୁ ସେହି ସ୍ଥାନରେ ଦେଖିଲେ । ୫ ।

ଶ୍ୟାମବର୍ଣ୍ଣବାରଣପୃଷ୍ଠ ଏବଂ ଅଷ୍ଟପଦକାଳତା ସମୂହକୁ ନରପତି ସେହି ସ୍ଥାନରେ ଦର୍ଶନ କଲେ । ୭ । ହେ ଭାରତ ! କୌଣସି କୌଣସି ସ୍ଥାନରେ ସମସ୍ତ ଋତୁର ପୁଷ୍ପ ପଦ୍ମ ଉତ୍ପଳ ଧବ ସମୂହ, ବିମାନ ପ୍ରତିମ ଗିରି-ସଦୃଶ ପ୍ରାସାଦ ସମୂହ, ସୁଶୀତଳ ସଲିଳରାଶି, କୌଣସି କୌଣସି ସ୍ଥାନରେ ଉଷ୍ଣୋଦକ, କୌଣସି କୌଣସି ସ୍ଥାନରେ ବିଚିତ୍ର ଆସନ ସମୂହ, ଉତ୍କୃଷ୍ଟ ଶଯ୍ୟାସମୂହ, ବହୁମୂଲ୍ୟ ଆସ୍ତରଣ ସମନ୍ୱିତ ରତ୍ନ ଓ ସୁବର୍ଣ୍ଣମୟ ପର୍ଯ୍ୟଙ୍କ ସମୂହ ଏବଂ ନାନାବିଧ ଭକ୍ଷ୍ୟ ଓ ଭୋଜ୍ୟ ଦ୍ରବ୍ୟ ସେହି ସେହି ସ୍ଥଳରେ ସୁସଜ୍ଜିତ ଓ ପ୍ରସ୍ତୁତ ଥିଲା । ୯ । ବାକ୍‌ପଟୁ ଶୁକ, ସାରିକା, ଭୃଙ୍ଗରାଜକ ଅର୍ଥାତ୍ ମତ୍ତ ଭ୍ରମରକୁଳ, କୋକିଳ ଶାବକ, ଟିଟ୍ଟିଭକ, ବନକୁକ୍‌କୁଟ, ମୟୂର, କୁକ୍‌କୁଟ, ଦାତ୍ୟୂହ, ଜୀବଜୀବ, ଚକୋର, ହଂସ, ଚକ୍ରବାକ ପ୍ରଭୃତି ଅତି ମନୋହର ପ୍ରମୋଦଯୁକ୍ତ ବିହଙ୍ଗ ଓ ବାନରମାନଙ୍କୁ ନୃପତି ଚତୁର୍ଦ୍ଦିଗରେ ଦର୍ଶନକଲେ । କୌଣସିଠାରେ ଗନ୍ଧର୍ବ ଓ ଅପ୍‌ସରା ସମୂହ, କୌଣସିଠାରେ କାନ୍ତାମାନଙ୍କ ସହିତ ପରିଷ୍ୱକ୍ତ ଅନ୍ୟାନ୍ୟ ପୁରୁଷଗଣଙ୍କୁ ଦର୍ଶନକଲେ । ନୃପତି ସେମାନଙ୍କୁ ଦର୍ଶନକରି ପୁନଶ୍ଚ ଆଉଥରେ ଦେଖି ନ ଥିଲେ । ୧୩ ।

ନରପତି ସେହି ସ୍ଥାନରେ ସୁମଧୁର ସଙ୍ଗୀତ ନିସ୍ୱନ, ଅଧ୍ୟୟନର ଧ୍ୱନି ଓ ମଧୁର ହଂସରବ ଶ୍ରବଣ କଲେ । ୧୪ । ରାଜା ସେହି ଅଦ୍ଭୁତ ବ୍ୟାପାର ଅବଲୋକନ କରି ତେତେବେଳେ ମନେ ମନେ ଚିନ୍ତା କଲେ ଯେ, ଓଃ ଏହା ସ୍ୱପ୍ନ କି ଚିତ୍ତବିଭ୍ରମ ! କିମ୍ବା ଏହା ସତ୍ୟ ।୧୫। ଓଃ କି ଆଶ୍ଚର୍ଯ୍ୟ ! ଆମ୍ଭେ କି ଏହି ଶରୀର ସହିତ ପରମଗତିକି ପ୍ରାପ୍ତହେଲୁଁ ! ଅଥବା ପବିତ୍ର ଉତ୍ତର କୁରୁଦେଶରେ ଅଥବା ଅମରାବତୀ ପୁରୀରେ ଉତ୍ତୀର୍ଣ୍ଣ ହୋଇଅଛୁଁ ! । ୧୬ । ଓଃ ଏ କି ମହତ୍ ଆଶ୍ଚର୍ଯ୍ୟ ବିଷୟ ଆମ୍ଭେ ଦେଖୁଅଛୁଁ ! ସେ ଏହିପରି ଚିନ୍ତା କରୁଥିଲେ । ସେ ଏହି ପ୍ରକାର ଚିନ୍ତା କରୁ କରୁ ସେହି ମଣିସ୍ତମ୍ଭ ସମାକୁଳ ସୁବର୍ଣ୍ଣ ବିମାନରେ ମହାର୍ହଦିବ୍ୟ ଶଯ୍ୟାରେ ଶୟାନ ମୁନିବର ଭୃଗୁନନ୍ଦନଙ୍କୁ ଦର୍ଶନ କଲେ । ୧୮ ।

ନୃପତି ତାହାଙ୍କୁ ଦର୍ଶନ କଲାମାତ୍ରେ ହର୍ଷାବିଷ୍ଟ ହୋଇ ମହିଷୀଙ୍କ ସହିତ ସେହି ମହର୍ଷିଙ୍କ ଅଭିମୁଖକୁ ଗମନ କଲେ; ତେବେବେଳେ ଚ୍ୟବନ

ସେହି ଶଯ୍ୟା ସହିତ ପୁନଶ୍ଚ ଅନ୍ତର୍ହିତ ହେଲେ । ୧୯ । ତତ୍ପରେ ନୃପତି ଅନ୍ୟ କୌଣସି ବନରେ କୁଶାସନରେ ସମାସୀନ ମହାବ୍ରତ ତପପରାୟଣ ସେହି ମୁନିଙ୍କୁ ପୁନଶ୍ଚ ଦର୍ଶନ କଲେ । ୨୦ । ଚ୍ୟବନ ବିପ୍ର ଏବଂବିଧ ଯୋଗବଳରେ ରାଜାଙ୍କୁ ବିମୋହିତ କରିଥିଲେ ଯେ, କ୍ଷଣକ ମଧ୍ୟରେ ସେହି ବନ, ସେହି ଅପ୍ସରାଗଣ, ସେହି ଗନ୍ଧର୍ବ ସମୂହ ଓ ପାଦପ ସମୂହ, ଏହିସବୁ ଅନ୍ତର୍ହିତ ହୋଇଥିଲା । ହେ ନୃପ ! ଗଙ୍ଗାକୂଳ ପୁନଶ୍ଚ ନିଃଶବ୍ଦ ହେଲା; ସେହିଗଙ୍ଗାକୂଳ ପୂର୍ବବତ୍ ପୁନଶ୍ଚ କୁଶ ଓ ବଲ୍ମୀକ ସମୂହରେ ପରିପୂର୍ଣ୍ଣ ହେଲା । ତଦନନ୍ତର କୁଶିକ ନରପାଳ ମହର୍ଷୀଙ୍କ ସହିତ ସେହି ଉତ୍କୃଷ୍ଟ ଅଦ୍ଭୁତକାର୍ଯ୍ୟ ଦର୍ଶନ କରି ଅତିଶୟ ବିସ୍ମୟାପନ୍ନ ହେଲେ । ପରିଶେଷରେ ସେହି କୁଶିକ ହର୍ଷଯୁକ୍ତ ହୋଇ ଭାର୍ଯ୍ୟାଙ୍କୁ କହିଲେ । ୨୪ ।

ହେ ଭଦ୍ରେ ! ଭୃଗୁନନ୍ଦଙ୍କ ପ୍ରସାଦରେ ଯେଉଁ ଅତି ଦୁର୍ଲ୍ଲଭ ବିଚିତ୍ର ବ୍ୟାପାର ସମୂହ ଅବଲୋକନ କଲି, ତାହାକି ତପୋବଳ ବ୍ୟତିରେକେ ଅନ୍ୟକୌଣସି କାରଣରେ ହୋଇପାରେ ? । ୨୫ । ଯାହା ମନୋରଥ ଦ୍ୱାରା ପ୍ରାପ୍ତ ନୁହେ, ତାହା ତପସ୍ୟାଦ୍ୱାରା ପ୍ରାପ୍ୟ ହୁଏ । ତପସ୍ୟା ତ୍ରୈଲୋକ୍ୟ ରାଜ୍ୟ ଅପେକ୍ଷା ଉତ୍କୃଷ୍ଟ । ୨୬ ।

ସୁନ୍ଦର ରୂପେ ତପସ୍ୟା କଲେ ସେହି ତପସ୍ୟା ବଳରେ ମୋକ୍ଷଲାଭ କରିବାକୁ ସାମର୍ଥ୍ୟ ହୁଏ, ମହାନୁଭବ ବ୍ରହ୍ମର୍ଷି ଚ୍ୟବନଙ୍କର କି ଆଶ୍ଚର୍ଯ୍ୟ ପ୍ରଭାବ ! ୨୭ । ଏ ଇଚ୍ଛାଦ୍ୱାରା ତପସ୍ୟା ପ୍ରଭାବରେ ଅନ୍ୟଲୋକ-ମାନଙ୍କୁ ସର୍ଜ୍ଜନ କରି ପାରନ୍ତି । ବ୍ରାହ୍ମଣଗଣ ପୁଣ୍ୟବାନ୍ ପୁଣ୍ୟବୁଦ୍ଧି ଓ ପବିତ୍ରକର୍ମାହୋଇ ଜନ୍ମ ପରିଗ୍ରହ କରନ୍ତି । ୨୮ ।

ଇହଲୋକରେ ଚ୍ୟବନଙ୍କ ବ୍ୟତିରେକେ ଅନ୍ୟ କେଉଁବ୍ୟକ୍ତି ଏହିପରି କରିବାକୁ ଉତ୍ସାହୀ ହୁଅନ୍ତି କି ? ଇହଲୋକରେ ବ୍ରାହ୍ମଣତ୍ୱ ଦୁର୍ଲ୍ଲଭ, ନରଗଣ ସହଜରେ ରାଜ୍ୟପ୍ରାପ୍ତ ହୁଅନ୍ତି । ୨୯ । '

ବ୍ରାହ୍ମଣଙ୍କ ପ୍ରଭାବରେ ଆମ୍ଭେ ଦୁହେଁ ରଥରେ ନିଜ ଧୂର୍ଯ୍ୟ ଅର୍ଥାତ୍ ରଥଭାର ବାହକ ଘୋଟକ ସଦୃଶ ନିଯୁକ୍ତ ହୋଇଥିଲୁଁ । ନୃପତି ଏହି-ପରି ଚିନ୍ତା କରୁ କରୁ ଚ୍ୟବନଙ୍କ ପ୍ରଭାବ ବିଦିତ ହେଲେ । ୩୦ । ମହର୍ଷି

ନୃପତିଙ୍କୁ ନମସ୍କାର କରି କ୍ଷିପ୍ର ଆଗମନ କର—ଏହି କଥା କହିଲେ, ମହର୍ଷି ରାଜାଙ୍କୁ ଏହିପରି ଆଦେଶ ଦେବାରୁ ସେ ଭାର୍ଯ୍ୟାଙ୍କ ସହିତ ସେହି ମୁନିଙ୍କ ସମ୍ମୁଖକୁ ଗମନ କଲେ । ୩୧ । ସେହି ବନ୍ଦମାନ୍ଯ ମୁନିଙ୍କୁ ମସ୍ତକଦ୍ୱାରା ପ୍ରଣତ ହୋଇ ବନ୍ଦନା କଲେ । ହେ ପୁରୁଷଶ୍ରେଷ୍ଠ ! ବୁଦ୍ଧିମାନ୍ ମୁନି ସେହି ନରପାଳଙ୍କୁ ଆଶୀର୍ବାଦ କଲେ ଏବଂ ସାନ୍ତ୍ୱନା ବାକ୍ୟ ପ୍ରୟୋଗ ପୂର୍ବକ ଉପବେଶନ କରିବାକୁ କହିଲେ । ୩୨ ।

ହେ ରାଜନ୍ ଭାରତ ! ତଦନନ୍ତର ଭାର୍ଗବ ଚ୍ୟବନ ମହର୍ଷି ପ୍ରକୃତି ପ୍ରାପ୍ତ ହୋଇ ନୃପଙ୍କୁ ମଧୁର ବାକ୍ୟରେ ତୃପ୍ତକରି କହିଲେ । ୩୩ । ହେ ରାଜନ୍ ! ତୁମ୍ଭେ ସ୍ୱୟଂ ମନସହିତ ପଞ୍ଚକର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟମାନଙ୍କୁ ଉତ୍ତମରୂପେ ଜୟକରିଅଛ, ସେହି ହେତୁରୁ ଏହି କୃଚ୍ଛ୍ର ଅର୍ଥାତ୍ କଷ୍ଟରୁ ମୁକ୍ତ ହେଲ । ୩୪ । ହେ ପୂଜ୍ୟ ବକ୍ତୃବର ! ଆମ୍ଭେ ତୁମ୍ଭଦ୍ୱାରା ଉତ୍ତମରୂପେ ଆରାଧିତ ହୋଇଅଛୁଁ । ତୁମ୍ଭର ସୂକ୍ଷ୍ମ ପରିମାଣରେ ମଧ୍ୟ କିଛିମାତ୍ର ପାପନାହିଁ । ୩୫ ।

ହେ ରାଜନ୍ ! ଏତେବେଳେ ତୁମ୍ଭେ ଆମ୍ଭଙ୍କୁ ଅନୁମତି ଦିଅ ଆମ୍ଭେ ସ୍ୱସ୍ଥାନକୁ ଗମନ କରିବୁଁ । ହେ ରାଜେନ୍ଦ୍ର ! ଆମ୍ଭେ ତୁମ୍ଭଠାରେ ପ୍ରୀତ ହୋଇଅଛୁଁ, ତୁମ୍ଭେ ବର ଗ୍ରହଣ କର । ୩୬ । କୁଶିକ କହିଲେ, ହେ ଭୃଗୁଶ୍ରେଷ୍ଠ ! ଭଗବାନ୍ ! ଆମ୍ଭେ ଆପଣଙ୍କ ନିକଟରେ ଅଗ୍ନିମଧ୍ୟସ୍ଥିତ ବ୍ୟକ୍ତିପରି ରହି ଯାହା ଦଗ୍ଧ ହୋଇନାହୁଁ ଏହା ଆମ୍ଭ ପକ୍ଷରେ ଯଥେଷ୍ଟ ହୋଇଅଛି । ୩୭ । ହେ ଅନଘ ! ବ୍ରହ୍ମନ୍ ! ଭୃଗୁନନ୍ଦନ ! ଆମ୍ଭେ ଏହି ମୁଖ୍ୟବରକୁ ପ୍ରାପ୍ତ ହୋଇଅଛୁଁ ଯେ, ଆପଣ ମତ୍କର୍ତ୍ତୃକ ପ୍ରୀତହୋଇ ଅଛନ୍ତି ଏବଂ ଆମ୍ଭର କୁଳରକ୍ଷା ହୋଇଅଛି । ୩୮ । ହେ ବିପ୍ର ! ଏହି ଅନୁଗ୍ରହ ଆମ୍ଭ ଜୀବନର ପ୍ରୟୋଜନ, ଏହି ଅନୁଗ୍ରହ ଆମ୍ଭ ରାଜ୍ୟର ଫଳ, ଏହି ଅନୁଗ୍ରହ ଆମ୍ଭ ତପସ୍ୟାର ଫଳ ଅଟେ । ୩୯ । ହେ ବିପ୍ର ଭୃଗୁନନ୍ଦନ ! ଆପଣ ଆମ୍ଭଠାରେ ଯଦି ପ୍ରୀତିଯୁକ୍ତ ହୋଇ ଅଛନ୍ତି, ତେବେ ଆମ୍ଭର କେଉଁ ସଂଶୟ ଅଛି, ତାହା ପ୍ରକାଶ କରନ୍ତୁ । ୪୦ ।

—*—

# ଅଧ୍ୟାୟ—୫୫

ଚ୍ୟବନ କହିଲେ, ହେ ନରବର ! ତୁମ୍ଭେ ଆମ୍ଭ ନିକଟରୁ ବର ଗ୍ରହଣ କର ଏବଂ ତୁମ୍ଭ ଅନ୍ତଃକରଣରେ ଯେଉଁ ସଂଶୟ ଅଛି ତାହାମଧ୍ୟ କହ, ଆମ୍ଭେ ତୁମ୍ଭର ସମସ୍ତ କାମନାକୁ ସମ୍ପାଦନ କରିବୁଁ । ୧ ।

କୁଶିକ କହିଲେ, ହେ ଭଗବନ୍ ! ଭାର୍ଗବ ! ଆପଣ ଆମ୍ଭଠାରେ ଯଦି ପ୍ରୀତହୋଇ ଅଛନ୍ତି, ତେବେ କହନ୍ତୁ ଆପଣ କି ନିମିତ୍ତ ଆମ୍ଭ ଗୃହରେ ବସତି କରିଥିଲେ ? ତାହାର କାରଣ ଶୁଣିବାକୁ ଆମ୍ଭେ ଇଚ୍ଛା କରୁଅଛୁଁ । ୨ ।

ହେ ମୁନିଶ୍ରେଷ୍ଠ ! ଆପଣ ଏକବିଂଶତି ଦିବସ ଏକପାର୍ଶ୍ୱରେ ଶୟନ କରି କିଛି ନ କହି ବହିର୍ଭାଗକୁ ଯାଇଥିଲେ । ୩ । ହେ ବିପ୍ର ! ଆପଣ ଅକସ୍ମାତ୍ ଅନ୍ତର୍ହିତ ହେଲେ ପୁନଶ୍ଚ ଦର୍ଶନ ଦେଲେ ପୁନଶ୍ଚ ଏକବିଂଶତି ଦିବସ ଶୟନ କରିଥିଲେ । ୪ । ତୈଳ ଲିପ୍ତହୋଇ ଗମନ କଲେ, ମଦୀୟ ଗୃହରେ ବିବିଧ ଭୋଜନ ସାମଗ୍ରୀ ଆନୟନ କରାଇ ତାହା ସବୁ ହୁତାଶନଦ୍ୱାରା ଯାହା ଦଗ୍ଧ କରାଇଲେ । ୫ । ସହସା ରଥରେ ଆରୋହଣ ପୂର୍ବକ ନଗରରେ ଭ୍ରମଣ କଲେ ଓ ଧନ ବିତରଣ କଲେ ଏବଂ ବନ ପ୍ରଦର୍ଶନ ଓ ବିବିଧ କାଞ୍ଚନ, ପ୍ରାସାଦ, ମଣି ଓ ପ୍ରବାଳ ନିର୍ମିତ ପର୍ଯ୍ୟଙ୍କ ସମୂହର ପ୍ରଦର୍ଶନ ଓ ପୁନଶ୍ଚ ସେମାନଙ୍କ ଅଦର୍ଶନ ମଧ୍ୟ ହେଲା । ହେ ମହାମୁନେ ! ଏହି ସମସ୍ତ କାରଣ ଶୁଣିବାକୁ ଇଚ୍ଛା କରୁଅଛୁଁ । ହେ ଭୃଗୁକୂଳ ଧୁରନ୍ଧର ! ଆମ୍ଭେ ଏହି ସମସ୍ତ ବିଷୟ ଚିନ୍ତାକରି ଅତିଶୟ ମୁଗ୍ଧ ହୋଇଅଛୁଁ । ୮ । ଏହି ସମସ୍ତ ବିଷୟର କିଛି କାରଣ ନିର୍ଣ୍ଣୟ କରିପାରୁ ନାହିଁ । ଅତଏବ ହେ ତପୋଧନ ! ଏହି ସମସ୍ତ ସତ୍ୟ ବିଷୟକୁ ଆମ୍ଭେ ସମ୍ପୂର୍ଣ୍ଣରୂପେ ଶ୍ରବଣ କରିବାକୁ ଇଚ୍ଛୁକ ଅଛୁଁ । ୯ ।

ଚ୍ୟବନ କହିଲେ, ହେ ମହାରାଜ ! ଯେଉଁ କାରଣରେ ଏହି ସମସ୍ତ ବିଷୟ ହୋଇଅଛି, ତାହା ଶ୍ରବଣ କର । ଏହି ବିଷୟକୁ ଦେଖି

ନଥିଲେ କେହି କହିବାକୁ ସମର୍ଥ ହେବେନାହିଁ । ୧୦ । ପୂର୍ବକାଳରେ ଦେବଗଣଙ୍କ ସମାଗମ ସମୟରେ ପିତାମହ ଯାହା କହିଥିଲେ, ଆମ୍ଭେ ତାହା ଶ୍ରବଣ କରିଥିଲୁଁ । ହେ ରାଜନ ! ଏତେବେଳେ ଆମ୍ଭେ ତାହା କହୁଅଛୁଁ, ଶ୍ରବଣକର । ୧୧ । ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ପରସ୍ପର ବିରୋଧ ହେତୁରୁ କୁଳସଙ୍କର ହେବ । ହେ ରାଜନ୍ ! ତୁମ୍ଭର ତେଜ ଓ ବୀର୍ଯ୍ୟ ସମନ୍ୱିତ ଗୋଟିଏ ପୌତ୍ର ଜାତ ହେବେ । ୧୨ । ସେହି କାରଣରୁ ଆମ୍ଭେ ତୁମ୍ଭର ବଂଶ ବିନାଶ ନିମିତ୍ତ ତୁମ୍ଭ ନିକଟକୁ ଆଗମନ କରିଥିଲୁଁ । କୁଶିକ ବଂଶର ଉଚ୍ଛେଦ କାମନାରେ ତୁମ୍ଭବଂଶ ଦଗ୍ଧ କରିବାକୁ ଆମ୍ଭର ଇଚ୍ଛା ଥିଲା । ହେ ମହୀପତେ ! ଆମ୍ଭେ ତନ୍ନିମିତ୍ତ ତୁମ୍ଭ ଗୃହକୁ ଆଗମନ କରି, ପ୍ରଥମରେ ଏହିକଥା କହିଥିଲୁଁ ଯେ, ଆମ୍ଭେ କୌଣସି ନିୟମ ଆରମ୍ଭ କରିବୁଁ, ତୁମ୍ଭେ ଆମ୍ଭର ସେବାକର । ୧୪ । ଆମ୍ଭେ ତୁମ୍ଭ ଗୃହରେ କୌଣସି ଦୁଷ୍କର କର୍ମ କରିନାହୁଁ । ହେ ରାଜର୍ଷେ ! ସେହିକାରଣରୁ ତୁମ୍ଭେ ଜୀବନ ଧାରଣ କରି ରହିଅଛ ଓ ତୁମ୍ଭ ପ୍ରକୃତିମଧ୍ୟ କିଛି ବିକୃତି ପ୍ରାପ୍ତ ହୋଇ ନାହିଁ । ୧୫ ।

ଆମ୍ଭେ ଶୟନକଲେ କେହି ଆମ୍ଭର ଅବଶ୍ୟ ନିଦ୍ରାଭଙ୍ଗ କରିବେ, ହେ ପାର୍ଥିବ ! ଆମ୍ଭେ ବୁଦ୍ଧିରେ ଏହିକଥା ବିବେଚନା କରି ତୁମ୍ଭ ଗୃହରେ ଏକବିଂଶତି ଦିବସ ପର୍ଯ୍ୟନ୍ତ ଶୟନ କରିଥିଲୁଁ । ୧୬ । କିନ୍ତୁ ଆମ୍ଭେ ନିଦ୍ରିତ ହେବାରୁ ତୁମ୍ଭେ ଭାର୍ଯ୍ୟାଙ୍କ ସହିତ ଆମ୍ଭର ଶୁଶ୍ରୂଷା କରି ନିଦ୍ରାଭଙ୍ଗ କରିନାହଁ । ହେ ରାଜସତ୍ତମ ! ସେହି କାରଣରୁ ଆମ୍ଭେ ତେତେବେଳେ ତୁମ୍ଭଠାରେ ମନେମନେ ପ୍ରୀତ ହେଲୁଁ । ୧୭ । ଯେତେବେଳେ ଆମ୍ଭେ ଗାତ୍ରୋତ୍ଥାନ କରି ନିଷ୍କ୍ରାନ୍ତ ହୋଇଥିଲୁଁ ତେତେବେଳେ ତୁମ୍ଭେ ଯଦି ଆମ୍ଭଙ୍କୁ "କେଉଁ ସ୍ଥାନକୁ ଯିବାହେବେ" ଏହିକଥା ପ୍ରଶ୍ନ କରିଥାଆନ୍ତ, ତାହାହେଲେ, ହେ ପ୍ରଭୋ ! ଆମ୍ଭେ ତୁମ୍ଭଙ୍କୁ ଶାପ ପ୍ରଦାନ କରିଥାଆନ୍ତୁ । ୧୮ ।

ହେ ରାଜନ୍ ! ତଦନନ୍ତର ଆମ୍ଭେ ଅନ୍ତର୍ହିତ ହୋଇ ପୁନଶ୍ଚ ତୁମ୍ଭ ଗୃହରେ ଯୋଗାବଲମ୍ବନ ପୂର୍ବକ ଏକବିଂଶତି ଦିବସ ନିଦ୍ରିତ ଅବସ୍ଥାରେ ରହିଥିଲୁଁ । ୧୯ । ହେ ନରପାଳ ! ତୁମ୍ଭେ ଦୁହେଁ କ୍ଷୁଧିତହୋଇ ଅଥବା

ଶ୍ରମ ବଶରେ ଆମ୍ଭଠାରେ ଅସ୍ପୃହା ପ୍ରକାଶ କରିଥାନ୍ତ, ଏହି ବିବେଚନାରେ ଆମ୍ଭେ ତୁମ୍ଭ ଦୁହିଁଙ୍କୁ କ୍ଷୁଧା ଦ୍ୱାରା ପୀଡ଼ିତ କରାଇ ଥିଲୁଁ । ହେ ନରଶ୍ରେଷ୍ଠ ପାର୍ଥିବ ! ତୁମ୍ଭର ଓ ତୁମ୍ଭ ଭାର୍ଯ୍ୟାଙ୍କର ଅନ୍ତଃକରଣରେ ଅତିସୂକ୍ଷ୍ମ ପରମାଣରେ ମଧ୍ୟ ମନ୍ୟୁ ଜାତ ହେଲନାହିଁ । ସେହି କାରଣରୁ ଅମ୍ଭେ ତୁମ୍ଭଠାରେ ପ୍ରୀତ ଯୁକ୍ତ ହୋଇଅଛୁଁ । ୨୧ ।

ଆମ୍ଭେ ଭୋଜନ ସାମଗ୍ରୀ ସବୁ ଅଣାଇ ତେତେବେଳେ ତାହାକୁ ଯେ ଦଗ୍ଧ କରିଥିଲୁଁ, ତାହାର ତାତ୍ପର୍ଯ୍ୟ ଏହିଯେ ତୁମ୍ଭେ ଦୁହେଁ ଯଦି ମାତ୍ସର୍ଯ୍ୟବଶରୁ ଆମ୍ଭଠାରେ କ୍ରୋଧ ପ୍ରକାଶ କରିଥାଆନ୍ତ, ତେବେ ଆମ୍ଭେ ତୁମ୍ଭଙ୍କୁ ଅଭିଶାପ ଦେଇ ଥାଅନ୍ତୁ କିନ୍ତୁ ତୁମ୍ଭେ ଆମ୍ଭଙ୍କୁ ତେତେବେଳେ କ୍ଷମା କରିଥିଲ । ୨୨ ।

ହେ ନରନାଥ ! ତତ୍ପରେ ଅମ୍ଭେ ରଥରେ ଆରୋହଣ କରି ତୁମ୍ଭଙ୍କୁ କହିଲୁଁ "ତୁମ୍ଭେ ଭାର୍ଯ୍ୟାଙ୍କ ସହିତ ଆମ୍ଭଙ୍କୁ ବହନ କର", ତୁମ୍ଭେ ନିଃଶଙ୍କ ହୋଇ ତାହା କଲ । ୨୩ ।

ହେ ନରପତେ ! ଆମ୍ଭେ ସେହି କାରଣରୁ ମଧ୍ୟ ତୁମ୍ଭଠାରେ ପ୍ରୀତ ହୋଇଅଛୁଁ । ଆମ୍ଭେ ତୁମ୍ଭର ଧନ ବିତରଣ କଲେ ସୁଦ୍ଧା କ୍ରୋଧ ତୁମ୍ଭଙ୍କୁ ଆକ୍ରମଣ କରି ପାରିଲା ନାହିଁ । ୨୪ । ହେ ମନୁଜାଧିପ ! ମହାରାଜ ! ସେହି ସମସ୍ତ କାରଣରୁ ଆମ୍ଭେ ତୁମ୍ଭଠାରେ ଓ ତୁମ୍ଭ ଦେବୀଙ୍କଠାରେ ପ୍ରୀତ ହୋଇ ସେହି ବନ ସର୍ଜ୍ଜନ କରିଥିଲୁଁ । ଜାଣ ତୁମ୍ଭ ପ୍ରୀତି ନିମିତ୍ତ ଆମ୍ଭେ ତୁମ୍ଭଙ୍କୁ ସ୍ୱର୍ଗନଗର ସନ୍ଦର୍ଶନ କରାଇଲୁଁ । ହେ ନୃପତେ ! ବନମଧ୍ୟରେ ତୁମ୍ଭେ ଯେଉଁ ଦିବ୍ୟ ନିଦର୍ଶନ ଦର୍ଶନ କରିଅଛ, ତାହାଦ୍ୱାରା ପତ୍ନୀଙ୍କ ସହିତ ସଶରୀରରେ ମୁହୂର୍ତ୍ତିକ ସମୟ ତୁମ୍ଭର ସ୍ୱର୍ଗସୁଖ ଅନୁଭୂତ ହୋଇଅଛି । ୨୭ । ହେ ନରନାଥ ! ତପସ୍ୟା ଓ ଧର୍ମର ନିଦର୍ଶନାର୍ଥେ ତେତେବେଳେ ତୁମ୍ଭର ଯେଉଁ ସ୍ପୃହା ଜନ୍ମିଥିଲା, ତାହାମଧ୍ୟ ଆମ୍ଭେ ଜାଣିଅଛୁଁ । ୨୮ ।

ହେ ପୃଥିବୀପତେ ! ତେତେବେଳେ ତୁମ୍ଭେ ନରେନ୍ଦ୍ରତ୍ୱ ଓ ଦେବ-ରାଜତ୍ୱକୁ ଅବଜ୍ଞା କରି ବ୍ରାହ୍ମଣତ୍ୱ ଓ ତପସ୍ୟାକୁ ଇଚ୍ଛା କରିଥିଲ । ୨୯ ।

ହେ ତାତ ! ବ୍ରାହ୍ମଣତ୍ୱ ଅତି ଦୁର୍ଲ୍ଲଭ ଅଟେ ବୋଲି ତୁମ୍ଭେ ଯାହା କହିଥିଲ, ତାହା ଯଥାର୍ଥ । ବ୍ରାହ୍ମଣତ୍ୱ ହେଲେ ଋଷିତ୍ୱ ଅତି ଦୁର୍ଲ୍ଲଭ, ଋଷିତ୍ୱ ହେଲାରୁ ତପସ୍ୱିତ୍ୱ ମଧ୍ୟ ଅତି ଦୁର୍ଲ୍ଲଭ । ଯାହାହେଉ ତୁମ୍ଭର ଏହି କାମନା ସିଦ୍ଧ ହେବ । କୁଶିକଙ୍କଠାରୁ କୌଶିକ ଦ୍ୱିଜ ଜନ୍ମିବେ । ତୁମ୍ଭର ତୃତୀୟ ପୁରୁଷ ବ୍ରାହ୍ମଣତ୍ୱ ପ୍ରାପ୍ତ ହେବେ ।୩୧।

ହେ ନୃପବର ! ଭୃଗୁବଂଶର ତେଜରେ ତୁମ୍ଭର ବଂଶ ବର୍ଦ୍ଧିତ ହେବ । ତୁମ୍ଭର ପୌତ୍ର ବ୍ରାହ୍ମଣ, ତପସ୍ୱୀ ଓ ଅଗ୍ନି ସଦୃଶ ତେଜସ୍ୱୀ ହେବେ ।୩୨। ସେ ଲୋକତ୍ରୟମଧ୍ୟରେ ସର୍ବଦା ଦେବତା ଓ ମନୁଷ୍ୟଗଣଙ୍କର ଭୟ ଉତ୍ପାଦନ କରିବେ । ଆମ୍ଭେ ତୁମ୍ଭକୁ ଏହିକଥା ସତ୍ୟ କହୁଅଛୁଁ । ହେ ରାଜର୍ଷେ ! ତମ୍ଭ ଅନ୍ତଃକରଣରେ ଯେଉଁ ଅଭିଳାଷ ଅଛି, ସେହି ବର ପ୍ରାର୍ଥନା କର ଆମ୍ଭେ ତୀର୍ଥ ଯାତ୍ରାକୁ ଗମନ କରିବୁ, କାଳ ଅତୀତ ହେଉଅଛି । ୩୪

କୁଶିକ କହିଲେ ହେ ମହାମୁନେ ! ଆପଣ ଆମ୍ଭଠାରେ ଯାହା ପ୍ରୀତ ହୋଇ ଅଛନ୍ତି, ଏହି ଆମ୍ଭର ବର । ହେ ଅନଘ ! ଆପଣ ଯେଉଁ ପ୍ରକାର କହୁଅଛନ୍ତି ଆମ୍ଭ ପୌତ୍ର ସେହିପରି ହେଉନ୍ତୁ । ହେ ଭଗବନ୍ ! ଆମ୍ଭ ବଂଶର ବ୍ରାହ୍ମଣ୍ୟ ହେଉ । ପୁନଶ୍ଚ ଆମ୍ଭର ଆଉ ଗୋଟିଏ ବର ଏହି ଯେ ଆପଣ ଉକ୍ତ ବିଷୟକୁ ବିସ୍ତାରିତ ରୂପେ ବର୍ଣ୍ଣନ କରନ୍ତୁ । ଆମ୍ଭର ତାହା ଶ୍ରବଣ କରିବାକୁ ଅଭିଳାଷ ଜନ୍ମିଅଛି । ହେ ଭୃଗୁନନ୍ଦନ ! ଆମ୍ଭ କୁଳ କେଉଁପରି ବିପ୍ରତ୍ୱକୁ ପ୍ରାପ୍ତହେବ ? ଏବଂ କିଏ ଆମ୍ଭର ସମ୍ମାନଦାତା ବନ୍ଧୁ ହେବ ? । ୩୭ ।



# ଅଧ୍ୟାୟ—୫୭

ଚ୍ୟବନ କହିଲେ, ହେ ମନୁଜାଧିପ ! ଆମ୍ଭେ ଯେଉଁ ନିମିତ୍ତ ତୁମ୍ଭର ଉଚ୍ଛେଦ ସାଧିବାକୁ ଆସିଥିଲୁଁ, ତାହା ତୁମ୍ଭଙ୍କୁ କହିବାର ଆମ୍ଭର ଅବଶ୍ୟ କର୍ତ୍ତବ୍ୟ । ୧ । ହେ ଜନାଧିପ ! କ୍ଷତ୍ରିୟଗଣ ଭୃଗୁ ବଂଶୀୟମାନଙ୍କର ଯାଜ୍ୟ, ଅର୍ଥାତ ଯଜମାନ ବୋଲି ଚିରକାଳରୁ ଏହା ନିୟତ ହୋଇଅଛି, ପ୍ରସିଦ୍ଧ ଦୈବ ଅଲୌକିକ କାରଣ ବଶରୁ ସେମାନେ ବିଭିନ୍ନ ହେବେ ।୨।

ହେ ନରାଧିପ ! କ୍ଷତ୍ରିୟଗଣ ଦୈବଦଣ୍ଡଦ୍ୱାରା ନିପୀଡ଼ିତ ହୋଇ ଗର୍ଭାବଧି ଛେଦନ କରି ସମସ୍ତ ଭୃଗୁବଂଶୀୟମାନଙ୍କୁ ବଧ କରିବେ । ୩ । ତଦନନ୍ତର ଆମ୍ଭମାନଙ୍କ କୁଳରେ ଗୋଟିଏ ବିବର୍ଦ୍ଧନକାରୀ ଜ୍ୱଳନ ଓ ଭାସ୍କର ସଦୃଶ ଦ୍ୟୁତିଶାଳୀ ଉର୍ବ ନାମକ ମହାତେଜା ପୁରୁଷ ଉତ୍ପନ୍ନ ହେବେ । ୪ । ସେ ତ୍ରୈଲୋକ୍ୟ ବିନାଶ ନିମିତ୍ତ କୋପାଗ୍ନି ଜନ୍ମ କରିବେ । ପର୍ବତ ଓ ବନ ସହିତ ମହୀମଣ୍ଡଳକୁ ଭସ୍ମସାତ୍ କରିବେ । ୫ । ସେହି ମୁନିସତ୍ତମ କିଞ୍ଚିତ୍କାଳ ନିମିତ୍ତ ସେହି କୋପାଗ୍ନିକୁ ସମୁଦ୍ର ମଧ୍ୟରେ ବଡବା ମୁଖରେ ନିକ୍ଷେପ ପୂର୍ବକ ଶାନ୍ତ କରିବେ । ୬ ।

ହେ ଅନଘ ମହାରାଜ ! ତାହାଙ୍କ ପୁତ୍ର ଅର୍ଥାତ୍ ଉର୍ବଙ୍କର ପୁତ୍ର ଭୃଗୁନନ୍ଦନ ଋଚିକଙ୍କ ନିକଟରେ ସାକ୍ଷାତ୍ ସମସ୍ତ ଧନୁର୍ବେଦ ଉପସ୍ଥିତ ହେବେ ଅର୍ଥାତ୍ ସେ ସମସ୍ତ ଧନୁର୍ବେଦ ଶିକ୍ଷା କରିବେ ? ସେ ଦୈବ କାରଣ ବଶରୁ କ୍ଷତ୍ରିୟମାନଙ୍କ ଅଭାବ ନିମିତ୍ତ ସେହି ଧନୁର୍ବେଦକୁ ପ୍ରତିଗ୍ରହ କରିବା ମାନସେ ବିଶୁଦ୍ଧଚିତ୍ତ ମହାତ୍ମା ନିଜ ପୁତ୍ର ଯମଦଗ୍ନିଙ୍କଠାରେ ତପସ୍ୟାଦ୍ୱାରା ତାହା ସଂକ୍ରମିତ କରିବେ । ସେହି ଭୃଗୁଶ୍ରେଷ୍ଠ ଜମଦଗ୍ନି ସେହି ଧନୁର୍ବେଦକୁ ଧାରଣ କରିବେ ।୯।

ହେ ଧର୍ମାତ୍ମନ୍ ! ସେହି ଯମଦଗ୍ନି ତୁମ୍ଭ ବଂଶରୁ କନ୍ୟା ଗ୍ରହଣପୂର୍ବକ ଭବଦୀୟ ବଂଶର ଉଦ୍‌ବର୍ଦ୍ଧନ ନିମିତ୍ତ ତାହାଙ୍କୁ ପରିଣୟ କରିବେ । ୧୦ । ମହାତପା ଜମଦଗ୍ନି ତୁମ୍ଭ ପୌତ୍ରୀ ଗାଧିଙ୍କ ଦୁହିତାଙ୍କୁ ଲାଭକରି ତାହାଙ୍କ ଗର୍ଭରେ କ୍ଷତ୍ରିୟ ଧର୍ମଯୁକ୍ତ ବ୍ରାହ୍ମଣଶ୍ରେଷ୍ଠ ଉତ୍ପାଦନ କରିବେ । ୧୧ ।

ଏବଂ ସେହି ମହାଦ୍ୟୁତି ତୁମ୍ଭ ବଂଶରେ ଗାଧିଙ୍କ ଔରସରେ ତେଜରେ ବୃହସ୍ପତି ସଦୃଶ ଅତିଶୟ ଧାର୍ମିକ ମହାତପସ୍ୟାଶାଳୀ ବିପ୍ରକର୍ମା କ୍ଷତ୍ରିୟ ବିଶ୍ୱାମିତ୍ର ନାମକ ପୁତ୍ର ପ୍ରଦାନ କରିବେ । ସେହି ପରିବର୍ତ୍ତନ ବିଷୟରେ ସ୍ତ୍ରୀ ଯୁଗଳ କାରଣ ହେବେ । ପିତାମହଙ୍କ ନିୟୋଗ ବଶରୁ ଏହା ଅନ୍ୟଥା ହେବନାହିଁ । ତୁମ୍ଭ ବଂଶର ତୃତୀୟ ପୁରୁଷରେ ବ୍ରାହ୍ମଣତ୍ୱ ହେବ । ତୁମ୍ଭେ ଶୁଦ୍ଧଚିତ୍ତ ଭୃଗୁବଂଶୀୟମାନଙ୍କର ସମ୍ବନ୍ଧୀ ହେବ ।୧୪।

ଭୀଷ୍ମ କହିଲେ, ହେ ନରଶ୍ରେଷ୍ଠ ! ତେତେବେଳେ ଧର୍ମାତ୍ମା କୁଶିକ ନୃପତି ମହାନୁଭବ ଚ୍ୟବନ ମୁନିଙ୍କ ବାକ୍ୟ ଶ୍ରବଣ ପୂର୍ବକ ହୃଷ୍ଟଚିତ୍ତ ହେଲେ ଏବଂ "ଏହିପରି ହେଉ" ଏହି କଥା କହିଲେ । ୧୬ । ମହାତେଜା ଚ୍ୟବନ ପୁନଶ୍ଚ ସେହି ନୃପତିଙ୍କୁ ବର ପ୍ରାର୍ଥନା କରିବା ନିମିତ୍ତ କହିଲେ । ନୃପତି ତାହାଙ୍କୁ କହିଲେ, (୧୭) ହେ ମହାମୁନେ ! ଆମ୍ଭେ ଆପଣଙ୍କ ନିକଟରୁ ଇଚ୍ଛାନୁସାରେ ବର ପ୍ରାର୍ଥନା କରୁଅଛୁଁ ଯେ ଆମ୍ଭ ବଂଶ ବ୍ରାହ୍ମଣ କୁଳରେ ପରିଣତ ହେଉ ଏବଂ ଏହି ବଂଶର ଧର୍ମ ବିଷୟରେ ମତି ରହୁ । ୧୮ ।

ନରପତି ଏହିପରି କହିବାରୁ ଚ୍ୟବନମୁନି "ତାହା ହେବ" ଏହି ପ୍ରତ୍ୟୁତ୍ତର ପ୍ରଦାନ କରି ତତ୍କାଳରେ ନୃପତିଙ୍କ ଅନୁମତି ଗ୍ରହଣ ପୂର୍ବକ ତୀର୍ଥଯାତ୍ରା ନିମିତ୍ତ ଗମନ କଲେ । ୧୯ । ହେ ମହାରାଜ ! ସମସ୍ତ ଭୃଗୁ ଓ କୁଶିକଗଣଙ୍କର ଏହି ପରସ୍ପର ସମ୍ବନ୍ଧର କାରଣ ତୁମ୍ଭଙ୍କୁ ବିସ୍ତାର ରୂପେ କହିଲୁଁ । ୨୦ । ହେ ନୃପ ! ଚ୍ୟବନ ଋଷି ତେତେବେଳେ ପରଶୁରାମ ଓ ବିଶ୍ୱାମିତ୍ର ମୁନିଙ୍କ ଜନ୍ମ ବିଷୟ ଯେଉଁ ପ୍ରକାର କହିଥିଲେ, ସେ ସେହିପରି ହୋଇଥିଲା । ୨୧ ।

•



# ଅଧ୍ୟାୟ—୫୨

ଯୁଧିଷ୍ଠିର କହିଲେ, ହେ ଭରତ ପିତାମହ ! ଆମ୍ଭେ ଆପଣଙ୍କର କଥା ଶ୍ରବଣ ପୂର୍ବକ ପୁନଃପୁନଃ ତାହା ଚନ୍ତାକରି ଏବଂ ଶ୍ରୀମାନ୍ ପାର୍ଥିବ ସମୂହରେ ହୀନା ଏହି ପୃଥିବୀର ଅବସ୍ଥା ପର୍ଯ୍ୟାଲୋଚନା କରି ଅତିଶୟ ମୁଗ୍ଧ ହେଉଅଛୁଁ । ହେ ଭରତ ! ଆମ୍ଭେ ମହୀମଣ୍ଡଳ ଜୟପୂର୍ବକ ଶତ ଶତ ରାଜ୍ୟ ପ୍ରାପ୍ତହୋଇ କୋଟି କୋଟି ପୁରୁଷଙ୍କର ପ୍ରାଣ ସଂହାର କରି ଏତେବେଳେ ଅନୁତାପ କରୁଅଛୁଁ । ୨ ।

ଯେଉଁ ସବୁ ବରବର୍ଣ୍ଣିନୀ ରମଣୀଗଣ ପତି, ପୁତ୍ର, ଭ୍ରାତା ଓ ମାତୁଳ ପ୍ରଭୃତିରେ ହୀନା ହୋଇଅଛନ୍ତି, ସେମାନଙ୍କର କି ଅବସ୍ଥା ହେବ ? ୩ । ଆମ୍ଭେମାନେ ସେହି କୁରୁକୁଳ, ଜ୍ଞାତି ସମୂହ ଏବଂ ସହୃଦ୍‌ଗଣଙ୍କୁ ନିହତକରି ଅବାକ୍ ଶିର ଅର୍ଥାତ୍ ଅଧଃଶିର ହୋଇ ନରକରେ ନିପତିତ ହେବୁଁ, ଏ ବିଷୟରେ ସଂଶୟ ନାହିଁ । ୪ । ହେ ଭରତ ! ଆମ୍ଭେ ଉଗ୍ରତର ତପସ୍ୟାଦ୍ୱାରା ଶରୀରକୁ ସଂଯୁକ୍ତ କରିବାକୁ ଇଚ୍ଛୁକ ଅଛୁଁ । ହେ ବିଶାଂପତେ ! ଏତେବେଳେ ଆମ୍ଭେ ଆପଣଙ୍କର ଯଥାର୍ଥ ଉପଦେଶ ଶ୍ରବଣ କରିବାକୁ ଅଭିଳାଷୀ ହୋଇଅଛୁଁ । ୫ । ବୈଶମ୍ପାୟନ କହିଲେ, ହେ ଜନମେଜୟ ! ମହାମନା ଭୀଷ୍ମ ଯୁଧିଷ୍ଠିରଙ୍କର ସେହିକଥା ଶ୍ରବଣକରି ବୁଦ୍ଧିଦ୍ୱାରା ନିପୁଣ ଭାବରେ ବିବେଚନା କରି ତାହାଙ୍କୁ କହିଲେ (୬) ହେ ନରନାଥ ! ନର ପରଲୋକରେ ଯେଉଁ କର୍ମଦ୍ୱାରା ଯେଉଁ ଗତି ପ୍ରାପ୍ତ ହୁଅନ୍ତି, ସେହି ଅଦ୍ଭୁତ ରହସ୍ୟ ବିଷୟ ଆମ୍ଭେ ତୁମ୍ଭଙ୍କୁ କହିବା, ଶ୍ରବଣ କର । ୭ ।

ହେ ବିଭୋ ! ତପସ୍ୟାଦ୍ୱାରା ସ୍ୱର୍ଗ ଲଭ ହୁଏ, ତପସ୍ୟାଦ୍ୱାରା ଯଶ ଲଭ ହୁଏ ଏବଂ ତପସ୍ୟାଦ୍ୱାରା ଦୀର୍ଘାୟୁ ଓ ଭୋଗସମୂହ ଲବ୍ଧ ହୁଏ । ୮ । ହେ ଭରତଶ୍ରେଷ୍ଠ ନରବର ! ତପସ୍ୟାଦ୍ୱାରା ଜ୍ଞାନ, ବିଜ୍ଞାନ, ଆରୋଗ୍ୟ, ରୂପ, ସମ୍ପଦ ଓ ସୌଭାଗ୍ୟ ପ୍ରାପ୍ତ ହୁଅନ୍ତି । ୯ । ମନୁଷ୍ୟ ତପସ୍ୟାଦ୍ୱାରା ଧନପ୍ରାପ୍ତ ହୁଅନ୍ତି, ମୌନଦ୍ୱାରା ଜଗଜ୍ଜନଙ୍କୁ ଆଜ୍ଞା ପ୍ରଦାନ କରନ୍ତି,

ଦାନଦ୍ୱାରା ଭୋଗସମୂହ ଏବଂ ବ୍ରହ୍ମଚର୍ଯ୍ୟଦ୍ୱାରା ସୁଦୀର୍ଘ ପରମାୟୁ ପ୍ରାପ୍ତ ହୁଅନ୍ତି । ୧୦ ।

ଅହିଂସାର ଫଳରୂପ ଦୀକ୍ଷାର ଫଳ ସତ୍କୁଳରେ ଜନ୍ମ, ଫଳ ମୂଳଭୋଜୀ ନରଗଣଙ୍କର ଫଳରାଜ୍ୟ ଓ ପର୍ଣ୍ଣାଶୀ ବ୍ୟକ୍ତିଗଣଙ୍କର ଫଳ ସ୍ୱର୍ଗଲାଭ ହୁଏ । ୧୧ । ଯେ ଜଳ ଭକ୍ଷଣ କରନ୍ତି ତାହାଙ୍କର ସ୍ୱର୍ଗଲାଭ ହୁଏ, ନର ଦାନଦ୍ୱାରା ସମଧିକ ଦ୍ରବିଣ ଅର୍ଥାତ୍ ଅଧିକ ଧନୀ ହୁଅନ୍ତି । ଗୁରୁ ସେବାଦ୍ୱାରା ବିଦ୍ୟା ଏବଂ ନିତ୍ୟ ଶ୍ରାଦ୍ଧକଲେ ସନ୍ତତି ଲାଭ ହୁଏ । ୧୨ । ଶାକ ଭକ୍ଷଣଦ୍ୱାରା ନର ଗୋଧନଶାଳୀ ହୁଅନ୍ତି, ତୃଣଭକ୍ଷକମାନଙ୍କର ସ୍ୱର୍ଗଲାଭ ହୁଏ ବୋଲି ଋଷିଗଣ କହନ୍ତି । ଯେଉଁ ବ୍ୟକ୍ତି ତ୍ରିକାଳରେ ତିନବାର ସ୍ନାନକରି ବାୟୁପାନ ଅର୍ଥାତ୍ ପ୍ରାଣାୟାମ କରନ୍ତି, ସେ ପ୍ରଜାପତି ଲୋକକୁ ଗମନ କରନ୍ତି । ୧୩ ।

ଯେଉଁ ବ୍ରାହ୍ମଣ ନିତ୍ୟସ୍ନାୟୀ ହୋଇ ପ୍ରାତଃ ସନ୍ଧ୍ୟା ଓ ସାୟଂ ସନ୍ଧ୍ୟା ସମୟରେ ଜପ କରନ୍ତି, ସେ ଦକ୍ଷପ୍ରଜାପତି ହୁଅନ୍ତି । ଯେଉଁମାନେ ମରୁ-ଭୂମିରେ ଦେବଗଣଙ୍କର ସାଧନା ଅନଶନ ବ୍ରତରେ କରନ୍ତି, ସେମାନଙ୍କର ସ୍ୱର୍ଗ ଲାଭ ହୁଏ । ୧୪ । ଯେଉଁମାନେ ସ୍ଥଣ୍ଡିଳରେ ଶୟନକରି ବ୍ରତାଚରଣ କରନ୍ତି, ସେମାନଙ୍କର ଗୃହ ଓ ଶଯ୍ୟା ସମୂହ ଲାଭହୁଏ । ଯେଉଁମାନେ ଚୀର ଓ ବଲ୍କଳ ପରିଧାନ କରନ୍ତି, ସେମାନେ ବସ୍ତ୍ର ଓ ଆଭରଣ ସମୂହ ପ୍ରାପ୍ତ ହୁଅନ୍ତି । ୧୫ । ଯେଉଁ ବ୍ୟକ୍ତିଗଣ ଯୋଗ ଓ ତପୋନୁଷ୍ଠାନ କରନ୍ତି, ସେମାନଙ୍କ ନିକଟରେ ଶଯ୍ୟା, ଆସନ ଓ ଯାନ ସମୂହ ଉପନୀତ ହୁଏ । ଯେଉଁମାନେ ଅଗ୍ନିରେ ପ୍ରବେଶ କରନ୍ତି, ସେମାନେ ନିଃସନ୍ଦେହ ବ୍ରହ୍ମଲୋକରେ ପୂଜିତ ହୁଅନ୍ତି । ୧୬ । ଇହଲୋକରେ ରସ ପରିତ୍ୟାଗ ହେତୁରୁ ନର ସୌଭାଗ୍ୟ ପ୍ରାପ୍ତ ହୁଅନ୍ତି । ଆମିଷ ପରିତ୍ୟାଗ କଲେ ପୁତ୍ରଗଣ ଦୀର୍ଘାୟୁ ହୁଅନ୍ତି । ୧୭ । ଯେ ଜଳମଧ୍ୟରେ ବାସ କରନ୍ତି, ସେ ସ୍ୱର୍ଗାଧିପତି ହୁଅନ୍ତି । ସତ୍ୟବାଦୀ ନରଶ୍ରେଷ୍ଠ ଦେବଗଣଙ୍କ ସହିତ ପ୍ରମୋଦିତ ହୁଅନ୍ତି । ୧୮ । ଦାନଦ୍ୱାରା କୀର୍ତ୍ତି, ଅହିଂସାଦ୍ୱାରା ଆରୋଗ୍ୟ, ଦ୍ୱିଜ ଶୁଶ୍ରୂଷାଦ୍ୱାରା ପ୍ରଭୂତରାଜ୍ୟ ଓ ଦ୍ୱିଜତ୍ୱ ପ୍ରାପ୍ତ ହୁଏ । ୧୯ ।

ପାଦ୍ୟପାତ୍ର ପ୍ରଦାନ ଦ୍ୱାରା ଶାଶ୍ୱତ କୀର୍ତ୍ତି ଲାଭହୁଏ, ଅନ୍ନଦାନଦ୍ୱାରା ବିବିଧ ଭୋଗଜନିତ ତୃପ୍ତି ଲାଭ ହୁଏ । ୨୦ । ଯେଉଁ ବ୍ୟକ୍ତି ସମସ୍ତପ୍ରାଣି-ମାନଙ୍କୁ ସାନ୍ତ୍ୱ ବାକ୍ୟ କହନ୍ତି, ସେ ସମସ୍ତ ଶୋକରୁ ବିମୁକ୍ତ ହୁଅନ୍ତି । ନର ଦେବାରାଧନାଦ୍ୱାରା ରାଜ୍ୟ ଓ ଦିବ୍ୟରୂପ ପ୍ରାପ୍ତ ହୁଅନ୍ତି । ୨୧ । ମନୁଷ୍ୟ ଘୃତପ୍ରଦୀପ ଆଲୋକ ପ୍ରଦାନ ଦ୍ୱାରା ଚକ୍ଷୁଷ୍ମାନ୍ ହୁଅନ୍ତି । ପ୍ରେକ୍ଷଣୀୟ ଅର୍ଥାତ୍ ରମଣୀୟ ବସ୍ତୁ ପ୍ରଦାନକଲେ ସ୍ମରଣଶକ୍ତି ଓ ମେଧା ପ୍ରାପ୍ତ ହୁଅନ୍ତି ।୨୨। ଗନ୍ଧମାଲ୍ୟ ପ୍ରଦାନ ଦ୍ୱାରା ପ୍ରଭୂତକୀର୍ତ୍ତି ହୁଏ । କେଶଶ୍ମଶ୍ରୁଧାରୀ ମାନବଗଣଙ୍କର ଉତ୍କୃଷ୍ଟ ସନ୍ତତି ହୁଅନ୍ତି । ୨୩ । ହେ ରାଜନ୍ ! ଯେଉଁମାନେ ଦ୍ୱାଦଶବର୍ଷ ମହାଭୋଗ ପରିତ୍ୟାଗ, ଜପାଦି ନିୟମାନୁଷ୍ଠାନ ଓ ତ୍ରିକାଳ ସ୍ନାନ କରନ୍ତି, ସେମାନେ ପରଲୋକରେ ବୀରସ୍ଥାନ ଅପେକ୍ଷା ଉତ୍କୃଷ୍ଟସ୍ଥାନ ଲାଭ କରନ୍ତି । ୨୪ ।

ହେ ନରବର ! ବ୍ରାହ୍ମବିଧି ଅନୁସାରେ କନ୍ୟା ଦାନକଲେ ନର ଦାସ, ଦାସୀ, ଅଳଙ୍କାର, କ୍ଷେତ୍ର ଓ ଗୃହସମୂହ ପ୍ରାପ୍ତ ହୁଅନ୍ତି । ୨୫ । ହେ ଭାରତ ! ମନୁଷ୍ୟ ଯଜ୍ଞ ଓ ଉପବାସ ଦ୍ୱାରା ସ୍ୱର୍ଗଲୋକକୁ ଗମନ କରନ୍ତି; ଫଳ ପୁଷ୍ପ ପ୍ରଭୃତିର ଦାନଦ୍ୱାରା ପରମେଶ୍ୱରଙ୍କର ଆରାଧନା କଲେ ସଂସାରବନ୍ଧ ବିଚ୍ଛେଦର ହେତୁଭୂତ ମଙ୍ଗଳମୟ ଜ୍ଞାନ ପ୍ରାପ୍ତ ହୁଅନ୍ତି । । ୨୬ । ସୁବର୍ଣ୍ଣଶୃଙ୍ଗଦ୍ୱାରା ସୁଶୋଭିତ ସହସ୍ର ଗୋ ପ୍ରଦାନ ହେତୁରୁ ମନୁଷ୍ୟ ସ୍ୱର୍ଗ ମଧ୍ୟରେ ପବିତ୍ର ଦେବଲୋକକୁ ପ୍ରାପ୍ତ ହୁଅନ୍ତି । ସ୍ୱର୍ଗବାସୀ ସୁରଗଣ ଏହିପରି କହନ୍ତି ଯେ, ଯେଉଁ ବ୍ୟକ୍ତି କାଂସ୍ୟମୟ ଦୋହନ ପାତ୍ର ସହିତ କନକ ଶୃଙ୍ଗଶୋଭିତ ଶୃଙ୍ଗ ଶାଳିନୀ ସବତ୍ସା କପିଳାଧେନୁ ପ୍ରଦାନ କରନ୍ତି, ସେହି ଧେନୁ ତତ୍ତଦ୍‌ଗୁଣଦ୍ୱାରା ସେହି ପ୍ରଦାତାଙ୍କ ନିକଟରେ ସ୍ୱୟଂ କାମ ପ୍ରସବିନୀ ହୁଅନ୍ତି । ୨୮ ।

ଧେନୁର ଗାତ୍ରରେ ଯାବତ୍ ପରିମାଣରେ ରୋମଥାଏ, ଗୋ ପ୍ରଦାତା ତାବତ୍ ପରିମାଣ ଫଳ ପ୍ରାପ୍ତହୋଇ ପୁତ୍ରପୌତ୍ରାଦି ଲାଭକରି ପରଲୋକରେ ସପ୍ତମ ପୁରୁଷ ପର୍ଯ୍ୟନ୍ତ କୁଳ ଉଦ୍ଧାର କରନ୍ତି । ୨୯ । ଯେଉଁ ବ୍ୟକ୍ତି କାଂସ୍ୟମୟ ଦୋହନ ପାତ୍ର ସହିତ ସୁବର୍ଣ୍ଣଦ୍ୱାରା ରୁଚିରଶୃଙ୍ଗଶାଳିନୀ ଦ୍ରବିଣ ଅର୍ଥାତ୍ ବହୁମୂଲ୍ୟ ଉତ୍ତରୀୟ ଯୁକ୍ତା ସଦକ୍ଷିଣା

ଧେନୁ ଓ ତିଳ ବ୍ରାହ୍ମଣଙ୍କୁ ପ୍ରଦାନ କରନ୍ତି, ତାହାଙ୍କ ନିମିତ୍ତ ବସୁଗଣଙ୍କ ଲୋକ ସମୃଦ୍ଧ ସୁଲଭ ହୁଏ । ୩୦ ।

ଗୋଦାନ ମହାର୍ଣ୍ଣବରେ ପ୍ରବଳ ବାୟୁ ଚାଳିତ ତରଣୀ ସଦୃଶ ସ୍ୱୀୟ କର୍ମଦ୍ୱାରା ସମ୍ୟକ୍‌ରୂପେ ନିରୁଦ୍ଧ ହୋଇ ଘୋରତର ଅନ୍ଧକାର ଯୁକ୍ତ ନରକରେ ନିପତିତ ମନୁଷ୍ୟଙ୍କୁ ପରଲୋକରେ ପରିତ୍ରାଣ କରେ । ୩୧ । ଯେ ବ୍ରାହ୍ମ ବିବାହ ବିଧି ଅନୁସାରେ କନ୍ୟାଦାନ କରନ୍ତି, ଯେ ବ୍ରାହ୍ମଣଙ୍କୁ ଭୂମିପ୍ରଦାନ କରନ୍ତି ଏବଂ ଯେ ବିଧି ଅନୁସାରେ ଅନ୍ନ ଦାନ କରନ୍ତି, ସେ ପୁରନ୍ଦରଲୋକ ପ୍ରାପ୍ତ ହୁଅନ୍ତି । ଯେଉଁ ନର ସ୍ୱାଧ୍ୟାୟ ସମ୍ପନ୍ନ ଓ ସଦ୍‌ଗୁଣଯୁକ୍ତ ବ୍ରାହ୍ମଣଙ୍କୁ ସର୍ବଗୁଣୋପପନ୍ନ ଗୃହୋପକରଣ ଶଯ୍ୟା ପ୍ରଭୃତି ପ୍ରଦାନ କରନ୍ତି, ତାହାଙ୍କର ଉତ୍ତରକୁରୁ ଦେଶରେ ବସତି ହୁଏ । । ୩୩ । ଭାରବାହକ ଗୋଦାନ କଲେ, ମନୁଷ୍ୟ ବସୁଲୋକରେ ବାସ କରନ୍ତି । ହିରଣ୍ୟଦାନ କଲେ ସ୍ୱର୍ଗ, ବିଶୁଦ୍ଧ-ହିରଣ୍ୟ ଦାନକଲେ ସ୍ୱର୍ଗ ଅପେକ୍ଷା ଉତ୍କୃଷ୍ଟ ସ୍ଥାନ ପ୍ରାପ୍ତ ହୁଅନ୍ତି । ୩୪ ।

ଚ୍ଛତ୍ର ପ୍ରଦାନଦ୍ୱାରା ମନୁଷ୍ୟ ଉତ୍କୃଷ୍ଟ ଗୃହ ଓ ଉତ୍କୃଷ୍ଟଯାନ ପ୍ରାପ୍ତ ହୁଅନ୍ତି । ଉପାନତ୍‌ଦାନ ଏବଂ ବସ୍ତ୍ର ପ୍ରଦାନ ଦ୍ୱାରା ମନୁଷ୍ୟ ସୁନ୍ଦରରୂପ ପ୍ରାପ୍ତ ହୁଅନ୍ତି ଏବଂ ଗନ୍ଧ ପ୍ରଦାନ କଲେ ସୁରଭିଯୁକ୍ତ ହୁଅନ୍ତି । ୩୫ । ଯେଉଁ ନର ବ୍ରାହ୍ମଣଙ୍କୁ ପୁଷ୍ପିତ ଅଥବା ଫଳ ପରିପୂର୍ଣ୍ଣ ବୃକ୍ଷ ପ୍ରଦାନ କରନ୍ତି, ସେ ପରଜନ୍ମରେ ବିନାଯତ୍ନରେ ଉତ୍ତମ ସ୍ତ୍ରୀ ଓ ନାନାବିଧ ରତ୍ନ ବିଭୂଷିତ ଗୃହ ଲାଭ କରନ୍ତି । ୩୬ । ଯେଉଁ ବ୍ୟକ୍ତି ଭକ୍ଷ୍ୟ, ଭୋଜ୍ୟ, ଅନ୍ନ, ରସ ପ୍ରଦାନ କରନ୍ତି, ସେ ଯଥେଷ୍ଟ ରସ ସମୃଦ୍ଧ ଲାଭ କରନ୍ତି ଏବଂ ଯେ ଆଶ୍ରୟ ଓ ଆଚ୍ଛାଦନ ଦାନ କରନ୍ତି, ସେ ସେହି ସମସ୍ତ ଉତ୍କୃଷ୍ଟ ବିଷୟ ପ୍ରାପ୍ତ ହୁଅନ୍ତି, ଏହି ବିଷୟରେ ସଂଶୟ ନାହିଁ । ୩୭ ।

ହେ ନରନାଥ ! ଯେଉଁ ମନୁଷ୍ୟ ବ୍ରାହ୍ମଣମାନଙ୍କୁ ମାଲ୍ୟ, ଧୂପ, ଗନ୍ଧ, ଅନୁଲେପନ ଓ ସ୍ନାନୀୟ ଦ୍ରବ୍ୟ ଦାନ କରନ୍ତି, ସେ ଇହଲୋକରେ ପରମ ସୌନ୍ଦର୍ଯ୍ୟ ଲାଭକରି ରୋଗଶୂନ୍ୟ ହୁଅନ୍ତି । ୩୮ । ହେ ରାଜନ୍ ! ଯେଉଁ ମନୁଷ୍ୟ ବ୍ରାହ୍ମଣଙ୍କୁ ଖାଦ୍ୟରାଶି ପରିପୂର୍ଣ୍ଣ ଶଯ୍ୟାଯୁକ୍ତ ଗୃହ ଦାନକରନ୍ତି, ସେ

ବହୁବିଧ ରତ୍ନପୂର୍ଣ୍ଣ ପବିତ୍ର ଓ ମନୋହର ଉତ୍କୃଷ୍ଟ ଅଧିଷ୍ଠାନ ପ୍ରାପ୍ତ ହୁଅନ୍ତି । ୩୯ । ଯେ ଦ୍ୱିଜମାନଙ୍କୁ ବିଚିତ୍ର ଆସ୍ତରଣ ଓ ଉପଧାନ ସମନ୍ୱିତ ସୁଗନ୍ଧ ଶଯ୍ୟା ଦାନ କରନ୍ତି, ସେହି ନର ବିନା ଯତ୍ନରେ ରୂପବତୀ ମନୋହାରିଣୀ ଉତ୍କୃଷ୍ଟ କୁଳଜାତା ପତ୍ନୀ ଲାଭ କରନ୍ତି । ୪୦ ।

ଯେଉଁ ମନୁଷ୍ୟ ବୀର ଶଯ୍ୟାରେ ଶୟନ କରନ୍ତି, ସେ ଅଧିକ ଶ୍ରେଷ୍ଠ ପିତାମହଙ୍କ ସଦୃଶ ଅଧିକ ଶ୍ରେଷ୍ଠ ହୁଅନ୍ତି । ଏହି କଥା ମହର୍ଷିଗଣ କହନ୍ତି । ୪୧ । ବୈଶମ୍ପାୟନ କହିଲେ, ହେ ଜନମେଜୟ ! କୁରୁନନ୍ଦନ ଯୁଧିଷ୍ଠିର ଭୀଷ୍ମଙ୍କର ଯେହି ବଚନ ସବୁ ଶ୍ରବଣ କରି ପ୍ରୀତମନା-ହୋଇ ବୀରମାର୍ଗ ଆକାଂକ୍ଷା ବଶତଃ ଆଶ୍ରମରେ ବାସକରିବାକୁ ଅଭିଳାଷୀ ହେଲେ ନାହିଁ । ତଦନନ୍ତର ପୁରୁଷପ୍ରବର ପ୍ରଜାପତି ଯୁଧିଷ୍ଠିର ପାଣ୍ଡବଗଣଙ୍କୁ କହିଲେ, ପିତାମହ ଯେଉଁ କଥା କହିଲେ, ତହିଁରେ ତୁମ୍ଭମାନଙ୍କର ରୁଚି ହେଉ । ତେତେବେଳେ ପାଣ୍ଡବଗଣ ଓ ଯଶସ୍ୱିନୀ ଦ୍ରୌପଦୀ ଯୁଧିଷ୍ଠିରଙ୍କ ବାକ୍ୟ ସ୍ୱୀକାର କରି ତାହାଙ୍କୁ ସମ୍ମାନନା କଲେ ।



## ଅଧ୍ୟାୟ--୫୮

ଯୁଧିଷ୍ଠିର କହିଲେ, ହେ କୁରୁପୁଙ୍ଗବ ! ଭରତ ପ୍ରବର ! ଆରାମ ଓ ତଡ଼ାଗ ସମୂହର ଦାନ ହେତୁରୁ ଯେଉଁ ଫଳ ହୁଏ, ସଂପ୍ରତି ଆପଣଙ୍କ ନିକଟରୁ ତାହା ଶୁଣିବାକୁ ଇଚ୍ଛା କରୁଅଛୁଁ । ୧ ।

ଭୀଷ୍ମ କହିଲେ, ହେ ରାଜନ୍ ଇହଲୋକରେ ବିଚିତ୍ର ଧାତୁ ବିଭୂଷିତା ସର୍ବଭୂତ ସମନ୍ୱିତା ନୟନାହ୍ଲାଦକାରିଣୀ ବହୁଶସ୍ୟୋତ୍ପାଦିକା ଭୂମିକୁ ଶ୍ରେଷ୍ଠ ବୋଲି କହନ୍ତି । ୨ । ତାଦୃଶ ଭୂମିର କ୍ଷେତ୍ର ବିଶେଷ ଆରାମ ଓ ତଡ଼ାଗ ପ୍ରଭୃତି ସମୁଦାୟ ଜଳାଶୟ ବିଷୟ ଆମ୍ଭେ କ୍ରମଶଃ କହିବୁଁ । ୩। ଏବଂ ତଡାଗ ଖନନ କଲେ ଯେଉଁ ସବୁ ଫଳ ହୁଏ, ତାହା ମଧ୍ୟ କହୁଅଛୁଁ । ତଡ଼ାଗବାନ୍ ମନୁଷ୍ୟ ତ୍ରିଲୋକ ମଧ୍ୟରେ ସର୍ବତ୍ର ପୂଜନୀୟ ହୁଅନ୍ତି । ୪ ।

ଅଥବା ସେ ଶସ୍ୟ ଉତ୍ପାଦନ କରିବା ଦ୍ୱାରା ମିତ୍ର ବ୍ୟକ୍ତିମାନଙ୍କ ଗୃହ ସ୍ୱରୂପ, ପଦ୍ମବନ ବର୍ଦ୍ଧନ କରିବାରୁ ସୂର୍ଯ୍ୟଦେବଙ୍କର ପ୍ରୀତିକର ଏବଂ ମିତ୍ର ଅର୍ଥାତ୍ ଦେବଗଣଙ୍କର ବିଶେଷ ରୂପେ ପୋଷକ, ଅତଏବ ତଡ଼ାଗ ସ୍ଥାପନ ନରଙ୍କର ଲୋକ କୀର୍ତ୍ତିଜନକ ହୁଏ । ୫ ।

ପଣ୍ଡିତଗଣ ଦେଶ ମଧ୍ୟରେ ସୁନ୍ଦର ରୂପରେ ରଚିତ ଏକମାତ୍ର କ୍ଷେତ୍ର ରୂପ ମହାଶ୍ରୟ ତଡ଼ାଗକୁ ଧର୍ମ, ଅର୍ଥ ଓ କାମର ଫଳସ୍ୱରୂପ ବୋଲି କହନ୍ତି । ୬ । ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍ଭିଦଜ ଏହି ଚତୁର୍ବିଧ ପ୍ରାଣୀଙ୍କ ପକ୍ଷରେ ତଡ଼ାଗ ସମୂହ ଉପକାରକ; ତଡାଗ ପ୍ରଭୃତି ଜଳାଶୟ ସମୂହ ଉତ୍କୃଷ୍ଟ ଶ୍ରୀ ପ୍ରଦାନ କରନ୍ତି । ୭ ।

ଦେବ, ମନୁଷ୍ୟ, ଗନ୍ଧର୍ବ, ପିତୃଗଣ, ଉରଗଗଣ, ରାକ୍ଷସ ସମୂହ ଓ ସ୍ଥାବର ନିଚୟ ଜଳାଶୟକୁ ଆଶ୍ରୟ କରନ୍ତି । ୮ । ସେହି ହେତୁରୁ ସେହି ତଡାଗରେ ସ୍ନାନ କଲେ ଯେଉଁ ଗୁଣ ଜାତ ହୁଏ ଏବଂ ଯେଉଁ ଫଳ ପ୍ରାପ୍ତି ହେବାର ବିଷୟ ଋଷିଗଣ କହିଅଛନ୍ତି, ତାହା ଆମ୍ଭେ କହିବା । ୯ ।

ବର୍ଷାକାଳରେ ଯାହାଙ୍କ ତଡାଗରେ ଜଳ ରହେ, ତାହାଙ୍କର ଅଗ୍ନିହୋତ୍ର ଫଳହୁଏ, ଏହି କଥା ପଣ୍ଡିତଗଣ କହନ୍ତି । ୧୦ । ଯାହାଙ୍କ ଜଳାଶୟରେ ଶରତ୍କାଳରେ ଜଳ ରହେ, ସେ ପରଲୋକକୁ ଗମନ କରି ସହସ୍ର ଗୋଦାନର ସମୁଚିତ ଫଳ ଲାଭ କରନ୍ତି । ୧୧ । ହେମନ୍ତ କାଳରେ ଯାହାଙ୍କ ତଡ଼ାଗରେ ଜଳ ରହେ, ସେ ବହୁ ସୁବର୍ଣ୍ଣ ଯଜ୍ଞର ଫଳଲାଭ କରନ୍ତି । ୧୨ ।

ଶିଶିର ସମୟରେ ଯାହାଙ୍କ ଜଳାଶୟରେ ଜଳ ସମ୍ପୂର୍ଣ୍ଣରୂପେ ଥାଏ, ତାହାଙ୍କର ଅଗ୍ନିଷ୍ଟୋମଯଜ୍ଞର ଫଳଲାଭ ହୁଏ ବୋଲି ପଣ୍ଡିତଗଣ କହନ୍ତି । ୧୩ । ବସନ୍ତ ସମୟରେ ଯାହାଙ୍କର ସୁବିହିତ ଜଳାଶୟ ସମସ୍ତଙ୍କର ଉତ୍ତମରୂପେ ଆଶ୍ରୟହୁଏ, ସେ ଅତିରାତ୍ର ଯଜ୍ଞର ଫଳଭାଗୀ ହୁଅନ୍ତି । ୧୪ । ମୁନିମାନେ ଜାଣନ୍ତି ଗ୍ରୀଷ୍ମକାଳରେ ଯାହାଙ୍କ ତଡ଼ାଗରେ ପାନୀୟ ଜଳ ରହେ, ତାହାଙ୍କର ଅଶ୍ୱମେଧ ଯଜ୍ଞର ଫଳଲାଭ ହୁଏ । ୧୫ ।

ଯାହାଙ୍କ ଖାତ ଜଳାଶୟରେ ଗୋବୃନ୍ଦ ଓ ସାଧୁ ମାନବଗଣ ସର୍ବଦା ଜଳପାନ କରନ୍ତି, ତାହାଙ୍କର ସମସ୍ତକୁଳ ଉଦ୍ଧୃତ ହୁଅନ୍ତି । ୧୬ । ଯାହାଙ୍କ ତଡ଼ାଗରେ ତୃଷାର୍ତ୍ତ ଗୋବୃନ୍ଦ, ମୃଗ, ପକ୍ଷୀ ଓ ନରସମୂହ ଜଳପାନ କରନ୍ତି, ସେ ଅଶ୍ୱମେଧ ଯାଗର ଫଳ ପ୍ରାପ୍ତ ହୁଅନ୍ତି । ୧୭ ।

ଜଳାଶୟରେ ଜଳପାନ, ସ୍ନାନ ଓ ବିଶ୍ରାମକଲେ ଇହଲୋକରେ ତଡ଼ାଗଦାତାଙ୍କର ଯେଉଁ ପୁଣ୍ୟ ହୋଇଥାଏ, ତାହା ତାହାଙ୍କର ପରଲୋକରେ ଅନନ୍ତ ଗୁଣରେ ପରିବର୍ଦ୍ଧିତ ହୁଏ । ୧୮ । ହେ ତାତ ! ଜଳ ସ୍ୱଭାବରେ ଦୁର୍ଲ୍ଲଭ, ବିଶେଷତଃ ପରଲୋକରେ ତାହା ଅତିଶୟ ଦୁଷ୍ପ୍ରାପ୍ୟ, ଅତଏବ ପାନୀୟ ପ୍ରଦାନ ଦ୍ୱାରା ଶାଶ୍ୱତପ୍ରୀତି ହୁଏ । ୧୯ । ତିଳ ଦାନ କର, ପାନୀୟ ଦାନ କର, ଦୀପ ଦାନ କର, ଜାଗରିତ ଭାବରେ ଅବସ୍ଥିତ କର ଏବଂ ଜ୍ଞାତିଗଣଙ୍କ ସହିତ ଆମୋଦ କର, କାରଣ ପରଲୋକରେ ଏହିସବୁ ବିଷୟ ଅତି ଦୁର୍ଲ୍ଲଭ । ୨୦ ।

ହେ ନରବର ! ପାନୀୟ ପ୍ରଦାନ ସମସ୍ତ ଦାନ ଅପେକ୍ଷା ଗୁରୁତର ଏବଂ ତାହା ସମସ୍ତଙ୍କର ଅତି ପ୍ରୟୋଜନୀୟ; ଅତଏବ ଜଳଦାନ ଅବଶ୍ୟ କର୍ତ୍ତବ୍ୟ । ୨୧ । ଏହିପରି ତଡ଼ାଗର ଉତ୍କୃଷ୍ଟ ଫଳ କୀର୍ତ୍ତନ କଲୁଁ, ଅତଃପର ବୃକ୍ଷ ସମୂହର ରୋପଣ ଫଳ କୀର୍ତ୍ତନ କରିବା । ୨୨ । ସ୍ଥାବର ଭୂତବୃନ୍ଦର ଷଡ଼୍ବିଧ ଜାତି କୀର୍ତ୍ତିତ ହୋଇଅଛି, ତନ୍ମଧ୍ୟରେ ଅଶ୍ୱତ୍ଥ, ବଟ ପ୍ରଭୃତି ବୃକ୍ଷଜାତି, କୁଶସ୍ତମ୍ବ ପ୍ରଭୃତି ଗୁଳ୍ମଜାତି, ବୃକ୍ଷାଦିରୂପେ ଆରୂଢ଼ ମାଳତୀ ପ୍ରଭୃତି ଲତାଜାତି, ଭୂତଳରେ ବିସ୍ତାରିତ କୁଷ୍ମାଣ୍ଡ ପ୍ରଭୃତି ବଲ୍ଲୀଜାତି, ବଂଶ ପ୍ରଭୃତି ତ୍ୱକସାର ଜାତି ଏବଂ ଉଲପ ପ୍ରଭୃତି ତୃଣ ଜାତି, ଏହି ଛଅ ପ୍ରକାର ବୃକ୍ଷ ରୋପଣକଲେ ଏହିସବୁ ଗୁଣୋଦୟ ହୁଏ ଯେ, ମନୁଷ୍ୟଲୋକରେ ଅର୍ଥାତ ମର୍ତ୍ତ୍ୟ ମଣ୍ଡଳରେ କୀର୍ତ୍ତି ଓ ପର ଲୋକରେ ଶୁଭଫଳ ହୁଏ । ୨୪ ।

ଯେ ବୃକ୍ଷ ରୋପଣ କରନ୍ତି, ସେ ପିତୃଗଣଙ୍କ ସହିତ ପୂଜିତ ହୁଅନ୍ତି । ସେ ଦେବଲୋକକୁ ଗଲେ ହେଁ ଧା ତାହାଙ୍କର ନାମ ଲୁପ୍ତ ହୁଏ

ନାହିଁ । ୨୫ । ହେ ଭାରତ ! ଯେଉଁ ବ୍ୟକ୍ତି ବୃକ୍ଷରୋପଣ କରନ୍ତି, ସେ ଅତୀତ ଓ ଅନାଗତ ଏହି ଉଭୟବିଧ ପିତୃବଂଶକୁ ଉଦ୍ଧାର କରନ୍ତି; ଅତଏବ ବୃକ୍ଷ ସମୂହ ରୋପଣ କରିବାର ଉଚିତ । ୨୬ । ଯେଉଁ ବ୍ୟକ୍ତି ବୃକ୍ଷ ରୋପଣ କରନ୍ତି, ପାଦପଗଣ ତାହାଙ୍କର ପୁତ୍ର ସ୍ୱରୂପ ହୁଅନ୍ତି, ଏହି ବିଷୟରେ ସଂଶୟ ନାହିଁ । ସେ ପରଲୋକକୁ ଗମନ କଲେ ସ୍ୱର୍ଗ ଏବଂ ଅବ୍ୟୟ-ଲୋକମାନଙ୍କୁ ପ୍ରାପ୍ତ ହୁଅନ୍ତି । ୨୭ ।

ହେ ତାତ ! ମହୀରୁହ ବୃକ୍ଷଗଣ ପୁଷ୍ପଦ୍ୱାରା ସୁରଗଣଙ୍କୁ, ଫଳଦ୍ୱାରା ପିତୃଗଣଙ୍କୁ ଏବଂ ଶାଖା ସମୂହର ଛାୟା ଦ୍ୱାରା ଅତିଥିଗଣଙ୍କୁ ପୂଜା କରନ୍ତି । ୨୮ । କିନ୍ନର, ଉରଗ, ରାକ୍ଷସ, ଦେବ, ଗନ୍ଧର୍ବ, ମାନବ ଓ ଋଷିଗଣ ଏହିମାନେ ସମସ୍ତେ ମହୀରୁହମାନଙ୍କୁ ଆଶ୍ରୟ କରନ୍ତି । ୨୯ । ପୁଷ୍ପିତ ଓ ଫଳ ପୂର୍ଣ୍ଣ ତରୁଗଣ ଇହଲୋକରେ ମାନବଗଣଙ୍କୁ ପରିତୃପ୍ତ କରନ୍ତି ଏବଂ ପରଲୋକରେ ପୁତ୍ର ସଦୃଶ ହୋଇ ବୃକ୍ଷଦାତାଙ୍କୁ ପରିତ୍ରାଣ କରନ୍ତି । ୩୦ ।

ସେହି କାରଣରୁ ମଙ୍ଗଳାର୍ଥୀ ମନୁଷ୍ୟ ତଡ଼ାଗର ଚତୁଃପାର୍ଶ୍ୱରେ ଉତ୍ତମ ତରୁମାନଙ୍କୁ ରୋପଣ କରିବେ ଏବଂ ସେହି ପାଦପମାନଙ୍କୁ ପୁତ୍ର ସଦୃଶ ପାଳନ କରିବେ । କାରଣ ସେମାନେ ଧର୍ମ ବୃଦ୍ଧି ବିଷୟରେ ପୁତ୍ର ସଦୃଶ ଅଟନ୍ତି ବୋଲି ସ୍ମୃତିରେ ଉଲ୍ଲେଖ ହୋଇଅଛି । ୩୧ ।

ତଡ଼ାଗକର୍ତ୍ତା, ବୃକ୍ଷରୋପଣକାରୀ ଏବଂ ଯେଉଁ ବ୍ରାହ୍ମଣ ଯଜ୍ଞ କରି-ଥାଆନ୍ତି ଓ ଯେଉଁମାନେ ସତ୍ୟବାକ୍ୟ କହନ୍ତି, ସେମାନେ ସମସ୍ତେ ସ୍ୱର୍ଗରେ ପୂଜିତ ହୋଇ ବାସ କରନ୍ତି । ୩୨ । ସେହି କାରଣରୁ ତଡ଼ାଗ ଖନନ କରାଇବାର ଉଚିତ, ଆରାମରେ ବୃକ୍ଷରୋପଣ କର୍ତ୍ତବ୍ୟ ଏବଂ ବିବିଧ ଯଜ୍ଞ ଦ୍ୱାରା ଦେବତାମାନଙ୍କର ତୃପ୍ତି ସାଧନ ଓ ସର୍ବଦା ସତ୍ୟ କହିବାର ଉଚିତ । ୩୩ ।



# ଅଧ୍ୟାୟ—୫୯

ଯୁଧିଷ୍ଠିର କହିଲେ, ହେ କୁରୁଶ୍ରେଷ୍ଠ ! ବହିର୍ବେଦୀ ମଧ୍ୟରେ ଆପଣ ଯେଉଁ ସମସ୍ତ ଦାନର ବିଷୟ କୀର୍ତ୍ତନ କଲେ, ସେହି ସମସ୍ତଙ୍କ ଅପେକ୍ଷା ଆଉ କେଉଁ ଦାନ ଉତ୍କୃଷ୍ଟ ଅଟେ ? ଯେଉଁ ବସ୍ତୁ ପ୍ରଦତ୍ତ ହେଲେ ତାହାର ଫଳକୁ ଦାତା ଇହଲୋକରେ ଓ ପରଲୋକରେ ପୁନଶ୍ଚ ପ୍ରାପ୍ତ ହୁଅନ୍ତି, ତାହା ଶ୍ରବଣ କରିବାକୁ ଆମ୍ଭର ଅତିଶୟ କୌତୂହଳ ଜନ୍ମିଅଛି; ଅତଏବ ହେ ପ୍ରଭୋ ! ଆପଣ ଆମ୍ଭ ସାକ୍ଷାତରେ ତାହା କୀର୍ତ୍ତନ କରନ୍ତୁ । ୨ ।

ଭୀଷ୍ମ କହିଲେ, ହେ ଭରତ ଶ୍ରେଷ୍ଠ ! ସମସ୍ତ ପ୍ରାଣିଗଣଙ୍କୁ ଅଭୟ ଦାନ କରିବାର, ବିପଦ ସମୟରେ ବିପଦଗ୍ରସ୍ତ ବ୍ୟକ୍ତିଙ୍କଠାରେ ଅନୁଗ୍ରହ ପ୍ରକାଶ କରିବାର ଏବଂ ତୃଷିତ, ଯାଚକମାନଙ୍କୁ ଅଭିଳଷିତ ବସ୍ତୁ ପ୍ରଦାନ କରିବାର, ଏହିସବୁ ଦାନକୁ ଦାତାଦତ୍ତ ବୋଲି ଜାଣିବେ । ସେହି ଦାନକୁ ଶ୍ରେଷ୍ଠଦାନ କୁହାଯାଏ । ଯେଉଁ ଦାନ ଦତ୍ତହୋଇ ଦାତାଙ୍କର ଅନୁଗମନ କରେ ତାହା ଏହି । ୪ ।

ସୁବର୍ଣ୍ଣ ଦାନ, ଗୋଦାନ ଏବଂ ଭୂମିଦାନ ଏହି ତ୍ରିବିଧ ଦାନ ପବିତ୍ର ଅଟନ୍ତି । ଏହି ଦାନସବୁ ଦୁଷ୍କୃତି ବ୍ୟକ୍ତିଙ୍କୁ ଉଦ୍ଧାର କରନ୍ତି । ୫ । ଅତଏବ ହେ ପୁରୁଷ ପ୍ରବର ! ତୁମ୍ଭେ ସାଧୁଗଣଙ୍କୁ ସର୍ବଦା ଏହି ସମସ୍ତ ବସ୍ତୁ ପ୍ରଦାନ କର । ଦାନ ସମୂହ ନିଶ୍ଚୟ ମନୁଷ୍ୟଙ୍କୁ ପାପରୁ ମୁକ୍ତ କରନ୍ତି, ଏଥିରେ ସଂଶୟ ନାହିଁ । ୬ । ଲୋକରେ ଯେଉଁ ଯେଉଁ ବସ୍ତୁ ଇଷ୍ଟତମ ଏବଂ ଗୃହ ମଧ୍ୟରେ ଦାତାଙ୍କର ଯେଉଁ ବସ୍ତୁ ପ୍ରିୟତମ, ସେହି ପ୍ରିୟ ବସ୍ତୁର ଅକ୍ଷୟ କାମନାକାରୀ ମାନବ ଗୁଣବାନ୍ ବ୍ୟକ୍ତିଙ୍କୁ ତାହା ପ୍ରଦାନ କରିବେ । ୭ । ପ୍ରିୟ ବସ୍ତୁ ପ୍ରଦାନକାରୀ ଓ ପ୍ରିୟକାରୀ ବ୍ୟକ୍ତି ସର୍ବଦା ପ୍ରିୟ ବିଷୟ ସମୂହ ପ୍ରାପ୍ତ ହୁଅନ୍ତି ଏବଂ ଇହଲୋକରେ ଓ ପରଲୋକରେ ପ୍ରାଣିଗଣଙ୍କର ପ୍ରିୟ ହୁଅନ୍ତି । ୮ ।

ହେ ଯୁଧିଷ୍ଠିର ! ଯଦି ଦରିଦ୍ର ବ୍ୟକ୍ତି କୌଣସି ଜନଙ୍କୁ ସମର୍ଥ ବୋଲି ବିବେଚନା କରି ତାହାଙ୍କୁ ଆହାରୋପଯୋଗୀ କିଛି ଦ୍ରବ୍ୟ ପ୍ରାର୍ଥନା କରେ

ଏବଂ ସେହି ବ୍ୟକ୍ତି ସମର୍ଥ ହୋଇ ଯଦି ଯଥାଶକ୍ତି ତାହାର ଅଭିଳାଷ ପୂର୍ଣ୍ଣ ନ କରନ୍ତି, ତେବେ ସେ ନୃଶଂସ ବୋଲି ପରିଗଣିତ ହୁଅନ୍ତି । ୯ ।

ଅମିତ୍ର ବ୍ୟକ୍ତି ଯଦି ଧନ ଭାବରେ ଶରଣାଗତ ହୁଅନ୍ତି, ଯେଉଁ ବ୍ୟକ୍ତି ତାହାଙ୍କୁ ବିପତ୍ତି କାଳରେ ଅନୁଗ୍ରହ କରନ୍ତି, ସେ ପୁରୁଷଶ୍ରେଷ୍ଠ ଅଟନ୍ତି । ୧୦ । ଯେ କୃଶ, କୃତବିଦ୍ୟ, ବୃତ୍ତି ବିବର୍ଜିତ ଓ ଅବସନ୍ନ ବ୍ୟକ୍ତିର କ୍ଷୁଧା ଶାନ୍ତ କରନ୍ତି, ଅନ୍ୟ କୌଣସି ବ୍ୟକ୍ତି ତାହାଙ୍କ ସଦୃଶ ହୁଅନ୍ତି ନାହିଁ । ୧୧ ।

ହେ କୌନ୍ତେୟ ! ସ୍ୱଧର୍ମରତ ସାଧୁ ପୁତ୍ର ଦାରାଦିଦ୍ୱାରା କର୍ଷିତ ଅଥଚ ଅଯାଚମାନ ମାନବଗଣଙ୍କୁ ସର୍ବୋପାୟଦ୍ୱାରା ନିମନ୍ତ୍ରଣ କରିବାର ଉଚିତ । ୧୨ । ହେ ଭାରତ ! ଯେଉଁମାନେ ଦେବତା ଓ ମନୁଷ୍ୟଗଣଙ୍କ ନିକଟରେ କୌଣସି ଆଶା କରନ୍ତି ନାହିଁ, ସେହି ପୂଜ୍ୟତମ ନିତ୍ୟସନ୍ତୁଷ୍ଟ ଲବ୍ଧୋପଜୀବୀ ଆଶୀବିଷ ସଦୃଶ ବ୍ରାହ୍ମଣଙ୍କଠାରୁ ଆପଣାକୁ ରକ୍ଷାକର । ତାଦୃଶ ଦ୍ୱିଜଗଣଙ୍କୁ ଏବଂ ଉତ୍ତମ ଋତ୍ୱିକ ବୃନ୍ଦଙ୍କୁ ନିସୃଷ୍ଟ ଅର୍ଥାତ୍ ସେହି ଉଭୟଙ୍କ ଭାବ ଅବଗତହୋଇ ଯେଉଁ ବ୍ୟକ୍ତି କାର୍ଯ୍ୟ ସାଧନ କରିବାକୁ ସକ୍ଷମ, ତାଦୃଶ ମାନବଙ୍କଦ୍ୱାରା ପ୍ରଶ୍ନକରି ନିମନ୍ତ୍ରଣ କରିବ । ୧୪ । ହେ କୌରବ୍ୟ ! ସର୍ବକାମ ସୁଖାବହ ପ୍ରେଷ୍ୟ ଓ ପରିଚ୍ଛଦ ସହିତ ଆଶ୍ରମ ପ୍ରଭୃତି ପ୍ରଦାନ ପୂର୍ବକ ଉକ୍ତ ବ୍ୟକ୍ତିଗଣଙ୍କୁ ନିମନ୍ତ୍ରଣ କରିବାର ଉଚିତ । ୧୫ ।

ହେ ଯୁଧିଷ୍ଠିର ! ଯଦି ସେହି ପୁଣ୍ୟ କର୍ମଶୀଳ ଧାର୍ମିକଗଣ ଶ୍ରଦ୍ଧାପୂତ ବସ୍ତୁ ସମୂହକୁ ପରିଗ୍ରହ କରନ୍ତି, ତେବେ ସେହିମାନେ ଧର୍ମାର୍ଥରେ ଧର୍ମକାର୍ଯ୍ୟ କରନ୍ତି । ଯେଉଁମାନେ ବିଦ୍ୟାସ୍ନାତ, ବ୍ରତସ୍ନାତ ଏବଂ ଯେଉଁମାନେ ପ୍ରଭୁଙ୍କ ଆଶ୍ରୟ ଗ୍ରହଣ ନ କରି ଜୀବନ ଧାରଣ କରିବାକୁ ଅଭିଳାଷୀ ହୁଅନ୍ତି, ଯେଉଁମାନଙ୍କର ସ୍ୱାଧ୍ୟାୟ ଓ ତପସ୍ୟା ଅତି ଗୂଢ଼ ଏବଂ ଯେଉଁମାନେ ସଂଶିତବ୍ରତ, ସେହି ବିଶୁଦ୍ଧ ଜିତେନ୍ଦ୍ରିୟ ସ୍ୱଦାର ପରିତୁଷ୍ଟ ବ୍ରାହ୍ମଣଗଣଙ୍କର ଯେଉଁ ଉପକାର କରିବ, ତୁମ୍ଭର ସେହି କଲ୍ୟାଣ ଲୋକରେ ବର୍ଦ୍ଧିତ ହୋଇ ରହିବ । ସାୟଂକାଳ

ଓ ପ୍ରାତଃକାଳରେ ଦ୍ୱିଜଗଣଙ୍କର ଅଗ୍ନିହୋତ୍ର ଯେଉଁପରି ସୁନ୍ଦର ରୂପେ ହୁତ ହୁଏ, ସଂଯତ ଚିତ୍ତ ବ୍ରାହ୍ମଣଙ୍କୁ ଯାହାଦାନ କରାଯାଏ, ତାହା ତାଦୃଶ ଅଟେ । ୧୯ ।

ହେ ତାତ ! ତୁମ୍ଭ ନିକଟରେ ଏହି ଶ୍ରଦ୍ଧାପୂତ ସଦକ୍ଷିଣ ଯଜ୍ଞ ବିସ୍ତାରିତ ହେଲା; ଏହା ସମସ୍ତ ଯଜ୍ଞ ଅପେକ୍ଷା ଉତ୍କୃଷ୍ଟ । ତୁମ୍ଭେ ଦାତା, ଅତଏବ ତୁମ୍ଭ ନିକଟରେ ସର୍ବଦା ଏହି ଯଜ୍ଞ ବର୍ତ୍ତମାନ ହୋଇ ରହିଥାଉ । ହେ ଯୁଧିଷ୍ଠିର ! ତାଦୃଶ ବ୍ରାହ୍ମଣଗଣଙ୍କୁ ଯେଉଁ ଦାନ କରାଯାଏ, ତାହା ପିତୃ ତର୍ପଣର ସମାନ ଅଟେ । ସେହିମାନଙ୍କ ଆଶ୍ରୟ ପୂର୍ବକ ବାସକର ଏବଂ ସେହିମାନଙ୍କୁ ପୂଜାକର । ତାହାହେଲେ ଦେବତାମାନଙ୍କ ନିକଟରେ ଆନୃଣ୍ୟ ଲଭିବ । ୨୧ । ଯେଉଁ ସମସ୍ତ ବ୍ରାହ୍ମଣ ପ୍ରିୟବାଦୀ ଅଟନ୍ତି, ସେହିମାନେ କଦାପି କୋପ କରନ୍ତି ନାହିଁ ଏବଂ ତୃଣ ମାତ୍ରକୁ ସୁଦ୍ଧା ଲୋଭ କରନ୍ତି ନାହିଁ । ସେହିମାନେ ଆମ୍ଭମାନଙ୍କର ଅତି ପୂଜନୀୟ । ସେମାନେ ନିସ୍ପୃହ, ସେହି କାରଣରୁ ଦାତାଙ୍କୁ ବହୁମାନ କରନ୍ତି ନାହିଁ ଏବଂ ଅପର ବିଷୟରେ ମଧ ପ୍ରବୃତ୍ତ ହୁଅନ୍ତି ନାହିଁ । ସେମାନେ ସର୍ବତୋଭାବରେ ପୁତ୍ର ସଦୃଶ ପ୍ରତିପାଳ୍ୟ । ସେହିମାନେ ନମସ୍କରଣୀୟ । ସେମାନେ ତୁଷ୍ଟ ହେଲେ ସ୍ୱର୍ଗ ଏବଂ ରୁଷ୍ଟ ହେଲେ ନରକ ଲଭ ହୁଏ । ୨୩। ଋତ୍ୱିକ୍ ପୁରୋହିତ ଆଚାର୍ଯ୍ୟ ଏବଂ ଶିଷ୍ୟବତ୍ସଳ ବେଦଜ୍ଞ ବ୍ରାହ୍ମଣ କ୍ଷେତ୍ର ମଧ୍ୟରେ ସଂସୃଷ୍ଟ ହେଲେ ସେମାନଙ୍କର ବ୍ରହ୍ମତେଜ ଶାନ୍ତ ହୁଏ । ଶାନ୍ତ ଦ୍ୱିଜଙ୍କଠାରେ ଅଧ୍ୟାପ୍ୟମାନ ତେଜ ସର୍ବଦା ଥାଏ । ୨୪ ।

ହେ ଯୁଧିଷ୍ଠିର ! "ଆମ୍ଭର ଧନ ଅଛି, ଆମ୍ଭେ ବଳବାନ୍, ଆମ୍ଭେ ରାଜା" ଏହି ପ୍ରକାର ଅଭିମାନକରି ବ୍ରାହ୍ମଣଗଣଙ୍କୁ ପରିତ୍ୟାଗ ପୂର୍ବକ ବସ୍ତ୍ର ଓ ଭୋଜନୀୟ ଦ୍ରବ୍ୟ ଭୋଗ କରନା । ୨୫ । ହେ ଅନଘ ! ତୁମ୍ଭର ଶୋଭା ନିମିତ୍ତ ଅଥବା ବଳ ନିମିତ୍ତ ଯେଉଁ ବିତ୍ତ ଅଛି, ତୁମ୍ଭେ ନିଜ ଧର୍ମ ଅନୁଷ୍ଠାନ କରି ସେହି ଧନଦ୍ୱାରା ବ୍ରାହ୍ମଣମାନଙ୍କୁ ପୂଜା କରିବ । ୨୬ ।

ବ୍ରାହ୍ମଣଗଣ ଯେକୌଣସି ଅବସ୍ଥାରେ ଥାଆନ୍ତୁ ପଛକେ, ସେମାନେ ତୁମ୍ଭର ଅବଶ୍ୟ ନମସ୍କରଣୀୟ, ସେମାନେ ତୁମ୍ଭ ନିକଟରେ

ପୂର୍ବ ସଦୃଶ ଉତ୍ସାହ ଅନୁସାରେ ଯଥାସୁଖରେ ବାଞ୍ଛିତ ଅର୍ଥଲାଭ କରନ୍ତୁ । ୨୭ । ହେ କୁରୁଶ୍ରେଷ୍ଠ ! ତୁମ୍ଭ ବ୍ୟତିରେକେ କେଉଁ ବ୍ୟକ୍ତି ଅକ୍ଷୟସୁଖପ୍ରଦାତା, ଅତି ଅଳ୍ପ ସନ୍ତୁଷ୍ଟ ସୁହୃଦଗଣଙ୍କୁ ବୃତ୍ତି ପ୍ରଦାନ କରିବାକୁ ସମର୍ଥ ହେବ ? ୨୮ ।

ହେ ତାତ ! ଇହଲୋକରେ ସ୍ତ୍ରୀମାନଙ୍କର ପତି ଆଶ୍ରୟ ଯେଉଁପରି ସନାତନ ଧର୍ମ ଅଟେ ଏବଂ ସେହିମାନଙ୍କର ଯେଉଁପରି ଅନ୍ୟଗତି ନାହିଁ, ସେହିପରି ଆମ୍ଭମାନଙ୍କର ଦ୍ୱିଜାତିଗଣ ଗତି ଅଟନ୍ତି ।୨୯। ହେ ତାତ ! ବ୍ରାହ୍ମଣଗଣ କ୍ଷତ୍ରିୟମାନଙ୍କର ଦାରୁଣକର୍ମ ସନ୍ଦର୍ଶନ କରି ଅପୂଜିତ ହୋଇ ଯଦି ଆମ୍ଭମାନଙ୍କୁ ପରିତ୍ୟାଗ କରିବେ (୩୦) ତେବେ ସେହି ବ୍ରାହ୍ମଣଗଣଙ୍କ ଆଶ୍ରୟ ବ୍ୟତିରେକେ ବେଦ ବର୍ଜିତ, ଯଜ୍ଞହୀନ, ଲୋକନନ୍ଦିତ ବୃତ୍ତିଶୂନ୍ୟ କ୍ଷତ୍ରିୟମାନଙ୍କର ଜୀବନରେ କେଉଁ ପ୍ରୟୋଜନ ? ୩୧ ।

ହେ ରାଜନ୍ ! ଏହି ବିଷୟରେ ଯେଉଁ ସନାତନ ଧର୍ମ ଅଛି, ତାହା ତୁମ୍ଭ ନିକଟରେ ବର୍ଣ୍ଣନ କରିବୁଁ । ପୂର୍ବକାଳରେ କ୍ଷତ୍ରିୟ ବ୍ରାହ୍ମଣଗଣଙ୍କର ପରିଚର୍ଯ୍ୟା କରୁଥିଲେ । ୩୨ । ବୈଶ୍ୟ କ୍ଷତ୍ରିୟଙ୍କର ଓ ଶୂଦ୍ର ବୈଶ୍ୟଙ୍କର ସେବା କରୁଥିଲେ, ଏହିକଥା ଶୁଣାଅଛି । ଶୂଦ୍ର ଦୂରରୁ ଅଗ୍ନି ସଦୃଶ ଦେଦୀପ୍ୟମାନ ବ୍ରାହ୍ମଣଙ୍କର ସେବା କରିବେ । ୩୩ । କ୍ଷତ୍ରିୟ ଓ ବୈଶ୍ୟ ସଂସ୍ପର୍ଶ ପୂର୍ବକ ବ୍ରାହ୍ମଣଙ୍କ ସେବା କରିବେ । ମୃଦୁତ୍ତ, ଗୁଣଯୁକ୍ତ, ସତ୍ୟଶୀଳ ଓ ସତ୍ୟଧର୍ମର ଅନୁପାଳକ ଅଶୀବିଷ ସଦୃଶ କ୍ରୋଧଯୁକ୍ତ ସେହି ଦ୍ୱିଜଗଣଙ୍କର ପରିଚର୍ଯ୍ୟା କର ।

ଯେଉଁ କ୍ଷତ୍ରିୟଗଣ ଅପରାପର ଶ୍ରେଷ୍ଠଜାତି ଅପେକ୍ଷା ଶ୍ରେଷ୍ଠ ହୋଇ ତେଜ ଓ ବଳଦ୍ୱାରା ପ୍ରତାପଶାଳୀ ହୋଇଅଛନ୍ତି, ବ୍ରାହ୍ମଣଗଣଙ୍କ ସନ୍ନିଧାନରେ ସେହି କ୍ଷତ୍ରିୟଗଣଙ୍କ ତେଜ ଓ ତପସ୍ୟା ଶାନ୍ତ ହୋଇଯାଏ । ୩୪ ।

ହେ ତାତ ! ରାଜନ୍ ! ପୃଥିବୀରେ ଆମ୍ଭର ତୁମ୍ଭ ଅପେକ୍ଷା ଅନ୍ୟ କୌଣସି ବ୍ୟକ୍ତି ପ୍ରିୟତର ନାହାନ୍ତି । ତୁମ୍ଭେ ଆମ୍ଭର ଯାଦୃଶ ପ୍ରିୟତର,

ଆମ୍ଭର ପିତା, ମାତା, ପିତାମହ, ଆତ୍ମା ଓ ଜୀବନସୁଦ୍ଧା ତାଦୃଶ ପ୍ରିୟତର ନୁହନ୍ତି, କିନ୍ତୁ ହେ ଭରତଶ୍ରେଷ୍ଠ ! ବ୍ରାହ୍ମଣଗଣ ତୁମ୍ଭ ଅପେକ୍ଷା ଆମ୍ଭର ଅତିପ୍ରିୟ ଅଟନ୍ତି । ୩୮ । ହେ ପାଣ୍ଡୁନନ୍ଦନ ! ଆମ୍ଭେ ସମ୍ପ୍ରତି ଯେଉଁ ଏହି ସତ୍ୟ କହୁଅଛୁଁ, ସେହି ସତ୍ୟ ପ୍ରଭାବରେ ଆମ୍ଭେ, ଆମ୍ଭ ପିତା ଶାନ୍ତନୁ ଯେଉଁଲୋକକୁ ଗମନ କରିଅଛନ୍ତି, ସେହି ଲୋକକୁ ଗମନ କରିବୁଁ । ୩୯ । ହେ ତାତ ! ଆମ୍ଭେ ବ୍ରହ୍ମଲୋକ ପ୍ରଭୃତି ଶତ ଶତ ଲୋକ ଅବଲୋକନ କରିବୁଁ । ଆମ୍ଭେ ଚିରକାଳ ନିମିତ୍ତ ଶୀଘ୍ର ସେହି ସ୍ଥାନକୁ ଯିବୁଁ । ୪୦ ।

ହେ ଭରତଶ୍ରେଷ୍ଠ ! ରାଜନ୍ ! ଆମ୍ଭେ ଜ୍ଞାନଚକ୍ଷୁ ପ୍ରଭାବରେ ଏତାଦୃଶ ଲୋକ ସମୂହକୁ ନିରୀକ୍ଷଣ କରି ବ୍ରାହ୍ମଣମାନଙ୍କ ବିଷୟରେ ଯାହା କରିଅଛୁଁ ତନ୍ନିମିତ୍ତ ଏତେବେଳେ ପରିତାପ କରୁନାହୁଁ । ୪୧ ।



## ଅଧ୍ୟାୟ—୬୦

ଯୁଧିଷ୍ଠିର କହିଲେ, ଯେଉଁ ଦୁଇଜଣ ବ୍ରାହ୍ମଣ ସମାନ ଆଚରଣ-ଯୁକ୍ତ, ସମାନ କୁଳ ଓ ସମାନ ବିଦ୍ୟାବିଶିଷ୍ଟ ସେହି ଦୁହିଙ୍କ ମଧ୍ୟରେ ଜଣେ ଯାଚକ ଓ ଅନ୍ୟଜଣ ଅଯାଚକ । ତେବେ ସେହି ଦୁଇଜଣଙ୍କ ମଧ୍ୟରୁ କେଉଁ ବ୍ୟକ୍ତିଙ୍କୁ ଦାନକଲେ, ଉତ୍କୃଷ୍ଟ ଫଳ ହୁଏ ? ତାହା କୀର୍ତ୍ତନ କରିବା ହେଉନ୍ତୁ । ୧ । ଭୀଷ୍ମ କହିଲେ, ହେ ପାର୍ଥ ! ଯାଚକ ବ୍ରାହ୍ମଣଙ୍କ ଅପେକ୍ଷା ଅଯାଚକ ବ୍ରାହ୍ମଣଙ୍କୁ ଦାନ କରିବାର ଶ୍ରେୟ, ଅଧୈର୍ଯ୍ୟଶାଳୀ ଧନଜନ ଅପେକ୍ଷା ଧୈର୍ଯ୍ୟଶାଳୀ ପୁରୁଷ ପୂଜ୍ୟତମ । ୨ । କ୍ଷତ୍ରିୟମାନଙ୍କ ରକ୍ଷା ନିଧୈର୍ଯ୍ୟ, ବ୍ରାହ୍ମଣଗଣଙ୍କ ପ୍ରାର୍ଥନା ଧୈର୍ଯ୍ୟ, ସନ୍ତୁଷ୍ଟଚିତ୍ତ ଧୃତିମାନ୍ ବିଦ୍ୱାନ୍ ବ୍ରାହ୍ମଣ ଦେବଗଣଙ୍କର ସନ୍ତୋଷ ସମ୍ପାଦନ କରନ୍ତି । ୩ ।

ହେ ଭାରତ ! ଦରିଦ୍ରବ୍ୟକ୍ତିର ଯାଚନାକୁ ପଣ୍ଡିତମାନେ ତିରସ୍କାର ବୋଲି କହନ୍ତି । ନରଗଣ ଯେତେବେଳେ ଭିକ୍ଷା କରନ୍ତି, ତେତେବେଳେ ସେହିମାନେ ଦସ୍ୟୁ ସଦୃଶ ଉଦ୍‌ବେଗଯୁକ୍ତ ହୋଇଥାଆନ୍ତି । ୪ ।

ହେ ଯୁଧିଷ୍ଠିର ! ଯାଚମାନ ବ୍ୟକ୍ତି ମୃତ ସଦୃଶ ହୁଅନ୍ତି । ଦାତା କଦାପି ମୃତ ସଦୃଶ ହୁଅନ୍ତି ନାହିଁ । ଦାତା ଦାନଦ୍ୱାରା ଯାଚକ ବ୍ୟକ୍ତିଙ୍କୁ ଓ ଆପଣାକୁ ଜୀବିତ କରନ୍ତି । ୫ । ଯାଚକ ବ୍ୟକ୍ତିଙ୍କୁ ଯାହା ପ୍ରଦାନ କରାଯାଏ, ସେହି ଆନୃଶଂସ୍ୟ କେବଳ ପରମଧର୍ମ । ଯେଉଁମାନେ ଯାଚଜ୍ଞା ନକରି ଅବସନ୍ନ ହୋଇ ଥାଆନ୍ତି, ସେହିମାନଙ୍କୁ କୌଣସି ଉପାୟଦ୍ୱାରା ନିମନ୍ତ୍ରଣ କରିବାର ବିଧେୟ । ୬ । ଯଦି ତାଦୃଶ ଦ୍ୱିଜଶ୍ରେଷ୍ଠଗଣ ତୁମ୍ଭ ରାଜ୍ୟରେ ବାସକରନ୍ତି, ତେବେ ତୁମ୍ଭେ ପ୍ରଯତ୍ନ ପୂର୍ବକ ସେହିମାନଙ୍କୁ ଭସ୍ମାଚ୍ଛନ୍ନ ଅଗ୍ନି ସଦୃଶ ଜ୍ଞାନ କରିବ । ୭ । ହେ କୌରବ୍ୟ ! ତପସ୍ୟାଦ୍ୱାରା ଦେଦୀପ୍ୟମାନ ବ୍ରାହ୍ମଣଗଣ ଯଦି ପୂଜ୍ୟମାନ ନ ହେବେ, ତେବେ ସେହିମାନେ ଏହି ପୃଥିବୀକୁ ଦଗ୍‌ଧ କରି ପାରିବେ । ଅତଏବ ତାଦୃଶ ବ୍ୟକ୍ତିଗଣ ଅବଶ୍ୟ ପୂଜାର୍ହ । ୮ ।

ହେ ପରନ୍ତପ ! ସେମାନେ ଜ୍ଞାନ, ବିଜ୍ଞାନ, ତପସ୍ୟା ଓ ଯୋଗଯୁକ୍ତ ବୋଲି ପୂଜନୀୟ ଅଟନ୍ତି । ସେହି କାରଣରୁ ତାଦୃଶ ବ୍ରାହ୍ମଣମାନଙ୍କ ନିମିତ୍ତ ପୂଜା ପ୍ରୟୋଗ କରିବ । ୯ । ବିଦ୍ୟାଶୀଳ ବେଦ ପରାୟଣ ବ୍ରତ ବିଶିଷ୍ଟ ଅଯାଚକ ବ୍ରାହ୍ମଣଗଣଙ୍କ ନିକଟକୁ ଗମନ ପୂର୍ବକ ବହୁବିଧ ଧନ ପ୍ରଭୃତି ଦାନକଲେ, ମନୁଷ୍ୟ ଦାତା ହୁଅନ୍ତି । ସାୟଂକାଳ ଓ ପ୍ରାତଃକାଳରେ ଅଗ୍ନି ହୋତ୍ରରେ ହୋମ କଲେ ଯେଉଁ ଫଳ ହୁଏ, ସେମାନଙ୍କୁ ଦାନକଲେ ତାଦୃଶ ଫଳ ହୁଏ । ୧୧ ।

ହେ କୌନ୍ତେୟ ! ଯେଉଁମାନେ ବିଦ୍ୟାସ୍ନାତ, ବେଦସ୍ନାତ, ବ୍ରତସ୍ନାତ ଓ ପ୍ରଭୁଙ୍କ ଆଶ୍ରମରେ ରହି ଜୀବିକା ନିର୍ବାହ କରିବାକୁ ଇଚ୍ଛୁକ ନୁହନ୍ତି, ଯେଉଁମାନଙ୍କ ନିଜ ଶାଖା ପ୍ରୋକ୍ତ ବେଦ ପାଠ ଓ ତପସ୍ୟା ଅତିଶୟ ଗୂଢ଼, ସେହି ସଂଶିତ ବ୍ରତ ବ୍ରାହ୍ମଣଗଣଙ୍କୁ ମନୋହର ରୂପେ ରଚିତ ଆଶ୍ରମସମୂହ, ସପରିଚ୍ଛଦଭୃତ୍ୟସମୂହ ଓ ଅନ୍ୟାନ୍ୟ କାମନୀୟ ବିଷୟଦ୍ୱାରା ନିମନ୍ତ୍ରଣ

କରିବ । ୧୩ । ହେ ଯୁଧିଷ୍ଠିର ! ସେହି ସୂକ୍ଷ୍ମଦର୍ଶୀ ଧର୍ମଜ୍ଞ ବ୍ରାହ୍ମଣଗଣ କର୍ତ୍ତବ୍ୟ କାର୍ଯ୍ୟକୁ ଜାଣି ଶ୍ରଦ୍ଧାଯୁକ୍ତ ଦାନକୁ ପ୍ରତିଗ୍ରହ କରନ୍ତି ।

କୃଷକଗଣ ଯେଉଁପରି ବର୍ଷଣଶୀଳ ମେଘକୁ ପ୍ରତୀକ୍ଷା କରନ୍ତି, ତଦ୍‌ବତ୍ ବ୍ରାହ୍ମଣଗଣ ଭୋଜନ ଉତ୍ତାରେ ଗୃହକୁ ଗମନକଲେ ଯେଉଁମାନଙ୍କର ସ୍ତ୍ରୀଗଣ ଯାଚମାନ ବାଳକମାନଙ୍କୁ "ସ୍ୱାମୀ ଆସିଲେ ଖାଦ୍ୟ ଦେବା" ଏହିପରି ଆଶ୍ୱାସ ପ୍ରଦାନ କରିଥାଆନ୍ତି, ତାଦୃଶ ବାହ୍ମଣଗଣଙ୍କୁ ନିମନ୍ତ୍ରଣ କରିବ । ୧୫ । ହେ ତାତ ! ପ୍ରାତଃ ସମୟରେ ନିଯୁତ ବ୍ରହ୍ମଚାରୀ ବ୍ରାହ୍ମଣଗଣ ଅନ୍ନଭୋଜନ କଲେ ସେମାନେ ଗାର୍ହପତ୍ୟ, ଆହବନୀୟ ଓ ଦକ୍ଷିଣାଗ୍ନି ଏହି ଅଗ୍ନିତ୍ରୟକୁ ପ୍ରୀତ କରନ୍ତି । ୧୬ । ହେ ତାତ ! ତୁମ୍ଭେ ମଧ୍ୟାହ୍ନ ସମୟରେ ଯଜ୍ଞକରି ଗୋ, ହିରଣ୍ୟ ଓ ବସ୍ତ୍ରଦାନ କର । ତାହାଦ୍ୱାରା ଇନ୍ଦ୍ରଦେବ ତୁମ୍ଭଠାରେ ପ୍ରୀତଯୁକ୍ତ ହେଉନ୍ତୁ । ୧୭ । ହେ ଯୁଧିଷ୍ଠିର ! ତୁମ୍ଭର ତୃତୀୟ ସବନ ବୈଶ୍ୱଦେବ, ଯାହା ଦେବଗଣ, ପିତୃଗଣ ଓ ବିପ୍ରଗଣଙ୍କୁ ପ୍ରଦାନ କରାଯାଏ, ସର୍ବଭୂତରେ ଅହିଂସା, ଭାଗାନୁସାରେ ସଂବିଭାଗ, ଦମ, ତ୍ୟାଗ, ଧୃତି ଓ ସତ୍ୟ, ଏହିସବୁ ତୁମ୍ଭ ଅବଭୃଥ ନିମିତ୍ତ ହୋଇଥାଏ ।୧୯ ।

ତୁମ୍ଭ ନିକଟରେ ଶ୍ରଦ୍ଧାପୂତ, ସଦକ୍ଷିଣ-ଯଜ୍ଞ, ବିସ୍ତାରିତରୂପେ ବର୍ଣ୍ଣନ କଲୁଁ । ଏହି ଯଜ୍ଞ ସମସ୍ତ ଯଜ୍ଞ ଅପେକ୍ଷା ଉତ୍କୃଷ୍ଟ, ତୁମ୍ଭେ ଏହି ଯଜ୍ଞରେ ସର୍ବଦା ପ୍ରବୃତ୍ତ ହୁଅ । ୨୦ ।



## ଅଧ୍ୟାୟ—୬୧

ଯୁଧିଷ୍ଠିର କହିଲେ, ହେ ପିତାମହ ! ଇହଲୋକରେ ଦାନ ଓ ଯଜ୍ଞକ୍ରିୟାକଲେ, ପରଲୋକରେ ମହାଫଳ ହୁଏ, କିନ୍ତୁ ଏହି ଦୁହିଙ୍କ ମଧ୍ୟରେ କାହାର ଫଳ ଉତ୍କୃଷ୍ଟ ଅଟେ ? ତାହା କହିବା ହେଉନ୍ତୁ । କିଦୃଶ ବ୍ୟକ୍ତିଗଣଙ୍କୁ ଦାନ କରିବାର ଉଚିତ ଏବଂ କେଉଁ ପ୍ରକାରରେ ଓ କେଉଁ ସମୟରେ ଯଜ୍ଞ କରିବାର ଉଚିତ ? ହେ ଭାରତ ! ଏହି ବିଷୟକୁ ଆମ୍ଭେ

ଯଥାର୍ଥ ରୂପେ ଜାଣିବାକୁ ଇଚ୍ଛା କରୁଅଛୁଁ, ହେ ବିଦ୍ୱନ୍! ଆମ୍ଭେ ପଗ୍ଭରୁ-ଅଛୁଁ ଆମ୍ଭଙ୍କୁ ଦାନ ଧର୍ମ ସମ୍ବନ୍ଧ କହିବା ହେଉନ୍ତୁ । ୨ ।

ହେ ତାତ! ପିତାମହ! ଅନୃଶଂସ ବ୍ୟକ୍ତି କର୍ତ୍ତୃକ ଅନ୍ତର୍ବେଦୀ ମଧ୍ୟରେ ଯାହା ଶ୍ରଦ୍ଧା ପୂର୍ବକ ପ୍ରଦତ୍ତ ହୁଏ, ତାହା କି ନିଃଶ୍ରେୟସ୍କର ଅଟେ? ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୩ । ଭୀଷ୍ମ କହିଲେ, ହେ ତାତ! କ୍ଷତ୍ରିୟଙ୍କର ସର୍ବଦା ରୌଦ୍ର କର୍ମ ଅଛି; ଅତଏବ ଇହଲୋକରେ ତାହାଙ୍କର ଦାନ କେବଳ ପବିତ୍ର ଯଜ୍ଞ କର୍ମ ଅଟେ । ୪ । ସାଧୁଗଣ ପାପକାରୀ ରାଜାମାନଙ୍କ ଦାନକୁ ପ୍ରତିଗ୍ରହ କରନ୍ତି ନାହିଁ, ଏହି ନିମିତ୍ତ ରାଜା ସଦକ୍ଷିଣ ଯଜ୍ଞ କରିବେ । ୫ ।

ରାଜା ଯଦି ପରମ ଶ୍ରଦ୍ଧା ଅବଲମ୍ବନ ପୂର୍ବକ ପ୍ରତିଦିନ ଦାନ କରିବେ, ଏବଂ ବ୍ରାହ୍ମଣଗଣ ଯଦି ତାହା ପ୍ରତିଗ୍ରହ କରିବେ, ତେବେ ତାହା ପରମ ପବିତ୍ରଦାନ । ୬ । ରାଜା ବିବିଧ ଦ୍ରବ୍ୟ ଦାନ ଦ୍ୱାରା ସର୍ବଭୂତର ଅଭୟଦାତା, ସାଧୁ, ବେଦଜ୍ଞ, ଶୀଳ ସଦ୍‌ବୃତ୍ତ, ତପସ୍ୟାପରାୟଣ ବ୍ରାହ୍ମଣଗଣଙ୍କର ତୃପ୍ତି ସାଧନକରି ପରିଶେଷରେ ଯଜ୍ଞ ବିଷୟରେ ଯତ୍ନବ୍ରତ ହେବେ । ୭ ।

ବ୍ରାହ୍ମଣଗଣ ଯଦି ତୁମ୍ଭର ଦାନ ପ୍ରତିଗ୍ରହଣ ନ କରିବେ, ତେବେ ତୁମ୍ଭର ସୁକୃତ ହେବନାହିଁ, ଅତଏବ ସୁକୃତ ନିମିତ୍ତ ଯଜ୍ଞକର ଏବଂ ସାଧୁଗଣଙ୍କୁ ଦକ୍ଷିଣାଯୁକ୍ତ ସୁସ୍ୱାଦୁ ଅନ୍ନ ସଂପ୍ରଦାନ କର । ୮ । ଦାନ କର୍ମଦ୍ୱାରା ଆପଣାକୁ ଯଜ୍ଞକର୍ତ୍ତା ଓ ଦାତାବୋଲି ଜାଣିବ । କାରଣ ଦାନରେ ଯଜ୍ଞାଦି ଅନ୍ତର୍ଭୂତ । ଯାଯଜୂକ ବ୍ରାହ୍ମଣଗଣଙ୍କୁ ପୂଜା କରିବ ଏବଂ ସେହିମାନଙ୍କୁ ଦାନକଲେ ତତ୍‌କୃତ ଯଜ୍ଞରେ ତୁମ୍ଭେ ଶ୍ରେୟଲାଭ କରିବା ବିଷୟରେ ଅଂଶଭାଗୀ ହେବ । ଯେଉଁମାନେ ପ୍ରଜାବନ୍ତବ୍ୟକ୍ତି ଅର୍ଥାତ୍ ପୁତ୍ରପୌତ୍ରାଦିଯୁକ୍ତ ବହୁକର୍ମକାରୀ ବ୍ରାହ୍ମଣଗଣଙ୍କୁ ଭରଣ କରିବେ, ତଦ୍ୱାରା ସେମାନେ ପ୍ରଜାପତିଙ୍କ ସଦୃଶ ପ୍ରଜାବାନ୍ ହେବେ । ୧୦ । ସାଧୁଗଣ କେବଳ ସର୍ବପ୍ରକାର ସାଧୁ ଧର୍ମକୁ ସଂବର୍ଦ୍ଧନ କରନ୍ତି । ଅତଏବ ଯେଉଁ ସମର୍ଥ ନର

ବହୁ ଉପକାର କରିଥାଆନ୍ତି, ସେହିମାନଙ୍କୁ ସର୍ବସ୍ୱଦ୍ୱାରା ରାଜାଙ୍କର ଭରଣ କରିବାର ବିଧେୟ । ୧୧ ।

ହେ ଭରତବଂଶାବତଂସ ! ଯୁଧିଷ୍ଠିର ! ତୁମ୍ଭେ ସମୃଦ୍ଧିଶାଳୀ ଅଟ, ଅତଏବ ଯଜମାନ ବ୍ରାହ୍ମଣଙ୍କୁ ଧେନୁ, ଶକଟବହନକ୍ଷେମ ବୃଷ, ଅନ୍ନ, ଛତ୍ର, ବସ୍ତ୍ର, ଉପାନହ ଯୁଗଳ, ଆଜ୍ୟ, ବିବିଧ ଖାଦ୍ୟଦ୍ରବ୍ୟ, ଅଶ୍ୱଯୁକ୍ତ ଯାନ ସମୂହ, ଗୃହ ଓ ଶଯ୍ୟା ସମୂହ ସଂପ୍ରଦାନ କର । ୧୩ । ହେ ଭାରତ ! ଯାଜ୍ଞିକମାନଙ୍କୁ ଏହି ସମୃଦ୍ଧି ସମ୍ପନ୍ନ ବିଷୟ ଦାନକରିବାର ଉଚିତ ! ଯେଉଁ ବ୍ରାହ୍ମଣ କୌଣସି ଅଂଶରେ ନିନ୍ଦନୀୟ ନୁହନ୍ତି, ଏବଂ ପରିବାର ବର୍ଗଙ୍କୁ ଭରଣ ପୋଷଣ କରିବା ବିଷୟରେ ନିତାନ୍ତ ଅସମର୍ଥ ଅଟନ୍ତି, ରାଜସୂୟ ଓ ଅଶ୍ୱମେଧଯଜ୍ଞ ଅନୁଷ୍ଠାନ ପୂର୍ବକ ଗୋପନଭାବରେ ହେଉ କିମ୍ବା ପ୍ରକାଶ୍ୟରେ ହେଉ ସେମାନଙ୍କୁ ପ୍ରତିପାଳନ କରିବାର ବିଧେୟ । କ୍ଷତ୍ରିୟ ଗଣଙ୍କ ପକ୍ଷରେ ତାହା ଅଶ୍ୱମେଧ ଓ ରାଜସୂୟ ଯଜ୍ଞ ଅପେକ୍ଷା ଶ୍ରେଷ୍ଠ । ତୁମ୍ଭେ ଏହି ପ୍ରକାରରେ ପାପ ସମୂହରୁ ବିନିର୍ମୁକ୍ତ ଓ ପବିତ୍ରହୋଇ ସ୍ୱର୍ଗ ଲାଭ କରିବ । ତୁମ୍ଭେ ପୁନଶ୍ଚ କୋଷ ସଞ୍ଚୟ କରି ରାଜ୍ୟପାଳନ କରିବ । ତାହାଦ୍ୱାରା ପରଜନ୍ମରେ ଧନସମୂହ ଓ ବ୍ରାହ୍ମଣତ୍ୱ ପ୍ରାପ୍ତହେବ । ହେ ଭାରତ ! ତୁମ୍ଭେ ଆପଣାର ଓ ଅନ୍ୟବ୍ୟକ୍ତିମାନଙ୍କର ବୃତ୍ତି ରକ୍ଷାକର । ୧୭ ।

ତୁମ୍ଭେ ଭୃତ୍ୟ ସ୍ୱକୀୟ ଓ ପ୍ରଜାମାନଙ୍କୁ ପୁତ୍ରବତ୍ ପ୍ରତିପାଳନ କର । ହେ ଭାରତ ! ବ୍ରାହ୍ମଣଗଣଙ୍କ ବିଷୟରେ ତୁମ୍ଭର ସର୍ବଦା ଯୋଗକ୍ଷେମ ଥାଉ ଅର୍ଥାତ ସେମାନଙ୍କ ଜୀବିକା ନିର୍ବାହାର୍ଥେ ଅର୍ଥଦାନ କର ଓ ସେମାନଙ୍କୁ ରକ୍ଷଣାବେକ୍ଷଣ କର । ତୁମ୍ଭ ଜୀବନ ବ୍ରାହ୍ମଣ ଗଣଙ୍କ ନିମିତ୍ତ ବ୍ୟାପୃତ ହେଉ ଅର୍ଥାତ୍ ତୁମ୍ଭର ଜୀବିତ କାଳ ବ୍ରାହ୍ମଣମାନଙ୍କ ହିତସାଧନ କରି ଅତିବାହିତ ହେଉ । ୧୮ ।

ସେମାନଙ୍କୁ ପ୍ରତି ପାଳନ କରିବା ନିମିତ୍ତ ତୁମ୍ଭେ କଦାପି ବିରତ ହେବନାହିଁ । ତୁମ୍ଭର ଯେଉଁ ଧନରାଶି ଅଛି, ତାହା ତୁମ୍ଭର ନୁହେ, ତାହା କେବଳ ବ୍ରାହ୍ମଣମାନଙ୍କ ଧନ । ୧୯ । ନିରନ୍ତର ସମ୍ପତ୍ତିସହବାସ ମନୁଷ୍ୟଙ୍କୁ ଦର୍ପଯୁକ୍ତ ଓ ମୋହଗ୍ରସ୍ତ କରେ । ବ୍ରାହ୍ମଣଗଣ ବିମୂଢ଼ ହେଲେ

ତାହାଙ୍କର ନିଶ୍ଚୟ କର୍ମନଷ୍ଟ ହୁଏ । ଧର୍ମ ପ୍ରଣଷ୍ଟ ହେଲେ ପ୍ରାଣିଗଣଙ୍କର ଅଭାବ ହୁଏ ସଂଶୟ ନାହିଁ । ୨୦ । ଯେଉଁ ରାଜା ସଂଗ୍ରହ ପରାୟଣ ବ୍ୟକ୍ତି-ଗଣଙ୍କୁ ଧନ ପ୍ରଦାନ କରି ପରିଶେଷରେ ଯଜ୍ଞ ନିମିତ୍ତ ସେହି ରାଜ୍ୟରୁ ଧନ ଆନୟନ କରି, ଏହିକଥା କହି ରାଷ୍ଟ୍ରଲୋପ କରନ୍ତି ଏବଂ ଯେ ଆଜ୍ଞାନୁସାରେ ଧନିଗଣ କର୍ତ୍ତୃକ ଭୟ ହେତୁରୁ ପ୍ରଦତ୍ତ ସେହି ଅତି ଦାରୁଣ ଧନଗ୍ରହଣ ପୂର୍ବକ ଯଜ୍ଞ କରନ୍ତି, ସାଧୁଗଣ ତାହାଙ୍କର ସେହି ଯଜ୍ଞକୁ ପ୍ରଶଂସା କରନ୍ତି ନାହିଁ । ୨୨ ।

ଯେଉଁ ଅତି ସମୃଦ୍ଧିଶାଳୀ ବ୍ୟକ୍ତିଗଣ ଯେଉଁପରି ପୀଡ଼ିତ ନ ହୋଇ ଅନୁକୂଳ ଭାବରେ ଦାନ କରନ୍ତି, ତାଦୃଶ ଉପାୟ ଦ୍ୱାରା ଧନ ସଂଗ୍ରହକରି ସେହି ଧନରେ ଯଜ୍ଞ କରିବାର ବିଧେୟ, ପ୍ରଜା ପୀଡ଼ନ ପୂର୍ବକ ଯଜ୍ଞ କରିବାର ଉଚିତ ନୁହେ । ୨୩ । ପ୍ରଜାଗଣଙ୍କର ହିତକାରକ ନୃପତି ଯେତେବେଳେ ପ୍ରଜାଗଣ କର୍ତ୍ତୃକ ଧନଦ୍ୱାରା ଅଭିଷିକ୍ତ ହେବେ ତେତେବେଳେ ସେ ବହୁ ଦକ୍ଷିଣ ମହାଯଜ୍ଞ ଦ୍ୱାରା ଯାଗ କରିବେ । ୨୪ ।

ବୃଦ୍ଧ, ବାଳକ ଓ କୃପାପାତ୍ର, ଅନ୍ଧ ଏହିମାନଙ୍କ ଧନ ରକ୍ଷା କରିବାର ଉଚିତ । ଅନାବୃଷ୍ଟି ସମୟରେ କୂପୋଦକ ଦ୍ୱାରା ନିଷ୍ପାଦିତ ଧାନ୍ୟକୁ ଉପଜୀବ୍ୟ କରି ଯେଉଁମାନେ କାଳ ହରଣ କରନ୍ତି; ସେମାନଙ୍କର ଓ ରୋଦନକାରିଣୀ ସ୍ତ୍ରୀଙ୍କର ଧନ ଯଜ୍ଞନିମିତ୍ତ ହରଣ କରିବାର ଉଚିତ ନୁହେ । ୨୫ । ଯେଉଁ ରାଜା କୃପଣପରି ବ୍ୟବହାର କରନ୍ତି, ସେହି ବ୍ୟବହାର ତାହାଙ୍କର ରାଜଶ୍ରୀକୁ ବିନଷ୍ଟ କରେ । ଅତଏବ ରାଜା ଅତି ଉତ୍କୃଷ୍ଟ ଭୋଗ୍ୟବସ୍ତୁ ଦାନ କରିବେ ଏବଂ ସାଧୁଗଣଙ୍କର କ୍ଷୁଧା ଓ ଭୟ ଭଞ୍ଜନ କରିବେ । ୨୬ ।

ବାଳକଗଣ ଯେଉଁମାନଙ୍କର ସୁସ୍ୱାଦୁ ଭୋଜ୍ୟବସ୍ତୁ ସମୂହ କେବଳ ଦର୍ଶନ କରନ୍ତି କଦାପି ତାହା ଲାଭ କରିବାକୁ ଅଥବା ଯଥାବିଧି ଭୋଜନ କରିବାକୁ ସମର୍ଥ ନୁହନ୍ତି, ତାହା ଅପେକ୍ଷା କେଉଁ ପାପ ଅଧିକତର ଅଛି ? ୨୭ । ଯଦି ତୁମ୍ଭ ରାଜ୍ୟରେ ତାଦୃଶ ବିଦ୍ୱାନ୍ ବ୍ରାହ୍ମଣ କ୍ଷୁଧାଦ୍ୱାରା ଅତିଶୟ କାତର ହେବେ ତେବେ ତୁମ୍ଭେ ଅତିଶୟ ପାପ କରି ଭ୍ରୂଣହତ୍ୟା

ଅପରାଧକୁ ପ୍ରାପ୍ତ ହେବେ । ୨୮ । ଶିବରାଜା ଏହିକଥା କହି ଅଛନ୍ତି ଯେ, ଯେଉଁ ରାଜାଙ୍କ ରାଜ୍ୟରେ ବ୍ରାହ୍ମଣ ଅଥବା ଅନ୍ୟ କୌଣସି ନର କ୍ଷୁଧାରେ ଅବସନ୍ନ ହୁଅନ୍ତି, ସେହି ନୃପତିଙ୍କ ଜୀବନକୁ ଧିକ୍ । ୨୯ । ଯେଉଁ ରାଜାଙ୍କ ରାଜ୍ୟରେ ସ୍ନାତକ ବ୍ରାହ୍ମଣ କ୍ଷୁଧାରେ ଅବସନ୍ନ ହୁଅନ୍ତି । ତାହାଙ୍କ ରାଜ୍ୟ ବୃଦ୍ଧି ହୁଏ ନାହିଁ ଏବଂ ଏକାବେଳେ ଅସଂଖ୍ୟ ନୃପତି ଏକତ୍ରିତ ହୋଇ ତାହାଙ୍କର ଶତ୍ରୁ ହୁଅନ୍ତି । ଯାହାଙ୍କ ରାଜ୍ୟରୁ ରୋଦନ ପରାୟଣ ପତି ପୁତ୍ରଗଣଙ୍କ ମଧ୍ୟରୁ ରୋଦନକାରିଣୀ ସ୍ତ୍ରୀ ଅପହୃତା ହୁଏ, ସେହି ନୃପତି ମୃତ ତେତେବେଳେ ସେ ଜୀବିତ ନୁହନ୍ତି । ୩୧ ।

ଅରକ୍ଷିତା, ହର୍ତ୍ତା ବଲେପ୍ତା ଅନାୟକ ଓ ନିର୍ଦ୍ଦୟ କଳି ଭୂଲ୍ଲନୃପ ଅର୍ଥାତ୍ ନୃପକୁଳାଙ୍ଗାରଙ୍କୁ ପ୍ରଜାଗଣ ଏକତ୍ରିତହୋଇ ହନନ କରନ୍ତୁ ।୩୨। "ଆମ୍ଭେ ତୁମ୍ଭମାନଙ୍କର ରକ୍ଷାକର୍ତ୍ତା" ଏହିକଥା କହି ଯେଉଁ ରାଜା ପ୍ରଜାମାନଙ୍କୁ ରକ୍ଷା ନ କରନ୍ତି ସେହି ଉନ୍ମତ୍ତ ଆତୁରନୃପଙ୍କୁ ପ୍ରଜାଗଣ ସଂହତ ହୋଇ କୁକୁର ସଦୃଶ ନିହତ କରିବେ ।୩୩।

ହେ ଭାରତ ! ପ୍ରଜାଗଣ ନୃପତି କର୍ତ୍ତୃକ ଅରକ୍ଷିତ ହୋଇ ଯାହା କିଛି ପାପ କରନ୍ତି, ରାଜା ତାହାଙ୍କର ଚତୁର୍ଥ ଭାଗ ଲଭ କରନ୍ତି । ୩୪ । କେହି କେହି କହନ୍ତି ରାଜା ପ୍ରଜାକୃତ ସମସ୍ତ ପାପ ପ୍ରାପ୍ତ ହୁଅନ୍ତି କେହି କେହି କହନ୍ତି ଅର୍ଦ୍ଧପାପ ପ୍ରାପ୍ତ ହୁଅନ୍ତି; ମନୁଙ୍କ ଅନୁଶାସନ ଶ୍ରବଣ କରି ଆମ୍ଭର ଅଭିମତ ଏହି ଯେ ରାଜା ପ୍ରଜାକୃତ ପାପର ଚତୁର୍ଥାଂଶ ଗ୍ରହଣ କରନ୍ତି ।୩୫। ହେ ଭାରତ ! ଆଉ ରାଜା କର୍ତ୍ତୃକ ସୁରକ୍ଷିତ ପ୍ରଜାଗଣ ଯେଉଁ ସବୁ ଶୁଭକର୍ମ କରନ୍ତି, ରାଜା ସେହି ଶୁଭକର୍ମ ଜନିତ ପୁଣ୍ୟର ଚତୁର୍ଥ ଭାଗ ପ୍ରାପ୍ତ ହୁଅନ୍ତି । ହେ ଯୁଧିଷ୍ଠିର ! ତୁମ୍ଭେ ଜୀବିତ ଥାଅ ପ୍ରଜାଗଣ ତୁମ୍ଭର ଅନୁଜୀବୀ ହେଉନ୍ତୁ । ଯେଉଁପରି ପ୍ରାଣିଗଣ ବର୍ଷଣଶୀଳ ମେଘର, ପକ୍ଷିଗଣ ବୃହତ୍ ବୃକ୍ଷର, ରାକ୍ଷସଗଣ କୁବେରଙ୍କର, ଅମରଗଣ ମହେନ୍ଦ୍ରଙ୍କର ଅନୁଜୀବୀ ହୁଅନ୍ତି; ସେହିପରି ଜ୍ଞାତି ଓ ସହୃଦ୍‌ଗଣ ତୁମ୍ଭର ଅନୁଜୀବୀ ହେଉନ୍ତୁ । ୩୮ ।



# ଅଧ୍ୟାୟ—୬୨

ଯୁଧିଷ୍ଠିର କହିଲେ, ଏହାଦେଯ଼, ଏହା ଦାତବ୍ୟ, ଶ୍ରୁତି ଏହିପରି ଅତି ଆଦର ପୂର୍ବକ ଦାନରବଧି କହନ୍ତି, ନୃପତିଗଣ ଅସଂଖ୍ୟ ବ୍ୟକ୍ତିମାନଙ୍କ କୁଟୁମ୍ବ ଭରଣ କରନ୍ତି, ସେମାନଙ୍କର କେଉଁ ଦାନ ସର୍ବୋତ୍କୃଷ୍ଟ ? ୧ ।

ଭୀଷ୍ମ କହିଲେ, ସମସ୍ତଦାନ ଅପେକ୍ଷା ଭୂମିଦାନ ଉତ୍କୃଷ୍ଟ, ଅଚଳା ଏବଂ ଅକ୍ଷୟ଼ଭୂମି ଉତ୍ତମ କାମ ସମୂହକୁ ଦାନକରେ । ବସ୍ତ୍ର, ରତ୍ନ, ପଶୁ, ବ୍ରୀହି, ଯବ ପ୍ରଭୃତିକୁ ପୃଥିବୀ ଦୋହନ କରେ, ଅତଏବ ଭୂମିଦାତା ସର୍ବପ୍ରାଣୀଙ୍କମଧ୍ୟରେ ସର୍ବଦା ବର୍ଦ୍ଧନଶୀଳ ହୁଅନ୍ତି ।

ହେ ଯୁଧିଷ୍ଠିର ! ଇହଲୋକରେ ଭୂମି ଯାବତ୍‌କାଳ ପର୍ଯ୍ୟନ୍ତ ବର୍ତ୍ତମାନ ଥାଏ, ତାବତ୍‌କାଳ ପର୍ଯ୍ୟନ୍ତ ଭୂମିଦାତା ବର୍ଦ୍ଧିତ ହେଉଥାଆନ୍ତି । ଅତଏବ ଭୂମିଦାନ ଅପେକ୍ଷା ଅନ୍ୟ କୌଣସି ଦାନ ଶ୍ରେଷ୍ଠ ନୁହେ । ୪ । ଆମ୍ଭେମାନେ ଶୁଣିଅଛୁଁ ଯେ ଯେଉଁମାନେ ଭୂମିଦାନ କରନ୍ତି, ସେମାନେ ସମସ୍ତେ ଅତି ଅଳ୍ପମାତ୍ର ଭୂମିଦାନ କରିଥାଆନ୍ତି, ଦାତାମାନେ ଯେଉଁ ଭୂମିଦାନ କରିଥାଆନ୍ତି ତାହା ଗ୍ରହୀତାଗଣ ଭୋଗ କରନ୍ତି । ନରଗଣ ଇହଲୋକ ଓ ପରଲୋକରେ ନିଜକର୍ମକୁ ଉପଜୀବ୍ୟକରି ଜୀବନ ଯାପନ କରନ୍ତି, ହେ ରାଜଶ୍ରେଷ୍ଠ ! ଯେଉଁମାନେ ଏହି ଅକ୍ଷୟ଼ ଭୂମିକୁ ଦକ୍ଷିଣା ସ୍ୱରୂପ ଦାନ କରନ୍ତି ସେହିମାନେ ପୁନଶ୍ଚ ମନୁଷ୍ୟତ୍ୱ ପ୍ରାପ୍ତହୋଇ ପୃଥିବୀପତି ହୁଅନ୍ତି ।୭।

ଧର୍ମଶାସ୍ତ୍ରରେ ନିଶ୍ଚୟ଼ କରାଯାଇଅଛି ଲୋକମାନେ ଯାଦୃଶ ଦାନ କରନ୍ତି ତାଦୃଶ ଭୋଗ କରନ୍ତି । ସଂଗ୍ରାମରେ ତନୁତ୍ୟାଗ କରିବ ଅଥବା ଏହି ଭୂମିଦାନ କରିବ । ପଣ୍ଡିତମାନେ ଏହି କାର୍ଯ୍ୟକୁ କ୍ଷତ୍ରିୟ଼ବନ୍ଧୁ-ମାନଙ୍କର ପରମ-ଶ୍ରୀ ବୋଲି କହନ୍ତି । ପ୍ରଦତ୍ତ ପୃଥିବୀ ଦାତାଙ୍କୁ ପବିତ୍ର କରେବୋଲି ଆମ୍ଭେମାନେ ଶୁଣିଅଛୁଁ । ୯ ।

ପାପାଚାରୀ, ବ୍ରହ୍ମଘ୍ନ ଓ ମିଥ୍ୟାବାଦୀ—ଏହି ମନୁଷ୍ୟମାନଙ୍କୁ ପୃଥିବୀ କେବଳ ପାଦଦ୍ୱାରା ପ୍ଳାବିତ କରନ୍ତି ଏବଂ ସେହି କେବଳ ସେମାନଙ୍କୁ

ପାପରୁ ମୁକ୍ତ କରନ୍ତି । ୧୦ । ସାଧୁଗଣ ପାପାତ୍ମର ନୃପତିମାନଙ୍କର ଭୂମିଦାନକୁ କେବଳ ପ୍ରତିଗ୍ରହ କରନ୍ତି । ଅନ୍ୟଧନ ଗ୍ରହଣ କରିବାକୁ ଇଚ୍ଛା କରନ୍ତି ନାହିଁ । ପୃଥିବୀ ସମସ୍ତଙ୍କର ପବିତ୍ର କରିଣୀ ଓ ଜନନୀ, ପୃଥିବୀ ଦେବୀଙ୍କର "ପ୍ରିୟଦତ୍ତା" ଏହି ସନାତନ ଗୂଢ଼ନାମ ଅଛି, ପ୍ରିୟ କର୍ତ୍ତୃକ ଦତ୍ତା ଅଥବା ପ୍ରିୟ ବ୍ୟକ୍ତିଙ୍କ ନିମିତ୍ତ ଦତ୍ତା ଏହି ଉଭୟବିଧ ଅର୍ଥ ଅନୁସାରେ ଯେଉଁ ବ୍ୟକ୍ତି ଏହାଙ୍କୁ ଦାନ କରନ୍ତି କିମ୍ବା ପ୍ରତିଗ୍ରହ କରନ୍ତି ସେହିମାନେ ଏହାଙ୍କର ପ୍ରିୟ ହୁଅନ୍ତି । ଅତଏବ ତୁମ୍ଭେ ପୃଥିବୀଦାନକରି ଭୂଦେବୀଙ୍କର ପ୍ରଥମ ପ୍ରିୟ ହୁଅ । ୧୨ ।

ପୃଥିବୀରେ ଯେଉଁ ରାଜା ବିଦ୍ୱାନବ୍ୟକ୍ତିଙ୍କୁ ଭୂମିଦାନ କରନ୍ତି, ସେହିରାଜା ଇହଲୋକରେ ପୃଥିବୀ ମଧ୍ୟରେ ଅଭିଳଷିତ ରାଜ୍ୟ ପ୍ରାପ୍ତ ହୁଅନ୍ତି । ସେହି ଦାତା ପୁନଶ୍ଚ ଜନ୍ମାନ୍ତର ଲାଭକରି ରାଜାଙ୍କ ସଦୃଶ ହୁଅନ୍ତି ସଂଶୟ ନାହିଁ । ଅତଏବ ହେ ପାର୍ଥିବ ! ପୃଥିବୀ ପ୍ରାପ୍ତହେବାମାତ୍ରେ ତାହା ବିପ୍ରଙ୍କୁ ଦାନ କରିବାର ବିଧେୟ । ୧୪ । ଯେ ଭୂମିପତି ନୁହନ୍ତି, ସେ କଦାପି ଭୂମିରେ ଅଧିଷ୍ଠାନ କରିବାକୁ ସମର୍ଥ ହୁଅନ୍ତି ନାହିଁ, ଅର୍ଥାତ୍ ଭୂମିଦାନ କରିବାକୁ ସମର୍ଥ ହୁଅନ୍ତି ନାହିଁ । ଅପାତ୍ରବ୍ୟକ୍ତିଙ୍କୁ ଦାନ କରିବାର ଉଚିତ ନୁହେଁ, ଏବଂ ଅପାତ୍ର ବ୍ୟକ୍ତିଙ୍କର ଭୂମିମଧ୍ୟ ଗ୍ରହଣ କରିବାର ଉଚିତ ନୁହେଁ । ନିଜ ପ୍ରଦତ୍ତ ପ୍ରଦେଶରେ ବିଚରଣ କରିବାର ଅନୁଚିତ । ୧୫ ।

ଯେଉଁ ଅନ୍ୟ ବ୍ୟକ୍ତିମାନେ ଭୂମିଲାଭ ବିଷୟରେ ଇଚ୍ଛୁକ ହେବେ, ସେହିମାନେ ଏହିପରି କରିବେ ସଂଶୟ ନାହିଁ । ଯେଉଁବ୍ୟକ୍ତି ଅନ୍ୟାୟରେ ସାଧୁଲୋକଙ୍କ ଭୂମି ଆଦାନ କରନ୍ତି, ସେ କଦାପି ଭୂଭିଲାଭ କରି ପାରନ୍ତି ନାହିଁ । ୧୬ । ସାଧୁଗଣଙ୍କୁ ଭୂମିଦାନକଲେ ଦାତା ପରଜନ୍ମରେ ଉତ୍କୃଷ୍ଟ ଭୂମି ପ୍ରାପ୍ତ ହୁଅନ୍ତି । ଧର୍ମାତ୍ମା ମନୁଷ୍ୟ ଇହଲୋକ ଓ ପରଲୋକରେ ଉତ୍କୃଷ୍ଟ ଯଶ ପ୍ରାପ୍ତ ହୁଅନ୍ତି । ୧୭ ।

ହେ ରାଜନ୍ ! ବିପ୍ରଗଣ ଯେଉଁ ସାଧୁଙ୍କ ଭୂମିକୁ ସର୍ବଦା ପ୍ରଶଂସା କରନ୍ତି, ଅର୍ଥାତ୍ ଅମୁକଙ୍କ ପ୍ରଦତ୍ତଭୂମିରେ ବାସ କରିଅଛୁଁ, ସର୍ବଦା ଏହିପରି କହନ୍ତି ତାହାଙ୍କ ଶତ୍ରୁଗଣ ବସୁନ୍ଧରାକୁ ପ୍ରଶଂସା କରନ୍ତି ନାହିଁ ଅର୍ଥାତ୍

ଆକ୍ରମଣ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୧୮ । ପୁରୁଷ ଜୀବିକା ନିମିତ୍ତ କ୍ଲିଷ୍ଟ ହୋଇ ଯାହା କିଛି ପାପକରନ୍ତି, ଗୋଚର୍ମ ପରିମାଣ ଭୂମିଦାନ ଦ୍ୱାରା ସେହି ପାପରୁ ପବିତ୍ର ହୁଅନ୍ତି । ୧୯ । ଯେଉଁ ନରପତିଗଣ ସଂକୁଳକର୍ମ ଅଥବା ଭୟଙ୍କର କର୍ମ କରନ୍ତି, ସେମାନଙ୍କ ନିକଟରେ ପବିତ୍ର ସର୍ବୋତ୍କୃଷ୍ଟ ଭୂମି-ଦାନର ବିଷୟ କୀର୍ତ୍ତନ କରିବାର ବିଧେୟ । ୨୦ ।

ପୁରାତନ ମନୁଷ୍ୟଗଣ କହୁଥାଆନ୍ତି ଯେ ଯେଉଁବ୍ୟକ୍ତି ଅଶ୍ୱମେଧଯାଗ କରନ୍ତି ଓ ଯେଉଁବ୍ୟକ୍ତି ସାଧୁବ୍ୟକ୍ତିଙ୍କୁ ଭୂମିଦାନ କରନ୍ତି ସେହି ଉଭୟବ୍ୟକ୍ତିଙ୍କ ମଧ୍ୟରେ ଅଳ୍ପମାତ୍ର ପ୍ରଭେଦ ରହେ । ୨୧ । ପଣ୍ଡିତଗଣ ଅନ୍ୟାନ୍ୟ ପୁଣ୍ୟ କର୍ମ ଅନୁଷ୍ଠାନ କରି ତାହାର ଫଳଲାଭ ବିଷୟରେ ସଂଶୟ କରନ୍ତି, କିନ୍ତୁ ଉତ୍କୃଷ୍ଟ ଭୂମିଦାନର ଫଳଲାଭ ବିଷୟରେ ସେମାନଙ୍କର କଦାପି ଶଙ୍କା ହୁଏନାହିଁ । ୨୨ । ଯେଉଁ ମହାପ୍ରାଜ୍ଞବ୍ୟକ୍ତି ବସୁଧା ଦାନ କରନ୍ତି, ସେ ସୁବର୍ଣ୍ଣ, ରଜତ, ବସ୍ତ୍ର ଓ ମଣି ମୁକ୍ତା ପ୍ରଭୃତି ସମସ୍ତ ଧନଦାନର ଫଳ ପ୍ରାପ୍ତ ହୁଅନ୍ତି । ୨୩ ।

ଯେ ଭୂମିଦାନ କରନ୍ତି ସେ କୁଳୀନ, ସେ ପୁରୁଷ, ସେ ବନ୍ଧୁ, ସେ ପୁଣ୍ୟକାରୀ, ତପସ୍ୟା, ଯଜ୍ଞ, ଶ୍ରୁତ, ସତ୍ ସ୍ୱଭାବ, ଅଲୋଭ, ସତ୍ୟସନ୍ଧତା, ଓ ଗୁରୁଦେବିତ ପୂଜା, ଏହି ସମସ୍ତ ସତ କର୍ମର ଫଳ ଭୂମିଦାତାଙ୍କୁ ଅନୁଗତ ହୁଅନ୍ତି । ୨୪ । ଯେଉଁମାନେ ପ୍ରଭୁର ହିତାନୁଷ୍ଠାନରେ ନିରତ ହୋଇ ସମ୍ମୁଖ ଯୁଦ୍ଧରେ ପ୍ରାଣତ୍ୟାଗ ପୂର୍ବକ ବ୍ରହ୍ମଲୋକକୁ ଗମନ କରନ୍ତି, ସେମାନେ ମଧ୍ୟ ଭୂମିଦାତାଙ୍କୁ ଅତିକ୍ରମ କରି ପାରନ୍ତି ନାହିଁ । ୨୫ । ଜନନୀ ଯେଉଁପରି ନିଜ ସନ୍ତାନକୁ କ୍ଷୀର ଦାନ ଦ୍ୱାରା ପ୍ରତିପାଳନ କରନ୍ତି, ପୃଥିବୀ ସେହିପରି ସମସ୍ତ ରସଦ୍ୱାରା ଭୂମିଦାତା ଭୂପାଳଙ୍କୁ ପ୍ରତିପାଳନ କରନ୍ତି । ୨୬ ।

ମୃତ୍ୟୁ, କାଳଦଣ୍ଡ, ତମୋଗୁଣ, ସୁଦାରୁଣ ବହ୍ନି ଓ ଭୟଙ୍କର ପାପ ସମୂହ ଭୂମିଦାତାଙ୍କୁ ସ୍ପର୍ଶ କରି ପାରନ୍ତି ନାହିଁ । ୨୭ । ଯେ ଶାନ୍ତାତ୍ମା ଅର୍ଥାତ୍ ଶାନ୍ତ ପ୍ରକୃତି ହୋଇ ଭୂମିଦାନ କରନ୍ତି, ସେ ପିତୃଲୋକରେ ପିତୃଗଣଙ୍କୁ ଓ ଦେବଲୋକରେ ଦେବଗଣଙ୍କୁ ତୃପ୍ତ କରନ୍ତି । ୨୮ । କୃଶ, ମ୍ରିୟମାଣ ଓ ଦରିଦ୍ର ବ୍ରାହ୍ମଣଙ୍କୁ ବୃତ୍ତିକରି ଭୂମିଦାନକଲେ ମାନବ ଯଜ୍ଞ

ଫଳଭାଗୀ ହୁଅନ୍ତି । ୨୯ । ହେ ମହାଭାଗ ! ବତ୍ସପ୍ରିୟା ଧେନୁ ଯେଉଁପରି କ୍ଷୀରଧାରାବର୍ଷଣ କରି ବତ୍ସର ନିକଟକୁ ଯାଇ ତାହାକୁ ଦୁଗ୍ଧ ପ୍ରଦାନ କରେ, ପୃଥିବୀ ସେହିପରି ଭୂମିଦାତା ଭୂପତିଙ୍କୁ ଉଭୟଲୋକରେ ବିବିଧ ଭୋଗ ପ୍ରଦାନ କରନ୍ତି । ୩୦ । ଯେଉଁ ବ୍ୟକ୍ତି ଇହଜନ୍ମରେ ବ୍ରାହ୍ମଣଙ୍କୁ ଫଳକୃଷ୍ଟା ବୀଜସଂପନ୍ନା ଓ ଫଳ ପରିପୂର୍ଣ୍ଣା ଭୂମି ଅଥବା ଉତ୍କୃଷ୍ଟ ଗୃହଦାନ କରନ୍ତି, ସେ ପରଜନ୍ମରେ ସମସ୍ତଙ୍କର କାମନା ପୂର୍ଣ୍ଣକରି ପାରନ୍ତି । ୩୧ ।

ଯେଉଁ ବ୍ୟକ୍ତି ଆହିତାଗ୍ନି, ସର୍ବଦା ଯଜ୍ଞକାରୀ, ବୃତ୍ତିସମ୍ପନ୍ନ ବ୍ରାହ୍ମଣଙ୍କୁ ଭୂମିଦାନ କରନ୍ତି, ସେ କଦାପି ବିପଦଗ୍ରସ୍ତ ହୁଅନ୍ତି ନାହିଁ । । ୩୨ । ଚନ୍ଦ୍ରମା ଯେଉଁପରି ଦିନକୁଦିନ ବର୍ଦ୍ଧିତ ହୁଅନ୍ତି, ସେହିପରି ଭୂମିଦାନର ଫଳ ଅର୍ଥାତ୍ ପ୍ରଦତ୍ତ ଭୂମିରେ ଯେତେବାର ଶସ୍ୟ ହୁଏ ତେତେଗୁଣ ପରିବର୍ଦ୍ଧିତ ହୁଏ । ୩୩ । ପୁରାଣଜ୍ଞ ପଣ୍ଡିତଗଣ ଏହି ଭୂମି ଗୀତା କୀର୍ତ୍ତନ ଉପଲକ୍ଷରେ କହିଅଛନ୍ତି କି ଭୂଦେବୀ ସ୍ୱୟଂ କହନ୍ତି ଆମ୍ଭଙ୍କୁ ଦାନକର ଓ ଆମ୍ଭଙ୍କୁ ଗ୍ରହଣ କର । ଆମ୍ଭଙ୍କୁ ଦାନକଲେ ପୁନଶ୍ଚ ଆମ୍ଭଙ୍କୁ ପ୍ରାପ୍ତ ହେବ । କାରଣ ଇହଲୋକରେ ଯେଉଁ ବ୍ୟକ୍ତି ଯାହା ପ୍ରଦାନ କରନ୍ତି, ପରଲୋକରେ ସେ ତାହା ଲାଭ କରନ୍ତି ।

ମହାତ୍ମା ଜାମଦଗ୍ନ୍ୟ ଏହି ଭୂମିଗୀତାକୁ ଶ୍ରବଣକରି କାଶ୍ୟପଙ୍କୁ ଭୂମିଦାନ କରିଥିଲେ । ୩୫ । ଯେଉଁ ବ୍ରାହ୍ମଣ ବେଦ ସଦୃଶ ଏହି ଭୂମିଗୀତାକୁ ଅବଗତ ହୁଅନ୍ତି ଅଥବା ଶ୍ରାଦ୍ଧକାଳରେ ଏହା ପାଠ କରନ୍ତି, ସେ ନିଶ୍ଚୟ ବ୍ରହ୍ମଲୋକ ପ୍ରାପ୍ତ ହୁଅନ୍ତି । ୩୬ । ଏହା କେବଳ ଅତି ପ୍ରବଳା ମନ୍ତ୍ରମୟୀ ମାରଣାର୍ଥ ଶକ୍ତି ସମୂହର ଓ ଘୋରତର ଅରିଷ୍ଟ ସମୂହର ଶମନ କରେ । ଯେ ଭୂମିଦାନପୂର୍ବକ ପ୍ରାୟଶ୍ଚିତ୍ତ କରନ୍ତି, ସେ ପୂର୍ବ ଓ ପଶ୍ଚାଦ୍‌ବର୍ତ୍ତୀ ଦଶ ପୁରୁଷଙ୍କୁ ପବିତ୍ର କରନ୍ତି । ୩୭ । ଏବଂ ଯେଉଁ ବ୍ୟକ୍ତି ଏହି ବେଦବାକ୍ୟକୁ ଅବଗତ ହୁଅନ୍ତି, ସେ ମଧ୍ୟ ଉଲ୍ଲିଖିତ ଦଶ ପୁରୁଷଙ୍କୁ ପବିତ୍ର କରନ୍ତି । ବିଶ୍ୱା-ନର ସମ୍ବନ୍ଧିନୀ ଭୂମି ସମସ୍ତ ପ୍ରାଣିଗଣର ପ୍ରକୃତି ରୂପରେ ସମ୍ମତା ହୋଇ ଅଛନ୍ତି । ୩୮ ।

ନୃପତିଙ୍କୁ ଅଭିଷେକ କରିବାମାତ୍ରେ ଏହି ଆଗମ ଶ୍ରବଣ କରାଇବାର ବିଧେୟ; ଭୂପତି ଏହା ଶ୍ରବଣ କଲେ ଭୂମିଦାନ କରିବେ । ସାଧୁମାନଙ୍କ

ନିକଟରୁ ଭୂମି ଗ୍ରହଣ କରିବେ ନାହିଁ । ଏହି ଭୂମିଦାନ ବିଷୟକ ଆଗମ ବ୍ରାହ୍ମଣଙ୍କ ନିମିତ୍ତ ଓ ନୃପତିଙ୍କ ନିମିତ୍ତ କୃତ ହୋଇଅଛି; ଏହି ବିଷୟରେ ସଂଶୟ ନାହିଁ । ଧର୍ମ କୁଶଳ ରାଜା ପ୍ରଥମରେ ଐଶ୍ୱର୍ଯ୍ୟ ସୂଚକ ଭୂମିଦାନ କରନ୍ତି । ଯେଉଁମାନଙ୍କ ରାଜା ଅଧର୍ମଜ୍ଞ ଓ ନାସ୍ତିକ ହୁଅନ୍ତି, ସେମାନେ ସୁଖ ଅନୁଭବ କରନ୍ତି ନାହିଁ ଓ ସୁଖରେ ଶୟନ କରନ୍ତି ନାହିଁ । ୪୧ । ନରଗଣ ସେହି ରାଜାଙ୍କ ଦୁଷ୍କରିହଦ୍ୱାରା ସର୍ବଦା ଅତିଶୟ ଉଦ୍‌ବିଗ୍ନ ହୁଅନ୍ତି । ଅନେକ ଯୋଗକ୍ଷେମ ମାନବଗଣ ତାହାଙ୍କର ସେହି ରାଜ୍ୟରେ ବାସ କରନ୍ତି ନାହିଁ । । ୪୨ । ଅନନ୍ତର ଯେଉଁମାନଙ୍କ ରାଜା ପ୍ରାଜ୍ଞ ଓ ଧର୍ମ ପରାୟଣ ହୁଅନ୍ତି, ସେହି ରାଜ୍ୟର ପ୍ରଜାଗଣ ପରମସୁଖ ଅନୁଭବ କରନ୍ତି ଓ ପରମ ସୁଖରେ ଶୟନ କରନ୍ତି । ୪୩ । ସେହି ନୃପତିଙ୍କ ପବିତ୍ର ରାଜ୍ୟ ଓ ଶୁଭକର୍ମଦ୍ୱାରା ମାନବଗଣ ନିର୍ବୃତ ହୁଅନ୍ତି । ଯୋଗକ୍ଷେମବୃତ୍ତି ଓ ନିଜକର୍ମ ଦ୍ୱାରା ବିଶେଷରେ ବର୍ଦ୍ଧମାନ ହୁଅନ୍ତି । ୪୪ ।

ଯେ ବସୁନ୍ଧରା ଦାନ କରନ୍ତି ସେ କୁଳୀନ, ସେ ପୁରୁଷ, ସେ ବନ୍ଧୁ, ସେ ପୁଣ୍ୟକାରୀ, ସେ ଦାତା ଏବଂ ସେ ବିକ୍ରାନ୍ତ ଅଟନ୍ତି । ୪୫ । ଯେଉଁ ନରଗଣ ବେଦଜ୍ଞ ବ୍ରାହ୍ମଣଙ୍କୁ ବହୁଳ ପୃଥିବୀଦାନ କରନ୍ତି ସେହି ମାନବ ସମୂହ ଭୂମଣ୍ଡଳରେ ତେଜୋରାଶିଦ୍ୱାରା ସୂର୍ଯ୍ୟସଦୃଶ ଦେଦୀପ୍ୟମାନ ହୁଅନ୍ତି । । ୪୬ । ପୃଥିବୀରେ ପ୍ରକୀର୍ଣ୍ଣ ଶସ୍ୟ ସମୂହ ଯେଉଁପରି ଅଙ୍କୁର ରୂପରେ ଉତ୍ପନ୍ନ ହୁଅନ୍ତି, ସେହିପରି ଭୂମିଦାନ ଦ୍ୱାରା ଅର୍ଜିତ କାମନା ସମୂହ ସମୁତ୍ପନ୍ନ ହୁଅନ୍ତି । ୪୭ । ଆଦିତ୍ୟ, ବରୁଣ, ବିଷ୍ଣୁ, ବ୍ରହ୍ମା, ଚନ୍ଦ୍ରମା, ହୁତାଶନ ଓ ଭଗବାନ୍ ଶୂଳପାଣି ଭୂମିଦାତାଙ୍କୁ ଅଭିନନ୍ଦନ କରନ୍ତି । ୪୮ ।

ପୁରୁଷଗଣ ଭୂମିରେ ଜନ୍ମଗ୍ରହଣ କରନ୍ତି ଏବଂ ଭୂମିରେ ନଷ୍ଟ ହୁଅନ୍ତି, ଅତଏବ ଏହି ଯେଉଁ ଜରାୟୁଜ ପ୍ରଭୃତି ଚତୁର୍ବିଧ ପ୍ରାଣୀ ଅଛନ୍ତି ସେ ପାର୍ଥିବ ଗୁଣମୟ ଅଟନ୍ତି । ୪୯ । ହେ ପୃଥିବୀପତେ ଜନେଶ୍ୱର ! ଏହି ପୃଥିବୀ ଜଗତର ମାତା ଏବଂ ଜଗତର ପିତା, ଅତଏବ ଏହାଙ୍କ ସଦୃଶ ଅନ୍ୟ କୌଣସି ଭୂତ ନୁହନ୍ତି । ୫୦ । ହେ ଯୁଧିଷ୍ଠିର ! ପ୍ରାଚୀନ ପଣ୍ଡିତଗଣ ବୃହସ୍ପତି ଓ ବାସବଙ୍କ ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରିଅଛନ୍ତି । ୫୧ । ଦେବରାଜ ଇନ୍ଦ୍ର ସୁମହତ ଦକ୍ଷିଣାଯୁକ୍ତ ଯଜ୍ଞ ଶତଦ୍ୱାରା

ଯାଗକର ବାଗ୍ମିଶ୍ରେଷ୍ଠ ବୃହସ୍ପତିଙ୍କୁ ପଚାରିଥିଲେ । ୫୨। ଦେବରାଜ କହିଲେ, ହେ ବକ୍ତୃ ପ୍ରବର ! ଭଗବନ୍ ! କେଉଁ ବସ୍ତୁଦାନଦ୍ୱାରା ସ୍ୱର୍ଗ ଅପେକ୍ଷା ସୁଖ ସମୃଦ୍ଧି ବୃଦ୍ଧି ହୁଏ ଏବଂ ଯେଉଁ ଦାନ ଉତ୍କୃଷ୍ଟ ଓ ଅକ୍ଷୟ ଅଟେ ତାହା ଆପଣ କହିବା ହେଉନ୍ତୁ । ୫୩ । ଭୀଷ୍ମ କହିଲେ, ଇନ୍ଦ୍ରଦେବ ଏହିପରି କହିବାରୁ ଅମର ପୁରୋହିତ ବୃହତ୍ ତେଜା ବୃହସ୍ପତି ଶତକ୍ରତୁଙ୍କୁ ପ୍ରତ୍ୟୁତ୍ତର ଦେଲେ । ୫୪ ।

ବୃହସ୍ପତି କହିଲେ, ହେ ବୃତ୍ରହନ୍ ! ମହାପ୍ରାଜ୍ଞନର ସୁବର୍ଣ୍ଣଦାନ, ଗୋଦାନ ଓ ଭୂମିଦାନ କରି ସର୍ବପ୍ରକାର ପାପରୁ ମୁକ୍ତ ହୁଅନ୍ତି । ୫୫ । ହେ ପ୍ରଭୋ ! ଦେବେନ୍ଦ୍ର ! ପଣ୍ଡିତଗଣ ଯେଉଁ ପରି କହିଥାଆନ୍ତି ତଦନୁସାରେ ଆମ୍ଭେ ଭୂମିଦାନ ଅପେକ୍ଷା ଅନ୍ୟ କୌଣସି ଦାନକୁ ବିଶିଷ୍ଟ ଓ ଶ୍ରେଷ୍ଠ ବୋଲି ଜ୍ଞାନ କରୁ ନାହୁଁ । ୫୬ । ହେ ବିବୁଧଶ୍ରେଷ୍ଠ ! ଯେଉଁ ସବୁ ସମରାଭିଳାଷୀ ଶୂରଗଣ ଯୁଦ୍ଧରେ ନିହତ ହୋଇ ସ୍ୱର୍ଗକୁ ଗମନ କରିଥାଆନ୍ତି, ସେମାନେ ସମସ୍ତେ ଭୂମିଦାତାଙ୍କୁ ଅତିକ୍ରମ କରିପାରନ୍ତି ନାହିଁ । ୫୭ । ପ୍ରଭୁଙ୍କ ନିଃଶ୍ରେୟସ ଅର୍ଥାତ୍ ମଙ୍ଗଳକାର୍ଯ୍ୟରେ ନିଯୁକ୍ତ ଓ ଯୁଦ୍ଧରେ ହତ ଯେଉଁ ବ୍ୟକ୍ତିମାନେ ପ୍ରାଣ ପରିତ୍ୟାଗ ପୂର୍ବକ ବ୍ରହ୍ମଲୋକକୁ ଗମନ କରି ମୁକ୍ତହୋଇ ଥାଆନ୍ତି, ସେମାନେ ମଧ୍ୟ ଭୂମିଦାତାଙ୍କୁ ଅତିକ୍ରମ କରି ପାରନ୍ତି ନାହିଁ । ୫୮ । ଯେଉଁ ମାନବ ଭୂମିଦାନ କରନ୍ତି, ସେ ଇହଲୋକରେ ପଞ୍ଚ ପୂର୍ବପୁରୁଷ ଓ ବସୁଧା-ଗତ ପରବର୍ତ୍ତୀ ଅନ୍ୟ ଛଅ ପୁରୁଷ ଏହି ଏକାଦଶ ପୁରୁଷଙ୍କୁ ପରିତ୍ରାଣ କରନ୍ତି । ୫୯ ।

ହେ ପୁରନ୍ଦର ! ଯେଉଁ ବ୍ୟକ୍ତି ରତ୍ନ ପରିପୂର୍ଣ୍ଣା ପୃଥିବୀ ଦାନ କରନ୍ତି, ସେ ସମସ୍ତ ପାପରୁ ମୁକ୍ତ ହୋଇ ସ୍ୱର୍ଗଲୋକରେ ପୂଜିତ ହୁଅନ୍ତି । ୬୦ । ହେ ରାଜନ୍ ! ସର୍ବକାମ ଓ ସର୍ବ ଗୁଣଯୁକ୍ତ ପ୍ରଭୂତ ଭୂମିଦାନ କଲେ, ନର ରାଜାଧିରାଜ ହୁଅନ୍ତି, ଅତଏବ ସେହିଦାନ ସର୍ବୋତ୍କୃଷ୍ଟ । ୬୧ । ହେ ବାସବ ! ଯେଉଁ ବ୍ୟକ୍ତି ସର୍ବକାମଯୁକ୍ତ ପୃଥିବୀକୁ ପ୍ରଦାନ କରନ୍ତି, ସେ ପୃଥିବୀ ସହିତ ଆମ୍ଭଙ୍କୁ ପ୍ରଦାନ କରନ୍ତି ବୋଲି ଏହିକଥା ସମସ୍ତ ପ୍ରାଣିଗଣ ଜାଣନ୍ତି ।୬୨। ହେ ସହସ୍ରାକ୍ଷ ! ଯେ ସର୍ବକାମ ଦୁଗ୍ଧା ଓ ସର୍ବକାମଗୁଣଯୁକ୍ତା ଧେନୁକୁ ଦାନ କରନ୍ତି, ସେହି

ମାନବ ସ୍ୱର୍ଗକୁ ଗମନ କରନ୍ତି । ୭୩ । ହେ ସୁରେନ୍ଦ୍ର ! ମଧୁ ଓ ଘୃତ ପ୍ରବାହିଣୀ, ଦଧି ଓ ଦୁଗ୍ଧ ବାହିନୀ ନଦୀ ସମୂହ ବସୁଧାପ୍ରଦ ମାନବଙ୍କୁ ତୃପ୍ତ କରନ୍ତି । ୭୪ । ଭୂପତି ଭୂମିଦାନ ହେତୁରୁ ସମସ୍ତ ପାପରୁ ମୁକ୍ତ ହୁଅନ୍ତି । ଭୂମିଦାନ ଅପେକ୍ଷା ଅନ୍ୟ କୌଣସି ଦାନ ଉତ୍କୃଷ୍ଟ ନୁହେ । ୭୫ ।

ଯେଉଁ ବ୍ୟକ୍ତି ଶସ୍ୟଦ୍ୱାରା ଜୟୁକର ସମୁଦ୍ରାନ୍ତ ପୃଥିବୀ ଦାନ କରନ୍ତି, ଏହି ପୃଥିବୀ ଯାବତ୍‌କାଳ ପର୍ଯ୍ୟନ୍ତ ଥିବେ ତାବତ୍ କାଳ ପର୍ଯ୍ୟନ୍ତ ଜନମାନେ ଏହି ସଂସାରରେ ତାହାଙ୍କ ନାମ କୀର୍ତ୍ତନ କରୁଥିବେ । ୭୬ । ହେ ପୁରନ୍ଦର ! ଯେଉଁ ବ୍ୟକ୍ତି ପବିତ୍ର ମୃଦୁରସ ଶାଳିନୀ ଭୂମିକୁ ଦାନ କରନ୍ତି, ତାହାଙ୍କର ଭୂମିଦାନ ଗୁଣୋପାର୍ଜିତ ଲୋକସମୂହ କ୍ଷୟ ହୁଏ ନାହିଁ । ୭୭ । ହେ ଶକ୍ର ! ଇହଲୋକରେ ସର୍ବଦା ଐଶ୍ୱର୍ଯ୍ୟ ଇଚ୍ଛୁକ ସୁଖାଭିଳାଷୀ ନୃପତି ବିଧି ଅନୁସାରେ ସର୍ବଦା ସତ୍ ପାତ୍ରରେ ଭୂମିଦାନ କରିବେ ।୭୮। ସର୍ପ ଯେଉଁପରି ସ୍ୱକୀୟ ଜୀର୍ଣ୍ଣ ଚର୍ମକୁ ପରିତ୍ୟାଗ କରେ, ସେହିପରି ମନୁଷ୍ୟ ପାପକର୍ମ କରି ସୁଦ୍ଧା ଦ୍ୱିଜାତିଙ୍କୁ ଭୂମିଦାନ କଲେ ସେହିପାପକୁ ପରିହାର କରନ୍ତି । ୭୯ ।

ହେ ଶକ୍ର ! ଯେଉଁ ନର ବସୁଧାଦାନ କରନ୍ତି ସେ ସାଗର, ସରିତ, ପର୍ବତ ଓ ଅରଣ୍ୟ ସମୂହ ଏହା ସବୁ ଦାନ କରନ୍ତି । ୮୦ । ଯେ ଭୂମିଦାନ କରନ୍ତି, ସେ ତଡ଼ାଗ, ଉଦପାନ, ସ୍ରୋତ, ସରୋବର, ସ୍ନେହ ଓ ସମସ୍ତରସ ଦାନ କରନ୍ତି । ୮୧ । ଯେ ବସୁଧା ଦାନ କରନ୍ତି, ସେ ବୀର୍ଯ୍ୟ ସମ୍ପନ୍ନ ଔଷଧି ସମୂହ, ପୁଷ୍ପଫଳ ଯୁକ୍ତ ତରୁ ସମୂହ, କାନନ ଓ ଉପଳ ସମନ୍ୱିତ ଶୈଳ ସମୂହକୁ ଦାନ କରନ୍ତି । ୮୨ । ଭୂମିଦାନ କରିବା ହେତୁରୁ ଯେଉଁ ଫଳ ଭୋଗ ହୁଏ, ଅଗ୍ନିଷ୍ଟୋମ ପ୍ରଭୃତି ଆପ୍ତ ଦକ୍ଷିଣ ଯଜ୍ଞ କଲେ ସୁଦ୍ଧା ମନୁଷ୍ୟ ତାଦୃଶ ଫଳ ଲାଭ କରି ପାରନ୍ତି ନାହିଁ । ୮୩ । ଭୂମିଦାତା ଦଶପୁରୁଷଙ୍କ-ଠାରେ ଅନୁଗ୍ରହ କରନ୍ତି ଓ ଭୂମିହର୍ତ୍ତା ଦଶ ପୁରୁଷଙ୍କୁ ନଷ୍ଟ କରନ୍ତି । ଯେ ପୂର୍ବ ପ୍ରଦତ୍ତ ଭୂମି ହରଣ କରନ୍ତି, ସେ ନରକଗାମୀ ହୁଅନ୍ତି । ୮୪ ।

ଯେ ଅଙ୍ଗୀକୃତ ହୋଇ ଦାନ ନ କରନ୍ତି ଏବଂ ଦାନକରି ପୁନଶ୍ଚ ତାହା ହରଣ କରନ୍ତି, ସେ ବରୁଣ ଦେବଙ୍କ ପାଶଦ୍ୱାରା ବଦ୍ଧହୋଇ ମୃତ୍ୟୁ-ଦେବଙ୍କ ଶାସନ ବଶରେ ପରିତପ୍ତ ହୁଅନ୍ତି । ୮୫ । ଯେଉଁମାନେ ଆହିତାଗ୍ନି,

ସର୍ବ ଯଜ୍ଞକାରୀ, କୃଶବୃତ୍ତି, ଅତିଥିପ୍ରିୟ ଦ୍ୱିଜବରଙ୍କୁ ସେବା କରନ୍ତି, ସେହିମାନେ ଯମଦେବଙ୍କ ନିକଟକୁ ଗମନ କରନ୍ତି ନାହିଁ । ୭୬ । ହେ ପୁରନ୍ଦର ! ନୃପତି ବ୍ରାହ୍ମଣଗଣଙ୍କ ନିକଟରେ ଋଣ ଶୂନ୍ୟ ହେବେ, ଇତର ବର୍ଣ୍ଣସମୂହ ମଧ୍ୟରେ କୃଶ ଓ ଦୁର୍ବଳମାନଙ୍କୁ ପରିତ୍ରାଣ କରିବେ । ୭୭ । ହେ ସୁରଶ୍ରେଷ୍ଠ ! ତ୍ରିଦଶେଶ୍ୱର ! କୃଶ ବୃତ୍ତି ବ୍ରାହ୍ମଣଙ୍କୁ ଅନ୍ୟ ବ୍ୟକ୍ତି ଯେଉଁ ଭୂମିଦାନ କରିଥିବେ, ତାହା କଦାପି ଗ୍ରହଣ କରିବାର ବିଧେୟ ନୁହେ । ୭୮ ।

ଦୀନ ହୀନ ଅବସନ୍ନ ବ୍ରାହ୍ମଣଗଣଙ୍କର ଭୂମି ହରଣ କଲେ ସେମାନଙ୍କର ଯେଉଁ ଲୋତକ ପତିତ ହୁଏ, ତାହା ତିନ ପୁରୁଷ ପର୍ଯ୍ୟନ୍ତ ବଂଶ ବିନଷ୍ଟ କରେ । ୭୯ । ହେ ସହସ୍ରାକ୍ଷ ! ଯେଉଁ ବ୍ୟକ୍ତି ରାଜ୍ୟଚ୍ୟୁତ ଭୂପତିଙ୍କୁ ସଂସ୍ଥାପିତ କରନ୍ତି, ତାହାଙ୍କର ସ୍ୱର୍ଗରେ ବାସ ହୁଏ, ସେ ସେହିଠାରେ ପୂଜିତ ହୁଅନ୍ତି । ୮୦ । ଯେ ଇକ୍ଷୁ ସମୂହସଂବୃତା, ଯବଗୋଧୂମ ଶାଳମୀ, ଗୋ, ଅଶ୍ୱ ପ୍ରଭୃତି ବାହନ ସମନ୍ୱିତା, ବାହୁବଳଦ୍ୱାରା ଉପାର୍ଜିତା, ରତ୍ନଗର୍ଭା ଏବଂ ସର୍ବରତ୍ନ ପରିଚ୍ଛଦାଭୂମି ଦାନ କରନ୍ତି, ତାହାଙ୍କର ଅକ୍ଷୟ ଲୋକ ସମୂହ ଲାଭ ହୁଏ । ତାହାଙ୍କର ସେହି ଦାନ ଭୂମିଯଜ୍ଞ ଅଟେ । ୮୧ । ଯେ ବସୁନ୍ଧରା ଦାନ କରନ୍ତି, ସେ ସମସ୍ତ ପାପ ପରିତ୍ୟାଗ ପୂର୍ବକ ରଜୋ ବିହୀନ ଓ ସାଧୁ ସମ୍ମତ ହୋଇ ଉତ୍ତମ ଲୋକରେ ସାଧୁମାନଙ୍କ ସହିତ ପୂଜିତ ହୁଅନ୍ତି । ୮୩ । ହେ ଶକ୍ର ! ଜଳମଧ୍ୟରେ ନିପତିତ ତୈଳବିନ୍ଦୁ ଯେଉଁପରି ବିସ୍ତୀର୍ଣ୍ଣ ହୁଏ, ସେହିପରି ଭୂମିଦାନ ଜନିତ ପୁଣ୍ୟ ପ୍ରତି ଶସ୍ୟରେ ବିଶେଷରୂପେ ବର୍ଦ୍ଧିତ ହୁଏ । ୮୪ । ହେ ଦେବରାଜ ! ଯେଉଁ ସମସ୍ତ ସମର ଶୋଭାକର ଶୂରବର ମହୀପାଳ ସଂଗ୍ରାମର ଅଗ୍ର ଭାଗରେ ଅଭିମୁଖ ହୋଇ ନିହତ ହୁଅନ୍ତି, ସେମାନେ ବ୍ରହ୍ମଲୋକକୁ ଗମନ କରନ୍ତି । ୮୫ ।

ହେ ଦେବେନ୍ଦ୍ର ! ସେମାନଙ୍କ ନିକଟରେ ଯେଉଁ ଧିର ଦିବ୍ୟମାଲ୍ୟ ବିଭୂଷିତ, ନୃତ୍ୟଗୀତ ନିପୁଣ ନାରୀଗଣ ଉପସ୍ଥିତ ହୁଅନ୍ତି, ସେହିମାନେ ସୁରପୁରରେ ଭୂମି ପ୍ରଦାତାଙ୍କୁ ସେହିପରି ଉପାସନା କରନ୍ତି । ୮୬ । ଯେଉଁ ବ୍ୟକ୍ତି ଇହଲୋକରେ ଦ୍ୱିଜଗଣଙ୍କୁ ବିଧିପୂର୍ବକ ଭୂମିଦାନ କରନ୍ତି, ସେ ସୁରପୁରରେ ଦେବତା ଓ ଗନ୍ଧର୍ବଗଣଙ୍କ ଦ୍ୱାରା ପୂଜିତହୋଇ ଯଥା ସୁଖରେ

ପ୍ରୀତ ହୁଅନ୍ତି । ୮୭ । ହେ ଦେବେନ୍ଦ୍ର ! ବ୍ରହ୍ମଲୋକରେ ଭୂମିଦାତାଙ୍କ ନିକଟରେ ଯେଉଁପରି ଦିବ୍ୟମାଲ୍ୟ ବିଭୂଷିତା ଶତ ଶତ ଅପ୍ସରାଗଣ ଉପସ୍ଥିତ ହୁଅନ୍ତି, ଭୂମିପ୍ରଦା ନରଙ୍କ ନିକଟରେ ସେହିପରି ସର୍ବଦା କୁସୁମ ସମୂହ ଉପସ୍ଥିତ ହୋଇଥାଆନ୍ତି । ଭୂମିଦାନ ହେତୁରୁ ଶଙ୍ଖ, ଭଦ୍ରାସନ, ଛତ୍ର, ଉତ୍କୃଷ୍ଟ ଅଶ୍ୱ, ଉତ୍ତମ ବାହନ, ପୁଷ୍ପ ସମୂହ, ହିରଣ୍ୟସମୂହ, ସର୍ବଦା ଅପ୍ରତିହତ ଆଜ୍ଞା, ଜୟଧ୍ୱନି ଓ ବସ୍ତ୍ର ସମୂହ ଉପନୀତ ହୋଇଥାଆନ୍ତି । ୯୦ ।

ହେ ପୁରନ୍ଦର ! ଭୂମିଦାନର ପୁଣ୍ୟଫଳ ସ୍ୱର୍ଗ, ହିରଣ୍ୟ, ପୁଷ୍ପଯୁକ୍ତ ଓଷଧି ସମୂହ, କୁଶ ଓ ସୁବର୍ଣ୍ଣ ଶାଦ୍ୱଳ ଯୁକ୍ତ । ଯେଉଁ ପୁରୁଷ ଭୂମିଦାନ କରନ୍ତି ସେ ଅମୃତ ପ୍ରସବିନୀ ଭୂମି ପ୍ରାପ୍ତ ହୁଅନ୍ତି । ୯୧ । ଭୂମିଦାନ ସଦୃଶ ଦାନ ନାହିଁ, ମାତାଙ୍କ ସଦୃଶ ଗୁରୁ ନାହାନ୍ତି, ସତ୍ୟ ସଦୃଶ ଧର୍ମ ନାହିଁ, ଦାନ ସଦୃଶ ନିଧି ନାହିଁ । ୯୨ । ଭୀଷ୍ମ କହିଲେ, ଦେବରାଜ ବାସବ ବୃହସ୍ପତିଙ୍କ ମୁଖରୁ ଏହି କଥା ଶ୍ରବଣ କରି ତେତେବେଳେ ତାହାଙ୍କୁ ଏହି ଧନରତ୍ନ ସମାକୀର୍ଣ୍ଣ ଭୂମଣ୍ଡଳ ପ୍ରଦାନ କରିଥିଲେ । ୯୩ । ଯେଉଁ ବ୍ୟକ୍ତି ଶ୍ରାଦ୍ଧକାଳରେ ଏହି ଭୂମିଦାନର ବିଷୟ ଶ୍ରବଣ କରନ୍ତି, ତାହାଙ୍କର ଶ୍ରାଦ୍ଧ-ଦତ୍ତ ଦ୍ରବ୍ୟ ରାକ୍ଷସ ଅଥବା ଅସୁରମାନଙ୍କ ଭାଗରେ କଳ୍ପିତ ହୁଏ ନାହିଁ । ୯୪ ।

ସେ ପିତୃଗଣଙ୍କୁ ଯାହା ଦାନ କରନ୍ତି, ତାହା ଅକ୍ଷୟ ହୁଏ, ସଂଶୟ ନାହିଁ । ଅତଏବ ପଣ୍ଡିତବ୍ୟକ୍ତି ଶ୍ରାଦ୍ଧକାଳରେ ଭୋଜନକାରୀ ବ୍ରାହ୍ମଣଗଣଙ୍କୁ ଏହା ଶ୍ରବଣ କରାଇବେ । ୯୫ । ହେ ଅନଘ ! ଭରତଶ୍ରେଷ୍ଠ ! ଆମ୍ଭେ ତୁମ୍ଭ ନିକଟରେ ଏହିପରି ସମସ୍ତଦାନ ମଧ୍ୟରେ ଉତ୍କୃଷ୍ଟ ଦାନର ବିଷୟ କହିଲୁଁ, ଆଉ କେଉଁ ବିଷୟ ଶ୍ରବଣ କରିବାକୁ ଅଭିଳାଷୀ ହେଉଅଛ ? ୯୬ ॥



# ଅଧ୍ୟାୟ—୬୩

ଯୁଧିଷ୍ଠିର କହିଲେ, ହେ ଭରତଶ୍ରେଷ୍ଠ ! ଇହଲୋକରେ ରାଜା କେଉଁ କେଉଁ ବିଷୟ ଦାନ କରିବାକୁ କାମନାକରି ଗୁଣାଧିକ ବ୍ରାହ୍ମଣମାନଙ୍କୁ ତାହା ସମ୍ପ୍ରଦାନ କରିବେ । ୧ । ବ୍ରାହ୍ମଣଗଣ କାହୁଁଶଦାନଦ୍ୱାରା ତତ୍କ୍ଷଣାତ୍ ତୁଷ୍ଟ ହୁଅନ୍ତି ? ତୁଷ୍ଟ ହୋଇ କଣ ପ୍ରଦାନ କରନ୍ତି ? ହେ ମହାବାହୋ ! ଆମ୍ଭ ନିକଟରେ ପୁଣ୍ୟଜନକ ସେହି ମହତ୍ ଫଳର ବିଷୟ କୀର୍ତ୍ତନ କରନ୍ତୁ । । ୨ । ହେ ରାଜନ୍ ! କେଉଁ ବିଷୟ ପ୍ରଦତ୍ତ ହେଲେ, ଇହଲୋକ ଓ ପର-ଲୋକରେ ତାହା ଫଳବାନ୍ ହୁଏ, ସେହିକଥା ଆମ୍ଭେ ଆପଣଙ୍କ ମୁଖରୁ ଶୁଣିବାକୁ ଅଭିଳାଷ କରୁଅଛୁଁ, ଆପଣ ତାହା ଆମ୍ଭଙ୍କୁ ବିସ୍ତାର କରି କହିବା ହେଉନ୍ତୁ । ୩ । ଭୀଷ୍ମ କହିଲେ, ପୂର୍ବେ ଆମ୍ଭେ ଏହି ବିଷୟ ଦେବଦର୍ଶନ ନାରଦଙ୍କୁ ପଚାରିଥିଲୁ; ସେ ଯେଉଁ କଥା କହିଥିଲେ, ତାହା ଆମ୍ଭେ କହୁଅଛୁଁ ଶ୍ରବଣ କର । ୪ ।

ନାରଦ କହିଲେ, ଦେବତା ଓ ଋଷିଗଣ ଅନ୍ନକୁ ପ୍ରଶଂସା କରନ୍ତି, ଲୋକଯାତ୍ରା ଏବଂ ବୁଦ୍ଧି ସବୁ ଅନ୍ନରେ ପ୍ରତିଷ୍ଠିତ ! ୫ । ଅନ୍ନଦାନ ସଦୃଶ ଅନ୍ୟ କୌଣସି ଦାନ ହୋଇନାହିଁ କି ହେବ ନାହିଁ, ସେହି କାରଣରୁ ନରଗଣ ଅନ୍ନଦାନ ବିଷୟରେ ବିଶେଷ ଇଚ୍ଛା କରନ୍ତି । ୬ । ହେ ପ୍ରଭୋ ! ଇହଲୋକରେ ଅନ୍ନ ବଳକାରକ, ପ୍ରାଣ ସମୂହ ଅନ୍ନରେ ପ୍ରତିଷ୍ଠିତ । ଏହି ସମସ୍ତ ବିଶ୍ୱମଣ୍ଡଳ ଅନ୍ନଦ୍ୱାରା ବିଧୃତ ହୋଇଅଛି । ୭ । ଇହଲୋକରେ ଅନ୍ନ ନିମିତ୍ତ ଲୋକମାନେ ଗୃହସ୍ଥ ହୁଅନ୍ତି ଏବଂ ଅନ୍ନ ହେତୁରୁ ଭିକ୍ଷୁକ ଓ ତାପସ ହୁଅନ୍ତି । ଅନ୍ନରୁ ପ୍ରାଣମାନେ ଜାତ ହୁଅନ୍ତି, ଏହା ପ୍ରତ୍ୟକ୍ଷ ଅଟେ, ଏହି ବିଷୟରେ ସଂଶୟ ନାହିଁ । ୮ ।

ଯେଉଁବ୍ୟକ୍ତି ଆପଣାର ଐଶ୍ୱର୍ଯ୍ୟ ଇଚ୍ଛା କରିବେ, ସେ କୁଟୁମ୍ବିଗଣଙ୍କୁ ପୀଡ଼ା ପ୍ରଦାନକରି ମହାତ୍ମା ଭିକ୍ଷୁକ ବାହ୍ମଣଙ୍କୁ ଦାନ କରିବେ । ଯେ ସଦ୍‌ବଂଶ ଜାତ ଯାଚକ ବ୍ରାହ୍ମଣଙ୍କୁ ଅନ୍ନଦାନ କରନ୍ତି, ସେ ଆପଣାର ପାରଲୌକିକ ଶ୍ରେଷ୍ଠ ନିଧିକ ବିଧାନ କରନ୍ତି । ୧୦ । ଗୃହସ୍ଥବ୍ୟକ୍ତି ଐଶ୍ୱର୍ଯ୍ୟ ଇଚ୍ଛାକଲେ ସ୍ନାତକ, ପଥିକ, ବୃଦ୍ଧ, ପୂଜ୍ୟ, ସହସା ଉପସ୍ଥିତ ଓ ଗୃହାଗତ ଅତିଥିଙ୍କୁ

ଅର୍ଚ୍ଚନା କରିବେ । ୧୧ । ହେ ରାଜନ୍ ! କ୍ରୋଧ ଓ ଔଦ୍ଧତ୍ୟ ପରିତ୍ୟାଗ ପୂର୍ବକ ସୁଶୀଳ ଓ ମତ୍ସର ଶୂନ୍ୟହୋଇ ଯେ ଅନ୍ନଦାନ କରନ୍ତି ସେ ସ୍ୱର୍ଗରେ ଓ ଇହଲୋକରେ ସୁଖପ୍ରାପ୍ତ ହୁଅନ୍ତି । ୧୨ । ଉପସ୍ଥିତ ଅତିଥିଙ୍କୁ ଅବମାନନା କରିବ ନାହିଁ ଏବଂ କଦାପି ତାହାଙ୍କୁ ପ୍ରତ୍ୟାଖ୍ୟାନ କରିବ ନାହିଁ । କାରଣ ଚଣ୍ଡାଳ ଅବା କୁକୁରକୁ ଅନ୍ନଦାନ କଲେ ସେହିଦାନର ଫଳ ବିନଷ୍ଟ ହୁଏନାହିଁ । ୧୩ ।

ଯେ ପୀଡ଼ିତ ପୂର୍ବରେ ଅଦୃଷ୍ଟ ପଥିକଙ୍କୁ କ୍ଲେଶ ନ ଦେଇ ଅନ୍ନଦାନ କରନ୍ତି ସେ ମହତ୍ ଧର୍ମ ପ୍ରାପ୍ତ ହୁଅନ୍ତି । ୧୪ । ହେ ରାଜନ୍ ! ଯେଉଁ ବ୍ୟକ୍ତି ପିତୃଗଣ, ଦେବଗଣ, ଋଷିଗଣ, ବିପ୍ରଗଣ ଓ ଅତିଥି ସମୂହଙ୍କୁ ଅନ୍ନଦ୍ୱାରା ପ୍ରୀତିଯୁକ୍ତ କରନ୍ତି, ତାହାଙ୍କର ପୁଣ୍ୟଫଳ ଅତି ଉତ୍କୃଷ୍ଟ ହୁଏ । ୧୫ । ଯେଉଁ ବ୍ୟକ୍ତି ଅତି ପାତକ କର୍ମକରି ଯାଚକ ଜନଙ୍କୁ ଓ ବିଶେଷରେ ବ୍ରାହ୍ମଣଙ୍କୁ ଅନ୍ନଦାନ କରନ୍ତି, ସେ ପାପଦ୍ୱାରା ମୁଗ୍ଧ ହୁଅନ୍ତି ନାହିଁ । ୧୬ । ବ୍ରାହ୍ମଣଗଣଙ୍କୁ ଅନ୍ନଦାନକଲେ ଅକ୍ଷୟଫଳ ଓ ଶୂଦ୍ରଙ୍କୁ ଅନ୍ନଦାନକଲେ ମହାଫଳ ହୁଏ । ଅନ୍ନଦାନ ବ୍ରାହ୍ମଣ ଅଥବା ଶୂଦ୍ରଙ୍କଠାରେ ବିଶେଷ ଫଳ ଦାୟକ ହୁଏ । ୧୭ । ବ୍ରାହ୍ମଣ ଭିକ୍ଷାଗ୍ରହଣ ନିମିତ୍ତ ଆଗମନକଲେ ଗୃହସ୍ଥବ୍ୟକ୍ତି ତାହାଙ୍କୁ ଗୋତ୍ର, ଚରଣ, ସ୍ୱାଧ୍ୟାୟ ଓ କେଉଁ ଦେଶରେ ତାହାଙ୍କ ବାସ ଏହା କିଛି ପଚାରିବେ ନାହିଁ । ସେ ପ୍ରାର୍ଥନା କଲାମାତ୍ରେ ତାହାଙ୍କୁ ଅନ୍ନଦାନ କରିବେ । ୧୮ ।

ହେ ମହାରାଜ ! ଅନ୍ନଦାତାଙ୍କର ଅନ୍ନରୂପ ତରୁଗଣ ଇହଲୋକ ଓ ପରଲୋକରେ ସର୍ବକାମଫଳ ପ୍ରଦାନ କରେ । ଏହି ବିଷୟରେ କିଛି ସଂଶୟ ନାହିଁ । ୧୯ । କର୍ଷକଗଣ ଯେଉଁପରି ସୁବୃଷ୍ଟିକି ପ୍ରତ୍ୟାଶା କରନ୍ତି, ସେହିପରି ପିତୃଗଣ "ଆମ୍ଭମାନଙ୍କର ପୁତ୍ର ଅଥବା ପୌତ୍ରଗଣ ଅନ୍ନପ୍ରଦାନ କରିବେ" ଏହିପରି ଆଶା କରନ୍ତି । ୨୦ । ମହାପ୍ରାଣୀ ବ୍ରାହ୍ମଣ ସ୍ୱୟଂ "ଦିଅ" ବୋଲି ପ୍ରାର୍ଥନା କରନ୍ତି, ଦାତା ଅକାମରେ ହେଉ ଅଥବା ସକାମରେ ହେଉ ଦାନକରି ପୁଣ୍ୟପ୍ରାପ୍ତ ହୁଅନ୍ତି । ୨୧ । ବ୍ରାହ୍ମଣ ସର୍ବଭୂତର ଅତିଥି ଓ ଅଗ୍ରଭୋଜୀ ବସ୍ତୁର ଅଗ୍ରଭୋକ୍ତା । ବିପ୍ରଗଣ ପ୍ରତିଗୃହରେ ଭିକ୍ଷାକରି ଯେଉଁ ଗୃହରେ ସତ୍କୃତ ହୋଇ ନିବୃତ୍ତ ହୁଅନ୍ତି, ସେହି ଗୃହ ଅତିଶୟ ବର୍ଦ୍ଧିତ

ହୁଏ । ହେ ଭାରତ ! ସେହି ଗୃହସ୍ଥ ପରଲୋକରେ ମହାନ୍ ସମ୍ପତ୍ତିଶାଳୀ କୁଳରେ ଜନ୍ମ ପରିଗ୍ରହଣ କରନ୍ତି । ୨୩ ।

ନର ଇହଲୋକରେ ଅନ୍ନଦାନକରି ପରଲୋକରେ ଅନୁତ୍ତମସ୍ଥାନ ଲାଭ କରନ୍ତି । ନତ୍ୟ ମିଷ୍ଟାନ୍ନଦାତା ମାନବ ସ୍ୱର୍ଗଲୋକରେ ସତ୍କାର ପ୍ରାପ୍ତ ହୋଇ ବାସ କରନ୍ତି । ୨୪ । ଅନ୍ନ ନରଗଣଙ୍କର ପ୍ରାଣସ୍ୱରୂପ, ଅନ୍ନରେ ସମସ୍ତ ପ୍ରତିଷ୍ଠିତ, ଅନ୍ନଦାତା ପଶୁମାନ୍, ପୁତ୍ରବାନ୍, ଧନବାନ୍, ଭୋଗବାନ୍, ।୨୫। ପ୍ରାଣବାନ୍ ଓ ରୂପବାନ୍ ହୁଅନ୍ତି । ହେ ନୃପ ! ଅନ୍ନଦାତା ଇହଲୋକରେ ପ୍ରାଣଦାତା ଅଟନ୍ତି, ଅତଏବ ସେ "ସର୍ବଦାତା"ବୋଲି କଥିତ ହୁଅନ୍ତି । । ୨୬। ଅଭ୍ୟାଗତ ବ୍ରାହ୍ମଣଙ୍କୁ ଯଥା ନିୟମରେ ଅନ୍ନଦାନ କଲେ ପ୍ରଦାତା ସୁଖଲାଭ କରନ୍ତି ଏବଂ ଦେବଗଣ କର୍ତ୍ତୃକ ପୂଜିତ ହୁଅନ୍ତି । ୨୭ । ହେ ଯୁଧିଷ୍ଠିର ! ମହାଭୂତ ବ୍ରାହ୍ମଣ କ୍ଷେତ୍ର ସ୍ୱରୂପ । ସେହି କ୍ଷେତ୍ରରେ ଯେଉଁ ଦାନରୂପ ବୀଜକୁ ବପନ କରାଯାଏ ତାହାର ଉତ୍କୃଷ୍ଟ ପୁଣ୍ୟରୂପ ମହାଫଳ ହୁଏ । ୨୮ ।

ଭୋଜନକର୍ତ୍ତା ଓ ଦାତା ଏହି ଉଭୟଙ୍କର ଯେଉଁ ପ୍ରୀତି ଜନ୍ମେ ତାହା ପ୍ରତ୍ୟକ୍ଷ ହୁଏ । ଅନ୍ୟାନ୍ୟ ଦାନ ସମୂହ ପରୋକ୍ଷଫଳ ବିଶିଷ୍ଟ ଅଟେ । । ୨୯ । ହେ ଭାରତ ! ଅନ୍ନ ହେତୁରୁ ପ୍ରସବ ଅର୍ଥାତ୍ ପୁତ୍ର ପ୍ରଭୃତି ଜନ୍ମଗ୍ରହଣ କରନ୍ତି ଏବଂ ଅନ୍ନ ହେତୁରୁ ରତି ଜନ୍ମେ, ଅନ୍ନହେତୁରୁ ଧର୍ମ ଅର୍ଥ ହୁଏ ଏବଂ ଅନ୍ନ ହେତୁରୁ ରୋଗ ନଷ୍ଟ ହୁଏ ବୋଲି ଜାଣ । ୩୦ । ପ୍ରଜାପତି ପୂର୍ବ କଳ୍ପରେ ଅନ୍ନକୁ ଅମୃତବୋଲି କହିଥିଲେ, ଅନ୍ନ ଭୂଲୋକ, ସ୍ୱର୍ଗଲୋକ ଓ ଦ୍ୟୁଲୋକ ସ୍ୱରୂପ, ଅନ୍ନରେ ସମସ୍ତେ ପ୍ରତିଷ୍ଠିତ । ୩୧ । ଅନ୍ନ ନଷ୍ଟ ହେଲେ ଶରୀରରେ ପଞ୍ଚଧାତୁ ଭିନ୍ନ ହୁଅନ୍ତି । ଅନ୍ନହାନି ହେତୁରୁ ବଳବାନ୍ ବ୍ୟକ୍ତିଙ୍କର ବଳ ବିନଷ୍ଟ ହୁଏ । ୩୨ ।

ହେ ନରଶ୍ରେଷ୍ଠ ! ଅନ୍ନ ବ୍ୟତିରେକେ ଲୋକଯାତ୍ରା, ବିବାହ ଓ ଯଜ୍ଞ ସମୂହ ନିର୍ବାହ ହୁଏ ନାହିଁ । ଏହି ଅନ୍ନଠାରେ ବେଦ ବିଲୀନ ହୁଅନ୍ତି । । ୩୩ । ତ୍ରିଭୁବନ ମଧ୍ୟରେ ଯେତେ ସ୍ଥାବର ଜଙ୍ଗମାତ୍ମକ ପ୍ରାଣୀଗଣ ଅଛନ୍ତି, ତାହାସବୁ ଅନ୍ନରୁ ଉତ୍ପନ୍ନ, ଅତଏବ, ପଣ୍ଡିତଗଣ ଧର୍ମାର୍ଥରେ ଅନ୍ନଦାନ

କରିବେ । ୩୪ । ହେ ପାର୍ଥିବ ! ଅନ୍ନଦାତା ମନୁଷ୍ୟଙ୍କର ବଳ, ବୀର୍ଯ୍ୟ, ଯଶ ଓ କୀର୍ତ୍ତି ତ୍ରିଭୁବନ ମଧ୍ୟରେ ନିରନ୍ତର ବର୍ଦ୍ଧିତ ହୁଏ । ୩୫ । ହେ ଭାରତ ! ଅଗ୍ନି ପ୍ରାଣ ସମୂହର ପତି, ସେ ମେଘର ଊର୍ଦ୍ଧ୍ୱଭାଗରେ ଅବସ୍ଥିତି କରନ୍ତି । ଇନ୍ଦ୍ରଦେବ ସେହି ମେଘଗତ ବାରି ବର୍ଷଣ କରନ୍ତି । ୩୬ ।

ଆଦିତ୍ୟ ନିଜ କିରଣ ଦ୍ୱାରା ଭୂମିର ରସ ଆକର୍ଷଣ କରନ୍ତି, ପବନଦେବ ଆଦିତ୍ୟଙ୍କ ଦ୍ୱାରା ପ୍ରତିପ୍ରରସ ସମୂହକୁ ପ୍ରକୃଷ୍ଟରୂପେ ବର୍ଷଣ କରନ୍ତି । ୩୭ । ହେ ଭାରତ ! ମେଘରୁ ଜଳ ଯେତେବେଳେ କ୍ଷିତି ତଳରେ ପତିତ ହୁଏ, ସେତେବେଳେ ବସୁମତୀଦେବୀ ସ୍ନିଗ୍ଧା ହୁଅନ୍ତି, ତତ୍ପରେ ଶସ୍ୟ ସମୂହର ଅଙ୍କୁର ଉତ୍ପନ୍ନ ହୁଏ । ୩୮ । ଶସ୍ୟ ଉତ୍ପନ୍ନ ହେଲେ ବିଶ୍ୱମଣ୍ଡଳ ବର୍ଦ୍ଧମାନ ହୁଏ, ସେହି ଶସ୍ୟରୁ ମାଂସ, ମେଦ, ଅସ୍ଥି ଓ ଶୁକ୍ର ପ୍ରଭୃତିର ପ୍ରାଦୁର୍ଭାବ ହୁଏ । ୩୯ । ହେ ପୃଥିବୀପତେ ! ସେହି ଶୁକ୍ରରୁ ପ୍ରାଣିଗଣ ସମ୍ଭୂତ ହୁଅନ୍ତି, ଅଗ୍ନି ଓ ସୋମ ସେହି ଶୁକ୍ରକୁ ସର୍ଜନ କରନ୍ତି ଓ ପୋଷଣ କରନ୍ତି । ୪୦ ।

ଅନ୍ନ ହେତୁରୁ ଏହିପରି ସୂର୍ଯ୍ୟ, ପବନ ଓ ଶୁକ୍ର ଏମାନେ ଏକରାଶିରେ ସ୍ଥିତ ହୁଅନ୍ତି, ତହିଁରୁ ଭୂତସମୂହ ଜାତ ହୁଅନ୍ତି । ୪୧ । ହେ ଭରତଶ୍ରେଷ୍ଠ ! ଯେଉଁବ୍ୟକ୍ତି ଗୃହରେ ଅଭ୍ୟାଗତ ଅତିଥିଙ୍କୁ ଅନ୍ନଦାନ କରନ୍ତି ସେ ଭୂତସମୂହର ପ୍ରାଣଦାନ ଓ ତେଜଃ ପ୍ରଦାନ କରନ୍ତି । ୪୨ । ଭୀଷ୍ମ କହିଲେ, ହେ ନୃପ ! ନାରଦ ଆମ୍ଭଙ୍କୁ ଏହିପରି କହିବାରୁ ସେହିଦିନଠାରୁ ଆମ୍ଭେ ଅନ୍ନଦାନ କରୁଅଛୁଁ । ଏତଏବ ତୁମ୍ଭେ ଅସୂୟାଶୂନ୍ୟ ଓ ବିଜ୍ୱର ହୋଇ ଅନ୍ନଦାନ କର । ୪୩ ।

ହେ ରାଜନ୍ ! ପ୍ରଭୋ ! ତୁମ୍ଭେ ସତ୍କୁଳଜାତ ବ୍ରାହ୍ମଣଗଣଙ୍କୁ ବିଧିଅନୁସାରେ ଅନ୍ନଦାନକଲେ ସ୍ୱର୍ଗଲାଭ କରିବ । ୪୪ । ହେ ରାଜନ୍ ! ଅନ୍ନଦାତାମାନେ ଯେଉଁ ଲୋକସମୂହକୁ ପ୍ରାପ୍ତହୁଅନ୍ତି, ତାହା ସବୁ ଶ୍ରବଣ କର । ସ୍ୱର୍ଗରେ ସେହି ମହାତ୍ମାମାନଙ୍କ ନିମିତ୍ତ ଯେଉଁସବୁ ଗୃହ ନିର୍ମାଣ ହୋଇଅଛି, ତାହା ସଦୃଶ ରୂପସମ୍ପନ୍ନ, ବିବିଧସ୍ତମ୍ଭ ସମନ୍ୱିତ, ଚନ୍ଦ୍ରମଣ୍ଡଳ ସଦୃଶ ଶୁଭ୍ରବର୍ଣ୍ଣ, କିଙ୍କିଣୀଜାଲ ଜଡ଼ିତ । ୪୫ ।

ତରୁଣାଦିତ୍ୟ ବର୍ଣ୍ଣ, ସ୍ଥାବର ଜଙ୍ଗମ ଅନେକ ଶତଭୌମ ପଦାର୍ଥଯୁକ୍ତ, ଅନ୍ତର୍ଜଳଚରଯୁକ୍ତ, ବୈଦୂର୍ଯ୍ୟ ଓ ସୂର୍ଯ୍ୟ ସଦୃଶ ପ୍ରକାଶମାନ, ରୌପ୍ୟ ଓ ରୁକ୍ମମୟ ଗୃହସମୂହ ବିଦ୍ୟମାନ, ସେହି ଗୃହ ନିକଟରେ ସର୍ବ କାମଫଳପ୍ରଦ ବୃକ୍ଷସମୂହ ରୋପିତ ହୋଇ ଅଛନ୍ତି । ଚତୁର୍ଦ୍ଦିଗରେ ବାପୀ, ବୀଥି ସଭାକୂପ ଓ ଦୀର୍ଘିକାସମୂହ, ଶବ୍ଦାୟମାନ ଯାନ ସମୂହ, ସହସ୍ର ସହସ୍ର ମୁକ୍ତାଚୟ, ଭକ୍ଷ୍ୟଭୋଜ୍ୟମୟ, ଶୈଳବୃନ୍ଦ, ବସନ ଓ ଆଭରଣସମୂହ, କ୍ଷୀରକ୍ଷରଣକାରି ସରିତ୍ ସମୂହ, ଅନ୍ନର ପର୍ବତ ସମୂହ, ପାଣ୍ଡୁରମେଘ ସଦୃଶ ଆଭାଯୁକ୍ତ ପ୍ରାସାଦସମୂହ ଏବଂ କାଞ୍ଚନୋଜ୍ଜ୍ୱଳ ଶଯ୍ୟା-ସମୂହ ବିଦ୍ୟମାନ ଅଛି । ତାହାସବୁ ଅନ୍ନଦାତା ପ୍ରାପ୍ତହେବ । ଅତଏବ ତୁମ୍ଭେ ଅନ୍ନ ପ୍ରଦାନକର । ୫୧ ।

ମହାତ୍ମା ଅନ୍ନଦାତାମାନଙ୍କ ନିମିତ୍ତ ଏତାଦୃଶ ପୁଣ୍ୟକୃତ ଲୋକସମୂହ ନିର୍ମ୍ମିତ ହୋଇଅଛି, ଅତଏବ ଭୂମଣ୍ଡଳରେ ମନୁଷ୍ୟଗଣଙ୍କର ସର୍ବ ପ୍ରଯତ୍ନରେ ଅନ୍ନଦାନ କରିବାର ଉଚିତ । ୫୨ ।

## ଅଧ୍ୟାୟ—୬୪

ଯୁଧିଷ୍ଠିର କହିଲେ, ହେ ପିତାମହ ! ଆପଣଙ୍କଠାରୁ ଅନ୍ନଦାନବିଧି ବିଷୟକ ବାକ୍ୟ ଶ୍ରବଣକଲି । ନକ୍ଷତ୍ରଯୋଗରେ ଦାନକଲେ ଯେଉଁଫଳ ହୁଏ, ଆପଣ ତାହାଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୧ । ଭୀଷ୍ମ କହିଲେ ପ୍ରାଚୀନ ପଣ୍ଡିତମାନେ ଏହି ବିଷୟରେ ଦେବକୀ ଓ ମହର୍ଷି ନାରଦଙ୍କ ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରିଅଛନ୍ତି । ୨ । ଦେବଦର୍ଶନ ନାରଦ ଦ୍ୱାରକାରେ ସମାଗତ ହେବାରୁ ଦେବକୀ ସେହି ଧର୍ମଦର୍ଶୀ ଦେବର୍ଷିଙ୍କୁ ଉଲ୍ଲିଖିତ ପ୍ରଶ୍ନ ପଚାରିଲେ । ୩ ।

ହେ ରାଜନ୍ ! ତଦନନ୍ତର ଦେବର୍ଷି ନାରଦ ସେହି ପ୍ରଶ୍ନକାରିଣୀ ଦେବକୀଙ୍କୁ ବିଧିପୂର୍ବକ ଯେଉଁ ଧର୍ମସ୍ତକଥା କହିଥିଲେ, ତାହା ତୁମ୍ଭେ ଶ୍ରବଣ କର । ୪ ।

ନାରଦ କହିଲେ ହେ ମହାଭାଗେ ! କୃତ୍ତିକା ନକ୍ଷତ୍ରରେ ଘୃତଯୁକ୍ତ ପାୟସଦ୍ୱାରା ସାଧୁ ବ୍ରାହ୍ମଣଗଣଙ୍କର ତୃପ୍ତି ସାଧନ କଲେ ମନୁଷ୍ୟ ଉତ୍କୃଷ୍ଟ ଲୋକ ସମୂହକୁ ପ୍ରାପ୍ତ ହୁଅନ୍ତି । ୫ । ରୋହିଣୀ ନକ୍ଷତ୍ରରେ ବ୍ରାହ୍ମଣଙ୍କଠାରୁ ଆନୃଣ୍ୟ ଲାଭକରିବା ନିମିତ୍ତ ସେମାନଙ୍କୁ ମୃଗମାଂସ, ଅନ୍ନ, ଘୃତ, ଦୁଗ୍ଧ ଓ ବିବିଧ ପାନୀୟ ଦ୍ରବ୍ୟ ପ୍ରଦାନ କରିବାର ବିଧେୟ । ୬ । ସୋମ ଦୈବତ ମୃଗଶିର ନକ୍ଷତ୍ରରେ ସବତ୍ସାଦୁଗ୍ଧବତୀ ଧେନୁ ଦାନକଲେ, ମନୁଷ୍ୟ ମର୍ତ୍ତ୍ୟ ଲୋକରୁ ଅତି ଉତ୍କୃଷ୍ଟସ୍ୱର୍ଗ ଲୋକକୁ ଗମନ କରନ୍ତି । ୭ । ଆର୍ଦ୍ରା ନକ୍ଷତ୍ରରେ ଉପବାସ କରି ତିଳମିଶ୍ରିତ କୃସର ଅର୍ଥାତ୍ ମାଷୋଦନ ଦାନକଲେ ମନୁଷ୍ୟ ଦୁର୍ଗସମୂହ, କ୍ଷୁରଧାର ଓ ପର୍ବତ ସମୂହ ଉତ୍ତୀର୍ଣ୍ଣ ହୁଅନ୍ତି । ୮ ।

ହେ ଶୋଭନେ ! ନର ପୁନର୍ବସୁ ନକ୍ଷତ୍ରରେ ଘୃତପାଚିତ ପୂପ ଅର୍ଥାତ୍ ପିଣ୍ଡାକାର ପିଷ୍ଟକ ସମୂହ ଓ ବିବିଧ ଅନ୍ନଦାନ କଲେ ଯଶସ୍ୱୀ ଓ ରୂପ ସମ୍ପନ୍ନ ହୋଇ ବହୁ ଅନ୍ନ ସମ୍ପନ୍ନ କୁଳରେ ଜନ୍ମଗ୍ରହଣ କରନ୍ତି । ୯ । ପୁଷ୍ୟାନକ୍ଷତ୍ରରେ ବିଶୁଦ୍ଧ ଅଥବା ଅବିଶୁଦ୍ଧ ସୁବର୍ଣ୍ଣ ପ୍ରଦାନ କଲେ, ମନୁଷ୍ୟ ଆଲୋକାନ୍ତର ବିରହିତ ଅର୍ଥାତ୍ ସ୍ୱୟଂପ୍ରକାଶ ଲୋକ ସମୂହରେ ସୋମଦେବ ସ୍ୱରୂପ ବିରାଜିତ ହୁଏ । ୧୦ ।

ଯେଉଁ ବ୍ୟକ୍ତି ଅଶ୍ଳେଷା ନକ୍ଷତ୍ରରେ ରଜତବୃଷଭ ପ୍ରଦାନ କରନ୍ତି, ସେ ସମସ୍ତ ଭୟରୁ ବିମୁକ୍ତ ହୋଇ ସଦ୍‌ବଂଶରେ ଜନ୍ମଗ୍ରହଣ କରନ୍ତି ।୧୧। ମଘାନକ୍ଷତ୍ରରେ ତିଳପୂର୍ଣ୍ଣ ବର୍ଦ୍ଧମାନ ଅର୍ଥାତ ଶରାବ ପ୍ରଦାନ କଲେ, ମନୁଷ୍ୟ ପୁତ୍ରବାନ୍ ଏବଂ ପଶୁମାନ୍ ହୋଇ ଇହଲୋକ ଓ ପରଲୋକରେ ସୁଖୀ ହୁଅନ୍ତି । ୧୨ । ପୂର୍ବଫାଲ୍‌ଗୁନୀ ନକ୍ଷତ୍ରରେ ଉପବାସ କରି ବ୍ରାହ୍ମଣଗଣଙ୍କୁ ଗୋରସବିକାର ଫାଣିତ ନାମକ ଦ୍ରବ୍ୟ ସଂଯୁକ୍ତ ଭକ୍ଷ୍ୟ ସାମଗ୍ରୀ ସମ୍ପ୍ରଦାନ କଲେ, ମନୁଷ୍ୟ ସୌଭାଗ୍ୟଶାଳୀ ହୁଅନ୍ତି । ୧୩।

ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ରରେ ଘୃତ ଓ କ୍ଷୀର ସହିତ ଷଷ୍ଟିକ ଧାନ୍ୟର ତଣ୍ଡୁଳ ପ୍ରଦାନ କଲେ, ମନୁଷ୍ୟ ସ୍ୱର୍ଗରେ ପୂଜିତ ହୁଅନ୍ତି । ୧୪ । ନରଗଣ ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ରରେ ଯେଉଁଯେଉଁ ବିଷୟ ଦାନକରନ୍ତି, ତାହସବୁ ମହାଫଳ ଜନକ ଓ ଅନନ୍ତ ହୁଏ ବୋଲି ନିଶ୍ଚୟ ହୋଇ ଅଛି । ୧୫ । ହସ୍ତା ନକ୍ଷତ୍ରରେ ଉପୋଷିତ ହୋଇ ହସ୍ତି ଚତୁଷ୍ଟୟଯୁକ୍ତ ରଥଦାନକଲେ, ମନୁଷ୍ୟ ପୁଣ୍ୟକାମ ସମନ୍ୱିତ ପରମ ପବିତ୍ର ଲୋକ ସମହକୁ ପ୍ରାପ୍ତହୁଅନ୍ତି । ୧୬ । ହେ ଭାରତ ! ଚିତ୍ରା ନକ୍ଷତ୍ରରେ ବୃଷଭଦାନ ଓ ପବିତ୍ର ଗନ୍ଧ ସମୂହ ପ୍ରଦାନ କଲେ, ମନୁଷ୍ୟ ଅପ୍‌ସରାଗଣଙ୍କ ଲୋକରେ ବାସକରନ୍ତି ଓ ନନ୍ଦନବନରେ କ୍ରୀଡ଼ା କରନ୍ତି । ୧୭ ।

ଯେଉଁବ୍ୟକ୍ତି ସ୍ୱାତି ନକ୍ଷତ୍ରରେ ଆପଣାର ଅଭିମତ ଧନଦାନ କରନ୍ତି, ସେ ଇହଲୋକରେ ଉତ୍କୃଷ୍ଟ ଯଶ ଲାଭକରି ପରଲୋକରେ ଶୁଭମୟ ଲୋକସମୂହ ପ୍ରାପ୍ତହୁଅନ୍ତି । ୧୮ । ଯେଉଁ ବ୍ୟକ୍ତି ବିଶାଖା ନକ୍ଷତ୍ରରେ ଶକଟ ବହନକ୍ଷମ ବୃଷଭ, 'ଦୁଗ୍‌ଧଦାତ୍ରୀଧେନୁ ଧାନ୍ୟାଦି ପିଧାନଯୋଗ୍ୟ ଚତୁରସ୍ର ସାମାନ୍ୟଶକଟ ଓ ବସ୍ତ୍ରଦାନ କରନ୍ତି, ସେ ପିତୃଗଣ ଓ ଦେବଗଣଙ୍କୁ ପ୍ରୀତିଯୁକ୍ତ କରନ୍ତି ଏବଂ ପରଲୋକରେ ଅନନ୍ତ ସୁଖ ଭୋଗ କରନ୍ତି । କଦାପି ଦୁର୍ଗମ ସ୍ଥାନ ସମହ ପ୍ରାପ୍ତହୁଅନ୍ତି ନାହିଁ । ଅଥଚ ସ୍ୱର୍ଗଲୋକକୁ ଗମନ କରନ୍ତି । ଯେଉଁ ବ୍ୟକ୍ତି ବିପ୍ରଗଣଙ୍କୁ ପୂର୍ବୋକ୍ତ ବସ୍ତୁ ସମୂହ ଦାନ କରନ୍ତି, ସେ ନିଜ ଅଭିଳଷିତ ବୃତ୍ତି ପ୍ରାପ୍ତ ହୁଅନ୍ତି; କଦାପି ନରକ ପ୍ରଭୃତିର କ୍ଲେଶ ସମୂହକୁ ପ୍ରାପ୍ତ ହୁଅନ୍ତି ନାହିଁ । ଏହି କଥା ନିଶ୍ଚୟ ହୋଇଅଛି । ୨୧ । ଅନୁରାଧା ନକ୍ଷତ୍ରରେ ଉପବାସ କରି ଯେଉଁ ବ୍ୟକ୍ତି ପ୍ରାବରଣବସ୍ତ୍ର ଓ ଅନ୍ନଦାନ କରନ୍ତି, ସେ ଶତଯୁଗପର୍ଯ୍ୟନ୍ତ ସ୍ୱର୍ଗରେ ବାସ କରନ୍ତି । ୨୨ ।

ଜ୍ୟେଷ୍ଠା ନକ୍ଷତ୍ରରେ ଯେଉଁ ବ୍ୟକ୍ତି ବିପ୍ରଗଣଙ୍କୁ ମୂଳସହିତ କାଳଶାକ ଦାନ କରନ୍ତି, ସେ ଅଭିଳଷିତ ସମୃଦ୍ଧି ଓ ଗତି ପ୍ରାପ୍ତ ହୁଅନ୍ତି । ୨୩ । ମୂଳା ନକ୍ଷତ୍ରରେ ସ୍ଥିରମନାହୋଇ ବ୍ରାହ୍ମଣଗଣଙ୍କୁ ଫଳମୂଳ ପ୍ରଦାନ କଲେ

ପିତୃଗଣଙ୍କର ପ୍ରୀତି ବିଧାନ ଓ ଅଭିଳଷିତ ଗତି ଲାଭ ହୁଏ । ୨୪ । ପୂର୍ବାଷାଢ଼ା ନକ୍ଷତ୍ରରେ ଉପବାସ କରି କୁଳବୃତ୍ତ ସମ୍ପନ୍ନ ବେଦ ପାରଗ ବ୍ରାହ୍ମଣଙ୍କୁ ଦଧିପୂର୍ଣ୍ଣ ପାତ୍ର ସମୂହ ଦାନକଲେ, ପୁରୁଷ ପରଜନ୍ମରେ ବହୁ ଗୋଧନ ସମନ୍ୱିତ ବଂଶରେ ଜାତ ହୁଅନ୍ତି । ୨୫ ।

ଉତ୍ତରାଷାଢ଼ା ନକ୍ଷତ୍ରରେ ଘୃତସଂଯୁକ୍ତ ଉଦକୁମ୍ଭ ସମନ୍ୱିତ ସକ୍ତୁ-ବିକାର ଓ ପ୍ରଭୂତ ମଧୁ ଏବଂ କ୍ଷୀର ନିର୍ମିତ ମିଷ୍ଟାନ୍ନ ଦ୍ରବ୍ୟ ଦାନକଲେ ମନୁଷ୍ୟ କାମ୍ୟ ବିଷୟ ସମୂହକୁ ପ୍ରାପ୍ତ ହୁଅନ୍ତି । ୨୬ । ଉତ୍ତରାଷାଢ଼ାର ଶେଷାଂଶ ଓ ଶ୍ରବଣାର ପ୍ରଥମଭାଗରେ ଅଭିଜିତ୍ ଯୋଗରେ ପଣ୍ଡିତଗଣଙ୍କୁ ଦୁଗ୍ଧ, ମଧୁ ଓ ଘୃତ ଦାନକଲେ ଧର୍ମନିରତ ମାନବ ସ୍ୱର୍ଗ ଲୋକରେ ବାସ କରନ୍ତି ।୨୭ ।

ଶ୍ରବଣା ନକ୍ଷତ୍ରରେ ବସ୍ତ୍ର ଓ କମ୍ବଳ ଦାନକଲେ ମନୁଷ୍ୟ, ଶ୍ୱେତବର୍ଣ୍ଣ ଯାନଦ୍ୱାରା ଅସଂବୃତ ସ୍ୱର୍ଗଲୋକକୁ ଗମନ କରନ୍ତି । ୨୮ । ମନୁଷ୍ୟ ସ୍ଥିରମନା ହୋଇ ଧନିଷ୍ଠା ନକ୍ଷତ୍ରରେ ଗୋଯୁକ୍ତ ଯାନ ଓ ବସ୍ତ୍ର ସମୂହ ଏବଂ ଧନ ଦାନ କଲେ ପରଲୋକରେ ରାଜ୍ୟଲାଭ କରନ୍ତି । ୨୯ । ଶତଭିଷା ନକ୍ଷତ୍ରରେ ଅଗୁରୁ, ଚନ୍ଦନ, ଗନ୍ଧ, ଦାନକଲେ ମାନବ ପର ଲୋକରେ ଅପ୍‌ସରାଗଣଙ୍କ ଲୋକରେ ଶାଶ୍ୱତ ଗନ୍ଧ ସମୂହ ପ୍ରାପ୍ତ ହୁଅନ୍ତି । ୩୦ । ପୂର୍ବ ଭାଦ୍ରପଦ ନକ୍ଷତ୍ରରେ ରାଜମାଷ ଅର୍ଥାତ ଉତ୍ତମ ବ୍ରୀହି ସମୂହ ଦାନକଲେ ପୁରୁଷ ସର୍ବ ଭକ୍ଷ୍ୟ ଫଳ ଯୁକ୍ତ ହୋଇ ପରଲୋକରେ ସୁଖ ଲାଭ କରନ୍ତି । ୩୧ ।

ଯେଉଁ ବ୍ୟକ୍ତି ଉତ୍ତରଭାଦ୍ରପଦ ନକ୍ଷତ୍ରରେ ମେଷମାଂସ ପ୍ରଦାନ କରନ୍ତି, ସେ ପିତୃଗଣଙ୍କୁ ପ୍ରୀତିଯୁକ୍ତ କରି ପରଲୋକରେ ଅନନ୍ତ ସୁଖ ସମ୍ଭୋଗ ଲାଭ କରନ୍ତି । ୩୨ । ଯେଉଁ ବ୍ୟକ୍ତି ରେବତୀ ନକ୍ଷତ୍ରରେ କାଂସ୍ୟମୟ ଦୋହନ ପାତ୍ର ସମନ୍ୱିତ ଧେନୁ ପ୍ରଦାନ କରନ୍ତି, ସେ ପରଲୋକଗାମୀ ହେଲେ ସେହି ଧେନୁ ସମସ୍ତ କାମ୍ୟ ବିଷୟ ଗ୍ରହଣ କରି ଦାତାଙ୍କ ନିକଟରେ

ଉପସ୍ଥିତ ହୁଅନ୍ତି । ୩୩ । ହେ ନରବର ! ଅଶ୍ୱିନୀ ନକ୍ଷତ୍ରରେ ଅଶ୍ୱଯୁକ୍ତ ରଥ ଦାନକଲେ ମନୁଷ୍ୟ ପରଜନ୍ମରେ ହସ୍ତୀ, ଅଶ୍ୱ, ରଥ ସମ୍ପନ୍ନ କୁଳରେ ତେଜସ୍ୱୀ ହୋଇ ଜନ୍ମ ଗ୍ରହଣ କରନ୍ତି । ୩୪ ।

ଦ୍ୱିଜା ନକ୍ଷତ୍ରରେ ଦ୍ୱିଜଗଣଙ୍କୁ ତିଳଧେନୁ ପ୍ରଦାନକଲେ ମନୁଷ୍ୟ ପରଲୋକରେ ପ୍ରଭୂତ ଗୋଧନ ଓ ଯଶ ପ୍ରାପ୍ତ ହୁଅନ୍ତି । ୩୫ । ଭୀଷ୍ମ କହିଲେ, ଯୁଧିଷ୍ଠିର ! ନାରଦ ଦେବକୀଙ୍କୁ ନକ୍ଷତ୍ରଯୋଗାନୁସାରେ ଏହିପରି ସମସ୍ତ ଦାନର ଲକ୍ଷଣ କହିଥିଲେ । ଦେବକୀ ମଧ୍ୟ ନିଜ ପୁତ୍ର ବଧୂଗଣଙ୍କୁ ଏହାସବୁ କହିଥିଲେ । ୩୬ ।



## ଅଧ୍ୟାୟ—୬୫

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ପିତାମହଙ୍କ ପୁତ୍ର ଅତ୍ରିମୁନି କହିଅଛନ୍ତି କି ଯେଉଁବ୍ୟକ୍ତି ସୁବର୍ଣ୍ଣଦାନ କରନ୍ତି, ସେ ସମସ୍ତ କାମନା ପ୍ରଦାନ କରନ୍ତି । ମନୁଜବର ହରିଶ୍ଚନ୍ଦ୍ର କହିଅଛନ୍ତି ଯେ ସୁବର୍ଣ୍ଣଦାନ ଆୟୁଷ୍କର, ପବିତ୍ରତା ସମ୍ପାଦକ ଓ ପିତୃଲୋକଙ୍କର ଅକ୍ଷୟଫଳ ପ୍ରଦାୟକ ଅଟେ । ୨ । ମହର୍ଷି ମନୁ କହିଅଛନ୍ତି; ଜଳଦାନ ସମସ୍ତ ଦାନ ଅପେକ୍ଷା ଉତ୍କୃଷ୍ଟ, ଅତଏବ ମନୁଷ୍ୟ ଯତ୍ନ ସହକାରରେ କୂପ, ବାପୀ ଓ ତଡାଗ ପ୍ରଭୃତି ଖନନ କରାଇବେ । ୩ । ଲୋକ ବୃନ୍ଦ ନିରନ୍ତର ଯେଉଁ କୂପର ଜଳପାନ କରନ୍ତି, ସେହି ସେହି କୂପ ଖନନ କର୍ତ୍ତାଙ୍କର କର୍ମ ଜନିତ ପାପର ଅର୍ଦ୍ଧାଂଶ ହରଣ କରେ । ୪ ।

ଯାହାଙ୍କ ଖ୍ୟାତ ଜଳାଶୟରେ ଗୋଗଣ ବ୍ରାହ୍ମଣଗଣ ଓ ସାଧୁ ମାନବ ବୃନ୍ଦ ସର୍ବଦା ଜଳପାନ କରନ୍ତି, ସେହି ଜଳାଶୟଦାତା

ଙ୍କର ସମସ୍ତ ବଂଶକୁ ଉଦ୍ଧାର କରେ । ଗ୍ରୀଷ୍ମକାଳରେ ଯାହାଙ୍କ ଜଳାଶୟର ଜଳ ଅବାରିତ ହୁଏ, ସେ କଦାପି ବିଷମ ଦୁର୍ଗମସମୂହ ପ୍ରାପ୍ତ ହୁଅନ୍ତି ନାହିଁ । ୬ । ଘୃତଦ୍ୱାରା ଭଗବାନ୍ ବୃହସ୍ପତି, ପୂଷା, ଭଗ, ଅଶ୍ୱିନୀକୁମାର-ଦ୍ୱୟ ଏବଂ ଅଗ୍ନିଙ୍କର ପ୍ରୀତି ହୁଏ । ୭ । ଘୃତ ପରମ ଔଷଧ, ଯଜ୍ଞ ପକ୍ଷରେ ଘୃତ ଉତ୍କୃଷ୍ଟ ଅଟେ, ଏହା ରସମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏବଂ ସମସ୍ତ ଫଳ ମଧ୍ୟରେ ଉତ୍ତମ ଅଟେ । ୮ । ଯେଉଁ ପୁରୁଷ ସର୍ବଦା ଫଳକାମନା, ଯଶସ୍କାମନା ଓ ପୁଷ୍ଟିକାମନା କରନ୍ତି, ସେ ଶୁଚି ଓ ସଂଯତଚିତ୍ତ ହୋଇ ଦ୍ୱିଜଗଣଙ୍କୁ ଘୃତଦାନ କରିବେ । ୯ । ଯେଉଁ ବ୍ୟକ୍ତି ଆଶ୍ୱିନ ମାସରେ ବିପ୍ରଗଣଙ୍କୁ ଘୃତ ପ୍ରଦାନ କରନ୍ତି, ଇହଲୋକରେ ଅଶ୍ୱିନୀକୁମାର ଦେବଦ୍ୱୟ ପ୍ରୀତ ହୋଇ ତାହାଙ୍କୁ ରୂପ ପ୍ରଦାନ କରନ୍ତି । ୧୦ । ଯେ ଦ୍ୱିଜଗଣଙ୍କୁ ଘୃତ-ମିଶ୍ରିତ ପାୟସ ପ୍ରଦାନ କରନ୍ତି, ରାକ୍ଷସସମୂହ କଦାପି ତାହାଙ୍କ ଗୃହକୁ ପୀଡ଼ାଦେଇ ପାରନ୍ତି ନାହିଁ । ୧୧ ।

ଯେଉଁ ବ୍ୟକ୍ତି କମଣ୍ଡଳୁ ନାମକ ଜଳପାତ୍ର ପ୍ରଦାନ କରନ୍ତି ସେ ପିପାସାଦ୍ୱାରା କାତର ହୋଇ ପ୍ରାଣତ୍ୟାଗ କରନ୍ତି ନାହିଁ, ଗୃହୋପକରଣ-ସମ୍ପନ୍ନ ହୁଅନ୍ତି ଓ କଦାପି ବିପଦାପନ୍ନ ହୁଅନ୍ତି ନାହିଁ । ୧୨ । ଯେଉଁ ପୁରୁଷ ପ୍ରଯତ ହୋଇ ପରମ ଶ୍ରଦ୍ଧା ସହିତ ବ୍ରାହ୍ମଣଗଣଙ୍କୁ ଯେଉଁ ଦାନ କରନ୍ତି ସେ ସର୍ବଦା ସେହି ଦାନଜନିତ ପୁଣ୍ୟର ଷଡ଼୍‌ଭାଗ ଲାଭ କରନ୍ତି । ହେ ରାଜେନ୍ଦ୍ର ! ଯେ ସାଧନ ନିମିତ୍ତ ଓ ପ୍ରତାପନ ନିମିତ୍ତ ବ୍ରତବିଶିଷ୍ଟ ବ୍ରାହ୍ମଣ-ଗଣଙ୍କୁ କାଷ୍ଠ ଦାନ କରନ୍ତି, ତାହାଙ୍କର ପ୍ରୟୋଜନସମୂହ ଓ ବିବିଧ କାର୍ଯ୍ୟମାନ ସର୍ବଦା ସିଦ୍ଧ ହୁଏ ଏବଂ ସେ ଶତ୍ରୁଗଣଙ୍କର ଉପର୍ଯ୍ୟୁପରି ତେଜୋରାଶି କଳେବରରେ ଦେଦୀପ୍ୟମାନ ହୁଅନ୍ତି । ୧୫ ।

ଭଗବାନ୍ ହୁତାଶନ ସର୍ବଦା ତାହାଙ୍କଠାରେ ପ୍ରୀତ ହୁଅନ୍ତି, ପଶୁଗଣ ତାହାଙ୍କୁ ପରିତ୍ୟାଗ କରନ୍ତି ନାହିଁ ଏବଂ ସେ ଯୁଦ୍ଧରେ ବିଜୟୀ ହୁଅନ୍ତି । ୧୬ । ଯେ ଛତ୍ରଦାନ କରନ୍ତି, ସେ ପୁତ୍ର ଓ ଶ୍ରୀ ଲାଭ କରନ୍ତି, ଚକ୍ଷୁପୀଡ଼ା ତାହାଙ୍କର ହୁଏ ନାହିଁ, ଏବଂ ସେ ଯଜ୍ଞ ଭାଗ ଭୋଗ କରନ୍ତି । ୧୭ । ଯେ ଗ୍ରୀଷ୍ମ ଅଥବା ବର୍ଷା କାଳରେ ଛତ୍ରପ୍ରଦାନ କରନ୍ତି କଦାପି ତାହାଙ୍କର କୌଣସି ପ୍ରକାର ମନୋଦାହ ଜାତ ହୁଏ ନାହିଁ । ୧୮ ।

ହେ ବିଶାଂପତେ ! ସର୍ବପ୍ରକାର ଦାନ ଏବଂ ଶକଟ ଦାନ କଲେ ମନୁଷ୍ୟ ବିଷମ ସଙ୍କଟରୁ ଶୀଘ୍ର ମୋକ୍ଷ ଲାଭ କରେ, ମହାଭାଗ ଭଗବାନ ଶାଣ୍ଡିଲ୍ୟ ଋଷି ଏହା କହିଅଛନ୍ତି । ୧୯ ।

# ଅଧ୍ୟାୟ—୭୭

ଯୁଧିଷ୍ଠିର କହିଲେ—ହେ ପିତାମହ ! ଦହ୍ୟମାନ ଦ୍ୱିଜଙ୍କୁ ଉପାନହ ପ୍ରଦାନ କଲେ ଯେଉଁ ଫଳ ହୁଏ ଆପଣ ତାହା ଆମ୍ଭଙ୍କୁ କହିବା ହେଉନ୍ତୁ ।୧।

ଭୀଷ୍ମ କହିଲେ, ଯେଉଁ ବ୍ୟକ୍ତି ସ୍ଥିରମନା ହୋଇ ବ୍ରାହ୍ମଣଗଣଙ୍କୁ ପାଦୁକା ପ୍ରଦାନ କରନ୍ତି, ସେ ସମସ୍ତ କଣ୍ଟକ ବିମର୍ଦ୍ଦନ କରି ବିଷମ ସଙ୍କଟରୁ ନିସ୍ତାର ପ୍ରାପ୍ତ ହୁଅନ୍ତି । ୨ । ହେ ନରଶ୍ରେଷ୍ଠ ! କୁନ୍ତୀନନ୍ଦନ ! ଯୁଧିଷ୍ଠିର ! ସେ ଶତ୍ରୁଗଣଙ୍କ ଉପରେ ଆଧିପତ୍ୟ ବିସ୍ତାର କରନ୍ତି । ତାହାଙ୍କ ନିକଟରେ ଅଶ୍ୱ ତରୀଯୁକ୍ତ ଶୁଭ୍ରଯାନ ଓ ରଜତ କାଞ୍ଚନଭୂଷିତ ଶକଟ ଉପସ୍ଥିତ ହୁଏ ଏବଂ ତାହାଙ୍କୁ ଦମ୍ୟ ସଂଯୁକ୍ତ ଶକଟ ପ୍ରଦତ୍ତ ହୁଏ । ୪ ।

ଯୁଧିଷ୍ଠିର କହିଲେ, ହେ କୌରବ ! ତିଳଦାନ, ଭୂମିଦାନ, ଗୋଦାନ ଓ ଅନ୍ନଦାନ ବିଷୟରେ ଆପଣ ଯେଉଁ ଫଳର କଥା କହି ଅଛନ୍ତି, ପୁନଶ୍ଚ ସେହି କଥା କହିବା ହେଉନ୍ତୁ । ୫ ।

ଭୀଷ୍ମ କହିଲେ, ହେ କୁରୁଶ୍ରେଷ୍ଠ ! କୌନ୍ତେୟ ! ତିଳଦାନ କଲେ ଯେଉଁ ଫଳ ହୁଏ ତାହା ଆମ୍ଭ ନିକଟରୁ ଶ୍ରବଣକର ଏବଂ ତାହା ଶ୍ରବଣ କରି ନ୍ୟାୟାନୁସାରେ ପ୍ରଦାନ କର । ୬ । ସ୍ୱୟମ୍ଭୂଙ୍କଦ୍ୱାରା ସୃଷ୍ଟ ତିଳସମୂହ ପିତୃଲୋକଙ୍କର ପରମଭୋଜ୍ୟ, ସେହି କାରଣରୁ ତିଳଦାନଦ୍ୱାରା ପିତୃଲୋକ ସମୂହ ପ୍ରମୋଦପ୍ରାପ୍ତ ହୁଅନ୍ତି । ଯେଉଁ ବ୍ୟକ୍ତି ମାଘ ମାସରେ ବ୍ରାହ୍ମଣମାନଙ୍କୁ ତିଳଦାନ କରନ୍ତି, ସେ ସର୍ବସତ୍ତ୍ୱ ସମାକୀର୍ଣ୍ଣ ନରକକୁ ଅବଲୋକନ କରନ୍ତି ନାହିଁ । ଯେ ତିଳଦ୍ୱାରା ପିତୃଗଣଙ୍କ ଯଜ୍ଞ କରନ୍ତି ତାହାଙ୍କର ସମସ୍ତ ଯଜ୍ଞ ସମ୍ପାଦନ କରିବାର ଫଳ ହୁଏ । ଅକାମ ମନୁଷ୍ୟ କଦାପି ତିଳଶ୍ରାଦ୍ଧ କରିବେ ନାହିଁ । ୯ । ହେ ପ୍ରଭୋ ! ତିଳସମୂହ ମହର୍ଷି କଶ୍ୟପଙ୍କ ଗାତ୍ରରୁ ପ୍ରସୂତ ହୋଇଅଛି । ସେହି କାରଣରୁ ତାହା ପ୍ରଦାନ କଲେ ତିଳବୃନ୍ଦ ଦିବ୍ୟଭାବକୁ ପ୍ରାପ୍ତ ହୁଅନ୍ତି । ୧୦ ।

ତିଳସମୂହ ପୁଷ୍ଟିକାରକ, ରୂପପ୍ରଦ ଏବଂ ପାପ ବିନାଶକ; ସେହି କାରଣରୁ ସମସ୍ତ ଦାନ ଅପେକ୍ଷା ତିଳଦାନ ବିଶିଷ୍ଟ ଅଟେ ।

ମେଧାବୀ ଆପସ୍ତମ୍ବମୁନି, ଶଙ୍ଖମୁନି, (ଲିଖିତମୁନି) ଏବଂ ମହର୍ଷି ଗୌତମ ତିଳଦାନଦ୍ୱାରା ସ୍ୱର୍ଗକୁ ଗମନ କରିଥିଲେ । ୧୨ । ତିଳ ହୋମରେ

ସମସ୍ତ ରତ ବସ୍ତୁଗଣ ସ୍ୱୟଂ ମୈଥୁନ ହୁଅନ୍ତି । ତିଳସମୂହ ଗବ୍ୟଘୃତ ସଦୃଶ, ଏହା ପ୍ରବୃତ୍ତିରେ ସଞ୍ଚିତ ହୋଇଅଛି । ୧୩ । ସମସ୍ତ ଦାନ ମଧ୍ୟରେ ତିଳଦାନ ଉତ୍କୃଷ୍ଟ ଅଟେ, ଇହଲୋକରେ ତିଳଦାନ ସମସ୍ତ ଦାନ ଅପେକ୍ଷା ଅକ୍ଷୟ ବୋଲି କଥିତ ହୁଏ । ହେ ପରନ୍ତପ ! ପୂର୍ବକାଳରେ ଘୃତର ଉଚ୍ଛେଦ ହେବାରୁ କୁଶିକ ଋଷି ତିଳଦ୍ୱାରା ଅଗ୍ନିରେ ହୋମକରି ଉତ୍ତମ ଗତିକୁ ପ୍ରାପ୍ତ ହୋଇଥିଲେ । ୧୫ । ହେ କୁରୁଶ୍ରେଷ୍ଠ ! ଆମ୍ଭେ ଅତି ଉତ୍କୃଷ୍ଟ ତିଳଦାନର ବିଷୟ କହିଲୁଁ ଏବଂ ଯେଉଁ ପ୍ରକାର ବିଧି ଅନୁସାରେ ତିଳଦାନ ପ୍ରଶଂସିତ ହୁଏ ତାହା ମଧ୍ୟ କହିଲୁଁ ।

ଅତଃପର ହେ ମହାରାଜ ! ଯଜ୍ଞେଚ୍ଛୁ ସୁରଗଣଙ୍କର ସ୍ୱୟମ୍ଭୁ ବ୍ରହ୍ମାଙ୍କ ସହିତ ଯେଉଁ ସମାଗମ ହୋଇଥିଲା ତଦ୍‌ବିଷୟକୁ ଶ୍ରବଣ କର । ୧୭ । ହେ ପାର୍ଥିବ ! ଭୂମି ଭାଗରେ ଯଜ୍ଞ କରିବାକୁ ଇଚ୍ଛୁକ ଦେବଗଣ ବ୍ରହ୍ମାଙ୍କ ନିକଟକୁ ଯାଇ "ଆମ୍ଭେମାନେ ଯାଗ କରିବୁ" ଏହି କଥା କହି ଶୁଭ ଅର୍ଥାତ୍ ପବିତ୍ର ପ୍ରଦେଶ ପ୍ରାର୍ଥନା କଲେ । ୧୮ । ଦେବତାଗଣ କହିଲେ, ହେ ଭଗବନ୍ ! ମହାଭାଗ ! ଆପଣ ସମସ୍ତ ସ୍ୱର୍ଗ ଓ ଭୂମିର ପ୍ରଭୁ, ଆପଣଙ୍କ ଅନୁଜ୍ଞା ଗ୍ରହଣ ପୂର୍ବକ ଆମ୍ଭେମାନେ ଯଜ୍ଞ କରିବୁଁ । ୧୯ । ଅନୁଜ୍ଞାପ୍ରାପ୍ତ ନ ହୋଇ ଭୂମିରେ ଯଜ୍ଞ କଲେ ଯଜ୍ଞର ଫଳ ଭୋଗ ହୁଏ ନାହିଁ । ଆପଣ ସ୍ଥାବର ଜଙ୍ଗମ ସମସ୍ତ ଜଗତର ପ୍ରଭୁ, ଅତଏବ ଅନୁଜ୍ଞା ପ୍ରଦାନ କରିବା ହେଉନ୍ତୁ । ୨୦ । ବ୍ରହ୍ମା କହିଲେ, ହେ କଶ୍ୟପନନ୍ଦନ ! ସୁରଶ୍ରେଷ୍ଠଗଣ ! ଆପଣମାନେ ଯେଉଁ ସ୍ଥାନରେ ଯଜ୍ଞ କରିବେ ଆମ୍ଭେ ଆପଣମାନଙ୍କ ନିମିତ୍ତ ତାଦୃଶ ଭୂମିଭାଗ ପ୍ରଦାନ କରିବୁ । ୨୧ ।

ଦେବଗଣ କହିଲେ, ଭଗବନ୍ ! ଆମ୍ଭେମାନେ କୃତକାର୍ଯ୍ୟ ହେଲୁଁ, ପବିତ୍ର ହିମାଳୟର ନିକଟରେ କୁରୁକ୍ଷେତ୍ର ପ୍ରଦେଶରେ ମୁନିଗଣ ସର୍ବଦା ଅବସ୍ଥାନ କରିଥାଆନ୍ତି, ଅତଏବ ସେହି ପ୍ରଦେଶରେ ଆମ୍ଭେମାନେ ଆପ୍ତ ଦକ୍ଷିଣ ଯଜ୍ଞ ଦ୍ୱାରା ଯାଗ କରିବୁ, ତଦନନ୍ତର ଅଗସ୍ତ୍ୟ, କଣ୍ୱ, ଭୃଗୁ, ଅତ୍ରି, ବୃଷାକପି, ଅସିତ ଓ ଦେବଳ ଦେବଯଜ୍ଞକୁ ଗମନ କଲେ । ୨୩ ।

ପରିଶେଷରେ ମହାନୁଭବ ଦେବଗଣ ଅଚ୍ୟୁତ ଯଜ୍ଞ କଲେ, ଏବଂ ଯଥାକାଳରେ ତାହା ସମାପନ କଲେ । ୨୪ ।

ତ୍ରିଦଶଗଣ ଅଚଳଶ୍ରେଷ୍ଠ ହିମଶୈଳ ସନ୍ନିଧାନରେ ଯଜ୍ଞ କରି ସେହି ଯଜ୍ଞର ଷଷ୍ଠ ଅଂଶ ଭୂମି ଦାନ କଲେ । ୨୫ । ଯେଉଁ ବ୍ୟକ୍ତି ପ୍ରାଦେଶ ପରିମାଣ ଅନୁପସ୍କୃତ ଭୂମି ଦାନ କରନ୍ତି, ସେ କଦାପି କୃଚ୍ଛ୍ରକାର୍ଯ୍ୟରେ

ଅବସନ୍ନ ହୁଅନ୍ତି ନାହିଁ ଓ ଦୁର୍ଗମସ୍ଥାନ ପ୍ରାପ୍ତ ହୁଅନ୍ତି ନାହିଁ ।୨୬। ସୁସଂସ୍କୃତା ଶୀତବାଣତପସହା ଗୃହ ଭୂମି ପ୍ରଦାନ ପୂର୍ବକ ସୁରଲୋକକୁ ଗମନ କଲେ, ପୁଣ୍ୟ ଶେଷ ହେଲେ ସୁଦ୍ଧା ଦାତା ସେଠାରୁ ବିଚଳିତ ହୁଅନ୍ତି ନାହିଁ । ୨୭ ।

ହେ ରାଜନ୍ ! ସେହି ପ୍ରାଜ୍ଞ ବ୍ୟକ୍ତି ପ୍ରମୋଦିତ ହୋଇ ବାସବଙ୍କ ସହିତ ଏକତ୍ର ବାସ କରନ୍ତି । ଯେ ବାସସ୍ଥଳ ପ୍ରଦାନ କରନ୍ତି, ସେ ସ୍ୱର୍ଗରେ ପୂଜିତ ହୋଇ ବାସ କରନ୍ତି ।୨୮। ଅଧ୍ୟାପକବଂଶରେ ସମ୍ଭୂତ୍ପନ୍ନ ସଂଯତେନ୍ଦ୍ରିୟ ଶ୍ରୋତ୍ରିୟ ବ୍ରାହ୍ମଣ ସନ୍ତୁଷ୍ଟ ହୋଇ ଯାହାଙ୍କ ଗୃହରେ ବସତି କରନ୍ତି, ସେ ବ୍ରହ୍ମଲୋକରେ ବାସ କରନ୍ତି । ୨୯ । ହେ ଭରତଶ୍ରେଷ୍ଠ ! ଗୋଗଣଙ୍କ ବାସ ନିମିତ୍ତ ପ୍ରଦତ୍ତ ଶୀତବୃଷ୍ଟି ସହ ସୁଦୃଢ଼ ସଦନ ସପ୍ତମକୁଳ ପର୍ଯ୍ୟନ୍ତ ଉଦ୍ଧାର କରେ । ୩୦ । ଯେ କ୍ଷେତ୍ରଭୂମି ଦାନ କରନ୍ତି, ସେ ଲୋକ ମଧ୍ୟରେ ପବିତ୍ର ଶ୍ରୀସମ୍ପନ୍ନ ହୁଅନ୍ତି । ଯେ ରତ୍ନଭୂମି ସଂପ୍ରଦାନ କରନ୍ତି, ସେ କୁଳ ଓ ବଂଶ ବୃଦ୍ଧି କରନ୍ତି । ୩୧ । ଉଷର ଓ ଦଗ୍ଧଭୂମି ଦାନ କରିବାର କଦାପି ଉଚିତ ନୁହେଁ ଏବଂ ଶ୍ମଶାନପରିବେଷ୍ଟିତା ଓ ପାପପରିବୃତା ଭୂମି ମଧ୍ୟ ଦାନର ଉପଯୁକ୍ତ ନୁହେଁ । ୩୨ ।

ଯେଉଁ ବ୍ୟକ୍ତି ପରକୀୟ ଭୂମି ଭାଗରେ ପିତୃଗଣଙ୍କ ଶ୍ରାଦ୍ଧ କରନ୍ତି କିମ୍ବା ପିତୃଗଣଙ୍କ ଉଦ୍ଦେଶ୍ୟରେ ପରକୀୟ ଭୂମି ଦାନ କରନ୍ତି, ତାହାଙ୍କ କୃତ ସେହି ଶ୍ରାଦ୍ଧ ଓ ଭୂମିଦାନାଖ୍ୟ କର୍ମ ଏହି ଉଭୟ କର୍ମ ବ୍ୟର୍ଥ ହୁଏ । ୩୩ ।

ସେହି କାରଣରୁ ବିଚକ୍ଷଣ ମାନବ ଅଳ୍ପ ପରିମାଣ ଭୂମି କ୍ରୟ କରି ଦାନ କରିବେ । କାରଣ ସେହି କ୍ରୀତ ଭୂଭାଗରେ ପିତୃଗଣଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ହେବା ପିଣ୍ଡ ଶାଶ୍ୱତ ହୁଏ । ୩୪ । ଅରଣ୍ୟ, ପର୍ବତ, ନଦୀ ଓ ତୀର୍ଥ-ସମୂହକୁ ପଣ୍ଡିତଗଣ ଅସ୍ୱାମିକ ବୋଲି କହନ୍ତି, ଅତଏବ ଉଲ୍ଲିଖିତ ସ୍ଥାନ-ସମୂହରେ ପିତୃଲୋକଙ୍କର ତୃପ୍ତି ସାଧନ କଲେ କୌଣସି ଦୋଷ ହୁଏ ନାହିଁ । ୩୫ । ହେ ଅନଘ ! ନରପାଳ ! ଆମ୍ଭେ ତୁମ୍ଭ ନିକଟରେ ଭୂମି-ଦାନର ଏତାଦୃଶ ଫଳ କହିଲୁଁ, ଅତଃପର ଗୋଦାନର ଫଳ କୀର୍ତ୍ତନ କରିବା । ୩୬ ।

ଗୋବୃନ୍ଦ ସମସ୍ତ ତପସ୍ୱିଗଣଙ୍କର ସମଧିକ ଧନ ସ୍ୱରୂପ ଅଟନ୍ତି, ସେହି କାରଣରୁ ମହେଶ୍ୱରଦେବ ସେହି ଗୋଗଣଙ୍କ ସହିତ ତପସ୍ୟା କରିଥିଲେ । ୩୭ ।

ହେ ଭରତ ! ଗୋବୃନ୍ଦ ବ୍ରହ୍ମଲୋକରେ ସୋମଙ୍କ ସହିତ ବାସ କରନ୍ତି । ସିଦ୍ଧ ବ୍ରହ୍ମର୍ଷିଗଣ ଯେଉଁ ପରମ ଗତିକି ପ୍ରାର୍ଥନା କରନ୍ତି, ମନୁଷ୍ୟ ଗୋଦାନ କଲେ ସେହି ଗତିକି ପ୍ରାପ୍ତ ହୁଅନ୍ତି । ୩୮ । ହେ ଭରତ ! ଗୋସମୂହ ଦଧି, ଦୁଗ୍ଧ, ଘୃତ, ଗୋମୟ, ଅସ୍ଥି, ଚର୍ମ, ଶୃଙ୍ଗ ଓ ଲାଙ୍ଗୁଳ ବାଳଦ୍ୱାରା ଉପକାର କରନ୍ତି । ୩୯ ।

ଏମାନଙ୍କର ଶୀତ ଓ ଆତପ ଭୟ ନାହିଁ, ଏମାନେ ସର୍ବଦା କର୍ମ କରୁଥାଆନ୍ତି, ଏମାନଙ୍କର ବର୍ଷା ହେତୁରୁ ଦୁଃଖ ହୁଏ ନାହିଁ । ୪୦ ।

ଅତଏବ ଏମାନେ ବ୍ରାହ୍ମଣଗଣଙ୍କ ସହିତ ପରମଗତି ପ୍ରାପ୍ତ ହୁଅନ୍ତି । ମନୀଷିମାନେ ସେହି କାରଣରୁ ଗୋବୃନ୍ଦଙ୍କୁ ବ୍ରାହ୍ମଣମାନଙ୍କ ସମାନ ବୋଲି କହନ୍ତି । ୪୧ । ହେ ରାଜନ୍ ! ରନ୍ତିଦେବ-ନରପାଳଙ୍କ ଯଜ୍ଞରେ ଗୋବୃନ୍ଦ ପଶୁ ରୂପରେ କଳ୍ପିତ ହୋଇଥିଲେ, ସେହି କାରଣରୁ ଗୋଚର୍ମ-ସମୂହରୁ ଚର୍ମଣ୍ୱତୀ ନଦୀ ପ୍ରବାହିତ ହୋଇଅଛି । ୪୨ । ହେ ମହୀପତେ ! ପ୍ରଦାନ ନିମିତ୍ତ ଉପକଳ୍ପିତ ଗୋଗଣ ପଶୁତ୍ୱରୁ ବିମୁକ୍ତ ହୋଇଥିଲେ । ଯେଉଁ ବ୍ୟକ୍ତି ଉତ୍କୃଷ୍ଟ ବ୍ରାହ୍ମଣଗଣଙ୍କୁ ଗୋଦାନ କରନ୍ତି ( ୪୩ ), ସେ ବିଷମ ସଙ୍କଟରେ ଥିଲେ ସୁଦ୍ଧା ସମସ୍ତ ଆପଦରୁ ନିସ୍ତାର ଲାଭ କରନ୍ତି । ହେ ପାର୍ଥିବ ! ସହସ୍ର ଗୋଦାନ କଲେ, ପରଲୋକରେ ନରକ ଦର୍ଶନ ହୁଏ ନାହିଁ ( ୪୪ ) ଏବଂ ସର୍ବତ୍ର ବିଜୟଲାଭ ହୁଏ । ହେ ମନୁଜାଧିପ ! ତ୍ରିଦଶାଧିପତି ଗୋବୃନ୍ଦର କ୍ଷୀରକୁ ଅମୃତ ବୋଲି କହନ୍ତି । ୪୫ ।

ସେହି କାରଣରୁ ଯେ ଧେନୁଦାନ କରନ୍ତି ସେ ଅମୃତ ପ୍ରଦାନ କରନ୍ତି । ବେଦଜ୍ଞ ପଣ୍ଡିତଗଣ ଅଗ୍ନି ସମ୍ବନ୍ଧରେ ଏହାକୁ ଅବ୍ୟୟ ହୋମ୍ୟ ବୋଲି ଜ୍ଞାନ କରନ୍ତି । ୪୬ । ଅତଏବ ଯେଉଁ ବ୍ୟକ୍ତି ଧେନୁଦାନ କରନ୍ତି ସେ ହୋମ୍ୟ ସଂପ୍ରଦାନ କରନ୍ତି । ଗୋପତି ବୃଷଭ ମୂର୍ତ୍ତିମାନ୍ ସ୍ୱର୍ଗ ସ୍ୱରୂପ । ଯେଉଁ ବ୍ୟକ୍ତି ଗୁଣଯୁକ୍ତ ବ୍ରାହ୍ମଣଙ୍କୁ ବୃଷଭଦାନ କରନ୍ତି, ସେ ସ୍ୱର୍ଗରେ ପୂଜିତ ହୁଅନ୍ତି । ୪୮ । ହେ ଭରତଶ୍ରେଷ୍ଠ ! ଗୋବୃନ୍ଦ ପ୍ରାଣି-ସମୂହର ପ୍ରାଣ ସ୍ୱରୂପ ବୋଲି କଥିତ ଅଛି । ଅତଏବ ଯେ ଧେନୁଦାନ କରନ୍ତି ସେ ପ୍ରାଣଦାନ କରନ୍ତି । ୪୯ । ବେଦଜ୍ଞ ବ୍ରାହ୍ମଣଗଣ ଗୋବୃନ୍ଦଙ୍କୁ ସର୍ବଭୂତର ଶରଣ୍ୟ ବୋଲି ଜାଣନ୍ତି, ସେହି କାରଣରୁ ଯେ ଧେନୁଦାନ କରନ୍ତି, ସେ ଶରଣ ଦାନ କରନ୍ତି । ୫୦ । ହେ ଭରତର୍ଷଭ ! ପାପାତ୍ମାର ନାସ୍ତିକମାନଙ୍କୁ ବଧ ନିମିତ୍ତ ଗୋଦାନ କରିବାର ଉଚିତ ନୁହେ, ଏବଂ ଗୋଜୀବୀ ବ୍ୟକ୍ତିଙ୍କୁ ଗୋଦାନ କରିବାର ଉଚିତ ନୁହେ । ମହର୍ଷିଗଣ କହନ୍ତି

ସେ ଯେଉଁ ଜନ ତାଦୃଶ ପାପକର୍ମୀମାନଙ୍କୁ ଗୋ ଦାନ କରନ୍ତି, ସେ ଅକ୍ଷୟ ନରକକୁ ଗମନ କରନ୍ତି । ୫୨ । ବ୍ରାହ୍ମଣଙ୍କ ନିମିତ୍ତ କୃଶା, ବତ୍ସଶୂନ୍ୟା, ବନ୍ଧ୍ୟା, ରୋଗଯୁକ୍ତା, ବିକଳାଙ୍ଗୀ ଓ ପରିଶ୍ରାନ୍ତା ଧେନୁ ଦାନ କରିବ ନାହିଁ । ୫୩ । ଦଶ ସହସ୍ର ଗୋ ପ୍ରଦାତା ମାନବ ସୁରଲୋକରେ ଶକ୍ରଙ୍କ ସହିତ ପ୍ରମୋଦପ୍ରାପ୍ତ ହୁଅନ୍ତି ଏବଂ ଶତସହସ୍ର ଗୋପ୍ରଦାତା ଅକ୍ଷୟ ଲୋକ-ସମୂହକୁ ଲାଭ କରନ୍ତି । ୫୪ ।

ହେ ଭାରତ ! ତୁମ୍ଭ ନିକଟରେ ତିଳଦାନ, ଗୋଦାନ ଓ ଭୂମି-ଦାନର ବିଷୟ କୀର୍ତ୍ତନ କଲୁଁ, ସଂପ୍ରତି ଅନ୍ନଦାନର ଫଳ ଶ୍ରବଣ କର । ୫୫ ।

ହେ କୌନ୍ତେୟ ! ମହର୍ଷିଗଣ ଅନ୍ନଦାନକୁ ଉତ୍କୃଷ୍ଟ ଦାନ ବୋଲି କହନ୍ତି । ରନ୍ତିଦେବ ନରପତି ଅନ୍ନପ୍ରଦାନଦ୍ୱାରା ସ୍ୱର୍ଗଲୋକକୁ ଗମନ କରିଥିଲେ । ୫୬ । ହେ ନରାଧିପ ! ଯେ ଶ୍ରାନ୍ତିଦ୍ୱାରା ଆର୍ତ୍ତ ଓ କ୍ଷୁଧିତ ଲୋକକୁ ଅନ୍ନପ୍ରଦାନ କରନ୍ତି ସେ ସ୍ୱୟମ୍ଭୂ ବ୍ରହ୍ମାଙ୍କର ଉତ୍କୃଷ୍ଟ ସ୍ଥାନକୁ ଗମନ କରନ୍ତି । ୫୭ । ହେ ଭାରତ ! ମାନବଗଣ ଅନ୍ନଦ୍ୱାରା ଯାଦୃଶ ଶ୍ରେୟ ଲାଭ କରନ୍ତି, ହିରଣ୍ୟଦାନ, ବସ୍ତ୍ର ପ୍ରଦାନ ବା ଅନ୍ୟ କୌଣସି ଦାନ ଦ୍ୱାରା ତାଦୃଶ ଶ୍ରେୟ ପ୍ରାପ୍ତ ହୁଅନ୍ତି ନାହିଁ । ୫୮ । ଅନ୍ନ ପ୍ରଥମ ଦ୍ରବ୍ୟ, ଅନ୍ନ ପରମ ଶ୍ରୀ ରୂପରେ ସମ୍ମତ, ଅନ୍ନରୁ ପ୍ରାଣ, ତେଜ, ବୀର୍ଯ୍ୟ, ବଳ ଏହି ସବୁ ପ୍ରାଦୁର୍ଭୂତ ହୁଅନ୍ତି । ୫୯ । ଯେଉଁ ନର ସର୍ବଦା ଏକାଗ୍ରଚିତ୍ତ ହୋଇ ଯାଚକର ପ୍ରାର୍ଥନା ମାତ୍ରେ ଅନ୍ନ ଦାନ କରନ୍ତି, ସେ ଦୁର୍ଗମ-ସମୂହକୁ ପ୍ରାପ୍ତ ହୁଅନ୍ତି ନାହିଁ । ଏହି କଥା * ପରାସର ଋଷି କହି-ଅଛନ୍ତି । ୬୦ । ଦେବଗଣଙ୍କୁ ନ୍ୟାୟାନୁସାରେ ଅର୍ଚ୍ଚନା କରି ଅନ୍ନ-ନିବେଦନ କରିବ । ହେ ରାଜନ୍ ! ମାନବଗଣ ଯେଉଁ ଅନ୍ନ ଭକ୍ଷଣ କରନ୍ତି, ତାହା ସେମାନଙ୍କ ଦେବତାଗଣଙ୍କର ମଧ୍ୟ ଅନ୍ନ ହୁଏ । ୬୧ । ଯେଉଁ ବ୍ୟକ୍ତି କାର୍ତ୍ତିକ ମାସର ଶୁକ୍ଳ ପକ୍ଷରେ ଅନ୍ନଦାନ କରନ୍ତି, ସେ ଇହ ଲୋକରେ ଦୁର୍ଗମ ସମୂହରୁ ଉତ୍ତୀର୍ଣ୍ଣ ହୋଇ ପରଲୋକରେ ଅନନ୍ତ ସୁଖସମ୍ଭୋଗ କରନ୍ତି । ୬୨ । ହେ ଭରତର୍ଷଭ ! ଯେଉଁ ସ୍ଥିରମନା ବ୍ୟକ୍ତି ସ୍ୱୟଂ ଭୋଜନ ନ କରି ଅତିଥିଙ୍କୁ ଅନ୍ନ ପ୍ରଦାନ କରନ୍ତି, ସେ ବ୍ରହ୍ମଜ୍ଞବ୍ୟକ୍ତି ମାନଙ୍କ ଲୋକକୁ ଗମନ କରନ୍ତି । ୬୩ । ଅନ୍ନଦାତା ପୁରୁଷ ଅତି କଷ୍ଟକର ଆପଦ ପ୍ରାପ୍ତ ହୋଇଥିଲେ ସୁଦ୍ଧା ସେ ତହିଁରୁ ଉତ୍ତୀର୍ଣ୍ଣ ହୁଅନ୍ତି ।

* ପରାଶର

ଇହଲୋକରେ ନର ପାପ କଲେ ଅନ୍ନଦାନଦ୍ୱାରା ସେହି ଦୁଷ୍କୃତକୁ ବିଦୂରିତ କରେ । ୨୪ ।

ଆମ୍ଭେ ତୁମ୍ଭ ନିକଟରେ ଅନ୍ନଦାନ, ଜଳଦାନ, ଭୂମିଦାନ ଓ ଗୋଦାନର ଫଳ କୀର୍ତ୍ତନ କଲୁଁ । ୨୫ ।

---

## ଅଧ୍ୟାୟ—୬୨

ଯୁଧିଷ୍ଠିର କହିଲେ—ହେ ତାତ ! ଭାରତ ! ଆପଣ ଯାହା କୀର୍ତ୍ତନ କଲେ, ସେହି ସମସ୍ତ ଦାନର ଫଳ ଶ୍ରବଣ କଲୁଁ, ଇହଲୋକରେ ଅନ୍ନଦାନ ବିଶେଷ ରୂପେ ପ୍ରଶସ୍ତ ଅଟେ । ୧ ।

ହେ ପିତାମହ ! ଇହଲୋକରେ ଜଳଦାନ କଲେ କପରି ମହା ଫଳ ହୁଏ, ଏହା ବିସ୍ତାରିତ ରୂପେ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁ । ୨ ।

ଭୀଷ୍ମ କହିଲେ, ହେ ସତ୍ୟପରାକ୍ରମ ଭରତର୍ଷଭ ! ଆମ୍ଭେ ତୁମ୍ଭ ନିକଟରେ ସମସ୍ତ ଦାନର ବିଷୟକୁ ଯଥା ନିୟମରେ କହିବୁ, ସପ୍ରତି ତାହା ଆମ୍ଭ ନିକଟରୁ ଶ୍ରବଣ କର । ୩ । ହେ ଅନଘ ! ଆମ୍ଭେ ସମସ୍ତ ଦାନଠାରୁ ସମସ୍ତ ଦାନର ବିଷୟ ତୁମ୍ଭଙ୍କୁ କହିବୁ, ଅନ୍ନ ଓ ଜଳଦାନ କରି ନର ଯେଉଁ ଫଳ ଭୋଗ କରନ୍ତି, ତାହା ଅପେକ୍ଷା ଅନ୍ୟ କିଛି ଉତ୍କୃଷ୍ଟ ଦାନ ନାହିଁ, ଏହା ଆମ୍ଭ ମନରେ ବିବେଚିତ ହୁଏ । ହେ ତାତ ! ଅନ୍ନ ହେତୁରୁ ସମସ୍ତ ପ୍ରାଣୀଗଣ ଜାତ ହୁଅନ୍ତି । ୫ । ଅତଏବ ଇହସଂସାରରେ ସମସ୍ତ ଲୋକେ ଅନ୍ନକୁ ଉତ୍କୃଷ୍ଟ ବୋଲି କହନ୍ତି । ଅନ୍ନ ହେତୁରୁ ପ୍ରାଣିଗଣଙ୍କର ବଳ ଓ ତେଜ ସର୍ବଦା ବର୍ଦ୍ଧିତ ହୁଏ । ୬ । ଅତଏବ ପ୍ରଜାପତି ଅନ୍ନଦାନକୁ ସର୍ବ-ଶ୍ରେଷ୍ଠ ଦାନ କହନ୍ତି । ହେ କୁନ୍ତୀପୁତ୍ର ! ତୁମ୍ଭେ ସାବିତ୍ରୀଙ୍କର ମଧ୍ୟ ପବିତ୍ର ବାକ୍ୟ ଶ୍ରବଣ କରିଥିବ । ୭ । ହେ ମହାମତେ ! ଦେବସତ୍ରରେ ଯାହାଠାରୁ ଯେଉଁ ପ୍ରକାରରେ ଯେଉଁ ଅନ୍ନ ଯେଉଁ ନରଦ୍ୱାରା ପ୍ରଦତ୍ତ ହୁଏ, ତାହାଦ୍ୱାରା ପ୍ରାଣ ପ୍ରଦତ୍ତ ହୁଏ । ୮ । ଇହଲୋକରେ ପ୍ରାଣଦାନ ଅପେକ୍ଷା ଅନ୍ୟ କିଛି ଶ୍ରେଷ୍ଠ ଦାନ ନାହିଁ । ହେ ମହାବାହୋ ! ଲୋମଶଙ୍କର ସେହି ବାକ୍ୟ ତୁମ୍ଭର ଶ୍ରୁତ ଅଛି । ୯ । ହେ ବିଶାଂପତେ ! ଲୋମଶ କହନ୍ତି ପୂର୍ବକାଳରେ ଶିବି ନରପାଳ କପୋତର ପ୍ରାଣଦାନ କରି ଯାହା ପ୍ରାପ୍ତ ହୋଇଥିଲେ, ଦ୍ୱିଜ-ଗଣଙ୍କୁ ଅନ୍ନଦାନ କଲେ ସେହି ଗତି ଲାଭ ହୁଏ । ୧୦ ।

ହେ କୁରୁସତ୍ତମ ! ଆମ୍ଭେ ଏହା ଶୁଣିଅଛୁ ଯେ ପ୍ରାଣଦାତାଙ୍କର ତାହାଠାରୁ ଉତ୍କୃଷ୍ଟ ଗତି ଲାଭ ହୁଏ, ପାନୀୟ ଅପେକ୍ଷା ଅନ୍ନ ଉତ୍କୃଷ୍ଟ ଅଟେ, ଜଳରୁ ଅନ୍ନ ଉତ୍ପନ୍ନ ହୁଏ । ୧୧ । ନୀରଜାତ ଅର୍ଥାତ୍ ଧାନ୍ୟ ପ୍ରଭୃତି ବ୍ୟତିରେକେ କୌଣସି ପ୍ରାଣୀ ଜୀବନଧାରଣ କରି ପାରନ୍ତି ନାହିଁ । ଗ୍ରହ-ଗଣେଶ୍ୱର ଭଗବାନ୍ ଚନ୍ଦ୍ରମା ନୀରଜାତ ଅଟନ୍ତି । ୧୨ । ହେ ମହାରାଜ ! ଯାହାକୁ ପାନ କଲେ ମୃତ୍ୟୁ ହୁଏ ନାହିଁ, ତାହାକୁ ଅମୃତ, ସୁଧା ଓ ସ୍ୱଧା କହନ୍ତି । ହେ ବିଶାଂପତେ ! ଯେଉଁମାନଙ୍କ ହେତୁରୁ ପ୍ରାଣିଗଣଙ୍କର ପ୍ରାଣ ସମ୍ଭୃତ ହୁଏ, ସେହି ଅନ୍ନ ଔଷଧି ଓ ଗୁଳ୍ମ ଲତାସମୂହ ଜଳ ହେତୁରୁ ଉତ୍ପନ୍ନ ହୋଇଅଛନ୍ତି । ୧୩ । ଦେବତାମାନଙ୍କର ଅମୃତ, ନାଗମାନଙ୍କର ସୁଧା, ପିତୃଗଣଙ୍କର ସ୍ୱଧା, ପଶୁଗଣଙ୍କର ଗୁଳ୍ମଲତା ପ୍ରଭୃତି ଓ ମନୁଷ୍ୟ-ଗଣଙ୍କର ଧାନ୍ୟ ପ୍ରଭୃତି ଅନ୍ନ, ପ୍ରାଣ ସ୍ୱରୂପ ଅଟେ ବୋଲି ପଣ୍ଡିତମାନେ କହନ୍ତି ।

ହେ ନର ବ୍ୟାଘ୍ର ! ଉଲ୍ଲିଖିତ ଦ୍ରବ୍ୟ ସମୂହ ଜଳ ହେତୁରୁ ଜନ୍ମି ଅଛନ୍ତି ।୧୫। ସେହି କାରଣରୁ ପାନୀୟ ଦାନ ଅପେକ୍ଷା କୌଣସି ଦାନ ଉତ୍କୃଷ୍ଟ ନୁହେଁ । ମନୁଷ୍ୟ ଯଦି ଆପଣାର ଐଶ୍ୱର୍ଯ୍ୟ ଇଚ୍ଛା କରନ୍ତି, ତେବେ ସର୍ବଦା ଜଳଦାନ କରିବେ । ୧୬ । ହେ କୌନ୍ତେୟ ! ଇହଲୋକରେ ଜଳଦାନ କଲେ ମନୁଷ୍ୟ ଯଶସ୍ୱୀ, ଆୟୁଷ୍ମାନ୍ ଓ ଧନ୍ୟ ଧନ୍ୟ ହୁଅନ୍ତି । ଜଳଦାତା ସର୍ବଦା ଶତ୍ରୁମାନଙ୍କ ଉପରେ ଅଧିଷ୍ଠାନ କରନ୍ତି । ୧୭ । ତାହାଙ୍କର କାମନା ସମୂହ ସିଦ୍ଧ ହୁଏ ଓ ଶାଶ୍ୱତ କୀର୍ତ୍ତି ଲାଭ ହୁଏ ଏବଂ ପରଲୋକରେ ଅନନ୍ତ ସୁଖ ଭୋଗ କରନ୍ତି ଓ ସମସ୍ତ ପାପରୁ ମୁକ୍ତ ହୁଅନ୍ତି । ୧୮ ।

ହେ ମହାଦ୍ୟୁତେ ! ନରବ୍ୟାଘ୍ର ! ମନୁ କହିଅଛନ୍ତି ଯେ ଜଳଦାତା ସ୍ୱର୍ଗକୁ ଗମନ କରି ଅକ୍ଷୟ ଲୋକ ସମୂହକୁ ପ୍ରାପ୍ତ ହୁଅନ୍ତି । ୧୯ ।

---

# ଅଧ୍ୟାୟ—୭୮

ଯୁଧିଷ୍ଠିର କହିଲେ, ହେ ପିତାମହ ! ତିଳଦାନ କିପ୍ରକାର, ଦୀପଦାନ କିପ୍ରକାର, ଅନ୍ନ ଓ ବସ୍ତ୍ରଦାନ ମଧ୍ୟ କିପ୍ରକାର ଅଟେ, ତାହା ଆପଣ ପୁନଶ୍ଚ କହିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ପ୍ରାଚୀନ ପଣ୍ଡିତଗଣ ଉକ୍ତ ବିଷୟରେ ବ୍ରାହ୍ମଣ ଓ ଯମଙ୍କ ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସକୁ କହିଅଛନ୍ତି । ୨ । ହେ ନରବର ! ମଧ୍ୟ ଦେଶରେ ଗଙ୍ଗା ଓ ଯମୁନାର ମଧ୍ୟପ୍ରଦେଶରେ ଯାମୁନଗିରିର ଅଧୋଭାଗରେ ବ୍ରାହ୍ମଣମାନଙ୍କର ପର୍ଣ୍ଣଶାଳା ନାମରେ ବିଖ୍ୟାତ ଅତି ରମଣୀୟ ଗୋଟିଏ ମହାନ୍ ଗ୍ରାମ ଥିଲା । ସେଠାରେ ବହୁଳ ବିଦ୍ୱାନ୍ ବ୍ରାହ୍ମଣଗଣ ବାସ କରିଥିଲେ । ୪ । ତଦନନ୍ତର ଯମଦେବ କଳ୍ପିତ କୃଷ୍ଣବସ୍ତ୍ରଧାରୀ, ରକ୍ତଲୋଚନ, ଊର୍ଦ୍ଧ୍ୱରୋମା, କାକ ସଦୃଶ ଜଙ୍ଘା ଅକ୍ଷି ଓ ନାସିକାଯୁକ୍ତ ପୁରୁଷଙ୍କୁ କହିଲେ । ୫ । ତୁମ୍ଭେ ପର୍ଣ୍ଣଶାଳା ନାମକ ବ୍ରାହ୍ମଣ ଗ୍ରାମକୁ ଗମନ କର । ସେଠାରୁ ଅଗସ୍ତ୍ୟଗୋତ୍ର ସମ୍ଭୂତ ଶାନ୍ତ-ସ୍ୱଭାବ ଅଧ୍ୟାପକ ମହାତ୍ମା ଶର୍ମି ନାମକ ବ୍ରାହ୍ମଣଙ୍କୁ ଯତ୍ନପୂର୍ବକ ଆଣ । ଆମ୍ଭେ ତାହାଙ୍କୁ ଯଥୋଚିତ ସତ୍କାର କରିବୁ । ତଦୀୟ ଗୃହପାର୍ଶ୍ୱରେ ତାହାଙ୍କ ସଦୃଶ ବୁଦ୍ଧି, ବିଦ୍ୟା, ରୂପ, ଗୁଣ, ଗୋତ୍ର, ଚରିତ୍ର, ଅପତ୍ୟ ଓ ବୟଃକ୍ରମ ସମ୍ପନ୍ନ ଅନ୍ୟ ଏକ ବ୍ରାହ୍ମଣ ବାସ କରନ୍ତି, ଭ୍ରମବଶରେ ଶର୍ମିଙ୍କ ପରିବର୍ତ୍ତରେ ତାହାଙ୍କୁ ଆନୟନ କରିବ ନାହିଁ । ମହାତ୍ମା ଯମଦୂତ ଏହିପରି ଆଦେଶ ପ୍ରାପ୍ତ ହୋଇ ଅବିଳମ୍ବରେ ପର୍ଣ୍ଣଶାଳା ନଗରୀକୁ ଯାଇ ଯମଦେବ ଯାହାଙ୍କୁ ଆଣିବା ନିମିତ୍ତ ନିଷେଧ କରିଥିଲେ, ଭ୍ରମବଶରେ ତାହାଙ୍କୁ ତଦୀୟ ସନ୍ନିଧିରେ ପ୍ରବେଶ କରାଇଲେ । ତେତେବେଳେ ଭଗବାନ୍ ବୀର୍ଯ୍ୟଶାଳୀ ଯମଦେବ ସେହି ବ୍ରାହ୍ମଣଙ୍କୁ ଦର୍ଶନ କଲାମାତ୍ରେ ଗାତ୍ରୋତ୍ଥାନ ପୂର୍ବକ ତାହାଙ୍କର ଯଥୋଚିତ ସତ୍କାର କରି ଦୂତଙ୍କୁ କହିଲେ, ଆମ୍ଭେ ଯାହାଙ୍କୁ ଆଣିବା ନିମିତ୍ତ ନିଷେଧ କରିଥିଲୁଁ, ତୁମ୍ଭେ ତାହାଙ୍କୁ ଆନୟନ କରିଅଛ; ଅତଏବ ଏହାଙ୍କୁ ନେଇ ଅନ୍ୟ ବ୍ୟକ୍ତିଙ୍କୁ ଆନୟନ କର । ଧର୍ମରାଜ ଏହିପରି କହିବାରୁ ସେହି ଦ୍ୱିଜ ତାହାଙ୍କୁ କହିଲେ, ହେ ଅଚ୍ୟୁତ ! ଆମ୍ଭେ ଅଧ୍ୟୟନ ଦ୍ୱାରା ନିର୍ବିଣ୍ଣ ହୋଇଅଛୁ । ଆମ୍ଭର ଯେଉଁ ସମୟ ଅବଶିଷ୍ଟ ଅଛି, ତାବତ୍‌କାଳ ପର୍ଯ୍ୟନ୍ତ ଏହି ଲୋକରେ ବସତି କରିବୁ । ୧୨ ।

ଯମ କହିଲେ, ଆମ୍ଭେ କାଳ କର୍ତ୍ତୃକ ବିହିତ ପରମାୟୁର ପ୍ରମାଣ ଜାଣିନାହୁଁ । ଯେଉଁ ବ୍ୟକ୍ତି ଧର୍ମାଚରଣ କରନ୍ତି, ଆମ୍ଭେ ତାହାଙ୍କୁ କେବଳ ଜାଣୁ । ୧୩ । ଅତଏବ ହେ ମହାଦ୍ୟୁତେ ! ଅଚ୍ୟୁତ ! ବିପ୍ର ! ତୁମ୍ଭେ ଆଜ ସ୍ୱୀୟ ଗୃହକୁ ଗମନ କର ଏବଂ ଆମ୍ଭେ ତୁମ୍ଭର କେଉଁ ଉପକାର କରିବୁ, ତାହା ପ୍ରଶ୍ନ କର । ୧୪ ।

ବ୍ରାହ୍ମଣ କହିଲେ, ହେ ସାଧୁଶ୍ରେଷ୍ଠ ! ଭୂଲୋକରେ ଯେଉଁ କର୍ମ କଲେ ସୁମହତ୍ ପୁଣ୍ୟ ହୁଏ, ଆପଣ ସେହି ବିଷୟରେ ଆମ୍ଭଙ୍କୁ ଉପଦେଶ ପ୍ରଦାନ କରିବା ହେଉନ୍ତୁ । ଆପଣ ସମସ୍ତ ତ୍ରୈଲୋକ୍ୟର ଧର୍ମାଧର୍ମର ପ୍ରମାଣ । ୧୫ ।

ଯମଦେବ କହିଲେ, ହେ ବିପ୍ରର୍ଷେ ! ଉତ୍କୃଷ୍ଟ ପ୍ରଦାନର ବିଧି ଶ୍ରବଣ କର । ଇହ ସଂସାରରେ ତିଳ ଦାନ ପରମ ପବିତ୍ର ଓ ଅକ୍ଷୟ ଫଳପ୍ରଦ । ୧୬ ।

ହେ ଦ୍ୱିଜବର ! ଯେଉଁମାନେ ନିଜ ଗୃହର ସର୍ବତୋଭାବରେ ଶ୍ରେୟ ଇଚ୍ଛା କରନ୍ତି, ସେହିମାନଙ୍କର ଯଥାଶକ୍ତି ତିଳଦାନ କରିବାର ଉଚିତ । ତିଳସମୂହ ନିତ୍ୟ ଦାନ ହେଉଥିବାରୁ ସମସ୍ତ କାମନା ପୂରଣ କରେ । ୧୭ । ପଣ୍ଡିତଗଣ ଶ୍ରାଦ୍ଧ ବିଷୟରେ ତିଳଦାନକୁ ପ୍ରଶଂସା କରନ୍ତି । ଅତଏବ ତିଳଦାନ ସର୍ବୋତ୍କୃଷ୍ଟ, ଅତଏବ ବିଧି ବିହିତ କର୍ମଦ୍ୱାରା ବ୍ରାହ୍ମଣ-ଗଣଙ୍କୁ ତିଳଦାନ କର । ୧୮ । ବୈଶାଖ ମାସର ପୌର୍ଣ୍ଣମୀ ତିଥିରେ ଦ୍ୱିଜଗଣଙ୍କୁ ତିଳଦାନ କରିବାର ଓ ତିଳଭୋଜନ କରାଇବାର ବିଧେୟ ଓ ଯେଉଁମାନେ ନିଜ ଗୃହର ସର୍ବପ୍ରକାରରେ ଶ୍ରେୟ ଇଚ୍ଛା କରିବେ ସେମାନେ ତିଳଦ୍ୱାରା ସର୍ବଦା ଉଦ୍‌ବର୍ତ୍ତନ ଦାନ କରିବେ । ୧୯ । ଜଳଦାନ କରିବାର ଓ ଜଳପାନ କରାଇବାର ତିଳଦାନ ଓ ତିଳ ଭକ୍ଷଣ କରାଇବାର ସମାନ ଅଟେ, ଏହି ବିଷୟରେ କିଛି ସଂଶୟ ନାହିଁ । ହେ ଦ୍ୱିଜବର ! ଭୂମଣ୍ଡଳରେ ପୁଷ୍କରିଣୀ, ତଡ଼ାଗ ଓ କୂପସମୂହ ଖନନ କରାଇବ, ଇହଲୋକରେ ଏହି କାର୍ଯ୍ୟ ସବୁ ଅତି ଦୁର୍ଲ୍ଲଭ । ୨୧ ।

ହେ ଦ୍ୱିଜସତ୍ତମ ! ତୁମ୍ଭେ ସର୍ବଦା ଜଳଦାନ କରିବ, ଏହା ସର୍ବୋତ୍କୃଷ୍ଟ ପୁଣ୍ୟକର୍ମ ଅଟେ । ତୁମ୍ଭେ ଜଳଦାନ ନିମିତ୍ତ ପାନଶାଳା ପ୍ରସ୍ତୁତ କରିବ । ଅନ୍ନଭୋଜନ କଲେ ମଧ୍ୟ ବିଶେଷରେ ପାନୀୟ ପ୍ରଦାନ କରିବାର ଉଚିତ । ୨୨ ।

ଯୁଧିଷ୍ଠିର କହିଲେ, ହେ ରାଜନ୍ ! ତେତେବେଳେ ସେହି ବିପ୍ର ଯମଙ୍କଠାରୁ ଏହିପରି ବାକ୍ୟ ଶ୍ରବଣ କଲା ଉତ୍ତାରେ ଯମଦୂତ ତାହାଙ୍କୁ ତଦୀୟ ଗୃହକୁ ଘେନିଗଲେ, ଏବଂ ଯମଦେବ ତାହାଙ୍କୁ ଯେଉଁ ଉପଦେଶ ଦେଇଥିଲେ, ସେ ତଦନୁସାରେ ସମସ୍ତ କାର୍ଯ୍ୟକଲେ । ତଦନନ୍ତର ଯମଦୂତ ସେହି ଉଲ୍ଲିଖିତ ଶର୍ମିଙ୍କୁ ଗ୍ରହଣପୂର୍ବକ ତେତେବେଳେ ଯମାଳୟକୁ ଗମନ କଲେ ଏବଂ ଧର୍ମରାଜଙ୍କ ନିକଟରେ ତାହାଙ୍କ କଥା ନିବେଦନ କଲେ । ପ୍ରତାପଶାଳୀ ଧର୍ମରାଜ ସେହି ଧର୍ମଜ୍ଞ ବ୍ରାହ୍ମଣଙ୍କୁ ପୂଜା କରି ଓ ତାହାଙ୍କ ସହିତ କଥୋପକଥନ ପୂର୍ବକ ତାହାଙ୍କୁ ସ୍ୱକୀୟ ଗୃହକୁ ବିଦାୟ ଦେଲେ । ୨୫ । ଯମଦେବ ତାହାଙ୍କୁ ଯେଉଁ ସର୍ବପ୍ରକାର ଉପଦେଶ ଦେଇଥିଲେ, ସେ ଯମଲୋକରୁ ପ୍ରତ୍ୟାଗତ ହୋଇ ଧର୍ମରାଜଙ୍କଦ୍ୱାରା କଥିତ ସମସ୍ତ କାର୍ଯ୍ୟ କରିଥିଲେ । ଯମଦେବ ପିତୃଲୋକଙ୍କ ହିତକାମନାରେ ଦୀପ ଦାନର ପ୍ରଶଂସା କରନ୍ତି । ସେହି କାରଣରୁ ଦୀପପ୍ରଦାତା ମାନବ ସର୍ବଦା ପିତୃଗଣଙ୍କୁ ଦୀପଦାନଦ୍ୱାରା ଉଦ୍ଧାର କରନ୍ତି । ୨୭ । ହେ ବିଭୋ ! ଭରତଶ୍ରେଷ୍ଠ ! ସେହି କାରଣରୁ ସର୍ବଦା ଦୀପଦାନ କରିବାର ଉଚିତ । ଅତଏବ ଦୀପସମୂହ ନିଜର ଦେବଗଣ ପିତୃଗଣଙ୍କ ଚକ୍ଷୁର ହିତକାରକ ଅଟେ ବୋଲି ସମ୍ମତ ହୋଇଅଛି । ୨୮ ।

ହେ ନରନାଥ ! ରତ୍ନ ଦାନ କଲେ ଅତି ଉତ୍କୃଷ୍ଟ ପୁଣ୍ୟ ହୁଏ ବୋଲି ଏହା ପୂର୍ବେ କୁହାଯାଇଛି ; ଯେଉଁ ବିପ୍ର ରତ୍ନ ବିକ୍ରୟ କରି ଯାଗ କରନ୍ତି, ତାହାଙ୍କର କୌଣସି ଭୟ ହୁଏ ନାହିଁ । ଯେଉଁ ବ୍ରାହ୍ମଣ ରତ୍ନଦାନ କରନ୍ତି ଏବଂ ଯେ ତାହା ପ୍ରତିଗ୍ରହ କରନ୍ତି, ସେହି ଦାତା ଓ ପ୍ରତିଗ୍ରହକର୍ତ୍ତା ଉଭୟଙ୍କ ପକ୍ଷରେ ତାହା ଅକ୍ଷୟଫଳଜନକ ହୁଏ । ଯେ ମର୍ଯ୍ୟାଦାରେ ଅବସ୍ଥିତ ହୋଇ ତାଦୃଶ ବ୍ରାହ୍ମଣଙ୍କୁ ରତ୍ନ ଦାନ କରନ୍ତି, ସେହି ଉଭୟ ବ୍ୟକ୍ତିଙ୍କର ଅକ୍ଷୟ ଧର୍ମ ହୁଏ । ଏହା ଧର୍ମଜ୍ଞ ମନୁ କହି ଅଛନ୍ତି । ଆମ୍ଭେମାନେ ଶୁଣିଅଛୁଁ । ବସ୍ତ୍ରଦାନଦ୍ୱାରା ନର ସ୍ୱଦାରନିରତ, ସୁନ୍ଦରବର୍ଣ୍ଣ ଓ ସୁବେଶସମ୍ପନ୍ନ ହୁଅନ୍ତି । ୩୨ । ହେ ପୁରୁଷପ୍ରବର ! ବେଦ ପ୍ରାମାଣ୍ୟ ଦର୍ଶନାନୁସାରେ ଗୋଦାନ, ସୁବର୍ଣ୍ଣଦାନ ଓ ତିଳଦାନର ବିଷୟ ବହୁବାର ବର୍ଣ୍ଣିତ ହେଲା । ମାନବଗଣଙ୍କର ବିବାହ କରିବାର, ବିବାହ କରି ପୁତ୍ରୋତ୍ପାଦନ କରିବାର ଅବଶ୍ୟ କର୍ତ୍ତବ୍ୟ ଅଟେ । ହେ କୌରବ୍ୟ ! ସମସ୍ତ ଲାଭ ଅପେକ୍ଷା ପୁତ୍ରଲାଭ ଉତ୍କୃଷ୍ଟ । ୩୪ ।

---

# ଅଧ୍ୟାୟ—୭୯

ଯୁଧିଷ୍ଠିର କହିଲେ, ହେ ମହାପ୍ରାଜ୍ଞ କୁରୁଶ୍ରେଷ୍ଠ ! ଆପଣ ପୁନଶ୍ଚ ଦାନସମୂହର ଉତ୍କୃଷ୍ଟ ବିଧି ବିଶେଷତଃ ଭୂମିଦାନର ବିଷୟ କହିବା ହେଉନ୍ତୁ । ୧ । କ୍ଷତ୍ରିୟ ଯାଜ୍ଞିକ ବ୍ରାହ୍ମଣଙ୍କୁ ଭୂମିଦାନ କରିବେ । ବ୍ରାହ୍ମଣ ମଧ୍ୟ ତାହା ବିଧି ଅନୁସାରେ ପ୍ରତିଗ୍ରହଣ କରିବେ । କ୍ଷତ୍ରିୟ ଭିନ୍ନ ଅନ୍ୟ ବ୍ୟକ୍ତି ଦାନ କରିବାକୁ ସମର୍ଥ ନୁହନ୍ତି । ୨ । ବର୍ଣ୍ଣ ସମୂହ ଫଳାକାଙ୍କ୍ଷୀ ହୋଇ ଯାହା ପ୍ରଦାନ କରିବାକୁ ସମର୍ଥ ହୁଅନ୍ତି, ଅଥବା ବେଦ ମଧ୍ୟରେ ଯାହା ଉତ୍ତମ ରୂପେ ଆଖ୍ୟାତ ହୋଇଅଛି ଆପଣ ଆମ୍ଭ ନିକଟରେ ତାହା ବ୍ୟାଖ୍ୟା କରିବା ହେଉନ୍ତୁ । ୩ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ତ୍ରିଗୁଣନାମ ଅର୍ଥାତ୍ ଗୋ-ପଦବାଚ୍ୟ ଗୋ, ଭୂମି ଓ ବିଦ୍ୟା ଏହି ତିନି ବିଷୟକୁ ଦାନ କରିବା ଅବଶ୍ୟ କର୍ତ୍ତବ୍ୟ । ଏହି ତିନଗୋଟି ଦାନର ଫଳ ସମାନ ଅଟେ ଏବଂ ଇହଲୋକରେ ଏହାଦ୍ୱାରା ମନୁଷ୍ୟ ସମସ୍ତ କାମନାର ଫଳ ଲାଭ କରନ୍ତି । ୪ । ଯେଉଁ ବ୍ୟକ୍ତି ଶିଷ୍ୟକୁ ଧର୍ମଯୁକ୍ତ ବେଦବାକ୍ୟ କହନ୍ତି, ସେ ଗୋ ଓ ଭୂମିପ୍ରଦାନ ସଦୃଶ ଫଳ ପ୍ରାପ୍ତ ହୁଅନ୍ତି । ୫ । ଏହିପରି ସମସ୍ତେ ଗୋ ସମୂହକୁ ପ୍ରଶଂସା କରନ୍ତି, ଗୋଦାନ ଅପେକ୍ଷା ଅନ୍ୟ କିଛି ଶ୍ରେଷ୍ଠଦାନ ନାହିଁ । ହେ ଯୁଧିଷ୍ଠିର ! ଗୋ ସମୂହର ଫଳ ଅତି ସନ୍ନିକୃଷ୍ଟ ଅର୍ଥାତ୍ ଗୋଦାନ ଶୀଘ୍ର ଫଳପ୍ରଦ ହୁଏ ଏବଂ ଅଳ୍ପ ଅର୍ଥଦ୍ୱାରା ତାହା ସିଦ୍ଧ ହୁଏ । ୬ । ସର୍ବ-ସୁଖପ୍ରଦ ଗୋବୃନ୍ଦ ସର୍ବଭୂତର ମାତା, ଯେଉଁ ବ୍ୟକ୍ତି ନିଜର ମଙ୍ଗଳ କାମନା କରନ୍ତି ସେ ସର୍ବଦା ଗୋସମୂହଙ୍କୁ ପ୍ରଦକ୍ଷିଣ କରିବେ । ୭ ।

ପଦଦ୍ୱାରା ଗୋବୃନ୍ଦଙ୍କୁ ତାଡ଼ନା କରିବାର ଉଚିତ ନୁହେ ଏବଂ ଗୋବୃନ୍ଦଙ୍କ ମଧ୍ୟ ଦେଇ ଗମନ କରିବାର ଉଚିତ ନୁହେ । ସେହି କାରଣରୁ ମଙ୍ଗଳାୟତନ ଦେବୀ ସ୍ୱରୂପ ଗୋବୃନ୍ଦ ସର୍ବଦା ପୂଜ୍ୟ ଅଟନ୍ତି । ୮ ।

ଯଜ୍ଞ ନିମିତ୍ତ ଅଥବା କୃଷି ନିମିତ୍ତ କର୍ମରେ ନିଯୁକ୍ତ ବଳୀବର୍ଦ୍ଦ-ଗଣଙ୍କୁ ଦେବକୃତ ପ୍ରତୋଦଦ୍ୱାରା ତାଡ଼ନା କଲେ ଦୋଷ ନାହିଁ, ତନ୍ମଧ୍ୟରେ ଯଜ୍ଞ ନିମିତ୍ତ କର୍ଷଣ କାଳରେ ତାଡ଼ନା ଶ୍ରେୟସ୍କର ଏବଂ କେବଳ କୃଷି ନିମିତ୍ତ ତାଡ଼ନା ନିନ୍ଦନୀୟ; ଅତଏବ କୃଷିନିମିତ୍ତ ଗୋଦ୍ୱାରା କର୍ଷଣ

ଦୋଷାବହ ଅଟେ । ୯ । ପଣ୍ଡିତ ବ୍ୟକ୍ତି ଗୋବୃନ୍ଦର ପଳାୟନ ସମୟରେ ଅଥବା ଉପବେଶନ ସମୟରେ ସେମାନଙ୍କୁ ଉଦ୍‌ବେଜିତ କରିବେ ନାହିଁ, ଗୋବୃନ୍ଦ ତୃଷାଯୁକ୍ତ ହୋଇ ନିରୀକ୍ଷଣ କଲେ ମନୁଷ୍ୟ ସବାନ୍ଧବରେ ନିହତ ହୁଏ । ୧୦ । ପିତୃଗୃହ ଓ ଦେବଗୃହ ସମୂହ ଯେଉଁମାନଙ୍କର ଶକୃତ୍ ଅର୍ଥାତ୍ ଗୋମୟଦ୍ୱାରା ସର୍ବଦା ପବିତ୍ର ହୁଏ, ତାହା ଅପେକ୍ଷା ଅଧିକ କ ପବିତ୍ର ଅଛି ? ୧୧ । ଯେ ସ୍ୱୟଂ ଭକ୍ଷ ପ୍ରଭୃତି ଆହରଣ ନ କରି ସମ୍ବତ୍ସର କାଳ ଅନ୍ୟ ବ୍ୟକ୍ତିଙ୍କ ଗୋ-ସମୂହଙ୍କୁ ଘାସମୁଷ୍ଟି ପ୍ରଦାନ କରନ୍ତି, ତାହାଙ୍କର ସେହି ବ୍ରତ ସମସ୍ତ କାମନାର ଫଳକୁ ପ୍ରଦାନ କରେ । ୧୨ । ସେ ପୁତ୍ରସମୂହ, ଯଶ, ଅର୍ଥ ଓ ଶ୍ରୀ ଯୁକ୍ତ ହୁଅନ୍ତି, ତାହାଙ୍କର ଅଶୁଭ ନଷ୍ଟ ହୁଏ ଏବଂ ଦୁଃସ୍ୱପ୍ନ ବିନଷ୍ଟ ହୁଏ । ୧୩ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! କାଦୃଶ ଲକ୍ଷଣଯୁକ୍ତ ଗୋ-ସମୂହଙ୍କୁ ଦାନ ଦେବାର ଉଚିତ ଏବଂ କେଉଁମାନଙ୍କୁ ତ୍ୟାଗ କରିବା କର୍ତ୍ତବ୍ୟ, କିପରି ବ୍ୟକ୍ତିଙ୍କୁ ଦାନ ଦେବାର ବିଧେୟ ଓ କିପରି ବ୍ୟକ୍ତିଙ୍କୁ ଦାନ ଦେବାର ଉଚିତ ନୁହେଁ । ୧୪ ।

ଭୀଷ୍ମ କହିଲେ, ହେ ମହାରାଜ ! ଅସଦ୍‌ବୃତ୍ତ, ପାପାଚରଲୁବ୍‌ଧ, ମିଥ୍ୟାବାଦୀ ଏବଂ ହବ୍ୟକବ୍ୟ ପରିବର୍ଜିତ ବ୍ୟକ୍ତିଙ୍କୁ କଦାପି ଗୋଦାନ ଦେବ ନାହିଁ । ୧୫ । ଭିକ୍ଷୁକ, ବହୁପୁତ୍ର, ଶ୍ରୋତ୍ରିୟ ଓ ଆହିତାଗ୍ନି ବ୍ରାହ୍ମଣଙ୍କୁ ଦଶ-ଗୋଟି ଗୋ ପ୍ରଦାନ କଲେ ଦାତା ସର୍ବୋତ୍କୃଷ୍ଟ ଲୋକସମୂହକୁ ପ୍ରାପ୍ତ ହୁଅନ୍ତି । ୧୬ । ଦାନ ଗ୍ରହଣକର୍ତ୍ତା ପ୍ରତିଗ୍ରହଲବ୍ଧ ଧନଦ୍ୱାରା ଯେଉଁ ଧର୍ମ ଆଚରଣ କରନ୍ତି ଏବଂ ତାହାଙ୍କର ଯାହା କିଛି ଧର୍ମଫଳ ଲାଭ ହୁଏ, ଦାତା ସେହି ସବୁର ଅଂଶଭାଗୀ ହୁଅନ୍ତି । ସୁତରାଂ ତନ୍ନିମିତ୍ତ ପ୍ରବୃତ୍ତି ହୁଏ । ୧୭ । ଯେ ଏହାଙ୍କୁ ଉତ୍ପାଦନ କରନ୍ତି, ଯେ ଏହାଙ୍କୁ ଭୟରୁ ପରିତ୍ରାଣ କରନ୍ତି ଓ ଯେ ଏହାଙ୍କ ଜୀବିକାନିର୍ବାହ କରନ୍ତି, ସେହି ତିନିଜଣ ଏହାଙ୍କ ପିତା । ୧୮ । ଗୁରୁ ଶୁଶ୍ରୂଷା ଦ୍ୱାରା ପାପ ଦୂର ହୁଏ, ଅଭିମାନ ଉତ୍କୃଷ୍ଟ ଯଶକୁ ନାଶ କରେ, ତିନିଗୋଟି ପୁତ୍ର ଜନ୍ମଗ୍ରହଣ କଲେ ଅପୁତ୍ରତା ରହେ ନାହିଁ ଏବଂ ଦଶଗୋଟି ଧେନୁ ବୃତ୍ତିବିହୀନତା ଦୋଷକୁ ବିନଷ୍ଟ କରେ । ହେ ପାର୍ଥ ! ଆମ୍ଭେ ପୂର୍ବେ ଦ୍ୱାରବତୀ ନଗରୀରେ ଏହି କଥା ଶୁଣିଥିଲୁ । ୧୯ । ଯେଉଁ ବ୍ରାହ୍ମଣ ବେଦାନ୍ତନିଷ୍ଠ, ଶାସ୍ତ୍ରପାରଦର୍ଶୀ, ଜ୍ଞାନବାନ୍, ଜିତେନ୍ଦ୍ରିୟ, ଶିଷ୍ଟ, ଦାନ୍ତ, ସଂଯତ ଏବଂ ଯେଉଁ ବ୍ୟକ୍ତି ସର୍ବପ୍ରାଣିଗଣଙ୍କୁ ନିତ୍ୟ ପ୍ରିୟ ବାକ୍ୟ କହନ୍ତି (୨୦), ଯେଉଁ ବ୍ରାହ୍ମଣ କ୍ଷୁଧା ଭୟରେ ଅସତ୍‌କର୍ମ ନ କରନ୍ତି, ଯେ

ମୃଦୁ, ଶାନ୍ତ, ଅତିଥିପ୍ରିୟ, ସୁଶୀଳ ଓ ସ୍ୱଦାରାଯୁକ୍ତ, ତାଦୃଶ ଦ୍ୱିଜଙ୍କୁ ବୃତ୍ତି ଦାନ କରିବ । ୨୧ ।

ଉତ୍କୃଷ୍ଟ ପାତ୍ରରେ ଗୋଦାନ କଲେ ଯେଉଁ ପରିମାଣରେ ଧର୍ମ ହୁଏ, ବ୍ରାହ୍ମଣସ୍ୱ ଅପହରଣ କଲେ ତାଦୃଶ ପରିମାଣରେ ଅଧର୍ମ ହୁଏ । ବ୍ରାହ୍ମଣସ୍ୱ ଅପହରଣ ସମସ୍ତ ଦୁରବସ୍ଥାର କାରଣ, ଅତଏବ ବ୍ରହ୍ମସ୍ୱ ଏବଂ ବ୍ରହ୍ମପତ୍ନୀ-ମାନଙ୍କୁ ଦୂରରୁ ପରିତ୍ୟାଗ କରିବ । ୨୨ ।

---

## ଅଧ୍ୟାୟ—୭୦

ଭୀଷ୍ମ କହିଲେ—ହେ କୁରୁଶ୍ରେଷ୍ଠ ! ଏହି ବ୍ରାହ୍ମଣସ୍ୱ ହରଣ ବିଷୟରେ ନୃଗରାଜା ଯେଉଁ ସୁମହତ୍ କଷ୍ଟ ଭୋଗ କରିଥିଲେ, ତାହା ସାଧୁଗଣ କୀର୍ତ୍ତନ କରନ୍ତି । ୧ । ହେ ପାର୍ଥ ! ଆମ୍ଭେ ଶୁଣିଅଛୁ ପୂର୍ବେ ଜଳପାନାଭିଳାଷୀ ନରଗଣ ଦ୍ୱାରବତୀ ପୁରୀରେ ପ୍ରବେଶ ସମୟରେ ତୃଣଲତାଦ୍ୱାରା ସମାବୃତ ଗୋଟିଏ ମହାକୂପ ଦର୍ଶନ କରିଥିଲେ । ୨ । ସେମାନେ ସେହି କୂପରୁ ଜଳପାନ କରିବା ନିମିତ୍ତ ବହୁ ପ୍ରଯତ୍ନ କରିଥିଲେ, କିନ୍ତୁ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ସେମାନେ କୂପ ମୁଖରୁ ତୃଣଲତାରାଶିକି ଅପସାରିତ କରି ସେହି କୂପ ମଧ୍ୟରେ ଅବସ୍ଥିତ ହୋଇଥିବା ଗୋଟିଏ ମହାକାୟ କୃକଳାସକୁ ଦେଖିଲେ । ସେମାନେ ସେହି କୃକଳାସକୁ ଉତ୍ତୋଳନ କରିବା ନିମିତ୍ତ ସହସ୍ରବାର ଯତ୍ନପରାୟଣ ହୋଇଥିଲେ । ରଜ୍ଜୁ ଓ ଚର୍ମପଟ୍ଟଦ୍ୱାରା ସେହି ପର୍ବତ ସଦୃଶ କୃକଳାସକୁ ବନ୍ଧନ କରି ଉଦ୍ଧାର କରିବାକୁ ସମର୍ଥ ନ ହେବାରୁ ତେତେବେଳେ ସେମାନେ ଜନାର୍ଦ୍ଦନଙ୍କ ନିକଟକୁ ଗମନ କଲେ । ୫ । ସେମାନେ କୃଷ୍ଣଙ୍କ ନିକଟରେ ଜଣାଇଲେ, ହେ କୃଷ୍ଣ ! ଗୋଟିଏ ଅତି ବୃହତ୍ କୃକଳାସ କୂପର ଆକାଶଭାଗକୁ ଆବରଣ କରି ଉପସ୍ଥିତ ହୋଇଅଛି, କେହି ତାହାର ଉଦ୍ଧାରକର୍ତ୍ତା ହେଉ ନାହାନ୍ତି । ୬ । ତତ୍ପରେ ବାସୁଦେବ ମହାକୂପ ନିକଟକୁ ଗମନ ପୂର୍ବକ ତହିଁରୁ ସେହି ପର୍ବତାକାର କୃକଳାସକୁ ଉଦ୍ଧାର କରି ତାହାକୁ ତଦୀୟ ପୂର୍ବଜନ୍ମର ବୃତ୍ତାନ୍ତ ପ୍ରଶ୍ନ କଲେ । କୃକଳାସ ତାହାଙ୍କୁ କହିଲେ, ହେ ଭଗବନ୍ ! ଆମ୍ଭେ ପୂର୍ବ ଜନ୍ମରେ ନୃଗନାମକ ରାଜା ଥିଲୁଁ । ସେହି ସମୟରେ ଆମ୍ଭେ ସହସ୍ର ଯଜ୍ଞ ଅନୁଷ୍ଠାନ କରି-ଥିଲୁଁ । ୭ ।

ସେ ତାଦୃଶ ବାକ୍ୟ କହିବାରୁ ମାଧବ ତାହାଙ୍କୁ କହିଲେ, ହେ ନରେନ୍ଦ୍ର ! ଆପଣ ଶୁଭକର୍ମ କରିଅଛନ୍ତି, ପାପକର୍ମ କରି ନାହାନ୍ତି, ତେବେ କେଉଁ କାରଣରୁ ଏହିପରି ରୂପକୁ ଧାରଣ କରି ଦୁର୍ଗତି ପ୍ରାପ୍ତ ହୋଇଅଛନ୍ତି ? ତାହା କହିବା ହେଉନ୍ତୁ । ୮ । ହେ ନୃପ ! ଆମ୍ଭେ ଶୁଣିଅଛୁଁ ଆପଣ ପୂର୍ବ ଜନ୍ମରେ ବ୍ରାହ୍ମଣଗଣଙ୍କୁ ବାରମ୍ବାର ଶତ ସହସ୍ର, ଶତ ଶତ, ଅଷ୍ଟଶତ ଓ ଅୟୁତ ଧେନୁ ଦାନ କରିଥିଲେ । ଆପଣଙ୍କର ସେହି ଗୋଦାନର ଫଳ କେଉଁଆଡ଼କୁ ଗଲା ? ୯ । ତଦନନ୍ତର କୃକଳାସ ରୂପୀ ନୃଗରାଜା କୃଷ୍ଣଙ୍କୁ କହିଲେ, ପ୍ରୋଷିତ ଅଗ୍ନିହୋତ୍ରୀ ବ୍ରାହ୍ମଣଙ୍କର ଗୋଟିଏ ଧେନୁ ପରିଭ୍ରଷ୍ଟ ହୋଇ ଆମ୍ଭ ଗୋଧନ ମଧ୍ୟରେ ପ୍ରବିଷ୍ଟ ହୋଇଥିଲା । ଆମ୍ଭର ପଶୁପାଳକଗଣ ସେହି ଧେନୁକୁ ଆମ୍ଭର ସହସ୍ର ସଂଖ୍ୟକ ଧେନୁ ମଧ୍ୟରେ ସଂଖ୍ୟା କରିଥିଲେ । ଆମ୍ଭେ ପରଲୋକର ଫଳ ଆକାଙ୍କ୍ଷା କରି ବ୍ରାହ୍ମଣଙ୍କୁ ସେହି ଧେନୁ ଦାନ କରିଥିଲୁଁ । ୧୧ । ଅଗ୍ନିହୋତ୍ରୀ ବ୍ରାହ୍ମଣ ସେହି ଧେନୁକୁ ଅନ୍ୱେଷଣ କରି ଅନ୍ୟ ବ୍ରାହ୍ମଣଙ୍କ ଗୃହରେ ତାହାକୁ ଦେଖିଲେ । ସେହି ଧେନୁର ସ୍ୱାମୀ "ଏହି ଧେନୁ ଆମ୍ଭର" ଏହି କଥା ସେହି ବ୍ରାହ୍ମଣଙ୍କୁ କହିଲେ । ୧୨ ।

ସେହି ଦୁହେଁ ବିବାଦ କରି ଅତିଶୟ କ୍ରୋଧପରତନ୍ତ୍ର ହୋଇ ଆମ୍ଭ ନିକଟରେ ଉପସ୍ଥିତ ହେଲେ । "ଆପଣ ଦାତା" "ଆପଣ ହର୍ତ୍ତା" ଏହି କଥା ସେହି ଉଭୟ ବ୍ରାହ୍ମଣ ଆମ୍ଭଙ୍କୁ କହିଲେ । ୧୩ । ଆମ୍ଭେ ଶତ ସଂଖ୍ୟକ ଧେନୁ ବିନିମୟଦ୍ୱାରା ପ୍ରତିଗ୍ରହୀତାଙ୍କ ନିକଟରେ ପୂର୍ବଦତ୍ତ ଧେନୁକୁ ପ୍ରାର୍ଥନା କରିବାରୁ ସେ ଆମ୍ଭଙ୍କୁ କହିଲେ, ମହାରାଜ ! ଦେଶାନୁସାରେ ଦୁଗ୍ଧଦାତ୍ରୀ କ୍ଷମାଶାଳିନୀ ଏକାନ୍ତବତ୍ସଳା ଏହି ଧେନୁ ସ୍ୱାଦୁ ଦୁଗ୍ଧ ପ୍ରଦାନ କରିବାରୁ ଧନ୍ୟା ଅଟେ । ଏହି ଧେନୁ ପ୍ରତିଦିନ ଆମ୍ଭ ଗୃହରେ ଦୁଗ୍ଧ ଦାନକରି ମଦୀୟ ସ୍ତନ୍ୟହୀନ କୃଶପୁତ୍ରକୁ ପ୍ରତିପାଳନ କରୁଅଛି । ଅତଏବ ଆମ୍ଭେ ଏହାକୁ ଦାନ କରିପାରିବୁ ନାହିଁ । ଏହି କଥା କହି ସେ ନିଜ ଗୃହକୁ ଚାଲିଗଲେ ।୧୬ । ତଦନନ୍ତର ଆମ୍ଭେ ଅପର ବିପ୍ରଙ୍କୁ ସହସ୍ର ଧେନୁ ସେହି ଗୋଟିକ ଧେନୁର ବିନିମୟରୂପେ ଗ୍ରହଣ କରିବାକୁ କହିଲୁଁ । ୧୭ । ହେ ମଧୁସୂଦନ ! ତେତେବେଳେ ସେହି ବ୍ରାହ୍ମଣ ଆମ୍ଭଙ୍କୁ କହିଲେ, ହେ ରାଜନ୍ ! ଆମ୍ଭେ ଭୂପତିମାନଙ୍କ ଦାନ ପରିଗ୍ରହ କରିବାକୁ ଅଭିଳାଷୀ ହେଉନାହୁଁ । ଆମ୍ଭେ ଅନାୟାସରେ ଆପଣାର ଭରଣ ପୋଷଣ କରି ପାରିବୁଁ । ଅତଏବ ଆପଣ ଆମ୍ଭଙ୍କୁ ଶୀଘ୍ର ଆମ୍ଭର ସେହି ଧେନୁଟିକି

ପ୍ରଦାନ କରବା ହେଉନ୍ତୁ । ଆମ୍ଭେ ତାହାଙ୍କୁ ସୁବର୍ଣ୍ଣ, ରଜତ, ଅଶ୍ୱ ଓ ରଥ-ସମୂହ ପ୍ରଦାନ କରିବାକୁ ସ୍ୱୀକୃତ ହେଲେ ସୁଦ୍ଧା ସେ ତାହା ଗ୍ରହଣ କଲେ ନାହିଁ । ବରଂ ତ ସେହି ଦ୍ୱିଜବର କ୍ରୋଧରେ ଚାଲିଗଲେ । ୧୯ । ସେହି ସମୟରେ ଆମ୍ଭେ କାଳ ଧର୍ମ କର୍ତ୍ତୃକ ପ୍ରେରିତ ହୋଇ ପିତୃଲୋକକୁ ଗମନ ପୂର୍ବକ ଧର୍ମରାଜଙ୍କ ନିକଟରେ ଉପସ୍ଥିତ ହେଲୁଁ । ୨୦ । ଯମଦେବ ଆମ୍ଭଙ୍କୁ ସମ୍ମାନ କରି ପରିଶେଷରେ କହିଲେ, ହେ ରାଜନ୍ ! ତୁମ୍ଭ ପୁଣ୍ୟକର୍ମର ଶେଷସଂଖ୍ୟା କରି ହେବ ନାହିଁ । ୨୧ । କିନ୍ତୁ ତୁମ୍ଭେ ଅଜ୍ଞାନ ବଶରେ ଗୋଟିଏ ପାପକର୍ମ କରିଅଛ, ସେହି ପାପର ଫଳକୁ ତୁମ୍ଭେ ପ୍ରଥମେ ଭୋଗ କରିବ କିମ୍ବା ପଶ୍ଚାତ୍ ଭୋଗ କରିବ, ଯାହା ଇଚ୍ଛା ହୁଏ ତାହା କହ । ୨୨ ।

ଆମ୍ଭେ ରକ୍ଷିତା ବୋଲି ପ୍ରତିଜ୍ଞା କରି ତାହା ପ୍ରତିପାଳନ କରି ନ ଥିଲ ଏବଂ ବ୍ରାହ୍ମଣଙ୍କର ଧେନୁ ଅନୁଦ୍ଦିଷ୍ଟ ହୋଇଥିବାରୁ ତାହା ମିଥ୍ୟା ହୋଇଅଛି, ଅତଏବ ତୁମ୍ଭର ଏହି ଦ୍ୱିବିଧ ବ୍ୟତିକ୍ରମ ଘଟିଅଛି । ୨୩ । ଯମଦେବ ଏହି କଥା କହିବାରୁ ଆମ୍ଭେ ତାହାଙ୍କୁ କହିଲୁଁ, ହେ ପ୍ରଭୋ ! ଆମ୍ଭେ ପ୍ରଥମରେ ପାପର ଫଳ ଭୋଗ କରି ପଶ୍ଚାତ୍ ପୁଣ୍ୟର ଫଳ ଭୋଗକରିବୁଁ, ଏହି କଥା କହୁଁ କହୁଁ ମହୀତଳରେ ପତିତ ହେଲୁଁ । ୨୪ । ଆମ୍ଭେ ମହୀତଳରେ ପତିତ ହେଉଁ ହେଉଁ ଉଚ୍ଚୈଃସ୍ୱରରେ ଭାଷମାଣ ଧର୍ମରାଜଙ୍କର ଏହି କଥା ଶୁଣିଲୁଁ କି, ହେ ରାଜନ୍ ! ଜନାର୍ଦ୍ଦନ ବାସୁଦେବ ତୁମ୍ଭର ଉଦ୍ଧାରକର୍ତ୍ତା ହେବେ । ୨୫ ।

ସହସ୍ର ବର୍ଷ ପୂର୍ଣ୍ଣ ହେଲା ଉତ୍ତାରେ ତୁମ୍ଭର ଦୁଷ୍କୃତ କର୍ମ କ୍ଷୟ ହେଲେ, ତୁମ୍ଭେ ସ୍ୱୀୟ କର୍ମଦ୍ୱାରା ବିଜିତ ଶାଶ୍ୱତ ଲୋକସମୂହକୁ ପ୍ରାପ୍ତ ହେବ । ୨୬ ।

ଆମ୍ଭେ କୂପ ମଧ୍ୟରେ ଅଧଃଶିରା ହୋଇ ଆପଣାକୁ ପତିତ ହୋଇ-ଥିବାର ଦେଖିଲୁଁ, ତିର୍ଯ୍ୟକ୍‌ଯୋନି ପ୍ରାପ୍ତ ହେଲେ ସୁଦ୍ଧା ସ୍ମରଣ ଶକ୍ତି ଆମ୍ଭଙ୍କୁ ପରିତ୍ୟାଗ କରିନାହିଁ । ୨୭ । ହେ କୃଷ୍ଣ ! ଆମ୍ଭେ ଅଦ୍ୟ ତୁମ୍ଭଦ୍ୱାରା ଉଦ୍ଧାର ପ୍ରାପ୍ତ ହେଲୁଁ । ତପୋବଳ ବ୍ୟତିରେକେ ଏହି ଘଟନା ଘଟି-ପାରେ ନାହିଁ । ଅତଏବ ଆପଣ ଅନୁଜ୍ଞା କରନ୍ତୁ ଆମ୍ଭେ ସଂପ୍ରତି ସ୍ୱର୍ଗକୁ ଯାଉଁ । ୨୮ । ହେ ଅରିନ୍ଦମ ! ତଦନନ୍ତର ନୃଗ ନୃପତି କୃକଲାସ ମୂର୍ତ୍ତି ପରିତ୍ୟାଗ ପୂର୍ବକ କୃଷ୍ଣଙ୍କଦ୍ୱାରା ଅନୁଜ୍ଞାତ ହୋଇ ତାହାଙ୍କୁ ନମସ୍କାର କରି ଦିବ୍ୟବିମାନରେ ଆରୋହଣ ପୂର୍ବକ ସୁରପୁରକୁ ଗମନ କଲେ । ୨୯ ।

ହେ ଭରତସତ୍ତମ କୁରୁନନ୍ଦନ ! ତତ୍ପରେ ନୃଗ ନୃପତି ସ୍ୱର୍ଗକୁ ଗମନ କରନ୍ତେ ବାସୁଦେବ ଏହି ବକ୍ଷ୍ୟମାଣ ଶ୍ଳୋକ ଗାନ କଲେ । ୩୦ । ପୁରୁଷ ଜ୍ଞାନ ପୂର୍ବକ ବ୍ରାହ୍ମଣସ୍ୱ ହରଣ କରିବେ ନାହିଁ । ବ୍ରାହ୍ମଣସ୍ୱ ହୃତ ହେଲେ ସେ ବ୍ରାହ୍ମଣଙ୍କ ଧେନୁ ଯେଉଁପରି ନୃଗରାଜାଙ୍କୁ ନିହତ କରିଥିଲା, ସେହିପରି ବ୍ରାହ୍ମଣସ୍ୱ ସତ୍ତ୍ୱକୁ ବିନଷ୍ଟ କରିବ । ୩୧ । ହେ ପାର୍ଥ ! ସାଧୁମାନଙ୍କ ସମାଗମ କଦାପି ନିଷ୍ଫଳ ହୁଏ ନାହିଁ, ନୃଗନୃପ ସାଧୁସମାଗମରୁ ନରକରୁ ନିସ୍ତରିଲେ । ହେ ଯୁଧିଷ୍ଠିର ! ଦାନ କଲେ ଯେଉଁପରି ଫଳ ଲାଭ ହୁଏ, ଅପହରଣ କଲେ ତଦ୍ୱିପରୀତ ଅଧର୍ମ ହୁଏ । ଅତଏବ ଗୋବୃନ୍ଦ ସମ୍ବନ୍ଧରେ ଅପଚାର ବର୍ଜନ କରିବ । ୩୩ ।

---

## ଅଧ୍ୟାୟ—୭୧

ଯୁଧିଷ୍ଠିର କହିଲେ, ହେ ଅନଘ ! ମହାବାହୋ ! ଦତ୍ତ ଧେନୁ-ମାନଙ୍କର ଫଳପ୍ରାପ୍ତି ବିଷୟ ବିସ୍ତାରିତ ରୂପେ ବର୍ଣ୍ଣନ କରିବା ହେଉନ୍ତୁ । ଆମ୍ଭେ ସେହି ବିଷୟକୁ ଶ୍ରବଣ କଲେ ସୁଦ୍ଧା ତୃପ୍ତ ହେଉନାହୁଁ, ଅତଏବ ଆପଣ ପୁନଶ୍ଚ ତାହା କୀର୍ତ୍ତନ କରନ୍ତୁ । ୧ । ଭୀଷ୍ମ କହିଲେ, ପ୍ରାଚୀନ ବ୍ୟକ୍ତିମାନେ ଏହି ବିଷୟରେ ଉଦ୍ଦାଳକ ଋଷି ଓ ନାଚିକେତ ଏହି ଉଭୟଙ୍କର ବାକ୍ୟ ସମନ୍ୱିତ ପୁରାତନ ଇତିହାସ କହନ୍ତି । ୨ । ଧୀମାନ୍ ଉଦ୍ଦାଳକ ଋଷି ନିଜ ପୁତ୍ର ନାଚିକେତଙ୍କ ନିକଟକୁ ଯାଇ "ତୁମ୍ଭେ ଆମ୍ଭର ଉପଚାର କର" ଏହି କଥା କହିଲେ । ୩ । ସେହି ନିୟମ ସମାପ୍ତ ହେବାରୁ ମହର୍ଷି ପୁତ୍ରଙ୍କୁ କହିଲେ, ହେ ବତ୍ସ ! ଆମ୍ଭେ ସ୍ନାନାନନ୍ତର ବେଦପାଠ କରି ନଦୀତୀରରେ ସମିଧ, କୁଶ, ପୁଷ୍ପ, ଜଳକଳଶ ଓ ଭୋଜନ ସାମଗ୍ରୀ ସମୂହ ବିସ୍ମୃତ ହୋଇ ଆସିଅଛୁଁ । ଅତଏବ ତୁମ୍ଭେ ତାହାସବୁ ସେଠାରୁ ଆନୟନ କର । ୪ । ଉଲ୍ଲିଖିତ ଦ୍ରବ୍ୟସମୂହ ନଦୀବେଗରେ ବିଚଳିତ ହୋଇ ଯାଇ-ଥିବାରୁ ମୁନି ପୁତ୍ର ତାହା ପ୍ରାପ୍ତ ହେଲେ ନାହିଁ, ସୁତରାଂ ପିତାଙ୍କ ନିକଟରେ ଉପସ୍ଥିତ ହୋଇ "ହେ ତାତ ! ଆମ୍ଭେ ନଦୀତଟରେ ସେହି ଦ୍ରବ୍ୟସବୁ ଦେଖିଲୁଁ ନାହିଁ" ଏହି କଥା କହିଲେ । ୬ । ସେତେବେଳେ ମହାତପା ଉଦ୍ଦାଳକ ମୁନି କ୍ଷୁଧା ଓ ପିପାସାଯୁକ୍ତ ଏବଂ ପରିଶ୍ରାନ୍ତ ହୋଇଥିଲେ ।

ସେହି କାରଣରୁ "ଯମଙ୍କୁ ଦର୍ଶନ କର" ପୁତ୍ରଙ୍କୁ ଏହିପରି ଅଭିଶାପ ପ୍ରଦାନ କଲେ । ୭ ।

ପୁତ୍ର ପିତାଙ୍କ ବାକ୍‌ବଜ୍ରଦ୍ୱାରା ଅଭିହତ ହୋଇ କୃତାଞ୍ଜଳି ପୃଷ୍ଠରେ "ପ୍ରସନ୍ନ ହେଉନ୍ତୁ" ଏହି କଥା କହୁଁ କହୁଁ ହତଚେତନ ହୋଇ ଭୂତଳରେ ପତିତ ହେଲେ । ୮ । ପିତା ନାଚିକେତଙ୍କୁ ପତିତ ହେବାର ଦେଖି ଦୁଃଖରେ ମୂର୍ଚ୍ଛିତ ହୋଇ "ଆମ୍ଭେ କଅଣ କଲୁଁ" ଏହି କଥା କହି ସ୍ୱୟଂ ମହୀତଳରେ ନିପତିତ ହେଲେ । ୯ । ସେ ପୁତ୍ରଙ୍କ ନିମିତ୍ତ ଦୁଃଖାନ୍ୱିତ ହୋଇ ଅନୁଶୋଚନା କରୁଁ କରୁଁ ସେହି ଦିବସର ଶେଷଭାଗ ଏବଂ ଭୟଙ୍କରୀ ଶର୍ବରୀ ଅତୀତ ହେଲା । ୧୦ ।

ହେ କୁରୁଶ୍ରେଷ୍ଠ ! ଶୁଷ୍ୟମାଣ ଶସ୍ୟ ଯେଉଁପରି ବୃଷ୍ଟିଦ୍ୱାରା ଆପ୍ଳୁତ ହୁଏ, ସେହିପରି ନାଚିକେତ ପିତାଙ୍କ ଅଶ୍ରୁପାତଦ୍ୱାରା କୁଶଶଯ୍ୟା ମଧ୍ୟରେ ଅଙ୍ଗ ସଞ୍ଚାଳନା କଲେ । ୧୧ । ପିତା ସେହି କ୍ଷୀଣ ସ୍ୱପ୍ନସଦୃଶ ସମୁତ୍ଥିତ ଦିବ୍ୟ ଗନ୍ଧଲିପ୍ତ ପୁନରାଗତ କ୍ଷୀଣକାୟ ପୁତ୍ରଙ୍କୁ ପଚାରିଥିଲେ । ୧୨ ।

ହେ ପୁତ୍ର ! ତୁମ୍ଭେ ସ୍ୱକୀୟ କର୍ମଦ୍ୱାରା ଶୁଭଲୋକ ସମୂହ ଜୟ କରିଅଛ । ଦୈବବଳରେ ପୁନଶ୍ଚ ତୁମ୍ଭଙ୍କୁ ପ୍ରାପ୍ତ ହେଲୁ, ତୁମ୍ଭର ମାନୁଷ ଶରୀର ନୁହେ । ୧୩ । ବିଷୟସମୂହର ପ୍ରତ୍ୟକ୍ଷଦର୍ଶୀ ପୁତ୍ରଙ୍କୁ ମହାତ୍ମା ପିତା ଏହିପରି ପ୍ରଶ୍ନ କଲାରୁ ସେ, ପିତା ଓ ଅନ୍ୟାନ୍ୟ ସାଧୁ ମହର୍ଷିଗଣଙ୍କ ମଧ୍ୟରେ ନିଜର ବାର୍ତ୍ତା ନିବେଦନ କଲେ । ୧୪ । "ଆମ୍ଭେ ଆପଣଙ୍କ ଶାସନ ପ୍ରତିପାଳନ କରି ଶୀଘ୍ର ଅତି ବିଶାଳା, ରୁଚିରପ୍ରଭାବା, ବୈବସ୍ୱତ ସଭାକୁ ଗମନ କଲୁଁ, ସହସ୍ର ଯୋଜନ ଗମନ କରି ସେହି ସୁବର୍ଣ୍ଣସଦୃଶ ପ୍ରଭାଶାଳିନୀ ସଭା ଦର୍ଶନ କଲୁଁ । ୧୫ । ଯମରାଜା ଆମ୍ଭଙ୍କୁ ଅଭିମୁଖରେ ସମାଗତ ହେବାର ଦେଖି ଆସନ ଦେବା ନିମିତ୍ତ ଆଦେଶ କଲେ ଏବଂ ସେ ଆପଣଙ୍କ ହେତୁରୁ ଆମ୍ଭଙ୍କୁ ଅର୍ଘ୍ୟ ପ୍ରଭୃତି ଅର୍ହଣୀୟ ଦ୍ରବ୍ୟସମୂହଦ୍ୱାରା ପୂଜା କଲେ । ୧୬ । ଅନନ୍ତର ଆମ୍ଭେ ସମସ୍ତ ସଭ୍ୟଗଣ କର୍ତ୍ତୃକ ପରିବୃତ ଓ ପୂଜ୍ୟମାନ ହୋଇ ଧୀର ସ୍ୱରରେ ତାହାଙ୍କୁ କହିଲୁଁ ହେ, ଧର୍ମରାଜ ! ଆମ୍ଭେ ଆପଣଙ୍କ ଅଧିକାରକୁ ଆସିଅଛୁଁ, ଅତଏବ ଆମ୍ଭେ ଯେଉଁ ଲୋକର ଉପଯୁକ୍ତ, ତାହା ବିଧାନ କରିବା ହେଉନ୍ତୁ । ୧୭ । ଯମଦେବ ଆମ୍ଭଙ୍କୁ କହିଲେ, ହେ ସୌମ୍ୟ ! ତୁମ୍ଭେ ମୃତ ହୋଇନାହିଁ, ତୁମ୍ଭର ପ୍ରଦୀପ୍ତ ଅଗ୍ନି-ସମାନ ତେଜସ୍ୱୀ ପିତା ତୁମ୍ଭଙ୍କୁ "ଯମଙ୍କୁ ଦର୍ଶନ କର" ଏହିପରି କହିଥିଲେ, ଅତଏବ ଆମ୍ଭେ ତାହାଙ୍କ ବାକ୍ୟକୁ ମିଥ୍ୟା କରିବାକୁ ସମର୍ଥ ହେଲୁ

ନାହିଁ । ୧୮ । ହେ ତାତ ! ତୁମ୍ଭେ ଆମ୍ଭଙ୍କୁ ଦର୍ଶନ କଲ, ଅତଏବ ସତ୍ତ୍ୱର ପ୍ରତିଗମନ କର । ତୁମ୍ଭର ସେହି ଦେହକର୍ତ୍ତା ପିତା ଶୋକ କରୁ ଅଛନ୍ତି, ଆମ୍ଭେ ତୁମ୍ଭଙ୍କୁ ମନର ଅଭିଳଷିତ ବିଷୟ ଦାନ କରିବୁଁ ? ତୁମ୍ଭେ ଆମ୍ଭର ପ୍ରିୟ ଅତିଥି, ଅତଏବ ଅଭୀଷ୍ଟ ବର ପ୍ରାର୍ଥନା କର । ୧୯ ।

ଧର୍ମରାଜ ଆମ୍ଭଙ୍କୁ ଏହିପରି କହିବାରୁ ଆମ୍ଭେ ତାହାଙ୍କୁ କହିଲୁଁ, ଯେଉଁ ସ୍ଥାନରେ ପ୍ରବେଶ କଲେ ପ୍ରାଣୀ ପୁନଶ୍ଚ ପ୍ରତ୍ୟାବର୍ତ୍ତନ କରିପାରନ୍ତି ନାହିଁ, ଆମ୍ଭେ ଆପଣଙ୍କ ତାଦୃଶ ଅଧିକାରକୁ ଆସିଅଛୁଁ, ଅତଏବ ଆପଣ ଯଦି ଆମ୍ଭଙ୍କୁ ବରର ଉପଯୁକ୍ତ ବୋଲି ବିବେଚନା କରୁଅଛନ୍ତି, ତେବେ ଆମ୍ଭେ ପୁଣ୍ୟକାରୀ ବ୍ୟକ୍ତିଗଣଙ୍କ ସମୃଦ୍ଧିସମ୍ପନ୍ନ ଲୋକସମୂହକୁ ଦେଖିବା ନିମିତ୍ତ ଇଚ୍ଛା କରୁଅଛୁଁ । ୨୦ । ହେ ଦ୍ୱିଜେନ୍ଦ୍ର ! ତତ୍ପରେ ସେହି ଯମଦେବ ତେତେବେଳେ ଆମ୍ଭଙ୍କୁ ଦେଦୀପ୍ୟମାନ ବାହନଯୁକ୍ତ ସୁପ୍ରଭଶାଳୀ ଯାନରେ ଆରୋହଣ କରାଇ ପୁଣ୍ୟକାରୀ ବ୍ୟକ୍ତିଗଣଙ୍କ ଲୋକସମୂହକୁ ଦର୍ଶନ କରାଇଲେ । ୨୧ । ଆମ୍ଭେ ସେଠାରେ ମହାତ୍ମାମାନଙ୍କର ଯେଉଁ ତେଜୋମୟ ଗୃହ ସମୂହ ଦର୍ଶନ କଲୁଁ, ସେମାନଙ୍କ ଆକାର ନାନାବିଧ, ଓ ତାହାସବୁ ସର୍ବରତ୍ନମୟ । ୨୨ । ଚନ୍ଦ୍ରମଣ୍ଡଳ ସଦୃଶ ଶୁଭ୍ରବର୍ଣ୍ଣ, କିଙ୍କିଣୀଜାଳ ସମନ୍ୱିତ, ଉପର୍ଯ୍ୟୁପରି ଭାଗରେ ଉପବିଷ୍ଟ ଅନେକ ଶତ ପ୍ରାସାଦଯୁକ୍ତ, ଜଳ, ଜଳଚର ଓ ବନ ତାହା ମଧ୍ୟରେ ଅବସ୍ଥିତ । ୨୩। ତାହା ବୈଦୁର୍ଯ୍ୟ ଓ ସୂର୍ଯ୍ୟସଦୃଶ ପ୍ରକାଶମାନ, ରୌପ୍ୟମୟ ଓ ସ୍ୱର୍ଣ୍ଣମୟ ତରୁଣ ଆଦିତ୍ୟସଦୃଶ ବର୍ଣ୍ଣବିଶିଷ୍ଟ, ସ୍ଥାବର ଏବଂ ଗମନଶୀଳ । ୨୪ । ଭକ୍ଷ୍ୟ ଭୋଜ୍ୟମୟ ଶୈଳସମୂହ ବସନ ଓ ଶୟନ ସମୂହ ଏବଂ ସର୍ବକାମପ୍ରଦ ବୃକ୍ଷସମୂହ ସେହି ଭବନସମୂହରେ ସଞ୍ଚିତ ହୋଇଥିଲେ । ୨୫ । ନଦୀବୃନ୍ଦ, ବୀଥୀ ସଭା, ବାପୀ ଓ ଦୀର୍ଘିକାସମୂହ, ଶବ୍ଦାୟମାନ ଯାନ-ସମୂହ, ସହସ୍ର ସହସ୍ର ମୁକ୍ତା ( ୨୬ ), କ୍ଷୀରକ୍ଷରଣକାରିଣୀ ସରିତ୍ସମୂହ, ଶୈଳସମୂହ, ସର୍ପିଃପୁଞ୍ଜ, ନିର୍ମଳ ଜଳ ଏବଂ ବୈବସ୍ୱତଙ୍କ ଅନୁମତ ଅଦୃଷ୍ଟ-ପୂର୍ବ ଅନେକ ଅନେକ ପ୍ରଦେଶ ଅବଲୋକନ କଲୁଁ । ୨୭ । ଆମ୍ଭେ ତାହା ସବୁ ଅବଲୋକନ କରି ପ୍ରଭବିଷ୍ଣୁ ଧର୍ମରାଜଙ୍କୁ କହିଲୁଁ, ସର୍ବଦା ସ୍ରୋତ ବିଶିଷ୍ଟ ଏହିସବୁ କ୍ଷୀର ନଦୀବୃନ୍ଦ ଓ ଘୃତନଦୀବୃନ୍ଦ କାହାର ଭୋଜ୍ୟରୂପେ ନିର୍ଦ୍ଦିଷ୍ଟ ହୋଇଅଛନ୍ତି ? ୨୮ । ଯମଦେବ କହିଲେ, ଏହି-ମାନେ ଯେଉଁମାନଙ୍କର ଭୋଜ୍ୟ, ତୁମ୍ଭେ ତାହା ଶ୍ରବଣ କର । ଯେଉଁ ସମସ୍ତ ସାଧୁଗଣ ଗୋରସ ଦାନ କରନ୍ତି, ଏହା ସବୁ ସେହିମାନଙ୍କ ଭୋଜ୍ୟ,

ଯେଉଁମାନେ ଗୋପ୍ରଦାନ କରିବାରେ ରତ ଥାଆନ୍ତି ସେହିମାନଙ୍କ ନିମିତ୍ତ ବୀତଶୋକ ବ୍ୟକ୍ତିଗଣଙ୍କଦ୍ୱାରା ସମାକୀର୍ଣ୍ଣ ଶାଶ୍ୱତ ଅନ୍ୟାନ୍ୟ ଲୋକସମୂହ ପ୍ରତିଷ୍ଠିତ ହୋଇଅଛି । ୨୯ ।

ସାମାନ୍ୟରେ ଗୋଦାନ କଲେ ଯେ ଏହି ସମସ୍ତ ଶୁଭ ଲୋକ ଲାଭ ହୁଏ, ଏମନ୍ତ ନୁହେ, ଗୋଦାନର ବିଶେଷ ବିଧି ଅଛି । ପାତ୍ର, କାଳ, ଗୋବିଶେଷ ଓ ଗୋଦାନର ବିଧି ଏହାସବୁ ବିଶେଷରୂପେ ଅବଗତ ହୋଇ ଗୋଦାନ କରିବାର ଉଚିତ । ଗୋସମୂହ ଯାହାଙ୍କ ଆବାସରେ ରହିଲେ ସୂର୍ଯ୍ୟ ଓ ଅନଳ ଉତ୍ତାପ ଜନିତ କ୍ଳେଶ ଭୋଗ ନ କରିବେ (୩୦), ଯେ ସ୍ୱାଧ୍ୟାୟ ନିରତ, ଅତିଶୟ ତପସ୍ୱୀ ଓ ଯଜ୍ଞକାରୀ ସେହି କେବଳ ଗୋଦାନର ପାତ୍ର । କୃଚ୍ଛ୍ର ଚାନ୍ଦ୍ରାୟଣାଦିବ୍ରତ ହେତୁରୁ ଉତ୍ସୃଷ୍ଟ ଏବଂ ପୋଷଣ ନିମିତ୍ତ ଅଭ୍ୟାଗତ ଗୋବିଶେଷ ଏହି ସମସ୍ତ ବ୍ରତାଦି କାରଣ-ଦ୍ୱାରା ପ୍ରଶସ୍ତ ଅଟନ୍ତି । ୩୧ । ଜଳମାତ୍ର ଆହାର କରି ଭୂମିଶାୟୀ ହୋଇ ତ୍ରିରାତ୍ରବ୍ରତ ଆଚରଣ ପୂର୍ବକ ପ୍ରତିଦିନ ଗୋଟିଏ ଗୋଟିଏ ଧେନୁଦାନ କରିବ ଏବଂ ଗୋରସ ଉପଯୋଗ କରି ଜୀବିକା ନିର୍ବାହ କରିବ । ଏହି ପ୍ରକାର ବ୍ରତକରି ତର୍ପିତ ବ୍ରାହ୍ମଣଗଣଙ୍କୁ ପରିତୃପ୍ତ କରି ତିନିଗୋଟି ଧେନୁ-ଦାନ କରିବାର ବିଧେୟ । ଯେଉଁ ସମସ୍ତ ଧେନୁ ଦାନ କରିବ, ସେହିମାନେ ସବୁ ବତ୍ସସହିତ ପ୍ରୀତିଯୁକ୍ତ ହୋଇଥିବେ, ଏବଂ ଉତ୍ତମ ସନ୍ତାନ ସବୁ ପ୍ରସବ କରିବେ ଓ ତାହାଙ୍କୁ ଅଳଙ୍କୃତ କରି ଦାନ କରିବ । ଉତ୍ତମ ସ୍ୱଭାବା କାଂସ୍ୟ ଦୋହା, କଲ୍ୟାଣବତ୍ସା ଏବଂ ଯେଉଁ ଧେନୁ ପଳାୟନ କରେ ନାହିଁ ତାଦୃଶ ଧେନୁଦାନ କଲେ ସେହି ଗୋ ଶରୀରରେ ଯାବତ୍ ପରିମାଣରେ ରୋମ ଥାଏ, ଦାତା ତାବତ୍ ବର୍ଷ ସ୍ୱର୍ଗଲୋକରେ ସୁଖଭୋଗ କରନ୍ତି । ୩୩ । ଏବଂ ବ୍ରାହ୍ମଣଗଣଙ୍କୁ ଦାନ୍ତ ଭାରବାହୀ ବଳବାନ୍ ଯୁବା କୁଳାନୁଜୀବ୍ୟ, ବୀର୍ଯ୍ୟବାନ୍ ବୃହତ୍କାୟ ବୃଷ ଦାନ କଲେ ଦାତା ଧେନୁଦାତାଙ୍କ ସମାନ ଲୋକସମୂହ ଭୋଗ କରନ୍ତି । ୩୪ ।

ଯେ ଗୋବୃନ୍ଦଙ୍କଠାରେ କ୍ଷମାଶୀଳ, ଯାହାଙ୍କର ଗୋସମୂହ ଆଶ୍ରୟ, ତାଦୃଶ କୃତଜ୍ଞ ବୃତ୍ତିହୀନ ବ୍ରାହ୍ମଣ ଗୋଦାନର ପାତ୍ର ବୋଲି ଏହି କଥା ପଣ୍ଡିତଗଣ କହନ୍ତି । ବୃଦ୍ଧ ବ୍ୟକ୍ତି ରୋଗ ପ୍ରଭୃତିଦ୍ୱାରା ଗ୍ଳାନିଯୁକ୍ତ ହେଲେ ତାହାଙ୍କ ପଥ୍ୟଭୋଜନ ନିମିତ୍ତ, ଦୁର୍ଭିକ୍ଷ କାଳରେ ଯଜ୍ଞାଦିନିମିତ୍ତ, କୃଷି-ନିମିତ୍ତ, ହୋମ ନିମିତ୍ତ, ପୁତ୍ର ଜନ୍ମିଲେ ଗୁରୁଙ୍କ ନିମିତ୍ତ ଏବଂ ବାଳକର ପୁଷ୍ଟିନିମିତ୍ତ ଗୋଦାନ କରିବାକୁ ହେଲେ ଦେଶ ଓ କାଳ ବିଶିଷ୍ଟ ହୁଏ ।

ଯେଉଁ ଗୋସମୂହ ବହୁ ଦୁଗ୍ଧଶାଳିନୀ ବୋଲି ବିଖ୍ୟାତ ହୁଅନ୍ତି, ଯେଉଁମାନେ ବିଦ୍ୟା ଓ ଜ୍ଞାନଦ୍ୱାରା ଲବ୍ଧ, ଯାହା ପ୍ରାଣର ବ୍ୟତ୍ୟୟଦ୍ୱାରା କ୍ରୀତ ଓ ନିର୍ଜିତ ଏବଂ ଯେ ବିବାହ କାଳରେ ଶ୍ୱଶୁର ପ୍ରଭୃତିଙ୍କ ନିକଟରୁ ଯୌତୁକ ରୂପରେ ପ୍ରାପ୍ତ ହୋଇଥାଆନ୍ତି, ସେହି ଧେନୁସମୂହ ଦାନ କରିବାକୁ ଦେଶ ଓ କାଳର ବୈଶିଷ୍ଟ୍ୟ ଆବଶ୍ୟକ । ୩୬ ।

ନାଚିକେତ କହିଲେ, ଆମ୍ଭେ ବୈବସ୍ୱତଙ୍କ ବାକ୍ୟ ଶ୍ରବଣ କରି ପୁନଶ୍ଚ ତାହାଙ୍କୁ କହିଲୁଁ, ଗୋଦାନର ଅଭାବରେ ଲୋକ ଗୋପ୍ରଦାତା-ମାନଙ୍କର ଲୋକକୁ କେଉଁପରି ଗମନ କରନ୍ତି ? ୩୭ । ତଦନନ୍ତର ଧୀମାନ୍ ଯମଦେବ ଗୋପ୍ରଦାନର ପରମଗତି କହିଲେ । ଗୋ ପ୍ରଦାନ ବ୍ୟତିରେକେ ଗୋଦାନର ଅନୁକଳ୍ପ ଅଛି । ଅନୁକଳ୍ପ ଦାନଦ୍ୱାରା ଗୋଦାନର ସଦୃଶ ଫଳ ହୁଏ, ଅତଏବ ଅନୁକଳ୍ପ ଦାନ କଲେ ମନୁଷ୍ୟ ଗୋପ୍ରଦାତା ହୁଅନ୍ତି । ୩୮ । ଯେଉଁ ବ୍ୟକ୍ତି ଗୋ ଅଭାବରେ ଯତବ୍ରତ ହୋଇ ଘୃତ, ଧେନୁ ପ୍ରଦାନ କରନ୍ତି, ତାହାଙ୍କ ନିମିତ୍ତ ଏହି ଘୃତବାହିନୀ ନଦୀସମୂହ ବତ୍ସପ୍ରା ଧେନୁ ଯେଉଁପରି ଦୁଗ୍ଧ କ୍ଷରଣକରେ, ସେହିପରି ଦାତାଙ୍କ ନିମିତ୍ତ ଅମୃତ କ୍ଷରଣ କରନ୍ତି । ୩୯ । ଯେଉଁ ବ୍ୟକ୍ତି ଘୃତ ଅଭାବରେ ଯତବ୍ରତ ହୋଇ ତିଳଧେନୁ ଦାନ କରନ୍ତି, ସେ ଧେନୁ କର୍ତ୍ତୃକ ଦୁର୍ଗରୁ ଉତ୍ତୀର୍ଣ୍ଣ ହୋଇ କ୍ଷୀରନଦୀରେ ପ୍ରମୋଦପ୍ରାପ୍ତ ହୁଅନ୍ତି । ୪୦ । ଯେଉଁ ବ୍ୟକ୍ତି ତିଳ ଅଭାବରେ ଯତବ୍ରତ ହୋଇ ଜଳଧେନୁ ପ୍ରଦାନ କରନ୍ତି ସେ ଏହି କାମପ୍ରବହା ଶୀତସଲିଳବାହିନୀ ସରିତରେ ସୁଖ ସମ୍ଭୋଗ କରନ୍ତି । ୪୧ ।

ଧର୍ମରାଜ ସେଠାରେ ଆମ୍ଭଙ୍କୁ ଏହିପରି ସେହି ସମସ୍ତ ବିଷୟ ପ୍ରଦର୍ଶନ କରାଇଲେ । ହେ ତାତ ! ଅଚ୍ୟୁତ ! ଆମ୍ଭେ ତତ୍ ସମୁଦାୟ ଅବଲୋକନ କରି ପରମହର୍ଷ ପ୍ରାପ୍ତ ହେଲୁଁ । ୪୨ । ଆପଣଙ୍କ ନିକଟରେ ଆମ୍ଭେ ଏହି ପ୍ରିୟବୃତ୍ତାନ୍ତ ନିବେଦନ କରୁଅଛୁଁ କି ଗୋଦାନ ରୂପ ଯଜ୍ଞ ଅତି ଉତ୍କୃଷ୍ଟ, ଏବଂ ଏଥିରେ ଅଳ୍ପମାତ୍ର ଧନ ବ୍ୟୟ ହୁଏ । ହେ ତାତ ! ଆମ୍ଭେ ସେହି ଯଜ୍ଞ ଲାଭ କରିଅଛୁଁ, ତାହା ମତ୍ କର୍ତ୍ତୃକ ପ୍ରସୂତ ହୋଇଅଛି; ଆପଣ ବେଦବିଧି ପ୍ରବୃତ୍ତ ସେହି ଯଜ୍ଞ ପ୍ରାପ୍ତ ହେବେ । ୪୩ । ଆପଣଙ୍କ ଯେଉଁ ଶାପ ପ୍ରଭାବରେ ଆମ୍ଭେ ଧର୍ମରାଜଙ୍କୁ ଦେଖିଲୁଁ, ସେହି ଅଭିଶାପ ଆମ୍ଭଠାରେ ଅନୁଗ୍ରହ ନିମିତ୍ତ ହୋଇଥିଲା । ହେ ମହାତ୍ମନ୍ ! ଆମ୍ଭେ ସେଠାରେ ଦାନର ଫଳ ଦର୍ଶନ କରି ନିଃସନ୍ଦିଗ୍ଧ ଦାନ ଧର୍ମ ସମୂହକୁ

ଆଚରଣ କରିବୁଁ । ୪୪ । ହେ ମହର୍ଷେ ! ଧର୍ମରାଜ ଅତିଶୟ ହୃଷ୍ଟ ହୋଇ ଆମ୍ଭଙ୍କୁ ଏହି କଥା ବାରମ୍ବାର କହିଅଛନ୍ତି, ଯେଉଁ ବ୍ୟକ୍ତି ଦାନ ବିଷୟରେ ସର୍ବଦା ଯତ୍ନପରାୟଣ ସେ ବିଶେଷ ରୂପେ ଗୋ ଦାନ କରିବେ । ୪୫ ।

ବିଶୁଦ୍ଧ ତାତ୍ପର୍ଯ୍ୟ ଏହି ଯେ ଧର୍ମସମୂହକୁ ଅବମାନନା ନ କର । ଦେଶ କାଳୋପପନ୍ନ ପାତ୍ରରେ ଦାନ କରିବାର ବିଧେୟ, ଅତଏବ ତୁମ୍ଭେ ସର୍ବଦା ଗୋସମୂହ ଦାନ କରିବ, ଏହି ବିଷୟରେ ତୁମ୍ଭର କୌଣସି ସଂଶୟ ଜାତ ନୋହୁ । ପୂର୍ବକାଳରେ ଦାନପଥରେ ନିବିଷ୍ଟ ଶାନ୍ତଚିତ୍ତ ମାନବଗଣ ସର୍ବଦା ଗୋଦାନ କରୁଥିଲେ, ସେମାନେ ଉଗ୍ରତପସ୍ୟା ବିଷୟରେ ଶଙ୍କିତ ହୋଇ ଶକ୍ତି ଅନୁସାରେ ଦାନ କରିବାକୁ ପ୍ରବୃତ୍ତ ହେଉଥିଲେ । ୪୭ । ଯଥାକାଳରେ ଶକ୍ତି ଅନୁସାରେ ମତ୍ସର ପରିବର୍ଜନ ପୂର୍ବକ ଶୁଦ୍ଧଚିତ୍ତ, ଶ୍ରଦ୍ଧାଶାଳୀ, ପୁଣ୍ୟଶୀଳ ମାନବଗଣ ଗୋଦାନ କରି ପରଲୋକକୁ ଗମନ-ପୂର୍ବକ ସ୍ୱର୍ଗପୁର ମଧ୍ୟରେ ଦେଦୀପ୍ୟମାନ ହୁଅନ୍ତି । ୪୮ । ଗୋବୃନ୍ଦର ଆହାରାଦି ପରୀକ୍ଷାପୂର୍ବକ ନ୍ୟାୟଲବ୍ଧ ଗୋଧନ ସବୁ ବ୍ରାହ୍ମଣଗଣଙ୍କୁ ଦାନ କର ଏବଂ କାମ୍ୟାଷ୍ଟମୀରେ ଦଶାହକାଳ ଗୋମୟ, ଗୋମୂତ୍ର ଓ ଗୋରସ ଦ୍ୱାରା ଜୀବନଯାପନ କର । ୪୯ । ବୃଷଭ ପ୍ରଦାନ କଲେ ଦେବବ୍ରତୀ ହୁଅନ୍ତି, ଗୋଯୁବା ପ୍ରଦାନ କଲେ ବେଦଲାଭ ହୁଏ, ଗୋଯୁକ୍ତ ରଥ ଶକଟାଦି ଦାନ କଲେ ତୀର୍ଥଲାଭ ହୁଏ ଏବଂ କପିଳା ଧେନୁ ପ୍ରଦାନ କଲେ ପାପବିମୋଚନ ହୁଏ । ୫୦ । ଗୋଟିଏ ମାତ୍ର ନ୍ୟାୟାର୍ଜିତ କପିଳା ଧେନୁ ଦାନ କଲେ, ମନୁଷ୍ୟ କଳୁଷରୁ ବିମୁକ୍ତ ହୁଅନ୍ତି । ଗୋରସ ଅପେକ୍ଷା ଅନ୍ୟ କୌଣସି ପଦାର୍ଥ ଉତ୍କୃଷ୍ଟ ହୋଇନାହିଁ; ଏହି କାରଣରୁ ପଣ୍ଡିତଗଣ ଗୋଦାନକୁ ଅତି ଉତ୍କୃଷ୍ଟ ବୋଲି କହନ୍ତି । ୫୧ ।

ଗୋବୃନ୍ଦ ଦୁଗ୍ଧକ୍ଷରଣ ପୂର୍ବକ ଲୋକସମୂହକୁ ଉଦ୍ଧାର କରନ୍ତି, ଗୋବୃନ୍ଦ ଇହଲୋକରେ ଅନ୍ନ ଉତ୍ପାଦନ କରନ୍ତି । ଯେଉଁମାନେ ଏହା କଥାକୁ ଜାଣି ଗୋବୃନ୍ଦର ଭକ୍ଷ୍ୟ, ପାନୀୟ ଓ କଣ୍ଡୂୟନ ପ୍ରଭୃତି ନ କରନ୍ତି, ସେହି ପାପଚେତା ନରଗଣ ନିରୟଗାମୀ ହୁଅନ୍ତି । ୫୨ । ଯେଉଁମାନେ ସହସ୍ର-ସଂଖ୍ୟକ ସବତ୍ସା ଧେନୁ ଦାନ କରନ୍ତି, ଅଥବା ଶତଧେନୁ ପ୍ରଦାନ କରନ୍ତି, କିମ୍ବା ପଞ୍ଚଗୋ ଅଥବା ଦଶଗୋ ପ୍ରଦାନ କରନ୍ତି, କିମ୍ବା ସାଧୁ ବ୍ରାହ୍ମଣଙ୍କୁ ଗୋଟିଏ ମାତ୍ର ଧେନୁ ପ୍ରଦାନ କରନ୍ତି, ସେହି ପ୍ରଦତ୍ତ ଧେନୁ ପରଲୋକରେ ତାହାଙ୍କ ପକ୍ଷରେ ପୁଣ୍ୟତୀର୍ଥା ନଦୀ ସ୍ୱରୂପ ହୁଅନ୍ତି । ୫୩ । ଗୋସମୂହ ଲୋକମାନଙ୍କର ପୁଷ୍ଟି ସାଧନ କରନ୍ତି ଓ ଲୋକମାନଙ୍କୁ ରକ୍ଷା କରନ୍ତି,

ସେହି କାରଣରୁ ଗୋସମୂହ ଏହି ପୃଥିବୀ ମଧ୍ୟରେ ସୂର୍ଯ୍ୟ ରଶ୍ମି ସଦୃଶ ଅଟନ୍ତି । ଗୋଶବ୍ଦଦ୍ୱାରା ସୂର୍ଯ୍ୟକିରଣ ଓ ଗୋ ଏହି ଉଭୟ ଅର୍ଥ ପ୍ରକାଶିତ ହେଉଅଛି, ସୁତରାଂ ମଧ୍ୟ ଉପଭୋଗ ହୁଏ, ଅତଏବ ଗୋପ୍ରଦାତା ସୂର୍ଯ୍ୟ ସଦୃଶ ବିରାଜିତ ହୁଅନ୍ତି । ୫୪ । ଯଦି ଶିଷ୍ୟ ଗୋ ପ୍ରଦାନଦ୍ୱାରା ଗୁରୁଙ୍କୁ ବରଣ କରିବେ, ତେବେ ସେ ନିଶ୍ଚୟ ସ୍ୱର୍ଗଗାମୀ ହେବେ, ଯେଉଁମାନେ ଗୁରୁଙ୍କ ଆରାଧନା ଜାଣନ୍ତି, ସେହିମାନଙ୍କର ଏହା ସୁମହାନ ଧର୍ମ, ଯୋଗ-ଜ୍ଞାନ ବିଧିସମୂହ ଗୁରୁସେବା ସ୍ୱରୂପ । ଏହା ଆଦ୍ୟ ବିଧି, ଅନ୍ୟାନ୍ୟ ବିଧି-ସମୂହ ଏହାର ଅନ୍ତର୍ଗତ । ଏହି ନ୍ୟାୟଲବ୍ଧ ଗୋଧନ ଦ୍ୱିଜଗଣଙ୍କୁ ଦାନ କରି ପରୀକ୍ଷା ନିମିତ୍ତ କେବଳ ପୋଷଣ କରିବାକୁ ଦେବ । ତୁମ୍ଭେ ପ୍ରଥିତ ପୁଣ୍ୟଶୀଳ, ଅତଏବ ଦେବତା, ମାନବ ଓ ଆମ୍ଭେମାନେ ସମସ୍ତେ ତୁମ୍ଭ-ଠାରେ ଆଶା କରୁ । ୫୭ ।

ହେ ଦ୍ୱିଜର୍ଷେ ! ଧର୍ମରାଜ ଆମ୍ଭଙ୍କୁ ଏହି କଥା କହିବାରୁ ଆମ୍ଭେ ସେହି ଧର୍ମାତ୍ମାଙ୍କୁ ଅବନତ ମସ୍ତକରେ ପ୍ରଣାମ କରି ବୈବସ୍ୱତ କର୍ତ୍ତୃକ ଅନୁଜ୍ଞାତ ହୋଇ ଆପଣଙ୍କ ପାଦମୂଳକୁ ପ୍ରତ୍ୟାଗମନ କରିଅଛୁ । ୫୭ ।

---

## ଅଧ୍ୟାୟ—୭୨

ଯୁଧିଷ୍ଠିର କହିଲେ, ହେ ପ୍ରଭୋ ପିତାମହ ! ମହାମତେ ! ଆପଣ ନାଚିକେତ ଋଷିଙ୍କୁ ଉଦ୍ଦେଶ୍ୟ କରି ଗୋପ୍ରଦାନର ଫଳ ଓ ମାହାତ୍ମ୍ୟ କହିଲେ ଏବଂ ମହାତ୍ମା ନୃଗ ନୃପତି କେବଳ ଅଜ୍ଞାନରୂପ ଅପରାଧ ହେତୁରୁ ମହତ୍‌ଦୁଃଖ ଅନୁଭବ କରିଥିଲେ, ତାହା ମଧ୍ୟ କୀର୍ତ୍ତନ କଲେ । ୨ । ଦ୍ୱାରବତୀ ନଗରୀରେ ସେ ଯେଉଁ ପ୍ରକାରରେ ସମୁଦ୍ଧୃତ ହେଲେ ଏବଂ କୃଷ୍ଣ ଯେଉଁ ନିମିତ୍ତ ତାହାଙ୍କର ମୋକ୍ଷ ହେତୁ ହୋଇଥିଲେ ତାହା ମଧ୍ୟ ଅବଧାରଣ କଲୁଁ, କିନ୍ତୁ ହେ ରାଜନ୍ ! ଗୋଦାନ କଲେ ଯେଉଁ ଲୋକ ପ୍ରାପ୍ତ ହୁଏ, ତଦ୍‌ବିଷୟରେ ଆମ୍ଭର ସନ୍ଦେହ ଅଛି, ଅତଏବ ଗୋଦାନ-କର୍ତ୍ତା ମାନବଗଣ ଯେଉଁ ସ୍ଥାନରେ ବାସ କରନ୍ତି, ଆମ୍ଭେ ସେହି ବିଷୟକୁ ଯଥାର୍ଥ ରୂପେ ଶ୍ରବଣ କରିବାକୁ ଇଚ୍ଛା କରୁଅଛୁଁ । ୪ ।

ଭୀଷ୍ମ କହିଲେ, ହେ ରାଜନ୍ ! ଇନ୍ଦ୍ର ବ୍ରହ୍ମାଙ୍କୁ ଏ ବିଷୟରେ ଯାହା ପଚାରିଥିଲେ, ପ୍ରାଚୀନ ପଣ୍ଡିତଗଣ ଏତାଦୃଶ ସ୍ଥଳରେ ସେହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି । ୫ ।

ଇନ୍ଦ୍ରଦେବ କହିଲେ, ହେ ବ୍ରହ୍ମନ୍ ! ଗୋଲୋକବାସିଗଣ ଯେ ସ୍ୱୀୟ ତେଜ ପ୍ରଭାବରେ ସ୍ୱର୍ଗବାସିମାନଙ୍କର ଐଶ୍ୱର୍ଯ୍ୟକୁ ଅତିକ୍ରମ କରି ଗମନ କରନ୍ତି ଏହାର କାରଣ କଣ ? ଏହା ଦେଖି ଆମ୍ଭର ସଂଶୟ ଜନ୍ମୁ-ଅଛି । ୬ । ହେ ଅନଘ ! ଭଗବନ୍ ! ଗୋଲୋକସମୂହ କୀଦୃଶ ତାହା ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ । ଗୋଦାତାସମୂହ ଯେଉଁ ସ୍ଥାନରେ ବାସ କରନ୍ତି, ତାହା ଜାଣିବାକୁ ଇଚ୍ଛା କରୁଅଛୁ । ୭ । ଗୋଲୋକସମୂହ କେଉଁ ପ୍ରକାର ? ତାହାର ଫଳ କୀଦୃଶ ? ଏବଂ ସେଠାରେ କେଉଁ ଉତ୍କୃଷ୍ଟ ଗୁଣ ଅଛି, ପୁରୁଷମାନେ କେଉଁ ପ୍ରକାରରେ ବିଗତଜ୍ୱର ହୋଇ ସେଠାକୁ ଗମନ କରନ୍ତି ? ୮ । ଦାତା କିପ୍ରକାର କାଳ ପର୍ଯ୍ୟନ୍ତ ଦାନର ଫଳ ଭୋଗ କରନ୍ତି ? ଅଳ୍ପଦାନ କିପରି ହୁଏ ଓ ବହୁବିଧ ଦାନ ଅବା କିପରି ହୁଏ ? ୯ ।

ବହୁ ଗୋଦାନର ଫଳ କୀଦୃଶ ? ଏବଂ ଅଳ୍ପ ଗୋଦାନର ଫଳ ଅବା କୀଦୃଶ ? ଏବଂ ଗୋ ପ୍ରଦାନ ନ କରି କେଉଁ କାରଣରୁ ଗୋ ପ୍ରଦାତା ହୁଅନ୍ତି ତାହା ମଧ୍ୟ ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୧୦ । ହେ ପ୍ରଭୋ ! ଇହଲୋକରେ ବହୁ ଗୋଦାତା କେଉଁ ପ୍ରକାରରେ ଅଳ୍ପ ଗୋଦାତାଙ୍କର ସମାନ ହୁଅନ୍ତି ? ଏବଂ ଅଳ୍ପ ଗୋଦାତା ମଧ୍ୟ କେଉଁ ପ୍ରକାରରେ ବହୁ ଗୋଦାତାଙ୍କ ସମାନ ହୁଅନ୍ତି ? ଗୋପ୍ରଦାନ ସମୟରେ କୀଦୃଶୀ ଦକ୍ଷିଣା ଉତ୍କୃଷ୍ଟା ହୁଏ ? ହେ ଭଗବନ୍ ! ଏହି ସମସ୍ତ ବିଷୟ ଆମ୍ଭ ନିକଟରେ ଯଥାର୍ଥ ରୂପେ କୀର୍ତ୍ତନ କରିବା ହେଉନ୍ତୁ । ୧୨ ।

---

## ଅଧ୍ୟାୟ—୭୩

ପିତାମହ କହିଲେ—ହେ ଦେବରାଜ ! ତୁମ୍ଭେ ଗୋଦାନ ପ୍ରଭୃତିର ଯେଉଁ ପ୍ରଶ୍ନ କଲ, ଲୋକ ମଧ୍ୟରେ ତୁମ୍ଭ ବ୍ୟତିରେକେ କେହି ଏହି ବିଷୟ-ରେ ପ୍ରଶ୍ନ କରି ନାହାନ୍ତି । ହେ ଶକ୍ର ! ନାନା ପ୍ରକାର ଲୋକସମୂହ ଅଛି । ତୁମ୍ଭେ ଯେଉଁ ଲୋକସମୂହକୁ ଦେଖିନାହିଁ, କେବଳ ଆମ୍ଭେ ଯେଉଁ ସବୁ

ଲୋକ ସମୂହକୁ ଦେଖିଅଛୁ, ସେହି ସ୍ଥାନକୁ ପତିବ୍ରତା ସ୍ତ୍ରୀଗଣ, ସୁବ୍ରତ ଋଷି-ସମୂହ ଏବଂ ଶୁଭବୁଦ୍ଧି ସମ୍ପନ୍ନ ବ୍ରାହ୍ମଣ ସମୂହ ଅତିଶୟ ଶୁଭକର୍ମଦ୍ୱାରା ସଶରୀରରେ ସେହି ସ୍ଥାନକୁ ଗମନ କରନ୍ତି । ୩ । ଇହଲୋକରେ ସୁବ୍ରତ ପୁରୁଷଗଣ ଶରୀର ନ୍ୟାସରୂପ ମୋକ୍ଷ ଓ ନିର୍ମଳ ଚିତ୍ତଦ୍ୱାରା ସେହି ସ୍ୱପ୍ନଭୂତ ଲୋକସମୂହକୁ ନିରୀକ୍ଷଣ କରନ୍ତି । ୪ । ହେ ସହସ୍ରାକ୍ଷ ! ସେହି ଲୋକସମୂହ ଯାଦୃଶ ଗୁଣଯୁକ୍ତ ତାହା ଶ୍ରବଣ କର । ସେହି ସ୍ଥାନରେ କାଳ, ଜରା ଓ ପାବକ କାହାକୁ ମଧ୍ୟ ଆକ୍ରମଣ କରିପାରେ ନାହିଁ । ୫ । ହେ ବାସବ ! ସେହି ସ୍ଥାନରେ କୌଣସି ଅଶୁଭ, ବ୍ୟାଧି ଓ କ୍ଲମ ନାହିଁ । ଗୋଗଣ ସେହି ସ୍ଥାନରେ ମନେ ମନେ ଯାହା ବାଞ୍ଛା କରନ୍ତି (୬) ତାହା ସବୁ ପ୍ରାପ୍ତ ହୁଅନ୍ତି । ଏହା ଆମ୍ଭର ପ୍ରତ୍ୟକ୍ଷ ଦର୍ଶନ, ସେମାନେ କାମଗାମିନୀ ଓ କାମଚାରିଣୀ ହୋଇ କାମନା ହେତୁରୁ କାମ୍ୟ ବିଷୟ ସମୂହ ଭୋଗ କରନ୍ତି । ୭ ।

ବାପୀ, ସରୋବର ଓ ସରିତ୍ ସମୂହ, ବିବିଧ ବନ, ଗୃହ ଓ ପର୍ବତ-ସମୂହ ଏବଂ ଯାହା କିଛି ଦ୍ରବ୍ୟ ଅଛି (୮) ସେହି ସମସ୍ତ ସର୍ବଭୂତ ରମଣୀୟ ସର୍ବବିଷୟ ସେଠାରେ ପରିଦୃଷ୍ଟ ହୁଏ । ଈଦୃଶ ବିପୁଳ ଲୋକ ଅପେକ୍ଷା ଅଧିକତର ଅଥବା ତଥାବିଧ ଲୋକ ନାହିଁ । ହେ ଶକ୍ର ! ସେଠାକୁ ସର୍ବସହ, କ୍ଷମାଶୀଳ, ବତ୍ସଳ, ଗୁରୁଙ୍କ ବଶବର୍ତ୍ତୀ, ଅହଙ୍କାରବିରହିତ ନରୋତ୍ତମଗଣ ଗମନ କରନ୍ତି । ୧୦ ।

ଯେଉଁ ପୁରୁଷ ସର୍ବଦା ଧର୍ମ ଓ ସତ୍ୟଯୁକ୍ତ ହୋଇ ମାତା ପିତାଙ୍କର ଅର୍ଚ୍ଚନା ଓ ଶୁଶ୍ରୂଷା କରନ୍ତି ଏବଂ କୌଣସି ପ୍ରକାର ମାଂସଭକ୍ଷଣ ନ କରନ୍ତି, ସେହି ବ୍ରାହ୍ମଣଗଣଙ୍କ ନିକଟରେ ନିନ୍ଦମୀୟ ହୁଅନ୍ତି ନାହିଁ । ୧୧ । ଯେ ଗୋ ଓ ବ୍ରାହ୍ମଣଗଣଙ୍କଠାରେ କ୍ରୋଧପରାୟଣ ହୁଅନ୍ତି ନାହିଁ ଏବଂ ଯେ ଧର୍ମରତ, ଗୁରୁ ଶୁଶ୍ରୂଷକ, ଯାବଜ୍ଜୀବନ ସତ୍ୟ ଆଚରଣ କରିବା ବିଷୟରେ ଓ ଦାନ କରିବାରେ ରତ ଏବଂ ଅପରାଧୀର ଅପରାଧ କ୍ଷମାଦାତା, ଯେ ମୃଦୁ ସ୍ୱଭାବ, ଦାନ୍ତ, ଦେବପରାୟଣ, ସର୍ବାତିଥି ଓ ଦୟାଶୀଳ, ଈଦୃଶ ଗୁଣଯୁକ୍ତ ନର ସେହି ଶାଶ୍ୱତ ଅକ୍ଷୟ ଗୋଲୋକକୁ ଗମନ କରନ୍ତି । ୧୩ ।

ପରଦାରପ୍ରସକ୍ତ ପୁରୁଷ ଏହି ଗୋଲୋକକୁ ଦେଖନ୍ତି ନାହିଁ । ଗୁରୁଘ୍ନ, ମିଥ୍ୟାବାଦୀ, ସର୍ବଦା ପ୍ରବାଦୀ ଏବଂ ବ୍ରାହ୍ମଣଗଣଙ୍କର ବୈରକାରୀ ଯେଉଁ ବ୍ୟକ୍ତି ଏହିପରି ଦୋଷସମୂହଯୁକ୍ତ ସେହି ଦୁରାତ୍ମା ଗୋଲୋକକୁ ଗମନ କରି ପାରନ୍ତି ନାହିଁ । ୧୪ ।

ମିତ୍ରଦ୍ରୋହୀ, ବଞ୍ଚକ, କୃତଘ୍ନ, ଶଠ, ଅନୃଜୁ ଅର୍ଥାତ୍ ସରଳତା-ବର୍ଜିତ, ଧର୍ମବିଦ୍ୱେଷୀ ଓ ବ୍ରହ୍ମଘାତୀ ମନୁଷ୍ୟ ପୁଣ୍ୟଶୀଳମାନଙ୍କର ନିବାସ-ସ୍ଥଳ ଗୋଲୋକକୁ ମନେ ମନେ ସୁଦ୍ଧା ଦର୍ଶନ କରିପାରନ୍ତି ନାହିଁ । ୧୫ । ହେ ସୁରେଶ୍ୱର ! ତୁମ୍ଭଙ୍କୁ ନିପୁଣ ଭାବରେ ଗୋଲୋକର ଏହି ବିଷୟ କହିଲୁଁ । ହେ ଶତକ୍ରତୋ ! ସମ୍ପ୍ରତି ଗୋପ୍ରଦାନନିରତ ମାନବଗଣଙ୍କର ଫଳ ଶ୍ରବଣ କର । ୧୬ । ଯେଉଁ ବ୍ୟକ୍ତି ଦାୟାଦରୁ ଅଲବ୍ଧ ଅର୍ଥଦ୍ୱାରା ଗୋକ୍ରୟ ପୂର୍ବକ ସମ୍ପ୍ରଦାନ କରନ୍ତି ଏବଂ ଯେ ଧର୍ମାର୍ଜିତ ଧନଦ୍ୱାରା କ୍ରୀତ ଗୋମାନଙ୍କର ଦାନ କରନ୍ତି, ସେ ଅକ୍ଷୟ ଗୋଲୋକସମୂହକୁ ପ୍ରାପ୍ତ ହୁଅନ୍ତି । ଯେ ଦ୍ୟୂତକ୍ରୀଡ଼ାରେ ଧନ ଜୟ କରି ଗୋକ୍ରୟପୂର୍ବକ ସମ୍ପ୍ରଦାନ କରନ୍ତି, ହେ ଶକ୍ର ! ସେ ଅୟୁତବର୍ଷ ପର୍ଯ୍ୟନ୍ତ ଦିବ୍ୟଫଳ ଭୋଗ କରନ୍ତି । ୧୮ । ନ୍ୟାୟରେ ଉପାର୍ଜିତ ଅଥବା ଦାୟାଦମାନଙ୍କଠାରୁ ପ୍ରାପ୍ତ ଗୋବୃନ୍ଦଙ୍କୁ ଦାନ କରିବାର ବିଧେୟ । ଦାନ କଲେ ପ୍ରଦାତାମାନଙ୍କର ଅକ୍ଷୟ ଲୋକସମୂହ ସମ୍ଭବ ହୁଏ । ୧୯ । ଯେଉଁମାନେ ଉତ୍ତମ ଶୁଦ୍ଧ ଚିତ୍ତରେ ଗୋ ପ୍ରତିଗ୍ରହ କରି ତାହା ଦାନ କରନ୍ତି, ହେ ଶଚୀପତେ ! ଜାଣ ସେମାନେ ମଧ୍ୟ ଅକ୍ଷୟ ଲୋକସମୂହକୁ ପ୍ରାପ୍ତ ହୁଅନ୍ତି । ୨୦ । ଯେ ନିୟତେନ୍ଦ୍ରିୟ ଓ କ୍ଷମତାଶୀଳ ହୋଇ ଜନ୍ମାବଧି ସତ୍ୟବାକ୍ୟ କହନ୍ତି, ଗୁରୁ ଓ ଦ୍ୱିଜଗଣଙ୍କ ପ୍ରଭାବ ସହ୍ୟ କରନ୍ତି, ସେ ଗୋଗଣଙ୍କ ସହିତ ସମାନ ଗତି ଲାଭ କରନ୍ତି । ୨୧ ।

ହେ ଶଚୀପତେ ! ବ୍ରାହ୍ମଣଙ୍କର ନିନ୍ଦା ଥିଲେ ସୁଦ୍ଧା ତାହା କଦାପି ବ୍ୟକ୍ତ କରିବାର ଉଚିତ ନୁହେ । ଯେ ଗୋବୃତ୍ତି ଓ ଗୋବୃନ୍ଦଙ୍କଠାରେ ଅନୁକମ୍ପାଯୁକ୍ତ ଥିବେ, ସେ ମନେ ମନେ କଦାପି ଗୋସମୂହଙ୍କଠାରେ ଦ୍ରୋହ କରିବେ ନାହିଁ । ୨୨ । ହେ ଶକ୍ର ! ଯେଉଁ ବ୍ୟକ୍ତି ସତ୍ୟ ଧର୍ମରେ ନିରତ ଥାଆନ୍ତି, ତାହାଙ୍କ ଫଳ ଶ୍ରବଣ କର ।

ସତ୍ୟଧର୍ମଶୀଳ ବ୍ରାହ୍ମଣଙ୍କର ଗୋଟିଏ ମାତ୍ର ଧେନୁ ସହସ୍ର ସଂଖ୍ୟକ ଧେନୁର ସମାନ ହୁଏ । କ୍ଷତ୍ରିୟଙ୍କର ମଧ୍ୟ ଏହି ସମସ୍ତ ଗୁଣଦ୍ୱାରା ସମାନ ଫଳକୁ ଶ୍ରବଣ କର । କ୍ଷତ୍ରିୟଙ୍କର ମଧ୍ୟ ଗୋଟିଏ ଧେନୁ ବ୍ରାହ୍ମଣଙ୍କ ଗୋ ସଦୃଶ ଅଟେ ବୋଲି ଏହା ବିଶେଷ ରୂପେ ନିଶ୍ଚିତ ହୋଇଅଛି । ୨୪ । ବୈଶ୍ୟଙ୍କର ଯଦି ଏହି ସମସ୍ତ ଗୁଣ ଥାଏ, ତେବେ ତାହାଙ୍କର ଗୋଟିଏ ଧେନୁ ପଞ୍ଚଶତ ଧେନୁର ସମାନ ହୁଏ । ବିନୟଯୁକ୍ତ ଶୂଦ୍ରଙ୍କର ଗୋଟିଏ ଧେନୁ ଏକଶତ ପଞ୍ଚବିଂଶତି ଗୋମାନଙ୍କ ସମାନ ହୁଏ । ୨୫ । ସତ୍ୟ,

ଗୁରୁଶୁଶ୍ରୂଷା ନିରତ, ଦକ୍ଷ, କ୍ଷମାଶୀଳ, ଦେବତାର୍ଥୀ, ପ୍ରଶାନ୍ତ, ଶୁଚି, ଶୁଦ୍ଧ, ଧର୍ମଶୀଳ, ଅହଙ୍କାରବର୍ଜିତ ହୋଇ ଯେ ବିଧିପୂର୍ବକ ବ୍ରାହ୍ମଣଙ୍କୁ ଦୁଗ୍ଧବତୀ ଧେନୁ ଦାନ କରନ୍ତି, ସେ ମହତ୍ ଫଳ ପ୍ରାପ୍ତ ହୁଅନ୍ତି । ଏହି ବିଧି ଅନୁସାରେ ଦୁଗ୍ଧବତୀ ଧେନୁ ଦାନ କଲେ ମହତ୍ ଫଳ ଲାଭ ହୁଏ, ଅତଏବ ନିୟତ ଏକଭକ୍ତ, ସର୍ବଦା ସତ୍ୟବ୍ରତ ଓ ଗୁରୁଶୁଶ୍ରୂଷାରେ ନିରତ ଥାଇ ଧେନୁଦାନ କରିବାର ବିଧେୟ । ୨୭ । ଯେ ବେଦାଧ୍ୟାୟୀ, ସର୍ବଦା ଗୋବୃନ୍ଦଙ୍କଠାରେ ଭକ୍ତିମାନ୍ ଏବଂ ଯେ ଗୋବୃନ୍ଦଙ୍କୁ ଦର୍ଶନ କରି ସର୍ବଦା ଅଭିନନ୍ଦନ କରନ୍ତି ଏବଂ ଯେ ଜନ୍ମାବଧି ଗୋ ସମୂହଙ୍କୁ ପ୍ରଣାମ କରନ୍ତି, ହେ ରାଜନ ! ତାହାଙ୍କର ଏହି ଫଳ ଶ୍ରବଣ କର । ୨୮ ।

ରାଜସୂୟ ଯଜ୍ଞ କଲେ ଯେଉଁ ଫଳ ଲାଭ ହୁଏ, ବହୁ କାଞ୍ଚନଦ୍ୱାରା ଯାଗକଲେ ଯେଉଁ ଫଳ ହୁଏ, ସାଧୁବୃନ୍ଦ ଓ ସିଦ୍ଧ ଋଷିଗଣ ଏହି ଉଭୟର ଫଳ ସମାନ ବୋଲି କହନ୍ତି । ଯେ ଗୋବ୍ରତୀ ଓ ସତ୍ୟବାଦୀ ହୋଇ ଖାଦ୍ୟ ଦ୍ରବ୍ୟର କିଞ୍ଚିତ୍ ମାତ୍ର ଅଗ୍ରଭାଗ ସ୍ୱୟଂ ଭୋଜନ କରି ପ୍ରତିଦିନ ଗୋବୃନ୍ଦଙ୍କୁ ଦାନ କରନ୍ତି, ସେହି ଶାନ୍ତ, ଲୋଭଶୂନ୍ୟ ଓ ସତ୍ୟଶୀଳ ପୁରୁଷ ସଂବତ୍ସର ମଧ୍ୟରେ ଗୋ ସହସ୍ର ଦାନର ପୁଣ୍ୟପ୍ରାପ୍ତ ହୁଅନ୍ତି । ୩୦ । ଯେ ଏକଭକ୍ତ ଭୋଜନ କରନ୍ତି, ଯେ ଗୋଟିଏ ଧେନୁ ଦାନ କରନ୍ତି ଏବଂ ଯେ ଗୋବ୍ରତୀ ଓ ଗୋ ପ୍ରତି ଅନୁକମ୍ପା ପ୍ରକାଶ କରନ୍ତି, ସେ ଦଶବର୍ଷ କାଳ ଅନନ୍ତ ସୁଖ ସମ୍ଭୋଗ ଲାଭ କରନ୍ତି । ୩୧ । ହେ ଶତକ୍ରତୋ ! ଯେ ଦିବସରେ ଥରେ କେବଳ ଆହାର କରି ତାହାଦ୍ୱାରା ଅର୍ଥ ସଞ୍ଚୟ ପୂର୍ବକ ଗୋ କ୍ରୟ-କରି ପ୍ରଦାନ କରନ୍ତି, ସେହି ଧେନୁର ଯାବତ୍ ପରିମାଣ ରୋମ ସମୂହ ସମ୍ଭବ ହୁଏ (୩୨), ତାବତ୍ ପରିମାଣ ଗୋପ୍ରଦାତା! ଗୋପ୍ରଦାନ ହେତୁରୁ ଶାଶ୍ୱତ ଫଳ ପ୍ରାପ୍ତ ହୁଅନ୍ତି । ବ୍ରାହ୍ମଣଙ୍କର ଗୋଦାନ ବିଷୟକ ଏହି ଫଳ ସବୁ ହୁଏ, କ୍ଷତ୍ରିୟଙ୍କର ଫଳ ଶ୍ରବଣ କର । ୩୩ ।

କ୍ଷତ୍ରିୟ ଏହିପରି ସଞ୍ଚିତ ଅର୍ଥଦ୍ୱାରା ଧେନୁ କ୍ରୟପୂର୍ବକ ବ୍ରାହ୍ମଣଙ୍କୁ ଦାନକଲେ ପାଞ୍ଚବର୍ଷ ଅନନ୍ତ ସୁଖ ସମ୍ଭୋଗ କରନ୍ତି । ବୈଶ୍ୟ ଏହିପରି ଗୋଦାନ କଲେ ଦୁଇବର୍ଷ ଛଅ ମାସ ଏବଂ ଶୂଦ୍ର ଏହିପରି ନିୟମରେ ଗୋଦାନ କଲେ ଏକବର୍ଷ ତିନିମାସ ପର୍ଯ୍ୟନ୍ତ ସ୍ୱର୍ଗରେ ଅନନ୍ତ ସୁଖ ସମ୍ଭୋଗ କରନ୍ତି । ୩୪ । ଯେ ଆତ୍ମ ବିକ୍ରୟଦ୍ୱାରା ଗୋଧନ କ୍ରୟ କରି ସଂପ୍ରଦାନ କରନ୍ତି, ସେ ପୃଥିବୀରେ ଗୋଜାତି ପରିଦୃଷ୍ଟ ହେଉଥିବା କାଳ ପର୍ଯ୍ୟନ୍ତ ଗୋଲୋକରେ ବସତି କରନ୍ତି । ୩୫ ।

ହେ ମହାଭାଗ ! ଧେନୁଙ୍କର ପ୍ରତିଗ୍ରହରେ ଲୋକସମୂହ ଅକ୍ଷୟ ଭାବରେ ଅବସ୍ଥିତ କରନ୍ତି । ଯେ ସଂଗ୍ରାମରେ ଗୋଧନ ଉପାର୍ଜନ ପୂର୍ବକ ସଂପ୍ରଦାନ କରନ୍ତି, ହେ କୌଶିକ ! ତୁମ୍ଭେ ଜାଣିଥାଅ ତାହାଙ୍କର ଆତ୍ମ ବିକ୍ରୟ ପୂର୍ବକ ଗୋଦାନ ସଦୃଶ ଶାଶ୍ୱତ ଫଳ ଲାଭ ହୁଏ । ୩୬ । ଯେଉଁ ବ୍ୟକ୍ତି ଯତବ୍ରତ ହୋଇ ଗୋ ଅଭାବରେ ତିଳଧେନୁ ପ୍ରଦାନ କରନ୍ତି, ସେ ଧେନୁଦ୍ୱାରା ଦୁର୍ଗରୁ ଉତ୍ତୀର୍ଣ୍ଣ ହୋଇ କ୍ଷୀର ନଦୀରେ ପ୍ରମୋଦିତ ହୁଅନ୍ତି । ୩୭ । ଗୋବୃନ୍ଦର ଦାନ କେବଳ ପ୍ରଶସ୍ତ ନୁହେଁ, ପାତ୍ର, କାଳ, ଗୋ ବିଶେଷ, ବିଧି, କାଳଜ୍ଞାନ ଏବଂ ପାବକ ଓ ସୂର୍ଯ୍ୟସଦୃଶ ବିପ୍ର ଓ ଗୋ ସମୂହର ଅନ୍ତର ଅବଗତ ହେବାର ଅତି ଦୁଃସାଧ୍ୟ । ସ୍ୱାଧ୍ୟାୟସମ୍ପନ୍ନ, ଶୁଦ୍ଧଯୋନ, ପ୍ରଶାନ୍ତ, ବୈତାନସ୍ଥ, ପାପଭୀରୁ, ବହୁଜ୍ଞ, ଗୋବୃନ୍ଦଙ୍କଠାରେ କ୍ଷମାଶୀଳ, ନାତିତୀକ୍ଷ୍ଣ, ଶରଣ୍ୟ ଏବଂ ବୃତ୍ତିଗ୍ଲାନ ବ୍ୟକ୍ତିଙ୍କୁ ପଣ୍ଡିତମାନେ ଗୋଦାନର ପାତ୍ର ବୋଲି କହନ୍ତି । ୩୯ ।

ବ୍ରାହ୍ମଣ ବୃତ୍ତିଗ୍ଲାନ ହୋଇ ଅତ୍ୟନ୍ତ ଅବସନ୍ନ ହେଲେ ତାହାଙ୍କୁ କୃଷିକାର୍ଯ୍ୟ ନିମିତ୍ତ, ହୋମ ନିମିତ୍ତ, ପ୍ରସୂତି ନିମିତ୍ତ, ଗୁରୁଙ୍କ ନିମିତ୍ତ ଏବଂ ବାଳକର ବୃଦ୍ଧି ନିମିତ୍ତ ବିଶିଷ୍ଟ ଦେଶକାଳରେ ଧେନୁଦାନ କରିବାର ବିଧେୟ । ୪୦ । ହେ ଶକ୍ର ! ଦୁଗ୍ଧବତୀ, ବିଦ୍ୟାଲବ୍ଧ, ଯୁଦ୍ଧଲବ୍ଧ, ମେଷାଦି ପ୍ରାଣିବିନିମୟଦ୍ୱାରା କ୍ରୀତ, ଯୌତୁକପ୍ରାପ୍ତ, ଯେଉଁ ଧେନୁ କୃଚ୍ଛ୍ରସାଧ୍ୟ ଚାନ୍ଦ୍ରାୟଣାଦିରେ ଉପାର୍ଜିତ, ଅକ୍ଳିଷ୍ଟ ଓ ହୃଷ୍ଟପୁଷ୍ଟ ଗୋସମୂହ ଦାନ ବିଷୟରେ ପ୍ରଶସ୍ତ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ବଳଯୁକ୍ତା, ଶୀଳସମ୍ପନ୍ନା, ସୁଗନ୍ଧବତୀ ଧେନୁସମୂହ ପ୍ରଶଂସନୀୟ । ନଦୀସମୂହ ମଧ୍ୟରେ ଭାଗୀରଥୀ ଯେଉଁପରି ଶ୍ରେଷ୍ଠ, ଗୋସମୂହ ମଧ୍ୟରେ କପିଳା ଧେନୁ ତଦ୍‌ବତ୍ ଶ୍ରେଷ୍ଠ । ୪୨ । ତ୍ରିରାତ୍ର କେବଳ ଜଳପାନଦ୍ୱାରା ପ୍ରାଣଧାରଣ କରି ଭୂତଳରେ ଶୟନ କରି ତୃପ୍ତିଯୁକ୍ତ ବ୍ରାହ୍ମଣଙ୍କୁ ଶସ୍ୟାଦିଦ୍ୱାରା ପରିତୃପ୍ତ ଧେନୁ ଦାନ କରିବାର ବିଧେୟ । ପରିପୁଷ୍ଟ, କ୍ଷୀରପାୟୀ, ବତ୍ସଗଣଙ୍କ ସହିତ ସୁପ୍ରବୃତ୍ତ ଗୋସମୂହଙ୍କୁ ପ୍ରଦାନ କରି ତ୍ରିରାତ୍ର ଗୋରସଦ୍ୱାରା ବୃତ୍ତି ନିର୍ବାହ କରିବାର ବିଧେୟ । ୪୩ ।

ସୁବ୍ରତା, ସାଧୁଦୋହା, କଲ୍ୟାଣବତ୍ସା ଏବଂ ଅପଳାୟିନୀ ଧେନୁ ଦାନ କଲେ, ଗୋଶରୀରରେ ଯାବତ୍ ପରିମାଣ ରୋମ ଥାଏ, ତାବତ୍ ବର୍ଷ ପର୍ଯ୍ୟନ୍ତ ଗୋପ୍ରଦାତାଙ୍କର ପରଲୋକରେ ସୁଖ ଭୋଗ ହୁଏ ।୪୪। ତଦ୍‌ବତ୍ ବ୍ରାହ୍ମଣଙ୍କୁ ଭାରବାହି ଯୁବା ବଳବାନ୍ ବିନୀତ ହଳଚାଳକ ଅନନ୍ତବୀର୍ଯ୍ୟ

ବୃଷ ଦାନ କଲେ ପ୍ରଦାତା ଦଶ ଧେନୁଦାତାଙ୍କ ଲୋକସମୂହକୁ ପ୍ରାପ୍ତ ହୁଅନ୍ତି । ୪୫ । ହେ କୌଶିକ ! ଦୁର୍ଗମ ମାର୍ଗରେ ବ୍ରାହ୍ମଣ ଓ ଗୋବୃନ୍ଦଙ୍କୁ ପରିତ୍ରାଣ କଲେ, ଧେନୁ ଓ ବ୍ରାହ୍ମଣଗଣ କଲ୍ୟାଣ ସହିତ ବିମୁକ୍ତ ହୁଅନ୍ତି; ଅତଏବ ଯେ ମୋଚନ କରନ୍ତି, ତାହାଙ୍କର ପୁଣ୍ୟ ଫଳକୁ ଶ୍ରବଣ କର । ୪୬ ।

ଯେଉଁ ବ୍ୟକ୍ତି କାନ୍ତାରରେ ଗୋକୁଳ ଓ ବ୍ରାହ୍ମଣକୁଳଙ୍କୁ ପରିତ୍ରାଣ କରନ୍ତି, ସେ ଅଶ୍ୱମେଧ ଯଜ୍ଞ ସଦୃଶ ନିତ୍ୟ ଫଳ ପ୍ରାପ୍ତ ହୁଅନ୍ତି । ହେ ସହସ୍ରଲୋଚନ ! ଉକ୍ତ ବ୍ୟକ୍ତି ମୃତ୍ୟୁକାଳରେ ଯେଉଁ ଗୃତିକ ଆକାଙ୍କ୍ଷା କରନ୍ତି ଏବଂ ତାହାଙ୍କ ହୃଦୟରେ ଯେଉଁ ବହୁବିଧ ଦିବ୍ୟଲୋକସମୂହ ଥାଏ, ମାନବ ଏହି କର୍ମଦ୍ୱାରା ତାହା ସବୁ ପ୍ରାପ୍ତ ହୁଅନ୍ତି (୪୮) ଓ ଗୋଗଣଙ୍କ ଦ୍ୱାରା ସମ୍ୟକ୍ ରୂପେ ଅନୁଜ୍ଞାତ ହୋଇ ସର୍ବତ୍ର ପୂଜିତ ହୁଅନ୍ତି । ଯେ ଏହି ଉଦ୍ଦେଶ୍ୟରେ ବନ ମଧ୍ୟରେ ଗୋସମୂହର ଅନୁଗମନ କରନ୍ତି (୪୯) ଏବଂ ତୃଣ, ଗୋମୟ, ପର୍ଣ୍ଣାଶୀ, ନିଃସ୍ପୃହ ଓ ସର୍ବଦା ଶୁଚି ହୁଅନ୍ତି, ହେ ଶତକ୍ରତୋ ! ସେମାନେ ନିଷ୍କାମ ଓ ମୁଦିତ ହୋଇ ମହାୟ ଲୋକରେ ସୁରଗଣଙ୍କ ସହିତ ଅଥବା ଯେଉଁ ଲୋକରେ ସେମାନଙ୍କର ବାସ କରିବାକୁ ଇଚ୍ଛା ହୁଏ, ସେଠାରେ ବାସ କରନ୍ତି । ୫୧ ।

---

## ଅଧ୍ୟାୟ—୭୪

ଇନ୍ଦ୍ର କହିଲେ—ଯେଉଁ ବ୍ୟକ୍ତି ଜ୍ଞାନପୂର୍ବକ ଗୋ ଅପହରଣ ଅଥବା ଅର୍ଥ ନିମିତ୍ତ ଗୋ ବିକ୍ରୟ କରନ୍ତି, ତାହାଙ୍କର କେଉଁ ସ୍ଥାନକୁ ଗତି ହୁଏ, ଏହା ଜାଣିବାକୁ ଇଚ୍ଛା କରୁଅଛୁ । ୧ । ପିତାମହ କହିଲେ, ହେ ସହସ୍ରାକ୍ଷ ! ଭକ୍ଷଣ ନିମିତ୍ତ ଅଥବା ବିକ୍ରୟ ନିମିତ୍ତ ଯେଉଁମାନେ ଗୋ ଅପହରଣ କରନ୍ତି କିମ୍ବା ବ୍ରାହ୍ମଣ ନିମିତ୍ତ ଦାନର ନିମିତ୍ତ ଯେ ଗୋବିକ୍ରୟ କରନ୍ତି, ତଦ୍ବିଷୟରେ ଏହି ଫଳ ଶ୍ରବଣ କର । ୨ ।

ଯେଉଁ ବ୍ୟକ୍ତି ନିରଙ୍କୁଶ ହୋଇ ବିକ୍ରୟ ନିମିତ୍ତ ଗୋହିଂସା ଅଥବା ଭକ୍ଷଣ କରନ୍ତି ଏବଂ ଯେଉଁମାନେ ଅର୍ଥୀ ହୋଇ ଘାତକ ପୁରୁଷଙ୍କୁ ଅନୁମତି ପ୍ରଦାନ କରନ୍ତି, ସେହି ଘାତକ, ଖାଦକ ଓ ଅନୁମତି ଦାୟକମାନେ ସେହି

ଗୋ-ର ଯାବତ୍ ପରିମାଣ ରୋମ ଥାଏ, ତାବତ୍ ବର୍ଷ ନରକରେ ନିମଗ୍ନ ହୁଅନ୍ତି । ୪ । ହେ ପ୍ରଭୋ ! ବ୍ରାହ୍ମଣଙ୍କର ଯଜ୍ଞ ବ୍ୟାଘାତ କଲେ ଯାଦୃଶ ଦୋଷ ହୁଏ, ଗୋବିକ୍ରୟ ଓ ଗୋ ଅପହରଣ କଲେ ସେହି ଦୋଷସମୂହ ହୁଏ । ୫ । ଯେଉଁ ବ୍ୟକ୍ତି ଗୋ ଅପହରଣ କରି ବ୍ରାହ୍ମଣଙ୍କୁ ପ୍ରଦାନ କରନ୍ତି, ଗୋଦାନର ଯାବତ୍ ଫଳ ତାବତ୍‌କାଳ ସେହି ଦାତା ନରକକୁ ଗମନ କରନ୍ତି । ୬ ।

ହେ ମହାଦ୍ୟୁତେ ! ପଣ୍ଡିତମାନେ ଗୋପ୍ରଦାନ ବିଷୟରେ ସୁବର୍ଣ୍ଣ ଦକ୍ଷିଣା କହନ୍ତି । ଦକ୍ଷିଣା ନିମିତ୍ତ ସୁବର୍ଣ୍ଣ କେବଳ ଶ୍ରେଷ୍ଠ ଏହି କଥା ଉକ୍ତ ହୋଇଅଛି, ଏହି ବିଷୟରେ ସଂଶୟ ନାହିଁ । ୭ । ମନୁଷ୍ୟ ଗୋପ୍ରଦାନ ହେତୁରୁ ପୂର୍ବତନ ସପ୍ତପୁରୁଷ ଓ ଅଧସ୍ତନ ସପ୍ତପୁରୁଷଙ୍କୁ ଉଦ୍ଧାର କରନ୍ତି; ସୁବର୍ଣ୍ଣ ଦକ୍ଷିଣା ଦାନ କଲେ ତାହାର ଫଳ ଦ୍ୱିଗୁଣ ହୁଏ ବୋଲି ଏହି କଥା ପଣ୍ଡିତଗଣ କହନ୍ତି । ୮ । ହେ ଶତ୍ରୁ ! ସୁବର୍ଣ୍ଣ ପରମଦାନ, ସୁବର୍ଣ୍ଣ ପରମ ଦକ୍ଷିଣା, ସୁବର୍ଣ୍ଣ ସମସ୍ତ ପବିତ୍ର ବସ୍ତୁ ମଧ୍ୟରେ ଶ୍ରେଷ୍ଠ ପାବନ ଅଟେ ବୋଲି ସ୍ମୃତିରେ ଉକ୍ତ ହୋଇଅଛି । ହେ ଶତ୍ରୁତାପନ ! ସୁବର୍ଣ୍ଣକୁ ପଣ୍ଡିତମାନେ କୁଳସମୂହର ପାବନ ବୋଲି କହନ୍ତି । ହେ ମହାଦ୍ୟୁତେ ! ଆମ୍ଭେ ସଂକ୍ଷେପରେ ଏହି ଦକ୍ଷିଣା କଥା କହିଲୁଁ । ୧୦ ।

ଭୀଷ୍ମ କହିଲେ, ହେ ଭରତଶ୍ରେଷ୍ଠ ! ପିତାମହ ଦେବରାଜ ଇନ୍ଦ୍ରଙ୍କୁ ଏହି ବିଷୟ କହିଥିଲେ । ଇନ୍ଦ୍ର ଦଶରଥଙ୍କୁ କହିଥିଲେ, ପିତା ଦଶରଥ ରାମଙ୍କୁ କହିଥିଲେ । ୧୧ । ରାମ, ପ୍ରିୟଭ୍ରାତା ଯଶସ୍ୱୀ ଲକ୍ଷ୍ମଣଙ୍କୁ ଏହି କଥା କହିଥିଲେ । ହେ ପ୍ରଭୋ ! ଲକ୍ଷ୍ମଣ ଅରଣ୍ୟ ବାସ ସମୟରେ ଋଷିଗଣଙ୍କ ନିକଟରେ ଏହି କଥା କୀର୍ତ୍ତନ କରିଥିଲେ । ୧୨ । ଶଂସିତବ୍ରତ ଏବଂ ଧାର୍ମିକ ଋଷିଗଣ ଓ ଧାର୍ମିକ ନୃପସମୂହ ଏହି ପାରଂପର୍ଯ୍ୟ କ୍ରମରେ ଏହି ସମାଗତ ଦୁର୍ଦ୍ଧର ବିଷୟକୁ ଧାରଣ କରିଥିଲେ । ହେ ଯୁଧିଷ୍ଠିର ! ଏହି ବିଷୟକୁ ମଦୀୟ ଉପାଧ୍ୟାୟ ଆମ୍ଭଙ୍କୁ କହିଥିଲେ । ୧୩ । ଯେଉଁ ବ୍ରାହ୍ମଣ ଏହି ବିଷୟକୁ ନିତ୍ୟ ବ୍ରାହ୍ମଣ ସଭା ମଧ୍ୟରେ କୀର୍ତ୍ତନ କରନ୍ତି, ଯଜ୍ଞ ଓ ଗୋ-ପ୍ରଦାନ ସମୟରେ ଅଥବା ଉଭୟର ସମାଗମ ସମୟରେ କୀର୍ତ୍ତନ କରନ୍ତି (୧୪), ତାହାଙ୍କର ଲୋକସମୂହ ନିଶ୍ଚୟ ଦେବଗଣଙ୍କ ସହିତ ଅକ୍ଷୟ ହୁଏ । ୧୫ । ଭଗବାନ୍ ପରମେଶ୍ୱର ସେହି ବ୍ରହ୍ମା ଏହି କଥା କହିଥିଲେ ।୧୬।

# ଅଧ୍ୟାୟ—୭୫

ଯୁଧିଷ୍ଠିର କହିଲେ—ହେ ପ୍ରଭୋ ପିତାମହ ! ଧର୍ମସମୂହକୁ କୀର୍ତ୍ତନ କରିବାରୁ ଆମ୍ଭେ ବିଶ୍ୱସ୍ତ ହେଲୁଁ, ଏତେବେଳେ ଆମ୍ଭେ କୌଣସି ସନ୍ଦେହର କଥା ପଚାରିବୁଁ, ଆପଣ ଆମ୍ଭଙ୍କୁ ତାହାର ଉତ୍ତର ପ୍ରଦାନ କରନ୍ତୁ । ୧ । ହେ ମହାଦ୍ୟୁତେ ! ବ୍ରତ ସମୂହର କୀଦୃଶ ଫଳ ଉକ୍ତ ହୋଇଅଛି ଏବଂ ତାହା କୀଦୃଶ ଅଟେ ? ନିୟମ ସମୂହରୁ କେଉଁ ଫଳ ହୁଏ ? ଉତ୍ତମରୂପେ ଅଧ୍ୟୟନ କଲେ କେଉଁ ଫଳ ହୁଏ ? ୨ । ଇନ୍ଦ୍ରିୟ ନିଗ୍ରହରୂପ ଦମରୁ କେଉଁ ଫଳ ହୁଏ ? ବେଦ ସମୂହକୁ ଧାରଣ କଲେ କେଉଁ ଫଳ ହୁଏ ? ଅଧ୍ୟାପନା କଲେ କେଉଁ ଫଳ ହୁଏ ? ଏହି ସମସ୍ତ ବିଷୟକୁ ଜାଣିବା ନିମିତ୍ତ ଆମ୍ଭେ ଇଚ୍ଛା କରୁଅଛୁଁ । ୩ ।

ହେ ପିତାମହ ! ଲୋକମାନେ ପ୍ରତିଗ୍ରହ ନ କଲେ ସେମାନଙ୍କର କେଉଁ ଫଳ ହୁଏ ? ଯେଉଁମାନେ ଦାନ କରନ୍ତି, ସେହିମାନଙ୍କର ସେହି ଦାନଫଳ କିଛି ଦେଖାଯାଏ ନାହିଁ ଓ ଶୁଣାଯାଏ କି ନାହିଁ । ୪ । ସ୍ୱକର୍ମ-ନିରତ ଶୂରମାନଙ୍କର କେଉଁ ଫଳ ହୁଏ ? ଶୌଚ୍ୟରରେ କେଉଁ ଫଳ ହୁଏ ଏବଂ ବ୍ରହ୍ମଚର୍ଯ୍ୟରେ କେଉଁ ଫଳ ହୁଏ ବୋଲି ପଣ୍ଡିତଗଣ କହି ଅଛନ୍ତି ? ୫ । ପିତୃମାତୃ ଶୁଶ୍ରୂଷା କଲେ କେଉଁ ଫଳ ହୁଏ ? ଆଚାର୍ଯ୍ୟ ଏବଂ ଗୁରୁ ଶୁଶ୍ରୂଷା କଲେ କେଉଁ ଫଳ ହୁଏ ? ଅନୁକ୍ରୋଶ ଅର୍ଥାତ୍ ପରଦୁଃଖରେ ଦୁଃଖୀ ହୋଇ ଅନୁକମ୍ପା ଅର୍ଥାତ୍ ପରର ଦୁଃଖ ପ୍ରତୀକାର କଲେ କେଉଁ ଫଳ ହୁଏ ? ହେ ଧର୍ମଜ୍ଞ ପିତାମହ ! ଏହି ସମସ୍ତ ବିଷୟ ଯଥାର୍ଥ ରୂପେ ଜାଣିବାକୁ ଅଭିଳାଷ କରୁଅଛୁଁ, ଏହି ବିଷୟରେ ଆମ୍ଭର ଅତିଶୟ କୌତୂହଳ ଜନ୍ମିଅଛି । ୭ ।

ଭୀଷ୍ମ କହିଲେ, ଯେ ଏକ ଭକ୍ତ୍ୟାଦି ଯଥାବିହିତ ବ୍ରତ ସମ୍ୟକ୍ ରୂପେ ଆରମ୍ଭ କରି ସମ୍ପୂର୍ଣ୍ଣ ଭାବରେ ସମାପନ କରନ୍ତି, ତାହାଙ୍କର ସନାତନ ଲୋକସମୂହ ଲାଭ ହୁଏ । ୮ । ହେ ରାଜନ୍ ! ଇହଲୋକରେ ନିୟମସମୂହର ଓ ଯଜ୍ଞାନୁଷ୍ଠାନର ଫଳ ତୁମ୍ଭେ ସ୍ୱୟଂ ଭୋଗ କରୁଅଛ, ସୁତରାଂ ତାହାର ଫଳ ପ୍ରତ୍ୟକ୍ଷ ହେଉଅଛି । ୯ । ଉତ୍ତମରୂପେ ଅଧ୍ୟୟନ କରିବାର ଫଳ ଇହଲୋକ ପରଲୋକରେ ଦୃଷ୍ଟ ହୁଏ । ଅଧେତା ନର ଇହଲୋକରେ ନିୟମରେ ସୁଖ ଭୋଗ କରି ବ୍ରହ୍ମଲୋକରେ ପ୍ରମୋଦ ପ୍ରାପ୍ତ ହୁଅନ୍ତି । ୧୦ ।

ହେ ରାଜନ୍ ! ତୁମ୍ଭେ ଆମ୍ଭ ନିକଟରେ ବିସ୍ତାରକ୍ରମେ ଦମର ଫଳ ଶ୍ରବଣ କର ।

ଦାନ୍ତ ପୁରୁଷଗଣ ସର୍ବଦା ସୁଖ ସମ୍ଭୋଗ କରନ୍ତି ଏବଂ ସକଳ ସ୍ଥାନରେ ନିବୃତ ହୋଇଥାନ୍ତି । ୧୧ । ଦାନ୍ତ ବ୍ୟକ୍ତିଗଣ ଯଥେଚ୍ଛା ସ୍ଥାନକୁ ଗମନ କରିପାରନ୍ତି ଏବଂ ସମସ୍ତ ଶତ୍ରୁଗଣଙ୍କୁ ନିସୂଦନ କରନ୍ତି । ଦାନ୍ତ ପୁରୁଷଗଣ ଯାହା ପ୍ରାର୍ଥନା କରନ୍ତି, ତାହା ତାହାଙ୍କୁ ପ୍ରାପ୍ତ ହୁଏ, ସଂଶୟ ନାହିଁ । ୧୨ । ଦାନ୍ତ ପୁରୁଷଗଣ ସର୍ବକାମଯୁକ୍ତ ହୁଅନ୍ତି । ନରଗଣ ତପସ୍ୟା ଓ ବିନମଦ୍ଵାରା ସ୍ୱର୍ଗରେ ଯେଉଁପରି ପ୍ରମୋଦିତ ହୁଅନ୍ତି (୧୩), ତଦ୍‌ବତ୍ କ୍ଷମାଯୁକ୍ତ ଦାନ୍ତ ପୁରୁଷଗଣ ବିବିଧ ଦାନ ଓ ଯଜ୍ଞ ଦ୍ଵାରା ପ୍ରମୋଦିତ ହୁଅନ୍ତି । ଦାନ ଅପେକ୍ଷା ଦମ ବିଶିଷ୍ଟ । ଦ୍ଵିଜାତିଗଣଙ୍କୁ ଯାହା କିଛି ଦାନ କରାଯାଏ, ସେହି ଦାତା କଦାପି କୁପିତ ହୁଅନ୍ତି, କିନ୍ତୁ ଦାନ୍ତ ପୁରୁଷ କଦାପି କ୍ରୋଧଯୁକ୍ତ ହୁଅନ୍ତି ନାହିଁ । ଅତଏବ ଦାନ ଅପେକ୍ଷା ଦମ ଶ୍ରେଷ୍ଠ ।

ଯେଉଁ ବ୍ୟକ୍ତି କ୍ରୋଧଯୁକ୍ତ ନ ହୋଇ ସୁବର୍ଣ୍ଣ ଓ ରଜତ ପ୍ରଦାନ କରନ୍ତି, ତାହାଙ୍କର ସନାତନ ଲୋକସମୂହ ଲାଭ ହୁଏ । ୧୫ । ହେ ମହାରାଜ ! ଯେଉଁ ହେତୁରୁ କ୍ରୋଧ ଦାନକୁ ବିନଷ୍ଟ କରେ, ସେହି କାରଣରୁ ଦାନ ଅପେକ୍ଷା ଦମ ଶ୍ରେଷ୍ଠ । ସୁରପୁରରେ ଋଷିଗଣଙ୍କର ଅଯୁତସଂଖ୍ୟକ ଅଦୃଶ୍ୟ ସ୍ଥାନ ଅଛି । ଦେବତାଗଣ ଇହଲୋକରୁ ଯେଉଁ ସ୍ଥାନସମୂହକୁ ଗମନ କରନ୍ତି, ସର୍ବଲୋକ ମଧ୍ୟରେ ସେହି ସ୍ଥାନ ଉତ୍କୃଷ୍ଟ । ମହାରାଜ ! କାମଗାମୀ ମହର୍ଷିଗଣ ଦମଦ୍ଵାରା ଯେଉଁ ସ୍ଥାନକୁ ପ୍ରଦାନ କରନ୍ତି, ତାହା ଉତ୍କୃଷ୍ଟ ସ୍ଥାନ । ଅତଏବ ଦାନ ଅପେକ୍ଷା ଦମ ଉତ୍କୃଷ୍ଟ । ଅଧ୍ୟାପକ ଅଧ୍ୟାପନା କାର୍ଯ୍ୟରେ ଅତିଶୟ କ୍ଲେଶ ହେତୁରୁ ଅକ୍ଷୟ ଫଳ ଭୋଗ କରନ୍ତି । ୧୮ ।

ହେ ନରାଧିପ ! ସେ ବିଧି ଅନୁସାରେ ଅଗ୍ନିରେ ଆହୁତି ପ୍ରଦାନ ପୂର୍ବକ ବ୍ରହ୍ମଲୋକକୁ ଗମନ କରନ୍ତି । ଯେ ବେଦସମୂହକୁ ଅଧ୍ୟୟନ କରି ନ୍ୟାୟବୃତ୍ତ ବ୍ୟକ୍ତିଗଣଙ୍କୁ ତାହା ପ୍ରଦାନ କରନ୍ତି, ସେହି ପ୍ରଶଂସିତ ଜନ ଉକ୍ତ ଗୁରୁ କର୍ମଦ୍ଵାରା ସ୍ୱର୍ଗଲୋକରେ ପୂଜିତ ହୁଅନ୍ତି । ୧୯ । ଯେଉଁ କ୍ଷତ୍ରିୟ ଅଧ୍ୟୟନ, ଯଜନ ଓ ଦାନ କାର୍ଯ୍ୟରେ ନିଯୁକ୍ତ ଥାଇ ଯୁଦ୍ଧରେ ପରିତ୍ରାତା ହୁଅନ୍ତି, ସେ ମଧ୍ୟ ସ୍ୱର୍ଗରେ ପୂଜିତ ହୁଅନ୍ତି । ୨୦ । ସ୍ୱକର୍ମନିରତ ବୈଶ୍ୟ ପ୍ରଦାନ ହେତୁରୁ ମହତ୍ତ୍ୱ ଲାଭ କରନ୍ତି ଓ ସ୍ୱକର୍ମନିରତ ଶୂଦ୍ର ମଧ୍ୟ ଶୁଶ୍ରୂଷା ଦ୍ଵାରା ସ୍ୱର୍ଗକୁ ଗମନ କରନ୍ତି । ୨୧ ।

ଶୂର ବହୁବିଧ ଅଛନ୍ତି । ସେମାନଙ୍କ ବିଷୟ ଆମ୍ଭ ନିକଟରୁ ଶ୍ରବଣ କର । ଶୂରବଂଶୀୟ ଶୂରଙ୍କର ଫଳ ନିର୍ଦ୍ଦିଷ୍ଟ ଅଛି । ୨୨ । ଯଜ୍ଞଶୂର, ଦମଶୂର, ସତ୍ୟଶୂର, ଯୁଦ୍ଧଶୂର, ଦାନଶୂର, ସାଂଖ୍ୟଶୂର, ଯୋଗଶୂର ପ୍ରଭୃତି ବହୁବିଧ ମାନବ ଶୂରରୂପେ କଥିତ ହୋଇଅଛନ୍ତି । ତଦ୍ଭିନ୍ନ ଅରଣ୍ୟରେ ଗୃହବାସ ଓ ତ୍ୟାଗ ବିଷୟରେ ଅନେକ ଶୂର ଅଛନ୍ତି । ୨୪ । କେହି କେହି ବୁଦ୍ଧିଶୂର, ଅନ୍ୟମାନେ କ୍ଷମାଶୂର, ଅପରମାନେ ସରଳତା ବିଷୟରେ ଶୂର, କୌଣସି କୌଣସି ମାନବ ସମତା ବିଷୟରେ ଶୂର ରୂପରେ ରହନ୍ତି । ୨୫ । ପୂର୍ବୋକ୍ତ ନିୟମାନୁସାରେ ଅନ୍ୟାନ୍ୟ ନାନା ପ୍ରକାର ଶୂର ଅଛନ୍ତି । କେହି ବେଦାଧ୍ୟୟନରେ ଶୂର, କେହି ଅବା ଅଧ୍ୟୟନରେ ରତ ଥିବାରୁ ଶୂର, କେହି ଅବା ଗୁରୁ ଶୁଶ୍ରୂଷା ବିଷୟରେ ଶୂର, କେହି କେହି ବ୍ୟକ୍ତି ମାତୃଶୁଶ୍ରୂଷାରେ ଶୂର । କୌଣସି ମାନବ ଭିକ୍ଷା କରିବାକୁ ଶୂର ହୁଏ । ୨୭ । କୌଣସି କୌଣସି ନର ଅରଣ୍ୟ ଓ ଗୃହ ବାସ ବିଷୟରେ ଏବଂ ଅତିଥି ପୂଜନ ବିଷୟରେ ଶୂର ରୂପରେ ପରିଚିତ ହୁଅନ୍ତି । ଏମାନେ ସମସ୍ତେ ସ୍ୱକର୍ମ ଫଳ ନିର୍ଜିତ ପରମ ଲୋକସମୂହକୁ ଗମନ କରନ୍ତି । ୨୮ ।

ସର୍ବବେଦର ଧାରଣ, ସମସ୍ତ ତୀର୍ଥରେ ଅବଗାହନ, ନିତ୍ୟ ସତ୍ୟ ବାକ୍ୟକଥନ ଏସବୁ ସମାନ ହୋଇ ପାରନ୍ତି ଅଥବା ନୋହି ପାରନ୍ତି । ୨୯ । ସହସ୍ର ଅଶ୍ୱମେଧ ଯଜ୍ଞ ଓ ଗୋଟିଏ ମାତ୍ର ସତ୍ୟବାକ୍ୟ ତୁଳାଦଣ୍ଡରେ ବିଧୃତ ହୋଇଥିଲେ, କିନ୍ତୁ ସହସ୍ର ଅଶ୍ୱମେଧ ଅପେକ୍ଷା ଗୋଟିଏ ମାତ୍ର ସତ୍ୟବାକ୍ୟ ଉତ୍କୃଷ୍ଟ ହୋଇଥିଲା । ୩୦ । ସୂର୍ଯ୍ୟଦେବ ସତ୍ୟ ହେତୁରୁ ତାପ ଦେଉଅଛନ୍ତି, ସତ୍ୟ ହେତୁରୁ ଅଗ୍ନି ତାପ ଦେଉଅଛନ୍ତି । ସତ୍ୟ ହେତୁରୁ ପବନ ଦେବ ପ୍ରବାହିତ ହେଉଅଛନ୍ତି । ଅତଏବ ସତ୍ୟଦ୍ୱାରା ସମସ୍ତେ ପ୍ରତିଷ୍ଠିତ । ୩୧ । ସତ୍ୟଦ୍ୱାରା ଦେବଗଣ ପ୍ରୀତ ହୁଅନ୍ତି, ସତ୍ୟଦ୍ୱାରା ପିତୃଗଣ ଓ ବ୍ରାହ୍ମଣଗଣ ପ୍ରସନ୍ନ ହୁଅନ୍ତି । ଋଷିଗଣ ସତ୍ୟକୁ ପରମଧର୍ମ ବୋଲି କହନ୍ତି; ଅତଏବ ସତ୍ୟକୁ ଲଙ୍ଘିବାର ଉଚିତ ନୁହେଁ । ୩୨ । ମୁନିଗଣ ସତ୍ୟନିରତ, ମୁନିଗଣ ସତ୍ୟବିକ୍ରମ, ମୁନିଗଣଙ୍କର ଶପଥ ସତ୍ୟ, ସେହି କାରଣରୁ ସତ୍ୟ ଉତ୍କୃଷ୍ଟ । ୩୩ । ହେ ଭରତଶ୍ରେଷ୍ଠ ! ସତ୍ୟଶୀଳ ବ୍ୟକ୍ତି ସ୍ୱର୍ଗଲୋକରେ ପ୍ରମୋଦ ପ୍ରାପ୍ତ ହୁଅନ୍ତି । ଦମ ସତ୍ୟ ଫଳର ପ୍ରାପ୍ତି ସ୍ୱରୂପ, ଏହି କଥା ଆମ୍ଭେ ପୂର୍ବେ ସର୍ବପ୍ରକାରରେ କହିଅଛୁ । ବିନୀତାତ୍ମା ନର ସ୍ୱର୍ଗଲୋକରେ ପୂଜିତ ହୁଅନ୍ତି, ଏହି ବିଷୟରେ ସଂଶୟ ନାହିଁ ।

ହେ ବସୁଧାଧିପ ! ସମ୍ପ୍ରତି ବ୍ରହ୍ମଚର୍ଯ୍ୟର ଗୁଣ ଶ୍ରବଣ କର । ୩୫ । ହେ ନରାଧିପ ! ଯେଉଁ ବ୍ୟକ୍ତି ଇହଲୋକରେ ଜନ୍ମାବଧି ମରଣ ପର୍ଯ୍ୟନ୍ତ ବ୍ରହ୍ମଚାରୀ ହୁଅନ୍ତି, ତାହାଙ୍କର କିଛି ଅପ୍ରାପ୍ୟ ହୁଏ ନାହିଁ । ୩୬ । ଋଷିଗଣଙ୍କ ମଧ୍ୟରେ ବ୍ରହ୍ମଚାରୀଗଣ ବହୁକୋଟି ବର୍ଷ ବ୍ରହ୍ମଲୋକରେ ବାସ କରନ୍ତି । ହେ ରାଜନ୍ ! ସର୍ବଦା ସତ୍ୟରତ, ଦାନ୍ତ ଓ ଊର୍ଦ୍ଧ୍ୱରେତା ଏବଂ ବିଶେଷତଃ ବ୍ରାହ୍ମଣଙ୍କର ଉପାସିତ ବ୍ରହ୍ମଚର୍ଯ୍ୟ ସର୍ବପାପ ଦହନ କରେ । କାରଣ ବ୍ରାହ୍ମଣ ଅଗ୍ନିସ୍ୱରୂପ ବୋଲି କଥିତ ହୁଅନ୍ତି । ୩୮ । ବ୍ରାହ୍ମଣଗଣ ତପସ୍ୱୀ ହେଲେ ସେମାନଙ୍କଠାରେ ଏହା ପ୍ରତ୍ୟକ୍ଷ ହୁଏ । ଇନ୍ଦ୍ର ବ୍ରହ୍ମଚାରୀ କର୍ତ୍ତୃକ ପ୍ରଧର୍ଷିତ ହେଲେ ଯେ ଭୀତ ହୁଅନ୍ତି (୩୯), ତାହା ଇହଲୋକରେ ଋଷିଗଣଙ୍କର ବ୍ରହ୍ମଚର୍ଯ୍ୟର ଫଳ ସ୍ୱରୂପ ଦୃଷ୍ଟ ହୁଏ ।

ସମ୍ପ୍ରତି ମାତାପିତାଙ୍କ ପୂଜା କଲେ, ଯେଉଁ ଧର୍ମ ହୁଏ, ତାହା ଆମ୍ଭ ନିକଟରୁ ଶ୍ରବଣ କର । ୪୦ । ହେ ରାଜନ୍ ! ଯେ ପିତାଙ୍କ ଶୁଶ୍ରୂଷା କରନ୍ତି ଏବଂ କୌଣସି ସମୟରେ ତାହାଙ୍କଠାରେ ଅସୂୟା ନ କରନ୍ତି ଓ ମାତା, ଭ୍ରାତା, ଗୁରୁ ଓ ଆଚାର୍ଯ୍ୟଙ୍କଠାରେ ପିତୃସଦୃଶ ବ୍ୟବହାର କରନ୍ତି, ସେ ସ୍ୱର୍ଗଲୋକରେ ଅର୍ଚ୍ଚିତ ସ୍ଥାନ ପ୍ରାପ୍ତ ହୁଅନ୍ତି । ତାହାଙ୍କର ଏହା ଧର୍ମଫଳ ବୋଲି ଜାଣ । ଆତ୍ମବାନ ବ୍ୟକ୍ତି ଗୁରୁ ଶୁଶ୍ରୂଷାଦ୍ୱାରା କଦାପି ନରକ ଦର୍ଶନ କରନ୍ତି ନାହିଁ । ୪୨ ।

---

## ଅଧ୍ୟାୟ—୭୭

ଯୁଧିଷ୍ଠିର କହିଲେ—ହେ ନୃପ ପିତାମହ ! ଇହଲୋକରେ ଅର୍ଥିଗଣ ଯାହାଦ୍ୱାରା ଶାଶ୍ୱତ ଲୋକସମୂହକୁ ପ୍ରାପ୍ତ ହୁଅନ୍ତି, ସେହି ଗୋଦାନର ପରମ ବିଧି ଯଥାର୍ଥରୂପେ ଆପଣଙ୍କ ନିକଟରୁ ଶୁଣିବା ନିମିତ୍ତ ଇଚ୍ଛା କରୁଅଛୁଁ । ୧ । ଭୀଷ୍ମ କହିଲେ, ହେ ବସୁଧାଧିପ ! ଗୋଦାନ ଅପେକ୍ଷା ଅନ୍ୟ କିଛି ଶ୍ରେଷ୍ଠ ନାହିଁ । କାରଣ ନ୍ୟାୟୋପାର୍ଜିତ ଗୋଦାନ କଲେ ଦାତା ସଦ୍ୟ ନିଜ କୁଳକୁ ପରିତ୍ରାଣ କରନ୍ତି । ୨ ।

ହେ ରାଜନ୍ ! ପୂର୍ବେ ସାଧୁଗଣଙ୍କ ନିମିତ୍ତ ଯେଉଁ ବିଧି ସମ୍ୟକ୍ ରୂପେ ଉତ୍ପାଦିତ ହୋଇଅଛି, ତାହା ସବୁ ପ୍ରଜାମାନଙ୍କ ନିମିତ୍ତ

ସମ୍ପୂର୍ଣ୍ଣରୂପେ ରଚିତ ହୋଇଅଛି; ଅତଏବ ଆଦ୍ୟକାଳଠାରୁ ପ୍ରସିଦ୍ଧ, ସେହି ଗୋ ଦାନର ବିଧିକ ଆମ୍ଭ ନିକଟରୁ ଶ୍ରବଣ କର । ୩ ।

ପୂର୍ବେ ଦାତବ୍ୟ ଗୋବୃନ୍ଦ ଉପସ୍ଥିତ ହେବା ସମୟରେ ଗୋ-ଗଣଙ୍କ ବିଷୟରେ ସନ୍ଦେହଧାରଣୀ ମାନ୍ଧାତା ବୃହସ୍ପତିଙ୍କୁ ପ୍ରଶ୍ନ କରିଥିଲେ ଓ ବୃହସ୍ପତି ତାହାର ପ୍ରତ୍ୟୁତ୍ତର କରିଥିଲେ । ୪ ।

ସ୍ୱକୀୟ ଆକସ୍ମିକ ମୃତ୍ୟୁ ଉପସ୍ଥିତ ହେବାର ଜାଣି ନିୟତବ୍ରତ ନର ଦ୍ୱିଜାତିଙ୍କୁ ପରମ ସମାଦର ପୂର୍ବକ ଗୋ ଦାନ ନିମିତ୍ତ ଲୋହିତବର୍ଣ୍ଣା ଧେନୁ ପ୍ରଦାନ କରିବେ । ୫ । ଗୋଗଣଙ୍କୁ ସମଙ୍ଗେ, ବହୁଳେ, ଏହି ବାକ୍ୟଦ୍ୱାରା ଆହ୍ୱାନ କରିବେ ଓ ଗୋଗଣଙ୍କ ମଧ୍ୟରେ ପ୍ରବେଶ ପୂର୍ବକ ଏହି ବକ୍ଷ୍ୟମାଣ ଶ୍ରୁତି ପାଠ କରିବେ । ୬ । "ଗୋ ଆମ୍ଭର ମାତା, ବୃଷଭ ଆମ୍ଭର ପିତା, ଆମ୍ଭର ସ୍ୱର୍ଗ ଓ ଐହିକ ସୁଖକୁ ପ୍ରଦାନ କରନ୍ତୁ, ଗୋସମୂହ ଆମ୍ଭର ପ୍ରତିଷ୍ଠା ହେଉନ୍ତୁ"—ଏହି ଶ୍ରୁତି ଉଚ୍ଚାରଣ ପୁରଃସର ସେହିମାନଙ୍କ ମଧ୍ୟରେ ମୌନାବଲମ୍ବନ ପୂର୍ବକ ସେଠାରେ ଏକରାତ୍ରି ବାସକରି ଗୋପ୍ରଦାନ କାଳରେ ପୁନଶ୍ଚ ବାକ୍ୟ ଉଚ୍ଚାରଣ କରିବେ । ଏହା ଗୋଦାନର ପୂର୍ବାଙ୍ଗବ୍ରତ ।

ସାଧୁଗଣଙ୍କ ମଧ୍ୟରେ ଯେଉଁ ବ୍ୟକ୍ତି ଗୋଟିଏ ରାତ୍ରି ଗୋଗଣଙ୍କ ସହିତ ସମଦଶା ଓ ସମବ୍ରତ ଅର୍ଥାତ୍ ଭୂତଳରେ ଶୟନ, ଦଂଶମଶକାଦିର ଅନିବାରଣ ପ୍ରଭୃତି ଗୁଣଯୁକ୍ତ ହୋଇ ରହନ୍ତି, ଗୋ ସହିତ ଐକାତ୍ମ୍ୟ ହେତୁରୁ ସେ ତତ୍କ୍ଷଣାତ୍ ପାପରାଶିରୁ ବିମୁକ୍ତ ହୁଅନ୍ତି । ୮ ।

ସୂର୍ଯ୍ୟଦର୍ଶନ କାଳରେ ଅର୍ଥାତ୍ ପ୍ରାତଃକାଳରେ ଧେନୁ ସହିତ ବୃଷବତ୍ସ ଉତ୍ସୃଷ୍ଟ ହୁଏ, ତୁମ୍ଭେ ତାଦୃଶ ଗୋଦାନ କଲେ ସ୍ୱର୍ଗଲୋକ ପ୍ରାପ୍ତ ହେବ ଏବଂ ତୁମ୍ଭର ଅର୍ଥବାଦ ରୂପ ଆଶୀର୍ବାଦ ଲାଭ ହେବ । ୯ । "ଗୋବୃନ୍ଦ ଊର୍ଜ୍ଜସ୍ୱିନୀ ଅର୍ଥାତ୍ ଉତ୍ସାହବଳ ବିଧାୟିନୀ, ପ୍ରଜ୍ଞାବର୍ଦ୍ଧିନୀ, ଯଜ୍ଞକର୍ମ ବିଷୟରେ ଅମୃତ ଅର୍ଥାତ୍ ଯଜ୍ଞ ସାଧନ ହବିର ଗର୍ଭଭୂତ, ଏହି ଜଗତର ପ୍ରତିଷ୍ଠା ସ୍ୱରୂପ ନିରନ୍ତର ପୃଥିବୀର ପ୍ରବାହରୂପ", ପ୍ରାଜାପତ୍ୟ ଏହି ସମସ୍ତ ଅର୍ଥବାଦ ଗୋଗଣଙ୍କଠାରେ ପ୍ରତିଷ୍ଠିତ ହୋଇ ରହିଅଛି ।

"ଗୋସମୂହ ଆମ୍ଭର ପାପବିମୋଚନ କରନ୍ତୁ, ସୂର୍ଯ୍ୟ ଓ ସୋମ-ଦୈବତ ଏବଂ ଗୋ ସକଳ ଆମ୍ଭ ସ୍ୱର୍ଗଗମନର କାରଣ ହୁଅନ୍ତୁ, ଆମ୍ଭର ଶରୀରକୁ ମାତୃବତ୍ ଆଶ୍ରୟ କରନ୍ତୁ ।" ମନ୍ତ୍ରହୟରେ ଉକ୍ତ ଏବଂ ଅନୁକ୍ତ

ଆଶୀର୍ବାଦ ସମୂହ ଆମ୍ଭ ସମ୍ବନ୍ଧରେ ସଫଳ ହେଉନ୍ତୁ । ୧୧ । ରୋଗ ଉପଦ୍ରବାଦିର ଅପନୟନ ବିଷୟରେ ଏବଂ ଦେହମୋକ୍ଷ କାଳରେ ପଞ୍ଚଗବ୍ୟାଦି ସେବିତ ହେଲେ ଗୋବୃନ୍ଦ ସରସ୍ୱତୀ ନଦୀ ସଦୃଶ କଲ୍ୟାଣର କାରଣ ହୁଅନ୍ତି । ତୁମ୍ଭେମାନେ ନିୟତ ସମସ୍ତ ପୁଣ୍ୟକୁ ବର୍ଦ୍ଧନ କରିଥାଅ, ଅତଏବ ହେ ଗୋଗଣ ! ତୁମ୍ଭେମାନେ ପ୍ରସନ୍ନ ହୋଇ ଆମ୍ଭଙ୍କୁ ଅଭୀଷ୍ଟ ଗତି ପ୍ରଦାନ କର । ୧୨ । ଏତେବେଳେ ତୁମ୍ଭେମାନେ ଯେ, ଆମ୍ଭେ ମଧ୍ୟ ସେ; ଅଦ୍ୟ ଆମ୍ଭମାନଙ୍କର ଏକତ୍ୱ ହୋଇଅଛି । ଆମ୍ଭେ ତୁମ୍ଭମାନଙ୍କୁ ଦାନ କରି ଆତ୍ମପ୍ରଦାତା ହୋଇଅଛୁ; ତୁମ୍ଭେମାନେ ଦାତାଙ୍କର ମମତ୍ୱ ଅଭିମାନରୁ ବିଚ୍ୟୁତ ହୋଇ ମଦୀୟ ମମତାର ଆସ୍ପଦ ହୋଇଅଛ, ତୁମ୍ଭେମାନେ ସୌମ୍ୟରୂପ ଓ ଉଗ୍ରରୂପ ସମନ୍ୱିତ ହୋଇ ଦାତାଙ୍କୁ ଅଭୀଷ୍ଟ ଭୋଗସମୂହ ଦ୍ୱାରା ପ୍ରକାଶିତ କର । ଗୋପ୍ରଦାତା ଗ୍ରହୀତାଙ୍କ ଅଗ୍ରଭାଗରେ ଯଥାବିଧି ପୂର୍ବୋକ୍ତ ଶ୍ଳୋକର ପୂର୍ବାର୍ଦ୍ଧ ପାଠ କରିବେ ଏବଂ ପ୍ରତିଗ୍ରହକର୍ତ୍ତା ଦ୍ୱିଜ ଗୋପ୍ରତିଗ୍ରହ କାଳରେ ପୂର୍ବ ଶ୍ଳୋକର ଶେଷାର୍ଦ୍ଧ ଭାଗକୁ ଉଚ୍ଚାରଣ କରିବେ । ଯେଉଁ ବ୍ୟକ୍ତି ଗୋଦାନ ସମୟରେ ଏହିପରି ଆଚରଣ କରନ୍ତି, ସେ ବିଧିଜ୍ଞ ଅଟନ୍ତି । ଯେଉଁ ବ୍ୟକ୍ତି ଗୋଦାନର ପ୍ରତିନିଧି ସ୍ୱରୂପ ବ୍ୟାବହାରିକ ଧେନୁର ମୂଲ୍ୟ, ବସ୍ତ୍ର ଓ ବିତ୍ତ ପ୍ରଦାନ କରନ୍ତି, ତାହାଙ୍କୁ ମଧ୍ୟ ଗୋ ପ୍ରଦାତା ବୋଲିବାର ବିଧେୟ । ଗୋମୂଲ୍ୟ ଦାନ କାଳରେ "ତୁମ୍ଭଙ୍କୁ ଊର୍ଦ୍ଧ୍ୱମୁଖୀ ଧେନୁ ପ୍ରଦାନ କରୁଅଛି, ତୁମ୍ଭେ ଗ୍ରହଣ କର"—ଏହି କଥା କହିବାର ବିଧେୟ । ବସ୍ତ୍ର ଧେନୁ ଦାନ କାଳରେ "ଭବିତବ୍ୟା" ଏବଂ ବସୁଧେନୁ ପ୍ରଦାନ ସମୟରେ "ବୈଷ୍ଣବୀ" ଏହି କଥା ପ୍ରୟୋଗ କରିବେ । ୧୫ ।

ଧେନୁର ଊର୍ଦ୍ଧ୍ୱାସ୍ୟା ପ୍ରଭୃତି ନାମକୁ ଯଥା ସଂଖ୍ୟାନୁସାରେ କୀର୍ତ୍ତନ କରିବାର ଉଚିତ । ଯଥାକ୍ରମରେ ଗୋ ପ୍ରତିନିଧି ଦାନ ପ୍ରଭୃତିର ଫଳ ଏହିପରି ଜାଣିବ । ଗୋମୂଲ୍ୟ ପ୍ରଦାନ କଲେ ଷଟ୍‌ତ୍ରିଂଶତ୍ ସହସ୍ରଗୁଣ ଫଳ ହୁଏ । ବସ୍ତ୍ରଧେନୁ ପ୍ରଦାନ କଲେ ଅଷ୍ଟବିଂଶତି ସହସ୍ର ଗୁଣଫଳ ଜନ୍ମେ । ସାକ୍ଷାତ୍ ଗୋ ପ୍ରଦାତା, ଗ୍ରହୀତା ଅଷ୍ଟମପଦ ଗମନ ମାତ୍ରେ ସମସ୍ତ ଫଳ ପ୍ରାପ୍ତ ହୁଅନ୍ତି । ଅର୍ଥାତ୍ ଗ୍ରହୀତାର ଗୃହକୁ ଗମନ ମାତ୍ର ତଦୀୟ ବାଳକ, ଅତିଥି ଓ ଅଗ୍ନିହୋତ୍ରାଦିର ଚିରକାଳ ନିର୍ବାହ ହୁଏ । ୧୬ ।

ଗୋ ପ୍ରଦାତା ଶୀଳସ୍ୱଭାବଶାଳୀ ହୁଅନ୍ତି, ମୂଲ୍ୟଦାତା ନିର୍ଭୟ ହୁଅନ୍ତି ଏବଂ ବସୁଦାତା କଦାପି ଦୁଃଖୀ ହୁଅନ୍ତି ନାହିଁ । ଯେଉଁମାନେ ଉଷାକାଳରେ ପ୍ରାତଃସ୍ନାନ ପ୍ରଭୃତି ନିର୍ବାହ କରନ୍ତି ଏବଂ ଯେ ବିଶେଷ ରୂପରେ ମହାଭାରତ

ବହିତ ହୋଇଅଛନ୍ତି; ଚନ୍ଦ୍ରଙ୍କ ସଦୃଶ ଆଲୋକଯୁକ୍ତ ଲୋକ ପ୍ରାପ୍ତ ହୁଅନ୍ତି ଏବଂ ବୈଷ୍ଣବ ରୂପରେ ବିଖ୍ୟାତ ହୁଅନ୍ତି (୧୮), ଅତଏବ ତାଦୃଶ ବ୍ରାହ୍ମଣଗଣଙ୍କୁ ଗୋଦାନ କରିବାର ବିଧେୟ । ମନୁଷ୍ୟ ଗୋଦାନ କରି ତିରାତ୍ର ଗୋବ୍ରତୀ ହେବେ ଏବଂ ଏକରାତି ଗୋଗଣଙ୍କ ସହିତ ବସତି କରିବେ ଓ କାମ୍ୟାଷ୍ଟମୀରେ ତିରାତ୍ରକାଳ ଗୋରସ, ଗୋମୟ ଅଥବା ଗୋମୂତ୍ର ଉପଯୋଗ ପୂର୍ବକ ଜୀବନଯାତ୍ରା କରିବେ । ୧୯ ।

ବୃଷଭ ପ୍ରଦାନ କଲେ ପୁରୁଷ ଦେବବ୍ରତୀ ଅର୍ଥାତ୍ ସୂର୍ଯ୍ୟମଣ୍ଡଳ ଭେଦୀ ବ୍ରହ୍ମଚାରୀ ହୁଅନ୍ତି, ଗୋଯୁଗ ପ୍ରଦାନ କଲେ, ବେଦ ପ୍ରାପ୍ତି ହୁଏ ଓ ଯାଜ୍ଞିକ ବ୍ୟକ୍ତି ବିଧିପୂର୍ବକ ଗୋଦାନ କଲେ ଉତ୍କୃଷ୍ଟ ଲୋକସମୂହ ପ୍ରାପ୍ତ ହୁଅନ୍ତି । ଯେ ବିଧିଜ୍ଞ ନୁହନ୍ତି, ସେ ଉତ୍କୃଷ୍ଟ ଲୋକସମୂହକୁ ଲାଭ କରି ପାରନ୍ତି ନାହିଁ । ୨୦ । ଯେ କାମଦୁଘା ଧେନୁ ଦାନ କରନ୍ତି ଏବଂ ଯେ ଏକତ୍ରସ୍ଥ ସମସ୍ତ ପାର୍ଥିବ କାମ୍ୟ ବିଷୟ ଦାନ କରନ୍ତି, ତନ୍ମଧ୍ୟରେ ହବ୍ୟକବ୍ୟବର୍ତ୍ତୀ ଧେନୁ କେବଳ ପ୍ରଶସ୍ତ ଏବଂ ଧେନୁ ଅପେକ୍ଷା ଶ୍ରେଷ୍ଠତର ବୃଷଭ ଦାନ ସମଧିକ ଫଳପ୍ରଦ ଅଟେ । ୨୧ । ଯେଉଁ ବ୍ୟକ୍ତି ଶିଷ୍ୟ ନୁହନ୍ତି ଏବଂ ଯେ ବ୍ରତ ଧାରଣ ନ କରନ୍ତି ଓ ଯେଉଁ ମନୁଷ୍ୟ ଶ୍ରଦ୍ଧାଯୁକ୍ତ ନୁହନ୍ତି, ଯେ ବକ୍ରବୁଦ୍ଧି ସେହିମାନଙ୍କ ନିକଟରେ ଏହି ଧର୍ମ ବିଷୟ କୀର୍ତ୍ତନ କରିବ ନାହିଁ, ଏହି ଧର୍ମ ସମସ୍ତ ଲୋକଙ୍କର ଗୋପନୀୟ, ଅତଏବ ସର୍ବସ୍ଥାନରେ ଏହି ଧର୍ମ ବିଷୟକୁ ପ୍ରକାଶ କରିବାର ଉଚିତ ନୁହେ, ଅର୍ଥାତ୍ ପୂର୍ବୋକ୍ତ ବ୍ୟକ୍ତିଗଣ ଯେଉଁ ସ୍ଥାନରେ ଥିବେ, ସେହି ସ୍ଥାନରେ ଉକ୍ତ ବିଷୟ କୀର୍ତ୍ତନ କରିବ ନାହିଁ । ୨୨ ।

ଇହଲୋକରେ ଅନେକ ଶ୍ରଦ୍ଧାଯୁକ୍ତ ମନୁଷ୍ୟ ଅଛନ୍ତି ଏବଂ ମନୁଷ୍ୟ ମଧ୍ୟରେ ଅନେକ ବ୍ୟକ୍ତି କ୍ଷୁଦ୍ର ବୁଦ୍ଧି ଓ ରାକ୍ଷସ ସଦୃଶ ଅଛନ୍ତି, ଯେଉଁମାନଙ୍କୁ ଏହା ଦାନ କଲେ ଅନିଷ୍ଟ ହୁଏ ଏବଂ ଯେଉଁ ସମସ୍ତ ଅଳ୍ପ ପୁଣ୍ୟଶୀଳ ଲୋକେ ନାସ୍ତିକତାକୁ ଆଶ୍ରୟ କରି ଥାଆନ୍ତି ସେମାନଙ୍କ ନିକଟରେ ଏହା କୀର୍ତ୍ତନ କରିବ ନାହିଁ । ୨୩ ।

ହେ ରାଜନ୍ ! ଏହି ସମସ୍ତ ବୃହସ୍ପତିଙ୍କ ସମ୍ବନ୍ଧୀୟ ବାକ୍ୟସମୂହ ଶ୍ରବଣପୂର୍ବକ ଯେଉଁ ନୃପତିଗଣ ଗୋ ପ୍ରଦାନ କରି ପରତ୍ରଲୋକ ପ୍ରାପ୍ତ ହୋଇଅଛନ୍ତି, ସେହି ପୁଣ୍ୟଶୀଳ ନରପାଳଗଣଙ୍କ ବିଷୟ ଆମ୍ଭେ କୀର୍ତ୍ତନ କରୁଅଛୁଁ ଶ୍ରବଣ କର । ୨୪ । ଉଶୀନର, ବିଶ୍ୱଗଶ୍ୱ, ନୃଗ, ବିଖ୍ୟାତ ଭଗୀରଥ, ଯୌବନାଶ୍ୱ, ମାନ୍ଧାତା, ରାଜା ମୁଚୁକୁନ୍ଦ ଭୂରିଦ୍ୟୁମ୍ନ, ନୈଷଧ, ସୋମକ (୨୫), ପୁରୂରବା, ଚକ୍ରବର୍ତ୍ତୀ ଭରତ, ଯାହାଙ୍କ ବଂଶରେ ସମସ୍ତ

ନୃପଗଣ ଜନ୍ମଗ୍ରହଣ କରି ଭାରତ ନାମରେ ବିଖ୍ୟାତ ହୋଇଅଛନ୍ତି ଓ ବୀରବର ଦାଶରଥି ରାମ ଭିନ୍ନ ଅନ୍ୟାନ୍ୟ ସମସ୍ତ ଯେଉଁ ଭୂପାଳଗଣ କୀର୍ତ୍ତିଶୀଳ ରୂପରେ ବିଖ୍ୟାତ ହୋଇ ଅଛନ୍ତି (୨୬) ଏବଂ ରାଜା ପୃଥୁକର୍ମା ଦିଲୀପ ବିଧିଜ୍ଞ ହୋଇ ଗୋପ୍ରଦାନ ଦ୍ୱାରା ସ୍ୱର୍ଗଲାଭ କରିଥିଲେ, ମହାରାଜ ମାନ୍ଧାତା ଯଜ୍ଞ, ଦାନ, ତପସ୍ୟା, ରାଜଧର୍ମ ଓ ଗୋଦାନ ବିଷୟରେ ସର୍ବଦା ନିଯୁକ୍ତ ଥିଲେ (୨୭), ଅତଏବ ହେ ପାର୍ଥ ! ତୁମ୍ଭେ ମଧ୍ୟ ଆମ୍ଭଦ୍ୱାରା ଉକ୍ତ ଏହି ବାର୍ହସ୍ପତ୍ୟ ଭାରତୀକୁ ହୃଦୟରେ ଧାରଣକର । ତୁମ୍ଭେ କୌରବଗଣଙ୍କର ରାଜ୍ୟପ୍ରାପ୍ତ ହୋଇଅଛ, ଅତଏବ ପ୍ରୀତିଯୁକ୍ତ ହୋଇ ଦ୍ୱିଜଶ୍ରେଷ୍ଠମାନଙ୍କୁ ପବିତ୍ର ଗୋ ପ୍ରଦାନ କର । ୨୮ ।

ବୈଶମ୍ପାୟନ କହିଲେ, ତଦନନ୍ତର ଭୀଷ୍ମ ବିଧି ଅନୁସାରେ ଗୋପ୍ରଦାନ ବିଷୟରେ ଯାହା କହିଲେ ଧର୍ମରାଜ ତାହା ସେହିପରି କଲେ, ମାନ୍ଧାତାଙ୍କ ସମ୍ବନ୍ଧରେ ଯାହା ଦେବଦେବ କର୍ତ୍ତୃକ ଉପଦିଷ୍ଟ ହୋଇଥିଲା, ରାଜା ସେହି ଧର୍ମକୁ ଉତ୍ତମରୂପେ ଧାରଣ କଲେ । ୨୯ ।

ହେ ରାଜନ୍ ! ଏହିପରି ସର୍ବଦା ଗୋ ପ୍ରଦାନ କାଳରେ ଗୋମୟ ସହିତ ଯବଖଣ୍ଡମାନଙ୍କୁ ଭକ୍ଷଣ ଓ ପୃଥିବୀ ତଳରେ ଶୟନ କରି ଶିଖାବାନ୍ ହୋଇ ବୃଷ ସଦୃଶ, ସେହି ନୃପବର ସଂଯତ ଚିତ୍ତ ହୋଇଥିଲେ । ୩୦ । ନରପତି ସର୍ବଦା ଗୋବୃନ୍ଦଙ୍କଠାରେ ପ୍ରଯତଚିତ୍ତ ହୋଇ ସେମାନଙ୍କୁ ସ୍ତୁତି କରି ନୃପତିଗଣଙ୍କର ଅଗ୍ରଗଣ୍ୟ ହୋଇ ଉତ୍କୃଷ୍ଟତର ତୁରଗଗଣଙ୍କଦ୍ୱାରା ଯେଉଁ ସ୍ଥାନକୁ ଇଚ୍ଛା, ସେହି ସ୍ଥାନକୁ ଗମନ କରୁଥିଲେ । ୩୧ ।

---

## ଅଧ୍ୟାୟ—୭୭

ବୈଶମ୍ପାୟନ କହିଲେ—ତଦନନ୍ତର ଧୀମାନ୍ ନୃପତି ଯୁଧିଷ୍ଠିର ବିନୟଯୁକ୍ତ ହୋଇ ଶାନ୍ତନୁ ପୁତ୍ର ଭୀଷ୍ମଙ୍କୁ ପୁନଶ୍ଚ ଗୋଦାନର ବିଷୟ ବିସ୍ତାର କ୍ରମେ ପ୍ରଶ୍ନ କଲେ । ୧ । ଯୁଧିଷ୍ଠିର କହିଲେ, ହେ ଭାରତ ! ଗୋପ୍ରଦାନର ଫଳସମୂହ ପୁନଶ୍ଚ ସମ୍ୟକ୍‌ରୂପେ ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ । ହେ ବୀର ! ଏତାଦୃଶ ଅମୃତକୁ ଆମ୍ଭେ ଶ୍ରବଣ ଦ୍ୱାରା ପାନକରି କଦାପି ତୃପ୍ତ ହେଉନାହୁଁ । ୨ ।

ବୈଶମ୍ପାୟନ କହିଲେ, ହେ ଜନମେଜୟ ! ଶାନ୍ତନୁପୁତ୍ର ଭୀଷ୍ମଦେବ ନୃପଙ୍କୁ ଧର୍ମରାଜ ଏହିପରି କହିବାରୁ ସେ ତାହାଙ୍କୁ ସମ୍ୟକ୍‌ରୂପେ ଗୋପ୍ରଦାନର ଫଳ ସମୂହକୁ କହିଲେ । ୩ । ଭୀଷ୍ମ କହିଲେ, ବିପ୍ରଙ୍କୁ ବତ୍ସଳାଗୁଣସମ୍ପନ୍ନା ତରୁଣୀ ଓ ବସ୍ତ୍ରସଂବୃତା ଗୋଦାନ କଲେ ପୁରୁଷ ସର୍ବପାପରୁ ବିମୁକ୍ତ ହୁଅନ୍ତି । ୪ । ଗୋଦାନ କଲେ ଯେଉଁ ଲୋକ ସମୂହରେ ସୂର୍ଯ୍ୟ ନାହାନ୍ତି, ଅର୍ଥାତ୍ ଅନ୍ଧକାରମୟ ନରକରେ ମନୁଷ୍ୟ ପତିତ ହୁଅନ୍ତି ନାହିଁ । ଯେଉଁ ଧେନୁ ଜଳପାନ କରିଅଛି, ଆଉ କରିବ ନାହିଁ, ଯେ ତୃଣ ଭକ୍ଷଣ କରିଅଛି, ଆଉ କରିବ ନାହିଁ, ଯାହାର କ୍ଷୀର ନଷ୍ଟ ହୋଇ-ଅଛି, ଆଉ ଦେବ ନାହିଁ ଏବଂ ଯାହାର ଇନ୍ଦ୍ରିୟ ସମୂହ ନିଃଶେଷ ହୋଇ-ଅଛି (୫), ତାଦୃଶୀ ଜରାରୋଗସମ୍ପନ୍ନା, ନିର୍ଜଳା ବାପୀ ସଦୃଶ ଜୀର୍ଣ୍ଣା ଧେନୁ ଦାନ କଲେ ମନୁଷ୍ୟ ଅନ୍ଧକାରମୟ ନରକରେ ପ୍ରବେଶ କରନ୍ତି ।

ଯେ ଈଦୃଶୀ ଧେନୁ ଦାନ କରନ୍ତି, ସେ ଦ୍ୱିଜଙ୍କୁ କ୍ଳେଶଯୁକ୍ତ କରନ୍ତି । ୬ । ରୁଷ୍ଟା, ଦୁଷ୍ଟା, ବ୍ୟାଧିଗ୍ରସ୍ତା, ଦୁର୍ବଳା ଏବଂ ଯେଉଁ ଗୋକୁ ମୂଲ୍ୟଦାନଦ୍ୱାରା କ୍ରୟ କରାଯାଏ ନାହିଁ, ତାଦୃଶ ଗୋ ଦାନ କରିବାର ଉଚିତ ନୁହେ । ଯେଉଁ ବ୍ୟକ୍ତି ବିପ୍ରଙ୍କୁ ଅନର୍ଥକ କ୍ଳେଶଯୁକ୍ତ କରନ୍ତି, ତାହାଙ୍କର ଲୋକସମୂହ ନିଷ୍ଫଳ ଓ ନିର୍ବୀର୍ଯ୍ୟ ହୁଏ । ୭ । ସମସ୍ତ ଲୋକେ ବଳଯୁକ୍ତା, ଶୀଳସମ୍ପନ୍ନା, ବୟଃସମ୍ପନ୍ନା, ସୁଗନ୍ଧବତୀ, ଗୋବୃନ୍ଦଙ୍କୁ ପ୍ରଶଂସା କରନ୍ତି । ଗଙ୍ଗା ଯେଉଁପରି ସମସ୍ତ ନଦୀ ମଧ୍ୟରେ ଶ୍ରେଷ୍ଠା, ତଦ୍‌ବତ୍ କପିଳାଧେନୁ ଗୋକୁଳ ମଧ୍ୟରେ ବରିଷ୍ଠା । ୮ ।

ଯୁଧିଷ୍ଠିର କହିଲେ, ହେ ମହାପ୍ରାଜ୍ଞ ! ପିତାମହ ! ବହୁଳା ପ୍ରଦାନ ସମାନ ହେଲେ ସୁଦ୍ଧା ସାଧୁଗଣ କେଉଁ କାରଣରେ କପିଳା ପ୍ରଦାନକୁ ପ୍ରଶସ୍ତ ବୋଲି କହନ୍ତି ? ଆମ୍ଭେ ଏହାର ବିଶେଷ ବୃତ୍ତାନ୍ତ ଶ୍ରବଣ କରିବାକୁ ଇଚ୍ଛୁକ ଅଛୁ; ଆପଣ ମଧ୍ୟ ଉକ୍ତ ବିଷୟ କହିବାକୁ ସମର୍ଥ ଅଟନ୍ତି । ୯ । ଭୀଷ୍ମ କହିଲେ, ହେ ତାତ ! ଆମ୍ଭେ ବୃଦ୍ଧମାନଙ୍କର ଯେଉଁ ପୁରାତନ କଥା ଶ୍ରବଣ କରିଅଛୁଁ ଏବଂ ରୋହିଣୀଗଣ ଯେଉଁ ପ୍ରକାର ସୃଷ୍ଟ ହୋଇଅଛନ୍ତି, ତାହା ସବୁ ଅଶେଷ ରୂପରେ କହୁଅଛୁଁ । ୧୦ ।

ପୂର୍ବକାଳରେ ସ୍ୱୟମ୍ଭୂ ଦକ୍ଷଙ୍କୁ "ପ୍ରଜା ସର୍ଜନ କର" ଏହିପରି ଆଦେଶ ଦେଲେ । ସେ ପ୍ରଥମରେ ପ୍ରଜାଗଣଙ୍କ ହିତକାମନା ହେତୁରୁ ବୃତ୍ତି ସୃଷ୍ଟି କଲେ । ୧୧ । ଦେବଗଣ ଯେଉଁପରି ଅମୃତକୁ ଆଶ୍ରୟ କରି ବର୍ତ୍ତିଅଛନ୍ତି, ହେ ବିଭୋ ! ପ୍ରଜାଗଣ ତଦ୍‌ବତ୍ ବୃତ୍ତିକି ଅବଲମ୍ବନ କରି

ବର୍ତ୍ତି ଅଛନ୍ତି । ୧୨ । ଚର ଅର୍ଥାତ୍ ଜଙ୍ଗମ ନରଗଣ ସର୍ବଦା ଅଚର ଭୂତଗଣ ଅପେକ୍ଷା ଉତ୍କୃଷ୍ଟ, ବ୍ରାହ୍ମଣଗଣ ନରଗଣଙ୍କ ମଧ୍ୟରେ ଶ୍ରେଷ୍ଠ; କାରଣ ବ୍ରାହ୍ମଣଗଣଙ୍କ ହେତୁରୁ ଯଜ୍ଞ ପ୍ରତିଷ୍ଠିତ । ୧୩ । ଯଜ୍ଞସମୂହଦ୍ୱାରା ସୋମରସ ପ୍ରାପ୍ତ ହୁଏ । କିନ୍ତୁ ସେହି ଯଜ୍ଞ ଗୋଗଣଙ୍କ ହେତୁରୁ ପ୍ରତିଷ୍ଠିତ । ଯଜ୍ଞଦ୍ୱାରା ଦେବଗଣ ପ୍ରମୋଦିତ ହୁଅନ୍ତି, ଅତଏବ ପ୍ରଥମତଃ ବୃତ୍ତି, ପଶ୍ଚାଶେଷରେ ପ୍ରଜାଗଣଙ୍କର ଉତ୍ପତ୍ତି ହୁଏ । ୧୪ । ଜୀବଗଣ ଜନ୍ମଗ୍ରହଣ କଲା ମାତ୍ରେ ଜୀବିକା ନିମିତ୍ତ କ୍ରନ୍ଦନ କରନ୍ତି । ପ୍ରଜାପତି ପିତୃମାତୃସଦୃଶ ତୃଷିତ ପ୍ରଜାଗଣଙ୍କୁ ବୃତ୍ତିଦାନ କରି ଅନୁଗ୍ରହ କରିଥିଲେ । ୧୫ । ଭଗବାନ୍ ପ୍ରଜାପତି ଏହିପରି ଆପଣାର ପ୍ରଜା ସୃଷ୍ଟି ନିମିତ୍ତ ମନେ ମନେ ଆଲୋଚନା କରି ତେତେବେଳେ ସେହିମାନଙ୍କୁ ଅମୃତପାନ କରାଇ-ଥିଲେ । ୧୬ । "ପ୍ରଜାଗଣ ତୃପ୍ତ ହେଉନ୍ତୁ" ଏହି ବିବେଚନାରେ ସୁରଭି ଗନ୍ଧକୁ ଉଦ୍‌ଗୀରଣ କରି ସେହିମାନଙ୍କ ନିକଟକୁ ଗମନ ପୂର୍ବକ ତଦୀୟ ଉଦ୍‌ଗାରଜାତ ମୁଖୋଦ୍ଭବା ଦୁହିତା ସୁରଭିଙ୍କୁ ଦେଖିଲେ । ୧୭ । ସେହି ସୁରଭି ପ୍ରଜାଗଣଙ୍କ ବୃତ୍ତିବିଧାୟିନୀ ସୁବର୍ଣ୍ଣବର୍ଣ୍ଣା କପିଳା ସର୍ବଲୋକ-ମାତୃକା ସୌରଭେୟୀ ଧେନୁବୃନ୍ଦ ସର୍ଜ୍ଜନ କରିଥିଲେ । ୧୮ ।

ନଦୀସମୂହର ତରଙ୍ଗରୁ ଯେଉଁପରି ଫେନ ଜନ୍ମେ, ସେହିପରି ସର୍ବତୋଭାବରେ କ୍ଷୀରକ୍ଷରଣକାରିଣୀ ସେହି ଅମୃତବର୍ଣ୍ଣା ସୌରଭେୟୀ-ସମୂହର ଅମୃତରୁ ଫେନ ଉତ୍ପନ୍ନ ହେଲା । ୧୯ । ଭୂତଳରେ ଅବସ୍ଥିତ ଭବଙ୍କ ମସ୍ତକରେ ସେହି ବତ୍ସମୁଖବିଭ୍ରଷ୍ଟ ଫେନ ପତିତ ହେଲା । ସର୍ବ-ଶକ୍ତିମାନ୍ ଶିବ କ୍ରୁଦ୍ଧ ହୋଇ ଲଲାଟପ୍ରଭବ ନେତ୍ରଦ୍ୱାରା ରୋହିଣୀଙ୍କୁ ଦଗ୍ଧ କଲାପରି ନିରୀକ୍ଷଣ କଲେ । ହେ ନରନାଥ ! ଦିବାକର ଯେଉଁପରି ମେଘ-ମାଳାକୁ ନାନାବର୍ଣ୍ଣ କରନ୍ତି, ସେହିପରି କପିଳାଗଣ ରୌଦ୍ରତେଜରେ ବିବିଧ ବର୍ଣ୍ଣ ହେଲେ । ଯେଉଁସବୁ କପିଳାଗଣ ସେହି ରୌଦ୍ର ତେଜରୁ ଅପକ୍ରାନ୍ତ ହୋଇ ସୋମମଣ୍ଡଳରେ ଆଶ୍ରିତ ହୋଇଥିଲେ, ସେହିମାନେ ଯେଉଁପରି ସୁବର୍ଣ୍ଣବିଶିଷ୍ଟ ହୋଇ ଉତ୍ପନ୍ନ ହୋଇଥିଲେ, ସେହିପରି ରହିଲେ । ଅନ୍ୟ ବର୍ଣ୍ଣ ପ୍ରାପ୍ତ ହେଲେ ନାହିଁ ।

ଅନନ୍ତର ଶିବ କ୍ରୁଦ୍ଧ ହୋଇଥିବାରୁ ପ୍ରଜାପତି ତାହାଙ୍କୁ କହିଲେ (୨୩), ତୁମ୍ଭେ ଅମୃତଦ୍ୱାରା ଅଭିଷିକ୍ତ ହୋଇଅଛ, ଗୋଗଣଙ୍କର ଫେନ ପ୍ରଭୃତି କିଛି ଉଚ୍ଛିଷ୍ଟ ହୁଏ ନାହିଁ । ସୁଧାକର ଯେଉଁପରି ଅମୃତ ଗ୍ରହଣ କରି ପୁନଶ୍ଚ ସମୁଦିତ ହୁଅନ୍ତି, ରୋହିଣୀଗଣ ତଦ୍‌ବତ୍ ଅମୃତସମ୍ଭବ କ୍ଷୀର କ୍ଷରଣ

କରନ୍ତି । ଅନିଳ, ଅନଳ, ସୁବର୍ଣ୍ଣ ଓ ସମୁଦ୍ର ଏମାନେ ଦୂଷିତ ହୁଅନ୍ତି ନାହିଁ । ୨୫ । ଅମୃତ ପୀତ ହେଲେ ଅନ୍ୟ ଅମୃତଦ୍ୱାରା ଦୂଷିତ ହୁଏ ନାହିଁ ଓ ବତ୍ସପୀତା ବତ୍ସଳାଧେନୁ ମଧ୍ୟ ଦୂଷିତ ହୁଏ ନାହିଁ । ଏମାନେ ଘୃତ ଓ ଦୁଗ୍ଧ ଦ୍ୱାରା ଲୋକମାନଙ୍କୁ ଭରଣ କରିବେ । ୨୬ ।

ସମସ୍ତେ ଏମାନଙ୍କର ଅମୃତମୟ ଶୁଭ ଐଶ୍ୱର୍ଯ୍ୟକୁ ଇଚ୍ଛା କରନ୍ତି । ପ୍ରଜାପତି ତାହାଙ୍କୁ କେତେଗୁଡ଼ିଏ ଗାଭୀଙ୍କ ସହିତ ଗୋଟିଏ ବୃଷଭ ପ୍ରଦାନ କଲେ । ୨୭ । ହେ ଭାରତ ! ସେ ବୃଷଦାନ ଦ୍ୱାରା ରୁଦ୍ରମନ ପ୍ରସନ୍ନ କଲେ, ମହାଦେବ ପ୍ରୀତିଯୁକ୍ତ ହୋଇ ସେହି ବୃଷଭକୁ ଆପଣାର ଧ୍ୱଜ ଓ ବାହନ କରିଥିଲେ, ସେହି କାରଣରୁ ସେ ବୃଷଧ୍ୱଜ ନାମରେ ବିଖ୍ୟାତ ହୋଇ-ଅଛନ୍ତି । ୨୮ । ତଦନନ୍ତର ଦେବଗଣ ସେତେବେଳେ ମହାଦେବଙ୍କୁ ପଶୁପତି କଲେ, ଈଶ୍ୱର ଗୋଗଣଙ୍କ ମଧ୍ୟରେ ରହିବାରୁ ବୃଷଭାଙ୍କ ନାମରେ ପରିକୀର୍ତ୍ତିତ ହେଲେ । ୨୯ । ଏହିପରି ଅବ୍ୟଗ୍ରବର୍ଣ୍ଣା ମହାତେଜଃଶାଳିନୀ ସମସ୍ତ କପିଳାଗଣଙ୍କର ପ୍ରଦାନ ପ୍ରଥମକଳ୍ପ ରୂପେ କୀର୍ତ୍ତିତ ହୋଇଅଛି ।୩୦। ଲୋକଜ୍ୟେଷ୍ଠା ଲୋକବୃତ୍ତି ନିମିତ୍ତ ପ୍ରବୃତ୍ତ, ରୁଦ୍ରୋପେତ, ସୋମବିଷ୍ୟନ୍ଦଭୂତା, ସୌମ୍ୟା, ପୁଣ୍ୟାକାମଦା ଏବଂ ପ୍ରାଣଦା ଗୋଗଣଙ୍କୁ ଦାନ କଲେ ମନୁଷ୍ୟ ସର୍ବକାମଦ ହୁଅନ୍ତି । ୩୧ ।

ଚିରମଙ୍ଗଳାଭିଳାଷୀ ମାନବ ଗୋଗଣଙ୍କର ଏହି ଉତ୍ତମ ଉତ୍ପତ୍ତି ବିଷୟକୁ ପାଠ କରି କଳିକଳୁଷରୁ ବିମୁକ୍ତ ହୁଅନ୍ତି ଏବଂ ସର୍ବଦା ଶ୍ରୀ, ପୁତ୍ର, ଧନ ଓ ପଶୁଲାଭ କରନ୍ତି । ୩୨ । ହେ ରାଜନ୍ ! ଦାତା ଗୋପ୍ରଦାନ କରି ହବ୍ୟକବ୍ୟ ତର୍ପଣ, ଶାନ୍ତିକର୍ମ, ଯାନ, ବସନ, ବାଳକ ଓ ବୃଦ୍ଧଙ୍କର ତୁଷ୍ଟି-ଏହି ସମସ୍ତ ଫଳ ସର୍ବଦା ପ୍ରାପ୍ତ ହୁଅନ୍ତି । ୩୩ । ବୈଶମ୍ପାୟନ କହିଲେ, ଆଜମୀଢ଼ ପାର୍ଥ ମହାରାଜ ଯୁଧିଷ୍ଠିର ଭ୍ରାତୃଗଣଙ୍କ ସହିତ ପିତାମହଙ୍କ ବାକ୍ୟ ଶ୍ରବଣ କରି ବ୍ରାହ୍ମଣଶ୍ରେଷ୍ଠଗଣଙ୍କୁ ସୁବର୍ଣ୍ଣବର୍ଣ୍ଣ ବୃଷ ଓ ଗୋସମୂହ ଦାନ କଲେ । ୩୪ । ସେ ଉତ୍କୃଷ୍ଟ ଲୋକସମୂହକୁ ଜୟ କରିବା ନିମିତ୍ତ ଓ କୀର୍ତ୍ତି ନିମିତ୍ତ ଯଜ୍ଞସମୂହକୁ ଉଦ୍ଦେଶ କରି ଦକ୍ଷିଣାର୍ଥରେ ଦ୍ୱିଜଗଣଙ୍କୁ ଶତ ସହସ୍ର ଗୋଦାନ କରିଥିଲେ । ୩୫ ।

---

# ଅଧ୍ୟାୟ—୭୮

ଭୀଷ୍ମ କହିଲେ—ଏହି ଅବସର ମଧ୍ୟରେ ଇକ୍ଷ୍ୱାକୁ ବଂଶଜ ବକ୍ତୃବର ରାଜା ସୌଦାସ, ସର୍ବଲୋକଚର ସିଦ୍ଧ ବେଦନିଧି ନିତ୍ୟପୁରୋହିତ ଋଷି-ସତ୍ତମ ବଶିଷ୍ଠଙ୍କୁ ଅଭିବାଦନପୂର୍ବକ ପ୍ରଶ୍ନ କରିବାକୁ ଉଦ୍ୟତ ହେଲେ । ୨ । ସୌଦାସ କହିଲେ, ହେ ଅନଘ ! ଭଗବନ୍ ! ତ୍ରୈଲୋକ୍ୟ ମଧ୍ୟରେ ମନୁଷ୍ୟ ସର୍ବଦା ଯାହା କୀର୍ତ୍ତନ କରି ପୁଣ୍ୟସମୂହକୁ ପ୍ରାପ୍ତ ହୁଅନ୍ତି, ଏତାଦୃଶ କେଉଁ ପଦାର୍ଥ ଅଛି ? ୩ ।

ଭୀଷ୍ମ କହିଲେ, ବିଦ୍ୱାନ୍ ବଶିଷ୍ଠ ଶୁଚି ହୋଇ ଗୋଗଣଙ୍କୁ ନମସ୍କାର-ପୂର୍ବକ ତେତେବେଳେ ସେହି ପ୍ରଣତ ନୃପତିଙ୍କୁ ଗୋଗଣଙ୍କର ଉପନିଷତ୍ ବଚନ କହିଲେ । ଗୋସମୂହ ସୁରଭିଗନ୍ଧ ଓ ଗୁଗ୍‌ଗୁଲୁଗନ୍ଧବିଶିଷ୍ଟ, ଗୋଗଣ ସର୍ବଭୂତର ପ୍ରତିଷ୍ଠା ଏବଂ ସମସ୍ତଙ୍କର ମହତ୍ ସ୍ୱସ୍ତ୍ୟୟନ ସ୍ୱରୂପ (୫), ଗୋଗଣ ଭୂତ ଓ ଭବିଷ୍ୟତ, ଗୋସମୂହ ସନାତନୀ ସୃଷ୍ଟିସ୍ୱରୂପ, ଗୋସମୂହ ଲକ୍ଷ୍ମୀର ମୂଳ, ଏବଂ ଗୋଗଣଙ୍କ ବିଷୟରେ ଯାହା ପ୍ରଦତ୍ତ ହୁଏ ତାହା ନଷ୍ଟ ହୁଏ ନାହିଁ । ୬ । ଗୋଗଣ ଦେବତାମାନଙ୍କର ପରମ ହବି ଓ ଅନ୍ନ ସ୍ୱରୂପ, ସ୍ୱାହାକାର, ବଷଟ୍‌କାର ଏହି ଦୁହେଁ ଗୋବୃନ୍ଦଙ୍କଠାରେ ସର୍ବଦା ପ୍ରତିଷ୍ଠିତ । ୭ । ଗୋସମୂହ ଯଜ୍ଞର ଫଳ, ଗୋବୃନ୍ଦଙ୍କଠାରେ ଯଜ୍ଞସମୂହ ପ୍ରତିଷ୍ଠିତ । ଗୋଗଣ ଭୂତ ଓ ଭବିଷ୍ୟତ ସ୍ୱରୂପ, ଗୋବୃନ୍ଦଙ୍କ-ଠାରେ ଯଜ୍ଞସମୂହ ପ୍ରତିଷ୍ଠିତ । ୮ ।

ହେ ମହାଦ୍ୟୁତି ପୁରୁଷପ୍ରବର ! ସର୍ବଦା ସାୟଂକାଳ ଓ ପ୍ରାତଃ-କାଳରେ ହୋମର ସମୟ ସମାଗତ ହେଲେ, ଗୋବୃନ୍ଦ ଋଷିଗଣଙ୍କୁ ହୋମସାଧନ ଘୃତ ପ୍ରଭୃତି ପ୍ରଦାନ କରନ୍ତି । ୯ । ହେ ରାଜନ୍ ! ଯେଉଁ-ମାନେ କୌଣସି ଦୁରୂହ ଦୁଷ୍କୃତ କର୍ମ କରିଥାଆନ୍ତି, ସେମାନେ ଧେନୁ ଦାନ କଲେ ସେହି ସମସ୍ତ ପାପରୁ ଉତ୍ତୀର୍ଣ୍ଣ ହୁଅନ୍ତି, । ୧୦ । ଯାହାଙ୍କର ଦଶଗୋଟି ଗୋ ଥିବେ, ସେ ଗୋଟିଏ ଧେନୁ ଦାନ କରିବେ । ଯାହାଙ୍କର ଶତ ସଂଖ୍ୟକ ଧେନୁ ଥିବେ, ସେ ଦଶଗୋଟି ଧେନୁ ଦାନ କରିବେ । ଯେଉଁ ବ୍ୟକ୍ତି ସହସ୍ର ଗୋ ଧନଶାଳୀ, ସେ ଶତ ଗୋ ପ୍ରଦାନ କରିବେ । କିନ୍ତୁ ସେମାନେ ସମସ୍ତେ ସମାନ ଫଳ ଭୋଗ କରିବେ । ୧୧ । ଶତ ଗୋ-ସମ୍ପନ୍ନ ନର ଯଦି ଆହିତାଗ୍ନି ନ ହୁଅନ୍ତି, ଏବଂ ସହସ୍ର ଗୋସମ୍ପନ୍ନ ପୁରୁଷ

ଯଜ୍ଞ ବିଧି ପୂର୍ବକ ଯଜ୍ଞ ନ କରନ୍ତି, ଏବଂ ଯେଉଁ ବ୍ୟକ୍ତି ସମୃଦ୍ଧିଶାଳୀ ହୋଇ କୃପଣ ହୁଅନ୍ତି, ସେହି ତିନପ୍ରକାର ବ୍ୟକ୍ତି ଅର୍ଘ୍ୟଲାଭର ଯୋଗ୍ୟ ନୁହନ୍ତି । ୧୨ । ଯେଉଁମାନେ କାଂସ୍ୟମୟ ଦୋହନପାତ୍ର ସହିତ ସୁବ୍ରତା ବସ୍ତ୍ର, ଫଶୀତା ସବତ୍ସା କପିଳା ଧେନୁ ପ୍ରଦାନ କରନ୍ତି, ସେମାନେ ଇହ ଓ ପରଲୋକରେ ଜୟଲାଭ କରନ୍ତି । ୧୩ ।

ହେ ଶତ୍ରୁତାପନ ! ଯେଉଁମାନେ ଶ୍ରୋତ୍ରିୟ ବ୍ରାହ୍ମଣଶ୍ରେଷ୍ଠଙ୍କୁ ଯୌବନସମ୍ପନ୍ନ ଇନ୍ଦ୍ରିୟୋପେତ ଶତ ଶତ ଯୂଥପତି ଭୂରିଶୃଙ୍ଗ ଅଲଂକୃତ ଗଦବନ୍ଦ୍ର ବୃଷଭ ପ୍ରଦାନ କରନ୍ତି, ସେମାନେ ବାରମ୍ବାର ଜନ୍ମଗ୍ରହଣ କରି ଐଶ୍ୱର୍ଯ୍ୟଶାଳୀ ହୁଅନ୍ତି । ୧୫ । ଗୋବୃନ୍ଦଙ୍କୁ କୀର୍ତ୍ତନ ନ କରି ଶଯ୍ୟାଶାୟୀ ହେବ ନାହିଁ । ସେମାନଙ୍କୁ ସ୍ମରଣ ନ କରି ଗମନ କରିବାର ଉଚିତ୍ ନୁହେଁ । ସାୟଂ କାଳ ଓ ପ୍ରାତଃକାଳରେ ଗୋସମୂହଙ୍କୁ ନମସ୍କାର କରିବ । ତାହା ହେଲେ ପୁଷ୍ଟି ଲାଭ ହେବ । ୧୬ । ଗୋଗଣଙ୍କର ମୂତ୍ର ଓ ପୁରୀଷ ସମ୍ବନ୍ଧରେ କଦାପି ଉଦ୍‌ବେଗ ହେବାର ଉଚିତ୍ ନୁହେଁ । କଦାପି ସେମାନଙ୍କ ମାଂସ ଭକ୍ଷଣ କରିବ ନାହିଁ । ତାହା ହେଲେ ପୁଷ୍ଟି ଲାଭ ହେବ । ୧୭ । ଗୋସମୂହଙ୍କୁ ନିତ୍ୟ କୀର୍ତ୍ତନ କରିବ, କଦାପି ସେମାନଙ୍କୁ ଅବମାନନା କରିବ ନାହିଁ, ନର ଅନିଷ୍ଟ ସ୍ୱପ୍ନ ଦର୍ଶନ କଲେ ଗୋ କୀର୍ତ୍ତନ କରିବେ । ୧୮ ।

ସର୍ବଦା ଗୋମୟ ମିଶ୍ରିତ ଜଳଦ୍ୱାରା ସ୍ନାନ କରିବାର ବିଧେୟ । ଗୋ କରୀଷ ମଧ୍ୟରେ ଉପବେଶନ କରିବ, ଗୋ କରୀଷରେ ନିପତିତ ଶ୍ଳେଷ୍ମ, ମୂତ୍ର, ପୁରୀଷ ପରିତ୍ୟାଗ କରିବ ଓ ସେମାନଙ୍କୁ କଦାପି ପ୍ରତିଘାତ କରିବ ନାହିଁ । ୧୯ । ପ୍ରୋକ୍ଷଣଦ୍ୱାରା ଗୋ ଚର୍ମ ଆର୍ଦ୍ର ହେଲେ ତହିଁରେ ଉପବେଶନ ପୂର୍ବକ ଭୋଜନ କରିବ । ବରୁଣ ଦେବ ପାଳିତା ପଶ୍ଚିମ ଦିଗକୁ ନିରୀକ୍ଷଣ କରିବ । ଯେଉଁ ବ୍ୟକ୍ତି ବାଗ୍‌ଯତ ହୋଇ ଭୂତଳରେ ଉପବେଶନ କରନ୍ତି, ସେ ସର୍ବଦା ଗୋଗଣଙ୍କ ସର୍ପିଦ୍ୱାରା ପୁଷ୍ଟି ଲାଭ କରନ୍ତି । ୨୦ । ଘୃତଦ୍ୱାରା ଅଗ୍ନିରେ ହୋମ କରିବ, ଘୃତଦ୍ୱାରା ସ୍ୱସ୍ତିବାଚନ କରାଇବ, ଘୃତଦାନ କରିବ ଏବଂ ଘୃତପ୍ରାଶନ କରିବ, ତାହା ହେଲେ ଗୋଗଣଙ୍କ ପୁଷ୍ଟିଲାଭ କରି ପାରିବ । ୨୧ । ଯେ ଗୋମତୀ ବିଦ୍ୟାଦ୍ୱାରା ମନ୍ତ୍ର ପୂର୍ବକ ସର୍ବରତ୍ନମୟୀ ତିଳ ଧେନୁ ପ୍ରଦାନ କରନ୍ତି, ତାହାଙ୍କୁ କୃତାକୃତ ବିଷୟରେ ଶୋକ କରିବାକୁ ହୁଏ ନାହିଁ । ୨୨ ।

ନଦୀବୃନ୍ଦ ଯେଉଁପରି ସାଗର ସମୀପରେ ଉପସ୍ଥିତ ହୁଅନ୍ତି, ହେମ-ଶୃଙ୍ଗୀ କ୍ଷୀରକ୍ଷରଣକାରିଣୀ ସୁରଭି ସୌରଭେୟୀ ଗୋବୃନ୍ଦ ଆମ୍ଭ

ନିକଟରେ ଉପସ୍ଥିତ ହେଉନ୍ତୁ । ୨୩ । ଆମ୍ଭେ ନିତ୍ୟ ଗୋଦର୍ଶନ କରିବୁଁ । ଗୋସମୂହ ଆମ୍ଭଙ୍କୁ ସର୍ବଦା ଅବଲୋକନ କରନ୍ତୁ । ଗୋଗଣ ଆମ୍ଭମାନଙ୍କର ହିତ ଓ ଆମ୍ଭେ ମଧ୍ୟ ଗୋଗଣଙ୍କ ହିତ; ଅତଏବ ଗୋଗଣ ଯେଉଁ ସ୍ଥାନରେ ରହିବେ, ଆମ୍ଭେ ମଧ୍ୟ ସେହି ସ୍ଥାନରେ ରହିବୁଁ । ୨୪ । ନର ରଜନୀ ଦିବସରେ ସମ ବା ବିଷମ ସ୍ଥଳରେ ମହାଭୟ ଉପସ୍ଥିତ ହେଲେ ଏହିପରି କୀର୍ତ୍ତନ କରି ଭୟରୁ ମୁକ୍ତ ହୁଅନ୍ତି । ୨୫ ।

---

## ଅଧ୍ୟାୟ—୭୯

ବଶିଷ୍ଠ କହିଲେ—ହେ ପରଂତପ ! ପୂର୍ବସୃଷ୍ଟ ଗୋଗଣ "ସର୍ବାପେକ୍ଷା ଶ୍ରେଷ୍ଠତ୍ୱ ଲାଭ କରିବୁ" ଏହି ପ୍ରକାର କାମନା କରି ଶତ ସହସ୍ର ବର୍ଷକାଳ ଅତି ଦୁଷ୍କର ତପସ୍ୟା କରିଥିଲେ । "ଇହଲୋକରେ ଆମ୍ଭେମାନେ ସମସ୍ତ ଦକ୍ଷିଣାପେକ୍ଷା ଉତ୍କୃଷ୍ଟ ହେବୁ ଏବଂ ଆମ୍ଭେମାନେ କୌଣସି ଦୋଷରେ ଲିପ୍ତ ହେବୁ ନାହିଁ । ୨ । ଲୋକମାନେ ଆମ୍ଭ ପୁରୀଷଯୁକ୍ତ ଜଳରେ ସ୍ନାନ କଲେ ସର୍ବଦା ପବିତ୍ର ହେବେ । ଦେବତା ଓ ମନୁଷ୍ୟଗଣ ଆମ୍ଭମାନଙ୍କ ଗୋମୟ ଦ୍ୱାରା ପବିତ୍ରତା ବିଧାନ କରିବେ (୩) ଓ ସ୍ଥାବର ଜଙ୍ଗମ ସମସ୍ତ ଭୂତଗଣ ଯେଉଁମାନେ ଆମ୍ଭମାନଙ୍କୁ ପ୍ରଦାନ କରିବେ, ହେ ମାନଦ ! ସେମାନେ ଆମ୍ଭମାନଙ୍କ ଲୋକସମୂହକୁ ଗମନ କରିପାରିବେ" । ୪ । ଗୋଗଣ ଏହି ପ୍ରକାର କାମନା କରି ତପସ୍ୟା କଲେ । ସେମାନଙ୍କ ତପସ୍ୟା ଅବସାନ ହେବାରୁ ସର୍ବଶକ୍ତିମାନ ସ୍ୱୟଂ ବ୍ରହ୍ମା ସେମାନଙ୍କୁ "ଏହିପରି ହେଉ,—ତୁମ୍ଭେମାନେ ସକଳ ଲୋକଙ୍କୁ ଉଦ୍ଧାର କର"—ଏହି ବର ପ୍ରଦାନ କରିଥିଲେ । ୫ ।

ଭୂତ ଓ ଭବିଷ୍ୟତର ମାତା ସେହି ସୌରଭେୟୀବୃନ୍ଦ ସିଦ୍ଧକାମ ହୋଇ ଉତ୍ଥିତ ହେଲେ । ସେହି ଗୋବୃନ୍ଦଙ୍କୁ ପ୍ରାତଃକାଳରେ ନମସ୍କାର କରିବାର ଉଚିତ; ତାହା ହେଲେ ପୁଷ୍ଟି ଲାଭ ହୁଏ । ହେ ମହାରାଜ ! ଗୋଗଣ ତପସ୍ୟାର ଅବସାନରେ ଲୋକ ପରାୟଣ ହୋଇଥିଲେ, ଅତଏବ ମହାଭାଗା ଗୋବୃନ୍ଦ ପରମ ପବିତ୍ର ଅଟନ୍ତି ବୋଲି ଋଷିଗଣ କହନ୍ତି (୭) ଏବଂ ସେମାନେ ଏହି କାରଣରୁ ସର୍ବଭୂତର ମସ୍ତକରେ ଅବସ୍ଥାନ କରିଅଛନ୍ତି ।

ମନୁଷ୍ୟ ମାନବବତ୍ସା, ସୁବ୍ରତା, ବସ୍ତ୍ରସଂଗତା, ପୟସ୍ୱିନୀ କପିଳା ଧେନୁ ଦାନ କଲେ ବ୍ରହ୍ମଲୋକରେ ପୂଜିତ ହୁଅନ୍ତି । ୮ । ଲୋହିତବର୍ଣ୍ଣା, ତୁଲ୍ୟବତ୍ସା, ସୁବ୍ରତା, ବସ୍ତ୍ରାଚ୍ଛନ୍ନା, ପୟସ୍ୱିନୀ ଧେନୁ ଦାନ କଲେ, ସୂର୍ଯ୍ୟ-ଲୋକରେ ଅର୍ଚ୍ଚିତ ହୁଅନ୍ତି । ୯ । ସମାନବତ୍ସା, ସୁବଳା, ସୁବ୍ରତା, ବସ୍ତ୍ର-ବେଷ୍ଟିତା, ପୟସ୍ୱିନୀ ଧେନୁ ଦାନ କଲେ ମାନବ ସୋମଲୋକରେ ପୂଜିତ ହୁଅନ୍ତି । ୧୦ । ବସ୍ତ୍ରାବୃତା ସୁବ୍ରତବତ୍ସା ସମାନବତ୍ସା ଶ୍ୱେତବର୍ଣ୍ଣା ପୟସ୍ୱିନୀ ଧେନୁ ଦାନ କଲେ ମନୁଷ୍ୟ ଇନ୍ଦ୍ରଲୋକରେ ସମ୍ମାନପ୍ରାପ୍ତ ହୁଅନ୍ତି । ୧୧ । ସମାନବତ୍ସା, ସୁବ୍ରତା, ବସ୍ତ୍ରାବରଣା, କୃଷ୍ଣବର୍ଣ୍ଣା, ପୟସ୍ୱିନୀ ଧେନୁ ଦାନ କଲେ ମନୁଷ୍ୟ ଅଗ୍ନିଲୋକରେ ପୂଜିତ ହୁଅନ୍ତି । ୧୨ ।

ସମାନବତ୍ସା ବସନାବୃତା ଧୂମ୍ରବର୍ଣ୍ଣା ଦୁଗ୍ଧବତ୍ସା ଧେନୁ ଦାନ କଲେ ମନୁଷ୍ୟ ଯମଲୋକରେ ଅର୍ଚ୍ଚଣୀୟ ହୁଅନ୍ତି । ୧୩ । ଜଳସମ୍ବନ୍ଧୀୟ ଫେନର ସମାନ ବର୍ଣ୍ଣ ବତ୍ସବତ୍ସା କାଂସ୍ୟଦୋହନା ବସ୍ତ୍ରାବୃତା ଧେନୁ ଦାନ କଲେ ନର ବରୁଣ ଲୋକରେ ପୂଜିତ ହୁଅନ୍ତି । ୧୪ । ବାତରେଣୁ ସମାନ-ବର୍ଣ୍ଣା ସବତ୍ସା କାଂସ୍ୟ ଦୋହନା ବସ୍ତ୍ରାଚ୍ଛନ୍ନା ଧେନୁ ପ୍ରଦାନ କଲେ, ମନୁଷ୍ୟ ବାୟୁଲୋକରେ ଅଭିନନ୍ଦିତ ହୁଅନ୍ତି । ୧୫ । ହିରଣ୍ୟବର୍ଣ୍ଣା ପିଙ୍ଗାକ୍ଷୀ ସବତ୍ସା କାଂସ୍ୟଦୋହନା ବସ୍ତ୍ରାଚ୍ଛାଦନା ଧେନୁ ଦାନ କଲେ ମନୁଷ୍ୟ କୌବେର ଲୋକରେ ସୁଖ ଭୋଗ କରନ୍ତି । ୧୬ । ପଲାଳ ଧୂମ୍ରବର୍ଣ୍ଣା କାଂସ୍ୟଦୋହନା ଓ ବସ୍ତ୍ରାଚ୍ଛନ୍ନା ଧେନୁ ପ୍ରଦାନ କଲେ ମନୁଷ୍ୟ ପିତୃଲୋକରେ ପୂଜିତ ହୁଅନ୍ତି । ୧୭ । ଲମ୍ବମାନ ଗଳକମ୍ବଳଶାଳୀନୀ ସମଲଂକୃତା ସବତ୍ସା ପୀବତ୍ସା ଧେନୁ ପ୍ରଦାନ କଲେ ମନୁଷ୍ୟ ବୈଶ୍ୱଦେବ ନାମକ ସଂବାଧାଶୂନ୍ୟ ଉତ୍କୃଷ୍ଟ ସ୍ଥାନ ପ୍ରାପ୍ତ ହୁଅନ୍ତି । ୧୮ । ସମାନବତ୍ସା ପୟସ୍ୱିନୀ ସୁବ୍ରତା ବସ୍ତ୍ରାବୃତା ଗୌରୀ ଧେନୁ ଦାନ କଲେ ମନୁଷ୍ୟ ବସୁବୃନ୍ଦଙ୍କ ଲୋକ ପ୍ରାପ୍ତ ହୁଅନ୍ତି । ୧୯ । ପାଣ୍ଡୁ କମ୍ବଳବର୍ଣ୍ଣାଭା ସବତ୍ସା କାଂସ୍ୟଦୋହନା ବସନାଚ୍ଛନ୍ନା ଧେନୁ ଦାନ କଲେ, ମନୁଷ୍ୟ ସାଧ୍ୟଗଣଙ୍କ ଲୋକ ପ୍ରାପ୍ତ ହୁଅନ୍ତି । ୨୦ ।

ହେ ରାଜନ୍ ! ଯେ ସର୍ବରତ୍ନାଲଂକୃତ ଦୃଢ଼ପୃଷ୍ଠ ବୃଷଭ ଦାନ କରନ୍ତି, ସେ ମରୁଦ୍‌ଗଣଙ୍କ ଲୋକକୁ ଗମନ କରନ୍ତି । ୨୧ । ଯୌବନସମ୍ପନ୍ନ ମାଳାଙ୍ଗ ସର୍ବରତ୍ନସମନ୍ୱିତ ବୃଷଭ ପ୍ରଦାନ କଲେ, ମନୁଷ୍ୟ ଗନ୍ଧର୍ବ ଓ ଅପ୍‌ସରାଗଣଙ୍କ ଲୋକସମୂହକୁ ପ୍ରାପ୍ତ ହୁଅନ୍ତି । ୨୨ । ଗଳକମ୍ବଳ ସମନ୍ୱିତ କଣ୍ଠ ସର୍ବରତ୍ନଦ୍ୱାରା ଅଳଂକୃତ ଅନଡ୍ୱାନ୍ ପ୍ରଦାନ କଲେ ମନୁଷ୍ୟ ଶୋକ-ଶୂନ୍ୟ ହୋଇ ପ୍ରଜାପତିଙ୍କ ଲୋକସମୂହକୁ ପ୍ରାପ୍ତ ହୁଅନ୍ତି । ୨୩ । ହେ

ସ୍ୱଜନ୍ ! ମନୁଷ୍ୟ ଗୋପ୍ରଦାନ ଦ୍ୱାରା ମେଘବୃନ୍ଦ ଭେଦ କରି ଅର୍କବର୍ଣ୍ଣ ବିମାନଦ୍ୱାରା ସ୍ୱର୍ଗଲୋକରେ ବିରାଜିତ ହୁଅନ୍ତି । ୨୪ ।

ସୁଚାରୁବେଶା ସୁଶ୍ରୋଣୀ ସହସ୍ର ସୁର ସୁନ୍ଦରୀଗଣ ସେହି ଗୋପ୍ରଦାନ-ନିରତ ନରବରଙ୍କ ସହିତ କ୍ରୀଡ଼ା କରନ୍ତି । ୨୫ । ସେ ନିଦ୍ରିତ ହୋଇଥିଲେ ସେହି ହରିଣାକ୍ଷୀଗଣଙ୍କ ବୀଣାବଲ୍ଲକୀ ନୂପୁର ସିଞ୍ଜିତ ଏବଂ ହାସ୍ୟଦ୍ୱାରା ପ୍ରତିବୋଧିତ ହୁଅନ୍ତି । ୨୬ । ଧେନୁ ଶରୀରରେ ଯାବତ୍ ପରିମାଣ ରୋମ ଥାଏ, ଗୋପ୍ରଦାତା ତାବତ୍ ବର୍ଷ ସୁରପୁରରେ ପୂଜିତ ହୁଅନ୍ତି । ପରିଶେଷରେ ସେ ସ୍ୱର୍ଗଚ୍ୟୁତ ହେଲେ ନରଲୋକରେ ଉତ୍କୃଷ୍ଟ ବଂଶରେ ଜନ୍ମ ପରିଗ୍ରହ କରନ୍ତି । ୨୭ ।

---

## ଅଧ୍ୟାୟ—୮୦

ବଶିଷ୍ଠ କହିଲେ—"ଘୃତକ୍ଷୀରପ୍ରଦା ଗୋବୃନ୍ଦ ଘୃତଯୋନି ଏବଂ ସେମାନଙ୍କଠାରୁ ଘୃତ ଉତ୍ପନ୍ନ ହୁଏ ବୋଲି ଘୃତୋଦ୍ଭବ ଗୋବୃନ୍ଦ ଘୃତନଦୀ ଓ ଘୃତର ଆବର୍ତ୍ତ ସ୍ୱରୂପ ଅଟନ୍ତି । ଅତଏବ ଆମ୍ଭ ଗୃହରେ ସର୍ବଦା ସେହି ଗୋଧନସମୂହ ଅବସ୍ଥାନ କରନ୍ତୁ । ଘୃତ ଆମ୍ଭର ହୃଦୟ, ଆମ୍ଭ ନାଭିରେ ଘୃତ ସର୍ବଦା ପ୍ରତିଷ୍ଠିତ, ଘୃତ ଆମ୍ଭ ସର୍ବଶରୀରରେ ଓ ମନରେ ଅବସ୍ଥିତି କରିଅଛି । ୨ । ଗୋଗଣ ଆମ୍ଭ ଅଗ୍ରଭାଗରେ ପୃଷ୍ଠ-ଦେଶରେ ସର୍ବଦିଗରେ ରହିଅଛନ୍ତି, ଆମ୍ଭେ ଗୋଗଣ ମଧ୍ୟରେ ବାସ କରିଅଛୁଁ" । ୩ । ଯେଉଁ ପୁରୁଷ ପ୍ରାତଃ କାଳରେ ଓ ସାୟଂ ସମୟରେ ଆଚମନପୂର୍ବକ ନିତ୍ୟ ଏହା ଜପ କରିବେ, ସେ ଦିବସକୃତ ପାପରୁ ମୁକ୍ତ ହେବେ । ୪ ।

ଯେଉଁ ସ୍ଥାନରେ ସୁବର୍ଣ୍ଣମୟ ପ୍ରାସାଦ ସମୂହ ବିରାଜିତ ହୋଇଅଛି, ଯେଉଁ ସ୍ଥାନରେ ମନ୍ଦାକିନୀ ବସୁଧାର ରୂପେ ରହିଅଛନ୍ତି ଏବଂ ଯେଉଁ ସ୍ଥାନରେ ଗନ୍ଧର୍ବ ଓ ଅପ୍ସରେଗଣ ଅବସ୍ଥିତି କରିଅଛନ୍ତି, ଗୋ ସହସ୍ର-ଦାତା ପୁରୁଷ ସେହି ସ୍ଥାନକୁ ଗମନ କରନ୍ତି । ୫ । ଯେଉଁ ସ୍ଥାନରେ ନବନୀତ ରୂପ ପଙ୍କ, କ୍ଷୀର ସ୍ୱରୂପ ଜଳ, ଦଧିରୂପ ଶୈବାଳ ସଙ୍କୁଳ ନଦୀସମୂହ ପ୍ରବାହିତ ହେଉଅଛି, ଗୋ ସହସ୍ର ଦାତା ମାନବ ସେହି ସ୍ଥାନକୁ ଗମନ କରନ୍ତି । ୬ ।

ଯେ ବିଧି ଅନୁସାରେ ଶତ ସହସ୍ର ଗୋଦାନ କରନ୍ତି, ସେ ଇହଲୋକରେ ପରମ ସମୃଦ୍ଧି ପ୍ରାପ୍ତ ହୋଇ ସ୍ୱର୍ଗଲୋକରେ ପୂଜିତ ହୁଅନ୍ତି । ୭ ।

ପୁଣି ଗୋଦାନ କଲେ, ସେହି ନର ମାତା ପିତା ଉଭୟ କୁଳର ଦଶ ପୁରୁଷ ପିତାମହଗଣଙ୍କୁ ସୁକୃତଲୋକକୁ ପ୍ରେରଣ କରି କୁଳ ପବିତ୍ର କରନ୍ତି । ୮ । ଧେନୁର ପ୍ରମାଣ ଅନୁସାରେ ସମପ୍ରମାଣ ତିଳଧେନୁ ପ୍ରଦାନ କଲେ ଏବଂ ଜଳଧେନୁ ଦାନ କଲେ, ମାନବ ଯମଲୋକରେ କୌଣସି ଯାତନା ଭୋଗ କରନ୍ତି ନାହିଁ । ୯ । ପରମ ପବିତ୍ର ଜଗତ୍ ପ୍ରତିଷ୍ଠା ଦେବଗଣଙ୍କ ମାତା ଅପ୍ରମେୟା ଗୋଗଣଙ୍କୁ ସ୍ପର୍ଶ କରିବ ଏବଂ ପ୍ରଦକ୍ଷିଣ କରିବ ଓ ସମସ୍ତ ବିବେଚନା କରି ଉପଯୁକ୍ତ ପାତ୍ରରେ ପ୍ରଦାନ କରିବ । ୧୦ ।

କାଂସ୍ୟଦୋହା ବସନୋତ୍ତରୀୟା ବିଶାଳଶୃଙ୍ଗୀ ସବତ୍ସା କପିଳାଧେନୁ ପ୍ରଦାନ କରି ମନୁଷ୍ୟ ଦୁର୍ବିଗାହ୍ୟ ଯମସଭାରେ ଭୀତିଶୂନ୍ୟ ହୋଇ ପ୍ରବେଶ କରନ୍ତି । ୧୧ । 'ସୁରୂପା ବହୁରୂପା ବିଶ୍ୱରୂପା ମାତୃସ୍ୱରୂପା ଗୋଗଣ ନିତ୍ୟ ଆମ୍ଭ ନିକଟରେ ଉପସ୍ଥିତ ହେଉନ୍ତୁ'—ମାନବ ସର୍ବଦା ଏହା କୀର୍ତ୍ତନ କରିବେ ।୧୨। ଗୋଦାନ ଅପେକ୍ଷା ଅନ୍ୟ କୌଣସି ଦାନ ପୁଣ୍ୟତର ହୋଇନାହିଁ । ଏହା ଅପେକ୍ଷା ଅନ୍ୟ କୌଣସି ଅନ୍ୟତର ଫଳ ନାହିଁ । ଇହଲୋକରେ କୌଣସି ପ୍ରାଣୀ ଏହାଙ୍କ ଅପେକ୍ଷା ଉତ୍କୃଷ୍ଟ ହୋଇ ନାହାନ୍ତି ଓ କଦାପି ଉତ୍କୃଷ୍ଟ ହେବାକୁ ଯୋଗ୍ୟ ହୋଇ ପାରିବେ ନାହିଁ । ୧୩ । ଗୋଗଣ ତ୍ୱକ୍‌ଲୋମ, ଶୃଙ୍ଗ, ପୁଚ୍ଛଲୋମ, କ୍ଷୀର ଓ ମେଦଦ୍ୱାରା ମିଳିତ ହୋଇ ଯଜ୍ଞ ନିର୍ବାହ କରନ୍ତି । ଅତଏବ ତାହାଙ୍କ ଅପେକ୍ଷା କେଉଁ ବ୍ୟକ୍ତି ଅଧିକ ଅଛି ? ୧୪ । ଏହି ସ୍ଥାବର ଜଙ୍ଗମମୟ ସମସ୍ତ ବିଶ୍ୱ ଯାହାଦ୍ୱାରା ବ୍ୟାପ୍ତ ହୋଇ ରହିଅଛି, ଭୂତ ଭବିଷ୍ୟତର ଜନନୀ ସେହି ଧେନୁଙ୍କୁ ନତମସ୍ତକ ହୋଇ ବନ୍ଦନା କରୁଅଛୁଁ । ୧୫ । ଆମ୍ଭେ ତୁମ୍ଭ ନିକଟରେ ଏହିପରି ଗୋବୃନ୍ଦର ଅତି ଉତ୍ତମ ପ୍ରଶଂସାବାଦ ସମୂହର ଏକଦେଶ ମାତ୍ର କୀର୍ତ୍ତନ କଲୁଁ । ଇହଲୋକରେ ଗୋଦାନ ଅପେକ୍ଷା ଅନ୍ୟ କିଛି ଶ୍ରେଷ୍ଠତର ଦାନ ନାହିଁ ଏବଂ ଗୋ ବ୍ୟତିରେକେ ଅନ୍ୟ କେହି ପରମ ଆଶ୍ରୟ ନାହାନ୍ତି । ୧୬ ।

ଭୀଷ୍ମ କହିଲେ, ତଦନନ୍ତର ମହାନୁଭବ ସୌଦାସ ନୃପତି ବଶିଷ୍ଠ ଋଷିଙ୍କର ଏହି ପ୍ରବର ବଚନକୁ ବରସ୍ୱରୂପ ବିବେଚନା କରି ସଂଯତଚିତ୍ତ ଦ୍ୱିଜଗଣଙ୍କୁ ବହୁଳ ଗୋଧନ ଦାନ କଲେ ଏବଂ ଲୋକାନ୍ତରରେ ଗୋଲୋକସମୂହକୁ ପ୍ରାପ୍ତ ହେଲେ । ୧୭ ।

---

# ଅଧ୍ୟାୟ—୮୧

ଯୁଧିଷ୍ଠିର କହିଲେ—ହେ ପିତାମହ ! ଇହଲୋକରେ ପୂର୍ବୋକ୍ତ ବିଷୟରେ ଅତିରିକ୍ତ, ଯାହା ପବିତ୍ରସମୂହର ପବିତ୍ର ଓ ପରମ ପାବନ, ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ, ହେ ଭରତଶ୍ରେଷ୍ଠ ! ମହାର୍ଥ ପବିତ୍ର ଗୋଗଣ ମାନବଗଣଙ୍କୁ ଉଦ୍ଧାର କରନ୍ତି, ସେମାନେ ଘୃତ ଓ ଦୁଗ୍ଧଦ୍ୱାରା ସମସ୍ତ ପ୍ରଜାବୃନ୍ଦଙ୍କୁ ଧାରଣ କରିଅଛନ୍ତି । ଗୋ ଅପେକ୍ଷା ଅନ୍ୟ କିଛି ପବିତ୍ରତମ ପ୍ରାଣୀ ନାହାନ୍ତି ; ଏହା ତ୍ରିଭୁବନ ମଧ୍ୟରେ ପୁଣ୍ୟ ପବିତ୍ର ଓ ଅତି ଉତ୍କୃଷ୍ଟ ଅଟନ୍ତି । ୩ ।

ଗୋଗଣ ଦେବଗଣଙ୍କ ଉପରିଭାଗରେ ବାସ କରନ୍ତି, ମହର୍ଷିଗଣ ଗୋଦାନଦ୍ୱାରା କୁଳ ଉଦ୍ଧାର କରି ସ୍ୱର୍ଗଗାମୀ ହୁଅନ୍ତି । ୪ । ମାନ୍ଧାତା, ଯୌବନାଶ୍ୱ, ଯଯାତି ଓ ନହୁଷ ନୃପତି ସର୍ବଦା ସହସ୍ରଶତ ସମିତ ଗୋଦାନ କରି ଦେବଗଣଙ୍କର ଏକାନ୍ତ ଦୁର୍ଲ୍ଲଭ ପରମସ୍ଥାନକୁ ଗମନ କରିଅଛନ୍ତି । ହେ ଅନଘ ! ଆମ୍ଭେ ଏହି ବିଷୟରେ ତୁମ୍ଭଙ୍କୁ ପୌରାଣିକୀ କଥା କହିବୁଁ । ୭ ।

ପ୍ରଯତଚିତ୍ତ ଶୌଚସମ୍ପନ୍ନ କୃତାହ୍ନିକ ଧୀମାନ୍ ଶୁକଦେବ ଋଷି-ଗଣଙ୍କର ବରେଣ୍ୟ ପରାପରଲୋକଦର୍ଶୀ କୃଷ୍ଣ ଦ୍ୱୈପାୟନଙ୍କୁ ଅଭିବାଦନ ପୂର୍ବକ ପ୍ରଶ୍ନ କରିଥିଲେ, 'ହେ ବିଭୋ ! ଆପଣ ସମସ୍ତ ଯଜ୍ଞ ମଧ୍ୟରେ କେଉଁ ଯଜ୍ଞକୁ ଶ୍ରେଷ୍ଠ ବୋଲି ଲକ୍ଷ୍ୟ କରନ୍ତି ? ମହର୍ଷିଗଣ କେଉଁ କର୍ମ କଲେ ପରମସ୍ଥାନ ପ୍ରାପ୍ତ ହୁଅନ୍ତି ? ଦେବତାଗଣ କେଉଁ ପବିତ୍ର ବସ୍ତୁଦ୍ୱାରା ସ୍ୱର୍ଗ-ସୁଖ ଭୋଗ କରନ୍ତି ? ୯ । ଯଜ୍ଞର ଯଜ୍ଞତ୍ୱ କି ? ଯଜ୍ଞ କେଉଁ ସ୍ଥାନରେ ପ୍ରତିଷ୍ଠିତ ? ଦେବଗଣଙ୍କର କେଉଁ ଦ୍ରବ୍ୟ ଉତ୍ତମ ? ଇହଲୋକରେ କିଏ ପରମ ସତ୍ତ୍ୱ ? ଏବଂ ଯାହା ପବିତ୍ର ସମୂହ ମଧ୍ୟରେ ପବିତ୍ର, ହେ ପିତଃ ! ତାହା ଆମ୍ଭଙ୍କୁ କହିବା ହେଉନ୍ତୁ । ୧୦ ।

ହେ ଭରତଶ୍ରେଷ୍ଠ ! ପରମଧର୍ମଜ୍ଞ ବ୍ୟାସଦେବ ଏହି କଥା ଶ୍ରବଣ କରି ପୁତ୍ରଙ୍କୁ ଯଥାର୍ଥରୂପେ ସମସ୍ତ ବିଷୟ କହିଥିଲେ । ୧୧ । ବ୍ୟାସଦେବ କହିଲେ, ଗୋସମୂହ ଭୂତଗଣଙ୍କର ପ୍ରତିଷ୍ଠା, ଗୋସମୂହ ପରମ ଆଶ୍ରୟ, ଗୋଗଣ ପୁଣ୍ୟ ଓ ପବିତ୍ର ଏବଂ ଗୋଧନ ପରମ ପାବନ । ୧୨ । ଆମ୍ଭେ-

ମାନେ ଏହିପରି ଶୁଣିଅଛୁଁ ଯେ, ପୂର୍ବେ ଗୋବୃନ୍ଦଙ୍କର ଶୃଙ୍ଗ ନ ଥିଲା, ସେମାନେ ପଶ୍ଚାତ୍ ଶୃଙ୍ଗନିମିତ୍ତ ଅବ୍ୟୟ ପ୍ରଭୁ ପ୍ରଜାପତିଙ୍କୁ ଉପାସନା କରିଥିଲେ । ୧୩ ।

ତଦନନ୍ତର ସର୍ବଶକ୍ତିମାନ୍ ବ୍ରହ୍ମା ଗୋଗଣଙ୍କୁ ପ୍ରାୟୋପବିଷ୍ଟ ହେବା ନିରୀକ୍ଷଣ କରି ସେମାନଙ୍କର ପ୍ରତ୍ୟେକଙ୍କୁ ଅଭିଳଷିତ ବର ପ୍ରଦାନ କଲେ । ହେ ପୁତ୍ର ! ସେହିମାନଙ୍କ ମଧ୍ୟରେ ଯାହାଙ୍କର ଯେଉଁ ପ୍ରକାର ମନୋଗତ ଥିଲା, ତାହାଙ୍କର ତଦ୍‌ବତ୍ ଶୃଙ୍ଗ ଜନ୍ମିଲା । ସେମାନେ ନାନାବର୍ଣ୍ଣ ଶୃଙ୍ଗ-ବିଶିଷ୍ଟ ହୋଇ ଉତ୍ତମ ରୂପେ ଶୋଭା ପାଇଲେ । ବ୍ରହ୍ମା ସେମାନଙ୍କୁ ବର ଦାନ କଲେ । ସେହି କଲ୍ୟାଣଦାୟିନୀଗଣ ହବ୍ୟକବ୍ୟ ପ୍ରଦାନ କଲେ ଏବଂ ପୁଣ୍ୟା ପବିତ୍ରା ସୁଭଗା ଦିବ୍ୟାବୟବ ଲକ୍ଷଣସମ୍ପନ୍ନା ହେଲେ । ୧୬ । ଗୋଗଣ ଦିବ୍ୟ ସୁମହତ୍ ତେଜଃ ସ୍ୱରୂପ । ଯେଉଁ ସମସ୍ତ ବିଗତମତ୍ସର ସାଧୁ ମାନବ-ଗଣ ସେମାନଙ୍କୁ ସମ୍ପ୍ରଦାନ କରନ୍ତି, ସେମାନେ ସୁକୃତା ଏବଂ ସର୍ବଦାନ-ପ୍ରଦାତା । ହେ ଅନଘ ! ସେହିମାନେ ପବିତ୍ର ଗୋଲୋକ ସମୂହକୁ ପ୍ରାପ୍ତ ହୁଅନ୍ତି ।

ହେ ଦ୍ୱିଜସତ୍ତମ ! ଯେଉଁ ସ୍ଥାନରେ ବୃକ୍ଷସମୂହ ମଧୁର ଫଳ ପ୍ରସବ କରନ୍ତି ଓ ଦିବ୍ୟ ପୁଷ୍ପ ଓ ଫଳସମ୍ପନ୍ନ ହୁଅନ୍ତି, ପୁଷ୍ପସମୂହ ଦିବ୍ୟ ଓ ସୁଗନ୍ଧ-ଯୁକ୍ତ ହୋଇଥାଆନ୍ତି, ଯେଉଁ ସ୍ଥାନରେ ସମସ୍ତ ଭୂମି ମଣିମୟୀ, ସୁବର୍ଣ୍ଣ ବାଲୁକାସମନ୍ୱିତା, ସମସ୍ତ ଋତୁରେ ସୁଖସ୍ପର୍ଶା, ପଙ୍କହୀନା ରଜୋବିହୀନା ଓ ଶୁଭଦାୟିନୀ ହୋଇ ରହିଅଛି, ସେଠାରେ ଜଳାଶୟ ସମୂହ ତରୁଣାରୁଣ ସଦୃଶ ରକ୍ତୋତ୍ପଳ ବନ ଓ ହିରଣ୍ମୟ ମଣିଖଣ୍ଡଦ୍ୱାରା ସୁଶୋଭିତ, ମହାର୍ହ ମଣି ସଦୃଶ ପତ୍ର କାଞ୍ଚନପ୍ରଭ କେଶର ନୀଳୋତ୍ପଳ ,ବିମିଶ୍ର ବିବିଧ ପଙ୍କଜ-ବିରାଜିତ ସରୋବର ସମୂହରେ ସମଲଂକୃତ, କରବୀରବନ ସହସ୍ର ଆବର୍ତ୍ତ ସମ୍ବୃତ ସନ୍ତାନକ କାନନ ଓ ବିକସିତ ବୃକ୍ଷରାଜିଦ୍ୱାରା ବିରାଜିତ । ନିର୍ମଳ ମୁକ୍ତାଜାଲ ଓ ମହାପ୍ରଭ ମଣିନିଚୟ ଏବଂ ସୁବର୍ଣ୍ଣସମୂହ ଦ୍ୱାରା ଅତ୍ୟନ୍ତ ନିମ୍ନଗା ସମୂହର ତଟଭୂମିଚୟ ଅଳଙ୍କୃତ ହୋଇଅଛି । କୌଣସି କୌଣସି ବୃକ୍ଷ ସୁବର୍ଣ୍ଣମୟ ଏବଂ କୌଣସି କୌଣସି ତରୁ ହୁତାଶନସମ ପ୍ରଭାସମ୍ପନ୍ନ; ତାଦୃଶ ସର୍ବରତ୍ନମୟ ବିଚିତ୍ର ତରୁନିକର ଦ୍ୱାରା ସମାଚ୍ଛନ୍ନ ସେହି ସ୍ଥାନରେ ସୁବର୍ଣ୍ଣମୟ ଶୈଳସମୂହ ମଣିରତ୍ନ ଶିଳୋଚୟ ସର୍ବରତ୍ନମୟ ସମୁନ୍ନତ ମନୋହର ଶୃଙ୍ଗନିକର ଦ୍ୱାରା ଶୋଭିତ ହୋଇଅଛି ।

ହେ ଭରତପ୍ରବର ଯୁଧିଷ୍ଠିର ! ସେହି ସ୍ଥାନରେ ନିତ୍ୟ ଫଳପୁଷ୍ପୋପ-ଶୋଭିତ ପାଦପଗଣ ବିହଙ୍ଗକୁଳଦ୍ୱାରା ସମାକୁଳ; ପୁଣ୍ୟକର୍ମା ମାନବଗଣ

ସର୍ବକାମ ସମୃଦ୍ଧ୍ୟର୍ଥ ଶୋକବହ୍ନିନ ଓ ମନ୍ୟୁହୀନ ହୋଇ ନିଯୁତ ଦିବ୍ୟ ଗନ୍ଧପୁଷ୍ପ ଓ ଦିବ୍ୟରସ ଫଳସମୂହଦ୍ୱାରା ସେଠାରେ ଆମୋଦ ପ୍ରାପ୍ତ ହୁଅନ୍ତି । ୨୮ । ହେ ଭାରତ ! ପୁଣ୍ୟକର୍ମା ଯଶସ୍ୱୀ ମାନବଗଣ ବିଚିତ୍ର ରମଣୀୟ ବିମାନସମୂହରେ ବିହାର କରି ପ୍ରୀତିଯୁକ୍ତ ହୁଅନ୍ତି । ୨୯ । ହେ ରାଜନ୍ ଯୁଧିଷ୍ଠିର ! ସୁନ୍ଦର ଅପ୍‌ସରାଗଣ ସେହିମାନଙ୍କ ସମୀପରେ କ୍ରୀଡ଼ା କରନ୍ତି । ଗୋ ଦାନ କଲେ ମାନବଗଣ ଏହି ଲୋକସମୂହ ପ୍ରାପ୍ତ ହୁଅନ୍ତି । ୩୦ ।

ସୂର୍ଯ୍ୟ ଓ ବଳବାନ୍ ବଳୀ ମାରୁତ ଯେଉଁମାନଙ୍କ ଅଧିପତି, ଐଶ୍ୱର୍ଯ୍ୟରେ ବରୁଣ ଯେଉଁମାନଙ୍କର ରାଜା, ସତ୍ୟ ପ୍ରଭୃତି ଯୁଗ ଧାରଣ କରିବାରୁ ଯେଉଁମାନଙ୍କର ଯୁଗନ୍ଧର ନାମ ହୋଇଅଛି, ସେହି ସୁରୂପା, ବହୁରୂପା, ବିଶ୍ୱରୂପା ମାତୃଗଣଙ୍କର ନାମମାତ୍ର ଯତବ୍ରତ ହୋଇ ନିତ୍ୟ ଜପ କରିବ । ଏହି ତପସ୍ୟାକୁ ପ୍ରଜାପତି କହିଅଛନ୍ତି । ୩୨ ।

ଯେ ଗୋସମୂହର ସେବା କରନ୍ତି ଏବଂ ସର୍ବପ୍ରକାରରେ ସେମାନଙ୍କର ଅନୁଗତ ହୁଅନ୍ତି, ତାହାଙ୍କୁ ଗୋସମୂହ ଅତିଶୟ ତୁଷ୍ଟ ହୋଇ ଅତି ଦୁର୍ଲଭ ବର ସମୂହ ପ୍ରଦାନ କରନ୍ତି । ୩୩ । ମନୁଷ୍ୟ କଦାପି ମନରେ ଗୋଗଣଙ୍କ ଠାରେ ଦ୍ରୋହ ଆଚରଣ କରିବେ ନାହିଁ । ସର୍ବଦା ସେମାନଙ୍କର ସୁଖ-ପ୍ରଦାୟକ ହୋଇ ଅର୍ଚ୍ଚନା କରିବେ ଏବଂ ନିତ୍ୟ ସେମାନଙ୍କୁ ନମସ୍କାର ଦ୍ୱାରା ପୂଜା କରିବେ । ୩୪ । ଦାନ୍ତ ଓ ପ୍ରୀତମନା ମାନବ ନିତ୍ୟ ଗୋସମୂହର ସମୃଦ୍ଧି ଭୋଗ କରନ୍ତି । ତିନଦିନ ଉଷ୍ଣ ଗୋମୂତ୍ର ପାନ କରିବେ ଏବଂ ତିନ-ଦିନ ଉଷ୍ଣ ଗୋଦୁଗ୍ଧ ପାନ କରିବେ । ୩୫। ପରିଶେଷରେ ଉଷ୍ଣ ଗୋଦୁଗ୍ଧ ପାନ କରି ତିନଦିନ ଉଷ୍ଣ ଘୃତ ପାନ କରିବେ, ତିନଦିନ ଉଷ୍ଣ ଘୃତ ପାନ କରି ତିନଦିନ ବାୟୁଭକ୍ଷ ହେବେ । ୩୬ । ଯେଉଁ ପବିତ୍ର ବସ୍ତୁଦ୍ୱାରା ଦେବ-ଗଣ ଉତ୍ତମ ଲୋକ ଭୋଗ କରନ୍ତି, ଯେଉଁ ଦ୍ରବ୍ୟ ସମସ୍ତ ପବିତ୍ର ବସ୍ତୁ ମଧ୍ୟରେ ପବିତ୍ର, ସେହି ଘୃତକୁ ମସ୍ତକରେ ବହନ କରିବେ ।୩୭। ଘୃତଦ୍ୱାରା ଅଗ୍ନିରେ ହୋମ କରିବେ, ଘୃତଦ୍ୱାରା ସ୍ୱସ୍ତିବାଚନ କରିବେ, ଘୃତ ପ୍ରାଶନ କରିବେ, ଘୃତ ଦାନ କରିବେ, ତାହା ହେଲେ ଗୋବୃନ୍ଦର ପୁଷ୍ଟି ଭୋଗ କରାହେବ । ୩୮ ।

ଗୋଗଣ କର୍ତ୍ତୃକ ଗୋମୟ ସହିତ ପରିତ୍ୟକ୍ତ ଯବ ସମୂହକୁ ଯାବକ କହନ୍ତି । ଯେ ଏକମାସ ପର୍ଯ୍ୟନ୍ତ ସେହି ଯାବକ ଭକ୍ଷଣ କରନ୍ତି, ସେ ତାହା ଦ୍ୱାରା ବ୍ରହ୍ମହତ୍ୟା ସଦୃଶ ପାପରୁ ମୁକ୍ତ ହୁଅନ୍ତି । ୩୯ । ଦୈତ୍ୟଗଣଙ୍କ ପରାଭବ ହେତୁରୁ ଦେବତାମାନେ ଏହାକୁ ପବିତ୍ର କରିଅଛନ୍ତି ବୋଲି ସେମାନେ

ଦେବଗଣ ପ୍ରାପ୍ତ ହୋଇଅଛନ୍ତି, ସମ୍ୟକ୍ ରୂପେ ସିଦ୍ଧ ଓ ମହାବଳ ସମ୍ପନ୍ନ ହୋଇଅଛନ୍ତି । ୪୦ । ଗୋବୃନ୍ଦ ପରମ ପବିତ୍ର, ମହତ୍ ପାବନ ଓ ପୁଣ୍ୟ-ପ୍ରଦ; ମନୁଷ୍ୟ ଦ୍ୱିଜମାନଙ୍କୁ ସେହି ଗୋଦାନ କଲେ, ସ୍ୱର୍ଗରେ ସୁଖଭୋଗୀ ହୁଅନ୍ତି । ୪୧ ।

ମନୁଷ୍ୟ ଶୁଚି ହୋଇ ଗୋଗଣଙ୍କ ମଧ୍ୟରେ ମନେ ମନେ ଗୋମଣ୍ଡୀ-ଋକ୍‌ଦ୍ୱାରା ପ୍ରକାଶିତ ଅର୍ଥ ଜପ କରିବେ । ମନୁଷ୍ୟ ପବିତ୍ର ଜଳଦ୍ୱାରା ଆଚମନ ପୂର୍ବକ ମନ୍ତ୍ର ଜପ କଲେ, ଶୁଚି ଓ ନିର୍ମଳ ହୁଅନ୍ତି । ୪୨ । ଅଗ୍ନି ମଧ୍ୟରେ, ଗୋଗଣଙ୍କ ମଧ୍ୟରେ ଓ ବ୍ରାହ୍ମଣ ସମାଜରେ ବିଦ୍ୟା-ବେଦ-ବ୍ରତ-ସ୍ନାନପ୍ରତ୍ୟୟକର୍ମଶୀଳ ବ୍ରାହ୍ମଣଗଣ ( ୪୩ ) ଶିଷ୍ୟମାନଙ୍କୁ ଯଜ୍ଞସମ୍ମିତ ଗୋମଣ୍ଡୀ ଋକ୍ ଅଧ୍ୟାପନା କରାଇବେ । ତ୍ରିରାତ୍ର ଉପୋଷିତ ହେଲେ ଗୋମଣ୍ଡୀ ଋକ୍ ପ୍ରଭାବରେ ବରଲାଭ ହୁଏ । ୪୪ । ପୁତ୍ରକାମ ମନୁଷ୍ୟ ପୁତ୍ର ଲାଭ କରେ, ଧନଲିପ୍ସୁ ନର ଧନ ଲାଭ କରେ, ପତିକାମା କାମିନୀ ପତିଲାଭ କରେ, ମନୁଷ୍ୟ ଏହାଦ୍ୱାରା ସର୍ବକାମ ପ୍ରାପ୍ତ ହୁଅନ୍ତି । ଏହିରୂପେ ଏହି ମହାଭାଗ ଯଜ୍ଞବୃତ ସର୍ବକାମଦ ଗୋଗଣସେବିତ ହେଲେ, ସନ୍ତୁଷ୍ଟ ହୋଇ ବର ପ୍ରଦାନ କରନ୍ତି, ସଂଶୟ ନାହିଁ । ଏହି ଗୋଗଣଙ୍କୁ ଶ୍ରେଷ୍ଠୀ ବୋଲି ଜାଣ, ଏମାନଙ୍କ ଅପେକ୍ଷା ଅନ୍ୟ କିଛି ପଦାର୍ଥ ଶ୍ରେଷ୍ଠ ହୋଇନାହିଁ । ୪୬ ।

ଭୀଷ୍ମ କହିଲେ, ମହାନୁଭାବ ପିତା ଏହିପରି କହିବାରୁ ମହାତେଜା ଶୁକଦେବ ସର୍ବଦା ଗୋଗଣଙ୍କୁ ପୂଜା କରିଥିଲେ । ଅତଏବ ତୁମ୍ଭେ ମଧ୍ୟ ସେମାନଙ୍କୁ ପୂଜା କର । ୪୭ ।

---

## ଅଧ୍ୟାୟ—୮୨

ଯୁଧିଷ୍ଠିର କହିଲେ—ହେ ପିତାମହ ! ଗୋସମୂହର ପୁରୀଷ ଶ୍ରୀଯୁକ୍ତ ବୋଲି ଆମ୍ଭେ ଶୁଣିଅଛୁଁ, ଅତଏବ ଏହି ବିଷୟରେ ଆମ୍ଭର ସଂଶୟ ହୋଇଅଛି ; ସୁତରାଂ ତଦ୍‌ବିଷୟ ଶୁଣିବାକୁ ଇଚ୍ଛା କରୁଅଛୁଁ । ୧ ।

ଭୀଷ୍ମ କହିଲେ, ହେ ଭରତସତ୍ତମ ମହାରାଜ ! ପ୍ରାଚୀନ ପଣ୍ଡିତ-ମାନେ ଏହି ବିଷୟରେ ଇହଲୋକରେ ଗୋବୃନ୍ଦଙ୍କ ସହିତ ଲକ୍ଷ୍ମୀଙ୍କ ସମ୍ବାଦ-ସମ୍ବଳିତ ଏହିପରି ପୁରାତନ ଇତିହାସ କହନ୍ତି । ୨ ।

ଲକ୍ଷ୍ମୀଦେବୀ ମନୋହର କଳେବର ଧାରଣପୂର୍ବକ ଇହଲୋକରେ ଗୋଗଣ ମଧ୍ୟରେ ପ୍ରବେଶ କଲେ । ଗୋବୃନ୍ଦ ତାହାଙ୍କ ସୌନ୍ଦର୍ଯ୍ୟ ସମ୍ପତ୍ତି ସନ୍ଦର୍ଶନ କରି ବିସ୍ମିତ ହେଲେ । ୩ । ଗୋଗଣ କହିଲେ, ହେ ଦେବି ! ତୁମ୍ଭେ କିଏ ? କେଉଁ ସ୍ଥାନରୁ ଆଗମନ କରିଅଛ ? ଭୂଲୋକ ମଧ୍ୟରେ ତୁମ୍ଭ ରୂପର ଉପମା ନାହିଁ । ହେ ମହାଭାଗେ ! ଆମ୍ଭେମାନେ ତୁମ୍ଭର ରୂପ-ସଂପତ୍ତିଦ୍ୱାରା ବିସ୍ମୟାବିଷ୍ଟ ହୋଇଅଛୁଁ । ୪ । ତୁମ୍ଭେ କିଏ ଏବଂ କେଉଁଠାକୁ ଗମନ କରିବ ? ଆମ୍ଭେମାନେ ଏହା ଜାଣିବାକୁ ଇଚ୍ଛା କରୁଅଛୁଁ । ଅତଏବ ହେ ବରବର୍ଣ୍ଣିନି ! ତୁମ୍ଭେ ଆମ୍ଭମାନଙ୍କ ନିକଟରେ ଏହି ସମସ୍ତ ବିଷୟ ଯଥାର୍ଥରୂପେ ପ୍ରକାଶ କର । ୫ ।

ଲକ୍ଷ୍ମୀଦେବୀ କହିଲେ, ତୁମ୍ଭମାନଙ୍କର ମଙ୍ଗଳ ହେଉ । ଆମ୍ଭେ ଲୋକକାନ୍ତା ଶ୍ରୀ ନାମରେ ବିଖ୍ୟାତ; ଦୈତ୍ୟଗଣ ମତ୍କର୍ତ୍ତୃକ ପରିତ୍ୟକ୍ତ ହୋଇ ବହୁକାଳ ବିନଷ୍ଟ ହୋଇଅଛନ୍ତି (୬) ଓ ଦେବଗଣ ଆମ୍ଭର ସାନ୍ନିଧ୍ୟବଶରୁ ସର୍ବଦା ଆମୋଦିତ ହୋଇ ରହିଅଛନ୍ତି । ଇନ୍ଦ୍ର, ସୂର୍ଯ୍ୟ, ସୋମ, ବିଷ୍ଣୁ, ଜଳ, ଅଗ୍ନି ପ୍ରଭୃତି ଦେବଗଣ ଓ ଋଷିଗଣ ମଦ୍‌ଯୁକ୍ତ ହୋଇ ସିଦ୍ଧ ହୋଇଅଛନ୍ତି । ହେ ଗୋବୃନ୍ଦ ! ଆମ୍ଭେ ଯହିଁରେ ଆବିଷ୍ଟ ନ ହେଉଁ ତାହା ସର୍ବତୋଭାବରେ ବିନଷ୍ଟ ହୁଏ । ୮ । ଧର୍ମ ଅର୍ଥ ଓ କାମ ମଦଯୁକ୍ତ ହେଲେ ସୁଖାନ୍ୱିତ ହୋଇ ରହନ୍ତି । ହେ ସୁଖପ୍ରଦ ଗୋଗଣ ! ଆମ୍ଭଙ୍କୁ ଏତାଦୃଶ ପ୍ରଭାବାନ୍ୱିତା ବୋଲି ଜାଣିବ । ୯ । ଆମ୍ଭେ ସର୍ବଦା ତୁମ୍ଭ ସମସ୍ତଙ୍କ ନିକଟରେ ବସତି କରିବାକୁ ଇଚ୍ଛା କରୁଁ । ଆମ୍ଭେ ତୁମ୍ଭମାନଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରାର୍ଥନା କରୁଅଛୁଁ, ତୁମ୍ଭେମାନେ ଶ୍ରୀଯୁକ୍ତ ହୁଅ । ୧୦ ।

ଗୋଗଣ କହିଲେ, ତୁମ୍ଭର ମଙ୍ଗଳ ହେଉ । ତୁମ୍ଭେ ଅସ୍ଥିର ଏବଂ ଚପଳା, ଅତଏବ ବହୁ ବ୍ୟକ୍ତିଙ୍କ ସହିତ ସମାନ ଭାବପନ୍ନା; ସୁତରାଂ ଆମ୍ଭେ-ମାନେ ତୁମ୍ଭଙ୍କୁ ଇଚ୍ଛା କରୁନାହୁଁ । ତୁମ୍ଭେ ଯେଉଁ ସ୍ଥାନରେ ଅନୁରକ୍ତ ଥାଅ, ସେହି ସ୍ଥାନକୁ ଗମନ କର ।୧୧। ଆମ୍ଭେମାନେ ସମସ୍ତେ ବପୁଷ୍ମତୀ, ତୁମ୍ଭେ ଆମ୍ଭମାନଙ୍କର କେଉଁ ଇଷ୍ଟ ସିଦ୍ଧି କରିବ ? ଅତଏବ ଯେଉଁ ସ୍ଥାନକୁ ଇଚ୍ଛା ହୁଏ, ସେହି ସ୍ଥାନକୁ ଗମନ କର । ଆମ୍ଭେମାନେ କୃତକାର୍ଯ୍ୟ ହୋଇଅଛୁଁ । ୧୨ । ଲକ୍ଷ୍ମୀ କହିଲେ, ହେ ଗୋଗଣ ! ତୁମ୍ଭେମାନେ ଯେ ଆମ୍ଭଙ୍କୁ ଅଭିନନ୍ଦନ କରୁନାହଁ, ଏହା କି ତୁମ୍ଭମାନଙ୍କର ଉପଯୁକ୍ତ ? ଆମ୍ଭେ ଅନ୍ୟର ଦୁର୍ଲ୍ଲଭ ସତୀ ସାଧ୍ୱୀ, ଅତଏବ ତୁମ୍ଭେମାନେ ଆମ୍ଭଙ୍କୁ କେଉଁ କାରଣରେ ଗ୍ରହଣ କରୁନାହଁ ? ୧୩ ।

ହେ ସୁବ୍ରତାଗଣ ! ଇହଲୋକରେ ଏହି ପ୍ରକାର ଯେଉଁ ଲୋକବାଦ ପ୍ରଚଳିତ ଅଛି, ତାହା ସତ୍ୟ, ସ୍ୱୟଂ ସମାଗତ ହେଲେ ପରାଭବ ହୁଏ, ଏହା ନିଶ୍ଚୟ । ୧୪ । ମାନବଗଣ, ଦେବ, ଦାନବ, ଗନ୍ଧର୍ବ, ପିଶାଚ, ଉରଗ ଓ ରାକ୍ଷସବୃନ୍ଦ ଅତି ଉଗ୍ର ତପସ୍ୟା କରି ଆମ୍ଭଙ୍କୁ ସେବା କରନ୍ତି । ୧୫ । ହେ ଗୋବୃନ୍ଦ ! ତୁମ୍ଭମାନଙ୍କର ଏତାଦୃଶ ପ୍ରଭାବ ଅଛି ସତ୍ୟ, କିନ୍ତୁ ଆମ୍ଭଙ୍କୁ ପ୍ରତିଗ୍ରହ କର । ହେ ସୁରୁଦର୍ଶନାଗଣ ! ସଚରାଚର ତ୍ରୈଲୋକ୍ୟ ମଧ୍ୟରେ ଆମ୍ଭେ କାହାଦ୍ୱାରା ଅବମାନନୀୟା ହେଉନାହୁଁ । ୧୬ । ଗୋବୃନ୍ଦ କହିଲେ, ହେ ଦେବି ! ଆମ୍ଭେମାନେ ତୁମ୍ଭଙ୍କୁ ଅବମାନନା ଓ ପରାଭବ କରୁନାହୁଁ, ତୁମ୍ଭେ ଅସ୍ଥିରା ଓ ଚଳଚିତ୍ତା, ତନ୍ନିମିତ୍ତ ତୁମ୍ଭଙ୍କୁ ତ୍ୟାଗ କରୁଅଛୁଁ । ବହୁ ବାକ୍ୟଦ୍ୱାରା କେଉଁ ପ୍ରୟୋଜନ ଅଛି ? ଯେଉଁ ସ୍ଥାନକୁ ଇଚ୍ଛା ହୁଏ, ତୁମ୍ଭେ ସେହି ସ୍ଥାନକୁ ଗମନ କର । ହେ ଅନଘେ ! ଆମ୍ଭେମାନେ ସମସ୍ତେ ବପୁଷ୍ମତୀ, ତୁମ୍ଭଦ୍ୱାରା ଆମ୍ଭମାନଙ୍କର କେଉଁ ଲାଭ ହେବ ?

ଲକ୍ଷ୍ମୀଦେବୀ କହିଲେ, ହେ ମାନଦାଗଣ ! ତୁମ୍ଭେମାନେ ଆମ୍ଭଙ୍କୁ ପ୍ରତ୍ୟାଖ୍ୟାନ କଲେ ଆମ୍ଭେ ସମସ୍ତ ଲୋକଙ୍କ ନିକଟରେ ଅବଜ୍ଞାତା ହେବୁ, ଅତଏବ ତୁମ୍ଭେମାନେ ଆମ୍ଭଠାରେ ପ୍ରସନ୍ନା ହୁଅ । ୧୯ । ତୁମ୍ଭେମାନେ ସମସ୍ତଙ୍କର ଶରଣ୍ୟା, ମହାଭାଗା; ଆମ୍ଭେ ନିତ୍ୟ ଭଜମାନା, ଅନିନ୍ଦିତା ଓ ତୁମ୍ଭମାନଙ୍କର ଶରଣାଗତା; ଅତଏବ ତୁମ୍ଭେମାନେ ଆମ୍ଭଙ୍କୁ ପରିତ୍ରାଣ କର । ୨୦ । ହେ ମଙ୍ଗଳଦାୟିନୀଗଣ ! ଆମ୍ଭେ ତୁମ୍ଭମାନଙ୍କ ନିକଟରେ ସମ୍ମାନ କାମନା କରୁଅଛୁଁ, ଆମ୍ଭେ ତୁମ୍ଭମାନଙ୍କର ଅଧୋବର୍ତ୍ତୀ ଏବଂ ଅତି କୁତ୍ସିତ ଅଙ୍ଗରେ ବାସ କରିବାକୁ ଇଚ୍ଛା କରୁଅଛୁଁ । ୨୧ । ହେ ଅନଘ-ବୃନ୍ଦ ତୁମ୍ଭମାନଙ୍କ ଅଙ୍ଗ ମଧ୍ୟରେ କୌଣସି ସ୍ଥାନ କୁତ୍ସିତ ରୂପେ ଲକ୍ଷିତ ହେଉନାହିଁ । ତୁମ୍ଭେମାନେ ପୁଣ୍ୟା, ପବିତ୍ରା ଓ ସୁଭଗା, ଅତଏବ ଆମ୍ଭେ ତୁମ୍ଭମାନଙ୍କ ଦେହର ଯେଉଁ ସ୍ଥାନରେ ବାସ କରିବୁଁ, ତାହା ଆମ୍ଭଙ୍କୁ ଆଦେଶ ପ୍ରଦାନ କର । ୨୨ ।

ହେ ନରାଧିପ ! ଲକ୍ଷ୍ମୀଦେବୀ ଏହିପରି କହିବାରୁ ଶୁଭା, କରୁଣ-ବତ୍ସଳା ଗୋବୃନ୍ଦ ସମସ୍ତେ ଏକତ୍ରିତ ହୋଇ ମନ୍ତ୍ରଣା ପୂର୍ବକ ତାହାଙ୍କୁ କହିଲେ, (୨୩), ହେ ଶୁଭେ ! ଯଶସ୍ୱିନି ! ତୁମ୍ଭର ସମ୍ମାନନା କରିବାର ଆମ୍ଭମାନଙ୍କର ଅବଶ୍ୟ କର୍ତ୍ତବ୍ୟ କର୍ମ, ଅତଏବ ତୁମ୍ଭେ ଆମ୍ଭମାନଙ୍କର ଶକୃତ୍ ଓ ମୂତ୍ରରେ ବାସ କର । କାରଣ ଆମ୍ଭମାନଙ୍କର ଏହା ପବିତ୍ର

ଅଟେ । ୨୪ । ଲକ୍ଷ୍ମୀ କହିଲେ, ଭାଗ୍ୟ ହେତୁରୁ ତୁମ୍ଭେମାନେ ଆମ୍ଭଠାରେ ଅନୁଗ୍ରହାତ୍ମକ ପ୍ରସନ୍ନତା ପ୍ରକାଶ କଲ । ଏହା ହେଉ । ହେ ସୁଖପ୍ରଦାଗଣ ! ତୁମ୍ଭମାନଙ୍କର ମଙ୍ଗଳ ହେଉ । ଆମ୍ଭେ ପୂଜିତା ହେଲୁଁ । ୨୫ । ହେ ଭାରତ ! ଶ୍ରୀଦେବୀ ଗୋଗଣଙ୍କ ସହିତ ଏହିପରି ନିୟମ କରି ସେମାନଙ୍କ ସାକ୍ଷାତରେ ସେହି ସ୍ଥାନରେ ଅନ୍ତର୍ହିତ ହେଲେ । ୨୬ । ହେ ପୁତ୍ର ! ତୁମ୍ଭ ନିକଟରେ ଗୋମୟର ମାହାତ୍ମ୍ୟ ବର୍ଣ୍ଣିତ ହେଲା । ପୁନଶ୍ଚ ଆମ୍ଭଠାରୁ ଗୋବୃନ୍ଦଙ୍କ ମାହାତ୍ମ୍ୟ ଶ୍ରବଣ କର । ୨୭ ।

---

## ଅଧ୍ୟାୟ—୮୩

ଭୀଷ୍ମ କହିଲେ—ହେ ଯୁଧିଷ୍ଠିର ! ଯେଉଁମାନେ ଗୋଦାନପ୍ରଦାନ କରନ୍ତି ଏବଂ ହୋମାବଶିଷ୍ଟ ଭୋଜନ କରନ୍ତି, ସେହିମାନଙ୍କର ଯଜ୍ଞ ଓ ସବସମୃଦ୍ଧ ସର୍ବଦା ସମ୍ପନ୍ନ ହୁଏ । ୧ ।

ଇହଲୋକରେ ଦଧି ଏବଂ ଘୃତ ବ୍ୟତିରେକେ ଯଜ୍ଞ ସମ୍ପନ୍ନ ହୁଏ-ନାହିଁ । ଏହି କାରଣରୁ ଯଜ୍ଞର ଯଜ୍ଞତ୍ୱ ତଦ୍ଦ୍ୱାରା ରକ୍ଷା ହେଉଅଛି । ଅତଏବ ଗୋବୃନ୍ଦ ଯଜ୍ଞର ମୂଳ ଅଟନ୍ତି ବୋଲି କଥିତ ହୁଅନ୍ତି । ୨ । ଗୋଦାନ ସମସ୍ତ ଦାନ ଅପେକ୍ଷା ପ୍ରଶସ୍ତ, ଗୋବୃନ୍ଦ ସର୍ବୋତ୍କୃଷ୍ଟ ପବିତ୍ର, ଏବଂ ସେହିମାନେ ଅତିଶୟ ପାବନ (୩); ପୁଷ୍ଟି ଓ ଶାନ୍ତି ନିମିତ୍ତ ସେମାନଙ୍କୁ ସେବା କରିବ । ସେହିମାନଙ୍କର ଦଧି, ଦୁଗ୍ଧ ଓ ଘୃତ ସର୍ବପାପ ମୋଚନ କରେ । ୪ । ଇହଲୋକ ଓ ପରଲୋକରେ ଗୋଗଣ ପରମତେଜଃ ସ୍ୱରୂପ ବୋଲି କଥିତ ହୁଅନ୍ତି । ହେ ଭରତଶ୍ରେଷ୍ଠ ! ଗୋଗଣଙ୍କର ଅପେକ୍ଷା ଅନ୍ୟ କିଛି ପରମ ପବିତ୍ର ନାହିଁ । ୫ ।

ହେ ଯୁଧିଷ୍ଠିର ! ଏହି ବିଷୟରେ ପ୍ରାଚୀନ ପଣ୍ଡିତମାନେ ପିତାମହ ଓ ପୁରନ୍ଦରଙ୍କ ସମ୍ବାଦ ସମନ୍ୱିତ ପୁରାତନ ଇତିହାସ କହନ୍ତି ।

ହେ କୌରବରାଜ ! କୌଣସି କାଳରେ ଦୈତ୍ୟଦଳ ପରାଭୂତ ହେବାରୁ ତ୍ରିଭୁବନେଶ୍ୱର ପୁରନ୍ଦର, ସତ୍ୟଧର୍ମ ପରାୟଣ ସମ୍ମଦିତ ପ୍ରଜାଗଣ (୭), ଋଷିଗଣ, ଗନ୍ଧର୍ବ ସହିତ କିନ୍ନରଗଣ, ଉରଗ ଓ ରାକ୍ଷସଗଣ, ଦେବ ଅସୁର ଓ ସୁପର୍ଣ୍ଣବୃନ୍ଦ, ପ୍ରଜାପତିବୃନ୍ଦ, ନାରଦ, ପର୍ବତ, ବିଶ୍ୱାବସୁ ଏବଂ

ହାହା ହୂହୂ ପ୍ରଭୃତି ଦିବ୍ୟତାନରେ ଗାନ କରି ସର୍ବତୋଭାବରେ ପ୍ରଭୁ ପିତାମହଙ୍କର ଉପାସନା କରୁଥିଲେ । ତେତେବେଳେ ସମୀରଣ ଦିବ୍ୟପୁଷ୍ପ-ସମୂହ ବହନ କରିବାକୁ ସମର୍ଥ ହୋଇଥିଲେ । ଋତୁଗଣ ଭିନ୍ନ ଭିନ୍ନ ସୁଗନ୍ଧ-ସମୂହ ଆହରଣ କଲେ । ସେହି ସର୍ବଭୂତ ସମାଗମ ସୁରସଭା ସମୟରେ ଦିବ୍ୟ ବାଦିତ୍ର ଧ୍ୱନି ହେଲା ଓ ଦିବ୍ୟରମଣୀ ଏବଂ ଚାରଣଗଣଦ୍ୱାରା ସଭାସ୍ଥଳ ସମାବୃତ ହେବାରୁ ଦେବରାଜ ଦେବେଶଙ୍କୁ ପ୍ରଣତି ଓ ଅଭିବାଦନ ପୂର୍ବକ ପ୍ରଶ୍ନ କଲେ । ୧୨ । ହେ ଭଗବନ୍ ପିତାମହ ! ଲୋକେଶ୍ୱର ଗୋଲୋକ କେଉଁ କାରଣରୁ ଦେବଗଣଙ୍କ ଉପରିଭାଗରେ ସ୍ଥାପିତ ହୋଇଅଛି ? ଏହା ଜାଣିବା ନିମିତ୍ତ ଇଚ୍ଛା କରୁଅଛୁ । ୧୩ । ହେ ଈଶ୍ୱର ! ଇହଲୋକରେ ଗୋବୃନ୍ଦ କେଉଁ ତପସ୍ୟା ଓ ବ୍ରହ୍ମଚର୍ଯ୍ୟ କରିଥିଲେ ବୋଲି ତାହା ପ୍ରଭାବରେ ରଜୋବିହୀନ ଅର୍ଥାତ୍ ନିଷ୍ପାପ ହୋଇ ଦେବଗଣଙ୍କ ଉପରିଭାଗରେ ଅନାୟାସରେ ବାସ କରିଅଛନ୍ତି ? ୧୪ ।

ତଦନନ୍ତର ବ୍ରହ୍ମା ସେହି ବଳନିସୂଦନ ଶକ୍ରଙ୍କୁ କହିଲେ, ହେ ପାକଶାସନ ! ତୁମ୍ଭେ ସର୍ବଦା ଗୋଗଣଙ୍କୁ ଅବଜ୍ଞା କରୁଥାଅ, ସେହି ହେତୁରୁ ତୁମ୍ଭେ ସେମାନଙ୍କ ମାହାତ୍ମ୍ୟ ଜାଣ ନାହିଁ । ଅତଏବ ହେ ସୁରେଶ୍ୱର ! ତୁମ୍ଭେ ଗୋଗଣଙ୍କ ପରମ ପ୍ରଭାବ ଓ ମାହାତ୍ମ୍ୟ ଶ୍ରବଣ କର । ହେ ବାସବ ! ଗୋବୃନ୍ଦ ଯଜ୍ଞର ଅଙ୍ଗ ଓ ଯଜ୍ଞ ସ୍ୱରୂପ ବୋଲି କଥିତ ହୁଅନ୍ତି, ଯଜ୍ଞ ଗୋ ବ୍ୟତିରେକେ କଦାପି ସମ୍ପନ୍ନ ହୁଏ ନାହିଁ । ୧୭ । ଗୋଗଣ ଘୃତ ଓ ଦୁଗ୍ଧ ଦ୍ୱାରା ପ୍ରଜା ନିକରଙ୍କୁ ଧାରଣ କରି ରହିଅଛନ୍ତି, ସେମାନଙ୍କ ସନ୍ତାନବୃନ୍ଦ କୃଷିକାର୍ଯ୍ୟ ନିର୍ବାହ କରି ଧାନ୍ୟ ଓ ବିବିଧବୀଜ ସମୂହ ଉତ୍ପାଦନ କରନ୍ତି । ଗୋଗଣଙ୍କ ହେତୁରୁ ଯଜ୍ଞ ଓ ସର୍ବପ୍ରକାର ହବ୍ୟକବ୍ୟ ସମୂହ ପ୍ରବୃତ୍ତ ହୁଏ । ୧୯ । ହେ ସୁରାଧିପ ! ଏମାନେ ଓ ଏମାନଙ୍କ ଦଧି ଦୁଗ୍ଧ ଓ ଘୃତ ଅତି ପବିତ୍ର । ଏମାନେ କ୍ଷୁଧା ଓ ତୃଷାଦ୍ୱାରା ଅତିଶୟ ପୀଡ଼ିତ ହେଲେ ସୁଦ୍ଧା ବିବିଧ ଭାର ବହନ କରନ୍ତି । ୨୦ । ଏମାନେ କାର୍ଯ୍ୟଦ୍ୱାରା ମୁନିଗଣ ଓ ପ୍ରଜାଗଣଙ୍କୁ ଧାରଣ କରି ରହିଅଛନ୍ତି । ହେ ବାସବ ! ଏମାନେ ଅକପଟ ବ୍ୟବହାର କରନ୍ତି, ଅତଏବ କର୍ମ ଓ ସୁକୃତଦ୍ୱାରା (୨୧) ଏମାନେ ସର୍ବଦା ଆମ୍ଭମାନଙ୍କ ଉପରିଭାଗରେ ବସତି କରିଥାଆନ୍ତି । ହେ ଦେବରାଜ ! ତୁମ୍ଭଙ୍କୁ ଏତେବେଳେ ଏହିପରି ଦେବଗଣଙ୍କ ଉପରିଭାଗରେ ଗୋବୃନ୍ଦଙ୍କର ନିବାସ କାରଣ କହିଲୁ । ହେ ବାସବ ! ଏମାନେ ବରପ୍ରାପ୍ତ ହୋଇଅଛନ୍ତି ଏବଂ ବରଦାନ କରିବାକୁ ମଧ୍ୟ ସମର୍ଥ ଅଟନ୍ତି । ୨୩ । ହେ ବଳସୂଦନ ସୁର-

ସତ୍ତମ ! ପୁଣ୍ୟକର୍ମଶାଳିନୀ ପାବନୀ ଶୁଭଲକ୍ଷଣା ସୁରଭିମାନେ ଯେଉଁ ନିମିତ୍ତ ପୃଥିବୀକୁ ଆଗମନ କରିଅଛନ୍ତି (୨୪), ଆମ୍ଭେ ତାହା ବିସ୍ତାରକ୍ରମେ କହୁଅଛୁ, ଶ୍ରବଣ କର ।

ହେ ତାତ ! ପୂର୍ବକାଳରେ ସତ୍ୟଯୁଗରେ ମହାନୁଭବ ଦୈତ୍ୟେନ୍ଦ୍ରଗଣ ତ୍ରୈଲୋକ୍ୟକୁ ଅନୁଶାସନ କରୁଥିବାରୁ ଭଗବାନ୍ ବିଷ୍ଣୁ ପୃଥିବୀରେ ଜନ୍ମ ପରିଗ୍ରହ କରିବାକୁ ସ୍ୱୀକୃତ ହୋଇଥିଲେ । ତତ୍‌ସମୟରେ ଦେବଜନନୀ ଅଦିତି ପୁତ୍ରାର୍ଥିନୀ ହୋଇ ଏକପଦରେ ଅବସ୍ଥାନ ପୂର୍ବକ କଠୋର ତପସ୍ୟା କଲେ । ଧର୍ମପରାୟଣା ଦକ୍ଷଦୁହିତା ସୁରଭି ସେତେବେଳେ ଅଦିତିଙ୍କର ଘୋର ତପସ୍ୟା ଦର୍ଶନରେ ପରିତୁଷ୍ଟ ହୋଇ ଦେବଗନ୍ଧର୍ବସେବିତ ପରମ ରମଣୀୟ କୈଳାସ ଶିଖରକୁ ଯାଇ ଏକପଦରେ ଅବସ୍ଥାନ ପୂର୍ବକ ଏକାଦଶ ସହସ୍ର ବର୍ଷ କଠୋର ତପସ୍ୟା କଲେ । ଦେବ, ମହର୍ଷି ଓ ମହୋରଗଗଣ ସେହି ଦେବୀଙ୍କ ତପସ୍ୟାଦ୍ୱାରା ସନ୍ତପ୍ତ ହୋଇ ଆମ୍ଭ ସହିତ ସେଠାକୁ ଗମନ କରି ସେହି କଲ୍ୟାଣୀଙ୍କ ଉପାସନା କଲେ ।

ତଦନନ୍ତର ସେତେବେଳେ ଆମ୍ଭେ ସେହି ତପସ୍ୟାଯୁକ୍ତା ଦେବୀଙ୍କୁ କହିଲୁଁ (୩୧), ହେ ଅନିନ୍ଦିତ ଦେବି ! ତୁମ୍ଭେ କେଉଁ ନିମିତ୍ତ ଘୋରତର ତପସ୍ୟା କରୁଅଛ ? ହେ ମହାଭାଗେ ! ଶୋଭନେ ! ତୁମ୍ଭର ଏହି ତପସ୍ୟାଦ୍ୱାରା ଆମ୍ଭେ ପ୍ରସନ୍ନ ହୋଇଅଛୁଁ (୩୨) ; ହେ ଦେବି ! ତୁମ୍ଭେ ପ୍ରାର୍ଥନା କର, ଆମ୍ଭେ ବର ପ୍ରଦାନ କରିବୁଁ । ୩୩ । ହେ ପୁରନ୍ଦର ! ସୁରଭି କହିଲେ, ହେ ଲୋକପିତାମହ ! ଭଗବନ୍ ! ଆମ୍ଭର ବରରେ ପ୍ରୟୋଜନ କି ? ହେ ଅନଘ ! ଆପଣ ଯେ ଆମ୍ଭଠାରେ ପ୍ରୀତ ହୋଇଅଛନ୍ତି, ଏହା ଆମ୍ଭର ବର । ୩୪ । ହେ ଦେବେନ୍ଦ୍ର ! ତ୍ରିଦଶେଶ୍ୱର ! ଶଚୀପତେ ! ସେହି ସୁରଭି ଦେବୀ ଏହିପରି କହିବାରୁ ଆମ୍ଭେ ତାହାଙ୍କୁ ଯାହା ପ୍ରତ୍ୟୁତ୍ତର କରିଥିଲୁଁ ତାହା ଶ୍ରବଣ କର । ୩୫ ।

ହେ ଦେବି ! ଶୁଭାନନେ ! ତୁମ୍ଭର ଅଲୋଭ କାମନା ଓ ତପସ୍ୟାଦ୍ୱାରା ଆମ୍ଭେ ପ୍ରସନ୍ନ ହୋଇଅଛୁଁ । ସେହି କାରଣରୁ ତୁମ୍ଭଙ୍କୁ ଅମରବର ପ୍ରଦାନ କରୁଅଛୁଁ । ୩୬ ।

ତୁମ୍ଭେ ତ୍ରିଭୁବନର ଉପରିଭାଗରେ ବାସ କରିବ, ତୁମ୍ଭେ ଯେଉଁ ସ୍ଥାନରେ ବାସ କରିବ; ଆମ୍ଭ ପ୍ରସାଦରୁ ତାହା ଗୋଲୋକ ବୋଲି ଖ୍ୟାତ ହେବ । ୩୭ । ହେ ମହାଭାଗେ ! ମନୁଷ୍ୟ ଲୋକରେ ତୁମ୍ଭର ସନ୍ତାନ ଓ ଦୁହିତାମାନେ ଶୁଭ କର୍ମ କରି ଗୋଲୋକକୁ ଆସି ବାସ କରିବେ । ୩୮ ।

ହେ ଦେବ ! ଶୁଣ ! ତୁମ୍ଭେ ମନରେ ଚିନ୍ତା କଲେ ଦିବ୍ୟ ମନୁଷ୍ୟ ଭୋଗ ସମୂହ ପ୍ରାପ୍ତ ହେବ । ସ୍ୱର୍ଗରେ ଯେଉଁ ସୁଖସବୁ ଅଛି, ତାହା ସେଠାରେ ଉପଭୋଗ କରିବ । ୩୯ । ହେ ସହସ୍ରାକ୍ଷ ! ସୁରଭିଙ୍କ ଲୋକ-ସମୂହ ସର୍ବକାମସମନ୍ୱିତ ଅଟେ । ସେଠାରେ ଜରା, ମୃତ୍ୟୁ ଅଥବା ଅଗ୍ନି କେହି ଆକ୍ରମଣ କରି ପାରନ୍ତି ନାହିଁ । ୪୦ । ହେ ବାସବ ! ସେଠାରେ କିଛି ଦୈବ ଘଟଣା ଓ ଅଶୁଭ ହୁଏ ନାହିଁ ; ସେଠାରେ ଦିବ୍ୟ ଅରଣ୍ୟ ଓ ଭବନସମୂହ (୪୧), କାମଗାମୀ ଶୋଭନ ବାହନଯୁକ୍ତ ଦିବ୍ୟବିମାନ ସମୂହ ବିଦ୍ୟମାନ । ହେ ପୁଷ୍କରେକ୍ଷଣ ! ବ୍ରହ୍ମଚର୍ଯ୍ୟ, ତପସ୍ୟା, ସତ୍ୟ, ଦମ, ବିବିଧ ଦାନ, ବିବିଧ ପୁଣ୍ୟ, ତୀର୍ଥାନୁସେବନ, ସୁମହତ୍ ତପସ୍ୟା ଓ ସୁକୃତ କର୍ମଦ୍ୱାରା ଗୋଲୋକ ପ୍ରାପ୍ତ ହୋଇପାରେ । ହେ ଅସୁର-ସୂଦନ ଶକ୍ର ! ତୁମ୍ଭେ ଯାହା ପ୍ରଶ୍ନ କରିଥିଲ, ଆମ୍ଭେ ଏହିରୂପେ ତାହା ସବୁ ତୁମ୍ଭ ନିକଟରେ କୀର୍ତ୍ତନ କଲୁଁ । ଅତଏବ ଗୋଗଣଙ୍କ ପରିଭବ ତୁମ୍ଭର କର୍ତ୍ତବ୍ୟ ନୁହେ । ୪୫ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ସହସ୍ରାକ୍ଷ ଏହା ଶ୍ରବଣ କରି ନିତ୍ୟ ଗୋସମୂହଙ୍କ ପୂଜା ଓ ବହୁମାନ କଲେ । ୪୬ । ହେ ମହାଦ୍ୟୁତେ ! ପୁରୁଷସିଂହ ! ତୁମ୍ଭ ନିକଟରେ ଏହି ପରମ ପବିତ୍ର ପାବନ ସର୍ବପାପ-ପ୍ରମୋଚନ ଗୋଗଣଙ୍କ ଅତ୍ୟୁତ୍ତମ ମାହାତ୍ମ୍ୟ କୀର୍ତ୍ତନ କଲୁଁ । ଯେ ସ୍ଥିରମନା ହୋଇ ହବ୍ୟକବ୍ୟ ଯଜ୍ଞ ଓ ପିତୃକାର୍ଯ୍ୟରେ ଏହା ବ୍ରାହ୍ମଣଙ୍କୁ ନିତ୍ୟ ଶ୍ରବଣ କରାନ୍ତି, ତାହାଙ୍କର ସାର୍ବକାମିକ ଅକ୍ଷୟ ଫଳ ପିତୃଗଣଙ୍କ ନିକଟରେ ଉପସ୍ଥିତ ହୁଏ । ୪୯ ।

ମାନବ ଗୋବୃନ୍ଦର ଭକ୍ତ ହେଲେ, ଯାହା ଇଚ୍ଛା ତାହା ଲାଭ କରନ୍ତି ଏବଂ ଯେଉଁ ସ୍ତ୍ରୀସମୂହ ଗୋବୃନ୍ଦଙ୍କଠାରେ ଭକ୍ତି କରିବେ, ସେମାନେ ମଧ୍ୟ କାମ୍ୟ ବିଷୟସମୂହ ପ୍ରାପ୍ତ ହେବେ । ୫୦ । ପୁତ୍ରାର୍ଥୀ ପୁରୁଷ ପୁତ୍ରଲାଭ କରନ୍ତି, କନ୍ୟାର୍ଥୀ ପୁରୁଷ କନ୍ୟାଲାଭ କରନ୍ତି, ଧନାର୍ଥୀ ମନୁଜ ବିତ୍ତଲାଭ କରନ୍ତି ଏବଂ ଧର୍ମାର୍ଥୀ ମନୁଷ୍ୟ ଧର୍ମ ପ୍ରାପ୍ତ ହୁଅନ୍ତି । ୫୧ । ବିଦ୍ୟାର୍ଥୀ ବିଦ୍ୟାଲାଭ କରନ୍ତି, ସୁଖାର୍ଥୀ ସୁଖ ଉପଭୋଗ କରନ୍ତି । ହେ ଭାରତ ! ଯେଉଁ ବ୍ୟକ୍ତି ଗୋଗଣଙ୍କଠାରେ ଭକ୍ତି କରନ୍ତି, ତାହାଙ୍କର କିଛି ଦୁର୍ଲ୍ଲଭ ନୁହେ । ୫୨ ।

---

# ଅଧ୍ୟାୟ—୮୪

ଯୁଧିଷ୍ଠିର କହିଲେ—ପିତାମହଙ୍କ ଦ୍ୱାରା ଇହଲୋକରେ ଅତି ଉତ୍ତମ ଗୋଦାନର ବିଷୟ କଥିତ ହେଲା । ଧର୍ମଦର୍ଶୀ ନରେନ୍ଦ୍ରଗଣଙ୍କ ପକ୍ଷରେ ଏହା ବିଶେଷରେ ହିତକର । ୧ । ଶୁଦ୍ଧଚିତ୍ତ ନରପାଳଗଣଙ୍କ ପକ୍ଷରେ ରାଜ୍ୟ ସର୍ବଦା ଦୁଃଖକର ଓ ଦୁର୍ଦ୍ଧର; ରାଜାମାନଙ୍କର ପ୍ରାୟ ଶୁଭଗତି ହୁଏ ନାହିଁ । ୨ । ଅତଏବ ସେମାନେ ନିତ୍ୟ ଭୂମିଦାନ କରି ପବିତ୍ର ହୁଅନ୍ତି । ହେ କୁରୁନନ୍ଦନ ! ଆପଣ ଆମ୍ଭ ନିକଟରେ ଧର୍ମସମୂହ କୀର୍ତ୍ତନ କଲେ ଏବଂ ନୃଗ ନୃପତି କର୍ତ୍ତୃକ ଗୋପ୍ରଦାନର ବିଷୟ, ନାଚିକେତ ଋଷି ଯାହା କହିଥିଲେ, ତାହା ପୂର୍ବେ ବର୍ଣ୍ଣିତ ହୋଇଅଛି । ୪ । ବେଦ ଉପନିଷଦ ଦ୍ୱାରା ସମସ୍ତ କର୍ମରେ ଏବଂ ସମସ୍ତ ଯଜ୍ଞରେ ଭୂମି, ଗୋ, ଅଥବା କାଞ୍ଚନ ଦକ୍ଷିଣା ରୂପେ ନିର୍ଦ୍ଦିଷ୍ଟ ହୋଇଅଛି । ତନ୍ମଧ୍ୟରେ ସୁବର୍ଣ୍ଣ ଦକ୍ଷିଣା ସମ୍ୟକ୍ ରୂପେ ଉତ୍କୃଷ୍ଟ ଅଟେ ବୋଲି ଏହିପରି ଶ୍ରୁତି ଅଛି; ଅତଏବ ହେ ପିତାମହ ! ଏହି ବିଷୟକୁ ଯଥାର୍ଥ ରୂପେ ଶ୍ରବଣ କରିବାକୁ ଅଭିଳାଷୀ ହେଉଅଛୁ । ୬ ।

ସୁବର୍ଣ୍ଣ କଣ ? ତାହା କେଉଁ ସମୟରେ କେଉଁ ପ୍ରକାରରେ ଜାତ ହେଲା ? ତାହା କେଉଁ ସ୍ୱରୂପ ଅଟେ ? ତାହା କି ଦୈବ ? ତାହାର କେଉଁ ପ୍ରକାର ଫଳ ? ଓ ତାହା କେଉଁ ହେତୁରୁ ଶ୍ରେଷ୍ଠ ରୂପେ କଥିତ ହୁଏ ? ୭ । ମହର୍ଷିଗଣ କେଉଁ କାରଣରୁ ସୁବର୍ଣ୍ଣ ଦାନକୁ ପ୍ରଶଂସା କରନ୍ତି ? ଯଜ୍ଞକର୍ମରେ ଦକ୍ଷିଣା ନିମିତ୍ତ ସୁବର୍ଣ୍ଣ କେଉଁ କାରଣରୁ ପ୍ରଶଂସିତ ? ୮ । ହେ ପିତାମହ ! ଭୂମି ଓ ଗୋ ଅପେକ୍ଷା କାଞ୍ଚନ କେଉଁ କାରଣରୁ ପାବନ ଓ ଉତ୍କୃଷ୍ଟ ? ଏବଂ ତାହା ଦକ୍ଷିଣାର୍ଥରେ କେଉଁ ହେତୁରୁ ଶ୍ରେଷ୍ଠ ? ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୯ ।

ଭୀଷ୍ମ କହିଲେ, ହେ ରାଜନ୍ ! ସୁବର୍ଣ୍ଣର ଉତ୍ପତ୍ତି ବିଷୟକ ବହୁ ବିସ୍ତାର କାରଣ ଯାହା ଆମ୍ଭେ ଅନୁଭବ କରିଅଛୁ ତାହା ତୁମ୍ଭେ ଅବହିତ ହୋଇ ଶ୍ରବଣ କର । ୧୦ । ମହାୟ ପିତା ମହାତେଜା ଶାନ୍ତନୁ ନିଧନପ୍ରାପ୍ତ ହେବାରୁ ଆମ୍ଭେ ତାହାଙ୍କ ଶ୍ରାଦ୍ଧଦାନ ନିମିତ୍ତ ଗଙ୍ଗାଦ୍ୱାରକୁ ଯାଇଥିଲୁ । ୧୧ । ହେ ପୁତ୍ର ! ଆମ୍ଭେ ସେଠାରେ ଉପସ୍ଥିତ ହୋଇ ପିତାଙ୍କର ଶ୍ରାଦ୍ଧକର୍ମ ଆରମ୍ଭ କଲୁ । ତେତେବେଳେ ଆମ୍ଭ ଜନନୀ ଜାହ୍ନବୀ ଏ ବିଷୟରେ ସାହାଯ୍ୟ କରିଥିଲେ । ୧୨ । ତଦନନ୍ତର ଅଗ୍ରଭାଗରେ ଅନେକାନେକ ତପସ୍ୟାସିଦ୍ଧ

ଋଷିଗଣଙ୍କୁ ଉପବେଶନ କରାଇ ଜଳପ୍ରଦାନ ପ୍ରଭୃତି କାର୍ଯ୍ୟସବୁ ଆରମ୍ଭ କଲୁ । ୧୩ । ଆମ୍ଭେ ସମାହିତ ହୋଇ ଯଥୋଦ୍ଦିଷ୍ଟ ପୂର୍ବକର୍ମ ସମାପନ ପୂର୍ବକ ଯଥାବିଧି ଉତ୍ତମ ରୂପେ ଶ୍ରାଦ୍ଧଦାନ କରିବାକୁ ପ୍ରବୃତ୍ତ ହେଲୁ । ୧୪ ।

ହେ ବଂଶାଂପତେ ! ତଦନନ୍ତର ସେହି ଦର୍ଭ ବିନ୍ୟାସ ଭେଦ କରି ମନୋହର ଅଙ୍ଗଦଯୁକ୍ତ ଲମ୍ବମାନ ଆଭରଣ ସମନ୍ୱିତ ଗୋଟିଏ ବାହୁ ସମୁତ୍ଥିତ ହେଲା । ୧୫ । ହେ ଭରତର୍ଷଭ ! ଆମ୍ଭ ପିତା ସ୍ୱୟଂ ସାକ୍ଷାତ୍ ଦତ୍ତଗ୍ରହୀତା ହୋଇଅଛନ୍ତି, ତଥାପି ବାହୁ ବହିର୍ଗତ ହେବାର ଦେଖି ପରମ ବିସ୍ମୟ ପ୍ରାପ୍ତ ହେଲୁଁ । ୧୬ । ଅନନ୍ତର ଶାସ୍ତ୍ରାନୁସାରେ ଚିନ୍ତାକରି ପୁନଶ୍ଚ ଆମ୍ଭର ଚୈତନ୍ୟ ଜନ୍ମିଲା । ହସ୍ତରେ ପିଣ୍ଡ ପ୍ରଦାନ କରିବାକୁ ହୁଏ, ବେଦ ମଧ୍ୟରେ ଏହିପରି ବିଧି ବିହିତ ହୋଇନାହିଁ, ଅତଏବ ଆମ୍ଭର ବିବେଚନା ହେଲା ଯେ, ପିତୃଗଣ ସାକ୍ଷାତ୍ ସମ୍ବନ୍ଧରେ ଇହଲୋକରେ କଦାପି ମନୁଷ୍ୟର ପିଣ୍ଡ ଗ୍ରହଣ କରନ୍ତି ନାହିଁ । ଏହି କଥା ବିଦିତ ଅଛି । ଅତଏବ କୁଶ ମଧ୍ୟରେ ପିଣ୍ଡଦାନ କରିବାର ବିଧେୟ । ହେ ଭରତର୍ଷଭ ! ତତ୍ପରେ ଆମ୍ଭେ ପିତାଙ୍କର ସେହି ହସ୍ତନଦର୍ଶନକୁ ଅନାଦର ପୂର୍ବକ ଶାସ୍ତ୍ରପ୍ରାମାଣ୍ୟ ଅନୁସାରେ ପିଣ୍ଡଦାନର ସୂକ୍ଷ୍ମବିଧିକ ସ୍ମରଣ କରି କୁଶ ମଧ୍ୟରେ ତାହା ସବୁ ପ୍ରଦାନ କଲୁଁ । ଏହା ଶାସ୍ତ୍ରାନୁସାରେ ହେଲା ଜାଣ । ହେ ମନୁଜର୍ଷଭ ! ତତ୍ପରେ ଆମ୍ଭ ପିତାଙ୍କ ବାହୁ ଅନ୍ତର୍ହିତ ହେଲା । ୨୧ ।

ହେ ଭରତଶ୍ରେଷ୍ଠ ! ତଦନନ୍ତର ପ୍ରୀୟମାଣ ପିତା ସ୍ୱପ୍ନାବସ୍ଥାରେ ଆମ୍ଭଙ୍କୁ ଦର୍ଶନ ଦେଲେ ଓ କହିଲେ, ତୁମ୍ଭେ ଶାସ୍ତ୍ର ପ୍ରମାଣାନୁସାରେ ଏହି ବିଜ୍ଞାନଦ୍ୱାରା ଯାହା ମୁଗ୍ଧ ହୋଇ ନାହିଁ, ଏଥିରେ ଆମ୍ଭେ ପ୍ରୀତ ହୋଇଅଛୁଁ । ଆତ୍ମା, ଧର୍ମ, ଶ୍ରୁତ, ବେଦସମୂହ ଋଷିଗଣଙ୍କ ସହିତ ପିତୃଗଣ ସାକ୍ଷାତ୍ ପିତାମହ ବ୍ରହ୍ମା, ଗୁରୁଗଣ ଏବଂ ପ୍ରଜାପତିଗଣ ସମସ୍ତେ ପ୍ରମାଣରେ ଉପନୀତ ହୋଇଅଛନ୍ତି, ଏବଂ ମର୍ଯ୍ୟାଦା ମଧ୍ୟ ବିଚଳିତ ହୁଏ ନାହିଁ; ଅତଏବ ହେ ଭରତଶ୍ରେଷ୍ଠ ! ନରନାଥ ! ତୁମ୍ଭେ ଆଜି ଉତ୍ତମ କାର୍ଯ୍ୟ କରିଅଛ । ୨୫ । କିନ୍ତୁ ଭୂମି ଓ ଗୋଗଣଙ୍କ ନିମିତ୍ତ ସୁବର୍ଣ୍ଣ ଦାନ କର । ହେ ଧର୍ମଜ୍ଞ ! ଏହିପରି କଲେ ଆମ୍ଭେ ଓ ଆମ୍ଭର ସମସ୍ତ ପିତାମହଗଣ ପବିତ୍ର ହେବେ । ୨୬ । କାରଣ ସୁବର୍ଣ୍ଣ ପରମ ପବିତ୍ର, ଯେଉଁମାନେ ସୁବର୍ଣ୍ଣଦାନ କରନ୍ତି, ସେମାନେ ପୂର୍ବବର୍ତ୍ତୀ ଦଶପୁରୁଷ ଏବଂ ପରବର୍ତ୍ତୀ ଦଶପୁରୁଷଙ୍କୁ ଉଦ୍ଧାର କରନ୍ତି । ୨୭ । ଆମ୍ଭ ପିତା ଏହିପରି କହିଥିଲେ ।

ହେ ନରନାଥ ! ତଦନନ୍ତର ଆମ୍ଭେ ପ୍ରତିବୁଦ୍ଧ ହୋଇ ବସିିତ ହେଲୁଁ । ୨୮ ।

ହେ ଭରତଶ୍ରେଷ୍ଠ ! ତେତେବେଳେ ଆମ୍ଭେ ସୁବର୍ଣ୍ଣଦାନରେ ଅଭିଳାଷ କଲୁଁ । ହେ ରାଜନ୍ ! ଜାମଦଗ୍ନ୍ୟ ସମ୍ବନ୍ଧୀୟ ଧର୍ମ ଓ ଆୟୁଷ୍କର ଏହି ପୁରାତନ ଇତିହାସକୁ ଶ୍ରବଣ କର । ପୂର୍ବକାଳରେ ତୀବ୍ର ରୋଷାନ୍ୱିତ ଜାମଦଗ୍ନ୍ୟ ରାମ ଏକବିଂଶତିବାର ପୃଥିବୀକୁ ନିଃକ୍ଷତ୍ରିୟା କରିଥିଲେ । ହେ ମହାରାଜ ! ତତ୍ପରେ ମହାବୀର ରାଜୀବଲୋଚନ ରାମ ଅଖଣ୍ଡ ମହୀମଣ୍ଡଳ ଜୟ କରି ବ୍ରାହ୍ମଣ ଓ କ୍ଷତ୍ରିୟଗଣଙ୍କ ପୂଜିତ ସର୍ବକାମସମନ୍ୱିତ ବାଜମେଧଯଜ୍ଞର ଆୟୋଜନ କଲେ । ୩୧ । ଉକ୍ତ ଯଜ୍ଞ ସର୍ବଭୂତର ପାବନ, ତେଜ ଓ ଦ୍ୟୁତି ବୃଦ୍ଧିକର; ଜମଦଗ୍ନିନନ୍ଦନ ତେଜସ୍ୱୀ ରାମ ସେହି ଯଜ୍ଞଦ୍ୱାରା ନିଷ୍ପାପ ହୋଇ ସୁଦ୍ଧା ସ୍ୱକୀୟ ଚିତ୍ତର ପବିତ୍ରତା ପ୍ରାପ୍ତ ହେଲେ ନାହିଁ । ମହାତ୍ମା ଭୃଗୁନନ୍ଦନ ରାମ ଦକ୍ଷିଣାଯୁକ୍ତ ଯଜ୍ଞ କରି ଆଗମସମ୍ପନ୍ନ ଋଷି ଓ ଦେବଗଣଙ୍କୁ ପ୍ରଶ୍ନ କଲେ, ହେ ମହାଭାଗଗଣ ! ଉଗ୍ରକର୍ମରେ ବର୍ତ୍ତମାନ ମାନବଗଣଙ୍କ ସମ୍ବନ୍ଧରେ ଯାହା ପରମପାବନ, ତାହା କୀର୍ତ୍ତନ କର । ରାମ ଦୟାର୍ଦ୍ର ହୋଇ ଏହି କଥା କହିଲେ ।

ବେଦଶାସ୍ତ୍ରଜ୍ଞ ମହର୍ଷିଗଣ ପରଶୁରାମଙ୍କ ବାକ୍ୟ ଶ୍ରବଣ କରି ତାହାଙ୍କୁ କହିଲେ, ହେ ରାମ ! ବେଦ ପ୍ରାମାଣ୍ୟ ଦର୍ଶନ ହେତୁରୁ ବିପ୍ରଗଣଙ୍କୁ ସତ୍କାର କରିବ । ପାବନ ସମ୍ବନ୍ଧରେ ପୁନଶ୍ଚ ବିପ୍ରର୍ଷିଗଣଙ୍କୁ ପ୍ରଶ୍ନ କରିବ ।୩୭। ସେହି ମହାପ୍ରାଜ୍ଞ ମହର୍ଷିଗଣ ଯାହା କହିବେ, ତାହା ଉତ୍ତମ ରୂପେ ଆଚରଣ କର । ତତ୍ପରେ ମହାତେଜା ଭୃଗୁନନ୍ଦନ, ଦେବର୍ଷି ବଶିଷ୍ଠ, ଅଗସ୍ତ୍ୟ ଓ କଶ୍ୟପଙ୍କୁ ଉକ୍ତ ବିଷୟ ପ୍ରଶ୍ନ କଲେ । ହେ ବିପ୍ରେନ୍ଦ୍ରଗଣ ! ଆମ୍ଭର ଏହି ମତି ହେଉଅଛି ଯେ ଆମ୍ଭେ କେଉଁ ପ୍ରକାର କର୍ମ ଓ କେଉଁ ପ୍ରକାର ପ୍ରଦାନ ଦ୍ୱାରା ପବିତ୍ର ହେବୁ ? ହେ ସତ୍ତମ ତପୋଧନଗଣ ! ଆପଣମାନଙ୍କର ଆମ୍ଭଠାରେ ଯଦି ଅନୁଗ୍ରହ ବୁଦ୍ଧି ହୁଏ, ତେବେ କେଉଁପରି ଆମ୍ଭର ପବିତ୍ରତା ହେବ, ତାହା କହିବା ହେଉନ୍ତୁ । ୪୦ ।

ଋଷିଗଣ କହିଲେ, ହେ ଭୃଗୁନନ୍ଦନ ! ଆମ୍ଭେମାନେ ଶୁଣିଅଛୁ, ପାପକର୍ମକାରୀ ମାନବ ଗୋ, ଭୂମି ଓ ବିତ୍ତ ଦାନ କରି ପବିତ୍ର ହୁଅନ୍ତି ।୪୧। ହେ ବିପ୍ରର୍ଷେ ! ଅନ୍ୟ ଏକ ମହତ୍ ପବିତ୍ର ଦ୍ରବ୍ୟ ଅଛି, ତାକୁ ଜାତବେଦଙ୍କ ଅପତ୍ୟ ସୁବର୍ଣ୍ଣଦାନର ବିଷୟ ଶ୍ରବଣ କର । ୪୨ ।

ପୂର୍ବକାଳରେ ସୁବର୍ଣ୍ଣଶାର୍ଯ୍ୟ ବଶରୁ ଲୋକସମୂହଙ୍କୁ ଦଗ୍ଧ କର ସମ୍ଭୂତ ହୋଇଅଛି ବୋଲ ଆମ୍ଭେମାନେ ଶ୍ରବଣ କରଅଛୁ । ଏତାଦୃଶ ବଖ୍ୟାତ ସୁବର୍ଣ୍ଣ ଦାନ କଲେ ମନୁଷ୍ୟ ସିଦ୍ଧିଲାଭ କରନ୍ତ । ୪୩ । ତଦନନ୍ତର ଶଂସିତବ୍ରତ ଭଗବାନ୍ ବଶିଷ୍ଠ ତାହାଙ୍କୁ କହିଲେ, ହେ ରାମ ! ଅନଳପ୍ରଭ ସୁବର୍ଣ୍ଣ ଯେଉଁ ରୂପେ ଉତ୍ପନ୍ନ ହୋଇଅଛି, ତାହା ଶ୍ରବଣ କର । ୪୪ । ଯାହା ପ୍ରଦତ୍ତ ହେଲେ ତୁମ୍ଭଙ୍କୁ ପରମଫଳ ପ୍ରଦାନ କରବ, ସମ୍ପ୍ରତି ତୁମ୍ଭଙ୍କୁ ତାହା କହୁଅଛୁ । ହେ ମହାବାହୋ ! ସୁବର୍ଣ୍ଣ ଯାଦୃଶ ଅଟେ, ସେ ଯେଉଁ କାରଣରୁ ଯେଉଁପର ଗୁଣବତ୍ତର ହୋଇଅଛି, ତାହା ସବୁ ଆମ୍ଭେ କହୁଅଛୁ ଶ୍ରବଣ କର । ଏହି ସୁବର୍ଣ୍ଣକୁ ସୋମ ଓ ଅଗ୍ନି ସ୍ୱରୂପ ଜ୍ଞାନ କର । ୪୬ ।

ହେ ଭୃଗୁନନ୍ଦନ ! ଏହିରୂପ ଦର୍ଶନ ଓ ସ୍ମରଣ ଅଛି ଯେ, ଅଜ, ଅଗ୍ନି, ବରୁଣ, ମେଷ, ସୂର୍ଯ୍ୟ, ଅଶ୍ୱ, କୁଞ୍ଜର, ନାଗ, ମହିଷ ଓ ଅସୁରଗଣ ଏବଂ କୁକ୍କୁଟ, ବରାହ, ରାକ୍ଷସ, ଇଡ଼ା ଅର୍ଥାତ୍ ଯଜ୍ଞଭୂମି, ଗୋ, ପୟ, ସୋମ ଓ ପୃଥିବୀ ଏହି ସମସ୍ତ ଜଗତ୍ ନର୍ମନ୍ଥନ କର ତେଜୋରାଶି ସମୁତ୍ଥିତ ହୋଇଥିଲା । ହେ ବପ୍ରର୍ଷେ ! ଏହିମାନଙ୍କ ମଧ୍ୟରୁ ଉତ୍ତମ ରତ୍ନ ଓ ସୁବର୍ଣ୍ଣ ସମ୍ଭୂତ ହୋଇଥିଲା । ୪୯ । ଏହି କାରଣରୁ ଦେବ, ଗନ୍ଧର୍ବ, ଉରଗ, ରାକ୍ଷସ, ମନୁଷ୍ୟ ଓ ପିଶାଚଗଣ ପ୍ରଯତ୍ନ ହୋଇ ତାହା ଧାରଣ କରନ୍ତ । ୫୦ । ହେ ଭୃଗୁବଂଶ ଧୂରନ୍ଧର ! ସେମାନେ ସୁବର୍ଣ୍ଣ ବକାର ମୁକୁଟ, ଅଙ୍ଗଦ ପ୍ରଭୃତି ବହୁବଧ ଅଳଙ୍କାରଦ୍ୱାର ସୁଶୋଭିତ ହୁଅନ୍ତ । ୫୧। ହେ ମନୁଜର୍ଷଭ ! ଏହି ସମସ୍ତ କାରଣ ବଶରୁ ଭୂମି, ଗୋ ଓ ରତ୍ନ ପ୍ରଭୃତି ସମସ୍ତ ପବତ୍ର ବସ୍ତୁ ଅପେକ୍ଷା ସୁବର୍ଣ୍ଣ ପରମ ପବତ୍ରରୂପେ ସ୍ମୃତ ହୋଇ-ଅଛି । ୫୨ ।

ହେ ରାଜନ୍ ! ଇହଲୋକରେ ଭୂମି ଓ ଗୋଦାନ କର ଅନ୍ୟ ଯାହା କଛି ବଶିଷ୍ଟ ଦାନ କରାଯାଏ, ତତ୍ ସମୁଦାୟ ଅପେକ୍ଷା ସୁବର୍ଣ୍ଣଦାନ ଶ୍ରେଷ୍ଠ ଅଟେ । ୫୩ । ହେ ଅମରଦ୍ୟୁତେ ! ସୁବର୍ଣ୍ଣ ଅକ୍ଷୟ ପବତ୍ର, ଅତଏବ ଏହା ଦ୍ୱିଜବର୍ଗଗଣଙ୍କୁ ପ୍ରଦାନ କର । ୫୪ । କାରଣ ଏହା ଉତ୍କୃଷ୍ଟ ପାବନ । ସୁବର୍ଣ୍ଣ ସମସ୍ତ ଦକ୍ଷିଣା ବଷୟରେ ବହିତ ଅଟେ, ଯେଉଁମାନେ ସୁବର୍ଣ୍ଣ ପ୍ରଦାନ କରନ୍ତ, ସେମାନେ ସର୍ବପ୍ରଦାତା ଅଟନ୍ତ । ୫୫ । ଯେଉଁମାନେ ସୁବର୍ଣ୍ଣ ଦାନ କରନ୍ତ, ସେମାନେ ଦେବତା ଦାନ କରଥାଆନ୍ତ, କାରଣ ଅଗ୍ନି ସମସ୍ତ ଦେବତାତ୍ମକ ଏବଂ ସୁବର୍ଣ୍ଣ ଅଗ୍ନି ସ୍ୱରୂପ । ଅତଏବ ସୁବର୍ଣ୍ଣଦାତାମାନେ ଦେବତାସମୂହ ଦାନ କରନ୍ତ । ହେ ପୁରୁଷବ୍ୟାଘ୍ର !

ପଣ୍ଡିତଗଣ ସୁବର୍ଣ୍ଣ ଦାନ ଅପେକ୍ଷା ଅନ୍ୟ କୌଣସି ଦାନକୁ ଶ୍ରେଷ୍ଠ ବୋଲି ଜାଣନ୍ତି ନାହିଁ । ୫୭ ।

ହେ ସର୍ବଶାସ୍ତ୍ରଜ୍ଞ ପ୍ରବର ବିପ୍ରର୍ଷେ ! ଆମ୍ଭେ ପୁନଶ୍ଚ କହୁଅଛୁ ଆମ୍ଭ ନିକଟରୁ ସୁବର୍ଣ୍ଣର ମାହାତ୍ମ୍ୟ ଶ୍ରବଣ କର । ୫୮ । ହେ ଭୃଗୁନନ୍ଦନ ! ପୂର୍ବେ ପ୍ରଜାପତି ଯଥାନ୍ୟାୟରେ ଯାହା କହିଥିଲେ ଆମ୍ଭେ ପୁରାଣରେ ତାହା ଶ୍ରବଣ କରିଅଛୁଁ । ହେ ଭୃଗୁକୁଳଧୁରନ୍ଧର ! ସର୍ବଶ୍ରେଷ୍ଠ ହିମାଳୟ ପର୍ବତରେ ମହାନୁଭବ ଭଗବାନ୍ ଶୂଳପାଣି ରୁଦ୍ରଦେବଙ୍କର ଦେବୀ ରୁଦ୍ରାଣୀଙ୍କ ସହିତ ପରିଣୟ କାର୍ଯ୍ୟ ନିର୍ବାହ ହେବାରୁ ମହାତ୍ମା ଭଗବାନଙ୍କର ଦେବୀଙ୍କ ସହିତ ସମାଗମ ସମୟରେ ସମସ୍ତ ସୁରଗଣ ସମୁଦ୍‌ବିଗ୍ନ ହୋଇ ରୁଦ୍ରଙ୍କ ସମୀପରେ ଉପସ୍ଥିତ ହେଲେ ।

ହେ ଭୃଗୁନନ୍ଦନ ! ସେମାନେ ସମସ୍ତେ ସମାସୀନ ମହାଦେବ ଏବଂ ବରଦା ଉମାଦେବୀଙ୍କୁ ଅବନତ ମସ୍ତକରେ ପ୍ରଣତି କରି ରୁଦ୍ରଙ୍କୁ କହିଲେ, ହେ ଦେବ ! ଦେବୀଙ୍କ ସହିତ ଆପଣଙ୍କର ଏହି ସମାଗମ ହୋଇଅଛି, ଆପଣ ଅତିଶୟ ତେଜସ୍ୱୀ, ତପସ୍ୱୀ; ଏ ମଧ୍ୟ ତେଜସ୍ୱିନୀ ଅଟନ୍ତି; ହେ ଦେବ ! ଆପଣଙ୍କ ତେଜ ଅବ୍ୟର୍ଥ, ଉମାଦେବୀଙ୍କ ତେଜ ମଧ୍ୟ ତଦ୍‌ବତ୍ ।୬୪। ଅତଏବ ହେ ଦେବ ! ହେ ବିଭୋ ! ଆପଣ ଦୁହିଁଙ୍କର ଅତି ବଳବାନ୍ ଅପତ୍ୟ ହେବ । ସେହି ଅପତ୍ୟ ତ୍ରିଭୁବନ ମଧ୍ୟରେ କାହାକୁ ଅବଶିଷ୍ଟ ରଖିବ ନାହିଁ, ଏହି କଥା ନିଶ୍ଚୟ ଜଣାଯାଉଅଛି । ୬୫ । ଅତଏବ ହେ ବିଶାଳ-ଲୋଚନ ଲୋକେଶ ! ଆପଣ ଏହି ପ୍ରଣତ ଦେବଗଣଙ୍କୁ ତ୍ରୈଲୋକ୍ୟର ହିତକାମନାରେ ବର ପ୍ରଦାନ କରିବା ହେଉନ୍ତୁ । ୬୬ ।

ହେ ବିଭୋ ! ଆପଣ ଅପତ୍ୟଙ୍କ ନିମିତ୍ତ ପରମ ତେଜ ନିଗ୍ରହ କରନ୍ତୁ ଅର୍ଥାତ୍ ତେଜୋହ୍ରାସ କରନ୍ତୁ । ଆପଣ ଦୁହେଁ ତ୍ରିଭୁବନର ସାର ସ୍ୱରୂପ, ଅତଏବ ଲୋକସମୂହକୁ ସନ୍ତାପିତ କରିବେ । ୬୭ । ଆପଣ ଦୁହିଁଙ୍କର ସେହି ଅପତ୍ୟ ଦେବଗଣଙ୍କୁ ନିଶ୍ଚୟ ପରାଭବ ହେବ । ଆମ୍ଭ-ମାନଙ୍କର ବିବେଚନା ହୁଏ ଯେ ପୃଥିବୀଦେବୀ, ସ୍ୱର୍ଗ ଓ ଆକାଶ ଏମାନେ ସମସ୍ତେ ଆପଣଙ୍କ ତେଜଧାରଣ କରିବାକୁ ସମର୍ଥ ହେବେ ନାହିଁ । ଅତଏବ ଏହି ସମସ୍ତ ଜଗତ୍ ତେଜଃପ୍ରଭାବରେ ନିଃଶେଷରେ ଦଗ୍‌ଧ ହେବେ । ୬୯ । ହେ ଭଗବନ୍ ପ୍ରଭୋ ! ସୁତରାଂ ଆପଣଙ୍କର ଆମ୍ଭ-ମାନଙ୍କଠାରେ ପ୍ରସନ୍ନ ହେବାର ଉଚିତ । ହେ ସୁରସତ୍ତମ ! ଏହି ଦେବୀଙ୍କ-

ଠାରୁ ଆପଣଙ୍କର ପୁତ୍ର ଜାତ ହେବେ ନାହିଁ । ଅତଏବ ଧୈର୍ଯ୍ୟବଶରୁ ଅତ୍ୟୁତ୍ତମ ଜ୍ୱଳିତ ତେଜକୁ ହ୍ରାସ କରିବା ହେଉନ୍ତୁ ।

ହେ ବିପ୍ରର୍ଷେ ! ଦେବଗଣ ଏହିପରି କହିବାରୁ ଭଗବାନ୍ ବୃଷଧ୍ୱଜ ସେହି ଦେବଗଣଙ୍କୁ "ଏବମସ୍ତୁ" ବୋଲି ପ୍ରତ୍ୟୁତ୍ତର ଦେଲେ । ୭୧ । ବୃଷ-ବାହନ ସେମାନଙ୍କୁ ପ୍ରତ୍ୟୁତ୍ତର କରି ନିଜ ଦେହକୁ ଊର୍ଦ୍ଧ୍ୱଗ କଲେ ଏବଂ ସେହିଦିନଠାରୁ ଊର୍ଦ୍ଧ୍ୱରେତା ହେଲେ । ଅନନ୍ତର ତାଦୃଶରୂପେ ଅପତ୍ୟଙ୍କର ଉଚ୍ଛେଦ ହେବାରୁ ରୁଦ୍ରାଣୀ କ୍ରୁଦ୍ଧ ହୋଇ ସ୍ତ୍ରୀସ୍ୱଭାବସୁଲଭ ରୋଷବଶରୁ ସୁରଗଣଙ୍କୁ ଏହି ପରୁଷ ବାକ୍ୟ କହିଲେ ଯେ, ଆମ୍ଭର ଅପତ୍ୟ କାମସ୍ୱାମୀ ଯେଉଁ ହେତୁରୁ ତୁମ୍ଭମାନଙ୍କ ଦ୍ୱାରା ସନ୍ତାନଲାଭ ବିଷୟରେ ନିବର୍ତ୍ତିତ ହେଲେ, ସେହି କାରଣରୁ ତୁମ୍ଭେମାନେ ସମସ୍ତ ଦେବଗଣ ଅପତ୍ୟହୀନ ହେବ । ୭୪ । ହେ ଆକାଶଗୃହଗଣ ! ତୁମ୍ଭେମାନେ ଯେଉଁପରି ଆମ୍ଭର ସନ୍ତାନ ବିଚ୍ଛେଦ କଲ, ସେହିପରି ତୁମ୍ଭମାନଙ୍କର ମଧ୍ୟ ସନ୍ତାନ ହେବେ ନାହିଁ । ୭୫ ।

ହେ ଭୃଗୁନନ୍ଦନ ! ସେହି ଶାପ ଦାନ ସମୟରେ ପାବକ ସେଠାରେ ଉପସ୍ଥିତ ନ ଥିଲେ, ଦେବୀଙ୍କର ତାଦୃଶ ଶାପବଶରୁ ଦେବଗଣ ତଦବଧି ଅନପତ୍ୟ ହେଲେ । ୭୬ । ତେତେବେଳେ ରୁଦ୍ର ଅପ୍ରତିମ ତେଜ ଧାରଣ କରିଥିଲେ । ତତ୍ପରେ ତାହାଙ୍କଠାରୁ କିଞ୍ଚିତ୍ ତେଜ ସ୍ଖଳିତ ହୋଇ ଭୂତଳରେ ପତିତ ହେଲା । ୭୭ । ସେହି ଅଦ୍ଭୁତୋପମ ତେଜ ଭୂତଳରେ ପତିତ ହେବାମାତ୍ରେ ବହ୍ନିରେ ମିଳିତ ହୋଇ ବୃଦ୍ଧି ପ୍ରାପ୍ତ ହେଲା । ତେଜ ତେଜରେ ସଂଯୁକ୍ତ ହୋଇ ଆତ୍ମଯୋନିତ୍ୱ ପ୍ରାପ୍ତ ହେଲା । ୭୮ । ଏହି ସମୟରେ ଇନ୍ଦ୍ରାଦି ଦେବଗଣ ତାରକ ନାମକ ଅସୁର କର୍ତ୍ତୃକ ଅତ୍ୟନ୍ତ ସନ୍ତାପିତ ହୋଇଥିଲେ । ୭୯ । ଆଦିତ୍ୟଗଣ, ବସୁଗଣ, ରୁଦ୍ରଗଣ, ମରୁଦ୍‌ଗଣ, ଅଶ୍ୱିନୀକୁମାରଯୁଗଳ ଓ ସାଧ୍ୟଗଣ ସମସ୍ତେ ଦୈତେୟ ତାରକର ପରାକ୍ରମବଶରୁ ସନ୍ତ୍ରସ୍ତ ହୋଇଥିଲେ । ୮୦ । ଦେବତାମାନଙ୍କର ସ୍ଥାନ, ବିମାନ ଓ ପୁରସମୂହ ଓ ଋଷିଗଣଙ୍କ ଆଶ୍ରମସମୂହ ଅସୁରଗଣ ହରଣ କରିଥିଲେ । ୮୧ । ଅଜର ଓ ଋଷିଗଣ ଦୀନମନରେ ଅଜର ଅମର ବିଭୁ ବ୍ରହ୍ମାଙ୍କର ଶରଣାଗତ ହେଲେ । ୮୨ ।

---

## ଅଧ୍ୟାୟ—୮୫

ଦେବଗଣ କହିଲେ, ହେ ପ୍ରଭୋ ! ଆପଣ ଯାହାଙ୍କୁ ବର ଦାନ କରିଅଛନ୍ତି, ସେହି ତାରକ ନାମକ ମହାସୁର ଦେବତା ଓ ଋଷିଗଣଙ୍କୁ କ୍ଳେଶପ୍ରଦାନ କରୁଅଛନ୍ତି । ଅତଏବ ତଦୀୟ ବଧବିଧାନ କରିବା ହେଉନ୍ତୁ ।୧।

ହେ ପିତାମହ ! ତାହାଙ୍କଠାରୁ ଆମ୍ଭମାନଙ୍କର ଭୟ ଜନ୍ମିଅଛି । ଅତଏବ ହେ ଦେବ ! ଆପଣ ପରିତ୍ରାଣ କରନ୍ତୁ । ଆମ୍ଭମାନଙ୍କର ଅନ୍ୟ ଗତି ନାହିଁ । ୨ । ବ୍ରହ୍ମା କହିଲେ, ଇହଲୋକରେ ସର୍ବପ୍ରାଣୀ ମୋହଯୁକ୍ତ ଅଧର୍ମର ଅଭିଳାଷ କରନ୍ତି ନାହିଁ । ଅତଏବ ସୁରଗଣ ଓ ଋଷିଗଣଙ୍କର ପୀଡ଼ନକାରକ ତାରକାସୁରଙ୍କୁ ଶୀଘ୍ରରେ ନିହତ କର । ୩ । ହେ ସୁରସତ୍ତମବୃନ୍ଦ ! ବେଦ ଓ ଧର୍ମସମୂହ ଉଚ୍ଛେଦପ୍ରାପ୍ତ ହେବ ନାହିଁ । ତଦ୍‌ବିଷୟରେ ଆମ୍ଭେ ପୂର୍ବେ ବିଧାନ କରିଅଛୁ । ଅତଏବ ତୁମ୍ଭମାନଙ୍କ ସନ୍ତାପ ଦୂରୀଭୂତ ହେଉ । ୪ ।

ଦେବଗଣ କହିଲେ, ଆପଣଙ୍କ ବରପ୍ରଭାବରେ ସେହି ଦୈତ୍ୟବଳ ଗର୍ବିତ ହୋଇଅଛନ୍ତି, ଅତଏବ ଦେବଗଣ ତାହାଙ୍କ ନିଧନ ସାଧନ କରିବାକୁ ସମର୍ଥ ହେବେ ନାହିଁ । ସୁତରାଂ ସେ କେଉଁପରି ପ୍ରଶାନ୍ତ ହେବେ ? । ୫ । ହେ ପିତାମହ ! ସେହି ତାରକାସୁର "ଆମ୍ଭେ ଦେବ, ଦାନବ ଓ ରାକ୍ଷସଗଣଙ୍କର ବଧ୍ୟ ହେବୁନାହିଁ" ଏହି କଥା କହି ଆପଣଙ୍କ ନିକଟରୁ ବର ଗ୍ରହଣ କରିଅଛନ୍ତି । ୬ । ପୂର୍ବେ ସତ୍ୟଯୁଗରେ ରୁଦ୍ରାଣୀଙ୍କ ଅପତ୍ୟ-କାମନାର ଉଚ୍ଛେଦ ହେବାରୁ ସେ ସମସ୍ତ ଦେବଗଣଙ୍କୁ ଏହି କଥା କହି ଅଭିସମ୍ପାତ କରିଅଛନ୍ତି ଯେ ତୁମ୍ଭମାନଙ୍କର ସନ୍ତାନ ହେବ ନାହିଁ । ୭ ।

ବ୍ରହ୍ମା କହିଲେ, ହେ ସୁରୋତ୍ତମଗଣ ! ସେହି ଶାପ ଦାନ କାଳରେ ହୁତାଶନ ସେଠାରେ ନ ଥିଲେ, ସେ ତ୍ରିଦଶଦ୍ୱେଷିମାନଙ୍କ ବଧ ନିମିତ୍ତ ଅପତ୍ୟ ଉତ୍ପାଦନ କରିବେ । ୮ । ସେହି ସନ୍ତାନ, ଦେବ, ଦାନବ, ରାକ୍ଷସ, ମନୁଷ୍ୟ, ଗନ୍ଧର୍ବ, ନାଗ ଓ ପକ୍ଷିଗଣଙ୍କୁ ଅତିକ୍ରମ କରି ଅବ୍ୟର୍ଥପାତ ଶକ୍ତି ଅସ୍ତ୍ରଦ୍ୱାରା ଯାହାଙ୍କଠାରୁ ତୁମ୍ଭମାନଙ୍କର ଭୟ ଜନ୍ମିଅଛି, ସେହି ତାରକା-ସୁରଙ୍କୁ ଓ ଅନ୍ୟାନ୍ୟ ସୁର ଶତ୍ରୁବୃନ୍ଦଙ୍କୁ ନିହତ କରିବେ । ୧୦ । ସନାତନ ସଂକଳ୍ପକାମ ଏହି ରୂପ ନାମରେ ଅଭିହିତ ହୁଏ । ରୁଦ୍ରଙ୍କର ଯେଉଁ ରେତ ସ୍ଖଳିତ ହୋଇ ଅଗ୍ନିରେ ନିପତିତ ହୋଇଅଛି (୧୧), ସେହି ତେଜୋଗ୍ନି

ଦୁର୍ଦ୍ଧର୍ଷ ପାବକ ସଦୃଶ ଦେବଶତ୍ରୁଗଣଙ୍କ ବଧ ନିମିତ୍ତ ଗଙ୍ଗାରେ ଗୋଟିଏ ମହତ୍ ପ୍ରାଣୀ ଉତ୍ପାଦନ କରିବ । ୧୨ ।

ହୁତାଶନ ଶାପଦାନ ସମୟରେ ଅନୁଦ୍ଦିଷ୍ଟ ଥିଲେ, ସୁତରାଂ ସେ ଶାପଗ୍ରସ୍ତ ହୋଇ ନାହାନ୍ତି; ଅତଏବ ହେ ଦେବଗଣ ! ତାହାଙ୍କଠାରୁ ତୁମ୍ଭମାନଙ୍କର ଭୟହାରୀ ପାବକନନ୍ଦନ ଉତ୍ପନ୍ନ ହେବେ । ୧୩ । ତୁମ୍ଭେ-ମାନେ ପ୍ରଚ୍ଛନ୍ନ ଅନଳଙ୍କୁ ଅନ୍ୱେଷଣ କରି ଏହି କାର୍ଯ୍ୟରେ ନିଯୁକ୍ତ କର । ହେ ଅନଘଗଣ ! ଆମ୍ଭେ ତାରକାସୁରଙ୍କର ଏହି ବଧୋପାୟ କହିଲୁ ।୧୪। ତେଜସ୍ୱୀଗଣଙ୍କ ଅଭିସମ୍ପାତ ତେଜଃପଦାର୍ଥକୁ ଅଭିଭବ କରିପାରେ ନାହିଁ । ବଳସମୂହ ପ୍ରବଳ ନିକଟରେ ଦୁର୍ବଳ ହୋଇଥାଏ । ୧୫ । ତପସ୍ୱୀଗଣ ଅବଧ ବରଦ ବ୍ୟକ୍ତିମାନଙ୍କର ମଧ୍ୟ ବଧସାଧନ କରିବାକୁ ସମର୍ଥ । ସନାତନତମ ଜଗତ୍ପତି ଅନିର୍ଦ୍ଦେଶ୍ୟ ସର୍ବଗ ଓ ସର୍ବଭାବନ ସର୍ବଭୂତର ହୃଦୟଶାୟୀ କାମ୍ୟମାନ ବହ୍ନି ଅପତ୍ୟ ବିଷୟରେ ଅଭିରୁଚିସମ୍ପନ୍ନ ହେଉନ୍ତୁ । ସେ ରୁଦ୍ରାପେକ୍ଷା ଜ୍ୟେଷ୍ଠ ଓ ସର୍ବଶକ୍ତିମାନ୍ ଅଟନ୍ତି । ୧୭ । ତୁମ୍ଭେମାନେ ଏତେବେଳେ ତେଜୋରାଶି ହୁତାଶନଙ୍କୁ ଅବିଲମ୍ବରେ ଅନ୍ୱେଷଣ କର । ସେହି ଦେବ ତୁମ୍ଭମାନଙ୍କର ମନୋଗତ କାମ ସମ୍ପାଦନ କରିବେ ।

ତଦନନ୍ତର ଦେବଗଣ ମହାନୁଭବ ବ୍ରହ୍ମାଙ୍କର ଏହି ବାକ୍ୟ ଶ୍ରବଣ ପୂର୍ବକ ସିଦ୍ଧସଙ୍କଳ୍ପ ହୋଇ ବିଭାବସୁଙ୍କ ଅନ୍ୱେଷଣ ନିମିତ୍ତ ଗମନ କଲେ । ୧୯ । ଋଷିଗଣ ଓ ଦେବଗଣ ସମସ୍ତେ ତଦ୍‌ଗତଚିତ୍ତ ହୋଇ ହୁତାଶନଙ୍କ ଦର୍ଶନ ଅପେକ୍ଷାରେ ତ୍ରିଭୁବନ ମଧ୍ୟରେ ଅନ୍ୱେଷଣ କଲେ । ହେ ଭୃଗୁଶ୍ରେଷ୍ଠ ! ପରମ ତପସ୍ୟାନ୍ୱିତ ଲୋକବିଖ୍ୟାତ ଶ୍ରୀସମ୍ପନ୍ନ ସିଦ୍ଧବୃନ୍ଦ ଅନଳଙ୍କ ଅନ୍ୱେଷଣ ନିମିତ୍ତ ଲୋକସମୂହରେ ବିଚରଣ କଲେ । ୨୧ । କିନ୍ତୁ ଜଳ ମଧ୍ୟରେ ବିଲୀନ ଅତଏବ ଅଦର୍ଶନଗତ ଅନଳଙ୍କୁ ଅବଗତ ହୋଇ ପାରିଲେ ନାହିଁ ।

ତଦନନ୍ତର ଅଗ୍ନିଙ୍କ ତେଜରେ ପ୍ରଦୀପିତ କ୍ଳାନ୍ତଚିତ୍ତ ଗୋଟିଏ ଜଳଚର ମଣ୍ଡୁକ ରସାତଳ ତଳରୁ ସମୁତ୍ଥିତ ହୋଇ ଅନଳଙ୍କ ଦର୍ଶନ ନିମିତ୍ତ ଲାଳସୀ ତ୍ରାସଯୁକ୍ତ ଦେବଗଣଙ୍କୁ କହିଲା, ହେ ଦେବଗଣ ! ଅଗ୍ନି ରସାତଳରେ ବସତି କରିଅଛନ୍ତି, ଆମ୍ଭେ ପାବକପ୍ରଭବ ସନ୍ତାପବଶରୁ ଏହି ସ୍ଥାନକୁ ଆସିଅଛୁ । ୨୪ । ହେ ଦେବଗଣ ! ସେହି ଭଗବାନ୍ ହବ୍ୟବାହନ ନିଜ ତେଜଦ୍ୱାରା ଜଳରାଶିର ସଂସର୍ଗ କରି ତନ୍ମଧ୍ୟରେ ସଂସୁପ୍ତ ହୋଇ ରହି-ଅଛନ୍ତି । ଆମ୍ଭେମାନେ ତାହାଙ୍କ ଦ୍ୱାରା ସନ୍ତାପିତ ହୋଇଅଛୁ । ୨୫ । ହେ

ଦେବଗଣ ! ତାହାଙ୍କୁ ଦର୍ଶନ କରିବା ନିମିତ୍ତ ଆପଣମାନଙ୍କର ଯଦି ଅଭିଳାଷ ଅଛି ଏବଂ ତଦ୍ଦ୍ୱାରା ଆପଣମାନଙ୍କର କୌଣସି କାର୍ଯ୍ୟ ସାଧନର ପ୍ରୟୋଜନ ଅଛି, ତେବେ ସେହି ସ୍ଥାନରେ ତାହାଙ୍କୁ ପ୍ରାପ୍ତ ହେବେ, ଗମନ କରିବା ହେଉନ୍ତୁ । ହେ ସୁରଗଣ ! ଆମ୍ଭେ ଅଗ୍ନିଭୟରେ କାତର ହୋଇ-ଅଛୁ, ଅତଏବ ଯାଉଅଛୁ । ମଣ୍ଡୂକ ଏହି କଥା କହି ସତ୍ୱର ସଲିଳରେ ପ୍ରବେଶ କଲା । ୨୭ ।

ତେତେବେଳେ ହୁତାଶନ ମଣ୍ଡୂକର ଖଳତା ଅବଗତ ହେଲେ ଏବଂ ସେ ତାହାଙ୍କୁ "ତୁମ୍ଭର ରସଜ୍ଞାନ ହେବନାହିଁ" ଏହି କଥା କହି ଅଭିସମ୍ପାତ କଲେ । ୨୮ । ସର୍ବଶକ୍ତିମାନ୍ ଶିଖାବାନ୍ ମଣ୍ଡୂକକୁ ଏହିପରି ଶାପଯୁକ୍ତ କରି ବାସ ନିମିତ୍ତ ସତ୍ୱର ହୋଇ ଅନ୍ୟତ୍ର ଗମନ କଲେ । ଦେବଗଣଙ୍କୁ ଦର୍ଶନ ଦେଲେ ନାହିଁ । ୨୯ । ହେ ମହାବାହୋ ! ଭୃଗୁବର ! ଦେବଗଣ ମଣ୍ଡୂକମାନଙ୍କଠାରେ ଯେଉଁପରି ଅନୁଗ୍ରହ କଲେ ଆମ୍ଭେ ତାହା ସବୁ କହୁଅଛୁଁ, ଶ୍ରବଣ କର । ୩୦ ।

ଦେବଗଣ କହିଲେ, ଅଗ୍ନିଙ୍କ ଶାପବଶରେ ତୁମ୍ଭେମାନେ ଯଦି ଜିହ୍ୱାହୀନ ଓ ରସଜ୍ଞାନ ବିବର୍ଜିତ ହେଲ, ତଥାପି ତ ତୁମ୍ଭେମାନେ ବହୁବିଧ ବାକ୍ୟ ଉଚ୍ଚାରଣ କରିବ । ୩୧ । ବିଳବାସୀ, ନିରାହାର, ଅଚେତନ, ଗତପ୍ରାଣ ଓ ଶୁଷ୍କ ହେଲେ ସୁଦ୍ଧା ଭୂଦେବୀ ତୁମ୍ଭମାନଙ୍କୁ ଧାରଣ କରିବେ ।୩୨। ତୁମ୍ଭେ-ମାନେ ଘୋରତର ଅନ୍ଧକାରାଚ୍ଛନ୍ନ ରଜନୀରେ ବିଚରଣ କରିବ । ଦେବଗଣ ମଣ୍ଡୂକମାନଙ୍କୁ ଏହି କଥା କହି ଅନଳଙ୍କ ଅନ୍ୱେଷଣ ନିମିତ୍ତ ପୁନଶ୍ଚ ଏହି ଅବନୀମଣ୍ଡଳରେ ପର୍ଯ୍ୟଟନ କଲେ; କିନ୍ତୁ ହୁତାଶନଙ୍କୁ ଦେଖିଲେ ନାହିଁ । ହେ ଭୃଗୁଦ୍ୱହ ! ତଦନନ୍ତର ସୁରେନ୍ଦ୍ରଙ୍କ ଦ୍ୱିରଦ ସଦୃଶ କୌଣସି ମତଙ୍ଗଜ "ଅଗ୍ନି ଅଶ୍ୱତ୍ଥ ବୃକ୍ଷରେ ଅବସ୍ଥିତି କରିଅଛନ୍ତି" ବୋଲି ଏହି କଥା ଦେବଗଣଙ୍କୁ କହିଲା । ତେତେବେଳେ ଜ୍ୱଳନ, କ୍ରୋଧରେ ପ୍ରଦୀପ୍ତ ହୋଇ ସମସ୍ତ ଦ୍ୱିରଦଗଣଙ୍କୁ ଶାପ ପ୍ରଦାନ କଲେ । ୩୫ । ହେ ଭୃଗୁବଂଶ-ଧୁରନ୍ଧର ! ବାରଣଦ୍ୱାରା ସୂଚିତ ହୁତାଶନ "ତୁମ୍ଭମାନଙ୍କ ଜିହ୍ୱା ବିପର୍ଯ୍ୟସ୍ତା ହେବ" ହସ୍ତିଗଣଙ୍କୁ ଏହିପରି ଶାପ ପ୍ରଦାନପୂର୍ବକ ଅଶ୍ୱତ୍ଥ ବୃକ୍ଷରୁ ନିଃସୃତ ହେଲେ ଏବଂ ଶୟନେଚ୍ଛା ହେତୁରୁ ଶମୀଗର୍ଭରେ ପ୍ରବେଶ କଲେ । ହେ ଭୃଗୁକୁଳଶ୍ରେଷ୍ଠ ! ସତ୍ୟପରାକ୍ରମ ଦେବଗଣ ପ୍ରୀତିବଶରୁ ମାତଙ୍ଗଗଣଙ୍କଠାରେ ଯେଉଁପରି ଅନୁଗ୍ରହ କଲେ, ତାହା ଶ୍ରବଣ କର । ୩୬ । ଦେବଗଣ କହିଲେ, ତୁମ୍ଭେମାନେ ବିପର୍ଯ୍ୟସ୍ତ ଜିହ୍ୱାଦ୍ୱାରା ସମସ୍ତ ବସ୍ତୁ ଆହାର କରିବ

ଏବଂ ଉଚ୍ଚୈଃସ୍ୱରରେ ଅବ୍ୟକ୍ତ ଅକ୍ଷରଯୁକ୍ତ ବାକ୍ୟ ଉଚ୍ଚାରଣ କରିବ ।୩୮। ସୁରଗଣ ଏହି କଥା କହି ପୁନଷ୍ଟ ଅନଳଙ୍କ ଅନ୍ୱେଷଣ କଲେ । ଅଗ୍ନି ମଧ୍ୟ ଅଶ୍ୱତ୍ଥ ବୃକ୍ଷରୁ ନିଃସୃତ ହୋଇ ଶମୀଗର୍ଭରେ ଉପବିଷ୍ଟ ହୋଇ ରହିଲେ । ୩୯ ।

ତଦନନ୍ତର ସୁରଗଣ ଶୁକଦ୍ୱାରା ଅଗ୍ନି ଶମୀବୃକ୍ଷରେ ଥିବାର ଜାଣି ସେହି ସ୍ଥାନକୁ ଧାବିତ ହେଲେ । ସେତେବେଳେ ଅଗ୍ନି ଶୁକପକ୍ଷୀକୁ "ତୁମ୍ଭେ ବାକ୍ୟହୀନ ହେବ" ଏହା କହି ଅଭିଶାପ ପ୍ରଦାନ କଲେ ଏବଂ ତାହାର ଜିହ୍ୱାକୁ ଆବର୍ତ୍ତିତ କଲେ । ଦେବଗଣ ଅନଳଙ୍କୁ ଅବଲୋକନ କରି ଦୟାନ୍ୱିତ ହୋଇ ଶୁକକୁ କହିଲେ (୪୧) ହେ ଶୁକ ! ତୁମ୍ଭ ବାକ୍ୟ ଅତ୍ୟନ୍ତ ନଷ୍ଟ ହେବନାହିଁ । ଜିହ୍ୱା ଆବୃତ୍ତ ହେଲେ ସୁଦ୍ଧା ତୁମ୍ଭ ବାକ୍ୟ ବର୍ଦ୍ଧମାନ ବାଳକସଦୃଶ ମଧୁର ଅବ୍ୟକ୍ତ ଅଦ୍ଭୁତ ଓ ମନୋହର ହେବ । ୪୨ । ସୁରଗଣ ଶୁକବିହଙ୍ଗକୁ ଏହି କଥା କହି ଶମୀଗର୍ଭରେ ହୁତାଶନଙ୍କୁ ନିରୀକ୍ଷଣ କରି ସେହି ଶମୀତରୁକୁ ସମସ୍ତ କ୍ରିୟା ବିଷୟରେ ପବିତ୍ର ଆୟତନ କଲେ । ତଦବଧି ଅଗ୍ନି ଶମୀଗର୍ଭରେ ଦୃଶ୍ୟମାନ ହେଉଅଛନ୍ତି । ୪୪ । ମାନବଗଣ ସେହି ସମୟରୁ ଶମୀଶାଖାଦ୍ୱାରା ଅଗ୍ନି ଉତ୍ପାଦନର ଉପାୟ ଅବଗତ ହେଲେ ।

ରସାତଳରେ ଯେଉଁ ଜଳରାଶି କୃଶାନୁକର୍ତ୍ତୃକ ସଂସ୍ପୃଷ୍ଟ ହୋଇ- ଥିଲା, ଯହିଁରେ ଅଗ୍ନି ଅଧିଶୟନ କରିଥିଲେ ଏବଂ ଯେଉଁ ଜଳସମୂହ ଅଗ୍ନିତେଜରେ ସନ୍ତପ୍ତ ହୋଇଥିଲେ, ହେ ଭାର୍ଗବ ! ସେହିମାନେ ପର୍ବତ ପ୍ରସ୍ରବଣଦ୍ୱାରା ଉଷ୍ମ ପ୍ରମୋଚନ କରୁଅଛନ୍ତି । ସେତେବେଳେ ଅଗ୍ନି ଦେବତା- ମାନଙ୍କୁ ଦେଖି ବ୍ୟଥିତ ହେଲେ ଏବଂ ସେମାନଙ୍କୁ ଆଗମନର କାରଣ ପଚାରିଲେ । ୪୭ । ସେହି ବିବୁଧବୃନ୍ଦ ଓ ପରମ ଋଷିଗଣ ଅଗ୍ନିଙ୍କୁ କହିଲେ, ଆମ୍ଭେମାନେ ଆପଣଙ୍କୁ କୌଣସି କାର୍ଯ୍ୟରେ ନିଯୁକ୍ତ କରିବୁଁ । ଆପଣ ତାହା କରିବାକୁ ଉପଯୁକ୍ତ ଅଟନ୍ତି । ୪୮ । ସେହି କାର୍ଯ୍ୟ କଲେ ଆପଣଙ୍କର ଉତ୍କୃଷ୍ଟ ଗୁଣ ଜାତ ହେବ । ୪୯ । ଅଗ୍ନି କହିଲେ, ହେ ସୁରଗଣ ! ଆପଣମାନଙ୍କର କେଉଁ କାର୍ଯ୍ୟ ଅଛି, ତାହା କହିବା ହେଉନ୍ତୁ । ଆମ୍ଭେ ତାହା କରିବୁଁ । ଆମ୍ଭେ ଆପଣମାନଙ୍କର ନିଯୋଜ୍ୟ; ଏହି ବିଷୟରେ ଆପଣମାନେ କିଛି ବିଚାରଣା କରନ୍ତୁ ନାହିଁ । ୫୦ ।

ଦେବଗଣ କହିଲେ, ତାରକା ନାମକ ଦୈତ୍ୟ ବ୍ରହ୍ମାଙ୍କ ବରରେ ଦର୍ପିତ ହୋଇ ବୀର୍ଯ୍ୟବଶରୁ ଆମ୍ଭମାନଙ୍କୁ ବାଧା ଦେଉଅଛି । ଅତଏବ ତାହାର

ବଧ ବିଧାନ କରିବା ହେଉନ୍ତୁ । ୫୧ । ହେ ତାତ ! ମହାଭାଗ ପାବକ ! ଏହି ସମସ୍ତ ଦେବଗଣ, ପ୍ରଜାପତିଗଣ ଓ ଋଷିଗଣଙ୍କୁ ପରିତ୍ରାଣ କରିବା ହେଉନ୍ତୁ । ୫୨ । ହେ ପ୍ରଭୋ ! ତେଜଯୁକ୍ତ ପ୍ରବୀରପୁତ୍ର ଉତ୍ପାଦନ କରିବା ହେଉନ୍ତୁ । ହେ ହବ୍ୟବାହନ ! ସେହି ଅସୁର ହେତୁରୁ ଆମ୍ଭମାନଙ୍କର ଯେଉଁ ଭୟ ଜନ୍ମିଅଛି, ତାହା ବିନାଶ କର । ୫୩ । ଆମ୍ଭେମାନେ ମହାଦେବୀ କର୍ତ୍ତୃକ ଅଭିଶପ୍ତ ହୋଇଅଛୁଁ । ସମ୍ପ୍ରତି ଭବଦୀୟ ବୀର୍ଯ୍ୟ ବ୍ୟତିରେକେ ଆମ୍ଭମାନଙ୍କର ଅନ୍ୟ ଆଶ୍ରୟ ନାହିଁ । ଅତଏବ ହେ ପ୍ରଭୋ ! ଆମ୍ଭମାନଙ୍କୁ ପରିତ୍ରାଣ କର । ୫୪ ।

ତଦନନ୍ତର ଦୁର୍ଦ୍ଧର୍ଷ ଭଗବାନ୍ ହବ୍ୟବାହନ "ତାହା ହେଉ" ଏହି କଥା କହି ଭାଗୀରଥୀ ଗଙ୍ଗାଙ୍କୁ ଉଦ୍ଦେଶ କରି ଗମନ କଲେ । ୫୫ । ସେ ଗଙ୍ଗାଙ୍କ ନିକଟକୁ ଗମନପୂର୍ବକ ତାହାଙ୍କ ସହିତ ସଙ୍ଗତ ହେଲେ ଏବଂ ସେତେବେଳେ ତାହାଙ୍କୁ ଗର୍ଭାଧାନ କଲେ । ତଦୀୟ କକ୍ଷ ମଧ୍ୟରେ କୃଷ୍ଣବର୍ତ୍ମ ସଦୃଶ ସେହି ଗର୍ଭ ବର୍ଦ୍ଧିତ ହେଲା । ୫୬ । ହୁତାଶନଙ୍କ ତେଜଦ୍ୱାରା ଗଙ୍ଗା ବିହ୍ୱଳଚେତନା ହୋଇ ତୀବ୍ର ସନ୍ତାପ ପ୍ରାପ୍ତ ହେଲେ, ସେ ସେହି ଯାତନାକୁ ସହ୍ୟ କରିବାକୁ ସମର୍ଥ ହେଲେ ନାହିଁ । ୫୭ । ହବ୍ୟବାହନ-କର୍ତ୍ତୃକ ତେଜଃ ସମନ୍ୱିତ ଗର୍ଭ ଆହିତ ହେବାରୁ କୌଣସି ଅସୁର ଭୟଙ୍କର ନାଦରେ ଗର୍ଜନ କଲା । ୫୮ । ଅକସ୍ମାତ୍ ସମୁତ୍ଥିତ ସେହି ବିପୁଳ ନାଦ-ଦ୍ୱାରା ଗଙ୍ଗାଦେବୀ ବିତ୍ରସ୍ତା, ସମ୍ଭ୍ରାନ୍ତନୟନା ବିହ୍ୱଳଚେତନା ଓ ସଙ୍ଜ୍ଞାହୀନା ହୋଇ ଗର୍ଭ ଓ ଦେହ ବହନ କରିବାକୁ ଅସମର୍ଥ ହେଲେ ।

ହେ ବିପ୍ର ! ସେତେବେଳେ ଜାହ୍ନବୀ ତେଜଃ ପରିତାପୀ, କମ୍ପମାନା ଓ ଗର୍ଭବଳରେ ଆକ୍ରାନ୍ତା ହୋଇ ଜ୍ୱଳନଙ୍କୁ କହିଲେ, ହେ ଭଗବନ୍ ! ଆମ୍ଭେ ଆପଣଙ୍କର ଏହି ତେଜ ଧାରଣ କରିବାକୁ ସମର୍ଥ ନୋହୁଁ । ଆମ୍ଭେ ଏହି ତେଜଦ୍ୱାରା ବିମୂଢ଼ ହୋଇଅଛୁଁ । ପୂର୍ବପରି ଆମ୍ଭର ସ୍ୱାସ୍ଥ୍ୟ ନାହିଁ ।

ହେ ଅନଘ ! ଭଗବନ୍ ! ଆମ୍ଭେ ବିହ୍ୱଳା ହୋଇଅଛୁ, ଆମ୍ଭର ଚୈତନ୍ୟ ନଷ୍ଟ ହୋଇଅଛି । ୬୨ । ହେ ତପତାଂବର ! ଆମ୍ଭେ ଏହି ଗର୍ଭର ତେଜ ଧାରଣ କରିବାକୁ ସମର୍ଥ ନୋହୁ, ଅତଏବ ଆମ୍ଭେ ଦୁଃଖବଶରୁ ଏହା ପରିତ୍ୟାଗ କରୁଅଛୁ, ନଚେତ୍ କୌଣସି ପ୍ରକାରରେ ଇଚ୍ଛାନୁସାରେ ଏହା ତ୍ୟାଗ କରୁନାହୁଁ । ୬୩ । ହେ ଦେବ ବିଭାବସୋ ! ଆମ୍ଭର କଦାପି କୌଣସି ତେଜ ସହିତ ସମ୍ପର୍କ ନାହିଁ । ହେ ମହାଦ୍ୟୁତେ ! ଆପଦ ନିମିତ୍ତ

ଆପଣଙ୍କ ସହିତ ଏହି ଅତି ସୂକ୍ଷ୍ମ ସମ୍ବନ୍ଧ ହେଲା । ୬୪ । ହେ ହୁତାଶନ ! ଆମ୍ଭେ ବିବେଚନା କରୁଅଛୁ, ଏହି ବିଷୟରେ ଦୋଷ, ଗୁଣସମୂହ, ଅଥବା କେବଳ ଧର୍ମାଧର୍ମ ଯାହା ହେବ, ତାହା ଆପଣଙ୍କର । ୬୫ ।

ତଦନନ୍ତର ହୁତାଶନ ତାହାଙ୍କୁ କହିଲେ, ଆମ୍ଭର ତେଜଃସମନ୍ୱିତ ଗର୍ଭକୁ ଧାରଣ କର; ଏହାଦ୍ୱାରା ମହାଗୁଣ ଓ ଫଳୋଦୟ ହେବ । ୬୬ । ତୁମ୍ଭେ ନିଜ ଶକ୍ତିବଳରେ ଏହି ଅଖଣ୍ଡ ଭୂମଣ୍ଡଳକୁ ଧାରଣ ଓ ବହନ କରିବାକୁ ସମର୍ଥ ଅଟ; ଗର୍ଭଧାରଣ ବ୍ୟତିରେକେ ତୁମ୍ଭର ଅନ୍ୟ କିଛି ଅପ୍ରାପ୍ୟ ନାହିଁ । ୬୭ । ସରିଦ୍‌ବରା ଗଙ୍ଗା ବହ୍ନି ଓ ଦେବଗଣ କର୍ତ୍ତୃକ ନିବାରିତା ହୋଇ ସୁଦ୍ଧା ଗର୍ଭଧାରଣ ବିଷୟରେ ଅସମର୍ଥା ହୋଇ ତେତେବେଳେ ଗିରିବର ସୁମେରୁର ଉପରିଭାଗରେ ସେହି ଗର୍ଭ ବିମୋଚନ କଲେ । ୬୮ । ସେ ଗର୍ଭଧାରଣ କରିବାକୁ ସମର୍ଥ ହେଲେ ସୁଦ୍ଧା ରୁଦ୍ରରୂପ ଅଗ୍ନିଙ୍କ ତେଜରେ ପ୍ରଧର୍ଷିତ ହୋଇଥିବାରୁ ନିଜ ତେଜରେ ଗର୍ଭକୁ ଧାରଣ କରି ପାରିଲେ ନାହିଁ । ୬୯ ।

ହେ ଭୃଗୁକୁଳଧୁରନ୍ଧର ! ନଦୀଶ୍ରେଷ୍ଠା ଗଙ୍ଗାଦେବୀ ସେହି ବୈଶ୍ୱାନରଙ୍କ ସଦୃଶ ପ୍ରଭାସମ୍ପନ୍ନ ପ୍ରଦୀପ୍ତଗର୍ଭ ପରିତ୍ୟାଗ ପୂର୍ବକ ଅବସ୍ଥାନ କଲାରୁ ଅଗ୍ନି ତାହାଙ୍କୁ ଦର୍ଶନ ଦେଲେ ଏବଂ କହିଲେ, ହେ ଦେବି ! ଗର୍ଭ ସୁଖରେ ଉଦିତ ହୋଇଅଛି ତ ? ତାହାର ବର୍ଣ୍ଣ କି ପ୍ରକାର ଏବଂ କେଉଁ ପ୍ରକାର ରୂପ ଦୃଷ୍ଟ ହେଉଅଛି ଓ ତାହା କୀଦୃଶ ତେଜଃସମନ୍ୱିତ ? ଏହି ସମସ୍ତ ବିଷୟ ଆମ୍ଭ ନିକଟରେ ପ୍ରକଟ କର । ୭୧ ।

ଗଙ୍ଗା କହିଲେ, ହେ ଅନଘ ! ସେହି ଗର୍ଭ ସୁବର୍ଣ୍ଣ ବର୍ଣ୍ଣ ଏବଂ ତେଜରେ ଆପଣଙ୍କ ସଦୃଶ, ବିମଳ ସୁବର୍ଣ୍ଣ ସମ ପ୍ରଦୀପ୍ତ ଗର୍ଭ ପର୍ବତକୁ ସମୁଜ୍ଜ୍ୱଳ କରିଅଛି । ୭୨ । ହେ ତପତାଂବର ! ସେହି ଗର୍ଭ ପଦ୍ମୋତ୍ପଳ ବିମିଶ୍ର ହ୍ରଦବୃନ୍ଦ ସଦୃଶ ଶୀତଳ, ତାହାର ଗନ୍ଧ କଦମ୍ବକୁସୁମ ସଦୃଶ, ଭାସ୍କର ସଦୃଶ,ତେଜଃ ସମନ୍ୱିତ ସେହି ଗର୍ଭର ରଶ୍ମିସମୂହଦ୍ୱାରା ପୃଥିବୀ ଓ ପର୍ବତ ସମୂହରେ ଯେଉଁ ଯେଉଁ ଦ୍ରବ୍ୟ ସଂସୃଷ୍ଟ ହୋଇଅଛି, ତାହା ସବୁ ସର୍ବତ୍ରରେ କାଞ୍ଚନ ସ୍ୱରୂପରେ ଦୃଶ୍ୟ ହେଉଅଛନ୍ତି । ସେହି ଗର୍ଭ ତେଜଦ୍ୱାରା ସ୍ଥାବର ଜଙ୍ଗମାତ୍ମକ ତ୍ରିଭୁବନକୁ ପ୍ରଦୀପ୍ତ କରି ଶୈଳ, ସରିତ୍ ଓ ପ୍ରସ୍ରବଣ ସମୂହରେ ଧାବିତ ହେଉଅଛି । ହେ ହବ୍ୟବାହନ ! ଆପଣଙ୍କ ପୁତ୍ର ଏହିପରି ଐଶ୍ୱର୍ଯ୍ୟସମ୍ପନ୍ନ ଯେ ତେଜରେ ସୂର୍ଯ୍ୟ ଏବଂ ବୈଶ୍ୱାନରସଦୃଶ ଏବଂ କାନ୍ତିରେ ଦ୍ୱିତୀୟ ସୁଧାକର ହୋଇଅଛନ୍ତି । ୭୬ ।

ହେ ଭୃଗୁନନ୍ଦନ ! ଭଗୀରଥୀ ଦେବୀ ଏହିପରି କହି ସେହି ସ୍ଥାନରେ ଅନ୍ତର୍ହିତା ହେଲେ, ତେତେବେଳେ ତେଜସ୍ୱୀ ପାବକ ମଧ୍ୟ ଦେବଗଣଙ୍କ କାର୍ଯ୍ୟ ସାଧନ ପୂର୍ବକ ଅଭିଲଷିତ ଦେଶକୁ ଗମନ କଲେ । ଏହି ସମସ୍ତ କର୍ମ ଓ ଗୁଣବଶରୁ ଲୋକରେ ସୁରଗଣ ଓ ଋଷିଗଣ କର୍ତ୍ତୃକ ଅଗ୍ନିଙ୍କର "ହିରଣ୍ୟରେତା" ଏହି ନାମ କୀର୍ତ୍ତିତ ହେଉଅଛି । ପୃଥିବୀ ମଧ୍ୟ ତଦବଧି ବସୁମତୀ ନାମରେ ଖ୍ୟାତ ହୋଇଅଛନ୍ତି । ୭୯ । ଗଙ୍ଗାଙ୍କ ଗର୍ଭରୁ ବିଚ୍ୟୁତ ପାବକୋଦ୍ଭବ ଅଦ୍ଭୁତ ଦର୍ଶନ ମହାତେଜଃସମ୍ପନ୍ନ ସେହି ଗର୍ଭ ଦିବ୍ୟ ଶରବଣ ପ୍ରାପ୍ତ ହୋଇ ସେହିଠାରେ ବର୍ଦ୍ଧିତ ହେଲେ । ୮୦ । କୃତ୍ତିକାଗଣ ବାଳାର୍କସଦୃଶ ଦ୍ୟୁତିସମ୍ପନ୍ନ ସେହି ସନ୍ତାନଙ୍କୁ ଦର୍ଶନ କଲେ । ସେହିମାନେ ସେହି ବାଳକପୁତ୍ରଙ୍କୁ ସ୍ତନ୍ୟ ଦୁଗ୍ଧଦ୍ୱାରା ପୋଷଣ କଲେ । ୮୧ । ସେହି କାରଣରୁ ପରମଦ୍ୟୁତି ସେହି ବାଳକଙ୍କ ନାମ କାର୍ତ୍ତିକେୟ ହେଲା । ଗଙ୍ଗାଙ୍କ ଗର୍ଭରୁ ସ୍ଖଳିତ ହୋଇଥିବାରୁ ତାହାଙ୍କ ନାମ ସ୍କନ୍ଦ ଏବଂ ଗୁହାମଧ୍ୟରେ ବାସ କରିଥିବା ବଶରୁ ଗୁହ ନାମ ହେଲା । ୮୨ ।

ଅଗ୍ନିଙ୍କର ଏହିପରି ଅପତ୍ୟ ସୁବର୍ଣ୍ଣ ଉତ୍ପନ୍ନ ହେଲା । ସୁବର୍ଣ୍ଣ ନାନାବିଧ ହେଲେ ସୁଦ୍ଧା ତନ୍ମଧ୍ୟରେ ଜାମ୍ବୁନଦ ନାମକ ସୁବର୍ଣ୍ଣ ସର୍ବଶ୍ରେଷ୍ଠ ଅଟେ । ତାହା ଦେବଗଣଙ୍କର ଭୂଷଣ ହେବାରୁ ତଦବଧି ଜାତବେଦ ନାମରେ ଉଦାହୃତ ହୋଇଅଛି । ଏହା ସମସ୍ତ ରତ୍ନ ମଧ୍ୟରେ ଉତ୍ତମ ରତ୍ନ, ସମସ୍ତ ଭୂଷଣ ମଧ୍ୟରେ ଉତ୍କୃଷ୍ଟ ଭୂଷଣ । ୮୪ । ସମସ୍ତ ପବିତ୍ର ବସ୍ତୁ ଅପେକ୍ଷା ପବିତ୍ର ଏବଂ ସର୍ବପ୍ରକାର ମଙ୍ଗଳମୟ ପଦାର୍ଥସମୂହର ମଙ୍ଗଳସ୍ୱରୂପ । ସୁବର୍ଣ୍ଣ ଭଗବାନ୍, ଅଗ୍ନି, ଈଶ ଓ ପ୍ରଜାପତିଙ୍କ ସ୍ୱରୂପ (୮୫) । ହେ ଦ୍ୱିଜସତ୍ତମ ! କନକ ସମସ୍ତ ପବିତ୍ର ବସ୍ତୁ ମଧ୍ୟରେ ଅତି ପବିତ୍ର, ଜାତରୂପ ଓ ଅଗ୍ନି-ସୋମାତ୍ମକ ରୂପେ ଉଦାହୃତ ହୋଇଅଛି । ୮୬ ।

ବଶିଷ୍ଠ କହିଲେ, ହେ ରାମ ! ପୂର୍ବକାଳରେ ପରମାତ୍ମା ପିତାମହ ବ୍ରହ୍ମାଙ୍କର ଯେ ବ୍ରହ୍ମଦର୍ଶନ ହୋଇଥିଲା, ଆମ୍ଭେ ତାହା ଶ୍ରବଣ କରିଥିଲୁଁ ହେ ତାତ ! ବାରୁଣୀ ମୂର୍ତ୍ତିଧାରୀ ମହାଦେବଙ୍କର ବାରୁଣ ଐଶ୍ୱର୍ଯ୍ୟ ସମୟରେ ଅଗ୍ନି ପ୍ରଭୃତି ଦେବଗଣ ଓ ମୁନିଗଣ ଈଶ୍ୱର ରୁଦ୍ରଦେବଙ୍କ ସନ୍ନିଧିକୁ ଆଗମନ କରିଥିଲେ । ଯଜ୍ଞାଙ୍ଗସମୂହ, ମୂର୍ତ୍ତିମାନ୍ ବଷଟ୍‌କାର (୮୯), ମୂର୍ତ୍ତିଯୁକ୍ତ ସାମ, ସହସ୍ର ସହସ୍ର ଯଜୁର୍ମନ୍ତ୍ର ଏବଂ ପଦ ଓ କ୍ରମ-ବିଭୂଷିତ ଋଗ୍‌ବେଦ ସେଠାକୁ ଆଗମନ କରିଥିଲେ । ୯୦ । ସମସ୍ତ ଲକ୍ଷଣ,

ସୁରଗଣଙ୍କର ସ୍ତୁତି ସମୂହ, ନିରୁକ୍ତ ସୁରସଂକ୍ତି, ଓଁକାର ଓ ନିଗ୍ରହ ପ୍ରଗ୍ରହ ନାମକ ଯଜ୍ଞର ନୈବଦ୍ୟେଷୁ ଏମାନେ ସମସ୍ତେ ସେଠାରେ ଅବସ୍ଥିତ ହେଲେ । ୯୧ । ଉପନିଷଦ ସହିତ ବେଦସମୂହ, ସାବିତ୍ରୀବିଦ୍ୟା, ବର୍ତ୍ତମାନ ଭୂତ ଭବିଷ୍ୟତ୍ ପ୍ରଭୃତିଙ୍କୁ ଭଗବାନ ମହାଦେବ ଧାରଣ କରିଥିଲେ । ୯୨ । ତେତେବେଳେ ସେ ସ୍ୱୟଂ ଆପେ ଆପଣାକୁ ଆହୁତି ପ୍ରଦାନ କଲେ । ପିନାକଧାରୀ ଶିବ ବହୁରୂପ ଯଜ୍ଞକୁ ଶୋଭିତ କଲେ । ୯୩ । ସର୍ବଭୂତପତି ଏହି ଭଗବାନ୍ ମହାଦେବ ସ୍ୱର୍ଗ, ଆକାଶ, ପୃଥିବୀ, ଭୂପତି, ସର୍ବବିଦ୍ୟେଶ୍ୱର, ଶ୍ରୀମାନ୍ ବିଭାବସୁ, ବ୍ରହ୍ମା, ଶିବ, ରୁଦ୍ର, ବରୁଣ, ଅଗ୍ନି ଏବଂ ପ୍ରଜାପତିରୂପେ କୀର୍ତ୍ତିତ ହେଲେ । ୯୫ ।

ହେ ଭୃଗୁକୁଳ ଧୂରନ୍ଧର ! ସେହି ପଶୁପତିଙ୍କ ଯଜ୍ଞ, ତପସ୍ୟା ଓ କ୍ରତୁ ସହମୂର ନିର୍ବାହ ହେଉଥିବା ସମୟରେ ଦୀପ୍ତବ୍ରତା ଦୀକ୍ଷାଦେବୀ, ଦିକ୍‌ପତି ସହିତ ଦିକ୍‌ସମୂହ, ଦେବପତ୍ନୀଗଣ, ଦେବକନ୍ୟାଗଣ ଓ ଦେବ-ମାତୃଗଣ ସମସ୍ତେ ମହାତ୍ମା ବରୁଣଙ୍କଠାରେ ପ୍ରୀତ ହୋଇ ମିଳିତ ଭାବରେ ପଶୁପତିଙ୍କ ଯଜ୍ଞକୁ ଆଗମନ କଲେ । ଦେବକନ୍ୟା ପ୍ରଭୃତିଙ୍କୁ ଦର୍ଶନ କରିବାରୁ ସ୍ୱୟମ୍ଭୂଙ୍କ ରେତଃ ଭୂତଳରେ ପତିତ ହେଲା । ପୂଷା ତାହାଙ୍କ ଶୁକ୍ରର ବିସ୍ପନ୍ଦବଶରୁ ଭୂମିରୁ ପାଣିଯୁଗଳଦ୍ୱାରା ରେତକଣା ସହିତ ପାଂଶୁ ସଂଗ୍ରହ କରି ସେହି ହୁତାଶନରେ ନିକ୍ଷେପ କଲେ ।୯୯। ପ୍ରଜ୍ୱଳିତ ପାବକ-ସମନ୍ୱିତ ସେହି ସତ୍ର ସମ୍ପନ୍ନ ହେଉଥିବା ସମୟରେ ହୋମକର୍ତ୍ତା ପ୍ରଜାପତିଙ୍କ-ଠାରୁ ପରମ ଉତ୍କୃଷ୍ଟ ଧାତୁର ପ୍ରାଦୁର୍ଭାବ ହେଲା । ୧୦୦ । ହେ ଭୃଗୁ-ନନ୍ଦନ! ଧାତୁ ସ୍ଖଳିତ ହେଲାମାତ୍ରେ ସେ ତାହା ସ୍ରୁବ ଦ୍ୱାରା ଗ୍ରହଣ କରି ମନ୍ତ୍ରୋଚ୍ଚାରଣପୂର୍ବକ ଆଜ୍ୟ ସଦୃଶ ହୋମ କଲେ । ୧୦୧ ।

ତତ୍ପରେ ବୀର୍ଯ୍ୟବାନ୍ ଭଗବାନ୍ ବ୍ରହ୍ମା ସେହି ତେଜରୁ ଚତୁର୍ବିଧ ଭୂତସମୂହର ଉତ୍ପାଦନ କଲେ । ଇହଲୋକରେ ତହିଁରୁ ପ୍ରବୃତ୍ତିପ୍ରଧାନ ଜଙ୍ଗମ ଭୂତସମୂହ ଉତ୍ପନ୍ନ ହେଲା । ସେହି ଶୁକ୍ରର ତମ ଅଂଶରୁ ସ୍ଥାବର ସମୂହ ଜନ୍ମିଲା, ସ୍ଥାବର ଜଙ୍ଗମ ଏହି ଉଭୟ ସତ୍ତ୍ୱାଂଶରେ ସନ୍ନିବିଷ୍ଟ ହୋଇ ରହିଲେ । ସେହି ସତ୍ତ୍ୱ ପ୍ରକାଶରୂପା ବୁଦ୍ଧିର ନିତ୍ୟଗୁଣ, ସତ୍ତ୍ୱ ବୁଦ୍ଧି ସ୍ୱରୂପ, ସେହି ବୁଦ୍ଧି ସତ୍ତ୍ୱରୁ ଆକାଶାଦି ସମସ୍ତ ବିଶ୍ୱ ଉତ୍ପନ୍ନ ହେଲା । ତମୋମୟ ଜଡ ଶରୀରରେ ସତ୍ତ୍ୱ ଅର୍ଥାତ୍ ପ୍ରକାଶ ଓ ଉତ୍ତମ ତେଜ ଏବଂ ଧର୍ମ-ପ୍ରବୃତ୍ତି ଅବସ୍ଥିତ ହେଲା । ଅଗ୍ନି ମଧ୍ୟରେ ପ୍ରଜାପତିଙ୍କ ଶୁକ୍ର ହୁତ ହେବାରୁ

ତହିଁରୁ ସ୍ୱ ସ୍ୱ କାରଣଜ ଗୁଣସମୂହ ସହିତ ମୂର୍ତ୍ତିମାନ୍ ପୁରୁଷତ୍ରୟ ପ୍ରାଦୁର୍ଭୂତ ହେଲେ ।

ଅଗ୍ନିଜ୍ୱାଳା ଭୃଗୁଙ୍କଠାରୁ ପ୍ରଥମରେ ଭୃଗୁ ଉତ୍ପନ୍ନ ହେଲେ, ଅଙ୍ଗାରରୁ ଅଙ୍ଗିରା ଜନ୍ମ ପରିଗ୍ରହ କଲେ । ଅଙ୍ଗାର ସଂଶ୍ରିତ ଅଳ୍ପଜ୍ୱାଳାରୁ କବି ନାମକ ଅନ୍ୟ ଜଣେ ପୁରୁଷ ଉଦ୍ଭୂତ ହେଲେ । ଭୃଗୁଜ୍ୱାଳା ମାଳାର ସହିତ ଉତ୍ପନ୍ନ ହୋଇଥିଲେ । ଏହି ନିମିତ୍ତ ଭୃଗୁ ଅର୍ଥାତ୍ ଜ୍ୱାଳାର ନାମ-ଦ୍ୱାରା ତାହାଙ୍କର ଏହି ନାମ ହେଲା । ମରୀଚି ଅର୍ଥାତ୍ କିରଣ ସମୂହରୁ ମରୀଚି ଉତ୍ପନ୍ନ ହେଲେ, ମରୀଚିଙ୍କଠାରୁ କଶ୍ୟପ ଜନ୍ମ ପରିଗ୍ରହ କଲେ । ହେ ତାତ ! ଅଙ୍ଗାର ସମୂହରୁ ଅଙ୍ଗିରା ଏବଂ କୁଶୋଚୟରୁ ବାଲଖିଲ୍ୟ ମୁନିଗଣ ଜନ୍ମିଲେ । ଅତ୍ର ଅର୍ଥାତ୍ ଏହି କୁଶୋଚୟରେ ଅତ୍ରି ମୁନି ଜନ୍ମଲାଭ କରିଥିଲେ, ସେହି କାରଣରୁ ପଣ୍ଡିତମାନେ ତାହାଙ୍କୁ ଅତ୍ରିନାମ ପ୍ରଦାନ କଲେ ଓ ଭସ୍ମସମୂହରୁ ବ୍ରହ୍ମର୍ଷିଗଣ ସମ୍ମତ ତପସ୍ୟାଶାଳୀ ଓ ଗୁଣଲିପ୍ସୁ ବୈଖାନସ ମୁନିଗଣ ସମ୍ଭୂତ ହେଲେ । ତାହାଙ୍କର ଲୋତକରୁ ସୌନ୍ଦର୍ଯ୍ୟ ସମ୍ପନ୍ନ ଅଶ୍ୱିନୀକୁମାରଯୁଗଳ ଜନ୍ମଗ୍ରହଣ କଲେ । ଅବଶିଷ୍ଟ ପ୍ରଜାପତିଗଣ ତଦୀୟ ଇନ୍ଦ୍ରିୟ ସମୂହରୁ ସମ୍ଭୂତ ହେଲେ; ରୋମକୂପରୁ ଋଷିଗଣ, ସ୍ୱେଦରୁ ଛନ୍ଦ ଓ ବୀର୍ଯ୍ୟରୁ ମନର ଉତ୍ପତ୍ତି ହେଲା । ୧୧୦ । ଶାସ୍ତ୍ରଜ୍ଞାନସମ୍ପନ୍ନ ଋଷିଗଣ ବେଦପ୍ରାମାଣ୍ୟ, ଦର୍ଶନ ହେତୁରୁ ଏହି ନିମିତ୍ତ ଅଗ୍ନିଙ୍କୁ ସର୍ବଦେବମୟ ବୋଲି କହନ୍ତି । ୧୧୧ ।

ଯଜ୍ଞସ୍ଥଳରେ ଯେଉଁସବୁ ଦାରୁମାନ ଥିଲେ, ସେମାନେ ମାସ ଏବଂ ଦାରୁଗତ ଯେଉଁ ଲକ୍ଷାଦି ବୃକ୍ଷରସ ଥିଲେ ତାହା ପକ୍ଷ, ମୁହୂର୍ତ୍ତ ଓ ଅହୋରାତ୍ର ନାମରେ ଖ୍ୟାତ ହେଲେ । ପଣ୍ଡିତଗଣ ବରୁଣଙ୍କ ଜ୍ୟୋତିକୁ ପିତ୍ତ ଓ ରୌଦ୍ର ଜ୍ୟୋତିକୁ ଲୋହିତ କହନ୍ତି, ଲୋହିତରୁ କନକ ଉତ୍ପନ୍ନ ହୁଏ, ଏହା ଶ୍ରୁତ ଅଛି । ସୁବର୍ଣ୍ଣର ଅଧିଷ୍ଠାତ୍ରୀ ଦେବତା ମିତ୍ର, ସେହି କାରଣରୁ ତାହାକୁ ମୈତ୍ର ବୋଲି ଜାଣିବାକୁ ହେବ । ଧୂମରୁ ବସୁଗଣ ଉତ୍ପନ୍ନ ହୁଅନ୍ତି ବୋଲି ଏହା ସ୍ମରଣ ଅଛି । ୧୧୩ । ଜ୍ୱାଳାସମୂହରୁ ରୁଦ୍ର ଓ ମହାପ୍ରଭ ଆଦିତ୍ୟଗଣ ସମ୍ଭୂତ ହେଲେ । ଯଜ୍ଞସ୍ଥଳରେ ଯେଉଁ ସବୁ ଅଙ୍ଗାର ଥିଲେ ସେ ସବୁ ଆକାଶସ୍ଥିତ ଗ୍ରହନକ୍ଷତ୍ର ରୂପେ ଉଦ୍ଦିଷ୍ଟ ହୋଇଅଛନ୍ତି । ୧୧୪ । ଯେ ଲୋକର ଆଦିକର୍ତ୍ତା, ସେ ପରଂବ୍ରହ୍ମ, ସେ ଧ୍ରୁବ ଏବଂ ସର୍ବକାମପ୍ରଦାତା ବୋଲି ପ୍ରାଚୀନ ପଣ୍ଡିତଗଣ କହନ୍ତି । ସେ ମଧ୍ୟ ତାହାଙ୍କର ନିଜ ରହସ୍ୟକୁ କହିଥିଲେ । ୧୧୫ ।

ତଦନନ୍ତର ଯଜ୍ଞ ସମାପ୍ତି ହେବାରୁ ପବନାତ୍ମକ ମହାଦେବ ବରୁଣ କହିଲେ—ଏହି ଦ୍ରବ୍ୟ ସବୁ ଆମ୍ଭର ଅଟେ, ଏତେବେଳେ ଆମ୍ଭେ ଗୃହପତି । ୧୧୬ । ପ୍ରଥମରେ ଭୃଗୁ, ଅଙ୍ଗିରା ଓ କବି ନାମକ ଯେଉଁ ଅପତ୍ୟସମୂହ ଉତ୍ପନ୍ନ ହୋଇଅଛନ୍ତି, ସେମାନେ ଆମ୍ଭର ପୁତ୍ର ସଂଶୟ ନାହିଁ । ହେ ଦେବଗଣ ! ସେମାନେ ଆମ୍ଭର ଯଜ୍ଞର ଫଳ ସ୍ୱରୂପ ଅଟନ୍ତି ବୋଲି ଜାଣ । ୧୧୭ । ଅଗ୍ନି କହିଲେ, ପୂର୍ବୋକ୍ତ ଅପତ୍ୟସମୂହ ଆମ୍ଭ ଅଙ୍ଗରୁ ପ୍ରସୂତ ହୋଇଅଛନ୍ତି ଏବଂ ଆମ୍ଭଙ୍କୁ ଆଶ୍ରୟ କରିଅଛନ୍ତି, ଅତଏବ ସେମାନେ ଆମ୍ଭର ପୁତ୍ର, ବରୁଣଙ୍କ ଚିତ୍ତ ଅବଶ ହୋଇଛି, ସୁତରାଂ ସେ ସେ ଭ୍ରାନ୍ତ । ୧୧୮ ।

ତଦନନ୍ତର ସର୍ବଲୋକପିତାମହ ଲୋକଗୁରୁ ବ୍ରହ୍ମା କହିଲେ, ଆମ୍ଭର ସେହି ଶୁକ୍ର ହୁତ ହେବାରୁ ଯେଉଁ ଅପତ୍ୟସମୂହ ଉତ୍ପନ୍ନ ହୋଇ-ଅଛନ୍ତି, ସେମାନେ ଆମ୍ଭର ପୁତ୍ର । ୧୧୯ । ଆମ୍ଭେ ଯଜ୍ଞକର୍ତ୍ତା ଏବଂ ଶୁକ୍ରହୋତା, ଅତଏବ ଶୁକ୍ର ଯଦି କାରଣ ହୁଏ, ତେବେ ଯାହାର ବୀଜ, ତାହାର ଫଳ ହୋଇପାରେ । ୧୨୦ । ତତ୍ପରେ ଦେବଗଣ ପିତାମହଙ୍କ ନିକଟକୁ ଆଗମନ ପୂର୍ବକ କୃତାଞ୍ଜଳିପୂର୍ବରେ ପ୍ରଣତ ମସ୍ତକରେ ବନ୍ଦନ କରି କହିଲେ (୧୨୧), ଭଗବନ୍ ! ଆମ୍ଭେମାନେ ସମସ୍ତେ ସ୍ଥାବର ଜଙ୍ଗମାତ୍ମକ ସମସ୍ତ ଜଗତ୍ ସହିତ ଆପଣଙ୍କଠାରୁ ଉତ୍ପନ୍ନ ହୋଇଅଛୁଁ । ଅତଏବ ଆପଣ ଆମ୍ଭମାନଙ୍କ ଉତ୍ପତ୍ତିର କାରଣ । କିନ୍ତୁ ବିଭାବସୁ, ବରୁଣ, ଅଗ୍ନି ଓ ଦେବେଶ୍ୱର ଏମାନେ ସ୍ୱୀୟ ଅଭିଲଷିତ ବିଷୟ ଲାଭ କରନ୍ତୁ ।

ବ୍ରହ୍ମାଙ୍କର ସ୍ୱଭାବ ଓ ଆଦେଶବଶରୁ ଯାଦୋଗଣଙ୍କ ପତି ବରୁଣ ସୂର୍ଯ୍ୟଙ୍କ ସଦୃଶ ତେଜସ୍ୱୀ ପ୍ରଥମ ପୁତ୍ର ଭୃଗୁଙ୍କୁ ଗ୍ରହଣ କଲେ । ଈଶ୍ୱର ଅଙ୍ଗିରାଙ୍କୁ ଅଗ୍ନିଙ୍କ ଅପତ୍ୟ କରିଦେଲେ (୧୨୪) ଏବଂ ତତ୍ତ୍ୱବିତ୍ ପିତାମହ ବ୍ରହ୍ମା କବିଙ୍କୁ ଆପଣାର ପୁତ୍ରରୂପେ ଗ୍ରହଣ କଲେ । ତଦବଧି ପ୍ରସବ କର୍ମକାରୀ ଭୃଗୁ ବାରୁଣନାମରେ ବିଖ୍ୟାତ ହେଲେ । ୧୨୫ । ଶ୍ରୀମାନ୍ ଅଙ୍ଗିରା ଆଗ୍ନେୟ ନାମରେ ପ୍ରସିଦ୍ଧ ହେଲେ ଓ ମହାଯଶା କବି ବ୍ରାହ୍ମନାମରେ ପ୍ରଥିତ ହେଲେ । ଭାର୍ଗବ ଓ ଆଙ୍ଗିରସ ଏହି ଦୁହେଁ ଇହଲୋକରେ ଲୋକ-ବିସ୍ତାରର କାରଣ ହେଲେ । ୧୨୬ । ଏହି ପ୍ରଜାପତିସମୂହ ସମସ୍ତେ ଅପତ୍ୟ ଉତ୍ପାଦନ କଲେ । ସମସ୍ତେ ଏହିମାନଙ୍କର ସନ୍ତାନ ଏହି କଥା ଅବଧାରଣ କର । ୧୨୭ ।

ଚ୍ୟବନ, ବଜ୍ରଶୀର୍ଷ, ଶୁଚି, ଔର୍ବ, ବରେଣ୍ୟ ଶୁକ୍ର, ବିଭୁ ଓ ସବନ ଏହି ସାତଜଣ ଭୃଗୁଙ୍କ ସଦୃଶ ଗୁଣସମ୍ପନ୍ନ । ଯେଉଁମାନଙ୍କ ବଂଶରେ ତୁମ୍ଭେ ଜନ୍ମଗ୍ରହଣ କରିଅଛ, ସେହି ଭାର୍ଗବଗଣ ବାରୁଣ । ୧୨୯ । ବୃହସ୍ପତି, ଉତଥ୍ୟ, ପୟସ୍ୟ, ଶାନ୍ତ, ଘୋର, ବିରୂପ, ସମ୍ବର୍ତ୍ତକ ଓ ସୁଧନ୍ୱା ଏହି ଆଠଜଣ ଅଙ୍ଗିରାଙ୍କ ପୁତ୍ର; ଏମାନେ ସମସ୍ତେ ଜ୍ଞାନନିଷ୍ଠ, ନିୟମପୂ ଓ ବହ୍ନିଜ ହେଲେ ମୁଦ୍ଧା ବାରୁଣ ବୋଲି କଥିତ ହୁଅନ୍ତି । ୧୩୧ । ବ୍ରହ୍ମାଙ୍କ ପୁତ୍ର କବି, କବିଙ୍କର ଆଠ ପୁତ୍ର, ସେମାନେ ମଧ୍ୟ ବାରୁଣ ନାମରେ ଉଦାହୃତ ହୁଅନ୍ତି, କାରଣ ସେମାନେ ଗୁଣଯୁକ୍ତ, କଲ୍ୟାଣକର ଓ ବ୍ରହ୍ମଜ୍ଞାନୀ ଅଟନ୍ତି । ୧୩୨ । ଏହିମାନଙ୍କ ନାମ କବି, କାବ୍ୟ, ଧୃଷ୍ଣୁ, ବୁଦ୍ଧିମାନ୍ ଉଶନା, ଭୃଗୁ, ବିରଜା, କାଶୀ ଏବଂ ଧର୍ମଜ୍ଞ ଉଗ୍ର (୧୩୩) ଏହି ଆଠ-ଜଣ କବିଙ୍କ ପୁତ୍ର; ଏହିମାନଙ୍କଦ୍ୱାରା ସମସ୍ତ ଜଗତ୍ ବ୍ୟାପ୍ତ ହୋଇ ରହିଅଛି । ଏହିମାନଙ୍କଦ୍ୱାରା ପ୍ରଜାଗଣ ଜାତ; ଏହି କାରଣରୁ ଏହିମାନେ ସମସ୍ତେ ପ୍ରଜାପତି ଅଟନ୍ତି । ୧୩୪ । ହେ ଭୃଗୁଶ୍ରେଷ୍ଠ ! ଏହିପରି ଅଙ୍ଗିରା, କବି ଓ ଭୃଗୁଙ୍କ ବଂଶଜାତ ସନ୍ତାନ ପରମ୍ପରାଦ୍ୱାରା ଜଗତ୍ ବ୍ୟାପ୍ତ ହୋଇ-ଅଛି ।

ହେ ବିପ୍ର ! ହେ ତାତ ! ସର୍ବଶକ୍ତିମାନ୍, ସର୍ବନିୟନ୍ତା ବରୁଣ ପ୍ରଥମରେ କବି ଓ ଭୃଗୁଙ୍କୁ ଗ୍ରହଣ କରିଥିଲେ; ସେହି ହେତୁରୁ ସେହି ଦୁହେଁ ବାରୁଣ ନାମରେ ଖ୍ୟାତ ହୋଇଅଛନ୍ତି । ୧୩୬ । ବ୍ରହ୍ମା ବରୁଣଙ୍କୁ ସ୍ୱୀୟ ଭାଗ ସମର୍ପଣ କରିଥିବାରୁ କବି ମଧ୍ୟ ବାରୁଣ ନାମରେ ଖ୍ୟାତ ହେଲେ ଏବଂ ଶିଖାବାନ୍ ହୁତାଶନ ଦେବ ଅଙ୍ଗିରାଙ୍କୁ ଗ୍ରହଣ କରିଥିଲେ ବୋଲି ତଦ୍‌ବଂଶୀୟଗଣଙ୍କୁ ଆଙ୍ଗିରସ ବୋଲି ଜାଣିବାକୁ ହେବ । ୧୩୭ । ପିତାମହ ବ୍ରହ୍ମା ପ୍ରଥମରେ ଦେବଗଣଙ୍କଦ୍ୱାରା ଏହିପରି ପ୍ରସାଦିତ ହୋଇ-ଥିଲେ ଯେ ଏହି ନିୟନ୍ତାଗଣ ଭୁବନରେ ପ୍ରଜାବୃନ୍ଦଦ୍ୱାରା ଆମ୍ଭମାନଙ୍କୁ ସମ୍ୟକ୍‌ରୂପେ ଉତ୍ତୀର୍ଣ୍ଣ କରିବେ । ଅତଏବ ଏହିମାନେ ସମସ୍ତେ ପ୍ରଜାପତି ଓ ସମସ୍ତେ ତପସ୍ୱୀ ହୋଇ ସମ୍ପ୍ରତି ଆପଣଙ୍କ ପ୍ରସାଦରେ ଏହି ସମସ୍ତ ଲୋକ ଉଦ୍ଧାର କରିବେ; ଏବଂ ଆପଣଙ୍କର ତେଜର ବୃଦ୍ଧି କରି ବଂଶକର୍ତ୍ତା ହେବେ । ଏହିମାନେ ସମସ୍ତେ ବେଦବିତ୍ ପଣ୍ଡିତ ହେବେ । ୧୪୦ ।

ଏହି ପ୍ରାଜାପତ୍ୟ ମହର୍ଷିଗଣ ପ୍ରିୟଦର୍ଶନ ଓ ଦେବପକ୍ଷ ମଧ୍ୟରେ ଶ୍ରେଷ୍ଠ ହୋଇ ପରମ ତପସ୍ୟା ଓ ବ୍ରହ୍ମଚର୍ଯ୍ୟ ଲାଭ କରିବେ । ହେ ପ୍ରଭୋ ! ପିତାମହ ! ଆମ୍ଭେମାନେ ଏବଂ ଏହିମାନେ ସମସ୍ତେ ଆପଣଙ୍କଠାରୁ ପ୍ରସୂତ

ହୋଇଅଛୁଁ । ଆପଣ ଦେବ ଓ ବ୍ରାହ୍ମଣଗଣଙ୍କର ବିଧାତା । ୧୪୨ । ମରୀଚି ପ୍ରଭୃତି ସମସ୍ତ ଭାର୍ଗବଗଣ ଆପଣଙ୍କ ଅପତ୍ୟ, ଆମ୍ଭେମାନେ ଏହା ଅବଲୋକନ କରି ଭବଦୀୟ ଉତ୍କର୍ଷ ନିମିତ୍ତ ପରସ୍ପରର ଅଭିଭବ କରିବାକୁ ଯତ୍ନବାନ୍ ହେଉନାହିଁ । ୧୪୩ । ସେମାନେ କ୍ଷମାଶୀଳ ହୋଇ ପ୍ରଜାବୃନ୍ଦ ଉତ୍ପାଦନ କରିବେ ଏବଂ ଏହିରୂପେ ଉତ୍ପତ୍ତି ଓ ପ୍ରଳୟର ଅନ୍ତରାଳରେ ଆପଣାକୁ ସ୍ଥାପିତ କରିବେ । ୧୪୪ । ତେତେ-ବେଳେ ଲୋକପିତାମହ ବ୍ରହ୍ମା ଦେବଗଣଙ୍କ ବାକ୍ୟ ଶ୍ରବଣ କରି ପ୍ରସନ୍ନ ହୋଇ "ତଥାସ୍ତୁ" ବୋଲି କହିଲେ । ଦେବତାମାନେ ଯଥାସ୍ଥାନକୁ ଗମନ କଲେ । ୧୪୫ ।

ଆଦ୍ୟକାଳରେ ବାରୁଣୀ ମୂର୍ତ୍ତିଧାରୀ ମହାତ୍ମା ଦେବଶ୍ରେଷ୍ଠଙ୍କ ଯଜ୍ଞରେ ପୂର୍ବେ ଏହିପରି ଘଟଣା ହୋଇଥିଲା । ୧୪୬ । ଅଗ୍ନି କେବଳ ବ୍ରହ୍ମା, ପଶୁପତି, ସର୍ବ, ରୁଦ୍ର ଓ ପ୍ରଜାପତି ସ୍ୱରୂପ । ଏହି ସୁବର୍ଣ୍ଣ ଅଗ୍ନିଙ୍କ ଅପତ୍ୟ ବୋଲି ଏହିପରି ନିଶ୍ଚୟ ଅଛି । ୧୪୭ । ପ୍ରମାଣଜ୍ଞ ଜାମଦଗ୍ନ୍ୟ ବେଦଶ୍ରୁତି ନିଦର୍ଶନ ହେତୁରୁ ଅଗ୍ନି ଅଭାବରେ ବହ୍ନି ସ୍ଥାନରେ କାଞ୍ଚନ ସ୍ଥାପନ କରନ୍ତି । ୧୪୮ । ଶ୍ରୁତି ଅଛି ଯେ, କୁଶସ୍ତମ୍ବରେ ଅଗ୍ନିରେ ହୋମ କରିବ । ତହସ୍ଥିତ ଅର୍ଥାତ୍ ସେଠାରେ ଥିବା ସୁବର୍ଣ୍ଣରେ ବଲ୍ମୀକ, ବପା, ଅଜର ଦକ୍ଷିଣ କର୍ଣ୍ଣ (୧୪୯), ଶକଟ ଓ ଭୂମି ମଧ୍ୟରେ ତୀର୍ଥଜଳରେ ଓ ବ୍ରାହ୍ମଣଙ୍କ ହସ୍ତରେ ହୋମକଲେ ଭଗବାନ୍ ହୁତାଶନ ପ୍ରୀତିକରି ସମୃଦ୍ଧି ! ବୋଲି ଜ୍ଞାନ କରନ୍ତି । ୧୫୦ । ଅତଏବ ଆମ୍ଭେମାନେ ଶୁଣିଅଛୁଁ, ସମସ୍ତ ଦେବତାବୃନ୍ଦ ଅଗ୍ନିନିଷ୍ଠ ଅଟନ୍ତି । ଅଗ୍ନି ବ୍ରହ୍ମାଙ୍କଠାରୁ ପ୍ରସୂତ ହୋଇଅଛନ୍ତି ଓ ଅଗ୍ନିଙ୍କ-ଠାରୁ ସୁବର୍ଣ୍ଣ ଉତ୍ପନ୍ନ ହୋଇଅଛି । ୧୫୧ ।

ଅତଏବ ଆମ୍ଭେ ଶୁଣିଅଛୁଁ, ଯେଉଁ ସମସ୍ତ ଧର୍ମଦର୍ଶୀ ମାନବଗଣ ସୁବର୍ଣ୍ଣ ସମ୍ପ୍ରଦାନ କରନ୍ତି ସେମାନେ ସମସ୍ତ ଦେବଗଣଙ୍କୁ ସମ୍ପ୍ରଦାନ କରନ୍ତି । ୧୫୨ । ହେ ଭାର୍ଗବ ! ସେହି ପରମଗତି ପ୍ରାପ୍ତ ମାନବ ତମଃଶୂନ୍ୟ ଲୋକସମୂହକୁ ଗମନ କରି ସ୍ୱର୍ଗଲୋକରେ କୌବେର ରାଜ୍ୟରେ ଅଭିଷିକ୍ତ ହୁଅନ୍ତି । ୧୫୩ । ଯେ ଆଦିତ୍ୟ ଉଦୟ ସମୟରେ ଯଥାବିଧି ମନ୍ତ୍ର ଉଚ୍ଚାରଣ-ପୂର୍ବକ କାଞ୍ଚନ ଦାନ କରନ୍ତି, ସେ ଦୁଃସ୍ୱପ୍ନ ଦୋଷକୁ ବିନାଶ କରନ୍ତି । ୧୫୪ । ଯେ ସୂର୍ଯ୍ୟୋଦୟ ସମୟରେ ସୁବର୍ଣ୍ଣ ଦାନ କରନ୍ତି, ତାହାଙ୍କର ପାପସମୂହ ବିଧୂତ ହୁଏ । ମଧ୍ୟାହ୍ନ ସମୟରେ ସୁବର୍ଣ୍ଣ ଦାନ କଲେ ଦାତାଙ୍କର ଅନାଗତ ପାପ ହତ ହୁଏ । ୧୫୫ । ଯେ ଯତବ୍ରତ ହୋଇ ସାୟଂ ସନ୍ଧ୍ୟା ସମୟରେ

ସୁବର୍ଣ୍ଣ ସଂପ୍ରଦାନ କରନ୍ତି, ସେ ବ୍ରହ୍ମା, ବାୟୁ, ବହ୍ନି ଓ ବରୁଣଙ୍କ ସଦୃଶ ଲୋକପ୍ରାପ୍ତ ହୁଅନ୍ତି (୧୫୬) ଏବଂ ସେ ଲୋକସମୂହରେ ଶୁଭ ପ୍ରତିଷ୍ଠା ଲାଭ କରନ୍ତି, ଇହଲୋକରେ ଯଶୋଲାଭ କରି ଶାନ୍ତପାପ ହୋଇ ସମୃଦ୍ଧିତ ହୁଅନ୍ତି । ୧୫୭ । ତଦନନ୍ତର ସେ ଲୋକାନ୍ତରରେ ସର୍ବଦା ଅପ୍ରତିମ ହୁଅନ୍ତି । ସେ ଅନାବୃତ ଗତି ଏବଂ କାମଗୃହ ହୁଅନ୍ତି । ୧୫୮ । କଦାପି ତାହାଙ୍କ ଯଶର କ୍ଷରଣ ହୁଏ ନାହିଁ, ବରଂ ତ ସର୍ବଦ ମହତ୍ ଯଶ ବ୍ୟାପ୍ତ ହୁଏ ।

ଅକ୍ଷୟ ସୁବର୍ଣ୍ଣ ଦାନ କଲେ, ମନୁଷ୍ୟ ପୁଷ୍କଳ ଲୋକସମୂହ ପ୍ରାପ୍ତ ହୁଅନ୍ତି । ୧୫୯ । ଯେ ଆଦିତ୍ୟ ଉଦୟ କାଳରେ ଅଗ୍ନି ପ୍ରଜ୍ୱାଳନପୂର୍ବକ ବ୍ରତ ଉଦ୍ଦେଶ୍ୟ କରି କାଞ୍ଚନ ଦାନ କରନ୍ତି, ସେ ସମସ୍ତ କାମନା ପ୍ରାପ୍ତ ହୁଅନ୍ତି । ୧୬୦ । ଅଗ୍ନି ଓ ଆଦିତ୍ୟଙ୍କର ପ୍ରାଦୁର୍ଭାବର ଅନ୍ତରାଳ କାଳରେ ସୁବର୍ଣ୍ଣ ଦାନ ଯଥେଷ୍ଟ ଗୁଣସଂଯୁକ୍ତ ଜ୍ଞାନ ପ୍ରବର୍ତ୍ତକ, ଦାନରୋଚକ, ଅତଏବ ସୁଖାବହ, ବୋଲି ଏହା ପ୍ରାଚୀନ ପଣ୍ଡିତଗଣ କହନ୍ତି । ୧୬୧ । ହେ ଅନଘ ! ଭୃଗୁନନ୍ଦନ ! ଆମ୍ଭେ ତୁମ୍ଭଙ୍କୁ ଏହିପରି ସୁବର୍ଣ୍ଣ ଓ କାର୍ତ୍ତିକେୟଙ୍କ ଉତ୍ପତ୍ତିର ବିଷୟ କହିଲୁଁ । ଅତଏବ ତାହା ଅବଗତ ହୁଅ । ୧୬୨ ।

ହେ ଭୃଗୁକୁଳ ଧୂରନ୍ଧର ! ତେତେବେଳେ କାର୍ତ୍ତିକେୟ ବହୁକାଳ ବିଳମ୍ବରେ ସଂବର୍ଦ୍ଧିତ ହୋଇ ଇନ୍ଦ୍ରାଦି ଦେବଗଣଙ୍କ କର୍ତ୍ତୃକ ସେନାପତି ପଦରେ ଅଭିଷିକ୍ତ ହେଲେ । ୧୬୩ । ହେ ବ୍ରହ୍ମନ୍ ! ସେ ଅଭିଷିକ୍ତ ହୋଇ ତ୍ରିଦଶେଶ୍ୱରଙ୍କ ଆଦେଶ ବଶରେ ଲୋକବୃନ୍ଦର ହିତ ନିମିତ୍ତ ତାରକ ନାମକ ଦୈତ୍ୟ ଓ ଅନ୍ୟାନ୍ୟ ଅନେକ ଅନେକ ଅସୁରଗଣଙ୍କୁ ନିହତ କଲେ । ୧୬୪ । ହେ ବିଭୋ ! ସୁବର୍ଣ୍ଣ ଦାନରେ ଯେଉଁ ଫଳ ସବୁ ହୁଏ, ଆମ୍ଭେ ତାହା ତୁମ୍ଭଙ୍କୁ କହିଲୁଁ; ଅତଏବ ହେ ଦାତୃବର ! ତୁମ୍ଭେ ବିପ୍ର-ଗଣଙ୍କୁ ସୁବର୍ଣ୍ଣ ଦାନ କର । ୧୬୫ ।

ଭୀଷ୍ମ କହିଲେ, ପ୍ରତାପବାନ୍ ଜାମଦଗ୍ନ୍ୟ, ପରଶୁରାମ, ବଶିଷ୍ଠଙ୍କର ଏହି ପ୍ରକାର ବାକ୍ୟ ଶ୍ରବଣ କରି ବିପ୍ରଗଣଙ୍କୁ ସୁବର୍ଣ୍ଣ ଦାନ କଲେ ଏବଂ ସେହି ହେତୁରୁ ପାପରୁ ବିମୁକ୍ତ ହେଲେ ।୧୬୬। ହେ ମହାପତେ ! ଯୁଧିଷ୍ଠିର ! ଆମ୍ଭେ ସୁବର୍ଣ୍ଣ ଦାନର ଫଳ ଏବଂ ସୁବର୍ଣ୍ଣର ଉତ୍ପତ୍ତି ବିଷୟ ସମୂହ ଏହିପରି ତୁମ୍ଭ ନିକଟରେ କୀର୍ତ୍ତନ କଲୁ । ଅତଏବ ତୁମ୍ଭେ ବ୍ରାହ୍ମଣଗଣଙ୍କୁ ବହୁ ସୁବର୍ଣ୍ଣ ବିତରଣ କର । ହେ ରାଜନ୍ ! ତୁମ୍ଭେ ସୁବର୍ଣ୍ଣ ଦାନ କଲେ ପାପରୁ ବିମୁକ୍ତ ହେବ । ୧୬୮ ।

---

# ଅଧ୍ୟାୟ—୮୬

ଯୁଧିଷ୍ଠିର କହିଲେ—ହେ ପିତାମହ ! ଆପଣ ସଂପ୍ରତି ବିଧାନାନୁସାରେ ସୁବର୍ଣ୍ଣଦାନର ଗୁଣ ଓ ଶ୍ରୁତିସିଦ୍ଧ ଲକ୍ଷଣ ଏବଂ ସୁବର୍ଣ୍ଣର ଉତ୍ପତ୍ତିର କାରଣ ବିସ୍ତାରକ୍ରମେ କୀର୍ତ୍ତନ କଲେ । କିନ୍ତୁ ସେହି ତାରକାସୁର କିପରି ନିଧନ ଲାଭ କଲା ? ଆମ୍ଭ ନିକଟରେ ସଂପ୍ରତି ତାହା ପ୍ରକାଶ କରିବା ହେଉନ୍ତୁ ।୨। ହେ ରାଜନ୍ ! ଆପଣ ପୂର୍ବେ କହିଥିଲେ ଯେ, ସେ ଦେବତାମାନଙ୍କର ଅବଧ୍ୟ, ଅତଏବ ତାହାର କେଉଁପରି ମୃତ୍ୟୁ ହେଲା ତାହା ବିସ୍ତାରକ୍ରମେ ବର୍ଣ୍ଣନ କରନ୍ତୁ । ହେ କୁରୁକୁଳ ଧୂରନ୍ଧର ! ଆପଣଙ୍କ ନିକଟରୁ ଆମ୍ଭେ ଏହି ତାରକାସୁରର ବଧ ବିଷୟ ବିସ୍ତାରକ୍ରମେ ଶ୍ରବଣ କରିବାକୁ କାମନା କରୁଅଛୁ । ଏହି ବିଷୟରେ ଆମ୍ଭର ଅତିଶୟ କୌତୂହଳ ହୋଇଅଛି ।୩।

ଭୀଷ୍ମ କହିଲେ, ହେ ରାଜେନ୍ଦ୍ର ! ଦେବତା ଓ ଋଷିଗଣଙ୍କ କାର୍ଯ୍ୟସମୂହ ବିନଷ୍ଟ ହେବାରୁ ସେମାନେ ଅପତ୍ୟଭରଣ ନିମିତ୍ତ କୃତ୍ତିକାଗଣଙ୍କୁ ପ୍ରେରଣ କଲେ । ୫ । ଦେବତାମାନଙ୍କ ମଧ୍ୟରେ କୌଣସି ଦେବୀ ହୁତାଶନ ଅର୍ପିତ ଗର୍ଭଧାରଣ କରିବାକୁ ସମର୍ଥା ନୁହନ୍ତି । ଏହିମାନେ କେବଳ ନିଜ ତେଜଃପ୍ରଭାବରେ ସେହି ଗର୍ଭଧାରଣ କରିପାରିବେ, ଦେବଗଣ ଏହି କଥା ବିବେଚନା କରି ସେହିମାନଙ୍କୁ ଅନୁମତି କରିଥିଲେ । ପାବକ ସେହି ଷଟ୍‌କୃତ୍ତିକାଙ୍କଠାରେ ସ୍ୱକୀୟ ପରମ ବୀର୍ଯ୍ୟସମନ୍ୱିତ ତେଜ ଅର୍ପଣ କରିଥିଲେ । ସେମାନେ ଗର୍ଭିଣୀ ରୂପରେ ସେହି ରେତଃ ପାନ କରି ଛଅ ପ୍ରକାର ଗର୍ଭ ଧାରଣ କରିବାରୁ ସେ ଅତିଶୟ ପ୍ରୀତିଯୁକ୍ତ ହୋଇଥିଲେ ।୭। ଷଟ୍‌କୃତ୍ତିକା ଜାତବେଦାଙ୍କ ଅର୍ପିତ ଗର୍ଭ ଧାରଣ କଲେ । ହୁତାଶନଙ୍କ ସମସ୍ତ ତେଜ ଷଟ୍‌କୃତ୍ତିକାଙ୍କ ଠାରେ ଗର୍ଭାଗମନ ଷଟ୍‌ପଥରେ ନିହିତ ହୋଇଥିଲା । ୮ । ଅନନ୍ତର ସେମାନେ ବୃଦ୍ଧିଶୀଳ ମହାନୁଭବ କୁମାରଙ୍କ ତେଜଦ୍ୱାରା ବ୍ୟାପ୍ତାବୟବା ହୋଇ କୌଣସି ସ୍ଥଳରେ ସୁଖଲାଭ କରି ପାରିଲେ ନାହିଁ । ୯ । ହେ ନରଶ୍ରେଷ୍ଠ ! ଅନନ୍ତର ପ୍ରସବ ସମୟ ଉପସ୍ଥିତ ହୁଅନ୍ତେ ତେଜଃପରୀତାଙ୍ଗୀ କୃତ୍ତିକାଗଣ ସମସ୍ତେ ସମକାଳରେ ଗର୍ଭବିମୋଚନ କଲେ । ୧୦ ।

ପ୍ରସବ ଉତ୍ତାରେ ସେହି ଷଟ୍‌ଅଧିଷ୍ଠାନ ଗର୍ଭ ଏକତ୍ରପ୍ରାପ୍ତ ହେଲା । ବସୁମତୀ ସୁବର୍ଣ୍ଣ ସମୀପରୁ ସେହି ଗର୍ଭ ଗ୍ରହଣ କଲେ । ୧୧ । ଦୀପ୍ତିମାନ୍

ପାବକପ୍ରଭ ସେହି ଭବ୍ୟାବୟବ ପ୍ରିୟଦର୍ଶନ ଗର୍ଭ ଦିବ୍ୟ ଶରବଣରେ ବର୍ଦ୍ଧିତ ହେଲା ।୧୨। କୃତ୍ତିକାଗଣ ସୂର୍ଯ୍ୟ ସମଦ୍ୟୁତିସମ୍ପନ୍ନ ସନ୍ତାନକୁ ଦର୍ଶନ କଲେ । ଦର୍ଶନ କଲାମାତ୍ରେ ଜାତସ୍ନେହ ଓ ସୌହାର୍ଦ୍ଦବଶରୁ ସ୍ତନ୍ୟଦୁଗ୍ଧ ପାନ-ଦ୍ୱାରା ତାହାଙ୍କୁ ପୋଷଣ କଲେ । ୧୩ । ସେହି ବାଳକ କୃତ୍ତିକାଗଣଙ୍କ ଦ୍ୱାରା ପ୍ରତିପାଳିତ ବୋଲି ସଚରାଚର ତ୍ରିଭୁବନ ମଧ୍ୟରେ କାର୍ତ୍ତିକେୟ ନାମରେ ଖ୍ୟାତ ହେଲେ । ଗଙ୍ଗାଙ୍କ ଗର୍ଭରୁ ସ୍ଖଳିତ ହୋଇଥିଲେ ବୋଲି ତାହାଙ୍କ ନାମ ସ୍କନ୍ଦ, ଗୁହା ମଧ୍ୟରେ ବାସ ହେତୁରୁ ତାହାଙ୍କର ନାମ ଗୁହ ହୋଇ-ଥିଲା । ୧୪ । ତତ୍ପରେ ତ୍ରୟସ୍ତ୍ରିଂଶତ୍ ଦେବଗଣ ଦିଗୀଶ୍ୱର ସହିତ ଦିଗବୃନ୍ଦ, ରୁଦ୍ର, ଧାତା, ବିଷ୍ଣୁ, ଯମ, ପୂଷା, ଅର୍ଯ୍ୟମା, ଭଗ (୧୫), ଅଂଶ, ମିତ୍ର, ସାଧ୍ୟଗଣ, ବସୁଗଣ, ବାସବ, ଅଶ୍ୱିନୀକୁମାରଯୁଗଳ, ଜଳ, ବାୟୁ, ନଭ, ଚନ୍ଦ୍ରମା, ନକ୍ଷତ୍ରଗଣ, ଗ୍ରହସମୂହ, ସୂର୍ଯ୍ୟ (୧୬) ଏବଂ ମୂର୍ତ୍ତିମାନ୍ ଋକ୍, ଯଜୁଃ ସାମପ୍ରଭୃତି ବେଦସମୂହ ସେହି ଅଦ୍ଭୁତ ଜ୍ୱଳନାତ୍ମଜ କୁମାରଙ୍କୁ ଦର୍ଶନ କରିବା ନିମିତ୍ତ ଆଗତ ହେଲେ । ୧୭ ।

ଋଷିଗଣ ସେହି ଷଡ଼ାନନ ଦ୍ୱାଦଶଲୋଚନ ଦ୍ୱିଜପ୍ରିୟ କୁମାରଙ୍କୁ ସ୍ତୁତି କଲେ ଏବଂ ଗନ୍ଧର୍ବଗଣ ଗାନ କଲେ । ୧୮ । ପୀନସ୍କନ୍ଧ ଦ୍ୱାଦଶଭୁଜ ପାବକ ଓ ଆଦିତ୍ୟସମ ତେଜସ୍ୱୀ ଶରସ୍ତମ୍ବରେ ଅବସ୍ଥିତ ଶୟାନ କୁମାରଙ୍କୁ ଦର୍ଶନ କରି ଋଷିଗଣଙ୍କ ସହିତ ଦେବଗଣ ପରମହର୍ଷ ଲାଭ କଲେ ଏବଂ ତାରକାସୁର ନିହତ ହେବାର ମନେ କଲେ । ଅନନ୍ତର ଦେବଗଣ ସବୁ-ଠାରୁ କୁମାରଙ୍କ ପ୍ରିୟବସ୍ତୁସମୂହ ଆହରଣ କଲେ । ୨୦ । ସେ କ୍ରୀଡ଼ା କରିବାକୁ ଆରମ୍ଭ କଲାରୁ ଦେବଗଣ ତାହାଙ୍କର କ୍ରୀଡ଼ାମାନ ନାନାବିଧ ପକ୍ଷିବୃନ୍ଦ ପ୍ରଦାନ କଲେ ଓ ଗରୁଡ଼ ଆରୋହଣ ନିମିତ୍ତ ସୁପର୍ଣ୍ଣପୁତ୍ର ବର୍ହିଯୁକ୍ତ ଚିତ୍ର ମୟୂର ଦାନ କଲେ ।୨୧। ରାକ୍ଷସଗଣ ତାହାଙ୍କୁ ବରାହ ମହିଷ ପ୍ରଦାନ କଲେ, ଅରୁଣ ସ୍ୱୟଂ ଅଗ୍ନିସଙ୍କାଶ କୁକ୍କୁଟ ଦାନ କଲେ, ଚନ୍ଦ୍ରମା ତାହାଙ୍କୁ ମେଷ ପ୍ରଦାନ କଲେ ଏବଂ ଆଦିତ୍ୟ ରୁଚିର ପ୍ରଭା ପ୍ରଦାନ କଲେ । ଗୋଗଣଙ୍କ ମାତା ସୁରଭି ଶତସହସ୍ର ଗୋଦାନ କଲେ । ୨୩ । ଅଗ୍ନି ତାହାଙ୍କୁ ଛାଗ ଦାନ କଲେ ଏବଂ ଇଳା ବହୁ ସୌନ୍ଦର୍ଯ୍ୟସମ୍ପନ୍ନ ପୁଷ୍ପ ଓ ଫଳବୃନ୍ଦ ସଂପ୍ରଦାନ କଲେ । ସୁଧନ୍ୱା ତାହାଙ୍କୁ ଶକଟ ଓ ଅପରିମିତ କୂବରଯୁକ୍ତ ରଥ ପ୍ରଦାନ କଲେ । ୨୪ । ବରୁଣ ଦିବ୍ୟ ସୁନ୍ଦର ବାରୁଣ ଗଜଯୁକ୍ତ ଅଶ୍ୱବୃନ୍ଦ ପ୍ରଦାନ କଲେ । ସୁରେନ୍ଦ୍ର ସିଂହ, ବ୍ୟାଘ୍ର, ଦ୍ୱିପ, ଅନ୍ୟାନ୍ୟ ପକ୍ଷିଗଣ, ବହୁବିଧ ଘୋରତର ଶ୍ୱାପଦ ଓ ବିବିଧ ଛତ୍ର

ପ୍ରଦାନ କଲେ । ରାକ୍ଷସ ଓ ଅସୁରଗଣ ସେହି କୁମାରଙ୍କର ଅନୁଗତ ହେଲେ । ୨୭ ।

ତାରକାସୁର ତାହାଙ୍କୁ ବର୍ଦ୍ଧମାନ ହେବାର ଦେଖି ବହୁବିଧ ଉପାୟ ଦ୍ୱାରା ନିହତ କରିବାକୁ ଚେଷ୍ଟା କଲା, କିନ୍ତୁ ସେହି ସର୍ବଶକ୍ତିମାନ କୁମାରଙ୍କୁ ସଂହାର କରିବା ନିମିତ୍ତ ସମର୍ଥ ହେଲା ନାହିଁ । ୨୭ । ଦେବଗଣ ତାହାଙ୍କୁ ସେନାପତି ପଦ ପ୍ରଦାନ ପୂର୍ବକ ପୂଜା କରି ତାରକାସୁର କୃତ ଉପଦ୍ରବ ବିଷୟ କହିଲେ । ମହାବୀର୍ଯ୍ୟ ଦେବ ସେନାପତି ପ୍ରଭୁ କାର୍ତ୍ତିକେୟ ବିଶେଷ ରୂପେ ବୃଦ୍ଧିଲାଭ କରି ଅମୋଘ ଶକ୍ତିଦ୍ୱାରା ତାରକାସୁରକୁ ନିହତ କଲେ । ୨୯ । କୁମାର କ୍ରୀଡ଼ା କରୁ କରୁ ସେହି ଅସୁରକୁ ନିହତ କଲାରୁ, ସୁରରାଜ ପୁନଶ୍ଚ ଦେବରାଜ୍ୟରେ ସ୍ଥାପିତ ହେଲେ । ୩୦ । ଅନନ୍ତର ପ୍ରତାପଶାଳୀ ଦେବ ସେନାପତି ସ୍କନ୍ଦ ଦେବଗଣଙ୍କର ନିୟନ୍ତା ରକ୍ଷିତା ଏବଂ ଶଙ୍କରଙ୍କର ପ୍ରିୟକାରୀ ହୋଇ ସୁଶୋଭିତ ହେଲେ । ୩୧ ।

ହିରଣ୍ୟମୂର୍ତ୍ତି ଭଗବାନ୍ ପାବକପୁତ୍ର କୁମାର ସର୍ବଦା ଏହିପରି ଦେବଗଣର ସୈନାପତ୍ୟ ପ୍ରାପ୍ତ ହୋଇଥିଲେ । ୩୨ । ବହ୍ନିଙ୍କର ପରମ ତେଜ କାର୍ତ୍ତିକେୟଙ୍କ ସହିତ ଜାତ ହୋଇଥିଲା, ସେହି କାରଣରୁ ସୁବର୍ଣ୍ଣ ମଙ୍ଗଳକର, ଉତ୍କୃଷ୍ଟ ଓ ଅକ୍ଷୟ ରତ୍ନ ବୋଲି ଅଭିହିତ ହେଉଅଛି । ୩୩ । ହେ ନରାଧିପ କୌରବ୍ୟ ! ପୂର୍ବକାଳରେ ରାମଙ୍କୁ ବଶିଷ୍ଠ ଏହିପରି କହିଥିଲେ । ସେହି କାରଣରୁ ତୁମ୍ଭେ ସୁବର୍ଣ୍ଣ ଦାନ ନିମିତ୍ତ ସର୍ବଦା ଯତ୍ନଶୀଳ ହୁଅ । ୩୪ । ରାମ ସୁବର୍ଣ୍ଣ ଦାନ କରି ସମସ୍ତ ପାପରୁ ବିମୁକ୍ତ ହୋଇ ସୁରପୁରରେ ନରମାନଙ୍କର ଅସୁଲଭ ସ୍ଥାନକୁ ପ୍ରାପ୍ତ ହୋଇଥିଲେ । ୩୫ ।

---

## ଅଧ୍ୟାୟ—୮୭

ଯୁଧିଷ୍ଠିର କହିଲେ—ହେ ଧର୍ମାତ୍ମନ୍ ! ପାର୍ଥିବ ! ଆପଣ ଯେଉଁପରି ଚତୁର୍ବର୍ଣ୍ଣର ଧର୍ମସମୂହକୁ କହିଲେ, ସେହିପରି ଆମ୍ଭଙ୍କୁ ସମସ୍ତ ଶ୍ରାଦ୍ଧବିଧି କହିବା ହେଉନ୍ତୁ । ୧ । ବୈଶମ୍ପାୟନ କହିଲେ, କେତେବେଳେ ଶାନ୍ତନୁ-ପୁତ୍ର ଭୀଷ୍ମ ଯୁଧିଷ୍ଠିରଙ୍କର ଏହି ବାକ୍ୟ ଶ୍ରବଣ କରି ତାହାଙ୍କ ନିକଟରେ ଏହି-ପରି ସମସ୍ତ ଶ୍ରାଦ୍ଧ ବିଧି କହିବାକୁ ଉପକ୍ରମ କଲେ ।୨। ଭୀଷ୍ମ କହିଲେ, ହେ

ଶତ୍ରୁମର୍ଦ୍ଦନ ରାଜନ୍ ! ତୁମ୍ଭେ ସ୍ଥିରମନା ହୋଇ ଧନ୍ୟ, ଯଶସ୍ୟ, ପୁତ୍ରୀପ୍ସୁ ଏହି ଶୁଭ ପିତୃଯଜ୍ଞ ଶ୍ରାଦ୍ଧକର୍ମବିଧି ଶ୍ରବଣ କର । ୩ ।

ଦେବ, ଅସୁର, ମନୁଷ୍ୟ, ଗନ୍ଧର୍ବ, ଉରଗ, ରାକ୍ଷସ, ପିଶାଚ, କିନ୍ନର ପ୍ରଭୃତି ସମସ୍ତଙ୍କର ପିତୃଗଣ ସର୍ବଦା ପୂଜନୀୟ । ପଣ୍ଡିତଗଣ ପ୍ରଥମରେ ପିତୃଗଣଙ୍କ ପୂଜାକରି ପଶ୍ଚାତ୍ ସମସ୍ତ ଦେବଗଣର ତୃପ୍ତି ସମ୍ପାଦନ କରନ୍ତି । ଅତଏବ ପୁରୁଷ ସର୍ବ ପ୍ରଯତ୍ନରେ ସର୍ବଦା ପିତୃଗଣଙ୍କୁ ପୂଜା କରିବେ । ୫ । ହେ ମହାରାଜ ! ପ୍ରତି ମାସରେ ପିତୃଗଣଙ୍କ ତୃପ୍ତି ନିମିତ୍ତ ଯେଉଁ ଶ୍ରାଦ୍ଧ କରାଯାଏ ତାହାକୁ ଅନ୍ୱାହାର୍ଯ୍ୟ କହନ୍ତି । ପିତୃଗଣଙ୍କ ତୃପ୍ତି ନିମିତ୍ତ ଶ୍ରାଦ୍ଧ କର୍ତ୍ତବ୍ୟ, ଏହି ପ୍ରଥମ କଳ୍ପିତ ଅର୍ଥାତ୍ ସାମାନ୍ୟ ବିଧି; ଅମାବାସ୍ୟା ତିଥିରେ ଯେଉଁଦିନ ଚନ୍ଦ୍ରମାଙ୍କୁ ଦେଖାଯାଏ ନାହିଁ, ସେହି ଦିବସର ଅପରାହ୍ନ ସମୟରେ ପିଣ୍ଡଦାନରୂପ ପିତୃଯଜ୍ଞ କଲେ ତାହା ସାମାନ୍ୟ ବିଧି ବୋଲି ପରିଗଣିତ ହୁଏ । କିନ୍ତୁ ସମସ୍ତ ତିଥିରେ ଶ୍ରାଦ୍ଧ କଲେ ପିତୃଗଣ ପରିତୃପ୍ତ ହୁଅନ୍ତି । ଅତଏବ ତୁମ୍ଭଙ୍କୁ ତିଥି ଓ ଆତିଥ୍ୟର ଗୁଣ ଦୋଷ ଓ ସମସ୍ତ କହୁଅଛୁଁ । ୭ ।

ହେ ଅନଘ ! ଯେଉଁଦିନମାନଙ୍କରେ ଶ୍ରାଦ୍ଧ କଲେ ତଦ୍ଦ୍ୱାରା ଯେଉଁ ଫଳସମୂହ ଲାଭ ହୁଏ ତାହାସବୁ ତୁମ୍ଭ ନିକଟରେ ଯଥାବିଧି କୀର୍ତ୍ତନ କରିବୁଁ, ଶ୍ରବଣ କର । ୮ । ପ୍ରତିପଦରେ ପିତୃଗଣଙ୍କୁ ପୂଜା କଲେ ମନୁଷ୍ୟ ସ୍ୱଗୃହରେ ସୁନ୍ଦରୀ ଓ ବହୁ ସନ୍ତାନଜନନୀ ସ୍ତ୍ରୀବୃନ୍ଦ ପ୍ରାପ୍ତ ହୁଅନ୍ତି । ୯ । ଦ୍ୱିତୀୟାରେ ଶ୍ରାଦ୍ଧ କଲେ କନ୍ୟା ଜନ୍ମେ, ତୃତୀୟା ତିଥିରେ ପିତୃଗଣଙ୍କୁ ପିଣ୍ଡ ଦେଲେ ମନୁଷ୍ୟ ବହୁ ଅଶ୍ୱ ଲାଭ କରନ୍ତି । ଚତୁର୍ଥୀରେ ଶ୍ରାଦ୍ଧକଲେ ଗୃହରେ ବହୁତର କ୍ଷୁଦ୍ର ପଶୁ ହୁଅନ୍ତି । ହେ ରାଜନ୍ ! ପଞ୍ଚମୀରେ ଶ୍ରାଦ୍ଧକାରୀ ମନୁଷ୍ୟଗଣଙ୍କର ବହୁ ପୁତ୍ର ଜାତ ହୁଅନ୍ତି । ଯେଉଁମାନେ ଷଷ୍ଠୀରେ ଶ୍ରାଦ୍ଧ କରନ୍ତି, ସେମାନେ ଦ୍ୟୁତିଶାଳୀ ହୁଅନ୍ତି । ମହାରାଜ ! ସପ୍ତମୀ ତିଥିରେ ଯେଉଁମାନେ ଶ୍ରାଦ୍ଧ କରନ୍ତି, ସେମାନେ କୃଷିଭାଗୀ ହୁଅନ୍ତି, ଯେ ଅଷ୍ଟମୀରେ ଶ୍ରାଦ୍ଧ କରନ୍ତି ସେ ବାଣିଜ୍ୟରେ ଲାଭଭାଗୀ ହୁଅନ୍ତି । ନବମୀରେ ଶ୍ରାଦ୍ଧ-କର୍ତ୍ତାଙ୍କର ବହୁତର ଏକଶଫ ଅର୍ଥାତ୍ ଅଶ୍ୱ ହୁଅନ୍ତି, ଦଶମୀରେ ଶ୍ରାଦ୍ଧକଲେ କର୍ତ୍ତାଙ୍କର ଗୋଧନସମୂହ ବିଶେଷରୂପେ ବର୍ଦ୍ଧିତ ହୁଅନ୍ତି । ହେ ନୃପ ! ଏକାଦଶୀରେ ଶ୍ରାଦ୍ଧ କଲେ ମନୁଷ୍ୟ ବସ୍ତ୍ର-ପାତ୍ରାଦି ଧନସମ୍ପନ୍ନ ହୁଏ ଏବଂ ତାହାର ଗୃହରେ ବ୍ରହ୍ମବର୍ଚ୍ଚସ୍ୱୀ ପୁତ୍ରସମୂହ ଜନ୍ମ ପରିଗ୍ରହଣ କରନ୍ତି । ଦ୍ୱାଦଶୀରେ ଶ୍ରାଦ୍ଧକଲେ ଗୃହକର୍ତ୍ତାଙ୍କ ଗୃହରେ ସର୍ବଦା ବହୁ ବିତ୍ତ,

ରଜତ ଓ ମନୋରମ ସୁବର୍ଣ୍ଣ ହସ୍ତଗତ ହୁଏ । ଯେ ତ୍ରୟୋଦଶୀରେ ଶ୍ରାଦ୍ଧ କରନ୍ତି, ସେ ଜ୍ଞାତିଗଣ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି । ଚତୁର୍ଦ୍ଦଶୀରେ ଶ୍ରାଦ୍ଧ କଲେ ମନୁଷ୍ୟ ଯୁଦ୍ଧଭାଗୀ ହୁଅନ୍ତି ଓ ତାହାଙ୍କ ଗୃହରେ ଯୁବା ପୁରୁଷସମୂହ ଅବଶ୍ୟ ପଞ୍ଚତ୍ୱ ପ୍ରାପ୍ତ ହୁଅନ୍ତି । ଅମାବସ୍ୟା ତିଥିରେ ପିଣ୍ଡଦାନ ଦେବାରୁ ମନୁଷ୍ୟ ସର୍ବକାମ ପ୍ରାପ୍ତ ହୁଅନ୍ତି । କୃଷ୍ଣ ପକ୍ଷରେ ଚତୁର୍ଦ୍ଦଶୀ ତିଥି ବର୍ଜନ ପୂର୍ବକ ଦଶମ୍ୟାଦି ସମସ୍ତ ତିଥି ଶ୍ରାଦ୍ଧ କର୍ମରେ ପ୍ରଶସ୍ତ, ଅନ୍ୟ ତିଥି ତାଦୃଶ ପ୍ରଶସ୍ତ ନୁହନ୍ତି । ପୂର୍ବ ପକ୍ଷ ଅପେକ୍ଷା ଅପର ପକ୍ଷ ଯେଉଁପରି ଉତ୍କୃଷ୍ଟ, ତଦ୍‌ବତ୍ ଶ୍ରାଦ୍ଧକର୍ମ ପକ୍ଷରେ ପୂର୍ବାହ୍‌ଣ ଅପେକ୍ଷା ଅପରାହ୍‌ଣ ବିଶେଷ ରୂପେ ପ୍ରଶସ୍ତ । ୧୯ ।

---

## ଅଧ୍ୟାୟ—୮୮

ଯୁଧିଷ୍ଠିର କହିଲେ—ହେ ପିତାମହ ! କେଉଁ ବସ୍ତୁ ପିତୃଗଣଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ହେଲେ ଅକ୍ଷୟ ହୁଏ ? କେଉଁ ହବି ଅନନ୍ତ-କାଳ ସ୍ଥାୟୀ ନିମିତ୍ତ କଳ୍ପିତ ହୁଏ ? ୧ । ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ଶ୍ରାଦ୍ଧବିତ୍ ପଣ୍ଡିତଗଣ ଶ୍ରାଦ୍ଧ କଳ୍ପରେ ଯେଉଁମାନଙ୍କୁ ହବିଃ ସ୍ୱରୂପ ଜ୍ଞାନ କରନ୍ତି, ସେହି ସମସ୍ତ କାମ୍ୟ ବିଷୟ ଏବଂ ତତ୍‌ଫଳସମୂହ ଆମ୍ଭ ନିକଟରୁ ଶ୍ରବଣ କର । ୨ ।

ହେ ରାଜନ୍ ! ତିଳ, ବ୍ରୀହି, ଯବ, ମାଷ, ଜଳ ଓ ଫଳମୂଳଦ୍ୱାରା ଶ୍ରାଦ୍ଧ କଲେ ପିତୃଗଣ ଏକମାସ କାଳ ପ୍ରୀତ ହୁଅନ୍ତି । ମନୁ କହିଅଛନ୍ତି ଯେ, ବର୍ଦ୍ଧମାନ ତିଳ ଶ୍ରାଦ୍ଧ ଅକ୍ଷୟ ଅଟେ, ସମସ୍ତ ଭୋଜ୍ୟ ଦ୍ରବ୍ୟ ମଧ୍ୟରେ ତିଳସମୂହର ପ୍ରାଧାନ୍ୟ ସ୍ମୃତ ହୋଇଅଛି । ମତ୍ସ୍ୟଦ୍ୱାରା ଶ୍ରାଦ୍ଧ କଲେ ପିତୃ-ଗଣଙ୍କର ଦୁଇମାସ ତୃପ୍ତି ହୁଏ । ମେଷ ମାଂସ ଦ୍ୱାରା ଶ୍ରାଦ୍ଧ କଲେ ତିନମାସ ଏବଂ ଶଶମାଂସ ଦ୍ୱାରା ଶ୍ରାଦ୍ଧ କଲେ ପିତୃଗଣ ଚାରିମାସ ତୃପ୍ତ ହୁଅନ୍ତି । ୫ । ହେ ନୃପ ! ଛାଗମାଂସ ଦ୍ୱାରା ଶ୍ରାଦ୍ଧ କଲେ ପିତୃଗଣ ପାଞ୍ଚମାସ ପ୍ରସନ୍ନ ହୁଅନ୍ତି । ବରାହ ମାଂସ ଦ୍ୱାରା ଶ୍ରାଦ୍ଧ କଲେ ପିତୃଗଣ ଛଅମାସ, ଶକୁନ ମାଂସ ଦ୍ୱାରା ଶ୍ରାଦ୍ଧ କଲେ ସାତ ମାସ ପର୍ଯ୍ୟନ୍ତ ପ୍ରୀତିଯୁକ୍ତ ହୁଅନ୍ତି । ଚିତ୍ର ମୃଗ ମାଂସ ଦ୍ୱାରା ଶ୍ରାଦ୍ଧ କଲେ ଅଷ୍ଟମାସ ଏବଂ କୃଷ୍ଣସାର ମୃଗ ମାଂସ ଦ୍ୱାରା ଶ୍ରାଦ୍ଧ କଲେ ପିତୃଗଣ ନବମାସ ପର୍ଯ୍ୟନ୍ତ ପ୍ରୀତିଯୁକ୍ତ ହୁଅନ୍ତି ।

ଗବୟ ମାଂସଦ୍ୱାରା ଶ୍ରାଦ୍ଧ କଲେ ପିତୃଗଣଙ୍କର ଦଶମାସ ପର୍ଯ୍ୟନ୍ତ ତୃପ୍ତି ହୁଏ । ୭ । ମହିଷ ମାଂସଦ୍ୱାରା ଶ୍ରାଦ୍ଧକଲେ ପିତୃଗଣଙ୍କର ଏକାଦଶ ମାସ ତୃପ୍ତି ହୁଏ । ଗବ୍ୟମାଂସଦ୍ୱାରା ଶ୍ରାଦ୍ଧ କଲେ ପିତୃଗଣଙ୍କର ସମ୍ବତ୍ସର ପର୍ଯ୍ୟନ୍ତ ତୃପ୍ତି ହୁଏ ବୋଲି ପଣ୍ଡିତଗଣ କହନ୍ତି । ୮ । ଗବ୍ୟ ମାଂସ ଯେଉଁପରି ଉପଯୁକ୍ତ, ଘୃତଯୁକ୍ତ ପାୟସ ମଧ୍ୟ ତାଦୃଶ ଉପଯୋଗୀ । ମହୋକ୍ଷ ଅଥବା ପକ୍ଷିବିଶେଷ କିମ୍ବା ଅଜବିଶେଷର ମାଂସଦ୍ୱାରା ପିତୃଗଣଙ୍କର ଦ୍ୱାଦଶ ବାର୍ଷିକୀ ତୃପ୍ତି ହୁଏ । ୯ । ପିତୃଯଜ୍ଞରେ ଖଡ୍‌ଗୀ ମାଂସ ପ୍ରଦତ୍ତ କଲେ ପିତୃଗଣଙ୍କର ଅନନ୍ତ କାଳ ପର୍ଯ୍ୟନ୍ତ ତୃପ୍ତି ହୁଏ । କାଳଶାକ, କାଞ୍ଚନ ବୃକ୍ଷର ପୁଷ୍ପାଦି ଏବଂ ଛାଗମାଂସଦ୍ୱାରା ଅନନ୍ତ କାଳ ପର୍ଯ୍ୟନ୍ତ ପିତୃଗଣଙ୍କର ତୃପ୍ତି ହୁଏ ବୋଲି ପଣ୍ଡିତମାନେ କହନ୍ତି । ହେ ଯୁଧିଷ୍ଠିର ! ଲୋକମାନେ ଏହି ବିଷୟରେ ପିତୃଗୀତା ଗାନ କରନ୍ତି । ପୂର୍ବକାଳରେ ଭଗବାନ୍ ସନତ୍କୁମାର ଆମ୍ଭ ନିକଟରେ ସେହି ଗୀତାସମୂହ କହିଥିଲେ । ୧୧ । ଆମ୍ଭମାନଙ୍କ ସ୍ୱକୀୟ ବଂଶରେ ଯେଉଁ ବ୍ୟକ୍ତି ଜନ୍ମଗ୍ରହଣ କରିବେ, ସେ ତ୍ରୟୋଦଶୀରେ ଆମ୍ଭମାନଙ୍କର ଶ୍ରାଦ୍ଧ କରିବେ ଏବଂ ଦକ୍ଷିଣାୟନରେ ମଘାନକ୍ଷତ୍ରରେ ଘୃତ ସଂଯୁକ୍ତ ପାୟସ ପ୍ରଦାନ କରିବେ ।୧୨। ମଘା ନକ୍ଷତ୍ରରେ ଯତବ୍ରତ ହୋଇ ଅଜ ଓ କାଞ୍ଚନବୃକ୍ଷ ପୁଷ୍ପାଦିଦ୍ୱାରା ଆମ୍ଭମାନଙ୍କର ତୃପ୍ତି ସାଧନ କରିବେ । ହସ୍ତୀ ଛାୟାରେ ବିଧିବତ୍ ପାୟସ ପ୍ରଭୃତି ପ୍ରଦାନ କରିବେ । ଅଥବା ଗଜଛାୟା ଯୋଗରେ ରକ୍ତବର୍ଣ୍ଣ ଛାଗମାଂସ ଦ୍ୱାରା ଶ୍ରାଦ୍ଧ କରି ସେହି ଶ୍ରାଦ୍ଧକୁ ବ୍ୟଜନଦ୍ୱାରା ବୀଜିତ କଲେ ଆମ୍ଭମାନଙ୍କର ନିଶ୍ଚୟ ଅକ୍ଷୟ ତୃପ୍ତି ଲାଭ ହେବ । ବହୁପୁତ୍ର କାମନା କରିବାର ଉଚିତ, କାରଣ ସେହିମାନଙ୍କ ମଧ୍ୟରୁ ଯଦି ଜଣେ କେହି ଅକ୍ଷୟ ବଟଦ୍ୱାରା ସମଲଂକୃତ ଗୟାକୁ ଗମନ କରିପାରେ ଏବଂ ପିତୃଯଜ୍ଞରେ ଜଳ, ଫଳମୂଳ, ମାଂସ, ଅନ୍ନ ପ୍ରଭୃତି ମଧୁମିଶ୍ରିତ ଯାହା କିଛି ପ୍ରଦାନ କରିପାରେ, ତାହା ଅନନ୍ତ କାଳ ପର୍ଯ୍ୟନ୍ତ ଫଳଜନକ ରୂପେ କଳ୍ପିତ ହେବ । ୧୫ ।

---

# ଅଧ୍ୟାୟ—୮୯

ଭୀଷ୍ମ କହିଲେ—ଯମଦେବ ଶଶବିନ୍ଦୁଙ୍କୁ ଯେଉଁସବୁ ଶ୍ରାଦ୍ଧ ବିଷୟ କହିଥିଲେ, ସେହିସବୁ ପୃଥକ୍ ପୃଥକ୍ ନକ୍ଷତ୍ରରେ ବିହିତ କାମ୍ୟ ଶ୍ରାଦ୍ଧ ବିଷୟକୁ ଆମ୍ଭ ନିକଟରୁ ଶ୍ରବଣ କର । ୧ । ଯେଉଁ ବ୍ୟକ୍ତି କୃତ୍ତିକା ନକ୍ଷତ୍ରରେ ସର୍ବଦା ଶ୍ରାଦ୍ଧ କରନ୍ତି ଏବଂ ଅଗ୍ନି ଆଧାନ ପୂର୍ବକ ଯଜ୍ଞ କରନ୍ତି, ସେ ଅପତ୍ୟ ସହିତ ଗତଜ୍ୱର ହୁଅନ୍ତି । ୨ । ଅପତ୍ୟକାମୀ ଜନ ରୋହିଣୀ ନକ୍ଷତ୍ରରେ ଏବଂ ତେଜସ୍କାମୀ ବ୍ୟକ୍ତି ମୃଗଶିର ନକ୍ଷତ୍ରରେ ଶ୍ରାଦ୍ଧ କରିବେ । ମନୁଷ୍ୟ ଆର୍ଦ୍ରା ନକ୍ଷତ୍ରରେ ଶ୍ରାଦ୍ଧ ଦାନ କଲେ କ୍ରୂରକର୍ମା ହୁଅନ୍ତି । ୩ । ପୁନର୍ବସୁ ନକ୍ଷତ୍ରରେ ଶ୍ରାଦ୍ଧ କଲେ ମନୁଷ୍ୟ କୃଷିଭାଗୀ ହୁଅନ୍ତି । ପୁଷ୍ଟିକାମୀ ମନୁଷ୍ୟ ପୁଷ୍ୟା ନକ୍ଷତ୍ରରେ ଶ୍ରାଦ୍ଧ କରିବେ । ୪ । ଯେଉଁ ଜନ ଅଶ୍ଳେଷା ନକ୍ଷତ୍ରରେ ଶ୍ରାଦ୍ଧ କରନ୍ତି, ସେ ବୀରପୁତ୍ରବୃନ୍ଦର ଉତ୍ପାଦକ ହୁଅନ୍ତି । ମଘା ନକ୍ଷତ୍ରରେ ଶ୍ରାଦ୍ଧକର୍ତ୍ତା ମନୁଷ୍ୟ ଜ୍ଞାତିଗଣଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ଲାଭ କରନ୍ତି । ୫ । ପୂର୍ବାଫାଲ୍‌ଗୁନ ନକ୍ଷତ୍ରରେ ଶ୍ରାଦ୍ଧ କଲେ ଶ୍ରାଦ୍ଧକର୍ତ୍ତା ସୌଭାଗ୍ୟଶାଳୀ ହୁଅନ୍ତି । ଉତ୍ତର ଫାଲ୍‌ଗୁନ ନକ୍ଷତ୍ରରେ ଶ୍ରାଦ୍ଧକର୍ତ୍ତା ଅପତ୍ୟ-ଭାଗୀ ହୁଅନ୍ତି । ହସ୍ତା ନକ୍ଷତ୍ରରେ ଶ୍ରାଦ୍ଧ କଲେ ମନୁଷ୍ୟ ଫଳଭାଗୀ ହୁଅନ୍ତି । ୬ । ଚିତ୍ରା ନକ୍ଷତ୍ରରେ ଶ୍ରାଦ୍ଧକର୍ତ୍ତା ରୂପବାନ୍ ପୁତ୍ର ଲାଭ କରନ୍ତି । ସ୍ୱାତି ନକ୍ଷତ୍ର ଯୋଗରେ ପିତୃଗଣଙ୍କ ଅର୍ଚ୍ଚନ କଲେ ମନୁଷ୍ୟ ବାଣିଜ୍ୟଦ୍ୱାରା ଜୀବିକା ନିର୍ବାହ କରନ୍ତି । ୭ । ପୁତ୍ର କାମନାରେ ବିଶାଖା ନକ୍ଷତ୍ରରେ ପିତୃଯଜ୍ଞ କଲେ ବହୁପୁତ୍ର ଉତ୍ପାଦନ କରନ୍ତି ।

ଅନୁରାଧା ନକ୍ଷତ୍ରରେ ଶ୍ରାଦ୍ଧ କଲେ ରାଜଚକ୍ରର ପ୍ରବର୍ତ୍ତକ ହୁଅନ୍ତି ।୮। ହେ କୁରୁକୁଳଶ୍ରେଷ୍ଠ ! ନର ଋଦ୍ଧ ଓ ଦମପୁରଃସର ହୋଇ ଜ୍ୟେଷ୍ଠା ନକ୍ଷତ୍ରରେ ଶ୍ରାଦ୍ଧ କଲେ ଆଧିପତ୍ୟ ପ୍ରାପ୍ତ ହୁଅନ୍ତି । ମାନବ ମୂଳାନକ୍ଷତ୍ରରେ ଶ୍ରଦ୍ଧାଯୁକ୍ତ ହୋଇଁ ଶ୍ରାଦ୍ଧ କଲେ ଉତ୍କୃଷ୍ଟ ଯଶୋଲାଭ କରନ୍ତି । 'ଉତ୍ତରାଷାଢ଼ା ନକ୍ଷତ୍ରରେ ପିତୃଲୋକର ଅର୍ଚ୍ଚନାକାରୀ ନର ବୀତଶୋକ ହୋଇ ମହୀମଣ୍ଡଳ-ରେ ବିଚରଣ କରନ୍ତି । ୧୦ । ଉତ୍ତରାଷାଢ଼ାର ଶେଷପାଦ ଓ ଶ୍ରବଣାର ପ୍ରଥମ ଦଣ୍ଡ ଚତୁଷ୍ଟୟ ଏହି ଅଭିଜିତ ନକ୍ଷତ୍ରରେ ଶ୍ରାଦ୍ଧ କଲେ କର୍ତ୍ତା ଶ୍ରେଷ୍ଠ ବିଦ୍ୟାପ୍ରାପ୍ତ ହୁଅନ୍ତି । ଶ୍ରବଣା ନକ୍ଷତ୍ରରେ ଶ୍ରାଦ୍ଧ ଦାନକର୍ତ୍ତା ପରଲୋକରେ ଉତ୍କୃଷ୍ଟ ସଦ୍‌ଗତି ପ୍ରାପ୍ତ ହୁଅନ୍ତି । ୧୧ । ନର ଧନିଷ୍ଠା ନକ୍ଷତ୍ରରେ ସର୍ବଦା ଶ୍ରାଦ୍ଧ ଦାନ

କଲେ ରାଜ୍ୟଭାଗୀ ହୁଅନ୍ତି । ଶତଭିଷା ନକ୍ଷତ୍ରରେ ଶ୍ରାଦ୍ଧ ଦାନ କଲେ ନର ଭିଷକ୍ ସିଦ୍ଧକ ପ୍ରାପ୍ତ ହୁଅନ୍ତି । ୧୨ । ପୂର୍ବଭାଦ୍ରପଦ ନକ୍ଷତ୍ରରେ ପିତୃଶ୍ରାଦ୍ଧ କଲେ ନର ବହୁଳ ଅଜ ମେଷାଦି ଧନ ଲାଭ କରନ୍ତି । ଉତ୍ତର-ଭାଦ୍ରପଦ ନକ୍ଷତ୍ରରେ ମନୁଷ୍ୟ ଶ୍ରାଦ୍ଧ ଦାନ କଲେ ସହସ୍ର ସହସ୍ର ଗୋଧନ ପ୍ରାପ୍ତ ହୁଅନ୍ତି । ୧୩ ।

ରେବତୀ ନକ୍ଷତ୍ରରେ ଆଶ୍ରୟ ପୂର୍ବକ ଶ୍ରାଦ୍ଧ କଲେ ମନୁଷ୍ୟ ସ୍ୱର୍ଣ୍ଣ ରୌପ୍ୟ ବ୍ୟତୀତ ବହୁବିତ୍ତ ଲାଭ କରନ୍ତି । ଅଶ୍ୱିନୀ ନକ୍ଷତ୍ରରେ ଶ୍ରାଦ୍ଧ କଲେ ମନୁଷ୍ୟ ଉତ୍କୃଷ୍ଟ ଅଶ୍ୱସମୂହ ପ୍ରାପ୍ତ ହୁଅନ୍ତି ଓ ଭରଣୀ ନକ୍ଷତ୍ରରେ ପିତୃପୂଜା କଲେ ଉତ୍ତମ ଆୟୁଃ ପ୍ରାପ୍ତ ହୁଅନ୍ତି । ୧୪ । ଶଶବିନ୍ଦୁ ଏହି ଶ୍ରାଦ୍ଧବିଧି ଶ୍ରବଣ ପୂର୍ବକ ତାଦୃଶ ଅନୁଷ୍ଠାନ କରିଥିଲେ ଏବଂ ସେ ଅକ୍ଳେଶରେ ମହୀମଣ୍ଡଳ ଜୟ କରି ତାହା ଶାସନ କରିଥିଲେ । ୧୫ ।

---

## ଅଧ୍ୟାୟ—୯୦

ଯୁଧିଷ୍ଠିର କହିଲେ—ହେ କୁରୁଶ୍ରେଷ୍ଠ ପିତାମହ ! କାଦୃଶ ଦ୍ୱିଜଗଣଙ୍କୁ ଦାନ କଲେ ଶ୍ରାଦ୍ଧ ସମ୍ପନ୍ନ ହୁଏ ? ଭୀଷ୍ମ କହିଲେ, ହେ ମହାରାଜ ! ଋଷିଗଣ କହନ୍ତି, ଦାନଧର୍ମବିତ୍ କ୍ଷତ୍ରିୟଙ୍କର ଦୈବ କାର୍ଯ୍ୟରେ ବ୍ରାହ୍ମଣଙ୍କୁ ପରୀକ୍ଷା କରିବାର ଉଚିତ ନୁହେଁ । କିନ୍ତୁ ପିତୃକାର୍ଯ୍ୟରେ ବ୍ରାହ୍ମଣଙ୍କ ପରୀକ୍ଷା ନ୍ୟାଯ୍ୟ । ୨ । ମନୁଷ୍ୟ ଦେବକାର୍ଯ୍ୟରେ କେବଳ ଦେବତାଗଣଙ୍କୁ ପୂଜା କରନ୍ତି; ଅତଏବ ଦେବୋଦ୍ଦେଶ୍ୟରେ ବ୍ରାହ୍ମଣମାନଙ୍କୁ ପୂଜା କରିବାର ବିଧେୟ । ୩ । ପରନ୍ତୁ ବିଦ୍‌ବାନ ମାନବ ଶ୍ରାଦ୍ଧ କାଳରେ କୁଳ, ଶୀଳ, ବୟସ, ବିଦ୍ୟା, ରୂପ ଓ ବଂଶମର୍ଯ୍ୟାଦାଦ୍ୱାରା ବ୍ରାହ୍ମଣଗଣଙ୍କୁ ପରୀକ୍ଷା କରିବେ । ହେ ରାଜନ୍ ! ବ୍ରାହ୍ମଣଗଣଙ୍କ ମଧ୍ୟରେ କେହି କେହି ପଂକ୍ତିଦୂଷଣ, କେହି କେହି ପଂକ୍ତିପାବନ ଅଛନ୍ତି । ତନ୍ମଧ୍ୟରେ ଦୁଷ୍କର୍ମାଦି ବଶରୁ ଯେଉଁମାନେ ପଂକ୍ତିର ଅଯୋଗ୍ୟ, ସେହିମାନଙ୍କ ବିଷୟ କୀର୍ତ୍ତନ କରୁଅଛୁଁ, ଶ୍ରବଣ କର । ୫ ।

ଧୂର୍ତ୍ତ, ଭ୍ରୂଣ ହତ୍ୟାକାରୀ, ଯକ୍ଷ୍ମାରୋଗଗ୍ରସ୍ତ, ପଶୁପାଳକ, ଅଧ୍ୟୟନାଦି-ବର୍ଜିତ, ଗ୍ରାମପ୍ରେଷ୍ୟ, ବାର୍ଦ୍ଧୁଷିକ ଅର୍ଥାତ୍ ଧନବୃଦ୍ଧି ନିମିତ୍ତ ଧନ

ପ୍ରୟୋଗକାରୀ, ଗାୟକ, ସର୍ବବିକ୍ରୟୀ, ଅଗାରଦାହୀ, ଗରଦ, କୁଣ୍ଡାଶୀ, ସୋମବିକ୍ରୟୀ ଓ ସାମୁଦ୍ରିକ, ରାଜଭୃତ୍ୟ, ତୈଳକ, ଅର୍ଥାତ୍ ତୈଳ-କର୍ମକାରୀ, କୂଟକାରକ (୭), ପିତୃସହିତ ବିବଦମାନ, ଯାହାଙ୍କ ଗୃହରେ ଉପପତି ଥାଆନ୍ତି ତାଦୃଶ ବ୍ୟକ୍ତି, ଅଭିଶପ୍ତ, ଚୌର, ଯେଉଁ ବ୍ୟକ୍ତି ଶିଳ୍ପ ଉପଜୀବ୍ୟକରି ଜୀବନଧାରଣ କରନ୍ତି (୮), ପର୍ବକାର ଅର୍ଥାତ୍ ବେଶାନ୍ତର-ଧାରୀ ପିଶୁନ, ମିତ୍ରଦ୍ରୋହୀ, ପାରଦାରିକ, ଶୂଦ୍ରଗଣଙ୍କର ଉପାଧ୍ୟାୟ, କାଣ୍ଡ-ପୃଷ୍ଠ ଅର୍ଥାତ୍ ଶସ୍ତ୍ରଜୀବୀ, ଯେଉଁମାନେ କୁକୁରଦ୍ୱାରା ମୃଗୟା କରନ୍ତି, ଯାହାଙ୍କୁ କୁକୁର ଦଂଶନ କରିଥାଏ, ଜ୍ୟେଷ୍ଠର ଅନୂଢାବସ୍ଥାରେ ଯେଉଁ ବ୍ୟକ୍ତି ଦାରପରିଗ୍ରହ କରନ୍ତି ତାଦୃଶ ପରିବେତ୍ତା ବ୍ୟକ୍ତି, ଅନାବୃତମେଢ୍ର, ଗୁରୁପତ୍ନୀହର୍ତ୍ତା (୧୦), କୃଷୀବଳ, ଦେବଳକ ଓ ଗଣକ ପ୍ରଭୃତି ବ୍ରାହ୍ମଣଗଣ ପଂକ୍ତିର ଦୂଷକ ।

ହେ ଯୁଧିଷ୍ଠିର ! ଈଦୃଶ ପଂକ୍ତିଦୂଷକ ବ୍ରାହ୍ମଣଗଣ ଯଦି ଶ୍ରାଦ୍ଧରେ ଭୋଜନ କରନ୍ତି, ତେବେ ସେହି ଶ୍ରାଦ୍ଧର ହବ୍ୟ ରାକ୍ଷସଭୁକ୍ତ ହୁଏ । ବ୍ରହ୍ମବାଦୀମାନେ କହନ୍ତି ଯେ, ଶୂଦ୍ରା ସ୍ତ୍ରୀ ଗମନକାରୀ ବ୍ରାହ୍ମଣ ଶ୍ରାଦ୍ଧରେ ଭୋଜନ କରି ଯଦି ଅଧ୍ୟୟନ କରନ୍ତି, ତେବେ ଶ୍ରାଦ୍ଧକର୍ତ୍ତାଙ୍କ ପିତୃଗଣ ସେହି ବ୍ରାହ୍ମଣଙ୍କ ପୁରୀଷରେ ଏକମାସ କାଳ ଶୟନ କରନ୍ତି । ସୋମ-ବିକ୍ରେତାଙ୍କୁ ଯାହା ଦାନ କରାଯାଏ, ତାହା ବିଷ୍ଠାସଦୃଶ; ଭିଷକ୍‌ବୃତ୍ତି ବ୍ରାହ୍ମଣମାନଙ୍କୁ ଯାହା ଦାନ କରାଯାଏ, ତାହା ପୂୟ ଓ ଶୋଣିତ ସଦୃଶ; ଦେବଳକଙ୍କୁ ଯାହା ପ୍ରଦତ୍ତ ହୁଏ, ତାହା ନଷ୍ଟ ହୁଏ । ବାର୍ଦ୍ଧୁଷିକ ଅର୍ଥାତ୍ ବୃଦ୍ଧିଜୀବୀ ବ୍ରାହ୍ମଣମାନଙ୍କୁ ଯାହା ଦାନ କରାଯାଏ, ତାହା ପିତୃଗଣଙ୍କୁ ପ୍ରାପ୍ତ ହୁଏ ନାହିଁ । ବାଣିଜ୍ୟକାରୀଙ୍କୁ ପ୍ରଦାନ କଲେ ତାହା ପରଲୋକ ଓ ଇହ-ଲୋକରେ କୌଣସି କାର୍ଯ୍ୟକର ହୁଏ ନାହିଁ । ପୌନର୍ଭବ ବ୍ରାହ୍ମଣମାନଙ୍କୁ ଦାନକଲେ ତାହା ଭସ୍ମରେ ଘୃତାହୁତି ପ୍ରଦାନ କଲା ପ୍ରାୟ ହୁଏ । ଧର୍ମରୁ ବିଚଳିତ ଏବଂ ଦୁଷ୍ଟଚରିତ୍ର ବ୍ରାହ୍ମଣଗଣଙ୍କୁ ଯେଉଁମାନେ ହବ୍ୟକବ୍ୟ ପ୍ରଦାନ କରନ୍ତି, ସେମାନଙ୍କ ସେହି ଦାନ ପରଲୋକରେ ବିନଷ୍ଟ ହୁଏ ।

ଯେଉଁ ଅଳ୍ପବୁଦ୍ଧି ମାନବଗଣ ଜ୍ଞାନପୂର୍ବକ ଏତାଦୃଶ ପଂକ୍ତିଦୂଷକ ବ୍ରାହ୍ମଣଙ୍କୁ ଶ୍ରାଦ୍ଧକାଳରେ ଦାନ କରନ୍ତି, ସେମାନଙ୍କ ପିତୃଗଣ ପରଲୋକରେ ବିଷ୍ଠାଭକ୍ଷଣ କରନ୍ତି, ଏହା ନିଶ୍ଚୟ ହୋଇଅଛି । ୧୬ । ଯେଉଁ ଅଳ୍ପଚେତା ବ୍ରାହ୍ମଣଗଣ ଶୂଦ୍ରମାନଙ୍କୁ ଉପଦେଶ ପ୍ରଦାନ କରନ୍ତି, ସେମାନଙ୍କୁ ଓ ପୂର୍ବୋକ୍ତ

ଦ୍ୱିଜାଧମଗଣଙ୍କୁ ପଂକ୍ତିଦୂଷକ ବୋଲି ଜାଣିବ ।୧୭। ହେ ନୃପ ! ବ୍ରାହ୍ମଣପଂକ୍ତି ମଧ୍ୟରେ କାଣ ବ୍ୟକ୍ତି ଉପବିଷ୍ଟ ହେଲେ ସେ ଷଷ୍ଟିସଂଖ୍ୟକ ବ୍ରାହ୍ମଣମାନଙ୍କୁ ଦୂଷିତ କରନ୍ତି । କ୍ଲୀବ ବ୍ୟକ୍ତି ଶତ ବ୍ରାହ୍ମଣଙ୍କୁ ଦୂଷିତ କରେ ; ଶ୍ୱିତ୍ରରୋଗୀ, ଯାବତ୍‌ସଂଖ୍ୟକ ବ୍ରାହ୍ମଣମାନଙ୍କୁ ଦର୍ଶନ କରେ, ତାବତ୍ ବ୍ରାହ୍ମଣମାନଙ୍କୁ ଦୂଷିତ କରେ । ୧୮ । ମନୁଷ୍ୟ ବେଷ୍ଟିତଶିର ହୋଇ ଯାହା ଭକ୍ଷଣ କରନ୍ତି, ଦକ୍ଷିଣମୁଖ ହୋଇ ଯାହା ଭକ୍ଷଣ କରନ୍ତି ଏବଂ ପାଦୁକା ପରିଧାନ-ପୂର୍ବକ ଯାହା ଭୋଜନ କରନ୍ତି, ତାହା ଆସୁରିକ ବୋଲି ଜାଣିବାକୁ ହେବ । ୧୯ । ଯାହା ଅସୂୟାବଶରେ ପ୍ରଦତ୍ତ ହୁଏ ଏବଂ ଯାହା ଶ୍ରଦ୍ଧା-ବିବର୍ଜିତ ରୂପେ ପ୍ରଦାନ କରାଯାଏ, ବ୍ରହ୍ମା ସେହି ସମସ୍ତ ଅଂଶକୁ ଅସୁରେନ୍ଦ୍ରଙ୍କ ବଳ ନିମିତ୍ତ କଳ୍ପନା କରିଅଛନ୍ତି । ୨୦ ।

କୁକ୍କୁର ଓ ପଂକ୍ତିଦୂଷଣ ବ୍ରାହ୍ମଣଗଣ କଦାପି ଶ୍ରାଦ୍ଧ ଦର୍ଶନ କରିବେ ନାହିଁ । ଏହି ନିମିତ୍ତ ଆବୃତ ସ୍ଥାନରେ ପିତୃଲୋକଙ୍କ ଉଦ୍ଦେଶ୍ୟରେ ଦାନ କରିବାର ବିଧେୟ ଏବଂ ତିଳ ବିକୀର୍ଣ୍ଣ କରିବାର ବିଧେୟ । ୨୧ । ତିଳ ବ୍ୟତିରେକେ ଯେଉଁ ଶ୍ରାଦ୍ଧ ହୁଏ, କ୍ରୋଧର ବଶୀଭୂତ ହୋଇ ଯେଉଁ ଶ୍ରାଦ୍ଧ କରାଯାଏ, ରାକ୍ଷସ ଓ ପିଶାଚଗଣ ସେହି ଶ୍ରାଦ୍ଧର ହବି ବିଲୁପ୍ତ କରନ୍ତି । ୨୨ । ପଂକ୍ତିରେ ଅଯୋଗ୍ୟ ବ୍ରାହ୍ମଣ ପଂକ୍ତି ମଧ୍ୟରେ ଯାବତ୍ ପରିମାଣ ଭୁଞ୍ଜାନ ବ୍ରାହ୍ମଣଙ୍କୁ ଅବଲୋକନ କରନ୍ତି, ସେ କର୍ତ୍ତବ୍ୟ କର୍ମବିମୂଢ଼ ଦାତାଙ୍କୁ ତାବତ୍ ପରିମାଣରେ ଫଳଭ୍ରଷ୍ଟ କରନ୍ତି । ୨୩ ।

ହେ ଭରତଶ୍ରେଷ୍ଠ ! ପୂର୍ବେ ଅପାଂକ୍ତେୟ ବ୍ରାହ୍ମଣଙ୍କ ବିବରଣ ବର୍ଣ୍ଣିତ କଲୁଁ, ସଂପ୍ରତି ଯେଉଁମାନେ ପଂକ୍ତିପାବନ, ସେମାନଙ୍କ ବିଷୟ କହୁଅଛୁ । ତୁମ୍ଭେ ସେହି ଦ୍ୱିଜମାନଙ୍କୁ ପରୀକ୍ଷା କର । ୨୪ । ବିଦ୍ୟାସ୍ନାତ, ବ୍ରତସ୍ନାତ, ବେଦସ୍ନାତ, ସଦାଚାରପରାୟଣ, ବ୍ରାହ୍ମଣବୃନ୍ଦଙ୍କୁ ସର୍ବପାବନ ବୋଲି ଜାଣିବାକୁ ହେବ । ୨୫ । ଯେଉଁମାନେ ପାଂକ୍ତେୟ, ସେହିମାନଙ୍କ ବିଷୟ କହୁଅଛୁ, ତୁମ୍ଭେ ସେହିମାନଙ୍କୁ ପଂକ୍ତିପାବନ ବୋଲି ଜାଣିବ । ଯେ ତ୍ରିଣାଚିକେତ ବ୍ରତ ଅଧ୍ୟୟନ କରିଥାନ୍ତି, ଯେ ଗାର୍ହପତ୍ୟ, ଦକ୍ଷିଣ, ଆହବନୀୟ, ସଭ୍ୟ ଓ ଆବସଥ୍ୟ ଏହି ପଞ୍ଚବିଧ ଅଗ୍ନିର ଅନୁଷ୍ଠାନ ଜାଣନ୍ତି ଯେ ତ୍ରିସୁପର୍ଣ୍ଣ ନାମ ବହ୍ୱୃଚଗଣଙ୍କ ମନ୍ତ୍ରବିଷୟ ଅବଗତ ହୋଇଥାଆନ୍ତି ଏବଂ ଯେ ଶିକ୍ଷାକଳ୍ପ ପ୍ରଭୃତି ବେଦର ଷଡଙ୍ଗବେତ୍ତା ଏବଂ ଯେଉଁମାନେ ବଂଶ ପରମ୍ପରାରେ ବେଦ ଅଧ୍ୟାପନା କରିଥାଆନ୍ତି, ସେହିମାନଙ୍କ ବଂଶରେ ଯେ ଜନ୍ମଗ୍ରହଣ କରିଅଛନ୍ତି, ଯେ ଜ୍ୟେଷ୍ଠ ସାମବେଦ ଗାନ କରିବାକୁ ସମର୍ଥ ଏବଂ ଯେ

ମାତାପିତାଙ୍କ ବଶୀଭୂତ, ଯାହାଙ୍କ ଦଶପୁରୁଷ ଶ୍ରୋତ୍ରୀୟ, ଯେ ସର୍ବଦା ଧର୍ମପତ୍ନୀମାନଙ୍କ ନିକଟକୁ ଋତୁକାଳରେ ଗମନ କରନ୍ତି ଏବଂ ଯେ ବେଦ-ବିଦ୍ୟା ପାରଗ ଓ ବ୍ରତସ୍ନାତ, ସେହି ବିପ୍ର ପଂକ୍ତିକୁ ପବିତ୍ର କରନ୍ତି । ୨୮ ।

ଯେ ଅଥର୍ବ ବେଦର ଶିରୋଭାଗ ଅଧ୍ୟୟନ କରନ୍ତି, ଯେ ବ୍ରହ୍ମଚାରୀ ଓ ଯତବ୍ରତ, ଯେ ସତ୍ୟବାଦୀ, ଧର୍ମଶୀଳ ଓ ସ୍ୱକର୍ମନିରତ ଓ ଯେଉଁମାନେ ପୁଣ୍ୟତୀର୍ଥସମୂହରେ ସ୍ନାନ କରିବାକୁ କୃତଶ୍ରମ ଅଟନ୍ତି, ଯଜ୍ଞସମୂହରେ ଅବଭୃଥ ସ୍ନାନ କରିଥାଆନ୍ତି ( ୩୧ ), ଯେଉଁମାନେ ଅକ୍ରୋଧନ, ଅଚପଳ, କ୍ଷମାଶୀଳ, ଦାନ୍ତ, ଜିତେନ୍ଦ୍ରିୟ ଏବଂ ଯେଉଁମାନେ ସମସ୍ତ ପ୍ରାଣିବୃନ୍ଦର ହିତରେ ରତ, ସେହିମାନଙ୍କୁ ଶ୍ରାଦ୍ଧରେ ନିମନ୍ତ୍ରଣ କରିବ । ୩୧ । ଏହିମାନଙ୍କୁ ଦାନ କଲେ ଅକ୍ଷୟ ଫଳ ହୁଏ, ଏମାନେ ପଂକ୍ତିପାବନ । ଏହି ସମସ୍ତ ମହାଭାଗ ସର୍ବଶ୍ରେଷ୍ଠ ବ୍ରାହ୍ମଣଗଣଙ୍କୁ ପଂକ୍ତିପାବନ ବୋଲି ଜାଣିବ । ୩୨ ।

ଯେଉଁମାନେ ଯତ୍ତ ମୋକ୍ଷ, ଧର୍ମଜ୍ଞ, ଯୋଗଯୁକ୍ତ ଓ ସୁନ୍ଦରରୂପେ ବ୍ରତାଚରଣ କରନ୍ତି ଓ ଯେଉଁମାନେ ପ୍ରସନ୍ନ ହୋଇ ଦ୍ୱିଜୋତ୍ତମଗଣଙ୍କୁ ଇତିହାସ ଶ୍ରବଣ କରାନ୍ତି (୩୩), ଯେଉଁମାନେ ଭାଷ୍ୟବେତ୍ତା, ଯେଉଁମାନେ ବ୍ୟାକରଣ ଶାସ୍ତ୍ରରେ ନିରତ, ଯେଉଁମାନେ ପୁରାଣ ଶାସ୍ତ୍ର ଅଥବା ଧର୍ମଶାସ୍ତ୍ର ଅଧ୍ୟୟନ କରିଥାଆନ୍ତି (୩୪) ଏବଂ ଅଧ୍ୟୟନ କରି ଯଥାବିଧି ଅନୁଷ୍ଠାନ କରନ୍ତି, ଯେ ଗୁରୁକୁଳରେ ବାସ କରିଥାନ୍ତି, ସତ୍ୟବାଦୀ ଓ ସହସ୍ର ଦାତା (୩୫), ଯେଉଁମାନେ ସମସ୍ତ ବେଦ ଓ ପ୍ରବଚନରେ ଅଗ୍ରଗଣ୍ୟ, ସେମାନେ ପଂକ୍ତିରେ ଯାବତ୍ ପର୍ଯ୍ୟନ୍ତ ଅବଲୋକନ କରନ୍ତି, ତାବତ୍ ପରିମାଣଙ୍କୁ ପବିତ୍ର କରନ୍ତି । ୩୬ । ଅତଏବ ପଂକ୍ତିର ପବିତ୍ରତା ସାଧନ କରନ୍ତି ବୋଲି ସେମାନଙ୍କୁ ପଂକ୍ତିପାବନ କୁହାଯାଏ । ଯେଉଁମାନେ ବଂଶ ପରମ୍ପରାରେ ବେଦ ଅଧ୍ୟାପନା କରନ୍ତି, ଯେଉଁ ବ୍ୟକ୍ତି ତାଦୃଶ ବଂଶରେ ଜନ୍ମଗ୍ରହଣ କରିଥାଆନ୍ତି, ସେ ଏକାକୀ କ୍ରୋଶକରୁ ଅଥବା କ୍ରୋଶାର୍ଦ୍ଧରୁ ବା କ୍ରୋଶକର ତୃତୀୟ ଭାଗରୁ ପଂକ୍ତିକୁ ପବିତ୍ର କରନ୍ତି । ୩୭ । ବ୍ରହ୍ମବିତ୍ ବ୍ୟକ୍ତିଗଣ ଏହିପରି କହନ୍ତି ଯେ, କୌଣସି ବ୍ୟକ୍ତି ଯଦି ଋତ୍ୱିକ୍ ଅଥବା ଉପାଧ୍ୟାୟ ଗୁଣହୀନ ହୋଇ ଋତ୍ୱିକ୍‌ଗଣଙ୍କ ଅନୁଜ୍ଞା ଲାଭ ନ କରି ଅଗ୍ର ଆସନରେ ଉପବେଶନ କରନ୍ତି, ତଥାପି ସେ ପଂକ୍ତିର ଦୁଷ୍କୃତ ହରଣ କରନ୍ତି । ପଂକ୍ତି ଦୋଷ ବିବର୍ଜିତ ବେଦଜ୍ଞ ବିପ୍ର ଯଦି ପତିତ ନୋହିଥାନ୍ତି, ତେବେ ସେ ପଂକ୍ତିପାବନ । ଅତଏବ ସର୍ବ ପ୍ରଯତ୍ନରେ ପରୀକ୍ଷା କରି, ସ୍ୱକର୍ମନିରତ ସତ୍‌କୁଳ ଜାତ ଓ ଅନ୍ୟାନ୍ୟ ବହୁଶ୍ରୁତ ବ୍ରାହ୍ମଣଗଣଙ୍କୁ ଆମନ୍ତ୍ରଣ କରିବ ।

ଯେ ଶ୍ରାଦ୍ଧକାଳରେ ମିତ୍ରଗଣଙ୍କୁ ଆହ୍ୱାନ କରି ସେମାନଙ୍କୁ ଶ୍ରାଦ୍ଧୀୟ ଦ୍ରବ୍ୟ ଭୋଜନ କରାନ୍ତି, ପିତୃଗଣ ଓ ଦେବଗଣ ତତ୍କୃତ ଶ୍ରାଦ୍ଧରେ ତୃପ୍ତିଲାଭ କରନ୍ତି ନାହିଁ । ସେ ସ୍ୱର୍ଗକୁ ଗମନ କରିବା ନିମିତ୍ତ ସମର୍ଥ ହୁଅନ୍ତି ନାହିଁ । ୪୧ । ଯେଉଁ ବ୍ୟକ୍ତି ଶ୍ରାଦ୍ଧନିମିତ୍ତ ବନ୍ଧୁବାନ୍ଧବଗଣଙ୍କ ସହିତ ସଙ୍ଗତ କରନ୍ତି, ସେ ଦେବଯାନପଥରେ ଗମନ କରିପାରନ୍ତି ନାହିଁ । ତାଦୃଶ ଶ୍ରାଦ୍ଧମିତ୍ର ମାନବ ବନ୍ଧନରୁ ମୁକ୍ତ ହୋଇ ସ୍ୱର୍ଗଲୋକରୁ ବିଚ୍ୟୁତ ହୁଅନ୍ତି । ୪୨ । ସେହି କାରଣରୁ ଶ୍ରାଦ୍ଧକର୍ତ୍ତା ଶ୍ରାଦ୍ଧକାଳରେ ମିତ୍ରମାନଙ୍କୁ ଆଦର କରିବେ ନାହିଁ । ଅନ୍ୟ ସମୟରେ ସଂଗ୍ରହଣ ନିମିତ୍ତ ମିତ୍ରଗଣଙ୍କୁ ଧନ ଦାନ କରିବେ । ଯାହାଙ୍କୁ ଶତ୍ରୁ ଅବା ମିତ୍ର ବୋଲି ଜ୍ଞାନ କରାଯାଏ ନାହିଁ, ହବ୍ୟକବ୍ୟ ପ୍ରଦାନ ସମୟରେ ତାଦୃଶ ମଧ୍ୟସ୍ଥ ବ୍ରାହ୍ମଣଙ୍କୁ ଭୋଜନ କରାଇବାର ଉଚିତ । ୪୩ ।

ଊଷର ଭୂମିରେ ବୀଜ ବପନ କଲେ ଯେଉଁପରି ଅଙ୍କୁର ହୁଏ ନାହିଁ ଏବଂ ବପନକର୍ତ୍ତା ଯେଉଁପରି ସେହି ବୀଜର ଭାଗପ୍ରାପ୍ତ ହୁଏ ନାହିଁ, ସେହିପରି ଅଯୋଗ୍ୟ ବ୍ରାହ୍ମଣ କର୍ତ୍ତୃକ ଭୁକ୍ତ ଶ୍ରାଦ୍ଧ ଇହଲୋକ କିମ୍ବା ପରଲୋକରେ କଦାପି ଫଳଦାନ କରେ ନାହିଁ । ୪୪ । ଅନଧ୍ୟୟନ ବ୍ରାହ୍ମଣ ତୃଣାଗ୍ନି ସଦୃଶ ଶାନ୍ତ ହୁଅନ୍ତି, ସେହି କାରଣରୁ ତାଦୃଶ ଦ୍ୱିଜଙ୍କୁ ଶ୍ରାଦ୍ଧୀୟ ଦ୍ରବ୍ୟ ଦାନ କରିବ ନାହିଁ, କାରଣ ଭସ୍ମରେ କଦାପି ହୋମ ହୁଏ ନାହିଁ । ୪୫ । ସଂଭୋଜନୀ ଅର୍ଥାତ୍ ପରସ୍ପର ଉପଯୁକ୍ତମାନା ଦକ୍ଷିଣାକୁ ପିଶାଚ ଦକ୍ଷିଣା କହନ୍ତି, ପିଶାଚଗଣ ଯେଉଁପରି ଭୋଜକମାନଙ୍କୁ ଭୋଜନ କରାନ୍ତି, ଏହା ତାଦୃଶ ଅଟେ, ଅତଏବ ଈଦୃଶ ଦାନର ଫଳ ଦେବଲୋକ କିମ୍ବା ପିତୃଲୋକକୁ ଯାଏ ନାହିଁ । ନଷ୍ଟବତ୍ସା ଧେନୁ ଯେପରି ଗୋଶାଳାର ଅଭ୍ୟନ୍ତରରେ ଭ୍ରମଣ କରେ, ତଦ୍ବତ୍ ସେହି ପୁଣ୍ୟହୀନା ଦକ୍ଷିଣା ଇହଲୋକରେ ଭ୍ରମଣ କରେ । ୪୬ ।

ଅଗ୍ନି ପ୍ରଶାନ୍ତ ହେବାରୁ ତହିଁରେ ଯେଉଁ ଘୃତାହୁତି ପ୍ରଦାନ କରାଯାଏ ସେ ଯେଉଁପରି ଦେବଲୋକ ଅଥବା ପିତୃଲୋକରେ ଉପନୀତ ହୁଏ ନାହିଁ, ନର୍ତ୍ତକ ଓ ଗାୟକଙ୍କୁ ଯାହା ପ୍ରଦତ୍ତ ହୁଏ, ଏବଂ ମିଥ୍ୟାବାଦୀଙ୍କୁ ଯାହା ପ୍ରଦାନ କରାଯାଏ, ତାହା ତଦ୍ବତ୍ ହୁଏ । ଅନୃତବାଦୀ ବ୍ୟକ୍ତିଙ୍କୁ ଯେଉଁ ଦକ୍ଷିଣା ପ୍ରଦାନ କରାଯାଏ, ତାହା ସେହି ପ୍ରଦାତାଙ୍କ ଉଭୟ କୁଳକୁ ନଷ୍ଟକରେ ଏବଂ ତାହାଙ୍କୁ ପାଳନ କରେ ନାହିଁ । ସେହି ଅପାତ୍ରନ୍ୟସ୍ତ ଗର୍ହିତା ଦକ୍ଷିଣା ସ୍ୱୟଂ ପତିତା ହୋଇ ପ୍ରଦାତାଗଣଙ୍କ ପ୍ରେତଗଣଙ୍କୁ ଦେବଯାନ-ପଥରୁ ପାତିତ କରେ । ୪୮ ।

ହେ ଯୁଧିଷ୍ଠିର ! ଯେଉଁମାନେ ସର୍ବଦା ଋଷିଗଣଙ୍କ ନିୟମ ଆଚରଣ କରନ୍ତି, ସେହି ନିଷ୍ଠିତମତି ସର୍ବଧର୍ମଜ୍ଞ ବ୍ୟକ୍ତିଗଣଙ୍କୁ ଦେବତାମାନେ ବ୍ରାହ୍ମଣ ବୋଲି ଜାଣନ୍ତି । ୪୯ । ହେ ଭାରତ ! ସ୍ୱାଧ୍ୟାୟନିଷ୍ଠ, ତପୋନିଷ୍ଠ ଏବଂ କର୍ମନିଷ୍ଠ ବ୍ରାହ୍ମଣଗଣଙ୍କୁ ଋଷି ବୋଲି ଜ୍ଞାନ କରିବ । ୫୦ । ହେ ଭାରତ ! ଜ୍ଞାନନିଷ୍ଠ ବ୍ରାହ୍ମଣଙ୍କୁ କବ୍ୟ ପ୍ରଦାନ କର୍ତ୍ତବ୍ୟ । ଯେ କୌଣସି ବ୍ରାହ୍ମଣ ଜ୍ଞାନନିଷ୍ଠ ହୁଅନ୍ତି, ସେ ବ୍ରାହ୍ମଣଙ୍କୁ ନିନ୍ଦା କରନ୍ତି ନାହିଁ । ଯେଉଁମାନେ କଥୋପକଥନ ସମୟରେ ବ୍ରାହ୍ମଣଗଣଙ୍କୁ ନିନ୍ଦା କରନ୍ତି, ସେହିମାନଙ୍କୁ ଶ୍ରାଦ୍ଧରେ ଭୋଜନ କରାଇବ ନାହିଁ । ହେ ରାଜନ୍ ! ବ୍ରାହ୍ମଣଗଣ ନିନ୍ଦିତ ହେଲେ ସେମାନେ ନିନ୍ଦକପୁରୁଷକୁଳକୁ ଧ୍ୱଂସ କରନ୍ତି । ୫୨ । ହେ ନୃପ ! ଆମ୍ଭେ ବୈଖାନସ ଋଷିଗଣଙ୍କ ବାକ୍ୟ ଶୁଣିଅଛୁ ଯେ ବେଦପାରଗ ବିପ୍ରଙ୍କୁ ଦୂରରୁ ପରୀକ୍ଷା କରିବ, ସେମାନେ ପ୍ରିୟ ଅଥବା ଅପ୍ରିୟ ହେଉନ୍ତୁ, ଶ୍ରାଦ୍ଧକାଳରେ ସେମାନଙ୍କୁ ଦାନ କରିବାର ବିଧେୟ । ହେ ଭାରତ ! ଯେଉଁ ଜନ ସହସ୍ର ସହସ୍ର ଅନୃତବାଦୀ ବିପ୍ରଙ୍କୁ ଭୋଜନ କରାନ୍ତି, ସେ ଗୋଟିଏ ମାତ୍ର ମନ୍ତ୍ରଜ୍ଞ ବ୍ରାହ୍ମଣଙ୍କୁ ଭୋଜନ କରାଇ ପ୍ରୀତ କଲେ ତତ୍ସମୁଦାୟର ଫଳ ପ୍ରାପ୍ତ ହୁଅନ୍ତି । ୫୪ ।

---

## ଅଧ୍ୟାୟ—୯୧

ଯୁଧିଷ୍ଠିର କହିଲେ—ହେ ପିତାମହ ! କେଉଁ ବ୍ୟକ୍ତିଙ୍କଦ୍ୱାରା ଶ୍ରାଦ୍ଧ ସଂକଳ୍ପିତ ହୋଇଅଛି ? କେଉଁ ସମୟରେ ଶ୍ରାଦ୍ଧ କର୍ତ୍ତବ୍ୟ ? ଶ୍ରାଦ୍ଧ କେଉଁ ସ୍ୱରୂପ ? ଯେଉଁ କାଳରେ ଭୃଗୁ ଓ ଅଙ୍ଗିରାଙ୍କ ବଂଶଜାତ ଋଷିମାନଙ୍କ ବ୍ୟତିରେକେ ଅନ୍ୟ କେହି ନ ଥିଲେ, ସେତେବେଳେ କେଉଁ ମୁନିଙ୍କଦ୍ୱାରା ଶ୍ରାଦ୍ଧ ପ୍ରବର୍ତ୍ତିତ ହେଲା ? ୧ । ଶ୍ରାଦ୍ଧକାଳରେ କେଉଁ କେଉଁ କର୍ମ ବର୍ଜନୀୟ ? କେଉଁ କେଉଁ ଫଳମୂଳ ପରିହାର୍ଯ୍ୟ ଏବଂ କେଉଁ କେଉଁ ଧାନ୍ୟ ଜାତୀୟ ଦ୍ରବ୍ୟ ପରିତ୍ୟାଜ୍ୟ ? ଆମ୍ଭ ନିକଟରେ ଆପଣ ତାହା କୀର୍ତ୍ତନ କରିବା ହେଉନ୍ତୁ । ୨ ।

ଭୀଷ୍ମ କହିଲେ, ହେ ଜନାଧିପ ! ଶ୍ରାଦ୍ଧ ଯେଉଁପରି ପ୍ରବୃତ୍ତ ହେଲା, ଶ୍ରାଦ୍ଧ ଯେଉଁ ସମୟରେ କରିବାକୁ ହୁଏ, ଶ୍ରାଦ୍ଧ ଯତ୍ ସ୍ୱରୂପ, ଯାହାଙ୍କଦ୍ୱାରା ସଂକଳ୍ପିତ ହୋଇଅଛି, ତାହା ଆମ୍ଭ ନିକଟରୁ ଶ୍ରବଣ କର । ୩ ।

ହେ କୁରୁବଂଶ ଧୂରନ୍ଧର ମହାରାଜ ! ସ୍ୱୟମ୍ଭୂଙ୍କ ପୁତ୍ର ଅତ୍ରି ନାମକ ପ୍ରତାପବାନ ଗୋଟିଏ ପରମର୍ଷି ତ ବିଖ୍ୟାତ ଅଛନ୍ତି । ତାହାଙ୍କ ବଂଶରେ ଦତ୍ତାତ୍ରେୟ ଉତ୍ପନ୍ନ ହେବାର ଏହା ସୂଚିତ ଅଛି । ୪ । ଦତ୍ତାତ୍ରେୟଙ୍କର ନିମି ନାମକ ଏକ ତପୋଧନ ପୁତ୍ର ହୋଇଥିଲେ । ନିମିଙ୍କର ଶ୍ରୀସମ୍ପନ୍ନ ଶ୍ରୀମାନ୍ ନାମକ ପୁତ୍ର ଥିଲେ । ସେ ସହସ୍ର ବର୍ଷ ପୂର୍ଣ୍ଣ ହେବାରୁ ଦୁଷ୍କର ତପସ୍ୟା କରି କାଳ ଧର୍ମାକ୍ରାନ୍ତ ହୋଇ ନିଧନପ୍ରାପ୍ତ ହେଲେ । ୬ । ପୁତ୍ରଶୋକପରାୟଣ ନିମି ବିଧିବିହିତ କର୍ମଦ୍ୱାରା ଶୌଚ କାର୍ଯ୍ୟ କରି ଗୁରୁତର ସନ୍ତାପ ପ୍ରାପ୍ତ ହେଲେ । ୭ । ତଦନନ୍ତର ମହାମତି ନିମି ଚତୁର୍ଦ୍ଦଶୀ ତିଥିରେ ପ୍ରଭାତ କାଳରେ ମିଷ୍ଟାନ୍ନ ଓ ବସ୍ତ୍ର ପ୍ରଭୃତି ଉପକରଣ ସମୂହ ଆହରଣ ପୂର୍ବକ ସେହି ଶୋକ ଚିନ୍ତା କରୁ କରୁ ପ୍ରତିବୋଧିତ ହେଲେ । ୮ । ସେ ଶୋକ-ଦ୍ୱାରା ବ୍ୟଥିତହୃଦୟ ହୋଇ ଅତ୍ୟନ୍ତ ବନ୍ଧ କାରଣ ଶୋକ ବିଷୟରେ ମନଃ ସଂହାର ଅର୍ଥାତ୍ ଶୋକ ପରିହାର କରି ପ୍ରତିବୁଦ୍ଧ ହେଲେ । ତାହାଙ୍କ ବୁଦ୍ଧି ବିସ୍ତୃତା ହେଲା । ୯ । ପରିଶେଷରେ ସେ ସମାହିତ ହୋଇ ଶ୍ରାଦ୍ଧକଳ୍ପ ଚିନ୍ତା କଲେ ।

ତାହାଙ୍କର ଯେଉଁ ସମସ୍ତ ଫଳମୂଳ ଭୋଜ୍ୟ ଥିଲା, ଏବଂ ଅନ୍ୟାନ୍ୟ ଯାହା କିଛି ତାହାଙ୍କର କଥିତ ଓ ଇଷ୍ଟ ଥିଲା, ମହାପ୍ରାଜ୍ଞ ତପୋଧନ ନିମି ମନେ ମନେ ତାହା ସବୁ ନିଶ୍ଚୟ କରି ଅମାବସ୍ୟାତିଥିରେ ପୂଜିତ ବ୍ରାହ୍ମଣଗଣଙ୍କୁ ଆନୟନ ପୂର୍ବକ ସ୍ୱୟଂ ପ୍ରଦକ୍ଷିଣାବର୍ତ୍ତିତ ଆସନ ସମୂହ ସ୍ଥାପନା କଲେ ଏବଂ ଲବଣ ବ୍ୟଞ୍ଜିତ ଶ୍ୟାମାକ ଅନ୍ନର ଭୋଜ୍ୟ ପ୍ରଦାନ କଲେ । ୧୩ । ଅବଶେଷରେ ଯେଉଁ ସମସ୍ତ ବ୍ରାହ୍ମଣ ଅନ୍ନ ଭୋଜନ କରିଥିଲେ, ସେହିମାନଙ୍କ ପଦଦ୍ୱୟର ସନ୍ନିଧିରେ ବିଷ୍ଟର ମଧ୍ୟରେ ଦକ୍ଷିଣାଗ୍ର ଦର୍ଭସମୂହ ନିବେଶିତ ହେଲା । ସେ ପ୍ରଯତ ଓ ଶୁଚି ହୋଇ ଦର୍ଭସମୂହକୁ ଦକ୍ଷିଣାଗ୍ର କରି ନାମ ଓ ଗୋତ୍ର ଉଚ୍ଚାରଣ ପୂର୍ବକ ଶ୍ରୀମାନଙ୍କ ଉଦ୍ଦେଶ୍ୟରେ ପିଣ୍ଡପ୍ରଦାନ କଲେ । ୧୫ । ମୁନିବର ନିମି ସେହି ଧର୍ମ ସଙ୍କର କରି, ଅର୍ଥାତ୍ ବେଦରେ ପିତୃଲୋକଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ ଧର୍ମ ଦୃଷ୍ଟ ହୁଏ, ଏବଂ ଇହଲୋକରେ ପୁତ୍ରୋଦ୍ଦେଶ୍ୟରେ ପିଣ୍ଡଦାନ ସ୍ୱେଚ୍ଛାଦ୍ୱାରା କଳ୍ପିତ ହେଲା, ଏହା ଭାବି ଅତିଶୟ ପଶ୍ଚାତ୍ତାପଦ୍ୱାରା ତପ୍ୟମାନ ହୋଇ ଚିନ୍ତାକଲେ । ୧୬ । ସେ ଭାବନା କଲେ, ପୂର୍ବେ ମୁନିବୃନ୍ଦ ଯାହା କରି-ନାହାନ୍ତି, ଆମ୍ଭେ କାହିଁକି ତାହା ଅନୁଷ୍ଠାନ କଲୁଁ, ବ୍ରାହ୍ମଣଗଣ ଶାପ-ପ୍ରଦାନଦ୍ୱାରା ଆମ୍ଭଙ୍କୁ କାହିଁକି ଦଗ୍ଧ କରୁନାହାନ୍ତି ? ୧୭ ।

ତପୂରେ ସେ ଆପଣାର ବଂଶକର୍ତ୍ତାଙ୍କୁ ଚିନ୍ତା କଲେ । ସେ ଧ୍ୟାନ କଲା ମାତ୍ରେ ତପୋଧନ ଅତ୍ରି ସେଠାକୁ ଆଗମନ କଲେ । ୧୮ । ଅବିନାଶୀ ଅତ୍ରି ନିମିଙ୍କୁ ତୀବ୍ର ପୁତ୍ରଶୋକରେ ଆକ୍ରାନ୍ତ ହୋଇଥିବାର ଦେଖି ଅଭିଳଷିତ ବଚନରେ ଅତିଶୟ ଆଶ୍ୱାସ ପ୍ରଦାନ କଲେ । ୧୯ । ସେ କହିଲେ, ତପୋଧନ ନିମେ ! ତୁମ୍ଭର ଭୟ ନାହିଁ, ତୁମ୍ଭ ସଂକଳ୍ପିତ ଏହି ପିତୃଯଜ୍ଞ ପୂର୍ବେ ସ୍ୱୟଂ ବ୍ରହ୍ମାଙ୍କଦ୍ୱାରା ଧର୍ମରୂପରେ ଦୃଷ୍ଟ ହୋଇଅଛି । ୨୦ । ତୁମ୍ଭର ଏହି ସଂକଳ୍ପିତ ଧର୍ମ ସ୍ୱୟଂ ସୁବିହିତ ହେଲା; ବ୍ରହ୍ମାଙ୍କ ବ୍ୟତିରେକେ ଅନ୍ୟ କୌଣସି ବ୍ୟକ୍ତି ଶ୍ରାଦ୍ଧ ସମ୍ବନ୍ଧୀୟ ବିଧି କି ଆହରଣ କରିପାରେ ? ୨୧ । ହେ ପୁତ୍ର ! ଆମ୍ଭେ ତୁମ୍ଭର ଏହି ଉତ୍କୃଷ୍ଟତମ ଶ୍ରାଦ୍ଧ ସମ୍ବନ୍ଧୀୟ ବିଧି ଆଖ୍ୟାନ କରିବୁଁ । ହେ ବତ୍ସ ! ଏହା ସ୍ୱୟମ୍ଭୂ କର୍ତ୍ତୃକ ବିହିତ, ଅତଏବ ଏହା ଅନୁଷ୍ଠାନ କର ଏବଂ ଏହାର ବିବରଣ ଆମ୍ଭ ନିକଟରୁ ଶ୍ରବଣ କର ।

ହେ ତପୋଧନ ! ପ୍ରଥମତଃ ମନ୍ତ୍ରୋଚ୍ଚାରଣପୂର୍ବକ '(ଅଗ୍ନିକରଣ)' ହୋମ କରି ତଦନନ୍ତର ଅଗ୍ନି, ସୋମ, ବରୁଣ ଓ ବିଶ୍ୱେଦେବଗଣ, ଯେଉଁମାନେ ପିତୃଗଣଙ୍କ ସହିତ ସର୍ବଦା ବିଚରଣ କରନ୍ତି, ସ୍ୱୟଂ ସ୍ୱୟମ୍ଭୂ ସେହିମାନଙ୍କ ନିମିତ୍ତ ଭାଗସମୂହ କଳ୍ପନା କଲେ । ୨୪ । ନିବାପଧାରିଣୀ ପୃଥିବୀଙ୍କୁ ଏହି ସମୟରେ ବୈଷ୍ଣବୀ, କାଶ୍ୟପୀ ଏବଂ ଅକ୍ଷୟା ବୋଲି ସ୍ତୁତି କରିବ । ୨୫ । ଉଦକାନୟନ ବିଷୟରେ ବିଭୁ ବରୁଣଙ୍କୁ ସ୍ତବ କରିବ । ହେ ଅନଘ ! ତଦନନ୍ତର ଅଗ୍ନି ଓ ସୋମଙ୍କର ଆପ୍ୟାୟନ କରିବ । ୨୬ । ସ୍ୱୟମ୍ଭୂଙ୍କ ଦ୍ୱାରା ପିତୃ ନାମକ ଯେଉଁ ଦେବଗଣ ନିର୍ମିତ ହୋଇଅଛନ୍ତି ଏବଂ ଯେଉଁ ସମସ୍ତ ମହାଭାଗ ଉଷ୍ମତାଗଣ ଅଛନ୍ତି ସେହିମାନଙ୍କର ଭାଗ କଳ୍ପିତ ହୋଇଅଛି । ୨୭ । ସେହିମାନେ ସମସ୍ତେ ଶ୍ରାଦ୍ଧଦ୍ୱାରା ପୂଜ୍ୟମାନ ହେଲେ, ନରକାଦିରୂପ କଲ୍ବିଷରୁ ବିମୁକ୍ତ ହୁଅନ୍ତି । ପୂର୍ବେ ସ୍ୱୟଂମ୍ଭୂଙ୍କଦ୍ୱାରା ସପ୍ତ ପିତୃବଂଶ ଦୃଷ୍ଟ ହୋଇଅଛି (୨୮) ଏବଂ ଅଗ୍ନି ପ୍ରଭୃତି ବିଶ୍ୱେଦେବଗଣ ପୂର୍ବେ ସଂଖ୍ୟାତ ହୋଇଅଛନ୍ତି । ଏତେବେଳେ ସେହି ଭାଗାର୍ହ ମହାନୁଭବ-ମାନଙ୍କ ନାମସବୁ କହୁଅଛୁଁ । ୨୯ ।

ବଳ, ଧୃତି, ବିପାପ, ପୁଣ୍ୟକୃତ, ପାବନ, ପାର୍ଷ୍ଣିକ୍ଷେମା, ସମୂହ, ଦିବ୍ୟ, ସାନୁ, ବିବସ୍ୱାନ୍, ବୀର୍ଯ୍ୟବାନ୍, ହ୍ରୀମାନ୍, କୀର୍ତ୍ତିମାନ୍, କୃତ, ଜିତାତ୍ମା, ମୁନିବୀର୍ଯ୍ୟ, ଦୀପ୍ତରୋମା, ଭୟଙ୍କର, ଅନୁକର୍ମା, ପ୍ରଶାନ୍ତ, ପ୍ରଦାତା, ଅଂଶୁମାନ୍ , ଶୈଳାଭ, ପରମକ୍ରୋଧୀ, ଧୀରୋଷ୍ଣୀ, ଭୂପତି, ସ୍ରଜ, ବଜ୍ରୀ, ବରିଷ୍ଠ, ସନାତନ, ବିଶ୍ୱେଦେବଗଣ, ବିଦ୍ୟୁଦ୍ବର୍ଚ୍ଚା, ସୋମବର୍ଚ୍ଚା, ସୂର୍ଯ୍ୟଶ୍ରୀ,

ସୋମପ, ସୂର୍ଯ୍ୟ ସାବଣ, ଦତ୍ତମ୍ନା, ପୁଣ୍ଡରୀକ, ଉଷ୍ଣୀନାଭ, ନଭୋଦ, ବିଶ୍ୱାୟୁ, ଦୀପ୍ତି, ଚମୂହର, ସୁରେଶ, ବ୍ୟୋମାରି, ଭବ, ଶଙ୍କର, ଈଶ, କର୍ତ୍ତା, କୃତି, ଦକ୍ଷ, ଭୁବନ, ଦ୍ରବ୍ୟ, କର୍ମକୃତ୍, ଗଣିତ, ପଞ୍ଚବୀର୍ଯ୍ୟ, ଆଦିତ୍ୟ, ଅଂଶୁମାନ, କବି, ଅନୁଗୋପ୍ତା, ସୁଗୋପ୍ତା, ରଶ୍ମିବାନ୍, ସପ୍ତକୃତ୍, ସୋମବର୍ଚ୍ଚା, ବିଶ୍ୱକୃତ୍, ନପ୍ତା ଏବଂ ଈଶ୍ୱର ଯେଉଁମାନଙ୍କୁ କାଳର ଗତି-ଦ୍ୱାର ଜାଣିବାକୁ ହୁଏ, ସେହି ସମସ୍ତ ମହାଭାଗମାନଙ୍କ ନାମ କୀର୍ତ୍ତିତ ହେଲା । ୩୭ ।

ଅତଃପର ଯେଉଁ ସମସ୍ତ ଦ୍ରବ୍ୟ ଶ୍ରାଦ୍ଧରେ ଅଦେୟ, ତାହା କହୁଅଛୁଁ । କୋଦ୍ରବ୍ୟ ଧାନ୍ୟ, ପୁଲକ ଅର୍ଥାତ୍ ଅସମ୍ପୂର୍ଣ୍ଣ ତଣ୍ଡୁଳଯୁକ୍ତ ଧାନ୍ୟ, ହିଙ୍ଗୁ ଦ୍ରବ୍ୟ, ଶାକସମୂହ, ପଲାଣ୍ଡୁ, ଲଶୁନ, ଶୋଭାଞ୍ଜନ, କୋବିଦାର ଅର୍ଥାତ୍ ରକ୍ତ କାଞ୍ଚନ ପୁଷ୍ପ, ଗୃଞ୍ଜାନ ପ୍ରଭୃତି କୁଷ୍ମାଣ୍ଡ ଜାତୀୟ ତାବତ୍ ଦ୍ରବ୍ୟ, ଅଲାବୁ, କୃଷ୍ଣବର୍ଣ୍ଣ ଲବଣ ଏବଂ ଯେଉଁ ସମସ୍ତ ଶସ୍ୟ ଶୀତଋତୁରେ ପରିପକ୍ୱ ହୁଏ ତାହା, ଶୃଙ୍ଗାଟକ ଅର୍ଥାତ୍ ଶିଙ୍ଗଡ଼ା ଏବଂ ବଂଶକରୀର ପ୍ରଭୃତି ଅଙ୍କୁରସମୂହ ଶ୍ରାଦ୍ଧ ଦ୍ରବ୍ୟ ମଧ୍ୟରେ ବର୍ଜନୀୟ । ୪୦ । ସର୍ବବିଧ ଲବଣ ଓ ଜମ୍ବୁଫଳ ଶ୍ରାଦ୍ଧରେ ବର୍ଜନ କରିବ । ଶ୍ରାଦ୍ଧକାଳରେ ଅବକ୍ଷୁତ ଓ ରୋଦନ ପରିବର୍ଜନ କରିବାର ଉଚିତ । ୪୧ । ପିତୃଲୋକଙ୍କ ଉଦ୍ଦେଶ୍ୟରେ ଦାନକାର୍ଯ୍ୟରେ ଏବଂ ହବ୍ୟକବ୍ୟରେ ସୁଦର୍ଶନ ଶାକ ଅତି ଗର୍ହିତ । ଶ୍ରାଦ୍ଧକାଳ ଉପସ୍ଥିତ ହେଲେ, ଚଣ୍ଡାଳ ଓ ଶ୍ୱପଚ ଜାତି ଅତି ଦୂରରେ ଅବସ୍ଥାନ କରିବେ; ପିତୃଗଣ ଓ ଦେବଗଣ ତାହା ଅନୁମୋଦନ କରନ୍ତି ନାହିଁ । ଶ୍ରାଦ୍ଧକାଳ ଉପସ୍ଥିତ ହେଲେ କଷାୟବାସା, କୁଷ୍ଠରୋଗୀ, ପତିତ, ବ୍ରହ୍ମହତ୍ୟାକାରୀ, ସଙ୍କୀର୍ଣ୍ଣ ଯୋନିଜାତ ବିପ୍ର ଓ ପତିତ ବ୍ୟକ୍ତିର ସଂସର୍ଗୀ ମାନବ, ଏହି ସମସ୍ତଙ୍କୁ ପଣ୍ଡିତଗଣ ବର୍ଜନ କରିବେ । ୪୪ । ପୂର୍ବକାଳରେ ଭଗବାନ ତପୋଧନ ଅତ୍ରି ସ୍ୱ ବଂଶୋଦ୍ଭବ ନିମି ନାମକ ଋଷିଙ୍କୁ ଏହିପରି କହି ପିତାମହଙ୍କ ହବ୍ୟସଭାକୁ ଗମନ କରିଥିଲେ । ୪୫ ।

---

## ଅଧ୍ୟାୟ—୯୨

ଭୀଷ୍ମ କହିଲେ—ହେ ଭାରତ ! ନିମି ତାଦୃଶ ରୂପେ ଶ୍ରାଦ୍ଧ କରିବାକୁ ପ୍ରବୃତ୍ତ ହେବାରୁ ସମସ୍ତ ମହର୍ଷିଗଣ ବିଧି ଦୃଷ୍ଟ କର୍ମଦ୍ୱାରା ପିତୃଯଜ୍ଞ କଲେ ।

ଧର୍ମନିଷ୍ଠ ଯତବ୍ରତ ଋଷିଗଣ ନିବପନ ନିର୍ବାହ ପୂର୍ବକ ତୀର୍ଥତୋୟ ଦ୍ୱାରା ତର୍ପଣ କରିବାକୁ ପ୍ରବୃତ୍ତ ହେଲେ । ବ୍ରାହ୍ମଣ ପ୍ରଭୃତି ବର୍ଣ୍ଣ ଚତୁଷ୍ଟୟ କର୍ତ୍ତୃକ ଦୀୟମାନ ନିବାପ ଦ୍ୱାରା ତୃପ୍ତିପ୍ରାପ୍ତ ପିତୃଗଣ ଓ ଦେବଗଣ ସେତେବେଳେ ଅନ୍ନ ଜୀର୍ଣ୍ଣ କଲେ । ପିତୃଗଣ ସହ ଦେବଗଣ ନିତ୍ୟପ୍ରାପ୍ତ ଅନ୍ନ ଜୀର୍ଣ୍ଣ କରିବାକୁ ସମର୍ଥ ହେବାରୁ ଅଜୀର୍ଣ୍ଣ ରୋଗଦ୍ୱାରା ଅଭିଭୂତ ହେଲେ । ସେତେବେଳେ ସେମାନେ ଅନ୍ନଦ୍ୱାରା ପୀଡ଼ିତ ହୋଇ ସୋମଙ୍କ ନିକଟକୁ ଗମନ କଲେ । ୪ । ସେହି ଅଜୀର୍ଣ୍ଣପୀଡ଼ିତ ପିତୃଗଣ ସୋମଙ୍କ ନିକଟକୁ ଗମନ ପୂର୍ବକ କହିଲେ, ଆମ୍ଭେମାନେ ନିବାପ ଅନ୍ନଦ୍ୱାରା ପୀଡ଼ିତ ହୋଇ-ଅଛୁ । ଅତଏବ ଏହି ବିଷୟରେ ଯାହାଦ୍ୱାରା ଆମ୍ଭମାନଙ୍କର ଶ୍ରେୟ ହେବ, ତୁମ୍ଭେ ତାହା ବିଧାନ କର । ୫ ।

ତହିଁରେ ଚନ୍ଦ୍ରମା ସେମାନଙ୍କୁ ପ୍ରତ୍ୟୁତ୍ତର କଲେ ଯେ, ହେ ସୁରଗଣ ! ତୁମ୍ଭମାନଙ୍କର ଶ୍ରେୟ ଯଦି ଅଭିପ୍ସିତ ହୁଏ, ତେବେ ସ୍ୱୟମ୍ଭୂଙ୍କ ସଦନକୁ ଗମନ କର । ସେ ତୁମ୍ଭମାନଙ୍କର ଶ୍ରେୟ ବିଧାନ କରିବେ । ୬ । ହେ ଭାରତ ! ପିତୃଗଣ ସହ ସେହି ସୁରଗଣ ସୋମଙ୍କ ବଚନାନୁସାରେ ସୁମେରୁ ଶୃଙ୍ଗରେ ସମାସୀନ ସ୍ୱୟମ୍ଭୂଙ୍କ ସନ୍ନିଧିକୁ ଗମନ କଲେ । ୭ । ପିତୃଗଣ କହିଲେ, ହେ ଭଗବନ୍ ! ଆମ୍ଭେମାନେ ନିବାପ ଅନ୍ନଦ୍ୱାରା ଅତିଶୟ ପୀଡ଼ିତ ହୋଇଅଛୁ । ଅତଏବ ହେ ଦେବ ! ଆପଣ ପ୍ରସନ୍ନ ହୁଅନ୍ତୁ । ଆମ୍ଭମାନଙ୍କର ଶ୍ରେୟ ବିଧାନ କରନ୍ତୁ । ୮ । ସ୍ୱୟମ୍ଭୂ ସେହି-ମାନଙ୍କର ଏହି ବାକ୍ୟ ଶ୍ରବଣ କରି କହିଲେ, ଆମ୍ଭ ପାର୍ଶ୍ୱବର୍ତ୍ତୀ ଏହି ବହ୍ନି ତୁମ୍ଭମାନଙ୍କର ଶ୍ରେୟ ବିଧାନ କରିବେ । ୯ । ଅଗ୍ନି କହିଲେ, ପିତୃଙ୍କ ଉଦ୍ଦେଶ୍ୟରେ ଦାନ ଉପସ୍ଥିତ ହେଲେ ଆମ୍ଭେମାନେ ସମସ୍ତେ ମିଳିତ ହୋଇ ତାହା ଭକ୍ଷଣ କରିବୁ । ତୁମ୍ଭେମାନେ ଆମ୍ଭ ସହିତ ଭକ୍ଷଣ କଲେ ସେହି ଅନ୍ନ ଜୀର୍ଣ୍ଣ କରିବାକୁ ସମର୍ଥ ହେବ, ଏଥିରେ ସଂଶୟ ନାହିଁ । ୧୦ ।

ପିତୃଗଣ ଅଗ୍ନିଙ୍କର ଏହି କଥା ଶୁଣି ତଦବଧି ବିଜ୍ୱର ହେଲେ, ଅର୍ଥାତ୍ ରୋଗମୁକ୍ତ ହେଲେ । ହେ ମହାରାଜ ! ଏହି ନିମିତ୍ତ ପ୍ରଥମତଃ ଅଗ୍ନିଙ୍କ

ଭିଦ୍ଦେଶ୍ୟରେ ଅନ୍ନ ପ୍ରଦତ୍ତ ହୁଏ । ୧୧ । ହେ ପୁରୁଷପ୍ରବର ! ପ୍ରଥମତଃ ଅଗ୍ନିଙ୍କୁ ନିବାପ ପ୍ରଦାନ କଲେ ବ୍ରହ୍ମରାକ୍ଷସଗଣ ସେହି ନିବାପ ଧର୍ଷଣ କରିବାକୁ ସମର୍ଥ ହୁଅନ୍ତି ନାହିଁ (୧୨) ଏବଂ ହୁତାଶନ ଦେବ ଉପସ୍ଥିତ ଥିଲେ ରାକ୍ଷସବୃନ୍ଦ ଦୂରକୁ ପଳାୟନ କରନ୍ତି । ପ୍ରଥମେ ପିତାଙ୍କୁ ପିଣ୍ଡ ଦାନ କରିବ । ପରେ ପିତାମହଙ୍କ ପିଣ୍ଡଦାନ କର୍ତ୍ତବ୍ୟ; ତଦନନ୍ତର ପ୍ରପିତାମହଙ୍କ ପିଣ୍ଡଦାନ କର୍ତ୍ତବ୍ୟ । ଏହିପରି ଶ୍ରାଦ୍ଧବିଧି ଶ୍ରୁତ ହୋଇଅଛି ।

ଶ୍ରାଦ୍ଧକାଳରେ ସମାହିତ ହୋଇ ପ୍ରତ୍ୟେକ ପିଣ୍ଡଦାନ ସମୟରେ ସାବିତ୍ରୀ ଜପ କରିବ ଏବଂ 'ସୋମାୟ ପିତୃମତେ ସ୍ୱାହା' ଇତ୍ୟାଦି ବାକ୍ୟ କହିବ । ଶ୍ରାଦ୍ଧ ସମୟରେ ରଜସ୍ୱଳା ଓ ଛିନ୍ନକର୍ଣ୍ଣୀ ସ୍ତ୍ରୀ ଅବସ୍ଥାନ କରିବେ ନାହିଁ । ଅର୍ଥାତ୍ ଏମାନେ ନିବାପ ଦର୍ଶନ କରିବେ ନାହିଁ ଏବଂ ଅନ୍ୟ ବଂଶୀୟା ସ୍ତ୍ରୀଙ୍କୁ ଶ୍ରାଦ୍ଧ ବିଷୟରେ ପାକ କରିବାକୁ ସଂଗ୍ରହ କରିବାର ଉଚିତ ନୁହେଁ । ୧୫ । ଜଳରେ ଅବତରଣ ପୂର୍ବକ ପିତାମହଙ୍କ ନାମ କୀର୍ତ୍ତନ କରିବ ଏବଂ ନଦୀରେ ଅବଗାହନ ପୂର୍ବକ ପିତୃଲୋକଙ୍କର ପିଣ୍ଡଦାନ ଓ ତର୍ପଣ କରିବ । ୧୬ । ପ୍ରଥମରେ ସ୍ୱବଂଶଜଗଣଙ୍କର ସଲିଳ ଦ୍ୱାରା ତର୍ପଣ କରି ପରେ ସୁହୃଦ୍ ଓ ସମ୍ବନ୍ଧୀବର୍ଗଙ୍କୁ ଜଳାଞ୍ଜଳି ପ୍ରଦାନ କରିବ । ୧୭ । ବିଚିତ୍ରବର୍ଣ୍ଣ ଗୋଯୁଗଳଯୁକ୍ତ ଶକଟ ଏବଂ ନୌକା ଆରୋହଣ ପୂର୍ବକ ଯେ ଜଳ ଉତ୍ତୀର୍ଣ୍ଣ ହୁଅନ୍ତି, ତଦୀୟ ପିତୃଗଣ ତାହାଙ୍କ ନିକଟରୁ ଗୋପୃଚ୍ଛ ସହିତ ତର୍ପଣ କାମନା କରନ୍ତି, ଅତଏବ ଯେଉଁମାନେ ତାହା ଅବଗତ ଥାଆନ୍ତି, ସେମାନେ ସମାହିତ ହୋଇ ଶକଟ ଅଥବା ନୌକାଦି ଦ୍ୱାରା ନଦୀ ତରଣ କାଳରେ ପିତୃଗଣଙ୍କ ତର୍ପଣ କରନ୍ତି ।

ମାସାର୍ଦ୍ଧ କୃଷ୍ଣ ପକ୍ଷରେ ଅମାବସ୍ୟା ତିଥିରେ ପିତୃଗଣଙ୍କ ନିବର୍ପଣ କର୍ତ୍ତବ୍ୟ । ପିତୃଭକ୍ତି ଥିଲେ ପୁଷ୍ଟି, ଆୟୁ, ବଳ ଓ ଶ୍ରୀ ଲାଭ ହୁଏ । ହେ କୁରୁକୁଳଶ୍ରେଷ୍ଠ ! ପିତାମହ, ପୁଲସ୍ତ୍ୟ, ବଶିଷ୍ଠ, ପୁଲହ, ଅଙ୍ଗିରା, କ୍ରତୁ ଓ ମହାର୍ଷି କାଶ୍ୟପ, ଏହିମାନେ ମହାଯୋଗେଶ୍ୱର ନାମରେ ସ୍ମୃତ ହୋଇ-ଅଛନ୍ତି । ୨୫ । ଏହିମାନେ ପିତୃଲୋକ । ହେ ରାଜନ୍ ! ଏହା ଶ୍ରେଷ୍ଠତର ଶ୍ରାଦ୍ଧବିଧି, ଏହି ଶ୍ରାଦ୍ଧ କର୍ମଦ୍ୱାରା ପିଣ୍ଡ ସମ୍ବନ୍ଧ ବଶତଃ ପରଲୋକଗତ ପିତୃ-ଗଣ ପ୍ରେତତ୍ୱରୁ ବିମୁକ୍ତ ହୁଅନ୍ତି । ହେ ପୁରୁଷପ୍ରବର ! ଏହି ନିର୍ଦ୍ଦିଷ୍ଟ ଶ୍ରାଦ୍ଧୋତ୍ପତ୍ତି ବିଷୟ ଶାସ୍ତ୍ରାନୁସାରେ ବ୍ୟାଖ୍ୟା କଲାଗଲା । ଅତଃପର ଦାନର ବିଷୟ କହୁଅଛୁଁ । ୨୩ ।

---

# ଅଧ୍ୟାୟ—୯୩

ଯୁଧିଷ୍ଠିର କହିଲେ—ହେ ପିତାମହ ! ବ୍ରତସମ୍ପନ୍ନ ବ୍ରାହ୍ମଣଗଣ ଯେ ବାହ୍ମାଦିରେ ଯଜମାନଙ୍କ କାମନା ବଶତଃ ହବନୀୟ ଦ୍ରବ୍ୟାଦି ଅଥବା ଅନ୍ନ ଭୋଜନ କରନ୍ତି, ଏହା କି ପ୍ରକାର ? ଅର୍ଥାତ୍ ଏଥିରେ ବ୍ରତୋପେତ ବ୍ରାହ୍ମଣଙ୍କର ବ୍ରତଲୋପ ଗରୀୟାନ୍, ଅଥବା ବ୍ରାହ୍ମଣଙ୍କର କାମନାଭଙ୍ଗ ଗୁରୁତର ? ୧ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ଅବେଦୋକ୍ତ ବ୍ରତଗୃହୀ ବ୍ରାହ୍ମଣ-ଗଣ ବ୍ରାହ୍ମଣଙ୍କ କାମନା ବଶତଃ ଭୋଜନ କଲେ ଲୁପ୍ତବ୍ରତ ହୁଅନ୍ତି ନାହିଁ ଏବଂ ଯେଉଁମାନେ ବେଦବହିତ ଯାଗାଙ୍ଗଭୂତ ବ୍ରତାଚରଣ କରନ୍ତି, ସେମାନେ ବ୍ରାହ୍ମଣଙ୍କ କାମନାନୁସାରେ ଶ୍ରାଦ୍ଧରେ ଭୋଜନ କଲେ ଲୁପ୍ତବ୍ରତ ହୁଅନ୍ତି, ସୁତରାଂ ସେହିମାନଙ୍କର ବ୍ରତଲୋପର ପ୍ରାୟଶ୍ଚିତ୍ତ ଉଚିତ ; ଇତର ବ୍ରାହ୍ମଣଙ୍କ ଅଭାବରେ ବ୍ରତବନ୍ତ ବ୍ରାହ୍ମଣଗଣ ଶ୍ରାଦ୍ଧରେ ଭୋଜନ କରି ପ୍ରାୟଶ୍ଚିତ୍ତ କରିବେ । ତଥାପି ଶ୍ରାଦ୍ଧ ଲୋପ କରିବେ ନାହିଁ । ୨ ।

ଯୁଧିଷ୍ଠିର କହିଲେ, ସାଧାରଣ ଲୋକଗଣ ଯେଉଁ ଉପବାସକୁ ତପସ୍ୟା ବୋଲି କହନ୍ତି, ସେହି ଉପବାସ କି ତପସ୍ୟା ? ଅଥବା ଅନ୍ୟବିଧ କୌଣସି ତପସ୍ୟା ହୁଏ ? ୩ ।

ଭୀଷ୍ମ କହିଲେ, ସାମାନ୍ୟ ଲୋକ ଯେଉଁ ଏକମାସ ଅଥବା ଅର୍ଦ୍ଧମାସ ଉପବାସକୁ ତପସ୍ୟା ଜ୍ଞାନ କରନ୍ତି, ତାହା ତପସ୍ୟା ହୋଇ-ପାରେ ନାହିଁ, କାରଣ ଯେଉଁ ବ୍ୟକ୍ତି ଆତ୍ମ ଶରୀର ଓ କୁଟୁମ୍ବଗଣଙ୍କୁ କଷ୍ଟ ଦେଇ ଉପବାସ କରନ୍ତି, ସେ ତପସ୍ୱୀ ଓ ଧର୍ମଜ୍ଞ ନୁହନ୍ତି । ୪ । ସମ୍ପତ୍ତି ଦାନକୁ ଉତ୍କୃଷ୍ଟ ତପସ୍ୟା କୁହାଯାଏ । ବ୍ରହ୍ମଚାରୀ ନର ସଦା ଉପବାସୀ ହୁଅନ୍ତି । ୫ । ଯେଉଁ ବିପ୍ର ସର୍ବଦା ବେଦମନ୍ତ୍ର ଜପ କରନ୍ତି, ସେ ମୁନି ହୁଅନ୍ତି । ଧର୍ମକାମ ନର କୁଟୁମ୍ବିକ ଓ ନିତ୍ୟ ଅସ୍ୱପ୍ନ ଅର୍ଥାତ୍ ସ୍ୱଧର୍ମରେ ଜାଗରୁକ ହେବେ, ଅର୍ଥାତ୍ ନିଦ୍ରିତ ହେବେ ନାହିଁ । ୬ । ସର୍ବଦା ଅମାଂସାଶୀ ହୋଇ ରହିବେ ଏବଂ ନିତ୍ୟ ପବିତ୍ର ଜପ କରିବେ, ସର୍ବଦା ସତ୍ୟକଥା କହିବେ ଏବଂ ନିରନ୍ତର ନିୟତ ହୋଇ ରହିବେ । ୭ । ସର୍ବଦା ବିଘସାଶୀ ଓ ଅତିଥିପ୍ରିୟ ହେବେ । ନିତ୍ୟ ଅମୃତାଶୀ ଓ ପବିତ୍ର ହୋଇ ରହିବେ । ୮ ।

ଯୁଧିଷ୍ଠିର କହିଲେ, ହେ ରାଜନ୍ ! ସର୍ବଦା କପରି ଉପବାସୀ ହୁଅନ୍ତି ? କେଉଁ ପ୍ରକାରରେ ବ୍ରହ୍ମଚାରୀ ହୁଅନ୍ତି, କାଦୃଶ ଭାବରେ ବିଘସାଶୀ ହୁଅନ୍ତି ଏବଂ କି ପ୍ରକାରରେ ଅତିଥିପ୍ରିୟ ହୁଅନ୍ତି ? ୯ ।

ଭୀଷ୍ମ କହିଲେ, ଯେଉଁ ନର କେବଳ ପ୍ରାତଃକାଳରେ ଓ ସାୟଂ-ସମୟରେ ଭୋଜନ କରନ୍ତି ଏବଂ ଅନ୍ୟ ସମୟରେ କିଛି ମାତ୍ର ଭୋଜନ ନ କରନ୍ତି, ସେ ସର୍ବଦା ଉପବାସୀ । ୧୦ । ଯେ ଋତୁ କାଳରେ ଭାର୍ଯ୍ୟା ସମ୍ଭୋଗ କରନ୍ତି ଏବଂ ଯେଉଁ ଜନ ସତ୍ୟବାଦୀ ଓ ଦାନଶୀଳ ତାହାଙ୍କୁ ବ୍ରହ୍ମଚାରୀ ବୋଲାଯାଏ । ୧୧ । ଯେ ଯଜ୍ଞାଦି ବ୍ୟତିରେକେ ବୃଥା ମାଂସ ଭୋଜନ କରନ୍ତି ସେ ଅମାଂସାଶୀ ହୁଅନ୍ତି; ଯେ ଦାନ କରନ୍ତି ସେ ପବିତ୍ର ହୁଅନ୍ତି । ଯେ ଦିବସରେ ନିଦ୍ରିତ ହୁଅନ୍ତି ନାହିଁ, ତାହାଙ୍କୁ ଅସ୍ୱପ୍ନ ଅର୍ଥାତ୍ ନିଦ୍ରାତ୍ୟାଗୀ ବୋଲାଯାଏ । ୧୨ । ହେ ଯୁଧିଷ୍ଠିର ! ତୁମ୍ଭେ ଜାଣ ଯେଉଁ ମାନବ ଭୃତ୍ୟ ଓ ଅତିଥି ସମୂହ ଭୋଜନ କଲା ଉତ୍ତାରେ ସ୍ୱୟଂ ସର୍ବଦା ଭୋଜନ କରନ୍ତି, ସେ କେବଳ ଅମୃତ ଭୋଜନ କରନ୍ତି । ୧୩ । ଯେଉଁ ନର ବ୍ରାହ୍ମଣଗଣ ଅଭୁକ୍ତ ଥିଲେ ଭୋଜନ ନ କରନ୍ତି, ସେହି ଅଭୋଜନ ହେତୁରୁ ତାହାଙ୍କର ସ୍ୱର୍ଗ ଜୟ ହୁଏ ।୧୪। ଦେବଗଣ, ପିତୃଗଣ ଓ ଆଶ୍ରିତ ବ୍ୟକ୍ତିଗଣଙ୍କୁ ଅନ୍ନଦାନ କରି ଯେ ଅବଶିଷ୍ଟ ଅନ୍ନ ଭୋଜନ କରନ୍ତି, ତାହାଙ୍କୁ ପଣ୍ଡିତଗଣ ବିଘସାଶୀ ବୋଲି କହନ୍ତି । ୧୫ । ହେ ଜନନାଥ ! ବ୍ରହ୍ମ-ସଦନରେ ସେହି ବିଘସାଶୀ ସ୍ଥାନ ନିମିତ୍ତ ଲୋକସମୂହର ସୀମା ରହେ ନାହିଁ । ତାହାଙ୍କ ନିକଟରେ ଗନ୍ଧର୍ବଗଣଙ୍କ ସହିତ ଅପ୍ସରାଗଣ ଉପସ୍ଥିତ ଥାଆନ୍ତି । ଯେଉଁମାନେ ଦେବତା, ଅତିଥି ଓ ପିତୃଗଣଙ୍କ ସହିତ ଭୋଜନ କରନ୍ତି, ସେମାନେ ପୁତ୍ରପୌତ୍ରଗଣଙ୍କ ସହିତ ସୁଖ ସମ୍ଭୋଗ କରନ୍ତି ଏବଂ ସେହିମାନଙ୍କର ଅତି ଉତ୍କୃଷ୍ଟ ଗତି ହୁଏ । ୧୭ । ଯୁଧିଷ୍ଠିର କହିଲେ, ହେ ପିତାମହ ! ଯେଉଁମାନେ ବ୍ରାହ୍ମଣଗଣଙ୍କୁ ବିବିଧ ଦାମପ୍ୟ ବସ୍ତୁ ସମ୍ପ୍ରଦାନ କରନ୍ତି, ସେହି ଦାତା ଓ ପ୍ରତିଗ୍ରହୀତା ଏହି ଉଭୟଙ୍କ ମଧ୍ୟରେ କିଏ ବିଶେଷ ?

ଭୀଷ୍ମ କହିଲେ, ଯେଉଁ ବ୍ରାହ୍ମଣ ସାଧୁ ବା ଅସାଧୁଙ୍କଠାରୁ ପ୍ରତିଗ୍ରହ କରନ୍ତି, ସେ ଗୁଣଶାଳୀ ବ୍ୟକ୍ତିଙ୍କ ନିକଟରୁ ଗ୍ରହଣ କଲେ ଅଳ୍ପ ଦୋଷୀ ହୁଅନ୍ତି ଏବଂ ନିର୍ଗୁଣଙ୍କ ନିକଟରୁ ଗ୍ରହଣ କଲେ ପାପରେ ନିମଗ୍ନ ହୁଅନ୍ତି । ୧୯ । ହେ ଭାରତ ! ପ୍ରାଚୀନ ପଣ୍ଡିତଗଣ ଏହି ବିଷୟରେ ବୃଷାଦର୍ଭି ଏବଂ ସପ୍ତର୍ଷିଗଣଙ୍କ ସମ୍ବାଦସମ୍ବଳିତ ଏହି ପ୍ରକାରରେ ପୁରାତନ ଇତିହାସ କହନ୍ତି । ୨୦ ।

କଶ୍ୟପ, ଅତ୍ରି, ବଶିଷ୍ଠ, ଭରଦ୍ୱାଜ, ଗୌତମ, ବିଶ୍ୱାମିତ୍ର, ଜମଦଗ୍ନି, ଏହି ସପ୍ତର୍ଷି ଏବଂ ପତିବ୍ରତା ଅରୁନ୍ଧତୀ (୨୧) ଏହି ସମସ୍ତଙ୍କର ଗଣ୍ଡା ନାମକ ଗୋଟିଏ କର୍ମକରଣୀ ଥିଲା । ପଶୁସଖ ନାମକ ଶୂଦ୍ର ତାହାଙ୍କର ଭର୍ତ୍ତା ହୋଇଥିଲେ ।୨୨। ସେମାନେ ସମାଧିଦ୍ୱାରା ସନାତନ ବ୍ରହ୍ମଲୋକ ଲାଭ କରିବା ନିମିତ୍ତ ସମସ୍ତେ ତପସ୍ୟାଚରଣ କରି ପୂର୍ବକାଳରେ ଏହି ମହୀମଣ୍ଡଳରେ ବିଚରଣ କରୁଥିଲେ । ୨୩ । ହେ କୁରୁନନ୍ଦନ ! ତଦନନ୍ତର ମହତୀ ଅନାବୃଷ୍ଟି ହେଲା । ସେହି ସମୟରେ ଲୋକସମୂହ କ୍ଷୁଧାନ୍ୱିତ ହୋଇ କୃଚ୍ଛ୍ରପ୍ରାଣ ହୋଇଥିଲେ । ୨୪ । ପୂର୍ବକାଳରେ କୌଣସି ଯଜ୍ଞରେ ଶିବିରାଜଙ୍କ ସୁତ ଶୈବ୍ୟ ଋତ୍ୱିକ୍‌ଗଣଙ୍କୁ ଦକ୍ଷିଣା ଦାନ ନିମିତ୍ତ ନିଜ ପୁତ୍ରଙ୍କୁ ପ୍ରଦାନ କରିଥିଲେ । ୨୫ । ଏହି ସମୟରେ ସେହି ଅଳ୍ପାୟୁ କାଳଧର୍ମପ୍ରାପ୍ତ ହେଲେ । କ୍ଷୁଧାଦ୍ୱାରା ପରିପୀଡ଼ିତ ଋଷିଗଣ ସେହି ମୃତ ରାଜପୁତ୍ରଙ୍କୁ ପରିବେଷ୍ଟନ କରି ରହିଲେ । ୨୬ । ହେ ଭାରତ ! କ୍ଷୁଧାର୍ତ୍ତ ଋଷିଶ୍ରେଷ୍ଠଗଣ ଯଜମାନଙ୍କ ପୁତ୍ରଙ୍କୁ ଗତାସୁ ହେବାର ବିଲୋକନ କରି ତାହାକୁ ସ୍ଥାଳୀ ମଧ୍ୟରେ ପାକ କଲେ । ୨୭ । ଏହି ମର୍ତ୍ତ୍ୟଲୋକ ନିରନ୍ନ ହେବାରୁ ତପସ୍ୱୀଗଣ ଶରୀର ରକ୍ଷା ନିମିତ୍ତ ଇଚ୍ଛୁକ ହୋଇ କୃଚ୍ଛ୍ର ବୃତ୍ତି ଅବଲମ୍ବନ କରିଥିଲେ । ୨୮ ।

ତତ୍ପରେ ମହୀପତି ଶୈବ୍ୟ, ବୃଷାଦର୍ଭି, ମାର୍ଗ ମଧ୍ୟରେ ବିଚରଣ କରି ସେହି କ୍ଲିଷ୍ଟମାନ ଋଷିଗଣଙ୍କୁ ପାକ କରୁଥିବାର ଦେଖିଲେ । ୨୯ । ବୃଷାଦର୍ଭି କହିଲେ, ପୁରୁଷ ପ୍ରତିଗ୍ରହ କଲେ କ୍ଲେଶ କଦମ୍ବରୁ ଉତ୍ତୀର୍ଣ୍ଣ ହୁଅନ୍ତି । ଅତଏବ ହେ ତପୋଧନଗଣ ! ଆପଣମାନେ ପୁଷ୍ଟି ନିମିତ୍ତ ପ୍ରତିଗ୍ରହ କରନ୍ତୁ । ଆମ୍ଭ ନିକଟରେ ଯେଉଁ ବିତ୍ତ ଅଛି ; ତାହା ଆପଣମାନେ ଶୁଣିବା ହେଉନ୍ତୁ । ୩୦ । ଯାଚମାନ ବ୍ରାହ୍ମଣ ଆମ୍ଭର ଅତି ପ୍ରିୟ । ଅତଏବ ଆମ୍ଭେ ଆପଣମାନଙ୍କୁ ସହସ୍ର ଅଶ୍ୱତରୀ ପ୍ରଦାନ କରୁଅଛୁଁ । ଆମ୍ଭେ ଆପଣମାନଙ୍କ ମଧ୍ୟରେ ସମସ୍ତଙ୍କୁ ଗୋଟିଏ ଗୋଟିଏ ବୃଷଭ ସହିତ ଶୀଘ୍ରଗାମୀ ଶ୍ୱେତରୋମଯୁକ୍ତ ଶତପ୍ରସୂତ ଗୋପ୍ରଦାନ କରିବୁଁ (୩୧) ଏବଂ ବଂଶଭରଣ ନିମିତ୍ତ ସମର୍ଥ ଭାରବାହୀ ଶ୍ୱେତବର୍ଣ୍ଣ ଶତ ଶତ ବୃଷବୃନ୍ଦ ପ୍ରଦାନ କରୁଅଛୁଁ ଓ ପ୍ରଥମ ଗର୍ଭବତୀ ପୀବରଶରୀର, ଶ୍ରେଷ୍ଠତର ସୁବ୍ରତା ସଦ୍ୟପ୍ରସୂତା ଧେନୁ ଦାନ କରୁଅଛୁଁ । ୩୨ । ଉତ୍କୃଷ୍ଟ ଗ୍ରାମସମୂହ, ବ୍ରୀହି-ରସ ଯବ ଏବଂ ଏତଦ୍‌ଭିନ୍ନ ଯେଉଁସବୁ ଦୁର୍ଲ୍ଲଭ ରତ୍ନସମୂହ ଅଛି, ତନ୍ମଧ୍ୟରୁ କେଉଁ ବସ୍ତୁ ଦାନ କରିବୁଁ, ତାହା କହିବା ହେଉନ୍ତୁ । ଆପଣମାନେ ଏହି ଅଭକ୍ଷ

ବସ୍ତୁରେ ଏତାଦୃଶ ଅଭିପ୍ରାୟ କରିବେ ନାହିଁ । ଆମ୍ଭେ ଆପଣମାନଙ୍କ ପୁଷ୍ଟି ନିମିତ୍ତ କେଉଁ ଦ୍ରବ୍ୟ ପ୍ରଦାନ କରିବୁଁ କହିବା ହେଉନ୍ତୁ । ୩୩ ।

ଋଷିଗଣ କହିଲେ, ମହାରାଜ ! ରାଜାମାନଙ୍କ ପ୍ରତିଗ୍ରହ ମଧ୍ୟରେ ଦ୍ରବ୍ୟ-ସଦୃଶ ସ୍ୱାଦୁ କିନ୍ତୁ ବିଷୋପମ ; ଆପଣ ତାହା ଜାଣି ସୁଦ୍ଧା ଆମ୍ଭମାନଙ୍କୁ କି ନିମିତ୍ତ ପ୍ରଲୋଭନ ପ୍ରଦର୍ଶନ କରୁଅଛନ୍ତି ?୩୪। ଦେବତାଗଣ ବ୍ରାହ୍ମଣଗଣଙ୍କ ଶରୀରରେ ଆଶ୍ରିତ ହୋଇଥାଆନ୍ତି । ସେହି ଦେବତା ସ୍ୱରୂପ ନିର୍ମଳ ବ୍ରାହ୍ମଣ ତପସ୍ୟାଦ୍ୱାରା ପ୍ରୀତ ହେଲେ ସମସ୍ତଙ୍କର ପ୍ରୀତି ବିଧାନ କରନ୍ତି । ୩୫। ବ୍ରାହ୍ମଣ ଏକ ଦିବସରେ ଯେଉଁ ତପସ୍ୟା ଉପାର୍ଜନ କରିଥାଆନ୍ତି, ତାହାକୁ କଦାଚିତ୍ ପ୍ରାପ୍ତ ରାଜପ୍ରତିଗ୍ରହ ଦାବାନଳ ସଦୃଶ ଦଗ୍‌ଧ କରେ । ୩୬ । ହେ ରାଜନ୍ ! ଆପଣଙ୍କର ଦାନସହିତ ସର୍ବଦା କୁଶଳ ହେଉ, ଅତଏବ ଆପଣ ଯାଚକଗଣଙ୍କୁ ସର୍ବବସ୍ତୁ ପ୍ରଦାନ କରନ୍ତୁ । ଋଷିଗଣ ଏହି କଥା କହି ଅନ୍ୟ ମାର୍ଗରେ ଗମନ କଲେ । ୩୭ । ସେହି ମହାତ୍ମାଗଣ ଯେଉଁ ମାଂସ ପାକ କରୁଥିଲେ, ତାହା ଅପକ୍ୱ ହୋଇ ରହିଲା । ତଦନନ୍ତର ସେମାନେ ସମସ୍ତେ ତାହା ପରିତ୍ୟାଗପୂର୍ବକ ଆହାରକାଂକ୍ଷୀ ହୋଇ ବନକୁ ଗମନ କଲେ । ୩୮ ।

ପରିଶେଷରେ ନୃପତି କର୍ତ୍ତୃକ ପ୍ରେରିତ ତଦୀୟ ମନ୍ତ୍ରିଗଣ ବନକୁ ଗମନ କରି ଉଡ଼ୁମ୍ବର ଫଳସମୂହ ଚୟନପୂର୍ବକ ସେମାନଙ୍କୁ ଦାନ କରିବାକୁ ଆରମ୍ଭ କଲେ । ୩୯ । ସେତେବେଳେ ସେମାନଙ୍କର ଭୃତ୍ୟଗଣ ସେହି ସ୍ୱର୍ଣ୍ଣପୂର୍ଣ୍ଣ ଉଡ଼ୁମ୍ବର ସମୂହକୁ ଗ୍ରହଣ କରିବା ନିମିତ୍ତ ଧାବିତ ହେଲେ । ୪୦। ଅତ୍ରି ତାହା ଗୁରୁତର ଜାଣି, ଅଗ୍ରାହ୍ୟ ବିବେଚନାରେ ଏହି କଥା କହିଲେ, "ଆମ୍ଭେମାନେ ମନ୍ଦବିଜ୍ଞାନ ନୋହୁଁ ଏବଂ ମନ୍ଦବୁଦ୍ଧି ନୋହୁ । ୪୧ । ଏହାସବୁ ସୁବର୍ଣ୍ଣମୟ ବୋଲି ଆମ୍ଭେ ଜାଣିଅଛୁଁ, ଅତଏବ ବିପ୍ରତିବୁଦ୍ଧ ହୋଇ ଜାଗ୍ରତ ରହିଅଛୁଁ ; ଇହଲୋକରେ ଏହାକୁ ଗ୍ରହଣ କଲେ ପର-ଲୋକରେ ଅତିଶୟ କଟୁ ହୁଏ ଅର୍ଥାତ୍ କଷ୍ଟ ହୁଏ । ଯେଉଁ ବ୍ୟକ୍ତି ଇହଲୋକ ଓ ପରଲୋକରେ ସୁଖଲାଭ ନିମିତ୍ତ ଇଚ୍ଛୁକ ହୁଅନ୍ତି, ତାହାଙ୍କର ଏହା ଅପ୍ରତିଗ୍ରାହ୍ୟ ଅଟେ ।" ୪୨ ।

ବଶିଷ୍ଠ କହିଲେ, ଶତ ଉଡ଼ୁମ୍ବରଦ୍ୱାରା ନିଷ୍କ ଏବଂ ସହସ୍ର ଉଡ଼ୁମ୍ବର-ଦ୍ୱାରା ଫମିତ ଗଣନା କରାଯାଏ, ତାଦୃଶ ବହୁ ସୁବର୍ଣ୍ଣ ପ୍ରତିଗ୍ରହ କଲେ ମନୁଷ୍ୟ ପାପିଷ୍ଠଗତିରେ ପତିତ ହୁଅନ୍ତି । ୪୩ । କଶ୍ୟପ କହିଲେ, ପୃଥିବୀ ମଧ୍ୟରେ ଯେଉଁ ସବୁ ବ୍ରୀହି, ଯବ, ହିରଣ୍ୟ, ପଶୁସମୂହ ଓ ସ୍ତ୍ରୀଲୋକ ଅଛନ୍ତି

ଚତ୍ସମୁଦାୟ ଏକଜଣଙ୍କୁ ପର୍ଯ୍ୟାପ୍ତ ନୁହେଁ । ଅତଏବ ବିଦ୍ବାନ୍ ବ୍ରାହ୍ମଣ ଶାନ୍ତି ଅବଲମ୍ବନ କରିବେ । ୪୪ ।

ଭରଦ୍ୱାଜ କହିଲେ, ଉତ୍ପନ୍ନ ବର୍ଦ୍ଧମାନ ରୁରୁମୃଗର ଶୃଙ୍ଗ କ୍ରମଶଃ ବର୍ଦ୍ଧିତ ହୁଏ, ଅତଏବ ପୁରୁଷଙ୍କର ପ୍ରାର୍ଥନା ସଦୃଶ ତାହାର ଇୟତ୍ତା ନାହିଁ । ୪୫ । ଗୌତମ କହିଲେ, ଲୋକରେ ଯାହା ଲୋକଙ୍କୁ ପରିପୂର୍ଣ୍ଣ କରେ, ଏତାଦୃଶ ଦ୍ରବ୍ୟ ନାହିଁ । ପୁରୁଷ ସମୁଦ୍ରକଳ୍ପ, ଅତଏବ ସେ କଦାପି ପୂର୍ଣ୍ଣ ହୁଅନ୍ତି ନାହିଁ । ୪୬ । ବିଶ୍ୱାମିତ୍ର କହିଲେ, କାମ୍ୟ ବିଷୟକୁ କାମନାକାରୀମାନଙ୍କର ଯେତେବେଳେ ତୃଷ୍ଣା ସମ୍ୟକ୍‌ରୂପେ ବୃଦ୍ଧିଲାଭ କରେ, ତେତେବେଳେ ତୃଷ୍ଣା ରୂପ ଅନ୍ୟ କାମ ବାଣବତ୍ ଏହି ପୁରୁଷଙ୍କୁ ବିଦ୍ଧ କରୁଥାଏ । ୪୭ । ଜମଦଗ୍ନି କହିଲେ, ପ୍ରତିଗ୍ରହ ବିଷୟରେ ସଂଯମ ନିଷ୍ଠୟ ତପସ୍ୟାକୁ ଧାରଣ କରେ; ଲୋଭ କଲେ ବ୍ରାହ୍ମଣଙ୍କର ସେହି ତପସ୍ୟାରୂପ ଧନ ବିଚ୍ୟୁତ ହୁଏ । ୪୮ । ଅରୁନ୍ଧତୀ କହିଲେ, ଧର୍ମାର୍ଥ ଦ୍ରବ୍ୟ ସଞ୍ଚୟ କରିବା ପାକ୍ଷିକ ସମ୍ମତ ଅଟେ । ଅତଏବ ଇହଲୋକରେ ଦ୍ରବ୍ୟ ସଞ୍ଚୟ ଅପେକ୍ଷା ତପସ୍ୟା ସଞ୍ଚୟ ଉତ୍କୃଷ୍ଟ । ୪୯ । ଗଣ୍ଡା କହିଲା, ଆମ୍ଭର ପ୍ରଭୁଗଣ ପରମତେଜସ୍ୱୀ ହୋଇ କ୍ଷୁଧା ଯନ୍ତ୍ର ଏହି ଉଗ୍ରତର ଭୟବଶରୁ ଭୀତ ହେଉଅଛନ୍ତି, ତେବେ ଆମ୍ଭେ ଦୁର୍ବଳସଦୃଶ ତତୋଧିକ ଭୟପ୍ରାପ୍ତ ହେଉଅଛୁଁ । ୫୦ ।

ପଶୁସଖ କହିଲେ, ଲୋଭାନ୍ଧ ଦୋଷ ସଙ୍ଘଟିତ ବୈଧର୍ମ୍ୟ ହେଲେ ଉତ୍କୃଷ୍ଟ ପଦଲାଭ ହୁଏ ନାହିଁ । ବ୍ରାହ୍ମଣଗଣ ସେହି ଉତ୍କୃଷ୍ଟ ପଦକୁ ଧନ ବୋଲି ଜ୍ଞାନ କରନ୍ତି; ଅତଏବ ଆମ୍ଭେ ସୁଶିକ୍ଷା ନିମିତ୍ତ ଯଥାର୍ଥରୂପେ ଏହି ସମସ୍ତ ସୁହୃଦ୍‌ବାନ୍‌ଗଣଙ୍କୁ ଯଥାର୍ଥ ରୂପେ ଉପାସନା କରିବୁଁ । ୫୧ । ଋଷିଗଣ କହିଲେ, ଯାହାଙ୍କର ଏହି ସମସ୍ତ ପ୍ରଜାଗଣ ଛଳଯୁକ୍ତ ଫଳସମୂହ ପ୍ରଦାନ କରନ୍ତି, ସେହି ଦାତାଙ୍କର ଦାନର କୁଶଳ ହୁଏ । ୫୨ । ଭୀଷ୍ମ କହିଲେ, ତଦନନ୍ତର ସେହି ସମସ୍ତ ଧୃତବ୍ରତ ଋଷିଗଣ ସୁବର୍ଣ୍ଣପୂରିତ ଉଡ଼ୁମ୍ବର ଫଳ ସମୂହକୁ ପରିତ୍ୟାଗ ପୂର୍ବକ ଅନ୍ୟତ୍ର ଗମନ କଲେ । ୫୩ ।

ମନ୍ତ୍ରିଗଣ କହିଲେ, ହେ ମହାରାଜ ! ସେମାନେ ଛଳକରି ସେହି ଫଳସମୂହକୁ ପରିତ୍ୟାଗ ପୂର୍ବକ ଅନ୍ୟ ପଥରେ ଗମନ କରୁଅଛନ୍ତି, ଆପଣ ଏହା ଜାଣିବା ହେଉନ୍ତୁ । ୫୪ । ରାଜା ବୃଷାଦର୍ଭି ମନ୍ତ୍ରିଗଣଙ୍କଠାରୁ ଏହି ବାକ୍ୟ ଶ୍ରବଣ କରି ଅତିଶୟ କୋପଯୁକ୍ତ ହେଲେ ଏବଂ ସେମାନଙ୍କର ପ୍ରତିକାର କରିବା ନିମିତ୍ତ ସେମାନଙ୍କ ସହିତ ଗୃହକୁ ଗମନ କଲେ । ୫୫ ।

ସେହି ରାଜା ଆହବନୀୟ ଅଗ୍ନିଙ୍କ ନିକଟକୁ ଗମନ ପୂର୍ବକ ଶାସ୍ତ୍ରୋକ୍ତ ନିୟମ ଅବଲମ୍ବନ କରି ସଂସ୍କୃତ ମନ୍ତ୍ରସମୂହ ଦ୍ୱାରା ଏକ ଏକ ଆହୁତି ପ୍ରଦାନ କଲେ । ୫୬ । ସେହି ଅଗ୍ନିରୁ ଲୋକଭୟଙ୍କର କୃତ୍ୟା ସମୁତ୍ଥିତ ହେଲା, ବୃଷାଦର୍ଭି ତାହାର ଯାତୁଧାନୀ ନାମ କଲେ । ୫୭ । କାଳରାତ୍ରି ସଦୃଶ ସେହି କୃତ୍ୟା କୃତାଞ୍ଜଳି ହୋଇ ନରପତି ବୃଷାଦର୍ଭିଙ୍କ ନିକଟରେ ଉପସ୍ଥିତା ହେଲା ଏବଂ କେଉଁ କାର୍ଯ୍ୟ କରିବ ଏହି କଥା କହିଲା । ୫୮ ।

ବୃଷାଦର୍ଭି କହିଲେ, ସପ୍ତର୍ଷି ଓ ଅରୁନ୍ଧତୀଙ୍କ ନିକଟକୁ ଗମନ କର, ସେମାନଙ୍କର ଏବଂ ସେମାନଙ୍କ ଦାସୀ ଭର୍ତ୍ତା ଓ ଦାସୀନାମାର୍ଥ ମନେ ମନେ ଧାରଣ କର (୫୯), ଓ ଏମାନଙ୍କ ନାମସମୂହ ଜ୍ଞାତ ହୋଇ ଏହି ସମସ୍ତଙ୍କୁ ବିନଷ୍ଟ କର । ସେମାନେ ବିନଷ୍ଟ ହେଲେ ତୁମ୍ଭେ ସ୍ୱେଚ୍ଛାନୁସାରେ ଯେଉଁ ସ୍ଥାନକୁ ଇଚ୍ଛା କର, ସେହି ସ୍ଥାନକୁ ଗମନ କର । ୬୦ । ଯାତୁଧାନୀ ସ୍ୱରୂପିଣୀ ସେହି କୃତ୍ୟା "ତାହା କରିବି" ଏହିପରି ଅଙ୍ଗୀକାର କରି ଯେଉଁ ବନରେ ସେହି ମହର୍ଷିଗଣ ବିଚରଣ କରୁଥିଲେ, ସେଠାକୁ ଗମନ କଲେ । ୬୧ ।

ଭୀଷ୍ମ କହିଲେ, ହେ ରାଜନ୍ ! ଅନନ୍ତର ଅତ୍ରିପ୍ରଭୃତି ମହର୍ଷିଗଣ ସେହି ବନରେ ଫଳମୂଳ ସମୂହ ଭକ୍ଷଣ କରି ବିଚରଣ କରୁଥିଲେ । ୬୨ । ସେତେବେଳେ ସେମାନେ ପୀନପାଣି, ପୀନପାଦ, ପୀନମୁଖ ଓ ପୀନୋଦର ଗୋଟିଏ ସ୍ଥୂଳଦେହ ପରିବ୍ରାଜକଙ୍କୁ କୁକୁର ସହିତ ଭ୍ରମଣ କରୁଥିବାର ଦେଖିଲେ ।୬୩। ଅରୁନ୍ଧତୀ ସେହି ସର୍ବାଙ୍ଗୋପଚିତ ସୁନ୍ଦର ସନ୍ନ୍ୟାସୀପୁରୁଷଙ୍କୁ ଦେଖି କରି ଋଷିଗଣଙ୍କୁ କହିଲେ, ଆପଣମାନେ ଏହିପରି ନୁହନ୍ତି । ୬୪ ।

ବଶିଷ୍ଠ କହିଲେ, ସଂପ୍ରତି ଆମ୍ଭମାନଙ୍କର ଅଗ୍ନିହୋତ୍ର ହୁଏ ନାହିଁ । ସାୟଂ ଓ ପ୍ରାତଃକାଳରେ ହୋମ କରିବା ଉଚିତ । ଏତେବେଳେ ତାହାର ସଂପ୍ରତି ବ୍ୟତିକ୍ରମ ଘଟିବାରୁ ଏବଂ ନିତ୍ୟକର୍ମ ଲୋପ ହେବାରୁ ଆମ୍ଭମାନଙ୍କର ଏ ପ୍ରକାର କାର୍ଶ୍ୟ ହୋଇଅଛୁ । ଏହାଙ୍କର ସେହିପରି ନିତ୍ୟକର୍ମ ଲୋପ ହୋଇନାହିଁ, ଏହି ନିମିତ୍ତ ଏ କୁକୁର ସହିତ ହୃଷ୍ଟପୁଷ୍ଟ ହୋଇଅଛନ୍ତି ।୬୫।

ଅତ୍ରି କହିଲେ, ଆମ୍ଭମାନଙ୍କ କ୍ଷୁଧାଦ୍ୱାରା ଯେଉଁପରି ବୀର୍ଯ୍ୟ ସମାହତ ଏବଂ ଅତି କଷ୍ଟରେ ଅଧୀତ ବିଦ୍ୟା ଯେଉଁପରି ବିନାଶପ୍ରାପ୍ତ ହୋଇଅଛି, ଏହାଙ୍କର ସେପରି ହୋଇନାହିଁ । ସେହି କାରଣରୁ ଏ କୁକ୍କୁର ସହିତ ଏପରି ହୃଷ୍ଟପୁଷ୍ଟ ହୋଇଅଛନ୍ତି । ୬୬ ।

ବିଶ୍ୱାମିତ୍ର କହିଲେ, ଆମ୍ଭମାନଙ୍କର ଶାସ୍ତ୍ର ପ୍ରତିପାଦିତ ଧର୍ମ ଯେଉଁପରି ଜୀର୍ଣ୍ଣ ହୋଇଅଛି, ଆମ୍ଭେମାନେ ଯେଉଁପରି କ୍ଷୁଧାତୁର, ଅଳସ ଓ ମୂର୍ଖ ହୋଇଅଛୁଁ, ଏ ସେହିପରି ହୋଇନାହାନ୍ତି । ସେହି ହେତୁରୁ କୁକ୍କୁର ସହିତ ହୃଷ୍ଟପୁଷ୍ଟ ହୋଇଅଛନ୍ତି । ୬୭ । ଜମଦଗ୍ନି କହିଲେ, ଆମ୍ଭେମାନେ ଯେଉଁପରି ବାର୍ଷିକ ଅନ୍ନ ଓ ଇନ୍ଧନ ଚିନ୍ତା କରୁଅଛୁଁ, ଏହାଙ୍କୁ କିଛି ସେହିପରି ଚିନ୍ତା କରିବାକୁ ହୁଏ ନାହିଁ । ସେହି କାରଣରୁ କୁକ୍କୁର ସହିତ ହୃଷ୍ଟପୁଷ୍ଟ ହୋଇଅଛନ୍ତି । ୬୮ । କଶ୍ୟପ କହିଲେ, ଆମ୍ଭର ଚାରି ସହୋଦର ଯେଉଁପରି 'ଦେହି ଦେହି' ବୋଲି ଭିକ୍ଷା କରୁଅଛନ୍ତି, ଏହାଙ୍କ ଭ୍ରାତାମାନେ ସେହିପରି ନୁହନ୍ତି । ଅତଏବ ସେହି ନିମିତ୍ତ ଏ କୁକ୍କୁର ସହିତ ହୃଷ୍ଟପୁଷ୍ଟ ହୋଇଅଛନ୍ତି । ୬୯ ।

ଭରଦ୍ୱାଜ କହିଲେ, ଆମ୍ଭର ଭାର୍ଯ୍ୟାଙ୍କ ଅପବାଦ ହେତୁରୁ ଯେଉଁପରି ଶୋକ ହୋଇଅଛି, ଏହି ଅଳ୍ପଚିତ୍ତ ବ୍ରହ୍ମବନ୍ଧୁଙ୍କର ସେହିପରି କୌଣସି ଘଟନା ଘଟିନାହିଁ । ସେହି କାରଣରୁ ଏହାଙ୍କର ଏବଂ ଏହାଙ୍କ କୁକ୍କୁର ଦେହ ହୃଷ୍ଟପୁଷ୍ଟ ହୋଇଅଛି । ୭୦ । ଗୌତମ କହିଲେ, ଆମ୍ଭ-ମାନଙ୍କର କୁଶରଜ୍ଜୁ ଦ୍ୱାରା ଗ୍ରଥିତ ରଙ୍କୁ ମୃଗଚର୍ମ ଯେଉଁପରି ତିନିବର୍ଷ ବ୍ୟବହାର ହେବାରୁ ଅତିଶୟ ଜୀର୍ଣ୍ଣ ହୋଇଅଛି, ଏହାଙ୍କର ସେହିପରି ନୁହେଁ । ସେହି କାରଣରୁ ଏହାଙ୍କ ଦେହ ଏବଂ ଏହାଙ୍କ କୁକୁରର ଦେହ ହୃଷ୍ଟପୁଷ୍ଟ ହୋଇଅଛି । ୭୧ ।

ଭୀଷ୍ମ କହିଲେ, ଅନନ୍ତର ସେହି ପରିବ୍ରାଜକ ସପ୍ତର୍ଷିଗଣଙ୍କୁ ଦର୍ଶନ କରି କୁକ୍କୁର ସହିତ ସେମାନଙ୍କ ସମ୍ମୁଖକୁ ଗମନ କରି ନ୍ୟାୟାନୁସାରେ ପାଣି ସ୍ପର୍ଶ କଲେ ଏବଂ କହିଲେ, ଆମ୍ଭମାନଙ୍କର ବନ ମଧ୍ୟରେ ଯେଉଁପରି କ୍ଷୁଧା ଶାନ୍ତ ହେବ ଆମ୍ଭେ ତାଦୃଶ ଭାବରେ ଆପଣମାନଙ୍କର ପରିଚର୍ଯ୍ୟା କରିବୁ । ପରସ୍ପର ଏହିପରି ସମସ୍ତେ କହନ୍ତେ, ସେମାନେ ସମସ୍ତେ ଏକତ୍ର ହୋଇ ଅବସ୍ଥାନ କଲେ । ୭୩ । ସେମାନେ ସମସ୍ତେ ଏକ କାର୍ଯ୍ୟାର୍ଥୀ ହୋଇ ଫଳମୂଳସମୂହ ଚୟନ କରି ବନ ମଧ୍ୟରେ ବିଚରଣ କରିବାକୁ ପ୍ରବୃତ୍ତ ହେଲେ । ୭୪ ।

କୌଣସି ସମୟରେ ସେମାନେ ସମସ୍ତେ ବିଚରଣ କରି ଅବିରଳ ତରୁଗଣ ପରିବୃତ ପବିତ୍ର ଓ ପ୍ରସନ୍ନ ଜଳସମ୍ପନ୍ନ ଗୋଟିଏ ସୁନ୍ଦର ସରୋବର ଦର୍ଶନ କଲେ । ୭୫ । ସେହି ସରୋବର ବାଳାର୍କ ସଦୃଶ ପୁଷ୍କର ସମୂହ-ଦ୍ୱାରା ଉପଶୋଭିତ ବୈଦୁର୍ଯ୍ୟ ବର୍ଣ୍ଣସମ ପଦ୍ମପତ୍ରମାନଙ୍କରେ ପରିବୃତ (୭୬)

ନାନାବିଧ ବାରିଚର ବିହଙ୍ଗକୁଳ ସମାକୁଳ ହୋଇଥିଲା; ସେହି ସରୋବରରେ ପ୍ରବେଶ କରିବା ପାଇଁ ଗୋଟିଏ ମାତ୍ର ଦ୍ୱାର ଥିଲା ଏବଂ ତାହା କର୍ଦ୍ଦମ-ଶୂନ୍ୟ ଅଟେ । କେହି ସେହି ସରୋଜସମୂହ ଅଥବା ସେହି ସରୋବରର ଜଳ ଆଦାନ କରି ପାରନ୍ତି ନାହିଁ ଏବଂ ସେଥିରେ ଅବତରଣର ଗୋଟିଏ ମାତ୍ର ପଥ ଥିଲା ।୭୭। ଯେଉଁ ନିଶାଚରୀ ବୃଷାଦର୍ଭି ନୃପତି କର୍ତ୍ତୃକ ପ୍ରେରିତା ବିକୃତଦର୍ଶନା କୃତ୍ୟା ଯାତୁଧାନୀ ନାମରେ ବିଖ୍ୟାତ ଥିଲା, ସେ ସେହି ସରୋବରକୁ ରକ୍ଷା କରୁଥିଲା । ୭୮ । ପଶୁସଖ ସହ ସେହି ମହର୍ଷିଗଣ ସମସ୍ତେ ମୃଣାଳ ନିମିତ୍ତ ସେହି କୃତ୍ୟାଦ୍ୱାରା ରକ୍ଷିତା ପଦ୍ମଯୁକ୍ତା ପୁଷ୍କରିଣୀ ସମ୍ମୁଖକୁ ଗମନ କଲେ । ୭୯ । ତଦନନ୍ତର ମହର୍ଷିଗଣ ସରୋବର ତୀରରେ ଅବସ୍ଥିତା ସେହି ବିକୃତଦର୍ଶନା ଯାତୁଧାନୀ କୃତ୍ୟାକୁ ନିରୀକ୍ଷଣ କରି କହିଲେ (୮୦), ଭଦ୍ରେ ! ତୁମ୍ଭେ କିଏ ? କାହା ନିମିତ୍ତ ଏ ସ୍ଥାନରେ ଏକାକିନୀ ହୋଇ ଅବସ୍ଥାନ କରୁଅଛ ? ସରୋବର ତୀରରେ ଅବସ୍ଥାନ କରିବାର ତୁମ୍ଭର ପ୍ରୟୋଜନ କି ? ଏବଂ ତୁମ୍ଭେ କଅଣ କରିବାକୁ ଇଚ୍ଛା କରୁଅଛ ତାହା କହ । ୮୧ ।

ଯାତୁଧାନୀ କହିଲେ, ହେ ତପୋଧନଗଣ ! ଆମ୍ଭେ ଯେ କିବା ସେ ହେଉଁ, ତୁମ୍ଭମାନଙ୍କର ଆମ୍ଭଙ୍କୁ ପ୍ରଶ୍ନ କରିବାର କଦାପି ଉଚିତ ନୁହେଁ । ତୁମ୍ଭେମାନେ ଜାଣ, ଆମ୍ଭେ ଏହି ସରୋବରର ରକ୍ଷା କାର୍ଯ୍ୟରେ ନିଯୁକ୍ତା ହୋଇଅଛୁ । ୮୨ ।

ଋଷିଗଣ କହିଲେ, ଆମ୍ଭେମାନେ ସମସ୍ତେ କ୍ଷୁଧାର୍ତ୍ତ; ଆମ୍ଭମାନଙ୍କର ଅନ୍ୟ କିଛି ନାହିଁ, କିନ୍ତୁ ତୁମ୍ଭେ ସମ୍ମତି ପ୍ରଦାନ କଲେ ଆମ୍ଭେମାନେ ସମସ୍ତେ ମୃଣାଳ ଗ୍ରହଣ କରିବୁ । ଯାତୁଧାନୀ କହିଲା, ପ୍ରଥମରେ ତୁମ୍ଭେମାନେ ତୁମ୍ଭ-ମାନଙ୍କର ନାମ ଓ ନାମାର୍ଥ କୀର୍ତ୍ତନ କରି ପଶ୍ଚାତ୍ ଇଚ୍ଛାନୁସାରେ ଏଥିରୁ ଶୀଘ୍ର ମୃଣାଳସମୂହ ଗ୍ରହଣ କର । ୮୪ ।

ଭୀଷ୍ମ କହିଲେ, ତଦନନ୍ତର କ୍ଷୁଧା ପରୀତାତ୍ମା ଅତ୍ରି ସେହି ଯାତୁଧାନୀ କୃତ୍ୟାକୁ ନାମାର୍ଥବୋଧରେ ସମର୍ଥା ଜ୍ଞାନ କରି ତାହାକୁ ଋଷିବଧରେ ଇଚ୍ଛୁକ ହୋଇଥିବାର ଜାଣି ଏହି କଥା କହିଲେ । ୮୫ ।

ଅତ୍ରି କହିଲେ, ଯେ ଏହି ସମସ୍ତ ଜଗତକୁ ପାପରୁ ପରିତ୍ରାଣ କରନ୍ତି, ଶ୍ରୁତିରେ ତାହାଙ୍କ ନାମ ଅତ୍ରି ବୋଲି ନିର୍ଦ୍ଦିଷ୍ଟ ହୋଇଅଛି, ଅତଏବ ଯେ ପାପରୁ ପରିତ୍ରାଣ କରନ୍ତି ସେ ଅତ୍ରି ଓ କାମକ୍ରୋଧାଦି ଅରି-ସମୂହ ଯାହାଙ୍କୁ ଆଶ୍ରୟ କରିଥାଆନ୍ତି, ତାହାଙ୍କୁ ଅରି ଅର୍ଥାତ୍ ପାପ ବୋଲା-ଯାଏ । ସେହି ଅରିରୁ ଯେ ତ୍ରାଣ କରନ୍ତି, ସେ ଅତ୍ରି ସୁତରାଂ ଯେ ଅତ୍ରି

ସେ ଅସି ଓ ଅତ୍ ଶବ୍ଦର ଅର୍ଥ ମୃତ୍ୟୁ, ତହିଁରୁ ସେ ତ୍ରାଣ କରନ୍ତି, ସେ ଅସି, ଅତଏବ ଧର୍ମ ଅସିପଦବାଚ୍ୟ । ଅଦ୍ୟ ଅର୍ଥାତ୍ ବର୍ତ୍ତମାନ କାଳରେ ଯେ ବିବାର ଅଧିଗତ ନୁହନ୍ତି, ଅଶ୍ଚାତ ପୃଥାଦଙ୍କର ଅନୁତ୍ପତ୍ତି କାଳରେ ଆଗତତ୍ତ୍ୱ ହେତୁରୁ ,ଉତ୍ପତ୍ତିକାଳରେ ବର୍ତ୍ତମାନ ହେତୁ ଏବଂ ନାଶ ହେଲେ ଅଶାତ୍ତ୍ୱ କାରଣରୁ ଯାହା ଅନୁଗତ ହୁଏ ନାହିଁ, ଯାହାର ଏହି ବିବାର ଅଧିଗମ ନାହିଁ, କେବଳ ବର୍ତ୍ତମାନ ରହିଅଛି, ଯେ ଅବସ୍ଥାରେ ହାର୍ଦାକାଶାଖ୍ୟ ଜଗତ୍ କାରଣ ପ୍ରାପ୍ତି ସର୍ବପାପ-ବିନାଶିନୀ, ତାହାକୁ ଅବସି କହନ୍ତି । ଅତଏବ ହେ ଶୋଭନେ ! ଆମ୍ଭେ ସଦ ଅବସି, ତେବେ ତୁମ୍ଭେ ଆମ୍ଭର ନାମ ଅସି ବୋଲି ନିଶ୍ଚୟ କର । ୮୬ ।

ଯାତୁଧାନୀ କହିଲା, ହେ ମହାଦ୍ୟୁତେ ! ତୁମ୍ଭେ ଆମ୍ଭ ନିକଟରେ ଯେଉଁ ନାମ କହିଲ, ତାହା ମନରେ ଧାରଣ କରିବାର ସୁକଠିନ । ଅତଏବ ତୁମ୍ଭେ ଏତେବେଳେ ଯାଅ, ସରୋବରରେ ଅବତୀର୍ଣ୍ଣ ହୁଅ । ୮୭ । ବଶିଷ୍ଠ କହିଲେ, ଅଗ୍ନି, ପୃଥିବୀ, ବାୟୁ, ଆକାଶ, ସ୍ୱର୍ଗ, ଆଦିତ୍ୟ, ଚନ୍ଦ୍ରମା ଓ ନକ୍ଷତ୍ରଗଣ ବସୁ ବୋଲି ଶ୍ରୁତିରେ ପ୍ରସିଦ୍ଧ ଅଛି । ଅର୍ଥାତ୍ ଯେଉଁମାନଙ୍କୁ ଅବଲମ୍ବନ କରି ସମସ୍ତେ ବାସ କରନ୍ତି, ଏମାନେ ଯାହାଙ୍କର ଅଧୀନ ନୁହନ୍ତି, ସେହି ଅଣିମାଦ ଐଶ୍ୱର୍ଯ୍ୟଶାଳୀ ମହାଯୋଗୀ ଏହି ସମସ୍ତେ ଆମ୍ଭର ବଶୀଭୂତ ହୋଇ ରହିଛନ୍ତି । ଏହି ନିମିତ୍ତ ଆମ୍ଭେ ବଶିଷ୍ଠ ଏବଂ ଅତିଶୟ ମହାନ୍ ବୋଲି ବରିଷ୍ଠ ଓ ସମସ୍ତ ଆଶ୍ରମୀଙ୍କ ଉପଜୀବ୍ୟ ବାସଯୋଗ୍ୟ ଗୃହାଶ୍ରମରେ ବସନ୍ତ କରିଥାଉଁ ; ଅତଏବ ବଶିଷ୍ଠତ୍ତ୍ୱ ଓ ବାସବଶରୁ ଆମ୍ଭଙ୍କୁ ବଶିଷ୍ଠ ବୋଲି ଜାଣ, ଆମ୍ଭେ ସମସ୍ତଙ୍କର ଆଶ୍ରୟ ବୋଲି ଦେବତା-ମାନେ ଆମ୍ଭଙ୍କୁ ରକ୍ଷା କରନ୍ତି । ୮୮ ।

ଯାତୁଧାନୀ କହିଲା, ତୁମ୍ଭ ନାମର ନିରୁକ୍ତ ଯାହା କହିଲ, ଅତି ଦୁଃଖରେ ଏହାର ଅକ୍ଷରାର୍ଥ ବ୍ୟାଖ୍ୟାତ ହୁଏ, ଅତଏବ ଏହା ଧାରଣ କରି ହୁଏ ନାହିଁ । ସୁତରାଂ ତୁମ୍ଭେ ସରୋବରରେ ଅବତୀର୍ଣ୍ଣ ହୁଅ । ୮୯ । କଶ୍ୟପ କହିଲେ, ଆମ୍ଭେ ପ୍ରତି ଶରୀରରେ ଏକ ; ଏହି ନିମିତ୍ତ ଆମ୍ଭ ନାମ କଶ୍ୟପ ଅର୍ଥାତ୍ କଶାର୍ହ ; ଅଶ୍ୱରୂପ ଇନ୍ଦ୍ରିୟଗଣଙ୍କୁ କଶ୍ୟ କହନ୍ତି । ସେହି ଇନ୍ଦ୍ରିୟଗଣଙ୍କ ଆଶ୍ରୟଭୂତ ଶରୀର ମଧ୍ୟ କଶ୍ୟ । ଅତଏବ କଶ୍ୟକୁ ରକ୍ଷାକର ଥାଉଁ ବୋଲି କଶ୍ୟପ, ଦ୍ୱିଜ ଏବଂ କୁ ଅର୍ଥାତ୍ ପୃଥିବୀକୁ ଯେ ରକ୍ଷା କରନ୍ତି, ତାହାକୁ କୂପ ଅର୍ଥାତ୍ ଜଳ ବୋଲାଯାଏ । ସେହି କୂପ ଅର୍ଥାତ୍ ଜଳକୁ ଯେ

ପାନ ଅର୍ଥାତ୍ ଶୋଷଣ କରନ୍ତି, ସେ କୃପପ, ଅର୍ଥାତ୍ ସୂର୍ଯ୍ୟ । ଦ୍ୱାଦଶ ସୂର୍ଯ୍ୟ ଆମ୍ଭର ପୁତ୍ର, ଏହି କାରଣରୁ ଆମ୍ଭେ କୃପପ, ଦୀପ୍ତିମାନ୍; ଏହି ହେତୁରୁ କଶ୍ୟ ଏବଂ କାଶ ପୁଷ୍ପ ସଦୃଶ ପଳିତ ଚରଣନଚର ତପସ୍ୟାଦ୍ୱାରା ପ୍ରଦୀପ୍ତ । ୯୦ ।

ଯାତୁଧାନୀ କହିଲା, ହେ ମହାଦ୍ୟୁତେ ! ତୁମ୍ଭେ ଆମ୍ଭ ନିକଟରେ ଯେଉଁପରି ନାମ କହିଲ, ତାହା ଆମ୍ଭ ମନରେ ଧାରଣା କରି ହେବ ନାହିଁ, ଅତଏବ ଯାଅ ସରୋବରରେ ଅବତରଣ କର । ୯୧ ।

ଭରଦ୍ୱାଜ କହିଲେ, ଅଶିଷ୍ୟ ଅର୍ଥାତ୍ ଶାସନ କରିବାକୁ ଅଯୋଗ୍ୟ ରାକ୍ଷସ ଓ ଶତ୍ରୁଗଣଙ୍କୁ କରୁଣା କରି ବଶୀଭୂତ କରି ପ୍ରତିପାଳନ କରୁ ଏବଂ ଅସୃତ ଅର୍ଥାତ୍ ଉଦାସୀନ ଧନହୀନଗଣଙ୍କୁ ପରିପାଳନ କରୁଁ; ଦେବ-ଗଣଙ୍କୁ ଭରଣ କରୁଁ, ଭାର୍ଯ୍ୟା, ପୁତ୍ର, ଭୃତ୍ୟ ପ୍ରଭୃତିଙ୍କୁ ଅନ୍ୟ ବ୍ୟକ୍ତିମାନେ ଯେଉଁପରି ଭରଣ କରନ୍ତି, ପୃଥିବୀସଦୃଶ ସର୍ବଂସହ ଓ ଅନ୍ନପ୍ରଦ ହୁଅନ୍ତି, ଆମ୍ଭେ ମଧ୍ୟ ତଦ୍‌ବତ୍ ଅଟୁ । ଅତଏବ ହେ ଶୋଭନେ ! ଆମ୍ଭେ ଅନବ୍ୟ ଅର୍ଥାତ୍ ମାୟାରୁ ଲୋକହିତ ନିମିତ୍ତ ଜନ୍ମଗ୍ରହଣ କରିଅଛୁଁ, ଏହି ନିମିତ୍ତ ଆମ୍ଭେ ଅନବ୍ୟାଜ ସେହି ହେତୁରୁ ଭରଦ୍ୱାଜ ବୋଲି ଜାଣ । ୯୨ ।

ଯାତୁଧାନୀ କହିଲା, ତୁମ୍ଭ ନାମର ଏତାଦୃଶ ନିର୍ବାଚନ ଓ ଅକ୍ଷରାର୍ଥ କୀର୍ତ୍ତନ କରିବାକୁ ଅତିଶୟ ଦୁଃଖ ହେଉଅଛି । ଏହା ଧାରଣ କରିବାକୁ ସମର୍ଥ ନୋହୁଁ, ଅତଏବ ଯାଅ, ସରୋବରରେ ଅବତରଣ କର । ୯୩ ।

ଗୌତମ କହିଲେ, ଆମ୍ଭେ ଜିତେନ୍ଦ୍ରିୟ; ଏହି ହେତୁରୁ ଗୋପଦ-ବାଚ୍ୟ ସ୍ୱର୍ଗ ଓ ଭୂମିକୁ ବଶୀଭୂତ କରୁ । ଏହି ନିମିତ୍ତ ଗୋଦମ ଏବଂ ନିର୍ଧୂମ ଅଗ୍ନିସଦୃଶ, ଅତଏବ ଅଧୂମ । ସେହି ହେତୁରୁ ତୁମ୍ଭଠାରେ ସମଦର୍ଶନ ହେତୁରୁ ଅଦମ ଅର୍ଥାତ୍ ଅନ୍ୟର ଦମନୀୟ ନୋହୁଁ । ହେ ଯାତୁଧାନୀ କୃତ୍ୟେ ! ଆମ୍ଭେ ଜନ୍ମଗ୍ରହଣ କଲାମାତ୍ରେ ଆମ୍ଭର ଗୋ, ଅର୍ଥାତ୍ କିରଣଦ୍ୱାରା ତମ ଅର୍ଥାତ୍ ଅନ୍ଧକାର ବିଧ୍ୱସ୍ତ ହୋଇଥିଲା । ଅତଏବ ଆମ୍ଭ ନାମ ଗୌତମ ବୋଲି ଜାଣ । ଆମ୍ଭେ ବହ୍ନିସଦୃଶ ତୁମ୍ଭର ଦୁଷ୍ପ୍ରର୍ଶ । ଏହି କଥା ଜ୍ଞାନକର । ୯୪ ।

ଯାତୁଧାନୀ କହିଲା, ହେ ମୁନେ ! ତୁମ୍ଭେ ଆମ୍ଭ ନିକଟରେ ଯେଉଁ ନାମ କୀର୍ତ୍ତନ କଲ, ଏହା ଧାରଣା କରିବାର ଯୋଗ୍ୟ ନୁହେ; ଅତଏବ ଯାଅ ସରୋବରରେ ଅବତରଣ କର । ୯୫ ।

ବିଶ୍ୱାମିତ୍ର କହିଲେ, ବ୍ରହ୍ମାଣ୍ଡସ୍ଥିତ ଦେବଗଣ ଆମ୍ଭର ମିତ୍ର, ଏବଂ ଆମ୍ଭେ ଇନ୍ଦ୍ରିୟଗଣର ମିତ୍ର, ଅତଏବ ହେ ଯାତୁଧାନି ! ତୁମ୍ଭେ ଆମ୍ଭଙ୍କୁ

ବିଶ୍ୱାମିତ୍ର ବୋଲି ଜ୍ଞାନକର । ୯୬ । ଯାତୁଧାନୀ କହିଲା, ତୁମ୍ଭ ନାମର ଏହି ନିରୁକ୍ତ ଓ ଏହାର ଅକ୍ଷରାର୍ଥ ଅତି ଦୁଃଖରେ ଭାଷିତ ହୁଏ, ଅତଏବ ଏହା ଧାରଣା କରିବାର ଯୋଗ୍ୟ ନୁହେଁ । ସୁତରାଂ ଯାଅ । ସରୋବରରେ ଅବତରଣ କର । ୯୭ ।

ଜମଦଗ୍ନି କହିଲେ, ଯେଉଁମାନେ ଯଜ୍ଞାଦରେ ବାରମ୍ବାର ହବି ଭକ୍ଷଣ କରନ୍ତି, ସେହିମାନଙ୍କୁ ଯାଜମନ୍ତ କୁହାଯାଏ । ସେହି ଯାଜମନ୍ତ ଅର୍ଥାତ୍ ଦେବଗଣଙ୍କୁ ଯହିଁରେ ଯଜନ କରାଯାଏ, ତାହାର ନାମ ଯଜ, ଅର୍ଥାତ୍ ଅଗ୍ନି । ତାହାର ଯାନ ଅର୍ଥାତ୍ ଆବର୍ତ୍ତବରେ ଆମ୍ଭେ ଜନ୍ମ ପରିଗ୍ରହ କରିଅଛୁଁ ବୋଲି ଜାଣ । ହେ ଶୋଭନେ ! ଏହି କାରଣରୁ ତୁମ୍ଭେ ଆମ୍ଭଙ୍କୁ ଜମଦଗ୍ନି ବୋଲି ଜାଣ । ୯୮ । ଯାତୁଧାନୀ କହିଲା, ହେ ମୁନେ ! ତୁମ୍ଭେ ଆମ୍ଭ ନିକଟରେ ତୁମ୍ଭର ଯେଉଁପରି ନାମ କୀର୍ତ୍ତନ କଲ, ତାହା ଧାରଣ କରିବାର ଯୋଗ୍ୟ ନୁହେଁ । ଅତଏବ ଯାଅ, ସରୋବରରେ ଅବତରଣ କର । ୯୯ । ଅରୁନ୍ଧତୀ କହିଲେ, ଆମ୍ଭେ ପତିଙ୍କର ଅନୁଗାମିନୀ ହୋଇ ଧର, ଅର୍ଥାତ୍ ପର୍ବତ, ଧରଣୀ ଏବଂ ବସୁଧା ଅର୍ଥାତ୍ ଦେବଗଣଙ୍କ ବସତି ସ୍ଥାନ ସ୍ୱର୍ଗରେ ବସତି କରୁଁ ଏବଂ ଭର୍ତ୍ତାଙ୍କ ମନ ଅନୁରୋଧ କରିଥାଉଁ; ଏହି କାରଣରୁ ଆମ୍ଭଙ୍କୁ ଅରୁନ୍ଧତୀ ବୋଲି ଜାଣ । ୧୦୦ ।

ଯାତୁଧାନୀ କହିଲା, ତୁମ୍ଭ ନାମର ନିରୁକ୍ତ ଓ ଅକ୍ଷରାର୍ଥ ଅତି ଦୁଃଖରେ ଭାଷିତ ହୁଏ, ଅତଏବ ଏହା ଧାରଣ କରିବାକୁ ଆମ୍ଭେ ସମର୍ଥ ନୋହୁଁ । ସୁତରାଂ ତୁମ୍ଭେ ଯାଅ, ସରୋବରରେ ଅବତରଣ କର ।୧୦୧।

ଗଣ୍ଡା କହିଲା, ହେ ଅନଳସମ୍ଭବେ ! ମୁଖର ଏକ ଦେଶକୁ ପଣ୍ଡିତଗଣ ଗଣ୍ଡ ବୋଲି କହନ୍ତି, ଆମ୍ଭର ସେହି ପ୍ରଦେଶ ଉନ୍ନତ ବୋଲି ଆମ୍ଭଙ୍କୁ ଗଣ୍ଡା ବୋଲି ଜ୍ଞାନ କର । ୧୦୨ ।

ଯାତୁଧାନୀ କହିଲା, ତୁମ୍ଭ ନାମର ନିରୁକ୍ତ ଓ ଅକ୍ଷର ଅତି ଦୁଃଖରେ ଭାଷିତ ହୁଏ ; ଅତଏବ ଏହାକୁ ଧାରଣ କରିବାକୁ ଆମ୍ଭେ ସମର୍ଥ ନୋହୁଁ । ତୁମ୍ଭେ ଯାଅ ସରୋବରରେ ଅବତରଣ କର । ୧୦୩ ।

ପଶୁସଖ କହିଲେ, ହେ ଅଗ୍ନିସମ୍ଭବେ ! ଆମ୍ଭେ ପଶୁ ଅର୍ଥାତ୍ ଜୀବଗଣଙ୍କୁ ଦର୍ଶନ କଲା ମାତ୍ରେ ରକ୍ଷା ଓ ରଞ୍ଜନ କରୁ, ସେହି କାରଣରୁ ଆମ୍ଭେ ପଶୁମାନଙ୍କର ସଖା, ଅତଏବ ଆମ୍ଭର ଏହି ଗୁଣ ସମ୍ଭବ ହେତୁରୁ ଆମ୍ଭ ନାମ ପଶୁସଖ ବୋଲି ଅବଗତ ହୁଅ । ୧୦୪ ।

ଯାତୁଧାନୀ କହିଲା, ତୁମ୍ଭର ଏହି ନାମ ନିରୁକ୍ତ ଓ ଅକ୍ଷରାର୍ଥ ଅତି ଦୁଃଖରେ ଉଷିତ ହୁଏ; ଅତଏବ ଆମ୍ଭେ ଏହା ଧାରଣ କରିବାକୁ ସମର୍ଥ ନୋହୁଁ, ସୁତରାଂ ତୁମ୍ଭେ ଯାଅ । ସରୋବରରେ ଅବତରଣ କର ।୧୦୫।

ଶୁନଃସଖ କହିଲେ, ହେ ଯାତୁଧାନୀ ! ଏହିମାନେ ଯେଉଁପରି ନିଜ ନାମ କହିଲେ, ଆମ୍ଭେ ସେହିପରି କୀର୍ତ୍ତନ କରିବାକୁ ଉତ୍ସାହୀ ନୋହୁ । ଅତଏବ ଆମ୍ଭଙ୍କୁ ଶୁନଃସଖା ଅର୍ଥାତ୍ ଧର୍ମସଖା, ମୁନିଗଣଙ୍କ ସଖା ବୋଲି ଅବଧାରଣ କର । ୧୦୬ ।

ଯାତୁଧାନୀ କହିଲା, ତୁମ୍ଭେ ସନ୍ଦିଗ୍ଧ ଭାଷାଦ୍ୱାରା ନିଜ ନାମ ନିର୍ବାଚନ କଲ । ଅତଏବ ହେ ଦ୍ୱିଜ ! ଏତେବେଳେ ପୁନଶ୍ଚ ତୁମ୍ଭର ଯଥାର୍ଥ ନାମ କହ । ୧୦୭ ।

ଶୁନଃସଖ କହିଲେ, ଆମ୍ଭେ ଥରେ ନିଜ ନାମ କହିଲୁଁ, ତୁମ୍ଭେ ତାହା ଯଦି ବୁଝି ନ ପାରିଲ, ତେବେ ଏହି ତ୍ରିଦଣ୍ଡଦ୍ୱାରା ଅଭିହିତ ହୋଇ ଶୀଘ୍ର ଭସ୍ମ ହୁଅ । ୧୦୮ ।

ଯାତୁଧାନୀ କୃତ୍ୟା ତେତେବେଳେ ବ୍ରହ୍ମଦଣ୍ଡ ସଦୃଶ ତ୍ରିଦଣ୍ଡଦ୍ୱାରା ମସ୍ତକରେ ଆହତା ହୋଇ ଭୂତଳରେ ପତିତା ହେଲା ଓ ତତ୍କ୍ଷଣାତ୍ ଭସ୍ମ-ସାତ୍ ହେଲା । ୧୦୯ । ଶୁନଃସଖା ମଧ୍ୟ ମହାବଳଶାଳୀନୀ ଯାତୁଧାନୀକି ନିହତ କରି ଭୂତଳରେ ତ୍ରିଦଣ୍ଡ ସ୍ଥାପନ ପୂର୍ବକ ଶାଦ୍ୱଳ ତୃଣ ମଧ୍ୟରେ ଉପବେଶନ କଲେ । ତତ୍ପରେ ସେହି ସମସ୍ତ ମୁନିଗଣ ଇଚ୍ଛାନୁସାରେ ପୁଷ୍କର ଓ ମୃଣାଳ ଗ୍ରହଣ ପୂର୍ବକ ହର୍ଷାବିଷ୍ଟ ହୋଇ ଉତ୍ଥିତ ହେଲେ । ସେମାନେ ସୁମହତ୍ ଶ୍ରମସହକାରେ ମୃଣାଳସମୂହ ଏକତ୍ରିତ କରି ସରୋବରତୀରରେ ନିକ୍ଷେପ ପୂର୍ବକ ସଲିଳଦ୍ୱାରା ତର୍ପଣ କଲେ । ପରିଶେଷରେ ସେହି ପୁରୁଷପ୍ରବର ଋଷିଗଣ ଜଳରୁ ସ୍ଥଳକୁ ଉଠି ଏକତ୍ରିତ ହେଲେ । କିନ୍ତୁ ସେହି ମୃଣାଳରାଶିକି ଦେଖିଲେ ନାହିଁ । ଋଷିଗଣ କହିଲେ, ଆମ୍ଭେମାନେ କ୍ଷୁଧାତୁର, ସୁତରାଂ ଆହାରକାଂକ୍ଷୀ ହୋଇ ଯେଉଁ ମୃଣାଳସମୂହ ଆହରଣ କଲୁଁ, କେଉଁ ପାପକର୍ମା ନୃଶଂସ ମାନୁଷ ସେହି ବିଶସମୂହକୁ ଅପହରଣ କଲା ? ସେହି ଦ୍ୱିଜସତ୍ତମଗଣ ଶଙ୍କିତ ହୋଇ ପରସ୍ପର ଏହିପରି ପ୍ରଶ୍ନ କଲେ । ହେ ଶତ୍ରୁ-କର୍ଷଣ ! ତେତେବେଳେ ସେମାନେ ସମସ୍ତେ ନିଷିଦ୍ଧ କାର୍ଯ୍ୟର ଅକର୍ତ୍ତବ୍ୟତା ଛଳରେ ଶପଥ କରିବା, ଏହି କଥା କହିଲେ । ସେମାନେ ସମସ୍ତେ କ୍ଷୁଧାର୍ତ୍ତ ଏବଂ ଅତ୍ୟନ୍ତ ପରିଶ୍ରାନ୍ତ ଥିଲେ, ସୁତରାଂ ତାହା କରିବା, ଏହି କଥା କହି ସମସ୍ତେ ତେତେବେଳେ ଶପଥ କରିବାକୁ ଉପକ୍ରମ କଲେ । ୧୧୬ ।

ଅତ୍ରି କହିଲେ, ଯେଉଁ ବ୍ୟକ୍ତି ମୃଣାଳ ହରଣ କରିଅଛି, ସେ ପଦଦ୍ୱାରା ଗୋସ୍ପର୍ଶ କରୁ, ସୂର୍ଯ୍ୟାଭିମୁଖରେ ମୂତ୍ରପୁରୀଷ ପରିତ୍ୟାଗ କରୁ ଏବଂ ଏ ଅନଧ୍ୟାୟ ସମୟରେ ଅଧ୍ୟୟନ କରୁ । ୧୧୭ ।

ବଶିଷ୍ଠ କହିଲେ, ଯେଉଁ ବ୍ୟକ୍ତି ମୃଣାଳ ହରଣ କରିଅଛି, ସେ ଲୋକମଧ୍ୟରେ ଅନଧ୍ୟାୟ ପରାୟଣ ହୋଇ କ୍ରୀଡ଼ା ନିମିତ୍ତ ବା ମୃଗୟା ନିମିତ୍ତ ସାରମେୟ ବୃନ୍ଦଙ୍କୁ ଆକର୍ଷଣ କରୁ । ପରିବ୍ରାଟ୍ ହୋଇ ସ୍ୱେଚ୍ଛାଗ୍ରସ୍ତ ହେଉ ଏବଂ ସେ ଶରଣାଗତ ବ୍ୟକ୍ତିଙ୍କୁ ହନନ କରୁ । ସ୍ୱୀୟ ଦୁହିତାକୁ ଉପଜୀବ୍ୟ କରୁ, ଅର୍ଥାତ୍ ଶୁଳ୍କ ଗ୍ରହଣପୂର୍ବକ ନିଜ ଦୁହିତା ବିକ୍ରୟ କରି ଜୀବନଯାପନ କରୁ ଏବଂ କର୍ଷକର ନିକଟରୁ ଅର୍ଥାକାଂକ୍ଷା କରୁ ।

କଶ୍ୟପ କହିଲେ, ଯେଉଁ ବ୍ୟକ୍ତି ମୃଣାଳ ଅପହରଣ କରିଅଛି, ସେ ସର୍ବତ୍ର ସକଳ ବିଷୟର ଆଳାପ କରୁ ; ନ୍ୟସ୍ତ ଧନ ଲୋପ କରୁ । ୧୨୦ । ଯାଗାଦି କାରଣ ବ୍ୟତିରେକେ ବୃଥା ମାଂସାଶୀ ହେଉ । ନଟ ନର୍ତ୍ତକ ପ୍ରଭୃତିଙ୍କୁ ବୃଥା ଦାନ କରୁ । ୧୨୧ ।

ଭରଦ୍ୱାଜ କହିଲେ, ଯେଉଁ ବ୍ୟକ୍ତି ମୃଣାଳ ହରଣ କରିଅଛି, ସେ ଧର୍ମତ୍ୟାଗୀ ହୋଇ ସ୍ତ୍ରୀ ଜାତି ଓ ଗୋବୃନ୍ଦଙ୍କଠାରେ ନିଷ୍ଠୁର ଆଚରଣ କରୁ, ଅଥବା ବ୍ରାହ୍ମଣଙ୍କୁ ଜୟ କରୁ । ଯେ ମୃଣାଳ ହରଣ କରିଅଛି, ସେ ଉପାଧ୍ୟାୟଙ୍କୁ ଅଗ୍ରାହ୍ୟ କରି, ଋକ୍ ଓ ଯଜୁର୍ବେଦ ଅଧ୍ୟୟନ କରୁ ଓ ତୃଣଯୁକ୍ତ ଅଗ୍ନିରେ ହୋମ କରୁ । ୧୨୩ ।

ଜମଦଗ୍ନି କହିଲେ, ଯେଉଁ ବ୍ୟକ୍ତି ମୃଣାଳ ହରଣ କରିଅଛି, ସେ ଜଳମଧ୍ୟରେ ପୁରୀଷ ତ୍ୟାଗ କରୁ, ଗୋହନନ ଓ ଗୋଗଣଠାରେ ଦ୍ରୋହ ଆଚରଣ କରୁ ଏବଂ ଋତୁକାଳ ବ୍ୟତିରେକେ ଅନ୍ୟ ସମୟରେ ମୈଥୁନରେ ପ୍ରସକ୍ତ ହେଉ । ଯେଉଁ ବ୍ୟକ୍ତି ମୃଣାଳ ହରଣ କରିଅଛି, ସେ ସମସ୍ତଙ୍କର ଦ୍ୱେଷ୍ୟ ହେଉ, ଭାର୍ଯ୍ୟାକୁ ଉପଜୀବ୍ୟ କରି ଜୀବନଯାପନ କରୁ । ତାହାର ବନ୍ଧୁଗଣ ଦୂରରେ ଅବସ୍ଥିତ କରନ୍ତୁ । ସେ ସର୍ବଦା ବୈର ବିଶିଷ୍ଟ ହେଉ ଏବଂ ପରସ୍ପର,ଅତିଥି ହେଉ । ୧୨୫ ।

ଗୌତମ କହିଲେ, ଯେଉଁ ବ୍ୟକ୍ତି ମୃଣାଳ ହରଣ କରିଅଛି, ସେ ବେଦସମୂହକୁ ଅଧ୍ୟୟନ କରି ତାହା ପରିତ୍ୟାଗ କରୁ । ଦକ୍ଷିଣାଗ୍ନି, ଗାର୍ହପତ୍ୟ ଓ ଆହବନୀୟ ଏହି ଅଗ୍ନିତ୍ରୟ ପରିହାର କରୁ ଏବଂ ସୋମ-ବିକ୍ରୟୀ ହେଉ । ଯେଉଁ ଦେଶରେ ଏକମାତ୍ର କୂପୋଦକ ଦ୍ୱାରା ଜୀବନ ଧାରଣ କରିବାକୁ ହୁଏ, ତାଦୃଶ ଦେଶରେ ବ୍ରାହ୍ମଣ ହୋଇ ଯେ ବୃଷଳୀପତି

ହୋଇଥାଏ, ଯେ ମୃଣାଳ ହରଣ କରିଅଛି, ସେ ତାଦୃଶ ବ୍ରାହ୍ମଣଙ୍କ ସାଦୃଶ୍ୟ ପ୍ରାପ୍ତ ହୁଅନ୍ତୁ । ୧୨୭ ।

ବିଶ୍ୱାମିତ୍ର କହିଲେ, ଯେଉଁ ବ୍ୟକ୍ତି ମୃଣାଳ ହରଣ କରିଅଛି, ସେ ଜୀବିତ ଥିଲେ ସୁଦ୍ଧା ଅନ୍ୟ ବ୍ୟକ୍ତିମାନେ ତାହାର ଗୁରୁଜନ ଓ ଭୃତ୍ୟ-ବର୍ଗଙ୍କୁ ଭରଣ କରନ୍ତୁ । ସେ ଗତିହୀନ ଓ ବହୁପୁତ୍ର ହେଉ ; ଯେ ମୃଣାଳ ହରଣ କରିଅଛି, ତାହାର ବେଦରାଶି ଅଶୁଚି ହେଉ, ସେ ସମ୍ପତ୍ତିଲାଭଦ୍ୱାରା ଅହଂକାରପ୍ରାପ୍ତ ହେଉ ଏବଂ ସେ କର୍ଷକ ଓ ମତ୍ସରୀ ହେଉ । ଯେ ମୃଣାଳ ହରଣ କରିଅଛି, ସେ ବର୍ଷାକାଳରେ ବିଚରଣ କରୁ, ରାଜାର ବେତନ-ଭୋଗୀ ଭୃତ୍ୟ ହେଉ ; ସାଧାରଣର ପୁରୋହିତ ଏବଂ ଅଯାଜ୍ୟ ବ୍ୟକ୍ତିର ଯାଜକ ହେଉ । ୧୩୦ ।

ଅରୁନ୍ଧତୀ କହିଲେ, ଯେଉଁ ସ୍ତ୍ରୀ ମୃଣାଳ ହରଣ କରିଅଛି, ସେ ଶ୍ୱଶ୍ରୂଙ୍କୁ ସର୍ବଦା ପରିଭବ କରୁ, ପତିଙ୍କ ନିକଟରେ ଦୁର୍ମନା ହେଉ, ଏକାକିନୀ ସ୍ୱାଦୁଦ୍ରବ୍ୟ ଭକ୍ଷଣ କରୁ । ଯେ ମୃଣାଳ ହରଣ କରିଅଛି, ସେ ଜ୍ଞାତିଗଣଙ୍କୁ ଅନାଦରପୂର୍ବକ ଗୃହ ମଧ୍ୟରେ ଥାଇ ଦିନାବସାନ ସମୟରେ ଶକ୍ତୁ ଭକ୍ଷଣ କରୁ ; ଅଭୋଗ୍ୟା ଓ ଅବୀରପ୍ରସବିନୀ ହେଉ । ୧୩୨ ।

ଗଣ୍ଡା କହିଲା, ଯେ ମୃଣାଳ ହରଣ କରିଅଛି, ସେ ସର୍ବଦା ଅନୃତ ବାକ୍ୟ ପ୍ରୟୋଗ କରୁ, ବନ୍ଧୁବର୍ଗ ସହିତ ବିରୋଧ କରୁ, ଶୁଳ୍କ ଗ୍ରହଣପୂର୍ବକ କନ୍ୟା ପ୍ରଦାନ କରୁ । ଯେ ମୃଣାଳ ହରଣ କରିଅଛି, ସେ ଅନ୍ନପାକ କରି ସ୍ୱୟଂ ଭକ୍ଷଣ କରୁ, ଦାସ୍ୟ କର୍ମ କରି ଜୀର୍ଣ୍ଣ ହେଉ ; ଏବଂ ଜାରଜାତକ ଗର୍ଭଦୋଷରୁ ମୃତ ହେଉ । ୧୩୪ ।

ପଶୁସଖ କହିଲେ, ଯେ ମୃଣାଳ ହରଣ କରିଅଛି, ସେ ଦାସ ହୋଇ ଜନ୍ମଗ୍ରହଣ କରୁ, ସେ ନିଃସନ୍ତାନ ହେଉ, ଅକିଞ୍ଚନ ହେଉ, ଦେବ-ଗଣଙ୍କୁ ନମସ୍କାର ନ କରୁ । ୧୩୫ ।

ଶୁନଃସଖ କହିଲେ, ଯେ ମୃଣାଳ ହରଣ କରିଅଛି, ସେ ଚତୁର୍ବେଦ-ବିତ୍ ଅଥବା ସାମବେଦଜ୍ଞ କିମ୍ବା ବ୍ରହ୍ମଚର୍ଯ୍ୟବିଶିଷ୍ଟ ବ୍ରାହ୍ମଣଙ୍କୁ କନ୍ୟାଦାନ କରୁ ଏବଂ ସେହି ବିପ୍ର ଅଥର୍ବବେଦ ପଢ଼ି ସ୍ନାନ କରୁ । ୧୩୬ ।

ଋଷିଗଣ କହିଲେ, ହେ ଶୁନଃସଖ ! ତୁମ୍ଭେ ଯେଉଁ ଶପଥ କଲ, ତାହା ଦ୍ୱିଜାତିମାନଙ୍କର ଇଷ୍ଟ, ଅତଏବ ତୁମ୍ଭେ ଆମ୍ଭ ସମସ୍ତଙ୍କର ମୃଣାଳ ହରଣ କରିଅଛ । ୧୩୭ । ଶୁନଃସଖ କହିଲେ, ଆପଣମାନେ ସପ୍ରତି ନ୍ୟସ୍ତ ଧନକୁ ଅବଲୋକନ ନ କରି କୃତକର୍ମା ହୋଇ ଯାହା କହିଲେ, ଏହା

ସତ୍ୟ, ମିଥ୍ୟା କୁହେଁ । ଆମ୍ଭେ ମୃଣାଳ ହରଣ କରିଅଛୁ, ଏହି ମୃଣାଳସମୂହ ମତ୍ତ୍ୱକର୍ତ୍ତୃକ ହରଣ ହୋଇଅଛି, ଅବଲୋକନ କରନ୍ତୁ । ହେ ଅନଘଗଣ ! ଆମ୍ଭେ ଆପଣମାନଙ୍କ ପରୀକ୍ଷା ନିମିତ୍ତ ଏହିପରି କରିଅଛୁ । ୧୩୯ । ଆମ୍ଭେ ଆପଣମାନଙ୍କ ରକ୍ଷା ନିମିତ୍ତ ଏ ସ୍ଥାନକୁ ଆସିଅଛୁ । ଏହି ଅତି କ୍ରୂର ଯାତୁଧାନୀ କୃତ୍ୟା ଆପଣମାନଙ୍କୁ ବଧ କରିବାକୁ ଇଚ୍ଛା କରିଥିଲା । ହେ ତପୋଧନଗଣ ! ବୃଷାଦର୍ଭି ନୃପତି ଏହାକୁ ପ୍ରେରଣ କରିଥିଲେ । ଆମ୍ଭେ ଏହାକୁ ନିହତ କଲୁଁ । ଏହି ଦୁଷ୍ଟା, ହିଂସ୍ରା, ପାପୀୟସୀ ଆପଣମାନଙ୍କ ବଧ ନିମିତ୍ତ ଅଗ୍ନିରୁ ସମ୍ଭୂତା ହୋଇଥିଲା । ୧୪୧ ।

ହେ ବିପ୍ରଗଣ ! ସେହି ହେତୁରୁ ଆମ୍ଭେ ଏହି ସ୍ଥାନକୁ ଆସିଅଛୁ । ଆପଣମାନେ ଆମ୍ଭଙ୍କୁ ବାସବ ବୋଲି ଜ୍ଞାନ କରନ୍ତୁ । ଆପଣମାନେ ସମସ୍ତେ ଅଲୋଭ ହେତୁରୁ ସର୍ବକାମସମ୍ପନ୍ନ ଅକ୍ଷୟ ଲୋକସମୂହ ପ୍ରାପ୍ତ ହୋଇଅଛନ୍ତି । ୧୪୨ । ଅତଏବ ହେ ଦ୍ୱିଜଗଣ ! ଏ ସ୍ଥାନରୁ ଗାତ୍ରୋତ୍ଥାନ କରନ୍ତୁ, ଶୀଘ୍ର ସେହି ଲୋକସମୂହ ପ୍ରାପ୍ତ ହେବେ । ୧୪୩ ।

ଭୀଷ୍ମ କହିଲେ, ତଦନନ୍ତର ସେହି ମହର୍ଷିଗଣ ପ୍ରୀତ ହୋଇ ପୁରନ୍ଦରଙ୍କୁ 'ତାହା ହେଉ' ଏହି କଥା କହି ଇନ୍ଦ୍ରଦେବଙ୍କ ସହିତ ସ୍ୱର୍ଗପୁରକୁ ଗମନ କଲେ । ୧୪୪ । ଏହି ମହାତ୍ମାମାନେ ଏହିପରି ମହାନୁଭବ ନୃପତିମାନଙ୍କ ଦ୍ୱାରା ବହୁବିଧ ଭୋଗଦ୍ୱାରା ପ୍ରଲୋଭ୍ୟମାନ ହୋଇ ସୁଦ୍ଧା ଅତିଶୟ କ୍ଷୁଧା ସହ୍ୟ କରିଥିଲେ । କିନ୍ତୁ ତେତେବେଳେ କିଛିମାତ୍ର ଲୋଭ କରି ନ ଥିଲେ, ଏହି କାରଣରୁ ସ୍ୱର୍ଗପ୍ରାପ୍ତ ହୋଇଥିଲେ । ଅତଏବ ନର ସମସ୍ତ ଅବସ୍ଥାରେ ଲୋଭ ପରିତ୍ୟାଗ କରିବେ । ୧୪୬ । ହେ ରାଜନ୍ ! ଏହା ପରମ ଧର୍ମ ଅଟେ, ସେହି ହେତୁରୁ ଲୋଭ ପରିତ୍ୟାଗ କରିବା ଉଚିତ । ୧୪୭ । ନର ଏହି ସୁଚରିତ ବିଷୟ ଜନସମୂହ ମଧ୍ୟରେ କୀର୍ତ୍ତନ କରି ଅର୍ଥଭାଗୀ ହୁଅନ୍ତି । କଦାପି ଦୁର୍ଗମ ସ୍ଥାନ ପ୍ରାପ୍ତ ହୁଅନ୍ତି ନାହିଁ । ୧୪୮ । ତାହାଙ୍କଠାରେ ପିତୃଗଣ, ଋଷିଗଣ ଓ ଦେବଗଣ ପ୍ରୀତିଯୁକ୍ତ ହୁଅନ୍ତି । ସେହି ଜନ ପରଲୋକକୁ ଗମନ କରି ଯଶ, ଧର୍ମ ଓ ଅର୍ଥଭାଗୀ ହୁଅନ୍ତି । ୧୪୯ ।

---

# ଅଧ୍ୟାୟ—୯୪

ଋଷି କହିଲେ—ପଣ୍ଡିତଗଣ ଏହି ବିଷୟରେ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି । ତୀର୍ଥଯାତ୍ରା କାଳରେ ଶପଥ ବିଷୟରେ ଯାହା ଘଟିଥିଲା ତାହା ଶ୍ରବଣ କର । ୧ ।

ହେ ଭରତସତ୍ତମ ମହାରାଜ ! ପୁଷ୍କର ନିମିତ୍ତ ଇନ୍ଦ୍ର ଯେଉଁପରି ଚୌର୍ଯ୍ୟକାର୍ଯ୍ୟ କରିଥିଲେ ଏବଂ ମୁନିଗଣ ଶପଥ କରିଥିଲେ, ରାଜର୍ଷି ଓ ଦ୍ୱିଜର୍ଷିଗଣଙ୍କଦ୍ୱାରା ଶପଥ ସେହିପରି କୃତ ହୋଇଥିଲା । ୨ । ପଶ୍ଚିମ ପ୍ରଦେଶରେ ଋଷିଗଣ ସମବେତ ହୋଇ ପ୍ରଭାସ ତୀର୍ଥକୁ ଗମନ ପୂର୍ବକ ମନ୍ତ୍ରଣା କଲେ, ଆମ୍ଭେମାନେ ସମସ୍ତେ ପୃଥିବୀରେ ଭ୍ରମଣ କରି ସ୍ୱେଚ୍ଛାନୁସାରେ ପୁଣ୍ୟ ତୀର୍ଥକୁ ଗମନ କରିବା । ୩ । ହେ ରାଜନ୍ ! ଶୁକ୍ର, ଅଙ୍ଗିରା, ବିଦ୍ୱାନ୍ କବି, ଅଗସ୍ତ୍ୟ, ନାରଦ, ପର୍ବତ, ଭୃଗୁ, ବଶିଷ୍ଠ, କଶ୍ୟପ, ଗୌତମ, ବିଶ୍ୱାମିତ୍ର, ଜମଦଗ୍ନି, ଗାଲବ, ଋଷି, ଅଷ୍ଟକ, ଭରଦ୍ୱାଜ, ଅରୁନ୍ଧତୀ ଏବଂ ବାଲଖିଲ୍ୟ ମୁନିଗଣ, ଶିବିରାଜା, ଦିଲ୍ଲୀପ, ନହୁଷ, ଅମ୍ବରୀଷ,ରାଜା ଯଯାତି, ଧୁନ୍ଧୁମାର, ଏବଂ ପୁରୁନୃପତିଗଣ ମହାତ୍ମା ବୃତହନ୍ତା ଦେବରାଜଙ୍କୁ ପୁରଃସରପୂର୍ବକ ସମୁଦାୟ ତୀର୍ଥକୁ ଗମନ କଲେ; ସେମାନେ ନାନାତୀର୍ଥରେ ପରିଭ୍ରମଣ କରି ମାଘୀ ପୂର୍ଣ୍ଣିମା ଦିବସରେ ପୁଣ୍ୟତୀର୍ଥ କୌଶିକୀରେ ଉପନୀତ ହେଲେ । ୬ । ତଦନନ୍ତର ସେହି ଅଗ୍ନିସଦୃଶ ତେଜସ୍ୱୀ ଋଷିଗଣ ଦେବତୀର୍ଥ ଜଳରେ ଅବଗାହନ କରି ପୁଷ୍କର ଭୋଜନ ପୂର୍ବକ ସମସ୍ତ ତୀର୍ଥରେ ପାପକ୍ଷୟ କରି ନିରତିଶୟ ପବିତ୍ରତମ ବ୍ରହ୍ମ ସରୋବରକୁ ଗମନ କଲେ । ୭ ।

ହେ ରାଜନ୍ ! କେହି କେହି ସେଠାରେ କମଳ ମୃଣାଳ ଖନନ କଲେ, ଅନ୍ୟ ବିପ୍ରଗଣ କୁମୁଦ ମୃଣାଳ ଖନନ କଲେ । ଅନନ୍ତର ସେମାନେ ଅଗସ୍ତିଙ୍କଦ୍ୱାରା ସେହି ହ୍ରଦରୁ ସମୁଦ୍ଧୃତ ପଦ୍ମ ଉଦ୍ଧୃତ ହେଉ-ଥିବାର ଦେଖିଲେ । ୮ । ଅଗସ୍ତ୍ୟ ସେହି ସମସ୍ତ ଋଷିଗଣଙ୍କୁ କହିଲେ, କିଏ ଆମ୍ଭର ସୁନ୍ଦର ପୁସ୍ତକ ଗ୍ରହଣ କଲେ ? ଆମ୍ଭେ ଆପଣମାନଙ୍କୁ ଶଙ୍କା କରୁଅଛୁଁ, ଆପଣମାନେ ପୁଷ୍କର ପ୍ରଦାନ କରନ୍ତୁ । ପଦ୍ମ ହରଣ କରିବାର ଆପଣମାନଙ୍କର ଉଚିତ ନୁହେଁ । ୯ । ଆମ୍ଭେ ଶ୍ରବଣ କରିଅଛୁଁ, କାଳ-କର୍ମରେ ଧର୍ମବଳ ନଷ୍ଟ ହେବ, ସେହି କାଳ ଏତେବେଳେ ଉପସ୍ଥିତ

ହୋଇଅଛି । ଅଧର୍ମ ପୀଡ଼ା ଦେଉଅଛି, ଯାବତ୍ ପର୍ଯ୍ୟନ୍ତ ଅଧର୍ମ ଇହଲୋକରେ ହୋଇନାହିଁ, ତାବତ୍ କାଳ ମଧ୍ୟରେ ଆମ୍ଭେ ଚିରକାଳ ନିମିତ୍ତ ସ୍ୱର୍ଗଲୋକକୁ ଗମନ କରିବୁ । ୧୦ । ଅତଃପର ବ୍ରାହ୍ମଣଗଣ ଉଚ୍ଚୈଃସ୍ୱରରେ ଗ୍ରାମମଧ୍ୟରେ ଶୂଦ୍ରଗଣଙ୍କୁ ବେଦ ଶ୍ରବଣ କରାଇବେ, ଏବଂ ନୃପତି ବ୍ୟବହାରଦ୍ୱାରା ପ୍ରଜାଗଣଙ୍କର ଧର୍ମ ଦର୍ଶନ କରିବେ ନାହିଁ । ୧୧ । ଗୁରୁତର ମାନବଗଣ ନିକୃଷ୍ଟ ଓ ମଧ୍ୟବିଧ ଲୋକସମୂହକୁ ଯାବତ୍ କାଳ ଅବଜ୍ଞା କରି ନାହାନ୍ତି, ଏବଂ ଏହି ଜଗତ୍ ଯେଉଁ ପର୍ଯ୍ୟନ୍ତ ଅଜ୍ଞାନାଚ୍ଛନ୍ନ ହୋଇନାହିଁ, ତତ୍‌କାଳ ମଧ୍ୟରେ ଆମ୍ଭେ ଚିରକାଳ ନିମିତ୍ତ ପରଲୋକକୁ ଗମନ କରିବୁ । ୧୨ । ଯେତେବେଳେ ବଳବାନ୍ ନରଦ୍ୱାରା ଦୁର୍ବଳ ନରସମୂହକୁ ଭୁଜ୍ୟମାନ ହେବାର ଦେଖିବୁଁ, ତେତେବେଳେ ଆମ୍ଭେ ଚିରକାଳ ନିମିତ୍ତ ପରଲୋକକୁ ଗମନ କରିବୁଁ ଏବଂ ଇହଲୋକରେ ଜୀବଲୋକସମୂହକୁ ନିରୀକ୍ଷଣ କରିବାକୁ ଉତ୍ସାହ କରିବୁ ନାହିଁ । ୧୩ ।

ତେତେବେଳେ ଋଷିଗଣ ଆର୍ତ୍ତ ହୋଇ ସେହି ମହର୍ଷିଙ୍କୁ କହିଲେ, ହେ ମହର୍ଷେ ! ଆମ୍ଭେମାନେ ଆପଣଙ୍କର ପୁଷ୍କର ଅପହରଣ କରିନାହୁଁ । ଆପଣ ଆମ୍ଭମାନଙ୍କଠାରେ ବୃଥା ଦୋଷ କରନ୍ତୁ ନାହିଁ । ଆମ୍ଭେମାନେ ତୀବ୍ରତର ଶପଥ କରୁଅଛୁ । ୧୪ । ହେ ପାର୍ଥିବ ! ଅନନ୍ତର ତେତେବେଳେ ସେହି ମହର୍ଷିଗଣ ନିଶ୍ଚୟ ପୂର୍ବକ ଏହି ଧର୍ମ ଅବଲୋକନ କରି ରାଜପୁତ୍ର ଓ ରାଜପୌତ୍ରଗଣଙ୍କ ସହିତ କ୍ରମେ କ୍ରମେ ଶପଥ କରିବାକୁ ପ୍ରବୃତ୍ତ ହେଲେ । ୧୫ ।

ଭୃଗୁ କହିଲେ, ଯେଉଁ ବ୍ୟକ୍ତି ଆପଣଙ୍କ ପୁଷ୍କର ହରଣ କରିଅଛି, ସେ ଇହଲୋକରେ ଆକ୍ରୁଷ୍ଟା ହୋଇ ପ୍ରତ୍ୟାକ୍ରୋଶ ପ୍ରକାଶ କରୁ, ତାଡ଼ିତ ହୋଇ ପ୍ରତିତାଡ଼ନ କରୁ ଏବଂ ପୃଷ୍ଠବାହୀ ହୋଇ ବୃଷଭ ଓ ଉଷ୍ଟ୍ର ପ୍ରଭୃତି-ଙ୍କର ମାଂସ ଭକ୍ଷଣ କରୁ । ୧୬ ।

ବଶିଷ୍ଠ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ଲୋକ ମଧ୍ୟରେ ସ୍ୱାଧ୍ୟାୟପରାୟଣ ନ ହୋଇ କୁକ୍‌କୁର ଆକର୍ଷଣ କରୁ, ଅର୍ଥାତ୍ କୁକ୍‌କୁର ସହିତ କ୍ରୀଡ଼ାପରାୟଣ ହେଉ ଏବଂ ସନ୍ନ୍ୟାସୀ ହୋଇ ରାଜଧାନୀରେ ଅବସ୍ଥାନ କରୁ । ୧୭ । କଶ୍ୟପ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ସର୍ବତ୍ର ସମସ୍ତ ବସ୍ତୁ ପଣଦ୍ୱାରା କ୍ରୟ ବିକ୍ରୟ କରୁ, ନ୍ୟସ୍ତ ଧନ ଅପହରଣ କରୁ ଓ ମିଥ୍ୟା ସାକ୍ଷ୍ୟ ପ୍ରଦାନ କରୁ ।୧୮।

ଗୌତମ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ଅବୃଦ୍ଧି ପୂର୍ବକ ଏବଂ ଉତ୍ତମ କାମ କ୍ରୋଧାଦି ଦ୍ୱାରା ଅହଂକୃତ ହୋଇ ଜୀବନ-ଧାରଣ କରୁ ଏବଂ କର୍ଷକ ଓ ମତ୍ସରୀ ହେଉ । ୧୯ ।

ଅଙ୍ଗିରା କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ଅଶୁଚି ଓ କପଟ ବ୍ରାହ୍ମଣ ହେଉ, କୁକ୍କୁର ସହିତ କ୍ରୀଡ଼ାପରାୟଣ ହେଉ, ବ୍ରହ୍ମହତ୍ୟା କରି ପ୍ରାୟଶ୍ଚିତ୍ତ ନ କରୁ । ୨୦ ।

ଧୁନ୍ଧୁମାର କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି ସେ ମିତ୍ରଗଣଙ୍କ ନିକଟରେ ଅକୃତଜ୍ଞତା ଆଚରଣ କରୁ, ଶୂଦ୍ରା ଗର୍ଭରେ ପୁତ୍ରୋତ୍ପାଦନ କରୁ ଏବଂ ଏକାକୀ ଉପାଦେୟ ଅନ୍ନ ଭୋଜନ କରୁ । ୨୧ ।

ପୁରୁ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ଚିକିତ୍ସା କରିବାକୁ ଭ୍ରମଣ କରୁ; ଭାର୍ଯ୍ୟାଦ୍ୱାରା ପୁଷ୍ଟିଲାଭ କରୁ ଏବଂ ଶ୍ୱଶୁର ହେତୁରୁ ତାହାର ଜୀବିକା ନିର୍ବାହ ହେଉ । ୨୨ ।

ଦିଲୀପ କହିଲେ, ଯେଉଁ ଗ୍ରାମରେ ଗୋଟିଏ ମାତ୍ର କୂପୋଦକଦ୍ୱାରା ଜୀବନଧାରଣ ହୁଏ, ତାଦୃଶ ଗ୍ରାମରେ ଯେଉଁ ବ୍ରାହ୍ମଣ ବୃଷଳୀପତି ହୋଇ ବାସ କରେ, ତାହାର ଯେଉଁ ଲୋକସମୂହକୁ ଗତି ହୁଏ, ଆପଣଙ୍କ ପୁଷ୍କର-ହର୍ତ୍ତାଲୋକର ସେହି ଲୋକସମୂହକୁ ଗତି ହେଉ । ୨୩ ।

ଶୁକ୍ର କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ବୃଥା ମାଂସ ଭୋଜନ କରୁ, ଦିବସରେ ମୈଥୁନ କରୁ ଏବଂ ରାଜାଙ୍କର ପ୍ରେଷ୍ୟ ଦୂତ ହେଉ । ୨୪ ।

ଜମଦଗ୍ନି କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ଅନାଧ୍ୟାୟରେ ଅଧ୍ୟୟନ କରୁ, ଶୂଦ୍ର ଶ୍ରାଦ୍ଧରେ ଭୋଜନ କରୁ ଏବଂ ସ୍ୱୟଂ ଶ୍ରାଦ୍ଧ କରି ମିତ୍ରଗଣଙ୍କୁ ଭୋଜନ ପ୍ରଦାନ କରୁ । ୨୫ ।

ଶିବି କହିଲେ, ଯେ ଆପଣଙ୍କ ପୁଷ୍କର ହରଣ କରିଅଛି, ସେ ଆହିତାଗ୍ନି ନ ହୋଇ ପ୍ରାଣତ୍ୟାଗ କରୁ ଏବଂ ତପସ୍ୱୀଗଣଙ୍କ ସହିତ ବିରୋଧ କରୁ । ୨୬ ।

ଯଯାତି କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ଜଟାଧାରୀ ଓ ବ୍ରତପରାୟଣ ହୋଇ ଋତୁକାଳ ବ୍ୟତୀତ ଭାର୍ଯ୍ୟାଠାରେ ପୁତ୍ରୋତ୍ପାଦନ କରୁ ଏବଂ ବେଦସମୂହକୁ ନିରାକୃତ କରୁ, ଅର୍ଥାତ୍ ଅନାଦର କରୁ । ୨୭ ।

ନହୁଷ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ସନ୍ନ୍ୟାସୀ ହୋଇ ଗୃହରେ ବାସ କରୁ, ସେ ଦୀକ୍ଷିତ ହୋଇ ସ୍ୱେଚ୍ଛାଚାରୀ ହେଉ ଏବଂ ବେତନ ଗ୍ରହଣପୂର୍ବକ ବିଦ୍ୟାଦାନ କରୁ । ୨୮ ।

ଅମ୍ବରୀଷ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ଧର୍ମତ୍ୟାଗୀ ହୋଇ ସ୍ତ୍ରୀ, ଜ୍ଞାତି ଓ ଗୋସମୂହ ପ୍ରତି ନୃଶଂସ ବ୍ୟବହାର କରୁ ଏବଂ ବ୍ରହ୍ମହତ୍ୟା କରୁ । ୨୯ ।

ନାରଦ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ଗୃହରେ ଜ୍ଞାନୀ ହୋଇ ବାହାରରେ ବିସ୍ୱର ପଦ ସମନ୍ୱିତ ଶାସ୍ତ୍ର ପାଠ କରୁ ଏବଂ ଗୁରୁତର ଲୋକସମୂହକୁ ଅବଜ୍ଞା କରୁ । ୩୧ ।

ନାଭାଗ କହିଲେ, ଯେ ଆପଣଙ୍କ ପୁଷ୍କର ହରଣ କରିଅଛି, ସେ ସର୍ବଦା ମିଥ୍ୟା ବାକ୍ୟ ପ୍ରୟୋଗ କରୁ, ସାଧୁଗଣଙ୍କ ସହିତ ବିରୋଧ କରୁ ଏବଂ ଶୁଳ୍କ ଗ୍ରହଣପୂର୍ବକ କନ୍ୟା ଦାନ କରୁ । ୩୧ ।

କବି କହିଲେ, ଯେ ଆପଣଙ୍କ ପୁଷ୍କର ହରଣ କରିଅଛି, ସେ ପଦଦ୍ୱାରା ଗୋ ତାଡ଼ନା କରୁ, ସୂର୍ଯ୍ୟାଭିମୁଖରେ ମଳମୂତ୍ର ତ୍ୟାଗ କରୁ ଏବଂ ଶରଣାଗତ ଲୋକକୁ ପରିତ୍ୟାଗ କରୁ । ୩୨ ।

ବିଶ୍ୱାମିତ୍ର କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ବିତ୍ତଦ୍ୱାରା କ୍ରୀତ ହୋଇ ବୃଷ୍ଟି ପ୍ରତିବନ୍ଧ କରୁ, ରାଜାଙ୍କର ପୁରୋହିତ ହେଉ । ୩୩ ।

ପର୍ବତ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ଗ୍ରାମ ମଧ୍ୟରେ ଭୃତ୍ୟ ହୋଇ ରହୁ, ଖର ଯାନଦ୍ୱାରା ଗମନ କରୁ ଏବଂ ଜୀବିକା ନିର୍ବାହ ନିମିତ୍ତ କୁକୁର ପରିଚର୍ଯ୍ୟା କରୁ । ୩୪ ।

ଭରଦ୍ୱାଜ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ନୃଶଂସ ବ୍ୟବହାରରେ ଓ ଅନୃତକଥନରେ ଯେଉଁସବୁ ପାପ ହୁଏ, ତାହାର ସେହି ପାପ ସର୍ବଦା ହେଉ । ୩୫ ।

ଅଷ୍ଟାବକ୍ର କହିଲେ, ଯେଉଁ ରାଜା ଆପଣଙ୍କର ପୁଷ୍କର ଗ୍ରହଣ କରିଅଛନ୍ତି, ସେ ଅକୃତଜ୍ଞ, କାମବୃତ୍ତି ଓ ପାପକାରୀ ହେଉନ୍ତୁ ଏବଂ ଅଧର୍ମାନୁସାରେ ପୃଥିବୀ ଶାସନ କରନ୍ତୁ । ୩୬ ।

ଗାଲବ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେହି ମାନବ ପାପିଷ୍ଠ, ନରଗଣଙ୍କଠାରେ ଅପୂଜ୍ୟ ଓ ପାପକାରୀ ହେଉ ଏବଂ ଦାନ କରି ତାହା କୀର୍ତ୍ତନ କରୁ । ୩୭ ।

ଅରୁନ୍ଧତୀ କହିଲେ, ଯେଉଁ ନାରୀ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ଶ୍ୱଶ୍ରୂନିନ୍ଦା କରୁ । ଭର୍ତ୍ତାଙ୍କ ନିକଟରେ ବିମନା ହେଉ ଏବଂ ଏକାକିନୀ ସ୍ୱାଦୁଦ୍ରବ୍ୟ ଭକ୍ଷଣ କରୁ । ୩୮ ।

ବାଲଖିଲ୍ୟଗଣ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ ବୃତ୍ତି ନିମିତ୍ତ ଗ୍ରାମଦ୍ୱାରରେ ଏକପଦରେ ଅବସ୍ଥାନ କରୁ ଏବଂ ଧର୍ମଜ୍ଞ ହୋଇ ଧର୍ମତ୍ୟାଗ କରୁ । ୩୯ ।

ଶୁନଃସଖ କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେହି ବ୍ରାହ୍ମଣ ଅଗ୍ନିହୋତ୍ର ଅନାଦରପୂର୍ବକ ଅନାୟାସରେ ନିଦ୍ରିତ ହେଉ ଓ ସନ୍ନ୍ୟାସୀ ହୋଇ ସ୍ୱେଚ୍ଛାଗାମୀ ହେଉ । ୪୦ ।

ସୁରଭି କହିଲେ, ଯେ ଆପଣଙ୍କର ପୁଷ୍କର ହରଣ କରିଅଛି, ସେ କେଶଜ, ଅଥବା ବଲ୍ୱଜ ତୃଣଜାତ ରଜ୍ଜୁଦ୍ୱାରା ଗୋସମୂହର ଦୋହନ କାଳରେ ପାଦବନ୍ଧନପୂର୍ବକ ଅନ୍ୟ ବତ୍ସଦ୍ୱାରା ଗୋଦୋହନ କରୁ ଏବଂ କାଂସ୍ୟପାତ୍ର ତାହାର ଦୋହନ ହେଉ । ୪୧ ।

ଭୀଷ୍ମ କହିଲେ, ହେ କୌରବେନ୍ଦ୍ର ! ଅନନ୍ତର ସେମାନେ ସମସ୍ତେ ନାନା ପ୍ରକାର ଶପଥ କଲାରୁ ଦେବରାଜ ସହସ୍ରାକ୍ଷ ଇନ୍ଦ୍ର ସେହି ବିପ୍ରଶ୍ରେଷ୍ଠଙ୍କୁ କ୍ରୋଧନ ଦର୍ଶନ କରି ଅତିଶୟ ହୃଷ୍ଟ ହେଲେ । ୪୨ । ହେ ରାଜନ୍ ! ଅନନ୍ତର ଦେବରାଜ ସେହି କ୍ରୋଧନ ତପୋଧନଙ୍କୁ ସମ୍ଭାଷଣପୂର୍ବକ ସ୍ୱକୀୟ ଅଭିପ୍ରାୟ କହିଲେ ଯେ ବ୍ରହ୍ମର୍ଷି, ଦେବର୍ଷି ଓ ରାଜର୍ଷିଗଣ ମଧ୍ୟରେ ଯେ କୌଣସି ଲୋକକୁ ଆମ୍ଭର ବୋଲି ଜ୍ଞାନକର । ୪୩ ।

ଶକ୍ର କହିଲେ, ଯେଉଁ ବ୍ରାହ୍ମଣ ପୁଷ୍କର ହରଣ କରିଅଛନ୍ତି, ସେ ଯଜୁର୍ବେଦବିତ୍ ବ୍ରାହ୍ମଣଙ୍କୁ ଅଥବା ବେଦାଧ୍ୟାୟୀ ବିପ୍ରଙ୍କୁ ଅଥବା ଯେ ବ୍ରହ୍ମଚର୍ଯ୍ୟ ଆହରଣ କରିଥାଆନ୍ତି, ତାଦୃଶ ଦ୍ୱିଜଙ୍କୁ ଦୁହିତା ଦାନକରନ୍ତୁ ଏବଂ ଅଥର୍ବ ବେଦ ଅଧ୍ୟୟନ କରି ସ୍ନାନ କରନ୍ତୁ । ୪୪ । ଯେ ଆପଣଙ୍କର ପୁଷ୍କର ହରଣ କରିଅଛନ୍ତି, ସେ ସମସ୍ତ ବେଦ ଅଧ୍ୟୟନ କରନ୍ତୁ, ପୁଣ୍ୟଶୀଳ ଓ ଧାର୍ମିକ ହୁଅନ୍ତୁ ଏବଂ ବ୍ରହ୍ମଲୋକକୁ ଗମନ କରନ୍ତୁ । ୪୫ ।

ଅଗସ୍ତ୍ୟ କହିଲେ, ହେ ବଳସୂଦନ ! ଆପଣ ଯେଉଁ ଶପଥ କଲେ, ତାହା ତ ଆଶୀର୍ବାଦ, ଅତଏବ ଆମ୍ଭଙ୍କୁ ଆମ୍ଭର ପୁଷ୍କର ପ୍ରଦାନ କର । ଏହା ସନାତନ ଧର୍ମ ଅଟେ । ୪୬ ।

ଇନ୍ଦ୍ର କହିଲେ, ହେ ଭଗବନ୍ ! ସମ୍ପ୍ରତି ଆମ୍ଭେ ଲୋଭବଶରୁ ପୁଷ୍କର ହରଣ କରିନାହୁଁ, ଧର୍ମସମୂହ ଶ୍ରବଣ କରିବା ନିମିତ୍ତ ହରଣ କରିଥିଲୁଁ, ଅତଏବ ଆମ୍ଭଠାରେ କ୍ରୋଧ କରିବାର ଆପଣଙ୍କର ଉଚିତ ନୁହେଁ । ୪୭ । ଏହି ଋଷି ପ୍ରୋକ୍ତ ଧର୍ମସୂକ୍ତର ସମ୍ୟକ୍ ଉତ୍କର୍ଷ ଅନାମୟ ଅବ୍ୟୟ ଶାଶ୍ୱତ ଧର୍ମରୂପ ତରଣୋପାୟକୁ ଆମ୍ଭେ ଶ୍ରବଣ କଲୁଁ । ଅତଏବ ହେ ବିଦ୍ୱନ୍ ! ଦ୍ୱିଜସତ୍ତମ ! ଆପଣ ଏହି ସେହି ସମୁଦାୟ ପୁଷ୍କରକୁ ଗ୍ରହଣ କରନ୍ତୁ । ହେ ଅନିନ୍ଦିତ ଭଗବନ୍ ! ଆମ୍ଭ ଅପରାଧ କ୍ଷମା କରିବାର ଆପଣଙ୍କର ଉଚିତ । ଅତିଶୟ କ୍ରୋଧପରାୟଣ ସେହି ତପୋଧନ ଧୀମାନ୍ ଅଗସ୍ତ୍ୟ ମୁନି ମହେନ୍ଦ୍ରଙ୍କର ଏହି ବାକ୍ୟ ଶ୍ରବଣ ପୂର୍ବକ ପୁଷ୍କର ଗ୍ରହଣ କଲେ ଓ ପ୍ରସନ୍ନ ହେଲେ । ୫୦ । ତଦନନ୍ତର ସେହି ବନବାସୀ ମୁନିଗଣ ପୁନଶ୍ଚ ତୀର୍ଥଯାତ୍ରା କଲେ ଏବଂ ପବିତ୍ର ତୀର୍ଥସମୂହରେ ଅବଗାହନ କଲେ । ୫୧ ।

ଯେ ଯୋଗଯୁକ୍ତ ହୋଇ ପ୍ରତି ପର୍ବରେ ଏହି ଆଖ୍ୟାନକୁ ପାଠ କରନ୍ତି, ସେ ମୂର୍ଖ ପୁତ୍ର ଉତ୍ପାଦନ କରନ୍ତି ନାହିଁ ଏବଂ ସ୍ୱୟଂ ମୂର୍ଖ ହୁଅନ୍ତି ନାହିଁ । ୫୨ । ତାହାଙ୍କୁ କୌଣସି ଆପଦ ସ୍ପର୍ଶ କରେ ନାହିଁ । ସେ ବିଜ୍ୱର ହୁଅନ୍ତି ଏବଂ ସେ ଜ୍ୱର କୁଆ ବହନ କରନ୍ତି ନାହିଁ । ସେ ରଜୋହୀନ ଏବଂ ଶ୍ରେୟଃସମ୍ପନ୍ନ ହୋଇ ପରଲୋକକୁ ଗମନ କରି ସ୍ୱର୍ଗଲାଭ କରନ୍ତି । ୫୩ । ଯେ ଋଷିଗଣ କର୍ତ୍ତୃକ ପରିପାଳିତ ଶାସ୍ତ୍ରକୁ ଅଧ୍ୟୟନ କରନ୍ତି, ସେହି ନରୋତ୍ତମ ଅବ୍ୟୟ ବ୍ରହ୍ମଲୋକକୁ ଗମନ କରନ୍ତି । ୫୪ ।

---

## ଅଧ୍ୟାୟ—୯୫

ଯୁଧିଷ୍ଠିର କହିଲେ—ହେ ଭରତଶ୍ରେଷ୍ଠ ! ଶ୍ରାଦ୍ଧ କୃତ୍ୟରେ ଯେଉଁ ଛତ୍ର ଓ ପାଦୁକା ପ୍ରଦତ୍ତ ହୋଇଥାଏ ତାହା କେଉଁ ବ୍ୟକ୍ତି କର୍ତ୍ତୃକ ପ୍ରବର୍ତ୍ତିତ ହୋଇଅଛି ? ଏହା କି ନିମିତ୍ତ ଉତ୍ପନ୍ନ ହେଲା ? ଏବଂ କି ନିମିତ୍ତ ପ୍ରଦତ୍ତ ହୋଇଥାଏ ? କେବଳ ଶ୍ରାଦ୍ଧକୃତ୍ୟରେ ନୁହେଁ, ସ୍ତ୍ରୀବୃନ୍ଦଙ୍କ ବ୍ରତ ପ୍ରଭୃତି ପୁଣ୍ୟୋତ୍ସବ କାଳରେ ମଧ୍ୟ ପାଦୁକା ଓ ଛତ୍ର ପ୍ରଦତ୍ତ ହୁଏ । ଏହା ବହୁବିଧ କାରଣରେ ପୁଣ୍ୟ ଆଶ୍ରୟ ପୂର୍ବକ ପ୍ରଦତ୍ତ ହୁଏ; ଅତଏବ ହେ ରାଜନ୍ ! ଏହି ବିଷୟ ବିସ୍ତାର କ୍ରମେ ଶୁଣିବା ନିମିତ୍ତ ଇଚ୍ଛା କରୁଅଛୁ । ୩ ।

ଋଷି କହିଲେ, ମହାରାଜ ! ଲୋକରେ ଛତ୍ର ଓ ପାଦୁକା ଯେଉଁପରି ପ୍ରଥିତ ହୋଇଅଛି ଏବଂ ଯେଉଁ ପ୍ରକାରରେ ଯତ୍‌କର୍ତ୍ତୃକ ପ୍ରବର୍ତ୍ତିତ ହୋଇ-ଅଛି, ସେହି ବିସ୍ତାରିତ ବିଷୟକୁ ଅବହିତ ହୋଇ ଶ୍ରବଣ କର । ହେ ନରନାଥ ! ଏହା ଯେଉଁପରି ଅକ୍ଷୟ ଓ ପବିତ୍ର ହୋଇଅଛି, ତାହା ସମ୍ପୂର୍ଣ୍ଣ ରୂପେ କହୁଅଛୁ ।୫। ହେ ଜନାଧିପ ! ମହାପ୍ରଭାବ ପ୍ରଭାକର ଏବଂ ଜମଦଗ୍ନିଙ୍କ ସମ୍ବାଦ ସମ୍ବଳିତ ଏହି ପୂର୍ବକଥିତ ଇତିହାସକୁ ଶ୍ରବଣ କର । ହେ ମହାରାଜ ! ପୂର୍ବକାଳରେ ଭଗବାନ୍ ଭାର୍ଗବ ସ୍ୱୟଂ ଧନୁର୍ଦ୍ଧାରୀ କ୍ରୀଡ଼ା କରି ସନ୍ଧାନ ପୂର୍ବକ ବାଣ ନିକ୍ଷେପ କରୁଥିଲେ ! ରେଣୁକା ସେହି ପ୍ରଦୀପ୍ତତେଜା ଭାର୍ଗବଙ୍କର ନିକ୍ଷିପ୍ତ ସାୟକବୃନ୍ଦ ଆନୟନ କରି ବାରମ୍ବାର ତାହାଙ୍କୁ ପ୍ରଦାନ କରୁଥିଲେ । ଅନନ୍ତର ସେ ଶର ଓ ଜ୍ୟା ନିର୍ଘୋଷ ଦ୍ୱାରା ଅତିଶୟ ପ୍ରହୃଷ୍ଟ ହୋଇ ସମ୍ପୂର୍ଣ୍ଣ ରୂପେ ସେହି ବାଣ ନିକ୍ଷେପ କଲେ । ରେଣୁକା ତାହା ସବୁ ପ୍ରତ୍ୟାହରଣ ପୂର୍ବକ ଆଣି ଦେଉଥିଲେ । ଅନନ୍ତର ଦିବାକର ଭ୍ରମମାଣ ନକ୍ଷତ୍ରମାନଙ୍କର ମଧ୍ୟରେ ରୋହିଣୀ ନକ୍ଷତ୍ର ଜ୍ୟେଷ୍ଠା ସମ ସୂତ୍ରରେ ପତିତ ହେବାରୁ ମଧ୍ୟାହ୍ନ କାଳରେ ସେହି ଦ୍ୱିଜବର ଜମଦଗ୍ନି ଆଶୁଗମାନଙ୍କର ନିକ୍ଷେପ କରି ରେଣୁକାଙ୍କୁ କହିଲେ, ହେ ବିଶାଳାକ୍ଷି ! ଯାଅ, ଏହି ଶରାସନ ବିନିର୍ମୁକ୍ତ ଶରସମୂହକୁ ଆନୟନ କର । ୧୦ । ହେ ସୁଭ୍ରୂ ! ଆମ୍ଭେ ପୁନଶ୍ଚ ଏହି ସମସ୍ତ ବାଣସମୂହକୁ ନିକ୍ଷେପ କରିବୁ । ହେ ଜନନାଥ ! ଭାମିନୀ ରେଣୁକା ଗମନ କରୁଥିବା ସମୟରେ ମାର୍ଗ ମଧ୍ୟରେ ରୌଦ୍ରତାପରେ ତାଙ୍କର ମସ୍ତକ ଓ ଚରଣ ସନ୍ତପ୍ତ ହେବାରୁ ବୃକ୍ଷଚ୍ଛାୟା ସମାଶ୍ରୟ ପୂର୍ବକ ମୁହୂର୍ତ୍ତ କାଳ ଅବସ୍ଥାନ କଲେ । ଅସିତେକ୍ଷଣୀ କଲ୍ୟାଣୀ ରେଣୁକା ପତିଙ୍କ ଶାପଭୟ ହେତୁରୁ ମୁହୂର୍ତ୍ତ କାଳ ଦଣ୍ଡାୟମାନ ହୋଇ ପୁନଶ୍ଚ ସାୟକସମୂହ ଆନୟନ କରିବାକୁ ଗମନ କଲେ । ଯଶସ୍ୱିନୀ ସୁଚାରୁଶୀଳା ରେଣୁକା ସେହି ଶରସମୂହ ଆହରଣ କରି ପଦଦ୍ୱୟଦ୍ୱାରା ଦୁଃଖ ଧାରଣ ପୂର୍ବକ ଖିନ୍ନା ହୋଇ ପ୍ରତ୍ୟାଗମନ କଲେ ଏବଂ ଭର୍ତ୍ତାଙ୍କ ଭୟରେ କମ୍ପିତ କଳେବରରେ ତାହାଙ୍କ ନିକଟରେ ଉପସ୍ଥିତା ହେଲେ । ୧୪ । ତେତେବେଳେ ଜମଦଗ୍ନି ତାହାଙ୍କୁ ଅବଲୋକନ ପୂର୍ବକ କ୍ରୋଧାବିଷ୍ଟ ହୋଇ ସେହି ଶୁଭାନନାଙ୍କୁ ବାରମ୍ବାର କହିଲେ, ହେ ରେଣୁକେ ! ତୁମ୍ଭର ଏତେ ବିଳମ୍ବ କାହିଁକି ହେଲା ? ୧୫ ।

ରେଣୁକା କହିଲେ, ହେ ତପୋଧନ ! ଆମ୍ଭର ମସ୍ତକ ଓ ପାଦଦ୍ୱୟ ଅତିଶୟ ପ୍ରତପ୍ତ ହୋଇଥିଲା । ଆମ୍ଭେ ସୂର୍ଯ୍ୟତେଜରେ ନିରୁଦ୍ଧା ହୋଇ

ବୃକ୍ଷଗୁଡ଼ିକ ଆଶ୍ରୟ କରିଥିଲୁ । ୧୬ । ହେ ବ୍ରହ୍ମନ୍ ! ଏହି କାରଣରୁ ଆମ୍ଭେ ବହୁ ବିଳମ୍ବରେ ଶରସମୂହ ଆନୟନ କଲୁ । ହେ ବିଭୋ ! ତପୋଧନ ! ଆପଣ ଏହା ଶ୍ରବଣ କରି ଆମ୍ଭଠାରେ କ୍ରୋଧ କରନ୍ତୁ ନାହିଁ । ୧୭ ।

ଜମଦଗ୍ନି କହିଲେ, ହେ ରେଣୁକେ ! ଏହିକ୍ଷଣି ଆମ୍ଭେ ତୁମ୍ଭର ଦୁଃଖପ୍ରଦାତା ଦୀପ୍ତକିରଣ ସୂର୍ଯ୍ୟଙ୍କୁ ଶରସମୂହଦ୍ୱାରା ଅଗ୍ନ୍ୟାନଳ ତେଜରେ ନିପାତିତ କରିବୁଁ । ୧୮ ।

ଭୀଷ୍ମ କହିଲେ, ତଦନନ୍ତର ଜମଦଗ୍ନି ଦିବ୍ୟ ଶରାସନ ବିସ୍ଫାରଣ କରି ବହୁବିଧ ବାଣସମୂହ ଗ୍ରହଣପୂର୍ବକ ସୂର୍ଯ୍ୟ ଯେଉଁ ଦିଗକୁ ଗମନ କରୁଥିଲେ, ତଦଭିମୁଖେ ଅବସ୍ଥାନ କଲେ । ୧୯ । ହେ କୌନ୍ତେୟ ! ସୂର୍ଯ୍ୟଦେବ ତାହାଙ୍କୁ ବଦ୍ଧକବଚ ଦେଖି ବ୍ରାହ୍ମଣ ବେଶରେ ତାହାଙ୍କ ସମୀପରେ ଉପସ୍ଥିତ ହୋଇ କହିଲେ, ହେ ଭଗବନ୍ ! ସୂର୍ଯ୍ୟ ଆପଣଙ୍କର କି ଅପରାଧ କରିଅଛନ୍ତି ? ୨୦ । ଦିବାକର ଆକାଶ ମଧ୍ୟରେ ଅବସ୍ଥାନ କରି ସ୍ୱୀୟ ରଶ୍ମିସମୂହଦ୍ୱାରା ରସ ଆକର୍ଷଣ କରନ୍ତି ଏବଂ ବର୍ଷାକାଳରେ ସେହି ସମସ୍ତ ରସ ବର୍ଷଣ କରନ୍ତି । ହେ ବିପ୍ର ! ସେହି ରସରୁ ମାନବ-ଗଣଙ୍କର ସୁଖାବହ ଅନ୍ନ ଜାତ ହୁଏ । ତଦନନ୍ତର ଦିବାକର ଅଭ୍ର ମଧ୍ୟରେ ନିଗୂଢ଼ ଓ କିରଣଜାଳରେ ପରିବେଷ୍ଟିତ ହୋଇ ଏହି ସପ୍ତଦ୍ୱୀପରେ ଜଳଧାରା ବର୍ଷଣ କରନ୍ତି । ୨୩ ।

ହେ ପ୍ରଭୋ ! ଅନନ୍ତର ସେହି ଶୈଳ ଔଷଧି ଓ ଲତାସମୂହର ପୁଷ୍ପ ଓ ପତ୍ର ଗତ ହୋଇ ବର୍ଷଣଜନିତ ଅନ୍ନରୂପରେ ସମ୍ଭୂତ ହୁଏ । ହେ ଭାର୍ଗବ ! ଜାତକର୍ମ ପ୍ରଭୃତି ସମସ୍ତ କାର୍ଯ୍ୟ, ବ୍ରତ, ଉପନୟନ, ଗୋଦାନ, ବିବାହ ଏବଂ ଯଜ୍ଞସମୃଦ୍ଧି ଶାସ୍ତ୍ରସମୂହ ସର୍ବପ୍ରକାର ଦାନସଂଯୋଗ ଓ ଧନସଂଚୟ ଏହିସବୁ ତୁମ୍ଭେ ଅବଗତ ଅଛ, ତାହା ସବୁ ଅନ୍ନରୁ ସମ୍ୟକ୍ ରୂପେ ପ୍ରବର୍ତ୍ତିତ ହୁଏ । ଯେଉଁସବୁ ରମଣୀୟ ବିଷୟ ଅଛି ଏବଂ ଯାହା ଆରମ୍ଭ ହୋଇଥାଏ, ସେ ସମସ୍ତ ଅନ୍ନରୁ ଉତ୍ପନ୍ନ ହୋଇଥାଏ । ଅତଏବ ଯାହା ଆମ୍ଭର ବିଦିତ ଅଛି, ତାହା ତୁମ୍ଭ ନିକଟରେ କୀର୍ତ୍ତନ କରୁଅଛୁଁ । ୨୭ । ହେ ବିପ୍ର ! ଆମ୍ଭେ ଯାହା କୀର୍ତ୍ତନ କଲୁଁ, ତୁମ୍ଭେ ତାହା ସବୁ ଜାଣ ; ଅତଏବ ହେ ବିପ୍ରର୍ଷେ ! ଆମ୍ଭେ ତୁମ୍ଭଙ୍କୁ ପ୍ରସନ୍ନ କରାଉଅଛୁଁ, ସୂର୍ଯ୍ୟଙ୍କୁ ନିପାତ କଲେ ତୁମ୍ଭର କେଉଁ ଫଳ ହେବ ? ୨୮ ।

---

# ଅଧ୍ୟାୟ—୯୭

ଯୁଧିଷ୍ଠିର କହିଲେ—ଭଗବାନ୍ ଭାସ୍କର ଏହି ପ୍ରକାରେ ପ୍ରାର୍ଥନା କଲାରୁ ମହାତେଜା ମୁନିସତ୍ତମ ଜମଦଗ୍ନି କେଉଁ କାର୍ଯ୍ୟ କରୁଥିଲେ ? ୧ ।

ଭୀଷ୍ମ କହିଲେ, ହେ କୁରୁନନ୍ଦନ ! ସୂର୍ଯ୍ୟଦେବ ତାଦୃଶ ରୂପେ ପ୍ରାର୍ଥନା କଲେ ସୁଦ୍ଧା ଅଗ୍ନିସମ ପ୍ରଭାସମନ୍ୱିତ ସେହି ଜମଦଗ୍ନି ମୁନି ତାହାଙ୍କ ପ୍ରତି ଶାନ୍ତ ହେଲେ ନାହିଁ । ୨ ।

ହେ ରାଜନ୍ ! ତତ୍ପରେ ବିପ୍ରରୂପୀ ଦିବାକର କୃତାଞ୍ଜଳି ହୋଇ ମୁନିଙ୍କୁ ପ୍ରଣାମ କରି ମଧୁର ବାକ୍ୟରେ ଏହି କଥା କହିଲେ ଯେ, ହେ ବିପ୍ରର୍ଷେ ! ସୂର୍ଯ୍ୟ ସର୍ବଦା ଗମନ କରୁଥାଆନ୍ତି, ଅତଏବ ସେ ଚଳଲକ୍ଷ୍ୟ ! ଅତଏବ ନିରନ୍ତର ଗମନଶୀଳ ଦିବାକର ଯଦି ଚଳଲକ୍ଷ୍ୟ ହେଲେ, ତେବେ ତୁମ୍ଭେ ତାହାଙ୍କୁ କେଉଁପରି ବିଦ୍ଧ କରିବ ? ୪ । ଜମଦଗ୍ନି କହିଲେ, ଆମ୍ଭେ ଜ୍ଞାନନେତ୍ରଦ୍ୱାରା ତୁମ୍ଭଙ୍କୁ ସ୍ଥିର ଓ ଚଳ ଉଭୟ ପ୍ରକାର ଜାଣୁଁ, ଅତଏବ ଅଦ୍ୟ ଆମ୍ଭେ ତୁମ୍ଭଙ୍କୁ ଶିକ୍ଷାଦାନ କରିବୁଁ । ୫ । ହେ ଦିବାକର ! ତୁମ୍ଭେ ମଧ୍ୟାହ୍ନକାଳରେ ନିମେଷାର୍ଦ୍ଧ କାଳ ଅବସ୍ଥାନ କରିଥାଅ । ତତ୍ସମୟରେ ତୁମ୍ଭଙ୍କୁ ବିଦ୍ଧ କରିବୁଁ । ହେ ସୂର୍ଯ୍ୟ ! ଏହି ବିଷୟରେ ଆମ୍ଭର ବିଚାରଣା ନାହିଁ । ୬ । ସୂର୍ଯ୍ୟ କହିଲେ, ହେ ଧନୁର୍ଦ୍ଧାରୀ ବୀର ! ତୁମ୍ଭେ ଆମ୍ଭଙ୍କୁ ଅବଶ୍ୟ ବିଦ୍ଧ କରିବ, ସଂଶୟ ନାହିଁ । ଅତଏବ ହେ ଭଗବନ୍ ବିପ୍ରର୍ଷେ ! ଆମ୍ଭେ ଯଦି ତୁମ୍ଭର ଅପକାର କରିଅଛୁଁ, ତଥାପି ସଂପ୍ରତି ଆମ୍ଭଙ୍କୁ ଭବଦୀୟ ଶରଣାଗତ ବୋଲି ଜ୍ଞାନ କରନ୍ତୁ । ୭ ।

ଭୀଷ୍ମ କହିଲେ, ତେତେବେଳେ ଭଗବାନ ଜମଦଗ୍ନି ସହାସ୍ୟ ବଦନରେ ତାହାଙ୍କୁ କହିଲେ, ହେ ସୂର୍ଯ୍ୟ ! ତୁମ୍ଭେ ଭୟ କରନା, କାରଣ ତୁମ୍ଭେ ପ୍ରଣତ ହୋଇଅଛ । ୮ । ଯେଉଁ ବ୍ୟକ୍ତି ବ୍ରାହ୍ମଣର ସରଳତା, ପୃଥିବୀର ସ୍ଥିରତା, ଚନ୍ଦ୍ରଙ୍କର ସୌମ୍ୟତା, ବରୁଣଙ୍କର ଗାମ୍ଭୀର୍ଯ୍ୟ, ଅଗ୍ନିଙ୍କ ଉଜ୍ଜ୍ୱଳତା, ସୁମେରୁଙ୍କର ପ୍ରଭା ଓ ପବନଙ୍କର ପ୍ରତାପ ଅତିକ୍ରମ କରିପାରନ୍ତି, ସେ ଶରଣଗତ ବ୍ୟକ୍ତିଙ୍କର ବିନାଶ ସାଧନରେ ସମର୍ଥ ହୁଅନ୍ତି । ୧୦ । ଯେଉଁ ବ୍ୟକ୍ତି ଶରଣାଗତ ବ୍ୟକ୍ତିଙ୍କୁ ବିନଷ୍ଟ କରନ୍ତି, ସେ ଗୁରୁତଳ୍ପଗାମୀ ହୁଅନ୍ତି, ସେ ବ୍ୟକ୍ତି ବ୍ରହ୍ମହତ୍ୟାକାରୀ ହୁଅନ୍ତି ଓ ସୁରାପାନ କରନ୍ତି । ୧୧ । ଅତଏବ ହେ ତାତ ! ଏତେବେଳେ ଦୁର୍ନୀତି ବିଷୟର ନିୟମ ଚିନ୍ତାକର,

ତୁମ୍ଭର ରଶ୍ମିଦ୍ୱାରା ତାପିତ ପଥମଧ୍ୟରେ ଯେଉଁ ପ୍ରକାରରେ ଯଥାସୁଖରେ ଗମନ କରାଯାଇପାରେ, ତାହାର ଉପାୟ ଉଦ୍ଭାବନ କର । ୧୨ ।

ଭୀଷ୍ମ କହିଲେ, ଭୃଗୂତ୍ତମ ଜମଦଗ୍ନି ଏତେବେଳେ ଏତିକ ମାତ୍ର କହି ମୌନାବଲମ୍ବନ କରି ରହିଲେ । ତଦନନ୍ତର ସୂର୍ଯ୍ୟଦେବ ତାହାଙ୍କୁ ଛତ୍ର ଓ ପାଦୁକା ପ୍ରଦାନ କଲେ । ୧୩ । ସୂର୍ଯ୍ୟ କହିଲେ, ହେ ମହର୍ଷେ ! ଆମ୍ଭ କିରଣ ଯାହାଦ୍ୱାରା ନିବାରଣ ହୁଏ, ସେହି ଶିରସ୍ତ୍ରାଣ ଛତ୍ର ଏବଂ ପଦଦ୍ୱୟର ତ୍ରାଣକାରଣ ଚର୍ମପାଦୁକାଯୁଗଳକୁ ପ୍ରତିଗ୍ରହ କର । ୧୪ । ଅଦ୍ୟାବଧି ଇହଲୋକରେ ସମସ୍ତ ପୁଣ୍ୟ କାର୍ଯ୍ୟରେ ଏହା ପରମ ଅକ୍ଷୟ ରୂପେ ପ୍ରସିଦ୍ଧ ହେବ । ୧୫ ।

ଭୀଷ୍ମ କହିଲେ, ହେ ଭାରତ ! ଏହି ଛତ୍ର ଓ ପାଦୁକାଦାନ ସୂର୍ଯ୍ୟଙ୍କଦ୍ୱାରା ପ୍ରବର୍ତ୍ତିତ ହୋଇଅଛି । ତ୍ରିଭୁବନ ମଧ୍ୟରେ ଏହା ପରମ ପବିତ୍ର ରୂପେ ପ୍ରସିଦ୍ଧ ଅଟେ, ଅତଏବ ତୁମ୍ଭେ ବିପ୍ରଗଣଙ୍କୁ ଉତ୍କୃଷ୍ଟ ଆତପତ୍ର ଓ ପାଦୁକାଯୁଗଳ ପ୍ରଦାନ କର । ତାହାଦ୍ୱାରା ତୁମ୍ଭର ମହାନ୍ ଧର୍ମ ହେବ । ଏହି ବିଷୟରେ ଆମ୍ଭର ବିସ୍ତାରଣା କରିବାର ପ୍ରୟୋଜନ ନାହିଁ । ୧୭ ।

ହେ ଭରତଶ୍ରେଷ୍ଠ ! ଯେ ଦ୍ୱିଜାତିଙ୍କୁ ଶତଶଲାକାଯୁକ୍ତ ଶୁଭ୍ରବର୍ଣ୍ଣ ଛତ୍ର ପ୍ରଦାନ କରନ୍ତି, ସେ ପରଲୋକକୁ ଯାଇ ସୁଖୀ ହୁଅନ୍ତି । ୧୮ ।

ହେ ଭରତଶ୍ରେଷ୍ଠ ! ସେ ଅପ୍‌ସରାଗଣ, ଦେବଗଣ, ଏବଂ ଦ୍ୱିଜଗଣ କର୍ତ୍ତୃକ ସର୍ବଦା ପୂଜ୍ୟମାନ ହୋଇ ଇନ୍ଦ୍ରଲୋକରେ ବସତି କରନ୍ତି । ୧୯ ।

ହେ ମହାବାହୋ ! ଯେ ଦହ୍ୟମାନ ସ୍ନାତକ ବ୍ରାହ୍ମଣ ଓ ସଂଶିତବ୍ରତ ଦ୍ୱିଜାତିଙ୍କୁ ପାଦୁକାଯୁଗଳ ପ୍ରଦାନ କରନ୍ତି (୨୦), ହେ ଭାରତ ! ସେ ଦେବଗଣଙ୍କ ପୂଜିତ ଲୋକସମୂହକୁ ପ୍ରାପ୍ତ ହୁଅନ୍ତି ଏବଂ ପରଲୋକକୁ ଯାଇ ପ୍ରୀତିଯୁକ୍ତ ହୋଇ ଗୋଲୋକରେ ବସତି କରନ୍ତି । ୨୧ ।

ହେ ଭରତଶ୍ରେଷ୍ଠ ! ଆମ୍ଭେ ତୁମ୍ଭ ନିକଟରେ ବିସ୍ତାରିତ ରୂପରେ ଛତ୍ର ଓ ପାଦୁକାଦାନର ଫଳ ସମ୍ପୂର୍ଣ୍ଣ ରୂପେ କୀର୍ତ୍ତନ କଲୁ । ୨୨ ।

# ଅଧ୍ୟାୟ—୯୭

ଯୁଧିଷ୍ଠିର କହିଲେ, ହେ ଭରତଶ୍ରେଷ୍ଠ ! ଆପଣ ସମସ୍ତ ଗାର୍ହସ୍ଥ୍ୟ ଧର୍ମ କୀର୍ତ୍ତନ କରନ୍ତୁ । ହେ ପାର୍ଥିବ ! ମନୁଷ୍ୟ ଇହଲୋକରେ କେଉଁ କର୍ମ କରି ସମୃଦ୍ଧିପ୍ରାପ୍ତ ହୁଅନ୍ତି ? ୧ ।

ଭୀଷ୍ମ କହିଲେ, ହେ ଜନାଧିପ ଭରତ ! ଆମ୍ଭେ ଏହି ବିଷୟରେ ତୁମ୍ଭ ନିକଟରେ ବାସୁଦେବ ଓ ବସୁନ୍ଧରା ସଂବାଦ ସଂବଳିତ ପୁରାତନ ଇତିହାସ ବର୍ଣ୍ଣନା କରିବୁ । ୨ ।

ହେ ଭରତପ୍ରବର ! ପ୍ରତାପଶାଳୀ ବାସୁଦେବ, ବସୁନ୍ଧରା ଦେବୀଙ୍କୁ ସମ୍ୟକ୍ ରୂପେ ସ୍ତୁତି କରି ଏବେତେବେଳେ ତୁମ୍ଭେ ଆମ୍ଭଙ୍କୁ ଯାହା ପ୍ରଶ୍ନ କରିଅଛ, ତାହା ପ୍ରଶ୍ନ କରିଥିଲେ । ୩ । ବାସୁଦେବ କହିଲେ, ହେ ପୃଥିବି ! ଆମ୍ଭେ ଅଥବା ମାଦୃଶ ବ୍ୟକ୍ତି ଗାର୍ହସ୍ଥ୍ୟ ଧର୍ମ ଅବଲମ୍ବନ ପୂର୍ବକ ନିୟମାନୁସାରେ କେଉଁ କାର୍ଯ୍ୟ କରିବୁ ଏବଂ କେଉଁ କାର୍ଯ୍ୟ କଲେ ତାହା ସିଦ୍ଧ ହେବ ? ୪ । ପୃଥିବୀ କହିଲେ, ହେ ମାଧବ ! ଋଷିଗଣ, ଦେବଗଣ, ପିତୃଗଣ ଓ ମାନୁଷଗଣ, ଗୃହସ୍ଥ ବ୍ୟକ୍ତିଙ୍କର ଅବଶ୍ୟ ଅର୍ଚ୍ଚନୀୟ ଏବଂ ଯଜ୍ଞକାର୍ଯ୍ୟ ଅବଶ୍ୟ କର୍ତ୍ତବ୍ୟ । କେଉଁ ପ୍ରକାରରେ ସେମାନଙ୍କର ଅର୍ଚ୍ଚନା କରାଯାଏ, ତାହା ଆମ୍ଭ ନିକଟରୁ ଶ୍ରବଣ କର । ୫ ।

ଦେବଗଣ ସର୍ବଦା ଯଜ୍ଞଦ୍ୱାରା ପ୍ରୀତ ହୁଅନ୍ତି, ମାନବଗଣ ସର୍ବଦା ଆତିଥ୍ୟ ଦ୍ୱାରା ତୃପ୍ତିଲାଭ କରନ୍ତି । ଅତଏବ ଅଭିପ୍ରାୟାନୁସାରେ ଅର୍ହଣୀୟ ଜନଗଣଙ୍କର ସର୍ବଦା ସେବା କରିବାର ବିଧେୟ । ହେ ମଧୁସୂଦନ ! ତାହା ହେଲେ ଋଷିଗଣ ପ୍ରସନ୍ନ ହୁଅନ୍ତି । ନିତ୍ୟ ଭୋଜନ ନ କରି ଅଗ୍ନିଙ୍କର ପରିଚର୍ଯ୍ୟା କରିବ ଏବଂ ବଳି ବୈଶ୍ୱଦେବ ଦାନ କରିବ । ହେ ମଧୁସୂଦନ ! ତାହାଦ୍ୱାରା ଦେବଗଣ ପ୍ରୀତ ହୁଅନ୍ତି । ଗୃହସ୍ଥ ବ୍ୟକ୍ତି ପ୍ରତିଦିନ ପିତୃଲୋକଙ୍କର ପ୍ରୀତି ବିଧାନ କରି ଅନ୍ନାଦି ଉଦକ ଅଥବା ପୟୋଫଳମୂଳାଦି ଦ୍ୱାରା ଶ୍ରାଦ୍ଧ କରିବେ । ସିଦ୍ଧାନ୍ନ ଦ୍ୱାରା ଯଥାବିଧି ବୈଶ୍ୱଦେବ ଦାନ କରିବେ ଏବଂ ହୁତାଶନରେ ଅଗ୍ନି, ସୋମ, ତତ୍ପରେ ଧନନ୍ତ୍ୱରୀଙ୍କୁ ହୋମ କରିବେ ଏବଂ ପ୍ରଜାପତିଙ୍କ ନିମିତ୍ତ ପୃଥକ୍ ହୋମ କରିବାର ବିଧେୟ (୧୦) ଏବଂ ଆନୁପୂର୍ବିକ କର୍ମରେ ବଳି କର୍ମ ପ୍ରୟୋଗ କରିବାର ଉଚିତ । ଦକ୍ଷିଣ ଦିଗରେ ଯମଙ୍କୁ, ପଶ୍ଚିମ ଦିଗରେ ବରୁଣଙ୍କୁ, ଉତ୍ତର ଦିଗରେ ସୋମଙ୍କୁ, ବାସ୍ତୁ ମଧ୍ୟରେ

ପ୍ରଜାପତିଙ୍କୁ, ପୂର୍ବୋତ୍ତର ଭାଗରେ ଧନନ୍ତ୍ୱରିଙ୍କୁ ଏବଂ ପୂର୍ବଦିଗରେ ଇନ୍ଦ୍ରଙ୍କୁ ପୂଜା ଉପହାର ପ୍ରଦାନ କରିବେ ଏବଂ ମାନବଗଣଙ୍କୁ ଗୃହଦ୍ୱାରରେ ଅନ୍ନାଦି ଦାନ କରିବେ ।

ହେ ମାଧବ ! ଋଷିଗଣ ଏହାକୁ ବଳି ବୋଲି କହନ୍ତି । ମରୁଦ୍‌ଗଣ ଓ ଦେବଗଣଙ୍କୁ ଗୃହର ଅଭ୍ୟନ୍ତରରେ ବଳି ପ୍ରଦାନ କରିବେ । ୧୩ । ବିଶ୍ୱେଦେବଙ୍କୁ ଆକାଶରେ ବଳି ପ୍ରଦାନ କରିବାର ଉଚିତ । ନିଶାଚର ଓ ଭୂତଗଣଙ୍କୁ ରାତ୍ରିକାଳରେ ବଳି ପ୍ରଦାନ କରିବେ । ୧୪ । ଏହିରୂପେ ସମସ୍ତଙ୍କୁ ବଳି ପ୍ରଦାନ ପୂର୍ବକ ବ୍ରାହ୍ମଣଙ୍କୁ ଭିକ୍ଷା ଦାନ କରିବେ । ବ୍ରାହ୍ମଣ ଉପସ୍ଥିତ ନ ହେଲେ ଅନ୍ନାଦିର ଅଗ୍ରଭାଗ ଅଗ୍ନିରେ ନିକ୍ଷେପ କରିବେ ।୧୫। ମନୁଷ୍ୟ ଯେତେବେଳେ ପିତୃଗଣଙ୍କୁ ଶ୍ରାଦ୍ଧ ଦାନ କରିବାରେ ଅଭିଳାଷୀ ହେବେ, ସେତେବେଳେ ଶ୍ରାଦ୍ଧ କାର୍ଯ୍ୟ ନିର୍ବାହ ହେବାରୁ ପିତୃଗଣଙ୍କ ତୃପ୍ତି ବିଧାନ କରି ପଶ୍ଚାତ୍ ଯଥାବିଧି ବଳି ପ୍ରଦାନ କରିବେ । ତତ୍ପରେ ବୈଶ୍ୱଦେବ କରିବେ, ପଶ୍ଚାତ୍ ବ୍ରାହ୍ମଣ ନିମନ୍ତ୍ରଣ କରିବେ, ପରିଶେଷରେ ବିଶେଷ ରୂପେ ଅନ୍ନାଦିଦ୍ୱାରା ଅତିଥିଗଣଙ୍କୁ ପୂଜା ପୂର୍ବକ ଭୋଜନ କରାଇବେ । ହେ ମହାରାଜ ! ତାହା ହେଲେ ଅତିଥି ମାନବଗଣଙ୍କଠାରେ ପ୍ରୀତ ହୁଅନ୍ତି । ୧୮ ।

ଯେ ପ୍ରତିଦିନ ଅବସ୍ଥିତି ନ କରନ୍ତି, ତାହାଙ୍କୁ ଅତିଥି ବୋଲାଯାଏ । ଆଚାର୍ଯ୍ୟ, ପିତା, ସଖା, ଆପ୍ତଜନ ଓ ଅତିଥିଙ୍କୁ ଆମ୍ଭ ଗୃହରେ ଅଦ୍ୟ ଏହି ଖାଦ୍ୟଦ୍ରବ୍ୟ ଅଛି, ଗୃହସ୍ଥ ବ୍ୟକ୍ତି ପ୍ରତିଦିନ ଏହିପରି ନିବେଦନ କରିବେ । ସେମାନେ ଯାହା କହିବେ, ଗୃହସ୍ଥ ବ୍ୟକ୍ତି ତାହା କରିବେ ; ଏହିପରି ଧର୍ମ ବିହିତ ହୋଇଅଛି । ୨୦ । ହେ କୃଷ୍ଣ ! ଗୃହସ୍ଥ ପୁରୁଷ ସର୍ବଦା ସମସ୍ତଙ୍କର ଅବଶିଷ୍ଟ ଅନ୍ନ ଭୋଜନ କରିବେ । ରାଜା, ଋତ୍ୱିକ୍, ସ୍ନାତକ, ଗୁରୁ ଓ ଶ୍ୱଶୁର ସମ୍ବତ୍ସରକାଳ ଗୃହରେ ବାସ କଲେ ସୁଦ୍ଧା ସେମାନଙ୍କୁ ମଧୁପର୍କ ଦ୍ୱାରା ଅର୍ଚ୍ଚନା କରିବେ । କୁକୁର, ଶ୍ୱପଚ ଓ ପକ୍ଷୀଗଣଙ୍କୁ ସାୟଂକାଳରେ ଏବଂ ପ୍ରାତଃକାଳରେ ଭୂତଳରେ ଅନ୍ନଦାନ କରିବେ । ଏହାର ନାମ ବୈଶ୍ୱଦେବ ବୋଲି ବିହିତ ହୋଇଅଛି । ୨୨ । ଯେ ଅସୂୟାଶୂନ୍ୟ ହୋଇ ଏହି ସମସ୍ତ ଗାର୍ହସ୍ଥ୍ୟ ଧର୍ମ ପ୍ରତିପାଳନ କରନ୍ତି, ସେ ଇହଲୋକରେ ଋଷି-ଗଣଙ୍କର ବରଲାଭ କରି ପରଲୋକରେ ସୁରପୁରରେ ପୂଜିତ ହୁଅନ୍ତି । ୨୩।

ଭୀଷ୍ମ କହିଲେ, ପ୍ରତାପଶାଳୀ ବାସୁଦେବ ବସୁନ୍ଧରାଙ୍କ ଏହି ବାକ୍ୟ ଶ୍ରବଣ କରି ସର୍ବଦା ତଦ୍‌ବତ୍ ଆଚରଣ କରିଥିଲେ ; ଅତଏବ ତୁମ୍ଭେ ମଧ୍ୟ

ଏହିପରି ସର୍ବଦା ଅନୁଷ୍ଠାନ କର । ୨୪ । ହେ ଜନାଧିପ ! ତୁମ୍ଭେ ଏହି ଗୃହସ୍ଥ ଧର୍ମ ଅନୁଷ୍ଠାନ କଲେ ଇହଲୋକରେ ଯଶୋଲାଭ କରି ପରଲୋକରେ ସ୍ୱର୍ଗଲାଭ କରିବ । ୨୫ ।

---

## ଅଧ୍ୟାୟ—୯୮

ଯୁଧିଷ୍ଠିର କହିଲେ—ହେ ଭରତର୍ଷଭ ! ଆଲୋକଦାନ କି ପ୍ରକାର ? ଏହା କେଉଁ ପ୍ରକାରରେ ଉତ୍ପନ୍ନ ହେଲା ଏବଂ ତାହାର କେଉଁ ଫଳ ହୁଏ ? ଆପଣ ତାହା ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ । ୧ ।

ଭୀଷ୍ମ କହିଲେ, ହେ ଭରତ ! ଏହି ବିଷୟରେ ପଣ୍ଡିତଗଣ, ପ୍ରଜାପତି ମନୁ ଏବଂ ସୁବର୍ଣ୍ଣର ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି । ୨ ।

ହେ ଭରତ ! ସୁବର୍ଣ୍ଣ ନାମକ ଜଣେ ତପସ୍ୱୀ ଥିଲେ । ତାହାଙ୍କ ବର୍ଣ୍ଣ ସୁବର୍ଣ୍ଣସଦୃଶ, ତନ୍ନିମିତ୍ତ ସେ ସୁବର୍ଣ୍ଣ ନାମରେ ପ୍ରଥିତ ହୋଇଥିଲେ । ୩ । ସେ କୁଳ, ଶୀଳ, ଗୁଣ ସମନ୍ୱିତ ସ୍ୱଶାଖୋକ୍ତ ବେଦପାଠରେ ପାରଦର୍ଶୀ ହୋଇ ସ୍ୱକୀୟ ଗୁଣସମୂହଦ୍ୱାରା ସ୍ୱବଂଶସମ୍ଭବ ବହୁ ବ୍ୟକ୍ତିଙ୍କୁ ଅତିକ୍ରମ କରିଥିଲେ । କୌଣସି ସମୟରେ ସେହି ପ୍ରଜାପତି ମନୁଙ୍କୁ ଦର୍ଶନ କଲେ ଏବଂ ଦର୍ଶନ କଲାମାତ୍ରେ ତାହାଙ୍କ ନିକଟରେ ଉପସ୍ଥିତ ହେଲେ । ତେତେବେଳେ ସେହି ଦୁହେଁ ପରସ୍ପର କୁଶଳ ପ୍ରଶ୍ନ କଲେ । ୫ । ତଦନନ୍ତର ସେହି ସତ୍ୟ ସଂକଳ୍ପ ଦୁହେଁ ସୁବର୍ଣ୍ଣଗିରି ସୁମେରୁ ମଧ୍ୟରେ ରମଣୀୟ ଶିଳାପୃଷ୍ଠରେ ଉପବିଷ୍ଟ ହେଲେ । ୬ । ସେହି ସ୍ଥାନରେ ସେହି ଦୁହେଁ କଥୋପକଥନ କରି ପୁରାତନ ମହାନୁଭବ ବ୍ରହ୍ମର୍ଷି, ଦେବ ଓ ଦୈତ୍ୟଗଣଙ୍କ ନାନାବିଧ କଥା ଜାଣିପାରିଲେ । ୭ ।

ସୁବର୍ଣ୍ଣ ସ୍ୱାୟମ୍ଭୁବ ମନୁଙ୍କୁ କହିଲେ, ହେ ପ୍ରଜେଶ୍ୱର ! ସର୍ବଭୂତର ହିତନିମିତ୍ତ ଆପଣ ଆମ୍ଭ ପ୍ରଶ୍ନସମୂହର ଉତ୍ତର ଦାନ କରିବାକୁ ଉପଯୁକ୍ତ ଅଟନ୍ତି । ନରଗଣ ଯେଉଁ ପୁଷ୍ପରାଶିଦ୍ୱାରା ଦେବଗଣଙ୍କୁ ପୂଜା କରନ୍ତି, ତାହା କେଉଁପରି ଉତ୍ପନ୍ନ ହେଲା ଓ ତାହାର କେଉଁ ଫଳ ହୁଏ ? ଆପଣ ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ । ୯ । ମୁନି କହିଲେ, ଏହି

ବିଷୟରେ ପ୍ରାଚୀନ ବ୍ୟକ୍ତିମାନେ ମହାନୁଭବ ଶୁକ୍ର ଏବଂ ବଳିଙ୍କ ସଂବାଦ ସମ୍ବଳିତ ଏହି ପୁରାତନ ଇତିହାସ କହନ୍ତି । ୧୦ ।

ବିରୋଚନ ପୁତ୍ର ବଳି ଯେତେବେଳେ ତ୍ରିଭୁବନକୁ ଶାସନ କରୁଥିଲେ, ସେତେବେଳେ ଭୃଗୁକୁଳଧୁରନ୍ଧର ଶୁକ୍ର, ଅବିଳମ୍ବରେ ତାଙ୍କ ସମୀପକୁ ଆଗମନ କଲେ । ଭୂରିଦକ୍ଷିଣ ଦାନଶୀଳ ଅସୁରାଧିପତି ବଳି ଭାର୍ଗବଙ୍କୁ ଯଥାବିଧି ଅର୍ଘ୍ୟାଦିଦ୍ୱାରା ଅର୍ଚ୍ଚନା କରି ପଶ୍ଚାତ୍ ଆସନରେ ଉପବିଷ୍ଟ ହେଲେ । ସେତେବେଳେ ପୁଷ୍ପ, ଧୂପ ଓ ଦୀପ ଦାନ କଲେ କି ଫଳ ହୁଏ, ତୁମ୍ଭେ ଏହି ବିଷୟରେ ଯାହା କହିଅଛ ସେହି ଦୁହିଁଙ୍କର ସେଠାରେ ଏହି କଥା ହୋଇଥିଲା । ୧୩ । ତଦନନ୍ତର ଦୈତ୍ୟେନ୍ଦ୍ର କବୀନ୍ଦ୍ରଙ୍କୁ ଉତ୍ତମ ପ୍ରଶ୍ନ ପଚାରିଥିଲେ । ୧୪ ।

ବଳି କହିଲେ, ହେ ବ୍ରହ୍ମବିତ୍ତମ ଦ୍ୱିଜଶ୍ରେଷ୍ଠ ! ପୁଷ୍ପ, ଧୂପ ଓ ଦୀପ ଦାନ କଲେ କି ଫଳ ହୁଏ, ଆପଣ ତାହା କହିବାକୁ ଯୋଗ୍ୟ ଅଟନ୍ତି ।୧୫। ଶୁକ୍ର କହିଲେ, ପ୍ରଥମରେ ତପ ସମୁତ୍ପନ୍ନ ହୋଇଥିଲା ; ତଦନନ୍ତର ଧର୍ମ ସମୁତ୍ପନ୍ନ ହେଲା । ଏହା ଉତ୍ତାରେ ଲତା, ଔଷଧିସମୂହ, ଅମୃତ, ବିଷ ଏବଂ ତତ୍ତୁଲ୍ୟ ଜାତି ବିବିଧ ଲତା ଓ ବହୁବିଧ ସୋମଲତା ପୃଥିବୀ ତଳରେ ପ୍ରାଦୁର୍ଭୂତ ହେଲା । ୧୭ । ଅମୃତ ମନଃ, ପ୍ରୀତି ଓ ସଦ୍ୟ ସନ୍ତୋଷ ପ୍ରଦାନ କରେ ଏବଂ ତୀବ୍ର ବିଷ ଗନ୍ଧଦ୍ୱାରା ମନ ସର୍ବତୋଭାବରେ ଗ୍ଳାନିଯୁକ୍ତ ହୁଏ । ୧୮ । ଅମୃତକୁ ମଙ୍ଗଳ, ବିଷକୁ ମହତ୍ ଅମଙ୍ଗଳ ବୋଲି ଜାଣିବ । ଔଷଧିସମୂହ ଅମୃତ ଏବଂ ଅଗ୍ନିସମ୍ଭୂତ ତେଜ ବିଷ । ୧୯ । ପୁଷ୍ପସମୂହ ମନକୁ ଆହ୍ଲାଦିତ କରେ ଏବଂ ଶୋଭା ସମ୍ପାଦନ କରେ, ଏହି ନିମିତ୍ତ ପୁଣ୍ୟକର୍ମା ମାନବଗଣ ପୁଷ୍ପ ଓ ଫଳର ନାମକୁ ସୁମନସ ବୋଲି କହନ୍ତି । ୨୦ । ଯେଉଁ ମାନବ ପବିତ୍ର ହୋଇ ଦେବତାମାନଙ୍କୁ ସୁମନସ ସଂପ୍ରଦାନ କରନ୍ତି, ଦେବଗଣ ତାହାଙ୍କଠାରେ ତୁଷ୍ଟ ହୁଅନ୍ତି ଓ ତୁଷ୍ଟ ହୋଇ ପୁଷ୍ଟି ପ୍ରଦାନ କରନ୍ତି । ୨୧ । ହେ ପ୍ରଭୋ, ଦୈତ୍ୟେନ୍ଦ୍ର ! ଯେଉଁ ଦେବଙ୍କୁ ଉଦ୍ଦେଶ୍ୟ କରି ପୁଷ୍ପସମୂହ ପ୍ରଦତ୍ତ ହୁଏ, ସେ ତାହାଙ୍କ ମଙ୍ଗଳ ନିମିତ୍ତ ତାହାଙ୍କ ପ୍ରତି ପ୍ରୀତ ହୁଅନ୍ତି । ୨୨ ।

ବହୁବୀର୍ଯ୍ୟ, ବହୁରୂପ ଓ ପୃଥକ୍ ପୃଥକ୍ ଔଷଧିସମୂହକୁ ଉଗ୍ର, ମନୋହର ଏବଂ ତେଜସ୍ୱୀ ଜାଣିବ । ୨୩ । ବୃକ୍ଷସମୂହ ମଧ୍ୟରେ ଯେଉଁମାନେ ଯଜ୍ଞୀୟ, ତାହା ଆମ୍ଭ ନିକଟରୁ ଶ୍ରବଣ କର ଏବଂ ଯେଉଁସବୁ ମାଲ୍ୟ ଅସୁର-ଗଣଙ୍କର ହିତକର ଓ ଯାହା ଦେବତାଗଣଙ୍କର ହିତକର, ତାହା ଆମ୍ଭ

ନିକଟରୁ ଶ୍ରବଣ କର । ଯେଉଁସବୁ ପୁଷ୍ପ, ରାକ୍ଷସ, ଉରଗ ଓ ଯକ୍ଷସମୂହର ପ୍ରିୟ ଏବଂ ଯେଉଁ ପୁଷ୍ପସବୁ ମନୁଷ୍ୟ ଓ ପିତୃଗଣଙ୍କର ପ୍ରିୟ, ତାହା ଏବେ ଆନୁପୂର୍ବିକ ଶ୍ରବଣ କର । ୨୫ ।

ଯେଉଁ କୁସୁମସମୂହ ବନ୍ୟ, ଯେଉଁମାନେ ଗ୍ରାମ୍ୟ, ଯେଉଁସବୁ କୃଷ୍ଟ ଭୂମିରେ ରୋପିତ, ଯେଉଁମାନେ ପର୍ବତାଶ୍ରୟ କରି ରହିଅଛନ୍ତି, ଯେଉଁମାନେ ଅକଣ୍ଟକ, ଯେଉଁସବୁ ପୁଷ୍ପ କଣ୍ଟକଯୁକ୍ତ, ଯେଉଁମାନେ ଗନ୍ଧ, ରୂପ ଓ ରସରେ ସମନ୍ୱିତ, ସେହିମାନଙ୍କ ବିଷୟ ଶ୍ରବଣ କର । ୨୬ । ପୁଷ୍ପଜ ଗନ୍ଧ ଦ୍ୱିବିଧ, ଇଷ୍ଟ ଓ ଅନିଷ୍ଟ; ଇଷ୍ଟଗନ୍ଧ ପୁଷ୍ପସମୂହ ଦେବଗଣଙ୍କର, ଏହା ନିଶ୍ଚୟ ହୋଇଅଛି । ୨୭ । ହେ ପ୍ରଭୋ ! ଅକଣ୍ଟକ ବୃକ୍ଷମାନଙ୍କର ପୁଷ୍ପ-ସମୂହ ପ୍ରାୟ ଶ୍ୱେତବର୍ଣ୍ଣ ହୁଏ, ସେହି ବୃକ୍ଷସମୂହର ପୁଷ୍ପସମୂହ ଦେବଗଣଙ୍କର ସର୍ବଦା ଅଭିଳଷିତ । ୨୮ ।

ପଦ୍ମ ପ୍ରଭୃତି ଯେଉଁ ଜଳଜାତ ପୁଷ୍ପସମୂହ ଜନ୍ମେ, ବିଚକ୍ଷଣ ନର ସେହି ପୁଷ୍ପସମୂହକୁ ଗନ୍ଧର୍ବ, ନାଗ ଓ ଯକ୍ଷସମୂହଙ୍କୁ ପ୍ରଦାନ କରିବେ ।୨୯। କଟୁ ଓ କଣ୍ଟକାନ୍ୱିତ ଔଷଧି ଓ ରକ୍ତବର୍ଣ୍ଣ ପୁଷ୍ପସମୂହ ଶତ୍ରୁଗଣଙ୍କର ଅଭିଚାରାର୍ଥ ଅଥର୍ବବେଦରେ ନିଦର୍ଶିତ ହୋଇଅଛି । ୩୦ । ତୀକ୍ଷ୍ଣବୀର୍ଯ୍ୟ ସକଣ୍ଟକ ଦୁର୍ଲଭ ରକ୍ତଭୂୟିଷ୍ଠ ବର୍ଣ୍ଣ ଓ କୃଷ୍ଣବର୍ଣ୍ଣ ପୁଷ୍ପସମୂହ ଭୂତଗଣଙ୍କୁ ଉପହାର ଦେବ । ୩୧ । ମନ ଓ ହୃଦୟରେ ଆନନ୍ଦବର୍ଦ୍ଧନ, ବିମର୍ଦ୍ଦନରେ ମଧୁର, ସୁରୂପ କୁସୁମସମୂହ ମନୁଷ୍ୟଗଣଙ୍କ ନିମିତ୍ତ ବିହିତ ହୁଏ । ୩୨ । ବିବାହ ପ୍ରଭୃତି ପୁଷ୍ଟିଯୁକ୍ତ କାର୍ଯ୍ୟରେ ଶ୍ମଶାନସମ୍ଭୂତ ଓ ଦେବତାୟତନ ପୁଷ୍ପ ସମୂହ ଆନୟନ କରିବ ନାହିଁ । ୩୩ । ହେ ସୌମ୍ୟ ! ଗିରିଶୃଙ୍ଗ-ସମୁତ୍ପନ୍ନ ସୁନ୍ଦର ପୁଷ୍ପସମୂହ ପ୍ରୋକ୍ଷଣ ଓ ଅଭ୍ୟୁକ୍ଷଣପୂର୍ବକ ସ୍ମୃତି ଅନୁସାରେ ଯଥାଯୋଗ୍ୟ ଦେବଗଣଙ୍କୁ ପ୍ରଦାନ କରିବ । ୩୪ । ଦେବଗଣ କୁସୁମ ଗନ୍ଧଦ୍ୱାରା ତୁଷ୍ଟ ହୁଅନ୍ତି, ଯକ୍ଷ ଓ ରାକ୍ଷସଗଣ କୁସୁମ ଦର୍ଶନ ହେତୁରୁ ତୁଷ୍ଟ ହୁଅନ୍ତି । ନାଗଗଣ, ସମ୍ୟକ୍‌ରୂପେ ପୁଷ୍ପସମୂହ ଉପଭୋଗ କଲେ ତୁଷ୍ଟ ହୁଅନ୍ତି ଏବଂ ମାନବଗଣ, ଆଘ୍ରାଣ, ଦର୍ଶନ ଓ ଉପଭୋଗ ଏହି ତ୍ରିବିଧ ଉପାୟଦ୍ୱାରା ସନ୍ତୁଷ୍ଟ ହୁଅନ୍ତି । ୩୫ । କୁସୁମସମୂହ ସଦ୍ୟ ଦେବଗଣଙ୍କୁ ପ୍ରୀତ କରେ, ସେମାନେ ସଂକଳ୍ପସିଦ୍ଧ ଅତଏବ ପ୍ରୀତ ହୋଇ ମାନବଗଣଙ୍କୁ ମନୋରମ ଇପ୍‌ସିତ ଦ୍ୱାରା ପରିବର୍ଦ୍ଧିତ କରନ୍ତି, ଦେବଗଣ ପ୍ରୀତ ହେଲେ ମାନବଗଣଙ୍କୁ ସର୍ବଦା ପ୍ରୀତିଯୁକ୍ତ କରନ୍ତି, ସେମାନେ ସମ୍ମାନିତ ହେଲେ ମନୁଷ୍ୟଗଣଙ୍କୁ ସମ୍ମାନଯୁକ୍ତ କରନ୍ତି ଏବଂ ଅବଜ୍ଞାତ ଓ ଅବଧୂତ ହେଲେ ଅଧମ ମାନବଗଣଙ୍କୁ ନିଶ୍ଚୟ ଦଗ୍ଧ କରନ୍ତି । ୩୬ ।

ଏଥି ଉତ୍ତରେ ଧୂପଦାନ ବିଧିର ଫଳ କହିବୁ, ତାହା ଆମ୍ଭ ନିକଟରୁ ଶ୍ରବଣ କର । ତନ୍ମଧ୍ୟରେ ଉତ୍କୃଷ୍ଟ ଓ ନିକୃଷ୍ଟ ଏହି ଦୁଇ ପ୍ରକାର ଅଛି ।୩୮। ଗୁଗ୍ଗୁଳ ପ୍ରଭୃତି ନିର୍ଯ୍ୟାସ ଦ୍ୱାରା ନିର୍ମିତ ଏକପ୍ରକାର ଧୂପକୁ ନିର୍ଯ୍ୟାସ କହନ୍ତି, କାଷ୍ଠାଦି ସଂଯୋଗ ଦ୍ୱାରା ନିଃସୃତ ଧୂପର ନାମ ସାରି ଓ ଅଷ୍ଟଗନ୍ଧ ଦ୍ରବ୍ୟଦ୍ୱାରା ବିରଚିତ ଧୂପ କୃତ୍ରିମ, ଏହି ପ୍ରଭେଦାନୁସାରେ ଧୂପ ତ୍ରିବିଧ । ଗନ୍ଧ ଇଷ୍ଟ ଓ ଅନିଷ୍ଟ ଭେଦରେ ଦ୍ୱିବିଧ, ତାହା ଆମ୍ଭ ନିକଟରୁ ବିସ୍ତାର କ୍ରମେ ଶ୍ରବଣ କର ।୩୯। ଶଲ୍ଲକୀବର୍ଜିତ ନିର୍ଯ୍ୟାସସମୂହ ଦେବତାମାନଙ୍କର ପ୍ରିୟ । ସମସ୍ତ ନିର୍ଯ୍ୟାସ ମଧ୍ୟରେ ଗୁଗ୍ଗୁଳ ଶ୍ରେଷ୍ଠ, ଏହିପରି ନିଶ୍ଚୟ ହୋଇ-ଅଛି । ୪୦ । ଏବଂ ଯକ୍ଷ, ରାକ୍ଷସ, ଭୋଗୀଗଣଙ୍କର ଭୋଗସାଧନ ସାରବାନ୍ ବସ୍ତୁ ସମୂହ ମଧ୍ୟରେ ଅଗୁରୁ ଉତ୍କୃଷ୍ଟ । ଦୈତ୍ୟଗଣଙ୍କର ଶଲ୍ଲକୀ, ଅଥବା ତାଦୃଶ ଅନ୍ୟ ନିର୍ଯ୍ୟାସ ଅଭିଳଷିତ ଅଟେ । ୪୧ । ହେ ପାର୍ଥିବ ! ସର୍ଜ୍ଜରସ ପ୍ରଭୃତିର ଗନ୍ଧ ଓ ଦେବଦାରୁ ପ୍ରଭୃତିର ଗନ୍ଧ, ପ୍ରଫୁଲ୍ଲ ମଲ୍ଲିକା ପ୍ରଭୃତି ପୁଷ୍ପର ମକରନ୍ଦ ଗନ୍ଧ ସହିତ ସଂଯୁକ୍ତ ହେଲେ ଯେଉଁ ଧୂପ ନିର୍ମିତ ହୁଏ, ତାହା ନରଗଣଙ୍କ ପକ୍ଷେ ବିହିତ ଏବଂ ଏହା ଦେବ, ଦାନବ ଓ ଭୂତଗଣଙ୍କର ସଦ୍ୟ ସନ୍ତୋଷ ପ୍ରଦାନ କରେ, ଏହା ସ୍ମୃତିରେ ଉକ୍ତ ହୋଇଅଛି ।

ଏତଦ୍ଭିନ୍ନ ଅନ୍ୟ ଯାହା ବିହାର ମାତ୍ରର ଉପଯୁକ୍ତ ତାହା ମନୁଷ୍ୟ-ଗଣଙ୍କ ନିମିତ୍ତ ବିହିତ ହୋଇଅଛି । ୪୩ । ପୁଷ୍ପ ପ୍ରଦାନରେ ଯେଉଁ ସମସ୍ତ ଫଳହେତୁ ଉକ୍ତ ହୋଇଅଛି, ଧୂପଦାନରେ ସେହି ସମସ୍ତ ପ୍ରୀତିବର୍ଦ୍ଧନ ଫଳ ହୁଏ ଜାଣିବ । ୪୪ ।

ଏତେବେଳେ ଦୀପଦାନ କଲେ, ଯେଉଁ ଅତି ଉତ୍କୃଷ୍ଟ ଫଳ ହୁଏ ଏବଂ ଯେଉଁ ପ୍ରକାରରେ ଯାହାଦ୍ୱାରା ଯେଉଁ ସମୟରେ ସାଦୃଶ ଦୀପଦାନ କର୍ତ୍ତବ୍ୟ, ତାହା କହିବୁ ଶ୍ରବଣ କର । ୪୫ । ଉର୍ଦ୍ଧ୍ୱଗାମୀ ଦୀପାଦି ତେଜଃ-କାନ୍ତି ପ୍ରକାଶ କରେ, ତାହା ମଧ୍ୟ ବର୍ଣ୍ଣିତ ହୋଇଅଛି; ଅତଏବ ମନୁଷ୍ୟର ଦୀପଦାନ ଦ୍ୱାରା ତେଜ ବର୍ଦ୍ଧିତ ହୁଏ । ୪୬ । ଅନ୍ଧକାର ଓ ଦକ୍ଷିଣାୟନ ଅନ୍ଧତମ ନାମକ ଅତଏବ ଉତ୍ତରାୟଣର ନରକ ସ୍ୱରୂପ । ରାତିରେ ଦୀପ-କରିବାର ପ୍ରଶସ୍ତ । ୪୭ । ଦୀପ ଜ୍ୟୋତି ଉର୍ଦ୍ଧ୍ୱଗ ଓ ଅନ୍ଧକାରର ବିନାଶକ, ଏହି ନିମିତ୍ତ ଉର୍ଦ୍ଧ୍ୱଗତି ଦାନ କରେ, ଏହି ବିଷୟରେ ଏହା ନିଶ୍ଚିତ ହୋଇ-ଅଛି । ୪୮ ।

ଦୀପଦାନ ହେତୁରୁ ଦେବଗଣ ତେଜସ୍ୱୀ, ପ୍ରଭାସମ୍ପନ୍ନ ଓ ପ୍ରକାଶ-ଶାଳୀ ହୋଇଅଛନ୍ତି ଏବଂ ଦୀପଦାନ କରି ରାକ୍ଷସଗଣ ତାମସ ଭାବ ଲାଭ

କରିଅଛନ୍ତି; ଅତଏବ ଦୀପଦାନ କରିବାର ବିଧେୟ ।୪୯। ନର ଆଲୋକ-ଦାନହେତୁ ଚକ୍ଷୁଷ୍ମାନ୍ ଓ ପ୍ରଭାଯୁକ୍ତ ହୁଅନ୍ତି, ଅତଏବ ଦୀପଦାନ କରି ହିଂସା କରିବେ ନାହିଁ; ତାହା ନଷ୍ଟ କରିବେ ନାହିଁ ଓ ହରଣ କରିବେ ନାହିଁ ।୫୦। ଯେଉଁ ବ୍ୟକ୍ତି ଦୀପ ହରଣ କରନ୍ତି, ସେ ଅନ୍ଧ ହୁଅନ୍ତି । ତାହାଙ୍କର ଅନ୍ଧକାର ଗତି ହୁଏ, ଏବଂ ତାହାଙ୍କର ସୁନ୍ଦର ପ୍ରଭା ରହେ ନାହିଁ ଓ ଦୀପପ୍ରଦାତା ସ୍ୱର୍ଗଲୋକରେ ଦୀପମାଳା ସଦୃଶ ବିରାଜିତ ହୁଏ । ୫୧ ।

ଘୃତଦ୍ୱାରା ଦୀପଦାନ କରିବା ପ୍ରଥମ କଳ୍ପ, ତିଳ ସର୍ଷପାଦି ଓଷଧି ସ୍ନେହଦ୍ୱାରା ଦୀପଦାନ କରିବାର ଦ୍ୱିତୀୟ କଳ୍ପ, ଯେଉଁ ବ୍ୟକ୍ତି ପୁଷ୍ଟି କାମନା କରନ୍ତି, ବସା, ମେଦ, ଅସ୍ଥି ପ୍ରଭୃତି ପ୍ରାଣିଗଣଙ୍କ ଅବୟବନିଃସୃତ ସ୍ନେହ ଓ ନିର୍ଯ୍ୟାସ ଦ୍ୱାରା ଦୀପଦାନ କରିବାର ସେମାନଙ୍କର ଉଚିତ ନୁହେଁ ।୫୨। ଯେ ଆପଣାର ଐଶ୍ୱର୍ଯ୍ୟ ଅଭିଳାଷ କରନ୍ତି, ସେହି ଗିରିପ୍ରପାତରେ, ଗହନରେ, ଚୈତ୍ୟ ସ୍ଥାନରେ ଏବଂ ଚତୁଷ୍ପଥରେ ନିୟତ ଦୀପଦାନ କରିବେ । ୫୩ । ନିୟତ ଦୀପଦାତା ନରକୁଳପ୍ରଦୀପ ଓ ବିଶୁଦ୍ଧଚିତ୍ତ ହୋଇ ପ୍ରକାଶ-ପ୍ରାପ୍ତ ହୁଅନ୍ତି ଏବଂ ଜ୍ୟୋତିର୍ଗଣଙ୍କର ସାଲୋକ୍ୟ ଲଭ କରନ୍ତି । ୫୪ । ଦେବ, ଯକ୍ଷ, ନାଗ, ମାନବ, ଭୂତ ଓ ରାକ୍ଷସମାନଙ୍କର ବଳିକର୍ମ ବିଷୟରେ କର୍ମଫଳର ଉଦୟଜନିତ ଯେଉଁ ଉତ୍କର୍ଷ ହୁଏ, ସମ୍ପ୍ରତି ତାହା କୀର୍ତ୍ତନ କରିବା । ୫୫ । ବ୍ରାହ୍ମଣ, ଦେବତା, ଅତିଥି ଓ ବାଳକବୃନ୍ଦ ଯେଉଁମାନଙ୍କର ଅଗ୍ରଭୋଜୀ ନୁହନ୍ତି, ସେହି ନିର୍ବିଶଙ୍କ ଅମଙ୍ଗଳଗଣଙ୍କୁ ରାକ୍ଷସ ବୋଲି ଜାଣ । ୫୬ ।

ଅତଏବ ଦେବଗଣଙ୍କୁ ପୂଜିତ ଅନ୍ନାଦିର ଅଗ୍ରଭାଗ ପ୍ରଦାନ କରିବାର ଉଚିତ ଏବଂ ପ୍ରଯତ ଓ ଅବହିତ ହୋଇ ମସ୍ତକଦ୍ୱାରା ବଳିପ୍ରଦାନ କରିବାର ବିଧେୟ । ୫୭ । ଦେବଗଣ ନିତ୍ୟ ଯାହାଙ୍କ ପ୍ରଦତ୍ତ ବଳି ଗ୍ରହଣ କରନ୍ତି, ଆଗନ୍ତୁକ ଅତିଥିସମୂହ ଏବଂ ଯକ୍ଷ, ରାକ୍ଷସ, ପନ୍ନଗଗଣ ତାହାଙ୍କ ଗୃହକୁ ଆସିବାନିମିତ୍ତ ଆଶଂକା କରନ୍ତି । ଦେବଗଣ ଓ ପିତୃଗଣ ଇହଲୋକରୁ ପ୍ରଦତ୍ତ ହବ୍ୟକବ୍ୟ ବଳିଦ୍ୱାରା ଜୀବନଧାରଣ କରନ୍ତି, ସେମାନେ ପ୍ରୀତ ହୋଇ ଦାତାଙ୍କୁ ଆୟୁ, ଯଶ ଓ ଧନଦ୍ୱାରା ପ୍ରସନ୍ନ କରନ୍ତି । ୫୯ । ଦଧିଦୁଗ୍ଧଯୁକ୍ତ ପବିତ୍ର ପ୍ରିୟଦର୍ଶନ ବଳିସମୂହ ପୁଷ୍ପ ସହିତ ଦେବଗଣଙ୍କୁ ଉପହାର ପ୍ରଦାନ କରିବ । ଯକ୍ଷ ରାକ୍ଷସଗଣଙ୍କୁ ରୁଧିର ଓ ମାଂସଯୁକ୍ତ ବଳିସମୂହ ପ୍ରଦାନ କରିବାର ଉଚିତ, ସେହି ସମସ୍ତ ବଳିର ଉପରିଭାଗ ସୁରା, ଆସବ ଓ ଲାଜାଲେପନ ପୂର୍ବକ ବିଭୂଷିତ କରିବେ । ୬୧ ।

ପଦ୍ମୋତ୍ପଳବିମିଶ୍ରିତ ବଳିସଣି ନାଗଗଣଙ୍କର ପ୍ରିୟ, ଗୁଡ଼ଯୁକ୍ତ ତିଳସମୂହ ଭୂତଗଣଙ୍କୁ ଉପହାର ଦେବେ । ୭୨ । ଅଗ୍ରଦାତା, ଅଗ୍ରଭୋଜୀ ବଳ ଓ ବର୍ଣ୍ଣସମନ୍ୱିତ ହୁଅନ୍ତି । ସେହି କାରଣରୁ ଦେବଗଣଙ୍କୁ ପ୍ରତି-ପୂଜିତ ଅନ୍ନାଦିର ଅଗ୍ରଭାଗ ପ୍ରଦାନ କରିବେ । ୭୩ । ଗୃହସମୂହ ଓ ଗୃହ ଦେବତାସମୂହ ଅହରହ ପ୍ରଜ୍ୱଳିତ ହୁଅନ୍ତି, ଅତଏବ ଭୂତିକାମ ନର ପ୍ରସୃତାଗ୍ର ପ୍ରଦାନ କରି ସେମାନଙ୍କୁ ପୂଜା କରିବେ । ୭୪ ।

ଭୃଗୁନନ୍ଦନ ଶୁକ୍ରାଚାର୍ଯ୍ୟ ଅସୁରେନ୍ଦ୍ର ବଳିଙ୍କୁ ଏହିସବୁ କଥା କହିଥିଲେ, ମନୁ ତାହା ସୁବର୍ଣ୍ଣଙ୍କୁ କହିଥିଲେ, ସୁବର୍ଣ୍ଣ ତାହା ନାରଦଙ୍କ ନିକଟରେ କୀର୍ତ୍ତନ କରିଥିଲେ । ୭୫ । ହେ ମହାଦ୍ୟୁତେ ! ନାରଦ ଆମ୍ଭ ନିକଟରେ ଏହିସବୁ ବିଷୟର ଫଳମାନଙ୍କୁ କହିଲେ, ଅତଏବ ହେ ବତ୍ସ ! ତୁମ୍ଭେ ଏହି ସମସ୍ତ ବିଷୟ ଜ୍ଞାତ ହୋଇ ତାହା ଆଚରଣ କର । ୭୬ ।

---

## ଅଧ୍ୟାୟ—୯୯

ଯୁଧିଷ୍ଠିର କହିଲେ—ହେ ଭରତଶ୍ରେଷ୍ଠ ! ପୁଷ୍ପ ଧୂପ ଦୀପ ପ୍ରଦାୟୀ-ଗଣଙ୍କ ଫଳ ଏବଂ ବଳିବିଧାନର ବିଷୟ ଶ୍ରବଣ କଲୁଁ, ଆପଣ ଏହି ବିଷୟକୁ ପୁନଶ୍ଚ କୀର୍ତ୍ତନ କରନ୍ତୁ । ୧ । ଧୂପ ଦାନକଲେ କେଉଁ ଫଳ ହୁଏ, ଓ ଦୀପଦାନ କଲେ କେଉଁ ଫଳ ହୁଏ, ଓ ଗୃହସ୍ଥଗଣ କେଉଁ ନିମିତ୍ତ ବଳି ପ୍ରକ୍ଷେପ କରନ୍ତି, ତାହା ବିସ୍ତାର କରି କହନ୍ତୁ । ୨ ।

ଭୀଷ୍ମ କହିଲେ, ପଣ୍ଡିତଗଣ ଏହି ବିଷୟରେ ଅଗସ୍ତ୍ୟ, ଭୃଗୁ ଏବଂ ନହୁଷଙ୍କ ସଂବାଦସଂବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି । ୩ । ହେ ମହାରାଜ ! ସୁମହାତପା ରାଜର୍ଷି ନହୁଷ ଇହଲୋକରେ ସ୍ୱୀୟସୁକୃତ କର୍ମଦ୍ୱାରା, ଶରୀରଶେଷରେ ଦେବରାଜ୍ୟ ପ୍ରାପ୍ତ ହୋଇଥିଲେ । ୪ । ହେ ରାଜନ୍ ! ନହୁଷ ନୃପତି ସେହି ସୁରପୁରରେ ପ୍ରପତି ହୋଇ ବସତି କରି ଦିବ୍ୟ ଓ ମାନୁଷ ବିବିଧ କ୍ରିୟା କରିଥିଲେ । ୫ । ହେ ରାଜନ୍ ! ସେହି ମହାତ୍ମାଙ୍କର ମାନୁଷୀ କ୍ରିୟା ଏବଂ ସ୍ୱର୍ଗୀୟ କ୍ରିୟାସମୂହ ବିବିଧ ମଧ୍ୟରେ ନିର୍ବାହ ହେଲା । ଅଗ୍ନିକାର୍ଯ୍ୟ, ସମିଧ, କୁଶ, ପୁଷ୍ପ, ଲାଜା ସହିତ ବଳିକର୍ମ, ଧୂପଦାନ ଓ ଦୀପଦାନ ପ୍ରଭୃତି ସମସ୍ତ କାର୍ଯ୍ୟ ସେହି ମହାତ୍ମା ନୃପତିଙ୍କ

ନିକେତନରେ ନିବାସ ହେଉଥିଲା, ସେ ସୁରପୁରରେ ମଧ୍ୟ ଜପ, ଯଜ୍ଞ, ଓ ମନୋଯଜ୍ଞ କଲେ । ୮ । ହେ ଅରିନ୍ଦମ ! ସେ ସୁରେଶ୍ୱର ହୋଇ ସୁଦ୍ଧା ସମସ୍ତ ସୁରଗଣଙ୍କୁ ବିଧିବତ୍ ଯଥାନ୍ୟାୟରେ ପୂର୍ବପରି ଅର୍ଚ୍ଚନା କରୁଥିଲେ । କିଛିଦିନ ଉତ୍ତାରେ "ଆମ୍ଭେ ଇନ୍ଦ୍ର," ଏହିପ୍ରକାର ଜ୍ଞାନ କରି, ସେ ଅହଙ୍କାରରେ ଆବିଷ୍ଟ ହେଲେ ।

ସେ ଅହଂକାରାବିଷ୍ଟ ହେବାରୁ ତାହାଙ୍କ କ୍ରିୟାସମୂହ ପରିହୃତ ହେଲା । ୧୦ । ସେ ବରଦାନ ମଦାନ୍ୱିତ ହୋଇ ଋଷିଗଣଙ୍କୁ ବାହନ କାର୍ଯ୍ୟ କରାଇଲେ ଏବଂ କ୍ରିୟାବିହୀନ ହେବାରୁ ଅତିଶୟ ଦୁର୍ବଳ ହେଲେ । ୧୧ । ସେ ଅହଂକାରରେ ଅଭିଭୂତ ହୋଇ ପ୍ରଧାନ ପ୍ରଧାନ ତପୋଧନ ମୁନିଗଣଙ୍କୁ ବାହନ କରିବାର ବହୁକାଳ ଅତୀତ ହେଲା । ୧୨ । ହେ ଭାରତ ! ଅନନ୍ତର ସେ ପର୍ଯ୍ୟାୟକ୍ରମେ ସମସ୍ତ ଋଷିଗଣଙ୍କୁ ବହନ କରାଇବା ନିମିତ୍ତ ଉପକ୍ରମ କଲେ । କାଳକ୍ରମେ ଅଗସ୍ତ୍ୟଙ୍କର ସମୟ ସମାଗତ ହେଲା ।୧୩। ବ୍ରହ୍ମଜ୍ଞାନୀବର ମହାତେଜା ଭୃଗୁ ତେତେବେଳେ ଆଶ୍ରମସ୍ଥ ଅଗସ୍ତ୍ୟଙ୍କ ସମୀପରେ ସମାଗତ ହୋଇ (୧୪) ଏହି କଥା କହିଲେ ଯେ, ହେ ମହାମୁନେ ! ଆମ୍ଭେମାନେ ଏହି ଦୁର୍ମତି ଦେବେନ୍ଦ୍ର ନହୁଷଙ୍କର ଏହି ପ୍ରକାର ଅସତ୍କାର କେଉଁ ପ୍ରକାର କ୍ଷମା କରିବୁଁ ? ୧୫ ।

ଅଗସ୍ତ୍ୟ କହିଲେ, ହେ ମୁନିବର ! ବରଦାତା ପ୍ରଜାପତି ଯାହାଙ୍କୁ ବରଦାନ କରିଅଛନ୍ତି, ଆମ୍ଭେ ତାହାଙ୍କୁ କେଉଁ ପ୍ରକାରେ ଶାପ ପ୍ରଦାନ କରିବାକୁ ସମର୍ଥ ହେବୁଁ ? ସେ କଥା ଆପଣ ଜାଣନ୍ତି । ୧୬ । ସେ ଯେତେବେଳେ ସ୍ୱର୍ଗକୁ ଗମନ କଲେ, ତେତେବେଳେ ପ୍ରଜାପତିଙ୍କ ନିକଟରେ ଏହି ବର ପ୍ରାର୍ଥନା କରିଥିଲେ ଯେ, ଯେଉଁ ବ୍ୟକ୍ତି ଆମ୍ଭର ଦୃଷ୍ଟିପଥରେ ପତିତ ହେବେ, ସେ ଆମ୍ଭର ବଶ୍ୟ ହେବେ, ଏହି ନିମିତ୍ତ ସେ ମତ୍କର୍ତ୍ତୃକ ଏବଂ ଆପଣଙ୍କଦ୍ୱାରା ଅଥବା ଅନ୍ୟ କୌଣସି ପ୍ରଧାନ ଋଷିଙ୍କଦ୍ୱାରା ଦଗ୍ଧ କିମ୍ବା ପାତିତ ହେବେ ନାହିଁ, ଏହା ନିଃସଂଶୟ ଅଟେ । ମହାନୁଭବ ପିତାମହ ପୂର୍ବକାଳରେ ପାନ ନିମିତ୍ତ ଏହାଙ୍କୁ ଅମୃତ ପ୍ରଦାନ କରିଥିଲେ, ତନ୍ନିମିତ୍ତ ଆମ୍ଭେମାନେ ଏହାଙ୍କୁ ବିନିପାତିତ କରିବାକୁ ସମର୍ଥ ହେଉନାହୁଁ । ପ୍ରଜାପତି ଏହାଙ୍କୁ ପ୍ରଜାବୃନ୍ଦର ଦୁଃଖକର ବର ପ୍ରଦାନ କରିଅଛନ୍ତି, ସେହି ହେତୁରୁ ସେହି ନରାଧମ ବ୍ରାହ୍ମଣଗଣଙ୍କଠାରେ ଅଧର୍ମଯୁକ୍ତ ବ୍ୟବହାର କରୁଅଛନ୍ତି । ହେ ବକ୍ତୃବର ! ତଦ୍‌ବିଷୟରେ ଆମ୍ଭମାନଙ୍କର ଯେଉଁ ସମୟ

ଉପସ୍ଥିତ ହୋଇଅଛୁ, ତାହା ଆପଣ କୀର୍ତ୍ତନ କରନ୍ତୁ । ଆପଣ ଯାହା କହିବେ ଆମ୍ଭେ ତାହା କରିବୁଁ ସଂଶୟ ନାହିଁ । ୨୧ ।

ଭୃଗୁ କହିଲେ, ଦୈବମୋହିତ ବଳଶାଳୀ ନହୁଷଙ୍କର ପ୍ରତୀକାର କରିବା ନିମିତ୍ତ ଆମ୍ଭେ ପିତାମହଙ୍କ ନିୟୋଗାନୁସାରେ ଆପଣଙ୍କ ନିକଟକୁ ଆସିଅଛୁଁ । ସେହି ଦୁର୍ବୁଦ୍ଧି ଦେବରାଜ ଅଦ୍ୟ ଆପଣଙ୍କୁ ରଥରେ ନିଯୁକ୍ତ କରିବେ । ଆମ୍ଭେ ଅଦ୍ୟ ଏହି ଅନିନ୍ଦ୍ରଙ୍କୁ ନିଜ ତେଜଃ-ପ୍ରଭାବରେ ଗର୍ବିତ କରିବୁଁ । ଅଦ୍ୟ ଆମ୍ଭେ ଆପଣଙ୍କ ସାକ୍ଷାତରେ ସେହି ଅତି ଦୁର୍ମତି ପାପ-କର୍ମାଙ୍କୁ ଇନ୍ଦ୍ରପଦରୁ ସଂଚ୍ୟୁତ କରି ଶତକ୍ରତୁଙ୍କୁ ସ୍ୱୀୟ ପଦରେ ସଂସ୍ଥାପିତ କରିବୁ । ୨୪ । ଅଦ୍ୟ ସେହି ମନ୍ଦବୁଦ୍ଧି କୁତ୍ସିତ ଦେବରାଜ ଦୈବଙ୍କଦ୍ୱାରା ଉପହତଚିତ୍ତ ହୋଇଥିବାରୁ ଆପଣାର ବିନାଶ ନିମିତ୍ତ ଆପଣଙ୍କୁ ପଦଦ୍ୱାରା ପ୍ରହାର କରିବେ । ୨୫ । ଆମ୍ଭେ ପ୍ରହାର ହେତୁରୁ ଅତିଶୟ କ୍ରୋଧାନ୍ୱିତ ହୋଇ ସେହି ବିଧର୍ମୀ, ଦ୍ୱିଜଦ୍ରୋହୀ ପାପାତ୍ମାଙ୍କୁ ରୋଷରେ 'ସର୍ପ ହୁଅ' ବୋଲି ଶାପ ପ୍ରଦାନ କରିବୁଁ । ହେ ମହାମୁନେ ! ଅନନ୍ତର ସେହି ଦୁର୍ବୁଦ୍ଧି ନୃପତିଙ୍କୁ ଧିକ୍‌ଶବ୍ଦଦ୍ୱାରା ତେଜୋବିହୀନ କରି ଆପଣଙ୍କ ସାକ୍ଷାତ୍‌ରେ କ୍ଷିତିତଳେ ପାତିତ କରିବୁଁ । ୨୭ । ହେ ମୁନେ ! ଐଶ୍ୱର୍ଯ୍ୟବଳମୋହିତ ପାପକର୍ମା ନହୁଷଙ୍କୁ ଆପଣଙ୍କର ଯେଉଁପରି କରିବାକୁ ଇଚ୍ଛା ହୁଏ, ଆମ୍ଭେ ତାହା କରିବୁଁ ।୨୮। ମୈତ୍ରାବରୁଣି ଅବିନାଶୀ ଅଗସ୍ତ୍ୟ ଭୃଗୁଙ୍କଦ୍ୱାରା ଏହିପରି କଥିତ ହୋଇ ପରମ ପ୍ରୀତ ଓ ବିଜ୍ୱର ହେଲେ । ୨୯ ।

---

## ଅଧ୍ୟାୟ—୧୦୦

ଯୁଧିଷ୍ଠିର କହିଲେ—ନହୁଷ ନୃପତି କେଉଁ ପ୍ରକାରେ ବିପଦଗ୍ରସ୍ତ ହେଲେ ? କିପରି ସେ ଭୂତଳରେ ନିପାତିତ ହେଲେ ? କାହିଁକି ବା ସେ ଇନ୍ଦ୍ରତ୍ୱ ପଦରୁଁ ଭ୍ରଷ୍ଟ ହେଲେ ? ତାହା ଆପଣ କହିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ, ଅଗସ୍ତ୍ୟ ଏବଂ ଭୃଗୁଙ୍କର ଏହିପରି ପରସ୍ପର କଥୋପକଥନ ହେଉଥିବା ସମୟରେ ମହାତ୍ମା ନହୁଷ ନୃପତିଙ୍କର ଦୈବ୍ୟ ଓ ମାନୁଷୀ କ୍ରିୟାସମୂହ ନିର୍ବାହ ହେଲା । ୨ । ସର୍ବୋପକରଣସମ୍ପନ୍ନ ଦୀପଦାନ, ବଳିକର୍ମ ଏବଂ ପୃଥକ୍ ପୃଥକ୍ ରୂପେ ଅନ୍ୟାନ୍ୟ କାର୍ଯ୍ୟସମୂହ ନିର୍ବାହ ହେଲା । ଦେବଲୋକ ଓ ନୃଲୋକରେ ଯେଉଁ ସବୁ ସଦାଚାର ବୁଧଗଣଙ୍କ

ଦ୍ୱାରା ସ୍ତୁତ ହୋଇଅଛୁ, ତାହା ସବୁ ମହାତ୍ମା ଦେବରାଜ ନହୁଷଙ୍କର ସମ୍ପୂର୍ଣ୍ଣ ହେଲା । ୪ । ହେ ରାଜେନ୍ଦ୍ର ! ସାଧୁସମ୍ମତ ସଦାଚାରସମୂହ ଯଦି ସମ୍ପନ୍ନ ହୁଏ, ତେବେ ଗୃହମେଧୀ ମାନବଗଣ ସମୃଦ୍ଧିସମନ୍ୱିତ ହୁଅନ୍ତି । ଧୂପପ୍ରଦାନ, ଦୀପଦାନ, ନମସ୍କାର, ବ୍ରାହ୍ମଣଙ୍କୁ ସିଦ୍ଧାନ୍ନର ଅଗ୍ରଭାଗ ପ୍ରଦାନ ଏବଂ ଗୃହାଙ୍ଗଣରେ ବଳିସମୂହ ପ୍ରଦାନ କଲେ ଦେବଗଣ ପ୍ରୀତ ହୁଅନ୍ତି ।୬। ବଳିକର୍ମ ବିଷୟରେ ଗୃହୀ ବ୍ୟକ୍ତିଙ୍କର ଯେଉଁ ପ୍ରକାର ସନ୍ତୋଷ ହୁଏ, ଦେବତାମାନଙ୍କର ତହିଁରେ ତଦପେକ୍ଷା ଶତଗୁଣ ପ୍ରୀତି ଜାତ ହୁଏ । ୭ ।

ଅତଏବ ସାଧୁଗଣ ଆତ୍ମାଗୁଣାବହ ନମସ୍କାରଯୁକ୍ତ ଧୂପଦାନ ଓ ଦୀପ ପ୍ରଦାନ କରନ୍ତି । ୮ । ବିଦ୍‌ବାନ ବ୍ୟକ୍ତି ପବିତ୍ର ଜଳରେ ସ୍ନାନ କରି ନମସ୍କାରଯୁକ୍ତ ଯେ କୌଣସି କର୍ମ କରନ୍ତି, ଦେବଗଣ ତଦ୍ଦ୍ୱାରା ପ୍ରୀତ ହୁଅନ୍ତି । ୯ । ମହାତ୍ମା ପିତୃଗଣ, ତପୋଧନ ଋଷିଗଣ ଏବଂ ଗୃହଦେବତା ସମୂହ ବିଧିପୂର୍ବକ ଅର୍ଚ୍ଚିତ ହେଲେ ପ୍ରୀତ ହୁଅନ୍ତି । ୧୦ । ନରପତି ନହୁଷ ଏହି ନିମିତ୍ତ ଏତାଦୃଶ ବୁଦ୍ଧି ଅବଲମ୍ବନ କରି ସୁମହତ୍ ସୁରେନ୍ଦ୍ରତ୍ୱ ପ୍ରାପ୍ତ ହୋଇ ଅଦ୍ଭୁତ ରୂପେ ପୂର୍ବୋକ୍ତ କାର୍ଯ୍ୟସମୂହ କରିଥିଲେ । ୧୧ । କିଛିକାଳ ଉତ୍ତାରେ ଭାଗ୍ୟକ୍ଷୟ ସମୟ ଉପସ୍ଥିତ ହେବାରୁ ପୂର୍ବୋକ୍ତ କାର୍ଯ୍ୟମାନଙ୍କରେ ଅବଜ୍ଞା ପୂର୍ବକ ସେ ପଶ୍ଚାତ୍ ବକ୍ତବ୍ୟ କାର୍ଯ୍ୟ ସମୂହ କରିବାକୁ ପ୍ରବୃତ୍ତ ହୋଇଥିଲେ । ୧୨ । ତଦନନ୍ତର ସେ ସୁରେନ୍ଦ୍ର ହୋଇ ବଳିକର୍ମରେ ପରିହୀନ ହେଲେ ଏବଂ ଧୂପଦୀପ ପ୍ରଦାନ ଓ ପିତୃଗଣଙ୍କ ତର୍ପଣବର୍ଜିତ ଯଥା-ବିଧାନରେ ନିର୍ବାହ କରିବାରୁ ବିରତ ହେଲେ ।୧୩। ପରିଶେଷରେ ତଦୀୟ ଯଜ୍ଞସ୍ଥଳକୁ ରାକ୍ଷସଗଣ ଧାବିତ ହେଲେ । ତଦନନ୍ତର ସେହି ମହାବଳ ନୃପତି ଗର୍ବଯୁକ୍ତ ହୋଇ ସରସ୍ୱତୀ କୂଳରୁ ଋଷିଶ୍ରେଷ୍ଠ ଅଗସ୍ତ୍ୟଙ୍କୁ ବାହନ ନିମିତ୍ତ ଅବିଳମ୍ବରେ ଆହ୍ୱାନ କଲେ । ତତ୍ପରେ ମହାତେଜା ଭୃଗୁ ଅଗସ୍ତ୍ୟଙ୍କୁ କହିଲେ (୧୫), ଆମ୍ଭେ ଯାବତ୍ କାଳ ପର୍ଯ୍ୟନ୍ତ ଆପଣଙ୍କ ଜଟାଜୂଟରେ ପ୍ରବେଶ କରିଥିବୁ, ତାବତ୍‌କାଳ ଯାଏ ଆପଣ ନେତ୍ରଦ୍ୱୟ ନିମୀଳନ କରନ୍ତୁ ।

ତଦନନ୍ତର ଅଗସ୍ତ୍ୟ ସ୍ଥାଣୁ ସଦୃଶ ଅଚଳ ଭାବରେ ଅବସ୍ଥାନ କଲେ । ମହାତେଜା ଅଚ୍ୟୁତ ଭୃଗୁ ନହୁଷ ନୃପତିଙ୍କ ନିପାତ ନିମିତ୍ତ ତାହାଙ୍କ ଜଟାଜୂଟରେ ପ୍ରବିଷ୍ଟ ହେଲେ । ହେ ବିଶାଂପତେ ! ତତ୍ପରେ ସୁରରାଜ ବାହନ ନିମିତ୍ତ ସେହି ଅଗସ୍ତ୍ୟ ଋଷିଙ୍କୁ ପ୍ରାପ୍ତ ହେଲେ । ପରିଶେଷରେ ଅଗସ୍ତ୍ୟ ସୁରପତିଙ୍କୁ କହିଲେ, ହେ ସୁରରାଜ ! ଆପଣ ଆମ୍ଭଙ୍କୁ ଯାନରେ

ଯୋଜନ କରନ୍ତୁ । କେଉଁ ସ୍ଥାନକୁ ଆପଣଙ୍କୁ ବହନ କରିବୁ ? ୧୮ । ହେ ସୁରାଧିପ ! ଆପଣ ଯେଉଁ ସ୍ଥାନକୁ କହିବେ, ଆମ୍ଭେ ସେହି ସ୍ଥାନକୁ ଆପଣଙ୍କୁ ନେଇ ଗମନ କରିବୁ । ଅଗସ୍ତ୍ୟ ଏହିପରି କହିବାରୁ ନହୁଷ ସେହି ମୁନିଙ୍କୁ ଯାନରେ ଯୋଜନା କଲେ । ସେ ମହାତ୍ମା ନହୁଷଙ୍କର ବର ପ୍ରଦାନ ପ୍ରଭାବକୁ ଜାଣନ୍ତି, ସୁତରାଂ ତେତେବେଳେ ତାହାଙ୍କର ଦର୍ଶନଗୋଚର ହେଲେ ନାହିଁ । ନହୁଷ ଅଗସ୍ତ୍ୟଙ୍କୁ ଯାନରେ ଯୋଜନା କଲେ ସୁଦ୍ଧା ତେତେବେଳେ ସେ ତାହାଙ୍କଠାରେ କ୍ରୋଧଯୁକ୍ତ ହେଲେ ନାହିଁ । ୨୧ । ହେ ଭାରତ ! ନହୁଷ ନୃପତି ତାହାଙ୍କୁ ପ୍ରତୋଦଦ୍ୱାରା ପ୍ରହାର କଲେ, ତହିଁରେ ସୁଦ୍ଧା ସେହି ଧର୍ମାତ୍ମା ତାହାଙ୍କଠାରେ କ୍ରୋଧଯୁକ୍ତ ହେଲେ ନାହିଁ ।

ତଦନନ୍ତର ଦେବରାଜ ତେତେବେଳେ କ୍ରୁଦ୍ଧ ହୋଇ ଅଗସ୍ତ୍ୟଙ୍କ ମସ୍ତକରେ ବାମ ପାଦଦ୍ୱାରା ଆଘାତ କଲେ । ଅଗସ୍ତ୍ୟଙ୍କ ମସ୍ତକରେ ପଦାଘାତ କଲାରୁ ତଦୀୟ ଜଟାନ୍ତର୍ଗତ ଭୃଗୁ ଅତିଶୟ କ୍ରୁଦ୍ଧ ହୋଇ ପାପଚେତା ନହୁଷଙ୍କୁ ଶାପପ୍ରଦାନ କଲେ, ରେ ଦୁର୍ମତେ ! ତୁ ଯେଉଁ କାରଣରୁ କ୍ରୋଧବଶରେ ଏହି ମହାମୁନିଙ୍କ ମସ୍ତକରେ ପଦାଘାତ କଲୁ, ତନ୍ନିମିତ୍ତ ଅବିଳମ୍ବରେ ସର୍ପ ହୋଇ ମହୀତଳକୁ ଗମନ କର ।

ହେ ଭରତର୍ଷଭ ! ତେତେବେଳେ ନହୁଷ ଅଦୃଷ୍ଟ ଭୃଗୁଙ୍କ ଏତାଦୃଶ ଅଭିଶାପବଶରୁ ସର୍ପ ହୋଇ ଭୂତଳରେ ପତିତ ହେଲେ । ତେତେବେଳେ ନହୁଷ ଯଦି ଭୃଗୁଙ୍କୁ ନୟନଗୋଚର କରିଥାନ୍ତେ, ତେବେ ସେ ତେଜଦ୍ୱାରା ତାହାଙ୍କୁ ପାତିତ କରିପାରି ନ ଥାନ୍ତେ । ମହାରାଜା ନହୁଷ ନୃପତି ଭୂତଳରେ ପତିତ ହୋଇ ସୁଦ୍ଧା ପୂର୍ବୋକ୍ତ ଧୂପ ଦୀପ ପ୍ରଭୃତି ପ୍ରଦାନ ଓ ତପୋନିୟମଦ୍ୱାରା ସ୍ମରଣଶକ୍ତିସମ୍ପନ୍ନ ଥିଲେ । ସେ ଯେଉଁପରି ଶାପର କ୍ଷୟ ହେବ, ତନ୍ନିମିତ୍ତ ଭୃଗୁଙ୍କୁ ପ୍ରସନ୍ନ କରାଇଲେ ।୨୮। ମହାରାଜ ! ତତ୍ପରେ ଅଗସ୍ତ୍ୟ କୃପାବିଷ୍ଟ ହୋଇ ଶାପକ୍ଷୟ ନିମିତ୍ତ ଭୃଗୁଙ୍କୁ ପ୍ରସନ୍ନ କରାଇଲେ । ସେ କୃପାଳୁ ହୋଇ ଶାପକ୍ଷୟର ନିୟମ କହିଲେ ।୨୯।

ଭୃଗୁ କହିଲେ, ଯୁଧିଷ୍ଠିର ନାମକ ଏକ ବଂଶଧର ରାଜା ହେବେ । ସେ ଶାପରୁ ତୁମ୍ଭଙ୍କୁ ମୁକ୍ତ କରିବେ; ଏହି କଥା କହି ଭୃଗୁ ଅନ୍ତର୍ହିତ ହେଲେ । ୩୦ । ମହାତେଜା ଅଗସ୍ତ୍ୟ ମଧ୍ୟ ଶତକ୍ରତୁଙ୍କ କାର୍ଯ୍ୟ କରି ଦ୍ୱିଜାତିଗଣଙ୍କଦ୍ୱାରା ପୂଜ୍ୟମାନ ହୋଇ ସ୍ୱକୀୟ ଆଶ୍ରମ ପ୍ରଦେଶକୁ ଗମନ କଲେ । ୩୧ । ତୁମ୍ଭେ ଏହିନିମିତ୍ତ ନହୁଷଙ୍କୁ ଶାପରୁ ଉଦ୍ଧାର କଲ । ହେ ଜନାଧିପ ! ନହୁଷ ତୁମ୍ଭଦ୍ୱାରା ସମୁଦ୍ଧୃତ ହୋଇ ତୁମ୍ଭ ସାକ୍ଷାତରେ

ବ୍ରହ୍ମଭୁବନକୁ ଗମନ କଲେ ।୩୨। ତେତେବେଳେ ଭୃଗୁ ନହୁଷଙ୍କୁ ପାତିତ କରି ବ୍ରହ୍ମଭୁବନକୁ ଗମନ କଲେ । ୩୩ । ତତ୍ପରେ ପିତାମହ ଦେବରାଜଙ୍କୁ ଆନୟନ ପୂର୍ବକ ଦେବଗଣଙ୍କୁ କହିଲେ, ହେ ଦେବଗଣ ! ଆମ୍ଭର ବରଦାନବଶରୁ ନହୁଷ ଦେବରାଜ୍ୟ ପ୍ରାପ୍ତ ହୋଇଥିଲେ । ୩୪ । ସେ କ୍ରୋଧଯୁକ୍ତ ଅଗସ୍ତ୍ୟଙ୍କଦ୍ୱାରା ଭ୍ରଂଶିତ ହୋଇ ଭୂତଳକୁ ଗମନ କରିଅଛନ୍ତି । ହେ ସୁରଗଣ ! ରାଜାଙ୍କ ବ୍ୟତିରେକେ କୌଣସି ପ୍ରଦେଶରେ କେହି ବାସ କରିପାରନ୍ତି ନାହିଁ, ଅତଏବ ତୁମ୍ଭେମାନେ ଶକ୍ରଙ୍କୁ ପୁନଶ୍ଚ ଦେବରାଜ୍ୟରେ ଅଭିଷିକ୍ତ କର ।

ହେ ନରାଧିପ ପାର୍ଥ ! ଦେବଗଣ ଅତିଶୟ ହର୍ଷାବିଷ୍ଟ ହୋଇ ଏହିପରି ସମ୍ଭାଷମାଣ ପିତାମହଙ୍କୁ "ଏବମସ୍ତୁ" ବୋଲି ପ୍ରତ୍ୟୁତ୍ତର କଲେ । ହେ ରାଜଶାର୍ଦ୍ଦୂଳ ! ବାସବ ଭଗବାନ ବ୍ରହ୍ମାଙ୍କଦ୍ୱାରା ଅଭିଷିକ୍ତ ହୋଇ ପୂର୍ବବତ୍ ବିରାଜିତ ହେଲେ । ନହୁଷଙ୍କର ବ୍ୟତିକ୍ରମ ହେତୁରୁ ପୂର୍ବେ ଏହିପରି ଘଟିଥିଲା । ୩୮ । ସେହି ନହୁଷ ପୂର୍ବୋକ୍ତ କର୍ମସମୂହଦ୍ୱାରା ପୁନଶ୍ଚ ସମ୍ୟକ୍‌ରୂପେ ସିଦ୍ଧିଲାଭ କରିଥିଲେ । ସେହି କାରଣରୁ ଗୃହମେଧିଗଣଙ୍କର ସାୟଂ କାଳରେ ଦୀପଦାନ କରିବାର ଉଚିତ । ୩୯ । ଦୀପଦାତା ନର ପରଲୋକକୁ ଗମନ କରି ଦିବ୍ୟଚକ୍ଷୁ ପ୍ରାପ୍ତ ହୁଅନ୍ତି । ଯାବତ୍‌କାଳ ପର୍ଯ୍ୟନ୍ତ ଚକ୍ଷୁର ନିମେଷସମୂହ ପ୍ରକାଶମାନ ହେଉଥାନ୍ତି, ତାବତ୍‌ପରିମାଣ ବର୍ଷର ଦୀପଦାତୃଗଣ ପୂର୍ଣ୍ଣଚନ୍ଦ୍ରସଦୃଶ ବିରାଜମାନ ହୁଅନ୍ତି । ଦୀପଦାତା ଜନ ରୂପବାନ୍ ଏବଂ କାଳବାନ୍ ହୁଅନ୍ତି । ୪୧ ।

---

## ଅଧ୍ୟାୟ—୧୦୧

ଯୁଧିଷ୍ଠିର କହିଲେ—ହେ ପୁରୁଷଶ୍ରେଷ୍ଠ ! ଯେଉଁ ସବୁ ନୃଶଂସକାରୀ ମଦମତ୍ତ ମୂଢ଼ମାନବ ବ୍ରାହ୍ମଣସ୍ୱ ହରଣ କରନ୍ତି, ସେମାନେ କେଉଁ ସ୍ଥାନକୁ ଗମନ କରନ୍ତି ? ୧ । ଭୀଷ୍ମ କହିଲେ, ହେ ଭାରତ ! ପଣ୍ଡିତଗଣ ଏ ବିଷୟରେ କୌଣସି କ୍ଷତ୍ରିୟ ଓ ଚଣ୍ଡାଳ ସଂବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି । ୨ ।

କ୍ଷତ୍ରିୟ କହିଲେ, ହେ ଚଣ୍ଡାଳ ! ତୁମ୍ଭେ ବୃଦ୍ଧ ହୋଇଅଛ, ଅଥଚ ବାଳକ ସଦୃଶ ଚେଷ୍ଟା କରୁଅଛ । ତୁମ୍ଭେ କୁକୁର ଓ ଖର ନିକରର ରଜଦ୍ୱାରା

ଅବଗୁଣ୍ଠିତ ହୋଇ କାହିଁକି ଗୋସମୂହର ଉଦ୍‌ବେଗଜନକ ହେଉ-ଅଛ ? ୩ । ସାଧୁମାନେ ଏହି ନିମିତ୍ତ ଚଣ୍ଡାଳର କର୍ମକୁ ଗର୍ହିତ ବୋଲି କହନ୍ତି । ତୁମ୍ଭେ କାହିଁକି ଗୋସମୂହର କ୍ଷୀରବିନ୍ଦୁପର୍ଯ୍ୟାପ୍ତ ଶରୀରକୁ ଜଳ-କୁଣ୍ଡ ମଧ୍ୟରେ ନିକ୍ଷିପ୍ତ କରୁଅଛ ? ୪ ।

ଚଣ୍ଡାଳ କହିଲା, ରାଜନ୍ ! ପୂର୍ବକାଳରେ କୌଣସି ବ୍ରାହ୍ମଣଙ୍କର ଗୋଗଣ ହୃତ ହେବାରୁ ସେହିମାନଙ୍କର କ୍ଷରିତ କ୍ଷୀରବିନ୍ଦୁ ସୋମରସ ବିନଷ୍ଟ କରିଥିଲା । ଯେଉଁ ଦ୍ୱିଜଗଣ ସେହି ସୋମରସ ପାନ କରିଥିଲେ, ସେ ଏବଂ ଯଜ୍ଞଦୀକ୍ଷିତ ନୃପତି ମଧ୍ୟ ସେହି କ୍ଷୀରବିନ୍ଦୁ ବିମିଶ୍ର ସୋମରସ ପାନ କରି ଯାଜକଗଣଙ୍କ ସହିତ ସେହି ବ୍ରହ୍ମସ୍ୱକୁ ଉପଜୀବ୍ୟ କରିବାରୁ ନରକ-ଗାମୀ ହୋଇଥିଲେ । ୬ । ଯେଉଁ ସମସ୍ତ ବ୍ରାହ୍ମଣ, କ୍ଷତ୍ରିୟ ଓ ଅନ୍ୟାନ୍ୟ ନରଗଣ ସେହି ଗୋହରଣକାରୀମାନଙ୍କ ଗୃହରେ ଘୃତ ଓ ଦଧି ଦୁଗ୍ଧପାନ କରିଥିଲେ, ସେମାନେ ସମସ୍ତେ ନରକରେ ନିମଗ୍ନ ହେଲେ । ୭ । ଗୋବୃନ୍ଦ ସାଧୁ ବ୍ୟବହାର ଦ୍ୱାରା ପଶୁଗଣଙ୍କୁ ଅବେକ୍ଷଣ କରି ସ୍ୱାମୀ ଓ ବତ୍ସ ବିଯୋଗ ବଶରୁ ଗାତ୍ର କମ୍ପିତ କରି ଯେଉଁମାନେ ସେମାନଙ୍କୁ ହରଣ କରିଥିଲେ, ସେମାନଙ୍କ ପୁତ୍ର ପୌତ୍ରବୃନ୍ଦଙ୍କୁ ଏବଂ ସେହି ଦମ୍ପତିଙ୍କୁ ଅଳ୍ପାୟୁ କରି-ଥିଲେ । ୮ ।

ହେ ରାଜନ୍ ! ଆମ୍ଭେ ବ୍ରହ୍ମଚାରୀ ଓ ଜିତେନ୍ଦ୍ରିୟ ହୋଇ ସେହି ଗୋହରଣକାରୀ ମାନବଙ୍କ ଗୃହରେ ବସତି କରିଥିଲୁଁ । ହେ ଜନାଧିପ ! ସେହି ଅପହୃତ ଗୋସମୂହର ରଜୋଦ୍ୱାରା ଆମ୍ଭର ଭିକ୍ଷାନ୍ନସମୂହ ନଷ୍ଟ ହୋଇଥିଲା । ୯ । ହେ ରାଜନ୍ ! ଆମ୍ଭେ ସେହି ଗୋରଜୋବିମିଶ୍ର ଅନ୍ନ ଭକ୍ଷଣ କରିଥିଲୁ ବୋଲି ଚଣ୍ଡାଳ ହେଲୁଁ .ଏବଂ ସେହି ବ୍ରହ୍ମସ୍ୱ ହରଣକାରୀ ନୃପତି ମଧ୍ୟ ଅପ୍ରତିଷ୍ଠ ଗତିକି ପ୍ରାପ୍ତ ହେଲେ । ୧୦ । ଅତଏବ କଦାପି କୌଣସି ବ୍ରାହ୍ମଣସ୍ୱ ଅପହରଣ କରିବାର ଉଚିତ ନୁହେଁ । ବ୍ରହ୍ମସ୍ୱ ରଜୋ-ଦ୍ୱାରା ବିଧ୍ୱସ୍ତ ଭିକ୍ଷାନ୍ନ ଭୋଜନ କରିବାରୁ ଆମ୍ଭେ ଯେଉଁ ପ୍ରକାର ହୋଇଅଛୁ ତାହା ଅବଲୋକନ କରନ୍ତୁ । ୧୧ । ବିପଶ୍ଚିତ ପୁରୁଷ କଦାପି ସୋମ ବିକ୍ରୟ କରିବେ ନାହିଁ । ଇହଲୋକରେ ସୋମ ବିକ୍ରୟ କଲେ ମନୀଷୀଗଣ ବିଶେଷ ରୂପେ ନିନ୍ଦା କରନ୍ତି । ୧୨ । ହେ ତାତ ! ଯେଉଁମାନେ ସୋମ ବିକ୍ରୟ କରନ୍ତି; ଏବଂ ଯେଉଁ ସମସ୍ତ ବ୍ୟକ୍ତି ତାହା କ୍ରୟ କରନ୍ତି, ସେମାନେ ସମସ୍ତେ ଶମନ ସନ୍ନିଧିରେ ଉପନୀତ ହୋଇ ରୌରବ ନରକକୁ ଗମନ କରନ୍ତି । ୧୩ ।

ଶ୍ରୋତ୍ରିୟ ବ୍ରାହ୍ମଣ ବଧପୂର୍ବକ ବ୍ରହ୍ମସ୍ୱ ସମ୍ପତ୍ତି ସୋମରସ ବିକ୍ରୟ କରି ବାର୍ଦ୍ଧୁଷୀ ଅର୍ଥାତ୍ ବୃଦ୍ଧିଜୀବୀ ହୋଇ ଅବଲମ୍ବରେ ଯେ ବିନାଶପ୍ରାପ୍ତ ନୁହନ୍ତି, ଏମନ୍ତ ନୁହେଁ, ସେ ଷିଶତ ନରକ ପରିଭ୍ରମଣ କରି ବିଷ୍ଠାକୁ ଉପଜୀବ୍ୟ କରିଥାନ୍ତି । ଚିରକାଳ ନରକରେ ନିବାସ କରିବା ହେତୁରୁ ବିନାଶପ୍ରାପ୍ତ ହୁଅନ୍ତି । ମିତ୍ରସେବା, ଅଭିମାନ ଓ ସଖାର ବନିତାଠାରେ ଅତ୍ୟାସ୍ପୃହ ଏହି ତିନିଗୁଣକୁ ତୁଳାଦଣ୍ଡରେ ଧାରଣ କରି ତୁଳ୍ୟଜ୍ଞାନ କରି ଅଭିମାନୀ ନର ଧର୍ମକୁ ଅତିକ୍ରମ ପୂର୍ବକ ରକ୍ତ ହୁଅନ୍ତି, ଅର୍ଥାତ୍ ଅଭିମାନୀ ନର ମିତ୍ରସେବୀ ଓ ସଖୀ ବନିତାର ଅପହାରକ, ଏହି ପୁରୁଷଦ୍ୱୟଙ୍କ ଅପେକ୍ଷା ସମଧିକ ପାପୀ । ପାପିଷ୍ଠ କୁକୁର ବିବର୍ଣ୍ଣ ଓ କୃଶ ଅଟେ । ଅବଲୋକନ କରନ୍ତୁ କୁକୁର ସମସ୍ତ ଭୂତଙ୍କ ପ୍ରତି କୁପିତ ହୋଇ ଅଭିମାନବଶରୁ ଈଦୃଶ ଗତିପ୍ରାପ୍ତ ହୋଇଅଛୁ । ହେ ବିଭୋ ! ଆମ୍ଭେ ଅନ୍ୟ ଜନ୍ମରେ ଧନ-ସମନ୍ୱିତ ବିପୁଳ କୁଳରେ ଜନ୍ମଗ୍ରହଣ କରି ଜ୍ଞାନବିଜ୍ଞାନପାରଗ ହୋଇ-ଥିଲୁଁ ।

ତେତେବେଳେ ଏହି ସବୁ ଦୋଷର ବିଷୟ ଜାଣି ସୁଦ୍ଧା ଆମ୍ଭେ ଅଭିମାନବଶତଃ କ୍ରୁଦ୍ଧ ହୋଇ ଲୋକବୃନ୍ଦର ପୃଷ୍ଠ ମାଂସ ଭୋଜନ କରି-ଥାଉଁ; ଆମ୍ଭେ ସେହି ଚରିତ୍ର ଓ ତାଦୃଶ ଭୋଜନ ଦ୍ୱାରା ଏହି ଅବସ୍ଥାକୁ ପ୍ରାପ୍ତ ହୋଇଅଛୁ । ଅତଏବ କାଳର ବିପର୍ଯ୍ୟୟକୁ ଅବଲୋକନ କରନ୍ତୁ । ଆମ୍ଭଙ୍କୁ ତୀକ୍ଷ୍ଣ ତୁଣ୍ଡ ଭ୍ରମରମାନଙ୍କ ଦ୍ୱାରା ପୀଡ଼୍ୟମାନ ଆପାଦ୍ରତେଳାନ୍ତସଦୃଶ ଅତିଶୟ ସଂରବ୍ଧ ହୋଇ ଧାବମାନ ଏବଂ ରଜୋଗୁଣାନ୍ୱିତ ଅବଲୋକନ କରନ୍ତୁ । ଗୃହମେଧୀ ନରଗଣ ସ୍ୱାଧ୍ୟାୟପାଠ ଓ ନାନାବିଧ ଦାନଦ୍ୱାରା ମହତ୍ ପାପ ହରଣ କରନ୍ତି । ୨୧ । ମନୀଷୀଗଣ ଯେଉଁପରି କହନ୍ତି, ତଦନୁସାରେ ଆଶ୍ରମସ୍ଥ ପାପକାରୀ ସର୍ବସଙ୍ଗବିନିର୍ମୁକ୍ତ ବିପ୍ରଙ୍କୁ ବେଦସମୂହ ସମୁତ୍ତୀର୍ଣ୍ଣ କରନ୍ତି । ଅର୍ଥାତ୍ ବ୍ରାହ୍ମଣ ପାପୀ ହେଲେ ସଙ୍ଗବିରହିତ ହୋଇ ଆଶ୍ରମରେ ଅବସ୍ଥାନ ପୂର୍ବକ ବେଦାଧ୍ୟୟନ କରି ପାପରୁ ମୁକ୍ତ ହୁଅନ୍ତି । ହେ କ୍ଷତ୍ରିୟବର ମହୀପାଳ ! ଆମ୍ଭେ ଅତି ପାପଯୋନିରେ ଜନ୍ମଗ୍ରହଣ କରି-ଅଛୁ, ସୁତରାଂ କେଉଁପରି ପାପରୁ ମୁକ୍ତ ହେବୁ; ତାହା କିଛି ନିଶ୍ଚୟ କରି ପାରୁନାହୁଁ । ୨୩ । ହେ ନୃପ ! ଆମ୍ଭେ ପୂର୍ବଜନ୍ମକୃତ କୌଣସି ପୁଣ୍ୟ କର୍ମଦ୍ୱାରା ଜାତିସ୍ମର ହୋଇଅଛୁ । ଅତଏବ ସେହି କାରଣରୁ ମୋକ୍ଷ ଅଭିଳାଷ କରିଅଛୁ । ୨୪ । ହେ ସତ୍ତମ ! ଆପଣ ସଂଶୟ ପ୍ରଶ୍ନକାରକ ଶରଣାଗତ ଏହି ଜନକୁ କୃପା କରି କହନ୍ତୁ, ଆମ୍ଭେ କେଉଁପରି ଚଣ୍ଡାଳତ୍ୱରୁ ବିମୁକ୍ତ ହେବୁ । ୨୫ ।

ଋଷିପୁତ୍ର କହିଲେ, ହେ ଶୃଗାଳ ! ତୁମ୍ଭେ ଯାହାଦ୍ୱାରା ମୋକ୍ଷପ୍ରାପ୍ତ ହେବ, ତଦ୍‌ବିଷୟରେ ପ୍ରତିଜ୍ଞା କର । ତୁମ୍ଭେ ବ୍ରାହ୍ମଣ ନିମିତ୍ତ ପ୍ରାଣତ୍ୟାଗ କଲେ ଅଭିଳଷିତ ଗତି ପ୍ରାପ୍ତ ହେବ, ବ୍ରାହ୍ମଣଙ୍କ ନିମିତ୍ତ ରାକ୍ଷସଗଣଙ୍କୁ ଦେହଦାନପୂର୍ବକ ସମରାନଳରେ ପ୍ରାଣ ସମର୍ପଣ କଲେ ତୁମ୍ଭର ମୋକ୍ଷ ହେବ, ଅନ୍ୟଥା ଆଚରଣ କଲେ ମୋକ୍ଷଲାଭ ହେବ ନାହିଁ । ୨୭ । ଭୀଷ୍ମ କହିଲେ, ହେ ଶତ୍ରୁତାପନ ! ତେତେବେଳେ ଶୃଗାଳ ସେହି ଋଷିପୁତ୍ରଙ୍କଦ୍ୱାରା ଏହିପରି କଥିତ ହୋଇ ବ୍ରାହ୍ମଣସ୍ୱ ନିମିତ୍ତ ରଣମୁଖରେ ପ୍ରାଣ ସମର୍ପଣ ପୂର୍ବକ ଅଭିଳଷିତ ଗତି ଲାଭ କରିଥିଲେ । ୨୮ । ହେ ପୁତ୍ର ଭରତଶ୍ରେଷ୍ଠ ମହାବାହୋ ! ତୁମ୍ଭେ ଯଦି ଆପଣାର ଶାଶ୍ୱତ ଗତିକି ଇଚ୍ଛା କର, ତେବେ ସର୍ବଦା ବ୍ରହ୍ମସ୍ୱ ରକ୍ଷା କରିବ । ୨୯ ।

---

## ଅଧ୍ୟାୟ—୧୦୨

ଯୁଧିଷ୍ଠିର କହିଲେ—ହେ ପିତାମହ ! ସୁକୃତଶାଳୀ ମାନବଗଣ ସମସ୍ତେ ଏକଲୋକରେ ଅବସ୍ଥିତି କରନ୍ତି, ଅଥବା ସେହି ସ୍ଥାନରେ ସେମାନେ ଭିନ୍ନ ଭିନ୍ନ ଲୋକରେ ବାସ କରନ୍ତି, ଆପଣ ଆମ୍ଭ ନିକଟରେ ତାହା କୀର୍ତ୍ତନ କରନ୍ତୁ । ୧ ।

ଭୀଷ୍ମ କହିଲେ, ହେ ପାର୍ଥ ! ନରଗଣ କର୍ମଦ୍ୱାରା ନାନାବିଧ ଲୋକକୁ ଗମନ କରନ୍ତି । ପୁଣ୍ୟକାରୀ ଜନଗଣ ପୁଣ୍ୟ ଲୋକସମୂହକୁ ଗମନ କରନ୍ତି ଓ ପାପକାରୀ ଲୋକବୃନ୍ଦ ପାପଲୋକସମୂହକୁ ଗମନ କରନ୍ତି । ୨ । ହେ ତାତ ! ପଣ୍ଡିତଗଣ ଏହି ବିଷୟରେ ବାସବ ଏବଂ ଗୌତମ ମୁନିଙ୍କ ସମ୍ବାଦ-ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି । ୩ ।

ଗୌତମ ନାମକ ଜିତେନ୍ଦ୍ରିୟ ମୃଦୁସ୍ୱଭାବ ଦମଗୁଣସମ୍ପନ୍ନ ବ୍ରତଧାରୀ କୌଣସି ବ୍ରାହ୍ମଣ ମହାରଣ୍ୟରେ ମାତୃହୀନ, ସେହି କାରଣରୁ ଅତିଶୟ ଦୁଃଖିତ ଗୋଟିଏ ହସ୍ତୀଶିଶୁକୁ ଅବଲୋକନ କରି ସଦୟ ହୋଇ ତାହାକୁ ପୋଷଣପୂର୍ବକ ଜୀବିତ କରି ରଖିଲେ । ମାତଙ୍ଗଶାବକ ଦୀର୍ଘକାଳରେ ଅତି ବଳବାନ୍ ଓ ମହାକାୟ ହେଲା । ୪ । ଦେବରାଜ ପ୍ରସୃତ ପର୍ବତୋପମ ସେହି ମଦସ୍ରାବୀ ମହାହସ୍ତୀକୁ ଅବଲୋକନପୂର୍ବକ ଧୃତରାଷ୍ଟ୍ରଙ୍କ ରୂପ ଧାରଣ

କର ତାହାକୁ ଗ୍ରହଣ କଲେ । ୭ । ମହାତପସ୍ୱୀ ସଂଶିତବ୍ରତ ତପସ୍ୱୀ ଗୌତମ ସେହି ହ୍ରୀପ୍ରମାଣ ହସ୍ତୀକୁ ଦେଖି ରଜା ଧୃତରାଷ୍ଟ୍ରଙ୍କୁ କହିଲେ (୭), ହେ ଅକୃତଜ୍ଞ ଧୃତରାଷ୍ଟ୍ର ! ଆମ୍ଭର ଅତି ଦୁଃଖରେ ପୋଷିତ ଏହି ପୁତ୍ରସଦୃଶ ହସ୍ତୀକୁ ତୁମ୍ଭେ ହରଣ କରନା । ସାଧୁଗଣ ସପ୍ତପଦ ଉଚ୍ଚାରଣ ହେତୁରୁ ମୈତ୍ରୀ ବନ୍ଧନ କରନ୍ତି, ଅତଏବ ହେ ରଜନ୍ ! ମିତ୍ରଦ୍ରୋହ ତୁମ୍ଭଙ୍କୁ ସ୍ପର୍ଶ ନ କରୁ । ୮ । ଏହି ହସ୍ତୀ ଯୂଥଭ୍ରଷ୍ଟ ହୋଇ ଆମ୍ଭ ଆଶ୍ରମରେ ଅବସ୍ଥାନ କରି ଆମ୍ଭଙ୍କୁ କାଷ୍ଠ ଓ ଜଳ ପ୍ରଦାନ କରେ, ଆଚାର୍ଯ୍ୟ କୁଳରେ ଅତି ବିନୀତ , ଗୁରୁଙ୍କ କାର୍ଯ୍ୟରେ ନିଯୁକ୍ତ, ଶିଷ୍ଟ, ଦାନ୍ତ, କୃତଜ୍ଞ ଏବଂ ସର୍ବଦା ଆମ୍ଭର ପ୍ରିୟ । ଅତଏବ ହେ ରଜନ୍ ! ଆମ୍ଭେ ଏହିପରି କରୁଣ ଶବ୍ଦ କରୁଥିବା ସମୟରେ ତୁମ୍ଭର ହସ୍ତୀହରଣ କରିବା ଉଚିତ ନୁହେଁ । ୧୦ ।

ଧୃତରାଷ୍ଟ୍ର କହିଲେ, ମହର୍ଷେ ! ଆମ୍ଭେ ଆପଣଙ୍କୁ ସହସ୍ର ଗୋଦାନ, ଶତ ଦାସୀ, ପଞ୍ଚଶତ ନିଷ୍କ ଏବଂ ଅନ୍ୟାନ୍ୟ ବିବିଧ ବସ୍ତୁ ବିତରଣ କରୁଅଛୁଁ । ଆପଣ ବ୍ରାହ୍ମଣ, ଆପଣଙ୍କର କୁଞ୍ଜରରେ ପ୍ରୟୋଜନ କି ? ୧୧ ।

ଗୌତମ କହିଲେ, ହେ ରଜନ୍ ! ନରେନ୍ଦ୍ର ! ଗୋଗଣ, ଦାସୀ-ସମୂହ, ନିଷ୍କ ସହିତ ବହୁବିଧ ରତ୍ନ ଏବଂ ଅନ୍ୟ ପ୍ରକାର ବିବିଧ ବିତ୍ତସବୁ ତୁମ୍ଭଠି ରହୁ, ଇହଲୋକରେ ବ୍ରାହ୍ମଣଙ୍କର ଧନରେ କି ପ୍ରୟୋଜନ ? ୧୨ ।

ଧୃତରାଷ୍ଟ୍ର କହିଲେ, ହେ ବିପ୍ର ! ବ୍ରାହ୍ମଣଗଣଙ୍କର ହସ୍ତୀଦ୍ୱାରା କୌଣସି କାର୍ଯ୍ୟ ହୁଏ ନାହିଁ । ନାଗସମୂହ କ୍ଷତ୍ରିୟମାନଙ୍କର ବାହନ, ସୁତରାଂ ସ୍ୱକୀୟ ବାହନ ଏହି ନାଗଶ୍ରେଷ୍ଠ ଘେନିଗଲେ ଆମ୍ଭର କୌଣସି ଅଧର୍ମ ନାହିଁ । ଅତଏବ ହେ ଗୌତମ ! ଆପଣ ଏଥିରୁ ନିବୃତ୍ତ ହୁଅନ୍ତୁ । ୧୩ ।

ଗୌତମ କହିଲେ, ହେ ମହାତ୍ମନ୍ ! ଯେଉଁ ସ୍ଥାନରେ ପୁଣ୍ୟକର୍ମା ପ୍ରେତ ଆନନ୍ଦିତ ହୁଅନ୍ତି, ଏବଂ ପାପକର୍ମା ପ୍ରେତ ଶୋକ କରନ୍ତି, ସେହି ବୈବସ୍ୱତଙ୍କ ଭବନରେ ଆମ୍ଭେ ତୁମ୍ଭ ନିକଟରୁ ଏହି ସ୍ୱକୀୟ ହସ୍ତୀକୁ ଗ୍ରହଣ କରିବୁଁ । ୧୪ ।

ଧୃତରାଷ୍ଟ୍ର କହିଲେ, ଯେଉଁମାନେ କ୍ରିୟାଶୂନ୍ୟ, ନାସ୍ତିକ, ଶ୍ରଦ୍ଧାହୀନ, ପାପାତ୍ମା ଏବଂ ଇନ୍ଦ୍ରିୟବିଷୟରେ ନିଯୁକ୍ତ ନିବିଷ୍ଟ, ସେମାନେ ଯାତନା ଭୋଗ କରନ୍ତି, କିନ୍ତୁ ଧୃତରାଷ୍ଟ୍ର ସେଠାକୁ ଗମନ କରିବେ ନାହିଁ । ୧୫ ।

ଗୌତମ କହିଲେ, ଯମପୁରୀ ସହସ୍ର ଜନଗଣଙ୍କର ସଂଯମନ-କାରିଣୀ, ଯେଉଁ ସ୍ଥାନରେ ମିଥ୍ୟା କଥିତ ହୁଏ ନାହିଁ ; କେବଳ ସତ୍ୟ ବିରାଜିତ ହୁଏ ; ଯେଉଁ ସ୍ଥାନରେ ଦୁର୍ବଳମାନେ ବଳବାନ୍‌ମାନଙ୍କୁ ଯାତନା

ଦାନ କରନ୍ତି; ସେହି ସ୍ଥାନରେ ଆମ୍ଭେ ତୁମ୍ଭଠାରୁ ସ୍ୱୀୟ ହସ୍ତୀକୁ ଗ୍ରହଣ କରିବୁଁ । ୧୬ ।

ଧୃତରାଷ୍ଟ୍ର କହିଲେ, ମହର୍ଷେ ! ଯେଉଁସବୁ ମଦମତ୍ତ ମାନବ ଜ୍ୟେଷ୍ଠା ଭଗ୍ନୀ ଏବଂ ପିତାମାତାଙ୍କଠାରେ ଶତ୍ରୁତାଚରଣ କରନ୍ତି, ତାଦୃଶ ଲୋକ-ଗଣଙ୍କ ନିମିତ୍ତ ଏହି ଯମଲୋକ ସୃଷ୍ଟ ହୋଇଅଛି ; କିନ୍ତୁ ଧୃତରାଷ୍ଟ୍ର ସେଠାକୁ ଗମନ କରିବେ ନାହିଁ । ୧୭ ।

ଗୌତମ କହିଲେ, କୁବେର ରାଜାଙ୍କର ଭୋଗୀଜନ ପ୍ରବେଶ୍ୟ । ମହାଭାବ ! ମନ୍ଦାକିନୀ ନଦୀ, ଯାହାକୁ ଗନ୍ଧର୍ବ, ଯକ୍ଷ ଓ ଅପ୍‌ସରାଗଣ ସର୍ବଦା ସେବା କରନ୍ତି, ସେହି ସ୍ଥାନରେ ଆମ୍ଭେ ସ୍ୱକୀୟ ଫଳସ୍ୱରୂପ ହସ୍ତୀକୁ ତୁମ୍ଭଠାରୁ ଗ୍ରହଣ କରିବୁଁ । ୧୮ । ଧୃତରାଷ୍ଟ୍ର କହିଲେ, ଯେଉଁସବୁ ଅତିଥି ସୁବ୍ରତ ଜନଗଣ ବ୍ରାହ୍ମଣସମୂହକୁ ଆଶ୍ରୟ ପ୍ରଦାନ କରନ୍ତି ଓ ଆଶ୍ରିତ ଜନଗଣଙ୍କୁ ସଂବିଭାଗ କରି ଅବଶିଷ୍ଟ ଅନ୍ନାଦି ଭୋଜନ କରନ୍ତି, ସେମାନେ ମନ୍ଦାକିନୀଙ୍କୁ ବିଭୂଷିତ କରନ୍ତି । ୧୯ ।

ଗୌତମ କହିଲେ, ସୁମେରୁ ଅଗ୍ରଭାଗରେ ଯେଉଁ ସୁପ୍ରଷ୍ଫୁଟିତ କିନ୍ନରରା-ଗୀତସମନ୍ୱିତ ରମଣୀୟ ବନ ବିରାଜ କରିଅଛି, ଏବଂ ଯେଉଁ ସ୍ଥାନରେ ସୁଦର୍ଶନ, ବିଶାଳ ଜମ୍ବୁବୃକ୍ଷ ବିଦ୍ୟମାନ ରହିଅଛି, ସେହି ସ୍ଥାନରେ ଆମ୍ଭେ ତୁମ୍ଭଠାରୁ ସ୍ୱୀୟ ଫଳ ଗ୍ରହଣ କରିବୁଁ । ୨୦ ।

ଧୃତରାଷ୍ଟ୍ର କହିଲେ, ଯେଉଁସବୁ ବ୍ରାହ୍ମଣ ମୃଦୁସ୍ୱଭାବ, ସତ୍ୟଶୀଳ ଓ ବହୁଶାସ୍ତ୍ର ଶ୍ରବଣ କରିଥାଆନ୍ତି, ଏବଂ ଯେଉଁମାନେ ସର୍ବଭୂତର ମନୋରମ ଇତିହାସ ସହିତ ପୁରାଣସମୂହ ଅଧ୍ୟୟନ କରିଥାଆନ୍ତି ଏବଂ ମଧୁ ଆହୁତିଦ୍ୱାରା ବ୍ରାହ୍ମଣଗଣଙ୍କର ପ୍ରୀତି ବିଧାନ କରନ୍ତି, ହେ ମହର୍ଷେ ! ତଥାବିଧ ଲୋକସମୂହରେ ବାସ କରିବା ନିମିତ୍ତ ଉଲ୍ଲିଖିତ ଲୋକମାନେ ନିର୍ମିତ ହୋଇଅଛନ୍ତି । କିନ୍ତୁ ଧୃତରାଷ୍ଟ୍ର ସେହି ସ୍ଥାନକୁ ଗମନ କରିବେ ନାହିଁ । ଅତଏବ ଆପଣଙ୍କର ବିଦିତ ଯଦି କୌଣସି ସ୍ଥାନ ଥାଏ, ତାହା କହନ୍ତୁ । ଆମ୍ଭେ ସତ୍ୱର ସେହି ସ୍ଥାନକୁ ଗମନ କରିବୁଁ । ୨୨ । ଗୌତମ କହିଲେ, ସୁରୁଚିର କୁସୁମସମନ୍ୱିତ କିନ୍ନରରାଜସେବିତ ଦେବର୍ଷି ନାରଦ, ଗନ୍ଧର୍ବ ଓ ଅପ୍‌ସରାଗଣଙ୍କର ନିୟତପ୍ରିୟ ନନ୍ଦନ ନାମକ ଏକ କାନନ ଅଛି । ସେହି ସ୍ଥାନରେ ଆମ୍ଭେ ତୁମ୍ଭଠାରୁ ସ୍ୱୀୟ କୁଞ୍ଜର ଗ୍ରହଣ କରିବୁ । ୨୩ ।

ଧୃତରାଷ୍ଟ୍ର କହିଲେ, ଯେଉଁସବୁ ମାନବ ନୃତ୍ୟଗୀତ ବିଷୟରେ ନିପୁଣ, ଅଯାଚମାନ, ସର୍ବଦା ସହିତ ହୋଇ ବିଚରଣ କରନ୍ତି, ହେ

ମହର୍ଷେ ! ସେହି ଲୋକ ତଥାବିଧ ମାନବଗଣଙ୍କ ନିମିତ୍ତ; କିନ୍ତୁ ଧୃତରାଷ୍ଟ୍ର ସେଠାକୁ ଗମନ କରିବେ ନାହିଁ । ୨୪ ।

ଗୌତମ କହିଲେ, ହେ ନରେନ୍ଦ୍ର ! ଯେଉଁ ସ୍ଥାନରେ ଉତ୍ତରକୁରୁ-ଦେଶବାସୀ ଜନଗଣ ଦେବଗଣଙ୍କ ସହିତ ଆନନ୍ଦ ଉପଭୋଗ କରନ୍ତି, ଯେଉଁ ସ୍ଥାନରେ ଅଗ୍ନିଯୋନିଜ, ଜଳଯୋନିଜ, ଓ ପର୍ବତଯୋନିଜ ଜନଗଣ ବସତି କରନ୍ତି, ଯେଉଁ ସ୍ଥାନରେ ସୁରରାଜ ସମସ୍ତ ଅଭିଳଷିତ ବିଷୟସବୁ ବର୍ଷଣ କରନ୍ତି, ଯେଉଁ ସ୍ଥାନରେ କାମିନୀଗଣ ସ୍ୱେଚ୍ଛାଚାରିଣୀ ହୁଅନ୍ତି, ଯେଉଁ ସ୍ଥାନରେ ସ୍ତ୍ରୀ ପୁରୁଷଗଣଙ୍କର ମନୋମଧ୍ୟରେ କିଛିମାତ୍ର ଈର୍ଷା ନାହିଁ, ଆମ୍ଭେ ସେହି ସ୍ଥାନରେ ତୁମ୍ଭଠାରୁ ଆମ୍ଭର କୁଞ୍ଜର ଗ୍ରହଣ କରିବୁ । ୨୭ ।

ଧୃତରାଷ୍ଟ୍ର କହିଲେ, ଯେଉଁମାନେ ସର୍ବଭୂତରେ ନିବୃତ୍ତିକାମ ହୋଇ ମାଂସଭକ୍ଷଣ ନ କରନ୍ତି ଏବଂ ନ୍ୟସ୍ତଦଣ୍ଡ ହୋଇ ବିଚରଣ କରନ୍ତି, ଯେଉଁମାନେ ସ୍ଥାବର ଜଙ୍ଗମ ଭୂତଗଣଙ୍କର ହିଂସା ନ କରନ୍ତି, ଯେଉଁ-ମାନେ ସର୍ବଭୂତର ଆତ୍ମାଭୂତ (୨୭), ଆଶାବିହୀନ, ନିର୍ମମ, ବୀତରାଗ, ଲାଭାଲାଭରେ ନିନ୍ଦାପ୍ରଶଂସାରେ ତୁଲ୍ୟଜ୍ଞାନ, ହେ ମହର୍ଷେ ! ତଥାବିଧ ଲୋକସମୂହ ନିମିତ୍ତ ସେହି ଲୋକ ନିର୍ମିତ ହୋଇଅଛି; କିନ୍ତୁ ଧୃତରାଷ୍ଟ୍ର ସେହି ସ୍ଥାନକୁ ଗମନ କରିବେ ନାହିଁ । ୨୮ ।

ଗୌତମ କହିଲେ, ତାହାଠାରୁ ଉତ୍କୃଷ୍ଟତର ପବିତ୍ର ଗନ୍ଧଯୁକ୍ତ ରଜୋଗୁଣବିରହିତ, ଶୋକଶୂନ୍ୟ ସନାତନ ଲୋକସମୂହ ମହାତ୍ମା ସୋମ-ରାଜାଙ୍କ ସଦନରେ ଶୋଭା ପାଉଅଛି । ସେହି ସ୍ଥାନରେ ଆମ୍ଭେ ତୁମ୍ଭଠାରୁ ସ୍ୱକୀୟ ଫଳ ସ୍ୱରୂପ ହସ୍ତୀକୁ ଗ୍ରହଣ କରିବୁ । ୨୯ ।

ଧୃତରାଷ୍ଟ୍ର କହିଲେ, ଯେଉଁସବୁ ଦାନଶୀଳ ମାନବ ସର୍ବଦା ପ୍ରତି-ଗ୍ରହଣ ନ କରନ୍ତି ଏବଂ ଅନ୍ୟ ନିକଟରୁ ଅର୍ଥ ଆଦାନ ନ କରନ୍ତି, ପୂଜ୍ୟ ବ୍ୟକ୍ତିଗଣଙ୍କୁ ଯେଉଁମାନଙ୍କର କିଛି ଅଦେୟ ନାହିଁ, ଯେଉଁମାନେ ଆତିଥ୍ୟ କରିଥାଆନ୍ତି ଏବଂ ଯେଉଁମାନେ ସୁପ୍ରସନ୍ନ, କ୍ଷମାଶୀଳ, ଅନ୍ୟ ବ୍ୟକ୍ତି ନିକଟରେ କଳ୍ପନା ଜଳ୍ପନା ନ କରନ୍ତି, ଯେଉଁମାନେ ଜୀବମାନଙ୍କର ଆଚ୍ଛାଦନା ସ୍ୱରୂପରେ ସର୍ବଦା ରକ୍ଷା କରନ୍ତି ଏବଂ ଯେଉଁମାନେ ପୁଣ୍ୟଶୀଳ, ହେ ମହର୍ଷେ ! ତଥାବିଧ ଲୋକସମୂହ ନିମିତ୍ତ ସେହି ଲୋକ ନିର୍ମିତ ହୋଇ-ଅଛି, କିନ୍ତୁ ଧୃତରାଷ୍ଟ୍ର ସେଠାକୁ ଗମନ କରିବେ ନାହିଁ । ୩୧ ।

ଗୌତମ କହିଲେ, ମହାତ୍ମନ୍ ! ଆଦିତ୍ୟଲୋକରେ ତଥାବିଧ ରଜୋବିହୀନ ତମୋହୀନ ଏବଂ ଶୋକସମ୍ପର୍କଶୂନ୍ୟ ସୁଶୋଭିତ ସନାତନ ଲୋକସମୂହ ଅଛି । ସେହି ସ୍ଥାନରେ ଆମ୍ଭେ ତୁମ୍ଭ ନିକଟରୁ ନିଜର ଫଳ ସ୍ୱରୂପ ହସ୍ତୀକୁ ଗ୍ରହଣ କରିବୁ । ୩୨ ।

ଧୃତରାଷ୍ଟ୍ର କହିଲେ, ଯେଉଁମାନେ ସ୍ୱାଧ୍ୟାୟଶୀଳ, ଗୁରୁସେବାରେ ନିରତ, ତପସ୍ୱୀ, ସୁବ୍ରତ, ସତ୍ୟସନ୍ଧ, ଆଚାର୍ଯ୍ୟଗଣଙ୍କ ନିକଟରେ ଅପ୍ରତିକୂଳ-ଭାଷୀ, ନିତ୍ୟଉଦ୍‌ଯୋଗୀ ଏବଂ ସ୍ୱୟଂ ଗୁରୁଙ୍କ କାର୍ଯ୍ୟରେ ପ୍ରବୃତ୍ତ (୩୩), ହେ ମହର୍ଷେ ! ତଥାବିଧ ବାଗ୍‌ଯତ, ସତ୍ୟପରାୟଣ, ଦେବଜ୍ଞ ମହାତ୍ମାଗଣଙ୍କ ନିମିତ୍ତ ସେହି ଲୋକ ବିହିତ ହୋଇଅଛି, କିନ୍ତୁ ଧୃତରାଷ୍ଟ୍ର ସେଠାକୁ ଗମନ କରିବେ ନାହିଁ ।୩୪।

ଗୌତମ କହିଲେ, ମହାତ୍ମନ୍ ! ତଦ୍‌ବ୍ୟତୀତ ବରୁଣ ରାଜାଙ୍କ ସଦନରେ ଅନ୍ୟ ସନାତନ ଲୋକସମୂହ ବିରାଜିତ ଅଛି । ସେହି ସମସ୍ତ ଲୋକ ପବିତ୍ରଗନ୍ଧସମନ୍ୱିତ, ରଜୋହୀନ ଏବଂ ଶୋକବିହୀନ ଅଟେ । ଆମ୍ଭେ ସେହି ସ୍ଥାନରେ ତୁମ୍ଭଠାରୁ ସ୍ୱକୀୟ କୁଞ୍ଜର ଗ୍ରହଣ କରିବୁ । ୩୫ ।

ଧୃତରାଷ୍ଟ୍ର କହିଲେ, ଯେଉଁ ନରବୃନ୍ଦ ସର୍ବଦା ଚାତୁର୍ମାସ୍ୟ ଯାଗ କରିଥାଆନ୍ତି; ଯେଉଁମାନେ ଦଶଶତ ଯଜ୍ଞର ଫଳ ପ୍ରାପ୍ତ ହୋଇଥାଆନ୍ତି; ଯେଉଁ ବ୍ରାହ୍ମଣସମୂହ ଯଥାସମୟରେ ସ୍ନାନ କରି ତିନି ବର୍ଷର କାଳ ଶ୍ରଦ୍ଧା-ଯୁକ୍ତ ହୋଇ ଅଗ୍ନିହୋତ୍ର ଯାଗ କରିଥାଆନ୍ତି, ଯେଉଁସବୁ ଧର୍ମାତ୍ମା ଧର୍ମଭାର ଧାରଣ କରିବା ନିମିତ୍ତ ଆପଣାକୁ ସୁନ୍ଦର ରୂପେ ରକ୍ଷା କରିଥାଆନ୍ତି ଏବଂ ଯେଉଁମାନେ ଶାସ୍ତ୍ରୋକ୍ତ ପଥରେ ଅବସ୍ଥିତ କରନ୍ତି, ସେହି ସମସ୍ତ ମହାତ୍ମାଗଣ ଉକ୍ତ ଲୋକ ପ୍ରାପ୍ତ ହୁଅନ୍ତି, କିନ୍ତୁ ଧୃତରାଷ୍ଟ୍ର ସେଠାକୁ ଗମନ କରିବେ ନାହିଁ । ୩୬ ।

ଗୌତମ କହିଲେ, ଇନ୍ଦ୍ରଙ୍କ ଲୋକ ରଜୋଗୁଣବିହୀନ, ଶୋକ-ଶୂନ୍ୟ, ଦୁରତ୍ୟୟ ଓ ନରଗଣଙ୍କର ଅଭିଲଷିତ ; ଅତଏବ ହେ ରାଜନ୍ ! ଆମ୍ଭେ ସେହି ଭୂରିତେଜଃସମ୍ପନ୍ନ ଇନ୍ଦ୍ରଲୋକରେ ତୁମ୍ଭ ନିକଟରୁ ଆମ୍ଭର ଏହି ହସ୍ତୀକୁ ଗ୍ରହଣ କରିବୁ । ୩୮ ।

ଧୃତରାଷ୍ଟ୍ର କହିଲେ, ଯେଉଁ ଶୂରଜନ ଶତବର୍ଷ ଜୀବିତ ରହି ଅପ୍ରମତ୍ତ ହୋଇ ବେଦାଧ୍ୟୟନ ଓ ଯଜ୍ଞ କରନ୍ତି ; ସେହିମାନେ ଇନ୍ଦ୍ରଭୁବନକୁ ଗମନ କରନ୍ତି, କିନ୍ତୁ ଧୃତରାଷ୍ଟ୍ର ସେହି ସ୍ଥାନକୁ ଗମନ କରିବେ ନାହିଁ । ୩୯ ।

ଗୌତମ କହିଲେ, ସ୍ୱର୍ଗୋପରି ଶୋକଶୂନ୍ୟ, ପୁଷ୍କଳ, ସୁମହତ୍ ପ୍ରାଜାପତ୍ୟ ଲୋକସମୂହ ଅଛି; ତାହା ସମସ୍ତ ଲୋକଙ୍କର ବାଞ୍ଛିତ; ଅତଏବ ସେହି ସ୍ଥାନରେ ଆମ୍ଭେ ତୁମ୍ଭଠାରୁ ଏହି ହସ୍ତୀ ଗ୍ରହଣ କରିବୁ । ୪୦ ।

ଧୃତରାଷ୍ଟ୍ର କହିଲେ, ଯେଉଁସବୁ ନୃପତିଗଣ, ରାଜସୂୟ ଯଜ୍ଞରେ ଅଭିଷିକ୍ତ ହୋଇଥାଆନ୍ତି, ଯେଉଁମାନେ ଧର୍ମାତ୍ମା, ପ୍ରଜା ରକ୍ଷାକର୍ତ୍ତା ଏବଂ ଯେଉଁମାନେ ଅଶ୍ୱମେଧ, ଅବଭୃଥରେ ସ୍ନାନ କରନ୍ତି, ପ୍ରାଜାପତ୍ୟ ଲୋକ ସେହିମାନଙ୍କ ନିମିତ୍ତ ଅଟେ; କିନ୍ତୁ ଧୃତରାଷ୍ଟ୍ର ସେହି ସ୍ଥାନକୁ ଗମନ କରିବେ ନାହିଁ । ୪୧ ।

ଗୌତମ କହିଲେ, ଏହା ଅପେକ୍ଷା ପବିତ୍ର ଗନ୍ଧ ସମନ୍ୱିତ ରଜୋ-ହୀନ, ଶୋକଶୂନ୍ୟ ସନାତନ ଗୋଲୋକ ସମୂହ ଶୋଭା ପାଉଅଛି । ସେହି ଦୁର୍ଲଭ, ଅଧର୍ଷଣୀୟ ଗୋଲୋକରେ ଆମ୍ଭେ ତୁମ୍ଭଠାରୁ ହସ୍ତୀ ଗ୍ରହଣ କରିବୁ । ୪୨ ।

ଧୃତରାଷ୍ଟ୍ର କହିଲେ, ଯେଉଁ ଦାନଶୀଳ ବ୍ୟକ୍ତି ପ୍ରତିବର୍ଷ ଲକ୍ଷ୍ୟ-ସଂଖ୍ୟକ ଗୋଦାନ କରନ୍ତି ଏବଂ ଯେ ଶକ୍ତି ଅନୁସାରେ ସହସ୍ର ଗୋଦାନ କରନ୍ତି, ଅଥବା ଯେ ଇହଲୋକରେ ଦଶଜଣଙ୍କୁ ଗୋଟିଏ ଧେନୁ ଦାନ କରନ୍ତି କିମ୍ବା ପଞ୍ଚଜଣଙ୍କୁ ଗୋଟିଏ ଗୋଦାନ କରି ଥାଆନ୍ତି ଓ ଯେଉଁ ସମସ୍ତ ବ୍ରତପ୍ରିଗଣ ବ୍ରହ୍ମଚର୍ଯ୍ୟ ଦ୍ୱାରା ଜୀର୍ଣ୍ଣ ହୋଇଥାଆନ୍ତି, ଯେଉଁମାନେ ସର୍ବତୋଭାବରେ ବେଦବାକ୍ୟବୃନ୍ଦ ରକ୍ଷା କରନ୍ତି, ସେହି ସମସ୍ତ ତୀର୍ଥଯାତ୍ରା-ପରାୟଣ ମନସ୍ୱିଗଣ ଗୋଲୋକରେ ହୃଷ୍ଟ ହୋଇ ବାସ କରନ୍ତି । ପ୍ରଭାସ, ମାନସତୀର୍ଥ, ପୁଷ୍କର, ମହତ୍ ସରୋବର, ପବିତ୍ର ନୈମିଷ ତୀର୍ଥ ବାହୁଦ, କରତୋୟା, ଗଙ୍ଗା, ଗୟାଶିର, ବିପାଶା, ସ୍ଥୂଳବାଲୁକା କୃଷ୍ଣାଗଙ୍ଗା, ପଞ୍ଚନଦ, ମହାହ୍ରଦ, ଗୋମତୀ, କୌଶିକୀ, ପମ୍ପା, ସରସ୍ୱତୀ, ଦୃଶଦ୍ୱତୀ ଏବଂ ଯମୁନା, ଏହି ତୀର୍ଥମାନଙ୍କୁ ଯେଉଁ ସହସ୍ର ଧୃତବ୍ରତ ମହାତ୍ମା ନରଗଣ ଗମନ କରନ୍ତି, ସେମାନେ ଗୋଲୋକରେ ଦିବ୍ୟ ଦେହ ଧାରଣ କରି ଦିବ୍ୟ ମାଲ୍ୟ ବିଭୂଷିତ ଓ ପବିତ୍ର ଗନ୍ଧସମନ୍ୱିତ ହୋଇ ବସତି କରନ୍ତି, କିନ୍ତୁ ଧୃତରାଷ୍ଟ୍ର ସେହି ସ୍ଥାନକୁ ଗମନ କରିବେ ନାହିଁ । ୪୩ ।

ଗୌତମ କହିଲେ, ଯେଉଁ ସ୍ଥାନରେ ଶୀତଭୟ ନାହିଁ, କିଛିମାତ୍ର ଉଷ୍ଣଭୟ ନାହିଁ, ଯେଉଁ ସ୍ଥାନରେ କ୍ଷୁଧା, ପିପାସା, ଗ୍ଲାନି ଓ କିଛିମାତ୍ର ସୁଖ ଦୁଃଖ ନାହିଁ, ଯେଉଁ ସ୍ଥାନରେ କେହି ଦ୍ୱେଷ୍ୟ ନାହିଁ, ପ୍ରିୟ ନାହିଁ, ବନ୍ଧୁ ନାହିଁ, ଶତ୍ରୁ ନାହିଁ, ଯେଉଁ ସ୍ଥାନରେ ଜରାମୃତ୍ୟୁ ପୁଣ୍ୟପାତକ କିଛି ନାହିଁ,

ସେହି ରଜୋବିହୀନ, ସ୍ଥିତ ପ୍ରଜ୍ଞାସତ୍ତ୍ୱ ବ୍ୟବସ୍ଥିତ ପବିତ୍ର ସ୍ୱୟମ୍ଭୂଙ୍କ ଭବନରେ ତୁମ୍ଭେ ଆମ୍ଭଙ୍କୁ ହସ୍ତୀ ପ୍ରଦାନ କରିବ । ୫୧ ।

ଧୃତରାଷ୍ଟ୍ର କହିଲେ, ଯେଉଁମାନେ ସର୍ବସଙ୍ଗରୁ ବିମୁକ୍ତ, କୃତକୃତ୍ୟ, ଯତବ୍ରତ, ଅଧ୍ୟାତ୍ମଯୋଗ ସଂସ୍ଥାପନରେ ନିଯୁକ୍ତ ହୋଇ ସ୍ୱର୍ଗଗତି ଲାଭ କରନ୍ତି, ସେହି ସମସ୍ତ ସତ୍ତ୍ୱଗୁଣସମ୍ପନ୍ନ ପୁରୁଷଗଣ ପବିତ୍ର ବ୍ରହ୍ମଭୁବନକୁ ଗମନ କରନ୍ତି । ହେ ମହାମୁନେ ! ଆପଣ ସେହି ସ୍ଥାନରେ ଧୃତରାଷ୍ଟ୍ରଙ୍କୁ ଦେଖିବା ନିମିତ୍ତ ସମର୍ଥ ହେବେନାହିଁ । ୫୨ ।

ଗୌତମ କହିଲେ, ଯେଉଁ ସ୍ଥାନରେ ସାମବେଦ ଗୀତ ହୁଏ, ଯେଉଁ ସ୍ଥାନରେ ବେଦୀସମୂହ ଶ୍ୱେତପଦ୍ମ ଦ୍ୱାରା ଆସ୍ତୀର୍ଣ୍ଣ, ଯେଉଁ ସ୍ଥାନରେ ଜନଗଣ ଚନ୍ଦ୍ରଲୋକକୁ ଅଶ୍ୱଦ୍ୱାରା ଗମନ କରନ୍ତି, ଆମ୍ଭେ ସେହିଠାରେ ତୁମ୍ଭଠାରୁ ବାରଣ ଗ୍ରହଣ କରିବୁ । ୫୩ । ତୁମ୍ଭେ ବୃତ୍ରହନ୍ତା ଶତକ୍ରତୁ । ସମସ୍ତ ଭୁବନ ଭ୍ରମଣ କରୁଅଛ, ଏହି କଥା ଆମ୍ଭେ ଜାଣୁଅଛୁ, ଆମ୍ଭେ ମନର ପରାଭବ-ବଶରୁ ବାକ୍ୟଦ୍ୱାରା କଦାପି ଆପଣଙ୍କ ନିକଟରେ କୌଣସି ଅପରାଧ କରି ନାହୁଁ । ୫୪ ।

ଇନ୍ଦ୍ର କହିଲେ, ଆମ୍ଭେ ମଘବା ଗଜର ଅପବାଦ ବିଷୟରେ ମର୍ତ୍ତ୍ୟକୁ ଆଗମନ କରିଅଛୁ, ସେହି କାରଣରୁ ଆମ୍ଭେ ପ୍ରଣତ ହେଉଅଛୁ । ଆପଣ ଆମ୍ଭଙ୍କୁ ଅନୁଶାସନ କରନ୍ତୁ । ଆପଣ ଯାହା କହିବେ, ଆମ୍ଭେ ତାହା ସବୁ ସମ୍ପାଦନ କରିବୁ । ୫୫ ।

ଗୌତମ କହିଲେ, ହେ ସୁରେନ୍ଦ୍ର ! ଆମ୍ଭର ଶ୍ୱେତବର୍ଣ୍ଣ ଦଶବର୍ଷୀୟ ବାଳକପୁତ୍ର ସଦୃଶ ଯେଉଁ ହସ୍ତୀକୁ ଆପଣ ହରଣ କରିଅଛନ୍ତି, ଆମ୍ଭେ ବନ ମଧ୍ୟରେ ବାସ କରୁ, ସୁତରାଂ ସେହି ହସ୍ତୀ ଆମ୍ଭର ହିତୈଷୀ ହୋଇଥିଲା । ଆପଣ ଆମ୍ଭର ସେହି କୁଞ୍ଜରକୁ ପ୍ରଦାନ କରନ୍ତୁ । ୫୬ ।

ଇନ୍ଦ୍ର କହିଲେ, ହେ ଦ୍ୱିଜବର ! ଆପଣଙ୍କର ପୁତ୍ରସଦୃଶ ଏହି କୁଞ୍ଜର ଆପଣଙ୍କୁ ଦର୍ଶନ କରି ଆସୁଅଛି । ନିଜ ଶୁଣ୍ଡଦ୍ୱାରା ଆପଣଙ୍କର ଚରଣଯୁଗଳ ଆଘ୍ରାଣ କରୁଅଛି । ଅତଏବ ଏତେବେଳେ ଆମ୍ଭର ଶ୍ରେୟ ଚିନ୍ତା କରନ୍ତୁ, ଆପଣଙ୍କୁ ନମସ୍କାର କରୁଅଛୁଁ । ୫୭ ।

ଗୌତମ କହିଲେ, ହେ ସୁରେନ୍ଦ୍ର ! ଆମ୍ଭେ ସର୍ବଦା ଆପଣଙ୍କର କଲ୍ୟାଣ ଚିନ୍ତା କରୁଅଛୁ ଏବଂ ନିରନ୍ତର ଆପଣଙ୍କୁ ପୂଜା କରୁ । ହେ ଦେବରାଜ ! ଆପଣ ମଧ୍ୟ ଆମ୍ଭଙ୍କୁ ମଙ୍ଗଳ ପ୍ରଦାନ କରନ୍ତୁ, ଆପଣଙ୍କର ପ୍ରଦତ୍ତ ଗଜକୁ ଆମ୍ଭେ ପ୍ରତିଗ୍ରହ କରୁଅଛୁ । ୫୮ । ଇନ୍ଦ୍ର କହିଲେ, ଯେଉଁ ସତ୍ୟବାନ୍

ମହାତ୍ମା ମନୀଷୀଗଣଙ୍କ ହୃଦୟାକାଶରେ ବେଦସମୂହ ନିହିତ ହୋଇ ରହିଅଛି, ସେହିମାନଙ୍କ ମଧ୍ୟରେ ଆପଣ ଏକମାତ୍ର ମହାନୁଭାବ । ଆପଣଙ୍କଦ୍ୱାରା ଆମ୍ଭେ ପ୍ରତିବୁଦ୍ଧ ହେଲୁ, ଅତଏବ ଆମ୍ଭେ ଏତେବେଳେ ଆପଣଙ୍କଠାରେ ପ୍ରୀତିଯୁକ୍ତ ହୋଇଅଛୁ । ହେ ବିପ୍ରବର ! ଆପଣ ସଭାର ନିଜ ପୁତ୍ର ଗଜ-ସହିତ ଚିରକାଳ ନିମିତ୍ତ ଶୁଭଲୋକସମୂହ ପ୍ରାପ୍ତ ହେବା କାରଣ ଅବିଳମ୍ବରେ ଆଗମନ କରନ୍ତୁ ।

ବଜ୍ରଧାରୀ ଦେବରାଜ ପିତୃ ସ୍ୱରୂପ କୁଞ୍ଜରକୁ ପୁରୋଗାମୀ କରି ସାଧୁ ବୃନ୍ଦଙ୍କର ଦୁରାସଦ ସୁରପୁରକୁ ଗମନ କଲେ । ଯେ ଜିତେନ୍ଦ୍ରିୟ ହୋଇ ସର୍ବଦା ଏହା ଶ୍ରବଣ ଅଥବା ପଠନ କରନ୍ତି, ସେ ବ୍ରାହ୍ମଣ ଗୌତମଙ୍କ ପରି ବ୍ରହ୍ମଲୋକକୁ ଗମନ କରନ୍ତି । ୭୩ ।

---

## ଅଧ୍ୟାୟ—୧୦୩

ଯୁଧିଷ୍ଠିର କହିଲେ—ହେ ପିତାମହ ! ଆପଣ ବହୁବିଧ ଦାନର ବିଷୟ ଶାନ୍ତି, ସତ୍ୟ, ଅହିଂସା ଓ ସ୍ୱଦାର ସନ୍ତୁଷ୍ଟି ଏବଂ ଦାନକଲେ ଯେଉଁ ଫଳ ହୁଏ, ସେହିସବୁ ବିଷୟ କହିଲେ । ଏବେ ତପୋବଳ ଭିନ୍ନ ଅନ୍ୟ ଆପଣଙ୍କର କଅଣ ବିଦିତ ଅଛି ? ତପସ୍ୟା ଆଉ କଣ ଶ୍ରେଷ୍ଠତର ଅଛି, ତାହା କହିବା ହେଉନ୍ତୁ । ୨ ।

ଭୀଷ୍ମ କହିଲେ, ହେ କୁନ୍ତୀନନ୍ଦନ ଯୁଧିଷ୍ଠିର ! ଯାବତ୍ କାଳ ତପସ୍ୟା ଥାଏ, ତାବତ୍ ନର ଭାଗ୍ୟ ପ୍ରଦେଶରେ ବିରାଜିତ ହୋଇଥାଏ । ଆମ୍ଭର ମତ ଏହି ଯେ ଅନଶନ ଅପେକ୍ଷା ଅନ୍ୟ କିଛି ଉତ୍କୃଷ୍ଟ ତପସ୍ୟା ନାହିଁ । ୩ । ପଣ୍ଡିତମାନେ ଏହି ବିଷୟରେ ମହାତ୍ମା ବ୍ରହ୍ମା ଓ ଭଗୀରଥ ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି । ୪ । ହେ ଭରତ ! ଭଗୀରଥ ସୁରଲୋକ ଓ ଗୋଲୋକ ଅତିକ୍ରମପୂର୍ବକ ଋଷି-ଲୋକକୁ ଗମନ କରିଥିଲେ, ଏହା ଆମ୍ଭେ ଶ୍ରବଣ କରିଅଛୁ । ୫ ।

ହେ ରାଜନ୍ ! ବ୍ରହ୍ମା ସେହି ଭଗୀରଥଙ୍କୁ ଦର୍ଶନ କରି କହିଲେ, ହେ ଭଗୀରଥ ! ତୁମ୍ଭେ କିପରି ଏହି ଦୁରାସଦ ଲୋକକୁ ଆଗମନ କଲ ? ୬ । ହେ ଭଗୀରଥ ! ଦେବ, ଗନ୍ଧର୍ବ ଓ ମାନବଗଣ ବିନା ତପସ୍ୟାରେ କଦାପି

କେହି ଏହି ସ୍ଥାନକୁ ଆସିବାକୁ ସମର୍ଥ ହୁଅନ୍ତି ନାହିଁ । ଅତଏବ ତୁମ୍ଭେ କପରି ଆସିଲ ? ୭ । ଭଗୀରଥ କହିଲେ, ହେ ଭଗବନ୍ ! ଆମ୍ଭେ ସର୍ବଦା ବ୍ରାହ୍ମବ୍ରତ ଆଶ୍ରୟ କରି ବ୍ରାହ୍ମଣଗଣଙ୍କୁ ସର୍ବଦା ଶତସହସ୍ର ନିଷ୍କ, ଅଷ୍ଟାଧିକ ଶତପଳ ପରିମିତ ସୁବର୍ଣ୍ଣ ଦାନ କରିଥିଲୁ, କିନ୍ତୁ ତାହାର ଫଳରେ ଏ ସ୍ଥଳକୁ ଆଗମନ କରିନାହୁଁ । ୮ । ଏକରାତ୍ର ସାଧ୍ୟ ଦର୍ଶଯଜ୍ଞ, ପଞ୍ଚରାତ୍ରି ସାଧ୍ୟ ଦଶ ଅଧ୍ୱର, ଏବଂ ଏକାଦଶ ରାତ୍ରି ନିଷ୍ପନ୍ଦ୍ୟ, ଏକାଦଶ କ୍ରତୁ ଓ ଶତସଂଖ୍ୟକ ଜ୍ୟୋତିଷ୍ଟୋମ ଯଜ୍ଞର ଅନୁଷ୍ଠାନ କରିଥିଲୁ, କିନ୍ତୁ ତାହାର ଫଳରେ ମଧ୍ୟ ଏ ସ୍ଥାନକୁ ଆଗମନ କରିନାହୁଁ । ୯ ।

ଆମ୍ଭେ ଯେଉଁ ଶତବର୍ଷ କାଳ ଜାହ୍ନବୀତୀରରେ ନିୟତ ତପସ୍ୟା କରି ବାସ କରିଥିଲୁ ଏବଂ ସେହି ସ୍ଥଳରେ ସହସ୍ର ଅଶ୍ୱତରୀ ଓ କନ୍ୟାସମୂହ ପ୍ରଦାନ କରିଥିଲୁଁ, ତାହାର ଫଳରେ ଏହି ସ୍ଥାନକୁ ଆଗମନ କରି-ନାହୁଁ । ୧୦ । ପୁଷ୍କର ତୀର୍ଥରେ ଶତସହସ୍ର ଦ୍ୱିଜଗଣଙ୍କୁ ଦଶଅଯୁତ ଅଶ୍ୱ, ଦ୍ୱିଂଶତ ଅଯୁତ ଗୋ ପ୍ରଦାନ କରିଥିଲୁଁ । ୧୧ । ଚନ୍ଦ୍ରଙ୍କସଦୃଶ ଉଜ୍ଜ୍ୱଳ, ସୁବର୍ଣ୍ଣାଭରଣଧାରଣୀ ଷଷ୍ଟିସହସ୍ର ସଂଖ୍ୟକ ଉତ୍ତମା କନ୍ୟା ଦାନ କରିଥିଲୁଁ । ତାହର ଫଳରେ ଏହି ସ୍ଥାନକୁ ଆଗମନ କରିନାହୁଁ । ୧୨ । ହେ ଲୋକନାଥ ! ଆମ୍ଭେ ଗୋସବ ଯଜ୍ଞସମୂହରେ ଏକାଦିକ୍ରମରେ ପ୍ରତ୍ୟେକ ବ୍ରାହ୍ମଣଙ୍କୁ ଦଶଗୋଟି ଲେଖାଏଁ ଗୋଦାନ କରି ସମାନବତ୍ସା, ଦୁଗ୍ଧବତ୍ତୀ, ସୁବର୍ଣ୍ଣମୟ ଦୋହନ ପାତ୍ରସମନ୍ୱିତା, ଦଶଅର୍ବୁଦ ଗୋଦାନ କରିଥିଲୁଁ । ତାହାର ଫଳରେ ଏ ସ୍ଥାନକୁ ଆଗମନ କରିନାହୁଁ । ୧୩ । ସୋମଯଜ୍ଞରେ ଦୀକ୍ଷିତ ହୋଇ ପ୍ରତ୍ୟେକ ବ୍ରାହ୍ମଣଙ୍କୁ ଦଶଗୋଟି କରି ସଦ୍ୟପ୍ରସୂତା କ୍ଷୀର-ଦାତ୍ରୀ ରୋହିଣୀ ଧେନୁ ଦାନ କରି ଶତ ଶତ ଓ ସହସ୍ର ସହସ୍ର ଗୋଦାନ କରିଥିଲୁଁ ।

ହେ ବ୍ରହ୍ମନ୍ ! ପରିଶେଷରେ ଆମ୍ଭେ ପ୍ରତ୍ୟେକ ବ୍ରାହ୍ମଣଙ୍କୁ ଦଶଗୁଣ କରି ଗୋଦାନ କରିଥିଲୁଁ; ତାହାର ଫଳରେ ଏ ସ୍ଥାନକୁ ଆଗମନ କରିନାହୁଁ । ଦଶଅଯୁତ ହେମମାଳାସମନ୍ୱିତ ଶୁକ୍ଳବର୍ଣ୍ଣ ବାହ୍ଲୀକ ବାଜୀ ଦାନ କରିଥିଲୁ । ତାହା ଫଳରେ ଆମ୍ଭେ ଏ ସ୍ଥାନକୁ ଆଗମନ କରି-ନାହୁଁ । ୧୬ । ହେ ବ୍ରହ୍ମନ୍ ! ଏକ ଏକ ଯଜ୍ଞରେ ପ୍ରତିଦିନ ଅଷ୍ଟାଦଶ କୋଟି ସୁବର୍ଣ୍ଣ ସଂପ୍ରଦାନ କରିଥିଲୁଁ, ତାହାର ଫଳରେ ଏ ସ୍ଥଳକୁ ଆଗମନ କରିନାହୁଁ । ୧୭ । ହେ ପିତାମହ ! ବ୍ରହ୍ମନ୍ ! ଆମ୍ଭେ ଶ୍ୟାମକର୍ଣ୍ଣ ଓ ହରିଦ୍‌ବର୍ଣ୍ଣ ହେମମାଳାସମନ୍ୱିତ ସପ୍ତ ଦଶକୋଟି ଅଶ୍ୱଦାନ କରିଥିଲୁ;

ଈଶାସଦୃଶ ଦନ୍ତଯୁକ୍ତ ମହାକାୟ, କାଞ୍ଚନମାଳାବିଭୂଷିତ ସପ୍ତଦଶ ସହସ୍ର ପଦ୍ମଚିହ୍ନଯୁକ୍ତ ଗଜ ପ୍ରଦାନ କରିଥିଲୁ । ୧୯ ।

ହେ ଦେବେଶ ! ଦିବ୍ୟ କନକଭୂଷଣଦ୍ୱାରା ଅଳଙ୍କୃତ କାଞ୍ଚନ ଅଙ୍ଗବିଶିଷ୍ଟ ଦଶସହସ୍ର ରଥ ଦାନ କରିଥିଲୁଁ, ଏବଂ ବେଦରେ ଦକ୍ଷିଣାର ଅବୟବ ରୂପେ ଯାହା କୀର୍ତ୍ତିତ ହୋଇଅଛି, ତାଦୃଶ ସମଲଙ୍କୃତ ବାଜୀଯୁକ୍ତ ସପ୍ତସହସ୍ର ରଥ ବ୍ରାହ୍ମଣଗଣଙ୍କୁ ପ୍ରଦାନ କରିଥିଲୁ । ଦଶବାର ବାଜପେୟ ଯଜ୍ଞରେ ପୂର୍ବୋକ୍ତ ରଥାଦି ପ୍ରଦାନ କରିଥିଲୁଁ । ଯଜ୍ଞ ଓ ବିକ୍ରମଦ୍ୱାରା ଦେବରାଜାଙ୍କସଦୃଶ ପ୍ରଭାବସମ୍ପନ୍ନ ନିଷ୍କକଣ୍ଠ ସହସ୍ର ନୃପତିଙ୍କୁ ଯଜ୍ଞାଙ୍ଗ ଦକ୍ଷିଣାରୂପେ ଉତ୍ସୃଷ୍ଟ କରିଥିଲୁଁ ।

ହେ ପିତାମହ ! ଆମ୍ଭେ ସମସ୍ତ ଭୂପାଳଗଣଙ୍କୁ ଜୟକରି ଆଠ-ଗୋଟି ରାଜସୂୟ ଯଜ୍ଞ କରିଥିଲୁଁ; ତନ୍ନିମିତ୍ତ ଏହି ସ୍ଥାନକୁ ଆଗମନ କରିନାହୁଁ । ହେ ଜଗତ୍‌ପତେ ! ମତ୍‌ପ୍ରଦତ୍ତ ଦକ୍ଷିଣାଦ୍ୱାରା ଗଙ୍ଗାଙ୍କର ସମସ୍ତ ସ୍ରୋତ ଆଚ୍ଛନ୍ନ ହୋଇଥିଲା । ତନ୍ନିମିତ୍ତ ଆମ୍ଭେ ଏ ସ୍ଥଳକୁ ଆସିନାହୁଁ । ୨୪ । ସୁବର୍ଣ୍ଣଶତବିଭୂଷିତ ଦୁଇସହସ୍ର ଅଶ୍ୱ ଏବଂ ଉତ୍କୃଷ୍ଟ ଶତ ଗ୍ରାମ ଆମ୍ଭେ ପ୍ରତ୍ୟେକ ବ୍ରାହ୍ମଣଙ୍କୁ ପ୍ରଦାନ କରିଥିଲୁଁ । ଆମ୍ଭେ ଶାନ୍ତି-ଅବଲମ୍ବନପୂର୍ବକ ବାଗ୍‌ଯତ, ନିୟତାହାର ଓ ତପସ୍ୱୀ ହୋଇ ମହାଦେବ ଯାହାଙ୍କୁ ମସ୍ତକରେ ଧାରଣ କରିଥିଲେ, ହିମାଳୟରେ ଦୀର୍ଘକାଳ ସେହି ଗଙ୍ଗାଙ୍କର ଦୁରୁତ୍ସାହ ଧାରା ଧାରଣ କରିଥିଲୁଁ । ହେ ପିତାମହ ! ଆମ୍ଭେ ସେହି ଫଳଦ୍ୱାରା ଏହି ସ୍ଥାନକୁ ଆସିନାହୁଁ । ୨୭ । ପୃଥୁବ୍ରଧ୍ନ ଅର୍ଥାତ୍ ସ୍ଥୂଳ ଅଥଚ ଗୋଲାକାର କାଷ୍ଠଦଣ୍ଡ ବଳବାନ୍ ପୁରୁଷଙ୍କଦ୍ୱାରା ନିକ୍ଷିପ୍ତ ହୋଇ ଯେତେଦୂର ଦେଶରେ ପତିତ ହୁଏ, ଯେଉଁ ଯଜ୍ଞରେ ତାବତ୍ ପରିମାଣ ବେଦିକା ହୋଇଥାଏ, ତାହାକୁ ଶମ୍ୟାକ୍ଷେପ ଯଜ୍ଞ କହନ୍ତି । ହେ ଦେବ ! ଆମ୍ଭେ ସେହି ଶମ୍ୟାକ୍ଷେପ ଯଜ୍ଞରେ ଓ ପୁଣ୍ଡରୀକ ଏବଂ ସାଦ୍ୟସ୍କ ନାମକ ଅଯୁତସଂଖ୍ୟକ ଯଜ୍ଞରେ ଓ ଦ୍ୱାଦଶ ତ୍ରୟୋଦଶ ଦିବସ ନିଷ୍ପନ୍ନ ଯାଗଦ୍ୱାରା ଦେବତାମାନଙ୍କର ପୂଜା କରିଥିଲୁଁ, ଆମ୍ଭେ ତତ୍‌ଫଳରେ ଏହି ସ୍ଥାନକୁ ଆଗମନ କରିନାହୁଁ । ୨୮ ।

ଆମ୍ଭେ ପ୍ରତ୍ୟେକ ଦ୍ୱିଜଗଣଙ୍କୁ ଅଷ୍ଟସହସ୍ର କକୁଦ୍ମୀ, ସୁବର୍ଣ୍ଣଶୃଙ୍ଗ-ସମ୍ପନ୍ନ ଶୁକ୍ଳବର୍ଣ୍ଣ ବୃଷଭ ପ୍ରଦାନ କରିଥିଲୁ ଏବଂ ସେହିମାନଙ୍କୁ ନିଷ୍କକଣ୍ଠୀ ଗାଭୀ ପ୍ରଦାନ କରିଥିଲୁ । ୨୯ । ହିରଣ୍ୟ, ରତ୍ନନିଚୟ, ରତ୍ନପର୍ବତ, ଧନ-ଧାନ୍ୟ ଏବଂ ସୁସମୃଦ୍ଧ ସହସ୍ର ସହସ୍ର ଗ୍ରାମ ପ୍ରଦାନ କରିଥିଲୁ । ୩୦ ।

ଅଳସଶୂନ୍ୟ ହୋଇ ଅନେକ ମହାଯଜ୍ଞଦ୍ୱାରା ଦେବଗଣଙ୍କୁ ପୂଜା କରି ବ୍ରାହ୍ମଣଗଣଙ୍କୁ ଶତ ଶତ ସବତ୍ସପ୍ରସୂତା ଧେନୁ ଦାନ କରିଥିଲୁଁ, ତାହା ଫଳରେ ଆମ୍ଭେ ଏହି ସ୍ଥଳକୁ ଆସିନାହୁଁ । ୩୧ । ହେ ଦେବ ! ଆମ୍ଭେ ଏକାଦଶ ଦିବସ ସଦକ୍ଷିଣ ଅଶ୍ୱମେଧ ଯଜ୍ଞ କରିଥିଲୁଁ ଏବଂ ଦୁଇବାର ଦ୍ୱାଦଶ ଦିନ ନିଷ୍ପନ୍ନ ଅଶ୍ୱମେଧ ଯଜ୍ଞ ନିର୍ବାହ କରିଥିଲୁଁ, ଅତଏବ ହେ ବ୍ରହ୍ମନ୍ ! ସେହି ସମସ୍ତଙ୍କ ଫଳରେ ଆମ୍ଭେ ଏହି ସ୍ଥାନକୁ ଆଗମନ କରି-ନାହୁଁ । ୩୨ । ଏକ ଯୋଜନ ଆୟତ ଅତି ବିସ୍ତୀର୍ଣ୍ଣ ରତ୍ନ ବିଭୂଷିତ ନିଷ୍କକଣ୍ଠ କାଞ୍ଚନମୟ ପାଦପସମୂହଯୁକ୍ତ ବନ ବିତରଣ କରିଥିଲୁ । ତାହାର ଫଳରେ ଆମ୍ଭେ ଏ ସ୍ଥାନକୁ ଆଗମନ କରିନାହୁଁ । ୩୩ ।

ତିଂଶତ୍ ବର୍ଷକାଳ କ୍ରୋଧଶୂନ୍ୟ ହୋଇ ଅନଭିଭବମାୟୁ ଉତ୍ତରାୟଣ ବ୍ରତ କରିଥିଲୁଁ ; ପ୍ରତିଦିନ ବ୍ରାହ୍ମଣଗଣଙ୍କୁ ନଅଶତ ଧେନୁ ଦାନ କରିଥିଲୁଁ ; ହେ ଲୋକନାଥ ସୁରେଶ ! ଆମ୍ଭେ ପ୍ରତ୍ୟହ ବ୍ରାହ୍ମଣଗଣଙ୍କୁ ପୟସ୍ୱିନୀ ରୋହିଣୀ ଧେନୁ ଓ ବୃଷସମୂହ ଦାନ କରିଥିଲୁଁ, ତାହା ଫଳରେ ଏ ସ୍ଥାନକୁ ଆଗମନ କରିନାହୁଁ । ୩୪ । ହେ ବ୍ରହ୍ମନ୍ ! ଆମ୍ଭେ ତିଂଶତ୍ ଅଗ୍ନି ଚୟନ ପୂର୍ବକ ପ୍ରତିଦିନ ବାସ କରିଥିଲୁଁ, ଅଷ୍ଟ ସର୍ବମେଧ, ସପ୍ତ ନରମେଧ (୩୬), ଏକସହସ୍ର ଅଷ୍ଟାଦଶ ବିଶ୍ୱଜିତ୍ ଯଜ୍ଞର ଅନୁଷ୍ଠାନ କରିଥିଲୁ । ହେ ଦେବେଶ ! ତତ୍‌ଫଳରେ ଆମ୍ଭେ ଏ ସ୍ଥାନକୁ ଆସିନାହୁଁ । ୩୭ । ସରଯୂ, ବାହୁଦା, ଗଙ୍ଗା ଓ ନୈମିଷ ତୀର୍ଥରେ ଦଶଲକ୍ଷ ଗୋଦାନ କରିଥିଲୁ, କିନ୍ତୁ ତାହା ଫଳରେ ଆମ୍ଭେ ଏହି ସ୍ଥାନକୁ ଆଗମନ କରିନାହୁଁ । ୩୮ ।

ହେ ବରେଣ୍ୟ ! ଦେବରାଜଙ୍କ ଦ୍ୱାରା ସଂଗୋପିତ ହୃଦୟାକାଶ ମଧ୍ୟରେ ନିହିତ ଶୁକ୍ରାଚାର୍ଯ୍ୟ ତପସ୍ୟାଦ୍ୱାରା ଯାହା ଲାଭ କରିଥିଲେ, ଶୁକ୍ରାଚାର୍ଯ୍ୟଙ୍କ ତେଜଦ୍ୱାରା ଯାହା ଇହଲୋକରେ ଜାଜ୍ୱଲ୍ୟମାନ ହୋଇଅଛି, ଆମ୍ଭେ ତାହା ସାଧନ କରିଥିଲୁ ।୩୯। ସେହି କର୍ମ ଆମ୍ଭଦ୍ୱାରା ସାଧିତ ହେବାରୁ ବ୍ରାହ୍ମଣଗଣ ଆମ୍ଭଠାରେ ତୁଷ୍ଟ ହୋଇଥିଲେ ଏବଂ ସେହି ସ୍ଥଳକୁ ସହସ୍ର ଋଷି ଆଗମନ କରିଥିଲେ । ୪୦ । ହେ ପ୍ରଭୋ ! ସେମାନେ ଆମ୍ଭଙ୍କୁ କହିଲେ, "ତୁମ୍ଭେ ବ୍ରହ୍ମଲୋକକୁ ଗମନ କର" । ସହସ୍ର ବ୍ରାହ୍ମଣ ପ୍ରସନ୍ନ ହୋଇ ଆମ୍ଭଙ୍କୁ ଏହି କଥା କହିଥିଲେ, ତନ୍ନିମିତ୍ତ ଆମ୍ଭେ ଏହି ଲୋକକୁ ଆଗମନ କରିଅଛୁ; ଅତଏବ ଆପଣ ଏହି ବିଷୟରେ କିଛି ବିଚାରଣା କରନ୍ତୁ ନାହିଁ ।୪୧। ହେ ସୁରବର ! ବିଧାତା ଯାହା ଯଥାବତ୍ ବିଧାନ କରିଅଛନ୍ତି, ତୁମ୍ଭେ ଆମ୍ଭଙ୍କୁ ପ୍ରଶ୍ନ କରିବାରୁ ଆମ୍ଭେ ତଥାବତ୍ କହିବୁ । ଆମ୍ଭର ମତ ଏହି ଯେ, ଅନଶନ

ଅପେକ୍ଷା ଶ୍ରେଷ୍ଠତମ ଅନ୍ୟ କୌଣସି ତପସ୍ୟା ନାହିଁ; ହେ ଦେବ ! ଆମ୍ଭେ ଆପଣଙ୍କୁ ପ୍ରଣାମ କରୁଅଛୁ, ଆପଣ ଆମ୍ଭଠାରେ ପ୍ରସନ୍ନ ହୁଅନ୍ତୁ ।

ଭୀଷ୍ମ କହିଲେ, ନୃପତି ଭଗୀରଥ ଏହି ସମସ୍ତ କଥା କହିବାରୁ ପ୍ରଜାପତି ବ୍ରହ୍ମା ବିଧିବିହିତ କର୍ମଦ୍ୱାରା ସେହି ପୂଜାର୍ହ ନରପତିଙ୍କୁ ପୂଜା କରିଥିଲେ । ୪୩ । ଅତଏବ ତୁମ୍ଭେ ଅନଶନ ଅବଲମ୍ବନପୂର୍ବକ ପ୍ରତିଦିନ ବ୍ରାହ୍ମଣଗଣଙ୍କୁ ପୂଜାକର । ବ୍ରାହ୍ମଣଗଣଙ୍କ ବାକ୍ୟଦ୍ୱାରା ଇହଲୋକ ଓ ପର-ଲୋକରେ ସମସ୍ତ କାମନା ସିଦ୍ଧ ହୁଏ । ୪୪ । ଅନ୍ନ, ବସ୍ତ୍ର, ଗୋ ଓ ଶୁଭ ନିକେତନଦ୍ୱାରା ଦ୍ୱିଜଗଣ ସୁରଗଣଙ୍କୁ ସନ୍ତୋଷ କରିବାର ପାତ୍ର ଅଟନ୍ତି ; ଅତଏବ ଲୋଭଶୂନ୍ୟ ହୋଇ ଏହି ପରମ ଗୁହ୍ୟ ବିଷୟକୁ ଆଚରଣ କର । ୪୫ ।

---

## ଅଧ୍ୟାୟ—୧୦୪

ଯୁଧିଷ୍ଠିର କହିଲେ—ହେ ପିତାମହ ! ପୁରୁଷ ଶତାୟୁ ଓ ଶତବୀର୍ଯ୍ୟ ହୋଇ ଜନ୍ମପରିଗ୍ରହଣ କରନ୍ତି, ଅତଏବ ନରଗଣ ବାଲ୍ୟକାଳରେ କି ନିମିତ୍ତ ମୃତ ହୁଅନ୍ତି ? ୧ । ମନୁଷ୍ୟ କେଉଁପରି ଆୟୁଷ୍ମାନ୍ ହୁଅନ୍ତି ? କେଉଁ କାରଣରୁ ଅଳ୍ପାୟୁ ହୁଅନ୍ତି ? କେଉଁ ପ୍ରକାରରେ କୀର୍ତ୍ତିଲାଭ କରନ୍ତି ? କେଉଁ କାରଣରୁ ଶ୍ରୀ ଲାଭ କରନ୍ତି ? ତପସ୍ୟା, ବ୍ରହ୍ମଚର୍ଯ୍ୟ, ଜପ, ହୋମ, ଔଷଧ, କର୍ମ, ମନ ବାକ୍ୟ ଏହି ସମସ୍ତ ମଧ୍ୟରେ କେଉଁ କାରଣରୁ ଉଲ୍ଲିଖିତ କାର୍ଯ୍ୟସମୂହ ହୋଇପାରେ ? ହେ ପିତାମହ ! ଆପଣ ଆମ୍ଭ ନିକଟରେ ତାହା କୀର୍ତ୍ତନ କରନ୍ତୁ । ୩ ।

ଭୀଷ୍ମ କହିଲେ, ତୁମ୍ଭେ ଆମ୍ଭଙ୍କୁ ଯାହା ପ୍ରଶ୍ନ କଲ, ମନୁଷ୍ୟ ଯେଉଁ-ପରି ଅଳ୍ପାୟୁ ହୁଅନ୍ତି ଏବଂ ଯେଉଁପରି ଦୀର୍ଘାୟୁ ହୁଅନ୍ତି ; ଯେଉଁ କାରଣରୁ କୀର୍ତ୍ତି ଲାଭ କରନ୍ତି ଏବଂ ଯେଉଁ କାରଣରେ ଶ୍ରୀସମ୍ପନ୍ନ ହୁଅନ୍ତି, ଯେଉଁପରି ରହିଲେ ପୁରୁଷ ଶ୍ରେୟୋଯୁକ୍ତ ହୁଅନ୍ତି ; ତଦ୍‌ବିଷୟ ତୁମ୍ଭଙ୍କୁ କହିବା । ୫ ।

ପୁରୁଷ ଆଚାର ହେତୁରୁ ଆୟୁଷ ଲାଭ କରନ୍ତି ; ଆଚାର ହେତୁ ଶ୍ରୀସମ୍ପନ୍ନ ହୁଅନ୍ତି ଏବଂ ଆଚାର ହେତୁରୁ ଇହପରଲୋକରେ କୀର୍ତ୍ତିଲାଭ କରନ୍ତି । ୬ । ଦୁରାଚାର ବ୍ୟକ୍ତି ଇହଲୋକରେ ଦୀର୍ଘାୟୁ ପ୍ରାପ୍ତ ହୁଅନ୍ତି

ନାହିଁ । ଜୀବଗଣ ଯାହାଠାରୁ ସ୍ୱସ୍ତ ଓ ପରଭବ ପ୍ରାପ୍ତ ହୁଅନ୍ତି ତାହାକୁ ଦୁରାଗ୍ରହ କୁହାଯାଏ । ୭ । ଅତଏବ ପୁରୁଷ ଯଦି ଆତ୍ମହିତ କାମନା କରିବେ, ତେବେ ଇହଲୋକରେ ସଦାଚରଣ କରିବେ ; ସଦାଗ୍ରହ ପାପ-ଶରୀର ଅଲକ୍ଷଣକୁ ନାଶ କରେ । ୮ । ସାଧୁଗଣ ଆଗ୍ରହର ଲକ୍ଷଣ, ଧର୍ମ ଓ ଚରିତ୍ରଦ୍ୱାରା ପରିଚିତ ହୁଅନ୍ତି । ସାଧୁଗଣଙ୍କର ଯାହା ଚରିତ୍ର ତାହା ଆଗ୍ରହର ଲକ୍ଷଣ । ୯ ।

ଭୂତକର୍ମକାରୀ ଧର୍ମସ୍ୱରୀ ପୁରୁଷଙ୍କୁ ଦର୍ଶନ ନ କଲେ ସୁଦ୍ଧା ଲୋକମାନେ ତାହାଙ୍କ ନାମ ଶ୍ରବଣ ମାତ୍ରେ ପ୍ରିୟଜ୍ଞାନ କରନ୍ତି । ୧୦ । ଯେଉଁମାନେ ନାସ୍ତିକ, ନିଷ୍କ୍ରିୟ, ଗୁରୁବାକ୍ୟ ଓ ଶାସ୍ତ୍ର ବଚନକୁ ଲଙ୍ଘନ କରନ୍ତି, ଅଧର୍ମଜ୍ଞ ଏବଂ ଦୁରାଗ୍ରହ, ସେହିମାନେ ଅଳ୍ପାୟୁ ହୁଅନ୍ତି । ୧୧ । ଯେଉଁମାନେ ଦୁଃଶୀଳ, ମର୍ଯ୍ୟାଦା ଭେଦକାରୀ, ନିରନ୍ତର ସଙ୍କୀର୍ଣ୍ଣ ମୈଥୁନ ସେବା କରନ୍ତି, ସେହି ସମସ୍ତ ନରଗଣ ଇହଲୋକରେ ଅଳ୍ପାୟୁ ହୋଇ ନରକକୁ ଗମନ କରନ୍ତି । ୧୨ । ଯେଉଁ ନର ସମସ୍ତ ଲକ୍ଷଣବିହୀନ ହୋଇ ମଧ୍ୟ ସଦାଗ୍ରହ ବିଶିଷ୍ଟ ହୁଅନ୍ତି, ଯେ ଶ୍ରଦ୍ଧାସମ୍ପନ୍ନ ଓ ଅସୂୟାଶୂନ୍ୟ ହୁଅନ୍ତି, ସେ ଶତବର୍ଷ ଜୀବିତ ହୁଅନ୍ତି । ୧୩ । ଯେ ଅକ୍ରୋଧନ, ସତ୍ୟବାଦୀ, ଭୂତଗଣଙ୍କର ଅହିଂସକ, ଅନସୂୟ ଏବଂ ଅକପଟ, ସେ ଶତବର୍ଷ ଜୀବିତ ହୁଅନ୍ତି । ୧୪ । ଯେଉଁ ନର ଲୋଷ୍ଟ୍ର ମର୍ଦ୍ଦନ କରନ୍ତି, ତୃଣ ଛେଦନ କରନ୍ତି ଓ ଦନ୍ତଦ୍ୱାରା ନଖ ଛେଦନ କରନ୍ତି, ନିତ୍ୟ ଉଚ୍ଛିଷ୍ଟ ଭୋଜନ କରନ୍ତି, ସର୍ବଦା ଅସ୍ଥିର ଚିତ୍ତ ହୁଅନ୍ତି, ସେ ଇହଲୋକରେ ଦୀର୍ଘାୟୁ ଲାଭ କରି ପାରନ୍ତି ନାହିଁ । ୧୫ ।

ବ୍ରାହ୍ମ ମୁହୂର୍ତ୍ତରେ ଜାଗରିତ ହେବେ ଏବଂ ତେତେବେଳେ ଧର୍ମ ଓ ଅର୍ଥ ଚିନ୍ତା କରିବେ; ଗାତ୍ରୋତ୍ଥାନ ପୂର୍ବକ ଆଚମନ କରି କୃତାଞ୍ଜଳି ହୋଇ ପୂର୍ବ ସନ୍ଧ୍ୟାର ଉପାସନା କରିବେ । ଏହିପରି ବାଗ୍‌ଯତ ହୋଇ ସାୟଂ ସନ୍ଧ୍ୟା ମଧ୍ୟ ଉପାସନା କରିବେ । ସମୁଦ୍ୟତ ସୂର୍ଯ୍ୟଙ୍କୁ ଅବଲୋକନ କରିବେ ନାହିଁ ଏବଂ ଅସ୍ତଗମନଶୀଳ ପ୍ରଭାକରଙ୍କୁ କଦାପି ନିରୀକ୍ଷଣ କରିବେ ନାହିଁ; ରାହୁଗ୍ରସ୍ତ, ବାରିମଧ୍ୟସ୍ଥ ଏବଂ ଆକାଶମଣ୍ଡଳମଧ୍ୟଗତ ସୂର୍ଯ୍ୟଙ୍କୁ ବିଲୋକନ କରିବାର ଉଚିତ ନୁହେଁ । ଋଷିଗଣ ପ୍ରତିଦିନ ସନ୍ଧ୍ୟା ବନ୍ଦନ କରନ୍ତି ବୋଲି ଦୀର୍ଘାୟୁଷ ପ୍ରାପ୍ତ ହୁଅନ୍ତି । ୧୮ । ଅତଏବ ପୂର୍ବ ଓ ପଶ୍ଚିମ ସନ୍ଧ୍ୟା ସମୟରେ ବାଗ୍‌ଯତ ହୋଇ ରହିବ । ଯେଉଁ ସମସ୍ତ ବ୍ରାହ୍ମଣ ପ୍ରାତଃ ସନ୍ଧ୍ୟା ଓ ସାୟଂ ସନ୍ଧ୍ୟାର ଉପାସନା ନ କରନ୍ତି, ଧାର୍ମିକ ନରପାଳ ସେମାନଙ୍କୁ ଶୂଦ୍ରର କର୍ମ କରାଇବେ । ସମସ୍ତ ବର୍ଣ୍ଣ ମଧ୍ୟରେ ପରଦାରଗମନ

କଦାପି କର୍ତ୍ତବ୍ୟ ନୁହେଁ । ୨୦ । ପୁରୁଷଙ୍କର ପରଦାରସେବନ ଯେପରି ଆୟୁକ୍ଷୟକର ଅଟେ, ଲୋକମଧ୍ୟରେ ତାଦୃଶ ଅନାୟୁଷ୍ୟ ଅନ୍ୟ କିଛି ନାହିଁ । ୨୧ । ନାରୀଗଣଙ୍କର ଗାତ୍ରରେ ଯାବତ୍ ପରିମାଣ ଲୋମକୂପ ନିର୍ମିତ ହୋଇଥାଏ, ପରଦାରଗାମୀ ପୁରୁଷ ତାବତ୍ ସହସ୍ର ବର୍ଷ ନରକରେ ବାସ କରନ୍ତି । ୨୨ ।

କେଶପ୍ରସାଧନ, ଅଞ୍ଜନଧାରଣ, ଦନ୍ତଧାବନ ଏବଂ ଦେବଗଣଙ୍କର ଅର୍ଚ୍ଚନ ଏହିସବୁ କାର୍ଯ୍ୟ ପୂର୍ବାହ୍ଣରେ କର୍ତ୍ତବ୍ୟ । ୨୩ । ମୂତ୍ର ପୁରୀଷ ନିରୀକ୍ଷଣ କରିବ ନାହିଁ, ଏବଂ କଦାପି ତହିଁରେ ଅଧିଷ୍ଠାନ କରିବ ନାହିଁ । ଅତି ପ୍ରତ୍ୟୁଷରେ, ସାୟଂକାଳରେ ଓ ମଧ୍ୟାହ୍ନ ସମୟରେ କଦାପି ମଳମୂତ୍ର ପରିତ୍ୟାଗ କରିବ ନାହିଁ । ୨୪ । ଅଜ୍ଞାତ ବ୍ୟକ୍ତିଙ୍କ ସହିତ ଗମନ କରିବ ନାହିଁ । ଏକାକୀ ଅଥବା ଚଣ୍ଡାଳ ସହିତ ଏକତ୍ର ଗମନ କରିବ ନାହିଁ । ବ୍ରାହ୍ମଣ, ଗୋ, ରାଜା, ବୃଦ୍ଧ, ଭାରବାହୀ, ଗର୍ଭିଣୀ, ସ୍ତ୍ରୀ ଓ ଦୁର୍ବଳ ବ୍ୟକ୍ତିଙ୍କୁ ପଥ ଛାଡ଼ି ଦେବ । ବିଜ୍ଞାତ ବନସ୍ପତିସମୂହକୁ ପ୍ରଦକ୍ଷିଣ କରିବ, ଚତୁଷ୍ପଥ ସମୂହକୁ ପ୍ରଦକ୍ଷିଣ କରିବାର ବିଧେୟ । ମଧ୍ୟାହ୍ନରେ, ନିଶାକାଳରେ ବିଶେଷତଃ ଅର୍ଦ୍ଧରାତ୍ରରେ, ସାୟଂ ସମୟରେ ଏବଂ ପ୍ରତ୍ୟୁଷ ସମୟରେ ଚତୁଷ୍ପଥରେ ଗମନ କରିବ ନାହିଁ । ଅନ୍ୟ ବ୍ୟକ୍ତିଙ୍କ ବ୍ୟବହୃତ ପାଦୁକା ଓ ବସ୍ତ୍ର ପରିଧାନ କରିବ ନାହିଁ । ନିୟତ ବ୍ରହ୍ମଚାରୀ ହେବ, ପଦଦ୍ୱାରା ପଦ ଆକ୍ରମଣ କରିବ ନାହିଁ । ଅମାବସ୍ୟା, ପୌର୍ଣ୍ଣମାସୀ, ଉଭୟପକ୍ଷୀୟ ଚତୁର୍ଦ୍ଦଶୀ ଓ ଅଷ୍ଟମୀରେ ସର୍ବଦା ବ୍ରହ୍ମଚର୍ଯ୍ୟ ଆଚରଣ କରିବ । ବୃଥା ମାଂସଭକ୍ଷଣରେ ବିରତ ହେବ । ଆକ୍ରୋଶ, ପରିବାଦ ଓ ପିଶୁନତାକୁ ବର୍ଜନ କରିବାର ଉଚିତ । ୩୦ ।

କାହାକୁ ମର୍ମବ୍ୟଥା ଦେବ ନାହିଁ, ନିଷ୍ଠୁର ବାକ୍ୟ ବ୍ୟବହାର କରିବ ନାହିଁ, ହୀନ ବ୍ୟକ୍ତିଙ୍କଠାରୁ ଉତ୍କୃଷ୍ଟ ଦ୍ରବ୍ୟ ଗ୍ରହଣ କରିବାର ଅବିଧେୟ । ଯେଉଁ କଥାଦ୍ୱାରା ଅନ୍ୟ ବ୍ୟକ୍ତି ଉଦ୍‌ବିଗ୍ନ ହେବ, ତାଦୃଶ ପାପ-ଲୋକପ୍ରାପିକା ଅମଙ୍ଗଳଦାୟିନୀ ବାଣୀ କହିବ ନାହିଁ । ୩୧ । ବଦନରୁ ଯେଉଁ ବାକ୍ୟବାଣସମୂହ ନିର୍ଗତ ହୁଏ, ତାହାଦ୍ୱାରା ଆହତ ବ୍ୟକ୍ତି ଅହୋରାତ୍ର ଶୋକରେ ଜର୍ଜରିତ ହୁଏ; ସେହି ବାକ୍ୟବାଣସମୂହ ପରର ମର୍ମ-ସ୍ଥଳବିନା ଅନ୍ୟତ୍ର ପତିତ ହୁଏ ନାହିଁ । ଅତଏବ ପଣ୍ଡିତଜନ ତାଦୃଶ ଶରସମୂହ ନିକ୍ଷେପ କରିବେ ନାହିଁ । ୩୨ । ବାଣବିଦ୍ଧ ଓ ପରଶୁଦ୍ୱାରା ବିଚ୍ଛିନ୍ନ ଅରଣ୍ୟ ପୁନଶ୍ଚ ଅଙ୍କୁରିତ ହୁଏ, କିନ୍ତୁ ଦୁରୁକ୍ତି ବଚନଦ୍ୱାରା

ବଦ୍ଧ ହୋଇ ଯେଉଁ ହୃଦୟ କ୍ଷତ ହୁଏ, ତାହା ଆଉ ପୁନଶ୍ଚ ଅଙ୍କୁରିତ ହୁଏ ନାହିଁ । ୩୩ । କର୍ଣ୍ଣୀ, ନାଳୀକ ଓ ନାରାଚ ଏହି ସବୁ ଅସ୍ତ୍ର ଶରୀରରୁ ଉଦ୍ଧୃତ ହୁଏ, କିନ୍ତୁ ହୃଦୟସ୍ପର୍ଶୀ ବାକ୍ୟଶଲ୍ୟକୁ ଉଦ୍ଧାର କରିବା ନିମିତ୍ତ କାହାର ସାମର୍ଥ୍ୟ ନାହିଁ । ୩୪ । ହୀନାଙ୍ଗ, ଅତିରିକ୍ତାଙ୍ଗ, ବିଦ୍ୟାହୀନ, ବିଗର୍ହିତ, ରୂପହୀନ, ଧନବିହୀନ ଓ ଦୁର୍ବଳ ବ୍ୟକ୍ତିଗଣଙ୍କୁ ନିନ୍ଦା କରିବ ନାହିଁ । ୩୫ । ନାସ୍ତିକତା, ଦେବନିନ୍ଦା, ଦେବତାଗଣଙ୍କ କୁତ୍ସା, ଦ୍ୱେଷ, ଦମ୍ଭ, ଅଭିମାନ ଓ ତୀକ୍ଷ୍ଣତା ଏହି ଗୁଣ ସବୁ ପରିବର୍ଜନ କରିବାର ବିଧେୟ । ୩୬ ।

ପର ପ୍ରତି ଦଣ୍ଡ ଉଦ୍ୟତ କରିବ ନାହିଁ । କ୍ରୁଦ୍ଧ ହୋଇ ଅନ୍ୟକୁ ଆଘାତ କରିବ ନାହିଁ । କେବଳ ପୁତ୍ର ଓ ଶିଷ୍ୟଙ୍କୁ ଶାସନା ନିମିତ୍ତ ତାଡ଼ନା କଲେ କୌଣସି ବାଧା ହୁଏ ନାହିଁ । ୩୭ । ବ୍ରାହ୍ମଣଗଣଙ୍କୁ ନିନ୍ଦା କରିବ ନାହିଁ । ପକ୍ଷ ସମ୍ବନ୍ଧୀୟ ତିଥି କହିବ ନାହିଁ, ତାହା ହେଲେ ଆୟୁ ଶେଷ ହୁଏ ନାହିଁ । ୩୮ । ମଳମୂତ୍ର ପରିତ୍ୟାଗ, ପଥପର୍ଯ୍ୟଟନ, ବେଦପାଠ ଏବଂ ଭୋଜନ ସମୟରେ ପାଦ ପ୍ରକ୍ଷାଳନ କରିବ । ୩୯ । ଯେଉଁ ଦ୍ରବ୍ୟର ଅଶୁଚିଭାବ ଅପରିଜ୍ଞାତ, ଯାହା ଜଳଦ୍ୱାରା ପ୍ରକ୍ଷାଳିତ ଏବଂ ଯାହା ବ୍ରାହ୍ମଣଗଣଙ୍କର ପ୍ରଶଂସନୀୟ, ଦେବଗଣ ଏହି ତିନପ୍ରକାର ବସ୍ତୁକୁ ବ୍ରାହ୍ମଣଗଣଙ୍କର ବ୍ୟବହାର୍ଯ୍ୟ ବୋଲି ନିର୍ଦ୍ଦେଶ କରିଅଛନ୍ତି । ୪୦ । ସଂଯାବ (ଘୃତକ୍ଷୀରଦ୍ୱାରା ବିରଚିତ ପିଷ୍ଟକ), କୃଶର (ତିଳଖିଚୁଡ଼ି), ମାଂସ, ଶଷ୍କୁଳୀ (ଚକୁଳିପିଠା) ଓ ପାୟସ ଆପଣା ନିମିତ୍ତ ପ୍ରସ୍ତୁତ କରିବ ନାହିଁ; ଦେବତାମାନଙ୍କର ଉଦ୍ଦେଶ୍ୟରେ କଳ୍ପନା କରିବାର ବିଧେୟ । ୪୧ । ନିତ୍ୟ ଅଗ୍ନି ପରିଚର୍ଯ୍ୟା କରିବେ, ପ୍ରତ୍ୟହ ଭିକ୍ଷାପ୍ରଦାନ କରିବେ, ଏବଂ ବାଗ୍‌ଯତ ହୋଇ ଦନ୍ତକାଷ୍ଠ ନିତ୍ୟ ବ୍ୟବହାର କରିବେ । ୪୨ ।

ସୂର୍ଯ୍ୟୋଦୟ ହେଲେ ଶୟନ କରିବେ ନାହିଁ । ସୂର୍ଯ୍ୟ ଉଦୟ ସମୟରେ ଶୟନ କଲେ ମନୁଷ୍ୟ ପ୍ରାୟଶ୍ଚିତ୍ତାର୍ହ ହୁଅନ୍ତି; ଶଯ୍ୟାରୁ ଉତ୍ଥିତ ହୋଇ ପ୍ରଥମତଃ ମାତାପିତାଙ୍କୁ ଅଭିବାଦନ କରିବେ, ତଦନନ୍ତର ଆଚାର୍ଯ୍ୟ ଓ ଅନ୍ୟାନ୍ୟ ଗୁରୁଜନଙ୍କୁ ବନ୍ଦନ କରିବେ, ତାହା ହେଲେ ଦୀର୍ଘାୟୁ ଲାଭ ହୁଏ, ନିତ୍ୟ ବର୍ଜନୀୟ ଦନ୍ତକାଷ୍ଠ ସମୂହ ବର୍ଜନ କରିବାର ଉଚିତ, ଅର୍ଥାତ୍ ଲୋକେ ଖଡ଼ କାର୍ପାସାଦି କାଷ୍ଠରେ ଦନ୍ତ ଘର୍ଷଣ କରନ୍ତି, ତାହା ଅନୁଚିତ । ୪୪ । ବିହିତ ଦ୍ରବ୍ୟସମୂହ ଭୋଜନ କରିବେ । ପ୍ରତି ପର୍ବରେ ଭୋଜନ କରିବାର ଅନୁଚିତ । ଉତ୍ତରାଭିମୁଖରେ ସମାହିତ ହୋଇ ସର୍ବଦା ଶୌଚ

କାର୍ଯ୍ୟ ନିର୍ବାହ କରିବେ, ଦନ୍ତଧାବନ ନ କରି ଦେବପୂଜା କରିବେ ନାହିଁ ଏବଂ ଦେବପୂଜା ନ କରି କଦାପି ଗୁରୁ, ବୃଦ୍ଧ, ଧାର୍ମିକ ଅଥବା ବିଚକ୍ଷଣ ଜନଙ୍କ ନିକଟ ବ୍ୟତିରେକେ ଅନ୍ୟ କୌଣସି ସ୍ଥାନକୁ ଗମନ କରିବେ ନାହିଁ । ୪୬ ।

ଅତି ବୁଦ୍ଧିମାନ୍ ମନୁଷ୍ୟମାନଙ୍କର ମଳିନ ଆଦର୍ଶରେ ନିଜର ପ୍ରତିବିମ୍ବ ଦର୍ଶନୀୟ ନୁହେଁ । ଅପରିଚିତ ସ୍ତ୍ରୀର ନିକଟକୁ କଦାପି ଗମନ କରିବେ ନାହିଁ ଏବଂ ଗର୍ଭିଣୀ ରମଣୀଙ୍କ ନିକଟକୁ କଦାପି ଗମନ କରିବାର ଉଚିତ ନୁହେଁ ।୪୭। ଉତ୍ତର ଓ ପଶ୍ଚିମ ଦିଗକୁ ମସ୍ତକ କରି ଶୟନ କରିବେ ନାହିଁ । ବୁଦ୍ଧିମାନ ନର ପୂର୍ବମସ୍ତକ ଅଥବା ଦକ୍ଷିଣମସ୍ତକ ହୋଇ ଶୟନ କରିବେ । ୪୮ । ଭଗ୍ନ, ବିଶୀର୍ଣ୍ଣ ଶଯ୍ୟାରେ ଶୟନ କରିବାର ଅନୁଚିତ, ଅତ୍ୟନ୍ତ ଅନ୍ଧକାରମୟ ପ୍ରଦେଶରେ ସ୍ତ୍ରୀସଂଯୁକ୍ତ ଶୟନରେ ତିର୍ଯ୍ୟକ୍ ଭାବରେ କଦାପି ଶୟନ କରିବେ ନାହିଁ । ୪୯ । କାର୍ଯ୍ୟ ଓ ସମୟବଶତଃ କଦାଚ ନାସ୍ତିକଙ୍କ ନିକଟକୁ ଗମନ କରିବେ ନାହିଁ । ମନୁଷ୍ୟ ପଦଦ୍ୱାରା ଆସନ ଆକର୍ଷଣ କରି ତହିଁରେ ବସିବେ ନାହିଁ । ୫୦ । ବସ୍ତ୍ରହୀନ ହୋଇ ନଦୀ ପ୍ରଭୃତିରେ ଅଥବା ରାତିରେ କଦାପି ସ୍ନାନ କରିବେ ନାହିଁ । ସୁବିଚକ୍ଷଣ ନର ସ୍ନାନ କରି ଗାତ୍ର ମାର୍ଜନ କରିବେ ନାହିଁ । ଅର୍ଥାତ୍ ଗାତ୍ରମାର୍ଜନ ଉତ୍ତାରେ ପଶ୍ଚାତ୍ ସ୍ନାନ କରିବେ । ୫୧ ।

ସ୍ନାନ ନ କଲେ ଅନୁଲେପନ ବିହିତ ନୁହେଁ, ସ୍ନାନାନ୍ତରେ ବସ୍ତ୍ର-କମ୍ପନ କରିବା ଅନୁଚିତ । ମନୁଷ୍ୟ ସର୍ବଦା ଆର୍ଦ୍ର ବସ୍ତ୍ର ବ୍ୟବହାର କରିବେ ନାହିଁ । ୫୨ । ଗଳଦେଶରୁ ସ୍ୱୟଂମାଲ୍ୟ ନିକ୍ଷେପ କରିବାର ଉଚିତ ନୁହେଁ । ବହିର୍ଭାଗରେ ମାଲ୍ୟଧାରଣ କରିବେ ନାହିଁ । ରଜସ୍ୱଳା ସ୍ତ୍ରୀଙ୍କ ସହିତ କଦାପି ସମ୍ଭାଷଣ କରିବେ ନାହିଁ । ୫୩ । କ୍ଷେତ୍ରରେ ଏବଂ ଗ୍ରାମ ସମୀପରେ ପୁରୀଷ ତ୍ୟାଗ କରିବେ ନାହିଁ । ଜଳ ମଧ୍ୟରେ ମଳମୂତ୍ର ବିସର୍ଜନ କରିବାର ଉଚିତ ନୁହେଁ । ୫୪ । ଅନ୍ନ ଭୋଜନେଚ୍ଛୁ ମାନବ ତିନିବାର ମୁଖ ମଧ୍ୟରେ ଜଳ ସ୍ପର୍ଶନ କରିବେ, ଅନ୍ନ ଭୋଜନ ଉତ୍ତାରେ ତଦ୍‌ବତ୍ ତିନିବାର କରିବେ ଓ ପରିଶେଷରେ ଦୁଇବାର ମୁଖ ମାର୍ଜନ କରିବେ । ୫୫ । ପ୍ରତ୍ୟହ ପୂର୍ବ-ମୁଖ ଓ ବାଗ୍‌ଯତ ହୋଇ ଅନ୍ନନିନ୍ଦା ନ କରି ଭୋଜନ କରିବେ । ଭୋଜନ ଉତ୍ତାରେ ଶେଷାନ୍ନ କିଛି ପରିତ୍ୟାଗ କରିବେ ଏବଂ ଭୋଜନ ଉତ୍ତାରେ ମନେ ମନେ ଅଗ୍ନିଙ୍କୁ ସ୍ପର୍ଶ କରିବେ । ୫୬ । ଆୟୁଷ ବୃଦ୍ଧି ପ୍ରାର୍ଥନା କରି ପୂର୍ବମୁଖ ହୋଇ ଭୋଜନ କରିବେ, ଯଶୋଲାଭ କାମନା କରି ଦକ୍ଷିଣମୁଖରେ

ଭୋଜନ କରିବେ, ଧନଲାଭ ଇଚ୍ଛାକରି ପଶ୍ଚିମମୁଖ ହୋଇ ଭୋଜନ କରିବେ ଓ ନିଃଶ୍ରେୟସ ଲାଭ ଇଚ୍ଛୁକ ନର ଉତ୍ତରାଭିମୁଖ ହୋଇ ଭୋଜନ କରିବେ । ୫୭ ।

ଅଗ୍ନି ସ୍ପର୍ଶ କରି ଜଳଦ୍ୱାରା ନାସିକା ପ୍ରଭୃତିର ସମସ୍ତ ଊର୍ଦ୍ଧ୍ୱ ଛିଦ୍ର, ସମସ୍ତ ଗାତ୍ର, ନାଭି ଓ କରତଳଦ୍ୱୟ ପ୍ରକ୍ଷାଳନ କରିବେ । ୫୮ । ତୁଷ, କେଶ, ଭସ୍ମ ଓ କପାଳିକା ଉପରେ କଦାପି ଉପବେଶନ କରିବେ ନାହିଁ, ଅନ୍ୟର ସ୍ନାନଜଳ ଦୂରରୁ ପରିବର୍ଜନ କରିବାର ବିଧେୟ । ୫୯ । ଶାନ୍ତି ଓ ହୋମ କରିବେ, ସାବିତ୍ରୀ ମନ୍ତ୍ର ଧାରଣ କରିବେ, ଉପବିଷ୍ଟ ହୋଇ ଆହାର କରିବେ, ଗମନ କରୁଥିବା ସମୟରେ କଦାପି ଭୋଜନ କରିବାର ଉଚିତ ନୁହେଁ । ୬୦ । ଭସ୍ମରେ ଓ ଗୋଷ୍ଠରେ ମୂତ୍ର ପରିତ୍ୟାଗ କରିବାର ଉଚିତ ନୁହେଁ । ଆର୍ଦ୍ର ପାଦ ହୋଇ ଶୟନ କରିବେ ନାହିଁ, ଆର୍ଦ୍ର ପାଦ ହୋଇ ଭୋଜନ କରିବେ ।୬୧। ଯେଉଁ ଜନ ଆର୍ଦ୍ର ପାଦ ହୋଇ ଭୋଜନ କରିବେ, ସେ ଶତବର୍ଷ ପର୍ଯ୍ୟନ୍ତ ଜୀବିତ ହେବେ ।

ଉଚ୍ଛିଷ୍ଟ ହୋଇ ଅଗ୍ନି, ଗୋ ଓ ବ୍ରାହ୍ମଣ ଏହି ତିନି ତେଜସ୍ୱୀଙ୍କୁ ସ୍ପର୍ଶ କରିବେ ନାହିଁ, ସ୍ପର୍ଶ କଲେ ଆୟୁଃ କ୍ଷୟ ହୁଏ । ଚନ୍ଦ୍ର, ସୂର୍ଯ୍ୟ ଓ ନକ୍ଷତ୍ରଗଣ ଏହି ତିନି ତେଜସ୍ୱୀଙ୍କୁ ଉଚ୍ଛିଷ୍ଟ ହୋଇ କଦାପି ନିରୀକ୍ଷଣ କରିବେ ନାହିଁ । ସ୍ଥବିର ବ୍ୟକ୍ତି ସମ୍ମୁଖକୁ ଆଗମନ କଲେ, ଯୁବା ପୁରୁଷଙ୍କର ପ୍ରାଣସମୂହ ଊର୍ଦ୍ଧ୍ୱକୁ ଉତ୍ଥିତ ହୁଏ । ପ୍ରତ୍ୟୁତ୍ଥାନ ଓ ଅଭିବାଦନଦ୍ୱାରା ପୁନଶ୍ଚ ସେହି ପ୍ରାଣସମୂହ ସ୍ୱସ୍ଥାନରେ ସ୍ଥାପିତ ହୁଅନ୍ତି । ବୃଦ୍ଧଜନଗଣଙ୍କୁ ଅଭିବାଦନ କରିବେ ଓ ସ୍ୱୟଂ ଆସନ ପ୍ରଦାନ କରିବେ । ୬୫ । ଯୁବାପୁରୁଷ କୃତାଞ୍ଜଳି ହୋଇ ବୃଦ୍ଧ ବ୍ୟକ୍ତିଙ୍କ ସମ୍ମୁଖରେ ଦଣ୍ଡାୟମାନ ହେବେ । ସେମାନେ ଗମନ କଲେ ତାହାଙ୍କ ପଶ୍ଚାତ୍ ପଶ୍ଚାତ୍ ଗମନ କରିବେ । ଛିନ୍ନଭିନ୍ନ ଆସନରେ ଉପବେଶନ କରିବେ ନାହିଁ, ଭିନ୍ନ କାଂସ୍ୟପାତ୍ର ପରିତ୍ୟାଗ କରିବେ । ୬୬ ।

ଏକବସ୍ତ୍ର ହୋଇ ଭୋଜନ କରିବେ ନାହିଁ ଓ ବିବସ୍ତ୍ର ହୋଇ ସ୍ନାନ କରିବାର ଉଚିତ ନୁହେଁ । ବିବସ୍ତ୍ର ହୋଇ ଶୟନ କରିବେ ନାହିଁ, ଉଚ୍ଛିଷ୍ଟ ହୋଇ ଶୟନ କରିବାର ଉଚିତ ନୁହେଁ । ୬୭ । ଉଚ୍ଛିଷ୍ଟ ହୋଇ ମସ୍ତକ ସ୍ପର୍ଶ କରିବେ ନାହିଁ, କାରଣ ପ୍ରାଣସମୂହ ସମସ୍ତେ ମସ୍ତକ ଆଶ୍ରୟ କରି ଥାଆନ୍ତି । କେଶଗ୍ରହଣ ଓ ମସ୍ତକରେ ପ୍ରହାର କରିବେ ନାହିଁ (୬୮) ଏବଂ ସଂହତ କର ଯୁଗଳଦ୍ୱାରା ନିଜର ମସ୍ତକ କଣ୍ଡୂୟନ କରିବେ ନାହିଁ, ମସ୍ତକରେ ବାରମ୍ବାର ଜଳସେଚନପୂର୍ବକ ସ୍ନାନ କରିବେ ନାହିଁ, ତାହା

ହେଲେ ଆୟୁ କ୍ଷୟ ହୁଏ । ୬୯ । ମସ୍ତକରେ ତୈଳମର୍ଦ୍ଦନ କରି ଅନ୍ୟ କୌଣସି ଅଙ୍ଗ ସ୍ପର୍ଶ କରିବେ ନାହିଁ, ତିଳସଂଯୁକ୍ତ ଉଷ୍ଣଦ୍ରବ୍ୟ ଭକ୍ଷଣ କରିବେ ନାହିଁ । ଯେଉଁ ବ୍ୟକ୍ତି ତାହା କରନ୍ତି, ତାହାଙ୍କର ପରମାୟୁ କ୍ଷୟ ହୁଏ ।୭୦। ଉଚ୍ଛିଷ୍ଟ ହୋଇ କଦାପି ଅଧ୍ୟାପନା କରିବେ ନାହିଁ ଓ ଅଧ୍ୟୟନ କରିବାର ମଧ୍ୟ ଉଚିତ ନୁହେଁ ।

ବାୟୁ ବିଶିଷ୍ଟ ପ୍ରଦେଶରେ ଏବଂ ଦୁର୍ଗନ୍ଧଯୁକ୍ତ ସ୍ଥାନରେ ବେଦକୁ ମନରେ ଚିନ୍ତା କରିବେ ନାହିଁ ।୭୧। ପୁରାବିତ୍ ପଣ୍ଡିତଗଣ ଏହି ବିଷୟରେ ଯମୋଦ୍‌ଗୀତ ଗାଥାସମୂହ କୀର୍ତ୍ତନ କରନ୍ତି । ଯମ କହନ୍ତି, ଯେଉଁ ବ୍ୟକ୍ତି ଉଚ୍ଛିଷ୍ଟ ହୋଇ ଗମନ କରନ୍ତି, ସ୍ୱାଧ୍ୟାୟ ପାଠ କରନ୍ତି, ଆମ୍ଭେ ତାହାଙ୍କ ଆୟୁଚ୍ଛେଦନ କରୁ ଏବଂ ପୁତ୍ରଗଣଙ୍କୁ ଗ୍ରହଣ କରୁଁ ।୭୨। ଯେଉଁ ବ୍ରାହ୍ମଣ ଅନଧ୍ୟୟନ କାଳରେ ମୋହବଶତଃ ବେଦ ଅଭ୍ୟାସ କରନ୍ତି, ତାହାଙ୍କର ବେଦ ବିନଷ୍ଟ ହୁଏ ଏବଂ ପରମାୟୁ କ୍ଷୟ ହୁଏ । ଅତଏବ ଅନଧ୍ୟାୟ କାଳରେ କଦାପି ଅଧ୍ୟୟନ କରିବେ ନାହିଁ ।୭୪। ଆଦିତ୍ୟ, ଅନଳ, ଗୋ ଏବଂ ବ୍ରାହ୍ମଣଙ୍କ ଅଭିମୁଖରେ ଓ ମାର୍ଗରେ ଯେଉଁମାନେ ମଳମୂତ୍ର ପରିତ୍ୟାଗ କରନ୍ତି, ସେମାନେ ଗତାୟୁ ହୁଅନ୍ତି ।୭୫।

ଦିବସରେ ଉତ୍ତରାଭିମୁଖ ହୋଇ ଓ ରାତ୍ରିରେ ଦକ୍ଷିଣାଭିମୁଖ ହୋଇ ମଳମୂତ୍ର ପରିତ୍ୟାଗ କରିବେ, ତାହାହେଲେ ଆୟୁ କ୍ଷୟ ହୁଏ ନାହିଁ ।୭୬। ଯେଉଁ ଜିଜୀବିଷୁ ଜନ ଦୀର୍ଘାୟୁ ଆଶା କରିବେ, ସେ ବ୍ରାହ୍ମଣ, କ୍ଷତ୍ରିୟ ଓ ସର୍ପକୁ କୃଶ ବୋଲି ଜାଣି ଅବଜ୍ଞା କରିବେ ନାହିଁ । କାରଣ ଏ ତିନହେଁ ଆଶୀବିଷ ସଦୃଶ ଅଟନ୍ତି ।୭୭। କ୍ରୁଦ୍ଧ ଆଶୀବିଷ ଚକ୍ଷୁଦ୍ୱାରା ଦର୍ଶନ କଲାମାତ୍ରେ ତତ୍‌କ୍ଷଣାତ୍ ଦଗ୍‌ଧ କରେ; କ୍ରୁଦ୍ଧ କ୍ଷତ୍ରିୟ ମଧ୍ୟ ଅବଲୋକନ କଲାମାତ୍ରେ ତେଜଦ୍ୱାରା ତତ୍‌କ୍ଷଣାତ୍ ଦଗ୍‌ଧ କରନ୍ତି ।୭୮। ବ୍ରାହ୍ମଣ କ୍ରୋଧଯୁକ୍ତ ହେଲେ ଧ୍ୟାନ ଓ ନିରୀକ୍ଷଣଦ୍ୱାରା ତତ୍‌କ୍ଷଣାତ୍ ବଂଶ ଧ୍ୱଂସ କରନ୍ତି । ସେହି କାରଣରୁ ପଣ୍ଡିତ ବ୍ୟକ୍ତି ଏହି ତିନଙ୍କୁ ଯତ୍ନପୂର୍ବକ ସେବା କରିବେ ।୭୯।

ଗୁରୁଙ୍କ ସହିତ କଦାପି ନିର୍ବନ୍ଧ କରିବାର ଉଚିତ ନୁହେଁ । ହେ ଯୁଧିଷ୍ଠିର ! ଗୁରୁ କ୍ରୁଦ୍ଧ ହେଲେ ତାହାଙ୍କୁ ମାନ୍ୟ ଓ ପ୍ରସନ୍ନ କରିବାର ବିଧେୟ ।୮୦। ଗୁରୁ ମିଥ୍ୟାରେ ପ୍ରବୃତ୍ତ ହେଲେ ସୁଦ୍ଧା ତାହାଙ୍କ ନିକଟରେ ସମ୍ୟକ୍ ରୂପରେ ଭକ୍ତି ପ୍ରକାଶ କରିବାର ଉଚିତ, କଦାପି ଅଭକ୍ତି କରିବାର ବିଧେୟ ନୁହେଁ । ଗୁରୁ ନିନ୍ଦା ନରଗଣଙ୍କର ଆୟୁକ୍ଷୟ

କରେ, ଏହି ବିଷୟରେ ସଂଶୟ ନାହିଁ । ୮୧ । ହିତୈଷୀ ବ୍ୟକ୍ତି ଆଶ୍ରମର ଦୂରରେ ଉଚ୍ଛିଷ୍ଟ ଉତ୍ସର୍ଜନ କରିବେ ।

ହେ ରାଜନ୍ ! ପଣ୍ଡିତଗଣ କମଳ ଓ କୁବଳୟ ଭିନ୍ନ ଅନ୍ୟ ରକ୍ତବର୍ଣ୍ଣ ପୁଷ୍ପମାଳା ଧାରଣ କରିବେ ନାହିଁ । ଶୁକ୍ଳବର୍ଣ୍ଣ କୁସୁମ ଦାମ ଧାରଣ କରିବାର ପଣ୍ଡିତ ବ୍ୟକ୍ତିଙ୍କର ଉଚିତ । ୮୩ । ରକ୍ତବର୍ଣ୍ଣ ପୁଷ୍ପ ଓ ବାନେୟ ପୁଷ୍ପ ମସ୍ତକରେ ଧାରଣ କରିବାର ଉଚିତ । କଞ୍ଚନ ପୁଷ୍ପମାଳାଧାରଣରେ କଦାପି ଦୋଷ ହୁଏ ନାହିଁ । ୮୪ । ହେ ବିଶାଂପତେ ! ସ୍ନାତ ବ୍ୟକ୍ତିଙ୍କୁ ନିତ୍ୟ ଆର୍ଦ୍ର ବର୍ଣ୍ଣକ ଅର୍ଥାତ୍ ଲେପନ ଦାନ କରିବାର ଉଚିତ । ବୁଦ୍ଧିମାନ୍ ନର ବସ୍ତ୍ରଯୁଗଳ ବିପର୍ଯ୍ୟସ୍ତ କରିବେ ନାହିଁ, ଅର୍ଥାତ୍ ପରିଧେୟ ବସନକୁ ଉତ୍ତରୀୟ ଏବଂ ଉତ୍ତରୀୟ ବସନକୁ ପରିଧେୟ କରିବାର ଅନୁଚିତ । ୮୫ । ହେ ନରୋତ୍ତମ ! ଅନ୍ୟର ପରିହିତ ଓ ଦଶାବିହୀନ ବସ୍ତ୍ର ପରିଧାନ କରିବାର ଉଚିତ ନୁହେଁ, ଶଯ୍ୟା ଓ ବସ୍ତ୍ର ସ୍ୱତନ୍ତ୍ର ହେବା ଉଚିତ । ପଥ ପର୍ଯ୍ୟଟନ ସମୟରେ ଓ ଦେବପୂଜାକାଳରେ ପୃଥକ୍ ବସ୍ତ୍ର ପରିଧାନ କର୍ତ୍ତବ୍ୟ । ବୁଦ୍ଧିମାନ୍ ନର ପ୍ରିୟଙ୍ଗୁ, ଚନ୍ଦନ, ବିଲ୍ୱ ଓ ତଗରଦ୍ୱାରା ଅନୁଲେପନ କରିବେ ଏବଂ କେଶରଦ୍ୱାରା ପୃଥକ୍ ରୂପେ ଅନୁଲେପନ କରିବେ । ସ୍ନାତ, ଶୁଚି ଓ ଅଲଂକୃତ ହୋଇ ବ୍ରହ୍ମଚର୍ଯ୍ୟ କରିବେ ଏବଂ ସମସ୍ତ ପର୍ବ ସମୟରେ ସର୍ବଦା ବ୍ରହ୍ମଚାରୀ ହୋଇ ରହିବେ ।

ହେ ଜନେଶ୍ୱର ! ସମକକ୍ଷ ବ୍ୟକ୍ତିଙ୍କ ସହିତ ଏକପାତ୍ରରେ ଭୋଜନ କରିବେ ନାହିଁ । ୮୯ । ରଜସ୍ୱଳାଦ୍ୱାରା ସଂପାଦିତ ଅନ୍ନ କଦାପି ଭୋଜନ କରିବେ ନାହିଁ । ଯେଉଁ ପଦାର୍ଥର ସାର ଉଦ୍ଧୃତ, ସେହି ସାରହୀନ ପଦାର୍ଥକୁ ଭୋଜନ କରିବେ ନାହିଁ ଏବଂ ଭୋଜନ କାଳରେ କେହି ନିରୀକ୍ଷଣ କଲେ ତାହାକୁ ଭକ୍ଷ୍ୟଦ୍ରବ୍ୟ ପ୍ରଦାନ ନ କରି ଭୋଜନ କରିବାର ଉଚିତ ନୁହେଁ । ୯୦ । ସାଧୁମାନଙ୍କ ସନ୍ନିକୃଷ୍ଟ ମେଧାବୀ ନର ଅଶୁଚି ବ୍ୟକ୍ତିଙ୍କ ଅନ୍ନ ଭୋଜନ କରିବେ ନାହିଁ । ଶ୍ରାଦ୍ଧାଦିରେ ପ୍ରତିସିଦ୍ଧ ଭକ୍ଷ୍ୟଦ୍ରବ୍ୟ ସବୁ ବିନା ଶ୍ରାଦ୍ଧ ପ୍ରଭୃତିରେ ଭୋଜନ କରିବାର ଅବିଧେୟ । ୯୧ । ଭବାର୍ଥୀ ପୁରୁଷ-ପ୍ରବର ପିପ୍ପଳ, ବଟ, ଶଣଶାକ ଏବଂ ଉଦୁମ୍ବର ଭକ୍ଷଣ କରିବେ ନାହିଁ । ୯୨ । ଛାଗଦୁଗ୍ଧ ଓ ମୟୂରର ମାଂସ ବର୍ଜନୀୟ କରିବେ । ଶୁଷ୍କ ମାଂସ ଓ ପର୍ଯ୍ୟୁଷିତ ଦ୍ରବ୍ୟ ପରିତ୍ୟାଗ କରିବାର ବିଧେୟ । ୯୩ ।

ବିଦ୍ୱାନ୍ ବ୍ୟକ୍ତି ପାଣିତଳରେ ଓ ରାତ୍ରିକାଳରେ ଲବଣ, ଦଧି ଓ ଶକ୍ତୁ ଭକ୍ଷଣ କରିବେ ନାହିଁ । ବୃଥା ମାଂସଭକ୍ଷଣ ବର୍ଜନ କରିବେ । ୯୪ ।

ସମାଚ୍ଛନ୍ନ ବ୍ୟକ୍ତି ପ୍ରାତଃକାଳରେ ସାୟଂକାଳରେ, ଓ ଅସ୍ତ ସମୟରେ ଭୋଜନ କରିବେ ନାହିଁ, କେଶଯୁକ୍ତ ଅନ୍ନାଦି ଭୋଜନ ଅବିହିତ ଏବଂ ଶତ୍ରୁ ଶ୍ରାଦ୍ଧରେ ଭୋଜନ ଅବିଧେୟ । ୯୫ । ବାଗ୍‌ଯତ ନ ହୋଇ ଏକ ବସ୍ତ୍ର ପରିଧାନ କରି ଏବଂ ଉପବିଷ୍ଟ ନ ହୋଇ କଦାପି ଭୋଜନ କରିବେ ନାହିଁ, ସର୍ବଦା ଭୂତଳରେ ଭୋଜନ କରିବା ଅବିଧେୟ । ଅନାସୀନ ହୋଇ ଭୋଜନ କରିବାର ଅନୁଚିତ, ଭୋଜନ ସମୟରେ ଶବ୍ଦ କରିବେ ନାହିଁ । ୯୬ । ହେ ବିଶାଂପତେ ! ମେଧାବୀ ନର ଅତିଥି ଜନଙ୍କୁ ଜଳଦାନପୂର୍ବକ ଅନ୍ନଦାନ କରିବେ । ପଶ୍ଚାତ୍ ଅନନ୍ୟଚିତ୍ତ ହୋଇ ସ୍ୱୟଂ ଭୋଜନ କରିବେ । ୯୭ । ହେ ନରେଶ୍ୱର ! ଏକପଂକ୍ତି ମଧ୍ୟରେ ସୁହୃଜ୍ଜନ-ମାନଙ୍କୁ ସମାନ ଅନ୍ନ ପ୍ରଦାନ ନ କରି ଯେଉଁ ବ୍ୟକ୍ତି ସ୍ୱୟଂ ଭୋଜନ କରନ୍ତି, ସେ ହଳାହଳ ବିଷ ଭକ୍ଷଣ କରନ୍ତି ।୯୮। ପାନୀୟ, ପାୟସ, ଶକ୍ତୁ, ଦଧି, ଘୃତ ଓ ମଧୁ ଭକ୍ଷଣ କରି ତାହାର ଅବଶିଷ୍ଟ ଅଂଶ, ପୃଥାଦି ଭିନ୍ନ ଅନ୍ୟ କୌଣସି ବ୍ୟକ୍ତିଙ୍କୁ ଭକ୍ଷଣ ନିମିତ୍ତ ପ୍ରଦାନ କରିବେ ନାହିଁ । ୯୯ ।

ହେ ମନୁଜବ୍ୟାଘ୍ର ! ମନୁଷ୍ୟ ଭୋଜନ କରୁ କରୁ ଭକ୍ଷ୍ୟ ଦ୍ରବ୍ୟର ପରିପାକ ହେବ କି ନାହିଁ, ଏପରି ଶଙ୍କା କରିବେ ନାହିଁ । ପରିପାକ ନିମିତ୍ତ ଭିବାର୍ଥୀ ଘୋଳଦଧି ଅନୁପାନ କରିବେ । ୧୦୦ । ଆଚମନ କରି ଏକ ହସ୍ତଦ୍ୱାରା ଦକ୍ଷିଣ ପାଦର ଅଙ୍ଗୁଷ୍ଠ ଅଙ୍ଗୁଳିରେ ଜଳସେଚନ କରିବେ । ୧୦୧। ମସ୍ତକରେ ହସ୍ତ ସ୍ଥାପନପୂର୍ବକ ଅଗ୍ନି ସ୍ପର୍ଶ କରି ଯେ ସମାହିତ ହୁଅନ୍ତି, ସେହି ପ୍ରୟୋଗକୁଶଳ ନର ଜ୍ଞାତିଗଣଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ଲାଭ କରନ୍ତି । । ୧୦୨ । ଜଳଦ୍ୱାରା ପ୍ରାଣସମୂହ, ଅର୍ଥାତ୍ ନାସିକା ପ୍ରଭୃତି ନାଭି ଓ କରତଳ ପ୍ରକ୍ଷାଳନ କର୍ତ୍ତବ୍ୟ, କିନ୍ତୁ ଆର୍ଦ୍ର ହସ୍ତରେ ଅବସ୍ଥାନ କରିବାର କର୍ତ୍ତବ୍ୟ ନୁହେଁ ।୧୦୩ । ଅଙ୍ଗୁଷ୍ଠ ଅଙ୍ଗୁଳିର ଅନ୍ତରାଳ ବ୍ରାହ୍ମତୀର୍ଥ ବୋଲି କଥିତ ହୁଏ, କନିଷ୍ଠାଙ୍ଗୁଳିର ପଶ୍ଚାତ୍ ଭାଗ ଦେବତୀର୍ଥ ବୋଲି କଥିତ ହୋଇଅଛି । ୧୦୪ । ହେ ଭାରତ ! ଅଙ୍ଗୁଷ୍ଠ ଓ ତର୍ଜନୀ ଅଙ୍ଗୁଳିର ମଧ୍ୟଭାଗ-ଦ୍ୱାରା ଜଳସ୍ପର୍ଶପୂର୍ବକ ନ୍ୟାୟତଃ ସମସ୍ତ ପିତୃକାର୍ଯ୍ୟ ନିର୍ବାହ କରିବେ ।୧୦୫। ପରର ଅପବାଦ ବାକ୍ୟ କହିବେ ନାହିଁ, ମଙ୍ଗଳାର୍ଥୀ ମାନବ କଦାପି କ୍ରୋଧ ଉତ୍ପାଦନ କରିବେ ନାହିଁ । ୧୦୬ । ପତିତ ଜନଗଣଙ୍କ ସହିତ ବାକ୍ୟାଳାପ କରିବାକୁ ଇଚ୍ଛୁକ ହେବେ ନାହିଁ, ଦର୍ଶନ ପରିହାର କରିବେ ଏବଂ ସଂସର୍ଗ କରିବେ ନାହିଁ । ତାହାହେଲେ ଦୀର୍ଘ ପରମାୟୁ ଲାଭ ହୁଏ । ୧୦୭ ।

ଦିବସରେ ମୈଥୁନ କରିବେ ନାହିଁ । କନ୍ୟା ଗମନ କରିବେ ନାହିଁ, ରଜସ୍ୱଲା ସ୍ତ୍ରୀ ଗମନ କରିବେ ନାହିଁ, ଏବଂ ଅସ୍ନାତା ବନିତାଙ୍କ ନିକଟକୁ ଯିବେ ନାହିଁ । ଏହି ସମସ୍ତ ନିୟମ ପ୍ରତିପାଳନ କଲେ ଦୀର୍ଘାୟୁ ଲାଭ ହୁଏ । ।୧୦୮। ନର ସ୍ୱତୀର୍ଥରେ ଆଚମନ କରି, ସମ୍ୟକ୍‌ରୂପେ ପ୍ରସ୍ତୁତ କାର୍ଯ୍ୟରେ ତିନିବାର ଜଳପାନ କରି ଦୁଇବାର ମାର୍ଜନ ପୂର୍ବକ ଶୌଚସମ୍ପନ୍ନ ହୁଅନ୍ତି । ୧୦୯ । ପୁରୁଷ ଥରେ ସମସ୍ତ ଇନ୍ଦ୍ରିୟ ସ୍ପର୍ଶକରି ତିନିବାର ଅଭ୍ୟୁକ୍ଷଣ ପୂର୍ବକ ବେଦ ବିହିତ କର୍ମଦ୍ୱାରା ପିତୃ ଓ ଦୈବକାର୍ଯ୍ୟ କରିବେ । ୧୧୦ ।

ହେ କୌରବ ! ବ୍ରାହ୍ମଣଙ୍କ ନିମିତ୍ତ ଯେଉଁ ଶୌଚଗୃହର ବିହିତ ହୋଇଅଛି, ଏବଂ ଭୋଜନର ଆଦ୍ୟପ୍ରାନ୍ତରେ ଯାହା ପବିତ୍ର ଓ ହିତକର, ତାହା ଆମ୍ଭ ନିକଟରୁ ଶ୍ରବଣ କର । ସର୍ବପ୍ରକାର ଶୌଚ କାର୍ଯ୍ୟରେ ବ୍ରାହ୍ମତୀର୍ଥଦ୍ୱାରା ଜଳ ସ୍ପର୍ଶ କରିବେ, ନିଷ୍ଠୀବନ ଓ ଫୁତ୍କାର କରି ସ୍ପର୍ଶାନନ୍ତର ଶୁଚି ହେବେ । ୧୧୨ । ବୃଦ୍ଧ, ଜ୍ଞାତି, ଅଥବା ମିତ୍ର ଯଦି ଦରିଦ୍ର ହେବେ ତେବେ ସେମାନଙ୍କୁ ନିଜ ଗୃହରେ ବାସ କରାଇବେ; ଏ ପ୍ରକାର କଲେ ଧନ ଓ ଆୟୁ ବୃଦ୍ଧି ହୁଏ । ୧୧୩ । ପାରାବତ ଓ ଶୁକସାରିକା ପ୍ରଭୃତି ଗୃହରେ ରହିଲେ ସମ୍ପତ୍ତି ହୁଏ, ଏମାନେ ଓ ତୈଳପାୟିକା ଗୃହରେ ରହିଲେ ଅନିଷ୍ଟର କାରଣ ହୁଅନ୍ତି ନାହିଁ, ବରଞ୍ଚ ଅଭ୍ୟୁଦୟର କାରଣ ହୁଅନ୍ତି । ୧୧୪ । ଉଦ୍ଦୀପନକାରୀ ଗୃଧ୍ର, ବନକପୋତ ଓ ଭ୍ରମରସମୂହ ଯଦି ଗୃହ ମଧ୍ୟରେ ସହସା ପ୍ରବିଷ୍ଟ ହୁଅନ୍ତି, ତେତେବେଳେ ଶାନ୍ତି ଆଚରଣ କରିବେ । ଏହି ସମସ୍ତ ଏବଂ ମହାତ୍ମାମାନଙ୍କର ଆକ୍ରୋଶ ପ୍ରକାଶ ମଧ୍ୟ ଅତିଶୟ ଅମଙ୍ଗଳକର । ୧୫ । ମହାତ୍ମାମାନଙ୍କ ଅତିଶୟ ଗୁହ୍ୟ ବିଷୟ କୌଣସି ସ୍ଥାନରେ ବ୍ୟକ୍ତ କରିବାର ବିଧେୟ ନୁହେଁ ।

ହେ ଯୁଧିଷ୍ଠିର ! ଅଗମ୍ୟା ସ୍ତ୍ରୀମାନଙ୍କ ନିକଟକୁ ଗମନ କରିବେ ନାହିଁ; ରାଜପତ୍ନୀ ସଖୀ, ବାଳକ, ବୈଦ୍ୟ ଓ ବୃଦ୍ଧର ବନିତା, ଭୃତ୍ୟର ଭାର୍ଯ୍ୟା, ବଧୂ ଓ ବ୍ରାହ୍ମଣୀ, ଶରଣାଗତ ବ୍ୟକ୍ତିର ପତ୍ନୀ ଏବଂ ସମ୍ବନ୍ଧିଗଣଙ୍କ ରମଣୀମାନଙ୍କୁ ରମଣ କରିବାର ଅବିଧେୟ । ହେ ରାଜେନ୍ଦ୍ର ! ଏହି ସମସ୍ତ ନିୟମ ପାଳନ କଲେ ଦୀର୍ଘ ଆୟୁ ଲାଭ ହୁଏ । ହେ ମନୁଜେଶ୍ୱର ! ବ୍ରାହ୍ମଣ ଓ ସ୍ଥପତିଙ୍କ ଦ୍ୱାରା ଯେଉଁ ନିକେତନ ନିର୍ମିତ ହୁଏ, କଲ୍ୟାଣକାମ ପ୍ରାଜ୍ଞଜନ ତହିଁରେ ସର୍ବଦା ବସତି କରିବେ । ହେ ନୃପ ! ମେଧାବୀ ଜନ, ସନ୍ଧ୍ୟା-କାଳରେ ନିଦ୍ରା ଯିବେ ନାହିଁ, ବିଦ୍ୟାଭ୍ୟାସ କରିବେ ନାହିଁ ଏବଂ ଭୋଜନ କରିବେ ନାହିଁ । ଏହି ନିୟମସବୁ ପାଳନ କଲେ ଦୀର୍ଘାୟୁ ଲାଭ ହୁଏ ।

ରାତିରେ ପିତୃକାର୍ଯ୍ୟ କରିବେ ନାହିଁ । ଭୋଜନ ଉତ୍ତାରେ କେଶାଦି ପ୍ରସାଧନ କରିବାର ଉଚିତ ନୁହେଁ (୧୨୦); ଏବଂ ଯେ ଐଶ୍ୱର୍ଯ୍ୟ କାମନା କରନ୍ତି, ସେ ରାତିରେ ସ୍ନାନାଦି ଜଳକ୍ରିୟା କରିବେ ନାହିଁ । ହେ ଭାରତ ! ରାତିରେ ଶକ୍ତୁ ଭୋଜନ ବର୍ଜନୀୟ ।୧୨୧। ଭୋଜନ ସମୟରେ ଶେଷାନ୍ନ ଓ ପାୟସ ଅତି ଉପାଦେୟ ହେଲେ ସୁଦ୍ଧା ତାହା ବର୍ଜନ କରିବେ । ଯାବତ୍-କାଳ ତୃପ୍ତି ହୋଇନାହିଁ, ତାବତ୍ ପର୍ଯ୍ୟନ୍ତ ଅନ୍ୟର ଅନ୍ନ ଭୋଜନ କରିବାର ଉଚିତ ନୁହେଁ । ରାତ୍ରିକାଳୀନ ଆହାର ସମୟରେ ନିମନ୍ତ୍ରିତ ବ୍ୟକ୍ତିଙ୍କୁ ପରିତୃପ୍ତ କରି ଭୋଜନ କରାଇବାର ଉଚିତ । କିନ୍ତୁ ସ୍ୱୟଂ ଅନ୍ନ ଭୋଜନ କରିବା ସମୟରେ ତାଦୃଶ ଆଚରଣ କରିବେ ନାହିଁ । ୧୨୨ । ପକ୍ଷୀବଧ କରିବାର ଉଚିତ ନୁହେଁ, କିନ୍ତୁ ପକ୍ଷୀ ମାଂସ ଭୋଜନ କରିବେ, ସ୍ୱୟଂ ତାହା ବଧ ନ କରି କ୍ରୟକ୍ରୀତ ମାଂସ ଭକ୍ଷଣ କରିବେ ।

ଅନ୍ୟ ପ୍ରାଜ୍ଞ ପୁରୁଷ ମହାକୁଳରେ ପ୍ରସୂତା ପ୍ରଶସ୍ତ ଲକ୍ଷଣଯୁକ୍ତା ବୟସ୍ଥା କନ୍ୟାଙ୍କୁ ବିବାହ କରିବା ନିମିତ୍ତ ଯୋଗ୍ୟ ହେବେ । ହେ ଭାରତ ! ତହିଁରେ ଅପତ୍ୟ ଉତ୍ପାଦନ କରି ବଂଶ ସ୍ଥାପନ ପୂର୍ବକ ସେମାନଙ୍କୁ ଜ୍ଞାନ ଓ କୁଳ ଧର୍ମ ଶିକ୍ଷାର୍ଥେ ବିଦ୍ୱାନ୍ ବ୍ୟକ୍ତିଙ୍କ ନିକଟରେ ସମର୍ପଣ କରିବେ ଏବଂ କନ୍ୟା ଉତ୍ପାଦନ ଉତ୍ତାରେ ସତ୍‌ବଂଶୋଦ୍ଭବ ଧୀଶକ୍ତିସମ୍ପନ୍ନ ପାତ୍ରଙ୍କୁ ପ୍ରଦାନ କରିବେ । ପୁତ୍ରଗଣଙ୍କର ମଧ୍ୟ ସତ୍‌କୁଳ ସମ୍ବନ୍ଧରେ ବିବାହ ଦେବେ । ଅବଗାହନ ସ୍ନାନ ପୂର୍ବକ ଦୈବ ଓ ପିତ୍ର୍ୟ କର୍ମ କରିବେ । ମନୁଷ୍ୟ ଯେଉଁ ନକ୍ଷତ୍ରରେ ଜନ୍ମଗ୍ରହଣ କରିଅଛନ୍ତି, ତହିଁରେ ପୂର୍ବଭାଦ୍ରପଦ ଓ ଉତ୍ତର ଭାଦ୍ର-ପଦ ନକ୍ଷତ୍ର, କୃତ୍ତିକା ନକ୍ଷତ୍ର ଏବଂ ସ୍ୱାତୀ ନକ୍ଷତ୍ରକୁ ଅବଲମ୍ବନ କରି ସମସ୍ତ ନକ୍ଷତ୍ର ଗଣନା କରି ନଅଦ୍ୱାରା ଭାଗ ହାର କଲେ, ଯେଉଁ ତାରା ପଞ୍ଚମୀ ହେବ, ସେହି ପ୍ରତ୍ୟରି ନକ୍ଷତ୍ରରେ ଦୈବ ଓ ପୈତ୍ର୍ୟ କାର୍ଯ୍ୟ ବର୍ଜନ କରିବେ । ହେ ଭାରତ ! ଜ୍ୟୋତିଷ ଶାସ୍ତ୍ରରେ ତାହା ସବୁ କଥିତ ହୋଇ-ଅଛି । ପୂର୍ବମୁଖ ଉଦଙ୍ମୁଖ ଓ ସମାହିତ ହୋଇ କ୍ଷୌର କର୍ମ ସମ୍ପାଦନ କରିବେ । ହେ ରାଜେନ୍ଦ୍ର ! ତାଦୃଶ ଆଚରଣ କଲେ ଦୀର୍ଘାୟୁ ଲାଭ ହୁଏ । ୧୨୯ ।

ଆପଣାର ଏବଂ ପରର ପରିବାଦ କହିବେ ନାହିଁ । ହେ ଭରତ ! ପରିବାଦ ଅଧର୍ମ ନିମିତ୍ତ ହୁଏ ବୋଲି କଥିତ ଅଛି । ୧୩୦ । ହେ ନରୋତ୍ତମ ! ନ୍ୟୂନାଙ୍ଗୀ ନାରୀ ଏବଂ କନ୍ୟାକୁ ପରିତ୍ୟାଗ କରିବେ, ସମାନ-ପ୍ରବର, ବିରୂପାଙ୍ଗୀ, ଅଧିକାଙ୍ଗୀ, ମାତୃକୁଳଜାତା, ବର୍ଷୀୟସୀ, ପ୍ରବ୍ରଜିତା,

ପତିବ୍ରତା, ନକୃଷ୍ଟବର୍ଣ୍ଣା ଏବଂ ବର୍ଣ୍ଣୋତ୍କୃଷ୍ଟା କନ୍ୟାକୁ ପରିବର୍ଜନ କରିବେ । ବିଚକ୍ଷଣ ମାନବ ଅଜ୍ଞାତକୁଳଶୀଳା ଓ ହୀନକୁଳୋତ୍ପନ୍ନା ରମଣୀ ନିକଟକୁ ଗମନ କରିବେ ନାହିଁ । ପିଙ୍ଗଳବର୍ଣ୍ଣା ଓ କୁଷ୍ଠରୋଗବତୀ ଯୁବତୀକୁ ଆରୋହଣ କରିବା ତୁମ୍ଭର ଉଚିତ ନୁହେଁ । ୧୩୩ । ହେ ନରନାଥ ! ଅପସ୍ମାର ରୋଗବିଶିଷ୍ଟ ବ୍ୟକ୍ତିଙ୍କ ବଂଶରେ ଯେଉଁ କନ୍ୟା ଜନ୍ମଗ୍ରହଣ କରିଅଛି, ଯେଉଁ କନ୍ୟା ଶ୍ୱିତ୍ର ରୋଗଯୁକ୍ତ ବ୍ୟକ୍ତିଗଣଙ୍କ କୁଳରେ ଉତ୍ପନ୍ନ ହୋଇଅଛି ଏବଂ ଯେଉଁ କନ୍ୟା ଅତି ହୀନକୁଳରେ ଜନ୍ମିଅଛି, ସେହି-ମାନଙ୍କୁ ତ୍ୟାଗ କରିବାର ଉଚିତ । ୧୩୪ । ଯେଉଁ କନ୍ୟା ସୁଲକ୍ଷଣସମନ୍ୱିତା, ପ୍ରଶସ୍ତଲକ୍ଷଣଯୁକ୍ତା, ମନୋଜ୍ଞା ଓ ଦର୍ଶନୀୟା ତାହାର ତୁମ୍ଭେ ବିବାହ କରିପାର । ୧୩୫ । ହେ ଯୁଧିଷ୍ଠିର ! ମହାବଂଶରେ, ଅବର ସଦୃଶ କୁଳରେ, ପରିଣୟ କରିବାର ବିଧେୟ । ଐଶ୍ୱର୍ଯ୍ୟକାମ ବ୍ୟକ୍ତି ହୀନବର୍ଣ୍ଣା ପତିତା କନ୍ୟାଙ୍କୁ ଗ୍ରହଣ କରିବେ ନାହିଁ । ୧୩୬ । ଯତ୍ନପୂର୍ବକ ଅଗ୍ନିତ୍ରୟ ଉତ୍ପାଦନ କରି ବ୍ରାହ୍ମଣଗଣଙ୍କ ଦ୍ୱାରା ବେଦରେ ଯେଉଁ କ୍ରିୟାସମୂହ ଉକ୍ତ ହୋଇଅଛି, ତାହାସବୁ ଆଚରଣ କରିବେ ।

ସ୍ତ୍ରୀଗଣଙ୍କଠାରେ ଈର୍ଷା କରିବାର ଉଚିତ ନୁହେଁ, ରମଣୀଗଣଙ୍କୁ ସର୍ବତୋଭାବରେ ରକ୍ଷା କରିବାର ଉଚିତ । ସ୍ତ୍ରୀଙ୍କଠାରେ ଈର୍ଷାକଲେ ପରମାୟୁ ଅଳ୍ପ ହୁଏ, ସେହି କାରଣରୁ ଈର୍ଷାକୁ ପରିତ୍ୟାଗ କରିବେ ।୧୩୮। ଦିବାନିଦ୍ରା ଓ ଅଭ୍ୟୁଦୟ ସମୟରେ ଶୟନ ଏହା ଅନାୟୁଷ୍ୟ । ଯେଉଁମାନେ ନିଶାର ପ୍ରଥମ ଭାଗରେ ନିଦ୍ରିତ ହୁଅନ୍ତି ଏବଂ ଉଚ୍ଛିଷ୍ଟ ରଖି ଶୟନ କରନ୍ତି, ସେମାନେ ଅଳ୍ପାୟୁ ହୁଅନ୍ତି । ୧୩୯ । ପରସ୍ତ୍ରୀହରଣ କଲେ ଆୟୁ ଅଳ୍ପ ହୁଏ, କ୍ଷୌରକର୍ମ ସମ୍ପନ୍ନ ହେବାରୁ ସ୍ନାନ କଲେ ଆୟୁ ହ୍ରାସ ହୁଏ । ହେ ଭାରତ ! ସାୟଂକାଳରେ ଯତ୍ନପୂର୍ବକ ଅଧ୍ୟୟନ କରିବ ନାହିଁ ।୧୪୦। ସନ୍ଧ୍ୟା ସମୟରେ ଭୋଜନ କରିବ ନାହିଁ, ସ୍ନାନ କରିବ ନାହିଁ ଏବଂ ପଠନ କରିବ ନାହିଁ । ତେତେବେଳେ ପ୍ରଯତ ହେବ, କୌଣସି କାର୍ଯ୍ୟ କରିବ ନାହିଁ । ୧୪୧ । ହେ ନରାଧିପ ! ସ୍ନାନ କରି ବ୍ରାହ୍ମଣଗଣଙ୍କୁ ପୂଜା କରିବ, ସ୍ନାତ ହୋଇ ଦେବଗଣଙ୍କର ପୂଜା କରିବ ଏବଂ ଗୁରୁଜନଗଣଙ୍କୁ ଅଭିବାଦନ କରିବ । ୧୪୨ ।

ହେ ଭାରତ ! ନିମନ୍ତ୍ରିତ ନ ହେଲେ କୌଣସିଠାକୁ ଗମନ କରିବ ନାହିଁ, କେବଳ ଯଜ୍ଞସ୍ଥଳକୁ ଦର୍ଶକ ହୋଇ ଗମନ କରିପାରିବ । ଗମନ କରି ସତ୍କୃତ ନ ହେଲେ ଅନାୟୁଷ୍ୟ ହୁଏ । ୧୪୩ । ଏକ ବ୍ୟକ୍ତିଙ୍କ ସହିତ

ଦେଶାନ୍ତରକୁ ଗମନ କରିବ ନାହିଁ ଏବଂ ନିଶାକାଳରେ ଗମନ କରିବାର ଅବିଧେୟ, ସନ୍ଧ୍ୟାପୂର୍ବରୁ ଗୃହକୁ ଆସି ବାସ କରିବାର ବିଧେୟ । ମାତାପିତା ଓ ଗୁରୁଜନମାନଙ୍କର ଅନୁଶାସନ ଗ୍ରହଣ କରିବାର ଉଚିତ, ସେମାନଙ୍କ ଉପଦେଶ ହିତ ହେଉ ବା ଅହିତ ହେଉ, କଦାପି ତାହା ବିଗ୍ଭର କରିବାର ଉଚିତ ନୁହେଁ ।୧୪୫ । ହେ ନରନାଥ ! ଧନୁର୍ବେଦ ଓ ବେଦ-ପାଠରେ, ହସ୍ତୀପୃଷ୍ଠରେ, ଅଶ୍ୱପୃଷ୍ଠରେ ଆରୋହଣ ଏବଂ ରଥଗ୍ଭଳନ ପ୍ରଭୃତି କାର୍ଯ୍ୟରେ ଯତ୍ନ କରିବାର ଉଚିତ । ହେ ରାଜେନ୍ଦ୍ର ! ତୁମ୍ଭେ ଯତ୍ନବାନ ହୁଅ, ଯତ୍ନବାନ୍ ନର ସୁଖୀ ହୁଅନ୍ତି ଏବଂ ଶତ୍ରୁମାନଙ୍କର, ଭୃତ୍ୟଗଣଙ୍କର ଓ ସ୍ୱଜନ ବର୍ଗଙ୍କର ଅନଭିଭବନୀୟ ହୁଅନ୍ତି । ୧୪୭ । ପ୍ରଜାପାଳନରେ ନିଯୁକ୍ତ ହୋଇ କଦାପି କ୍ଷତିଗ୍ରସ୍ତ ହୁଅନା । ହେ ନରନାଥ ଭରତ ! ତୁମ୍ଭର ଯୁକ୍ତିଶାସ୍ତ୍ର, ଗାନ୍ଧର୍ବ ବିଦ୍ୟା ଓ ନୃତ୍ୟଗୀତାଦି ବିଦ୍ୟା ଜାଣିବାର ବିହିତ । ପୁରାଣ, ଇତିହାସ, ଆଖ୍ୟାନ ଏବଂ ମହାତ୍ମାଗଣଙ୍କ ଚରିତ ସର୍ବଦା ଶ୍ରବଣ କରିବାର ଉଚିତ ।

ବିଚକ୍ଷଣ ବ୍ୟକ୍ତି ରଜସ୍ୱଳା ସ୍ତ୍ରୀଙ୍କ ନିକଟକୁ ଗମନ କରିବେ ନାହିଁ ଏବଂ ତାହାଙ୍କୁ ଆହ୍ୱାନ କରିବେ ନାହିଁ । ଚତୁର୍ଥ ଦିବସରେ ଋତୁସ୍ନାତା ସ୍ତ୍ରୀଙ୍କ ନିକଟକୁ ରାତିରେ ଗମନ କରିବେ, ପଞ୍ଚମ ଦିବସରେ କନ୍ୟା ଏବଂ ଷଷ୍ଠ ଦିବସରେ ପୁତ୍ର ଜନ୍ମେ । ୧୫୧ । ପଣ୍ଡିତ ବ୍ୟକ୍ତି ଏହି ବିଧି ଅନୁସାରେ ପତ୍ନୀଙ୍କ ନିକଟକୁ ଗମନ କରିବେ । ଜ୍ଞାତି, ସମ୍ବନ୍ଧୀ ଓ ମିତ୍ରଗଣ ସର୍ବତୋ-ଭାବରେ ପୂଜନୀୟ । ୧୫୨ । ଶକ୍ତିଅନୁସାରେ ବିବିଧ ଦକ୍ଷିଣ ଯଜ୍ଞଦ୍ୱାରା ଦେବଗଣଙ୍କୁ ପୂଜା କରିବାର ଉଚିତ । ହେ ନରାଧିପ ! ଅତଃପର ଅରଣ୍ୟରେ ବାସ କରିବାର ଉଚିତ । ୧୫୩ । ହେ ଯୁଧିଷ୍ଠିର ! ତୁମ୍ଭ ନିକଟରେ ଏହି ଆୟୁଷ୍କର ଲକ୍ଷଣ ସମୂହ ସଂକ୍ଷେପରେ କୀର୍ତ୍ତିତ ହେଲା । ଅବଶିଷ୍ଟ ଲକ୍ଷଣ ସମୂହ ତ୍ରିବେଦଜ୍ଞ ବୃଦ୍ଧଗଣଙ୍କ ନିକଟରୁ ଅବଗତ ହେବ । ଆଗ୍ଭର ହେତୁ ଐଶ୍ୱର୍ଯ୍ୟ ହୁଏ । ଆଗ୍ଭର କୀର୍ତ୍ତିବର୍ଦ୍ଧନ କରେ, ଆଗ୍ଭର ହେତୁ ଆୟୁବୃଦ୍ଧି ହୁଏ । ଆଗ୍ଭର ଅଲକ୍ଷଣ ହରଣ କରେ । ୧୫୫ । ସମସ୍ତ ଆଗମ ମଧ୍ୟରେ ଆଗ୍ଭର ଶ୍ରେଷ୍ଠ ରୂପେ ଉକ୍ତ ହୁଏ, ଆଗ୍ଭର ହେତୁରୁ ଧର୍ମ ହୁଏ, ଧର୍ମରୁ ଆୟୁବୃଦ୍ଧି ହୁଏ । ୧୫୬ । ବ୍ରହ୍ମା ବର୍ଣ୍ଣସମୂହରେ ଅନୁକମ୍ପା କରି ଏହି ଯଶସ୍ୟ, ଆୟୁଷ୍ୟ ଓ ସ୍ୱର୍ଗସୁଖକର ମହତ୍ ସ୍ୱସ୍ତ୍ୟୟନ କୀର୍ତ୍ତନ କରିଥିଲେ । ୧୫୭ ।

# ଅଧ୍ୟାୟ—୧୦୫

ଯୁଧିଷ୍ଠିର କହିଲେ—ହେ ଭରତଶ୍ରେଷ୍ଠ ! ଜ୍ୟେଷ୍ଠଭ୍ରାତା କନିଷ୍ଠ ସହୋଦରଗଣଙ୍କଠାରେ ଯେଉଁପରି ବ୍ୟବହାର କରିବେ, ଏବଂ କନିଷ୍ଠ-ଗଣ ଜ୍ୟେଷ୍ଠଙ୍କଠାରେ ଯେଉଁପରି ଆଚରଣ କରିବେ, ତାହା ଆପଣ ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ ! ୧ । ଭୀଷ୍ମ କହିଲେ, ହେ ତାତ ! ତୁମ୍ଭେ ଜ୍ୟେଷ୍ଠ ସଦୃଶ ସର୍ବଦା ବ୍ୟବହାର କର; କାରଣ ତୁମ୍ଭେ ଜ୍ୟେଷ୍ଠ । ହେ ଭାରତ ! ଗୁରୁଙ୍କଠାରେ ଶିଷ୍ୟଙ୍କର ଯେଉଁ ଗୁରୁତର ବ୍ୟବହାର ହୋଇଥାଏ, ଅକୃତପ୍ରଜ୍ଞ ଗୁରୁଙ୍କ ନିକଟରେ ଶିଷ୍ୟ ତଦ୍‌ବତ୍ ରହିପାରନ୍ତି ନାହିଁ । ହେ ଭାରତ ! ଗୁରୁଙ୍କ ଯେଉଁପରି ଦୀର୍ଘଦର୍ଶିତ୍ୱ ଆବଶ୍ୟକ, ଶିଷ୍ୟଙ୍କର ମଧ୍ୟ ତାଦୃଶ ଦୂରଦର୍ଶିତା ପ୍ରୟୋଜନୀୟ । ଗୁରୁଙ୍କ ଦୋଷ ଦର୍ଶନ ସମୟରେ ଅନ୍ଧସଦୃଶ ହେବେ, ବୁଧ ବ୍ୟକ୍ତି ଜଡ଼ ହୋଇଥିଲେ ତାହାଙ୍କର ଯଦି କୌଣସି ବ୍ୟତିକ୍ରମ ଥାଏ, ତାହା ପରିହାରଦ୍ୱାରା ଅନ୍ୟଥା କରି ଅନ୍ୟ କଥା କହିବେ । ୪ । ହେ କୌନ୍ତେୟ ! ଅରିଗଣ ଭ୍ରାତୃଭେଦ କାମନା କରି ସେମାନଙ୍କ ଶ୍ରୀଦର୍ଶନରେ ପ୍ରତ୍ୟକ୍ଷ ଭଗ୍ନହୃଦୟ ହୋଇ ଭ୍ରାତୃ-ଗଣଙ୍କର ସୌଭ୍ରାତ୍ର ଭେଦ କରିଦିଅନ୍ତି । ୫ । ଜ୍ୟେଷ୍ଠ ବଂଶବୃଦ୍ଧି କରନ୍ତୁ ଅଥବା କୁଳ ବିନାଶ କରନ୍ତୁ, ସମସ୍ତ ବିନଷ୍ଟ କରିପାରନ୍ତି, କାରଣ ତାହାଙ୍କଦ୍ୱାରା ବଂଶର ଉତ୍ପତ୍ତି ହୁଏ ।୬। ଯେଉଁ ଜ୍ୟେଷ୍ଠ ଭ୍ରାତା କନିଷ୍ଠଗଣଙ୍କୁ ବଞ୍ଚନା କରନ୍ତି, ସେ ଜ୍ୟେଷ୍ଠ ନୁହନ୍ତି, ସେ ଭାଗଯୋଗ୍ୟ ନୁହନ୍ତି । ନୃପତି-ଗଣ ତାଦୃଶ ଜ୍ୟେଷ୍ଠଙ୍କୁ ଶାସିତ କରିବେ । ୭ । ପ୍ରବଞ୍ଚକ ନର ପାପଲୋକ-ସମୂହକୁ ଗମନ କରନ୍ତି, ସଂଶୟ ନାହିଁ । ପିତାର ତାଦୃଶ ପୁତ୍ର ବେତସ ବୃକ୍ଷର ପୁଷ୍ପସଦୃଶ ବିଫଳ ମାତ୍ର, ଏହା ସ୍ମୃତିରେ ଉକ୍ତ ହୋଇଅଛି । ୮ ।

ଯେଉଁ ବଂଶରେ ପାପାତ୍ମା ପୁରୁଷ ଜନ୍ମଗ୍ରହଣ କରନ୍ତି, ସେହି କୁଳରେ ସମସ୍ତ ଅନର୍ଥ ଘଟିଥାଏ, ସେ ଅକୀର୍ତ୍ତି ଉତ୍ପାଦନ କରେ ଓ କୀର୍ତ୍ତିର ଅନ୍ତର୍ଦ୍ଧାନ ବିଧାନ କରେ । ୯ । ସମସ୍ତ ବିକର୍ମସ୍ଥ ସହୋଦରଗଣ ପୈତୃକ-ଅଂଶ ଗ୍ରହଣ କରିବାକୁ ଯୋଗ୍ୟ ନୁହନ୍ତି, କନିଷ୍ଠଗଣଙ୍କୁ ଅଂଶପ୍ରଦାନ କରି, ଜ୍ୟେଷ୍ଠ କଦାଚ ଦାୟ ବିଭାଗ କରିବେ ନାହିଁ । ୧୦ । ପ୍ରବାସୀ ବ୍ୟକ୍ତି ପୈତୃକ ଧନର ଉପଘାତ ନ କରି ଜଙ୍ଘାଶ୍ରମ ଫଳମାତ୍ର ପ୍ରାପ୍ତ ହୁଅନ୍ତି । ଅକାମଜନ ସ୍ୱୟଂ ସମାହୃତ ଲବ୍‌ଧ ଦାନ କରିବାକୁ ସମର୍ଥ

ନୁହନ୍ତି । ୧୧ । ଅବିଭକ୍ତ ଭ୍ରାତୃଗଣଙ୍କର ଭୋଜନାଦି ଅଥବା ଧନ ବିଭାଗ ଏକ ସମୟରେ କର୍ତ୍ତବ୍ୟ । ପିତା ପୁତ୍ରଗଣଙ୍କୁ, କଦାପି ବିଷମ ଭାଗ ପ୍ରଦାନ କରିବେ ନାହିଁ । ୧୨ । ଜ୍ୟେଷ୍ଠ ଭ୍ରାତା ଦୁଷ୍କୃତି ଅଥବା ସୁକୃତି ହୁଅନ୍ତୁ ତାହାଙ୍କୁ କଦାପି ଅବଜ୍ଞା କରିବାର ଉଚିତ ନୁହେଁ ।

ସ୍ତ୍ରୀ କିମ୍ବା କନିଷ୍ଠ ଭ୍ରାତା ଯଦି ଦୁଷ୍କୃତ କରନ୍ତି, ତଥାପି ସେମାନଙ୍କର ଯାହା ଶ୍ରେୟ ଲାଭ ହେବ, ସେହିପରି ଆଚରଣ କରିବେ । ୧୩ । ଧର୍ମଜ୍ଞ ବ୍ୟକ୍ତିଗଣ ଶ୍ରେୟକୁ ଧର୍ମ ବୋଲି କହନ୍ତି । ଦଶ ଆଚାର୍ଯ୍ୟ ଅପେକ୍ଷା ଗୋଟିଏ ଉପାଧ୍ୟାୟ ଶ୍ରେଷ୍ଠ, ଦଶ ପିତା ଅପେକ୍ଷା ମାତା ଗରୀୟସୀ, ମାତା ଗୌରବ ଦ୍ୱାରା ସମସ୍ତ ବସୁନ୍ଧରାକୁ ଅଭିଭବ କରନ୍ତି, ଅତଏବ ମାତୃସମାନ ଗୁରୁ ନାହାନ୍ତି ।୧୫। ମାତା ଗରୀୟସୀ ବୋଲି ଲୋକମାନେ ତାହାଙ୍କୁ ମାନ୍ୟ କରନ୍ତି । ହେ ଭାରତ ! ପିତା ପରଲୋକ ଗମନ କଲେ ଜ୍ୟେଷ୍ଠ ଭ୍ରାତା ପିତୃ-ସମାନ । ୧୬ । କାରଣ ସେ କନିଷ୍ଠଗଣଙ୍କର ବୃତ୍ତିଦାତା ହୁଅନ୍ତି । ସେ ସେମାନଙ୍କୁ ପ୍ରତିପାଳନ କରନ୍ତି, କନିଷ୍ଠଗଣ ସମସ୍ତେ ବଶବର୍ତ୍ତୀ ହୋଇ ତାହାଙ୍କୁ ନମସ୍କାର କରିବେ ଏବଂ ପିତାଙ୍କୁ ଯେଉଁପରି ଉପଜୀବ୍ୟ କରି ଜୀବନଯାପନ କରନ୍ତି, ତଦ୍‌ବତ୍ ଭ୍ରାତାଙ୍କୁ ଅବଲମ୍ବନ କରି ଜୀବନଯାତ୍ରା ନିର୍ବାହ କରିବେ । ହେ ଭାରତ ! ପିତାମାତା ଏହି ଶରୀରକୁ ସର୍ଜନ କରନ୍ତି ଓ ଆଚାର୍ଯ୍ୟଙ୍କ ଶାସନାନୁସାରେ ରହନ୍ତି; ସେହି ଜାତି ସତ୍ୟ, ଅଜର ଅମର । ହେ ଭରତଶ୍ରେଷ୍ଠ ! ଜ୍ୟେଷ୍ଠା ଭଗିନୀ ଓ ଜ୍ୟେଷ୍ଠ ଭ୍ରାତାଙ୍କ ଭାର୍ଯ୍ୟା ମାତୃସଦୃଶୀ, କାରଣ ବାଲ୍ୟକାଳରେ ସେମାନଙ୍କର ସ୍ତନ୍ୟ ପାନ କରା-ଯାଏ । ୨୦ ।

---

## ଅଧ୍ୟାୟ—୧୦୭

ଯୁଧିଷ୍ଠିର କହିଲେ—ହେ ପିତାମହ ! ସମସ୍ତ ବର୍ଣ୍ଣ ଏବଂ ମ୍ଳେଚ୍ଛ-ମାନଙ୍କର ଉପବାସ କରିବାରେ ମତି ଦେଖାଯାଉଛି, କିନ୍ତୁ ଆମ୍ଭେମାନେ ତାହାଙ୍କର କିଛି କାରଣ ଜାଣି ପାରୁନାହୁଁ । ୧ । ବ୍ରାହ୍ମଣ ଓ କ୍ଷତ୍ରିୟର ନିୟମାଚରଣ କରିବା କର୍ତ୍ତବ୍ୟ; ଏହା ଆମ୍ଭେମାନେ ଶ୍ରବଣ କରିଅଛୁ, କିନ୍ତୁ ହେ ପିତାମହ ! ଉପବାସ ବିଷୟରେ ସେମାନଙ୍କର କେଉଁ ପ୍ରକାରରେ

କର୍ତ୍ତବ୍ୟ ଅଛି ? ହେ ପାର୍ଥିବ ! ସମସ୍ତଙ୍କର ନିୟମ ଓ ଉପବାସ ବିଷୟ କୀର୍ତ୍ତନ କରନ୍ତୁ । ହେ ତାତ ! ଉପବାସପରାୟଣ ମନୁଷ୍ୟ, କେଉଁ ଗତି ପ୍ରାପ୍ତ ହୁଅନ୍ତି ? ୩ । ଉପବାସ ପରମପୁଣ୍ୟ, ଉପବାସ ପରମ ଅବଲମ୍ବନ । ୪ । ହେ ନରଶ୍ରେଷ୍ଠ ! ଇହଲୋକରେ ମନୁଷ୍ୟ ଉପବାସ କଲେ କେଉଁ ଫଳ ପ୍ରାପ୍ତ ହୁଅନ୍ତି ? ୪ । କେଉଁପରି ଧର୍ମଲାଭ କରନ୍ତି ? ହେ ରାଜନ୍ ! ମନୁଷ୍ୟ କେଉଁ ପରି ସ୍ୱର୍ଗ ଓ ପୁଣ୍ୟଲାଭ କରନ୍ତି ? ୫ । ହେ ନରନାଥ ! ଉପବାସ କଲେ କେଉଁ ଦାନ କରିବାକୁ ହୁଏ ? ଯେଉଁ ଧର୍ମଦ୍ୱାରା ସମସ୍ତ ସୁଖକର ବିଷୟ ଲବ୍ଧ ହୁଏ, ଆପଣ ତାହା କୀର୍ତ୍ତନ କରନ୍ତୁ । ୬ ।

ବୈଶମ୍ପାୟନ କହିଲେ, କୁନ୍ତୀନନ୍ଦନ ଧର୍ମଜ୍ଞ ଧର୍ମପୁତ୍ର ଏହିପରି ପ୍ରଶ୍ନ କରନ୍ତେ, ଧର୍ମତତ୍ତ୍ୱବିତ୍ ଶାନ୍ତନୁନନ୍ଦନ ଭୀଷ୍ମ, ତାହାଙ୍କୁ ଏହି କଥା କହିଲେ । ୭ । ଭୀଷ୍ମ କହିଲେ, ହେ ଭରତଶ୍ରେଷ୍ଠ ! ମହାରାଜ ! ଉପବାସ ବିଷୟରେ ଯେଉଁ ସମସ୍ତ ଶ୍ରେଷ୍ଠ ଗୁଣ ଅଛି, ତତ୍ସମ୍ବନ୍ଧରେ ଆମ୍ଭର ଏହି ପୁରାତନ ପ୍ରବନ୍ଧ ଶୁଣାଥିଲା । ହେ ଭାରତ ! ତୁମ୍ଭେ ଆମ୍ଭଙ୍କୁ ଯେଉଁପରି ପ୍ରଶ୍ନ କରିଅଛ, ତଦ୍‌ବତ୍ ପୂର୍ବେ ଆମ୍ଭେ ତପୋଧନ ଋଷି ଅଙ୍ଗିରାଙ୍କୁ ପ୍ରଶ୍ନ କରି-ଥିଲୁଁ । ୯ । ହେ ଭରତସତ୍ତମ ! ଆମ୍ଭେ ଭଗବାନ୍ ଅଗ୍ନିସମ୍ଭବ ଅଙ୍ଗିରା ଋଷିଙ୍କୁ ଏହି ପବିତ୍ର ଉପବାସ ବିଷୟ ପ୍ରଶ୍ନ କରନ୍ତେ, ସେ ଆମ୍ଭ ପ୍ରଶ୍ନାନୁ-ସାରେ ଉତ୍ତର କଲେ । ୧୦ ।

ଅଙ୍ଗିରା କହିଲେ, ହେ ପୁରୁଷପ୍ରବର କୁରୁନନ୍ଦନ ! ବ୍ରାହ୍ମଣ ଏବଂ କ୍ଷତ୍ରିୟଙ୍କର ତ୍ରିରାତ୍ରାଧିକ ଉପବାସ ଇଷ୍ଟ ନୁହେଁ, ଦ୍ୱିରାତ୍ର, ତ୍ରିରାତ୍ର ଓ ଏକରାତ୍ର ନିର୍ଦ୍ଦିଷ୍ଟ ହୋଇଅଛି । ୧୧ । ବୈଶ୍ୟ ଓ ଶୂଦ୍ରସମୂହ ଯେ ମୋହବଶରେ ଦ୍ୱିରାତ୍ର ଅଥବା ତ୍ରିରାତ୍ର ଉପବାସ କରନ୍ତି, ତହିଁରେ ସେହିମାନଙ୍କର କୌଣସି ଫଳ ନାହିଁ । ୧୨ । ବୈଶ୍ୟ ଓ ଶୂଦ୍ରମାନଙ୍କର ଚତୁର୍ଥ ଭକ୍ତ କ୍ଷପଣ ଓ ଦ୍ୱିରାତ୍ର ପର୍ଯ୍ୟନ୍ତ ଉପବାସ କରିବାର ବିଧେୟ । ଧର୍ମଦର୍ଶୀ ଧର୍ମଜ୍ଞ ଋଷିଗଣ ବୈଶ୍ୟ ଓ ଶୂଦ୍ରଗଣଙ୍କର ତ୍ରିରାତ୍ର ଉପବାସ ବିଧାନ କରି ନାହାନ୍ତି । ୧୩ । ହେ ଭାରତ ! ମନୁଷ୍ୟ ଜିତେନ୍ଦ୍ରିୟ ଓ ନିୟତାତ୍ମା ହୋଇ ପଞ୍ଚମୀ, ଷଷ୍ଠୀ ଓ ପୌର୍ଣ୍ଣମାସୀ ତିଥିରେ ଏକବାର ମାତ୍ର ଆହାର କରି ଉପବାସୀ ହେଲେ କ୍ଷମାବାନ୍, ରୂପବାନ୍ ଓ ଶାସ୍ତ୍ରଜ୍ଞାନସମ୍ପନ୍ନ ହୁଅନ୍ତି । ପ୍ରାଜ୍ଞ ବ୍ୟକ୍ତି ଏହିପରି ଉପବାସ କଲେ କଦାପି ଅନପତ୍ୟ ଓ ଦରିଦ୍ର ହୁଏ ନାହିଁ । ୧୫ । ପଞ୍ଚମୀ ଓ ଷଷ୍ଠୀ ତିଥିରେ ଯଜନଶୀଳ ଜନ ସତ୍‌କୁଳଜାତ ଦ୍ୱିଜଗଣଙ୍କୁ ଭୋଜନ କରାଇବେ ।

ହେ କୁରୁନନ୍ଦନ ! କୃଷ୍ଣପକ୍ଷର ଅଷ୍ଟମୀ ଏବଂ ଚତୁର୍ଦ୍ଦଶୀ ତିଥିରେ ଉପବାସ କଲେ, ମନୁଷ୍ୟ ବ୍ୟାଧିଶୂନ୍ୟ ଓ ବୀର୍ଯ୍ୟବାନ୍ ହୁଅନ୍ତି । ଯେ ମାର୍ଗଶୀର୍ଷ ମାସରେ ଏକ ଆହାର କରି ସମସ୍ତ ମାସ ଯାପନ କରନ୍ତି, ଭକ୍ତି-ପୂର୍ବକ ଦ୍ୱିଜଗଣଙ୍କୁ ଭୋଜନ କରାନ୍ତି, ସେ ବ୍ୟାଧି ଓ ପାପରୁ ମୁକ୍ତ ହୁଅନ୍ତି । ସର୍ବକଲ୍ୟାଣସମ୍ପନ୍ନ ସର୍ବୌଷଧିସମନ୍ୱିତ ମାନବ ପୂର୍ବୋକ୍ତ ତିଥିରେ ଉପବାସ କଲେ ବ୍ୟାଧିରହିତ ଓ ବୀର୍ଯ୍ୟବାନ୍ ହୁଅନ୍ତି । ସେ କୃଷିଭାଗୀ ଓ ବହୁଳ ଧନଧାନ୍ୟସମନ୍ୱିତ ହୁଅନ୍ତି । ୧୯ । ହେ କୌନ୍ତେୟ ! ଯେ ପୌଷ ମାସକୁ ଏକାହାରଦ୍ୱାରା ଅତିବାହିତ କରନ୍ତି, ସେ ସୌଭାଗ୍ୟଶାଳୀ, ପ୍ରିୟଦର୍ଶନ ଓ ଯଶୋଭାଗୀ ହୁଅନ୍ତି । ୨୦ । ଯେ ମାଘ ମାସରେ ନିୟତ ଏକାହାର କରି କାଳଯାପନ କରନ୍ତି; ସେ ଶ୍ରୀସମ୍ପନ୍ନ ବଂଶରେ ଜ୍ଞାତିଗଣଙ୍କ ମଧ୍ୟରେ ମହତ୍ତ୍ୱ ପ୍ରାପ୍ତ ହୁଅନ୍ତି, ତାହାଙ୍କର ସ୍ତ୍ରୀବୃନ୍ଦ ବଶୀଭୂତ ହୁଅନ୍ତି । ୨୨। ଯେ ଏକାହାରଦ୍ୱାରା ନିୟତ ଚୈତ୍ର ମାସ କ୍ଷେପଣ କରନ୍ତି, ସେ ସୁବର୍ଣ୍ଣ ମଣି-ମୁକ୍ତାଯୁକ୍ତ ମହତ୍ କୁଳରେ ଜନ୍ମଗ୍ରହଣ କରନ୍ତି । ୨୩ ।

ଜିତେନ୍ଦ୍ରିୟ ହୋଇ ଏକାହାରଦ୍ୱାରା ବୈଶାଖ ମାସରୁ ଉତ୍ତୀର୍ଣ୍ଣ ହେଲେ ନର ଅଥବା ନାରୀ ଜ୍ଞାତିଗଣ ମଧ୍ୟରେ ଶ୍ରେଷ୍ଠତ୍ୱ ଲାଭ କରନ୍ତି ।୨୪। ଯେ ଜ୍ୟେଷ୍ଠ ମାସରେ ଏକାହାରଦ୍ୱାରା କାଳ କ୍ଷେପଣ କରନ୍ତି, ସେ ପୁରୁଷ ଅଥବା ସ୍ତ୍ରୀ ହେଉନ୍ତୁ, ଉତ୍କୃଷ୍ଟ ଅତୁଳ ଐଶ୍ୱର୍ଯ୍ୟ ପ୍ରାପ୍ତ ହୁଅନ୍ତି । ୨୫ । ଯେ ଆଷାଢ଼ ମାସରେ ଏକାହାର କରି ଅତନ୍ଦ୍ରିତ ହୋଇ ଅବସ୍ଥାନ କରନ୍ତି, ସେ ବହୁ ଧନଧାନ୍ୟସମନ୍ୱିତ ହୁଅନ୍ତି ଓ ବହୁପୁତ୍ର ଲାଭ କରନ୍ତି । ୨୬ । ଯେ ନିୟତ ଏକଭକ୍ତ ହୋଇ ଶ୍ରାବଣ ମାସ ଯାପନ କରନ୍ତି, ସେ ଯେଉଁ ଦେଶରେ ବାସ କରିଥାଆନ୍ତି, ସେହି ଦେଶରେ ଆଧିପତ୍ୟ ବିସ୍ତାର କରିବାକୁ ସମର୍ଥ ହୁଅନ୍ତି, ଏବଂ ତାହାଙ୍କ ହେତୁରୁ ତଦୀୟ ଜ୍ଞାତିଗଣ ସମୃଦ୍ଧି ଲାଭ କରନ୍ତି ।୨୭। ଯେଉଁ ଜନ ଭାଦ୍ରମାସରେ ଏକାହାର କରନ୍ତି, ସେ ଗୋଧନସମ୍ପନ୍ନ ହୋଇ ସମୃଦ୍ଧି ଓ ଅଚଳ ଐଶ୍ୱର୍ଯ୍ୟ ଲାଭ କରନ୍ତି ।୨୮। ସେ ଶୁଦ୍ଧ ବାହନାଢ୍ୟ ହୋଇ ବହୁପୁତ୍ର ହୁଅନ୍ତି । ୨୯ । ଯେଉଁ ନର କାର୍ତ୍ତିକ ମାସରେ ଏକାହାର କରନ୍ତି, ସେ ଶୂର, ବହୁଭାର୍ଯ୍ୟ ଓ କୀର୍ତ୍ତିମାନ ହୁଅନ୍ତି । ୩୧ ।

ହେ ନରଶ୍ରେଷ୍ଠ ! ମହାରାଜ ! ପ୍ରତିମାସରେ ନରଗଣ ଏକାହାର-ଦ୍ୱାରା ଯେଉଁ ଫଳ ପ୍ରାପ୍ତ ହୁଅନ୍ତି, ତାହା କୀର୍ତ୍ତିତ ହେଲା, ସମ୍ପ୍ରତି ତିଥି-ମାନଙ୍କର ଯେଉଁ ସମସ୍ତ ନିୟମ ଅଛି, ତାହା ଶ୍ରବଣ କର । ୩୧ । ଯେ ଏକ ଏକ ପକ୍ଷ ଅତୀତ ହେଲେ ଅନ୍ନ ଭୋଜନ କରନ୍ତି, ସେ

ଗୋଧନସମନ୍ୱିତ ବହୁପୁତ୍ର ଓ ଦୀର୍ଘାୟୁ ହୁଅନ୍ତି ।୩୨। ଯେ ଦ୍ୱାଦଶ ବର୍ଷକାଳ ପ୍ରତିମାସରେ ନିରନ୍ତର ଉପବାସ ବ୍ରତ କରନ୍ତି, ସେ ନିଷ୍ପାପ ଓ ନିଷ୍କଣ୍ଟକ ହୋଇ ଗଣାଧିପତ୍ୟ ଲାଭ କରନ୍ତି । ୩୩ । ହେ ଭରତପ୍ରବର ! ପ୍ରବୃତ୍ତି ବଶବର୍ତ୍ତୀ ନରଗଣଙ୍କର ଦ୍ୱାଦଶ ବର୍ଷକାଳ ଏହି ନିୟମସମୂହ ପ୍ରତିପାଳନ କରିବାର ଉଚିତ । ହେ ରାଜନ୍ ! ଯେଉଁ ବ୍ୟକ୍ତି ପ୍ରାତଃକାଳରେ ଓ ସାୟଂ ସମୟରେ ଭୋଜନ କରି ଏହିମଧ୍ୟରେ ଆଉ କିଛି ଜଳପାନ ନ କରନ୍ତି ଏବଂ ଅହିଂସାନିରତ ହୋଇ ହୁତାଶନରେ ହୋମ କରନ୍ତି, ସେ ଛଅବର୍ଷ ମଧ୍ୟରେ ସିଦ୍ଧ ହୁଅନ୍ତି, ଏଥିରେ ସଂଶୟ ନାହିଁ । ସେହି ମାନବ ଅଗ୍ନିଷ୍ଟୋମ ଯଜ୍ଞର ଫଳ ଲାଭ କରନ୍ତି । ୩୬ ।

ସେହି ରଜୋବିହୀନ ସୁକୃତି ନର ଅପ୍ସରାଗଣଙ୍କର ନୃତ୍ୟ-ଗୀତ-ବିନୋଦିତ ଆବାସରେ ସହସ୍ର ସ୍ତ୍ରୀପରିବେଷ୍ଟିତ ହୋଇ କ୍ରୀଡ଼ା କରନ୍ତି । ୩୭ । ତପ୍ତକାଞ୍ଚନ ବର୍ଣ୍ଣସଦୃଶ ବିମାନରେ ଆରୋହଣ କରନ୍ତି ଏବଂ ପୂର୍ଣ୍ଣ ସହସ୍ର ବର୍ଷ ବ୍ରହ୍ମଲୋକରେ ପୂଜିତ ହୁଅନ୍ତି । ଯେଉଁ ନର ପୂର୍ଣ୍ଣ ସମ୍ବତ୍ସର କାଳ ଏକାହାର କରନ୍ତି, ସେ ଅତିରାତ୍ର ଯଜ୍ଞର ଫଳ ଭୋଗ କରନ୍ତି, ଏବଂ ସେ ସ୍ୱର୍ଗରେ ଦଶ ସହସ୍ର ବର୍ଷ ପୂଜିତ ହୁଅନ୍ତି । ୪୦ । ସେହି ପୁଣ୍ୟ କ୍ଷୟ ହେଲେ ଇହଲୋକକୁ ଆଗମନ କରି ମହାନୁଭବକତା ପ୍ରାପ୍ତ ହୁଅନ୍ତି । ଯେ ଅହିଂସାନିରତ, ସତ୍ୟବାଦୀ ଓ ଜିତେନ୍ଦ୍ରିୟ ହୋଇ ପୂର୍ଣ୍ଣସମ୍ବତ୍ସର ପର୍ଯ୍ୟନ୍ତ ଚତୁର୍ଥ ଭାଗରେ ଭକ୍ତ ଭୋଜନ କରନ୍ତି, ସେ ବାଜପେୟ ଯଜ୍ଞର ଫଳ ଭୋଗ କରନ୍ତି । ୪୨ । ସେ ସ୍ୱର୍ଗଲୋକରେ ଦଶସହସ୍ର ବର୍ଷ ପର୍ଯ୍ୟନ୍ତ ବାସ କରନ୍ତି ।

ହେ କୌନ୍ତେୟ ! ଦିବସର ଷଷ୍ଠ ଭାଗରେ ଭୋଜନ କରି ଯେଉଁ ନର ସମ୍ବତ୍ସର ଯାପନ କରନ୍ତି, ସେ ଅଶ୍ୱମେଧ ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି । ସେ ଚକ୍ରବାକ-ଚାଳିତ ବିମାନଦ୍ୱାରା ଗମନ କରନ୍ତି । ୪୪ । ଚତ୍ୱାରିଂଶତ୍ ସହସ୍ର ବର୍ଷ ଦେବଲୋକରେ ପରମହର୍ଷରେ ବାସକରନ୍ତି । ହେ ନୃପ ! ଯେଉଁ ନର ଅଷ୍ଟମ ଭାଗ ଭକ୍ତଦ୍ୱାରା ଆହାର କରି ସମ୍ବତ୍ସର କାଳ ପ୍ରାଣଧାରଣ କରନ୍ତି (୪୫), ସେହି ମାନବ ଗବାମୟ ଯଜ୍ଞର ଫଳପ୍ରାପ୍ତ ହୁଅନ୍ତି । ସେ ହଂସ ସାରସ ବିମାନଦ୍ୱାରା ଗମନ କରନ୍ତି । ୪୬ । ପଞ୍ଚାଶତ୍ ସହସ୍ର ବର୍ଷ ପର୍ଯ୍ୟନ୍ତ ସ୍ୱର୍ଗଲୋକରେ ପ୍ରମୁଦିତ ହୁଅନ୍ତି । ହେ ରାଜନ୍ ! ଏକପକ୍ଷ ଅତୀତ ହେଲେ ଯେ ଭୋଜନ କରନ୍ତି, ତାହାଙ୍କର ବର୍ଷକ ମଧ୍ୟରେ ଛଅମାସ ଅନଶନ ହୁଏ; ଭଗବାନ୍ ଅଙ୍ଗିରା କହିଥିଲେ, ସେହି ବ୍ୟକ୍ତି

ଷଷ୍ଟିସହସ୍ର ବର୍ଷପର୍ଯ୍ୟନ୍ତ ସ୍ୱର୍ଗଲୋକରେ ବାସ କରନ୍ତି ।୪୮। ହେ ରାଜନ୍ ! ସେ ନିଦ୍ରିତ ହେଲେ ବୀଣା, ବଲ୍ଲକୀ ଓ ବେଣୁସମୂହର ସୁମଧୁର ନିନାଦଦ୍ୱାରା ପ୍ରତିବୁଦ୍ଧ ହୁଅନ୍ତି । ୪୯ ।

ହେ ତାତ ନୃପ ! ଯେ ସମ୍ବତ୍ସର ମଧ୍ୟରେ ପ୍ରତିମାସରେ ଏକମାତ୍ର ଜଳପାନ କରି ଜୀବନଧାରଣ କରନ୍ତି, ସେ ବିଶ୍ୱଜିତ୍ ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି (୫୦) ଏବଂ ସେ ସିଂହ-ବ୍ୟାଘ୍ର ସଂଯୁକ୍ତ ବିମାନଦ୍ୱାରା ଗମନ କରନ୍ତି ଓ ସପ୍ତତି ସହସ୍ର ବର୍ଷ ପର୍ଯ୍ୟନ୍ତ ସ୍ୱର୍ଗଲୋକରେ ପ୍ରମୋଦ ପ୍ରାପ୍ତ ହୁଅନ୍ତି ।୫୧। ହେ ନରବର ! ଏକମାସରୁ ଅଧିକ କାଳ ଉପବାସ କରିବାର ବିଧି ନାହିଁ । ହେ ପାର୍ଥ ! ଧର୍ମଜ୍ଞ ବ୍ୟକ୍ତିଗଣ ଅନଶନ ବ୍ରତର ବିଧି କହନ୍ତି । ୫୨ ।

ଯେଉଁ ବ୍ୟକ୍ତି ଅନାର୍ତ୍ତ ଓ ବ୍ୟାଧିରହିତ ହୋଇ ଅନଶନ ଅବଲମ୍ବନ କରନ୍ତି, ସେ ପଦେ ପଦେ ଯଜ୍ଞଫଳ ପ୍ରାପ୍ତ ହୁଅନ୍ତି । ୫୩ । ହେ ପ୍ରଭୋ ! ସେ ହଂସଯୁକ୍ତ ବିମାନରେ ସ୍ୱର୍ଗଲୋକକୁ ଗମନ କରନ୍ତି ଓ ଶତ ସହସ୍ର ବର୍ଷ ପର୍ଯ୍ୟନ୍ତ ଦେବଲୋକରେ ପ୍ରମୋଦ ପ୍ରାପ୍ତ ହୁଅନ୍ତି । ୫୪ । ସେହି ପୁରୁଷଙ୍କୁ ଶତସଂଖ୍ୟକ ଅପ୍ସରା କନ୍ୟା ପ୍ରମୋଦିତ କରନ୍ତି । ଆର୍ତ୍ତ ଅଥବା ବ୍ୟାଧିଗ୍ରସ୍ତ ଜନ ଯଦି ଅନଶନ ବ୍ରତ ଅବଲମ୍ବନ କରନ୍ତି (୫୫), ତେବେ ସେ ଶତସହସ୍ର ବର୍ଷ ପର୍ଯ୍ୟନ୍ତ ସ୍ୱର୍ଗପୁରରେ ପ୍ରମୋଦ ଲାଭ କରନ୍ତି । ସୁପ୍ତ ଥିଲେ କାଞ୍ଚୀ ନୂପୁର ଶବ୍ଦଦ୍ୱାରା ପ୍ରବୋଧିତ ହୁଅନ୍ତି । ୫୬ । ସହସ୍ର ହଂସଯୁକ୍ତ ବିମାନଦ୍ୱାରା ଗମନ କରନ୍ତି । ହେ ଭରତଶ୍ରେଷ୍ଠ ! ସେ ସ୍ୱର୍ଗକୁ ଗମନ ପୂର୍ବକ ଶତସ୍ତ୍ରୀସମାକୀର୍ଣ୍ଣ ସୁରମ୍ୟସଦନରେ ବିହାର କରନ୍ତି । ୫୭ ।

ଅନଶନ ବ୍ରତ ଅବଲମ୍ବନଦ୍ୱାରା କ୍ଷୀଣ ଜନର ଆପ୍ୟାୟନ ଦୃଷ୍ଟ ହୋଇଅଛି, କ୍ଷତ ବ୍ୟକ୍ତିର କ୍ଷତସ୍ଥାନ ଆରୋଗ୍ୟ ହେବାର ଦେଖାଯାଇ ଅଛି, ଅନଶନ ବ୍ୟାଧିତ ବ୍ୟକ୍ତିର ପରମ ଔଷଧ ଓ କ୍ରୁଦ୍ଧ ଜନର ପ୍ରସାଦନ (୫୮), ଅର୍ଥ ଓ ମାନ ହେତୁରୁ ଦୁଃଖିତ ଜନର ଦୁଃଖଦୂରୀ-କରଣର ଉପାୟ ସ୍ୱରୂପ । ସୁଖ ସମ୍ଭୋଗ କରିବାକୁ ଅଭିଳାଷୀ କ୍ଷୀଣରୁ ପ୍ରଭୃତି ଅବସ୍ଥାପନ୍ନ ସ୍ୱର୍ଗକାମ ମାନବଙ୍କର ଏହିସବୁ ଆପ୍ୟାୟନାଦି ବିଷୟରେ ଅଭିରୁଚି ହୁଏ ନାହିଁ । ୫୯ । ବରଂ ତାଦୃଶ ପୁରୁଷ ଅନଶନ ପ୍ରଭୃତି ଦୁଃଖସହିଷ୍ଣୁ ହୋଇ ସ୍ୱକୀୟ ତପସ୍ୟାର ବୃଦ୍ଧି ସମ୍ପାଦନ କରନ୍ତି । ଅତଏବ ସେହି ପୁରୁଷ କାମଯୁକ୍ତ ରମଣୀଶତସମାକୀର୍ଣ୍ଣ ସ୍ୱବର୍ଣ୍ଣସନ୍ନିଭ ବିମାନରେ ପବିତ୍ର ଓ ଅଳଙ୍କୃତ ହୋଇ ବିହାର କରନ୍ତି । ୬୦ ।

ସ୍ୱସ୍ଥ, ସଫଳସଂକଳ୍ପ, ସୁଖୀ ଓ ନିଷ୍ପାପ ପୁରୁଷ ଅନଶନବ୍ରତ ଅବଲମ୍ବନ ପୂର୍ବକ ଦେହତ୍ୟାଗ କରି ତାହାର ଫଳଭୋଗ କରନ୍ତି । ୭୧ । ସେ ବାଳସୂର୍ଯ୍ୟ ସଦୃଶ ହେମତୁଲ୍ୟ ଦ୍ୟୁତିସମ୍ପନ୍ନ ବୈଦୂର୍ଯ୍ୟମୁକ୍ତାଖଚିତ ବୀଣାମୁରଜଧ୍ୱଜସମନ୍ୱିତ ( ୭୨ ), ପତାକା ଓ ଦୀପମାଳା ସମାକୀର୍ଣ୍ଣ ଦିବ୍ୟଘଣ୍ଟା ନିନାଦିତ ସ୍ତ୍ରୀସହସ୍ରପରିବୃତ ବିମାନରେ ସୁଖ ସମ୍ଭୋଗ କରନ୍ତି । ୭୩ । ହେ ପାଣ୍ଡବ ! ତାହାଙ୍କ ଗାତ୍ରରେ ଯାବତ୍ ପରିମାଣ ରୋମ କୂପ ଥାଏ, ସେ ତାବତ୍ ସହସ୍ର ବର୍ଷ ପର୍ଯ୍ୟନ୍ତ ସ୍ୱର୍ଗପୁରେ ପ୍ରମୁଦିତ ହୋଇ ବାସ କରନ୍ତି । ୭୪ ।

ବେଦ ଅପେକ୍ଷା ଶ୍ରେଷ୍ଠ ଶାସ୍ତ୍ର ନାହିଁ, ମାତା ସମାନ ଗୁରୁ ନାହିଁ, ଧର୍ମ ଅପେକ୍ଷା ପରମ ଲାଭ ନାହିଁ ଓ ଅନଶନ ଅପେକ୍ଷା ପରମ ତପସ୍ୟା ନାହିଁ । ୭୫ । ଇହଲୋକ ଓ ସ୍ୱର୍ଗଲୋକରେ ବ୍ରାହ୍ମଣ ଅପେକ୍ଷା ଉତ୍କୃଷ୍ଟ ପାବନ କେହି ନାହାନ୍ତି ଓ ଉପବାସ ସଦୃଶ ତପଃ କର୍ମ ନାହିଁ । ୭୬ । ଦେବଗଣ ବିଧି ଅନୁସାରେ ଉପବାସ କରି ସ୍ୱର୍ଗପ୍ରାପ୍ତ ହୋଇଅଛନ୍ତି । ଋଷିଗଣ ଉପବାସଦ୍ୱାରା ପରମ ସିଦ୍ଧି ଲାଭ କରିଅଛନ୍ତି । ୭୭ । ଧୀମାନ୍ ବିଶ୍ୱାମିତ୍ର ଦେବ ପରିମାଣରେ ସହସ୍ର ବର୍ଷ ଏକାହାର କରି କ୍ଷମାଗୁଣ ଉପାର୍ଜନ କରିଥିଲେ । ଏହି ନିମିତ୍ତ ବିପ୍ରତ୍ୱ ପ୍ରାପ୍ତ ହୋଇଥିଲେ । ୭୮ । ଚ୍ୟବନ, ଜମଦଗ୍ନି, ବଶିଷ୍ଠ, ଗୌତମ, ଭୃଗୁ ପ୍ରଭୃତି କ୍ଷମାଶୀଳ ମହର୍ଷିଗଣ ସମସ୍ତେ ସ୍ୱର୍ଗଲୋକ ପ୍ରାପ୍ତ ହୋଇଥିଲେ । ୭୯ । ପୂର୍ବକାଳରେ ଅଙ୍ଗିରା ମହର୍ଷିଗଣଙ୍କୁ ଏହା ପ୍ରଦର୍ଶନ କରାଇଥିଲେ । ଯେ ନିତ୍ୟ ଏହା ପ୍ରଦର୍ଶନ କରନ୍ତି, ସେ ଦୁଃଖପ୍ରାପ୍ତ ହୁଅନ୍ତି ନାହିଁ । ୮୦ ।

ହେ କୌନ୍ତେୟ ! ମହର୍ଷି ଅଙ୍ଗିରାଙ୍କ ଦ୍ୱାରା ପୂର୍ବେ ଯଥାକ୍ରମେ ଏହି ବିଧି ପ୍ରବର୍ତ୍ତିତ ହୋଇଅଛି । ଯେ ଏହା ନିତ୍ୟ ପାଠ କରନ୍ତି ଓ ଶ୍ରବଣ କରନ୍ତି, ସେହି ନରଙ୍କର କଳୁଷ ରହେ ନାହିଁ । ୮୧ । ଯେଉଁ ନରୋତ୍ତମ ଏହି ବିଷୟ ଶ୍ରବଣ କରନ୍ତି, ଅଥବା ଆବୃତ୍ତି କରନ୍ତି ସେ ସର୍ବ ସଙ୍କଟରୁ ବିମୁକ୍ତ ହୁଅନ୍ତି । ତାହାଙ୍କ ଚିତ୍ତ ଦୋଷରାଶିଦ୍ୱାରା ଗ୍ରସ୍ତ ହୁଏ ନାହିଁ । ସେ ବିୟୋନିଜ ପକ୍ଷୀ ପ୍ରଭୃତିର ଶବ୍ଦ ଜାଣି ପାରନ୍ତି ଓ ନିଷ୍ଠପ୍ତ କୀର୍ତ୍ତିଲାଭ କରନ୍ତି । ୮୨ ।

---

# ଅଧ୍ୟାୟ—୧୦୭

ଯୁଧିଷ୍ଠିର କହିଲେ—ହେ ପିତାମହ ! ମହାନୁଭବ ପିତାମହଙ୍କଦ୍ୱାରା ବିଧି ଅନୁସାରେ ଯଜ୍ଞସମୂହ କଥିତ ହୋଇଅଛି ଏବଂ ଇହ ଓ ପରଲୋକରେ ଯଜ୍ଞଫଳସମୂହ ସର୍ବତୋଭାବରେ କୀର୍ତ୍ତିତ ହୋଇଅଛି । ୧ । କିନ୍ତୁ ଦରିଦ୍ର-ଗଣ ସେହି ଯଜ୍ଞର ଫଳ ପ୍ରାପ୍ତ ହେବାକୁ ସମର୍ଥ ନୁହନ୍ତି, କାରଣ ଯଜ୍ଞ-ସମୂହରେ ବହୁ ଉପକରଣ, ବିସ୍ତର ଦ୍ରବ୍ୟ ସାମଗ୍ରୀ ଆହରଣ କରିବାକୁ ହୁଏ । ୨ । ହେ ପିତାମହ ! ତାହା ପାର୍ଥିବ ଅଥବା ରାଜପୁତ୍ରଗଣ ପ୍ରାପ୍ତ ହୋଇ ପାରନ୍ତି । ଅର୍ଥହୀନ ଗୁଣହୀନ ଏକାକୀ ଅସହାୟ ମାନବଗଣଦ୍ୱାରା ତାହା ସହଜରେ ଆହୃତ ହୋଇପାରେ ନାହିଁ । ଅତଏବ ହେ ପିତାମହ ! ଯେଉଁ ବିଧି ଦରିଦ୍ରଗଣଙ୍କର ସର୍ବଦା ଆହରଣ କରିବାର ଉପଯୁକ୍ତ, ଅଥଚ ଏହି ସମସ୍ତ ରାଜକୃତ ଯଜ୍ଞଫଳର ସଦୃଶ, ତାହା ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ । ୪ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ମହର୍ଷି ଅଙ୍ଗିରା କହିଅଛନ୍ତି ଯେ ଉପବାସ ଦ୍ୱାରା ଯଜ୍ଞ ସଦୃଶ ଫଳଲାଭ ହୁଏ, ଯଜ୍ଞର ଫଳ ସଦୃଶ ଉପବାସ ଫଳାତ୍ମକ । ଯେଉଁ ବିଧିକ ଅଙ୍ଗିରା କହିଅଛନ୍ତି, ତୁମ୍ଭେ ତାହା ଆମ୍ଭଠାରୁ ଶ୍ରବଣ କର ।୫। ଯେ ଅହିଂସାନିରତ ହୋଇ ନିତ୍ୟ ଅଗ୍ନିରେ ହୋମ କରି ପ୍ରାତଃକାଳ ଓ ସାୟଂକାଳରେ ଭୋଜନ କରି ଉକ୍ତ ଉଭୟ କାଳ ମଧ୍ୟରେ ଅନ୍ୟ ଆହାର ଅଥବା ଜଳପାନ ନ କରନ୍ତି (୬), ସେ ଛଅବର୍ଷ ମଧ୍ୟରେ ସିଦ୍ଧ ହୁଅନ୍ତି, ଏହି ବିଷୟରେ ସଂଶୟ ନାହିଁ । ୭ । ସେହି ନର ତପ୍ତକାଞ୍ଚନ ବର୍ଣ୍ଣ ବିମାନ ଲାଭ କରନ୍ତି ଏବଂ ଦେବସ୍ତ୍ରୀଗଣଙ୍କ ନୃତ୍ୟଗୀତ ନିନାଦିତ, ଅଗ୍ନିସଦୃଶ ନିକେତନରେ ପ୍ରଜାପତି ଲୋକରେ ଶତକୋଟି ସମ୍ବତ୍ସର ପର୍ଯ୍ୟନ୍ତ ବସତି କରନ୍ତି । ଯେ ସର୍ବଦା ଧର୍ମପତ୍ନୀଙ୍କ ଠାରେ ନିରତ ଥାଇ ତିନିବର୍ଷ କାଳ କ୍ରମାଗତ ଏକାହାର କରି ରହନ୍ତି, ସେ ଅଗ୍ନିଷ୍ଟୋମ ଯଜ୍ଞର ଫଳ ଲାଭ କରନ୍ତି, ଅଥବା ବାସବଙ୍କ ପ୍ରିୟତର ବହୁ ସୁବର୍ଣ୍ଣ ଯଜ୍ଞ ଅନୁଷ୍ଠାନର ଫଳପ୍ରାପ୍ତ ହୁଅନ୍ତି ।୧୦। ସେ ସତ୍ୟବାଦୀ, ଦାନଶୀଳ, ବ୍ରହ୍ମଣ୍ୟ ଅନସୂୟକ, କ୍ଷମାବାନ୍, ଦାନ୍ତ ଓ ଜିତକ୍ରୋଧ ହୋଇ ପରମଗତି ପ୍ରାପ୍ତ ହୁଅନ୍ତି । ୧୧ । ବ୍ରତ ସମ୍ପୂର୍ଣ୍ଣ ହେଲେ ପାଣ୍ଡୁର ମେଘ ପ୍ରତିକାଶ ହଂସ-ଚିହ୍ନଯୁକ୍ତ ବିମାନରେ ଦୁଇଶତ କୋଟି ପରିମିତ ବର୍ଷର ଅପ୍‌ସରୋଗଣଙ୍କ ସହିତ ବସତି କରନ୍ତି । ୧୨ ।

ଯେ ଅଗ୍ନିରେ ହୋମ କରି ଦ୍ୱାଦଶ ମାସ ମଧ୍ୟରେ ଏକାହ ଉପବାସ କରି ଦ୍ୱିତୀୟ ଦିବସରେ ଏକାହାର କରନ୍ତି ଏବଂ ନିତ୍ୟ ଅଗ୍ନି- କର୍ମପରାୟଣ ହୋଇ ପ୍ରତ୍ୟୁଷରେ ପ୍ରବୁଦ୍ଧ ହୁଅନ୍ତି, ସେହି ନର ଅଗ୍ନିଷ୍ଟୋମ ଯଜ୍ଞର ଫଳ ଲାଭ କରନ୍ତି (୧୪) ଏବଂ ଇନ୍ଦ୍ରଲୋକରେ ବରାଙ୍ଗନାଗଣରେ ସମାବୃତ ହୋଇ ବାସ କରି ହଂସସାରସଯୁକ୍ତ ବିମାନ ଲାଭ କରନ୍ତି । ୧୫। ଯେ ଦ୍ୱାଦଶ ମାସ ହୁତାଶନରେ ହୋମ କରି ତୃତୀୟ ଦିବସରେ ଏକବାର ମାତ୍ର ଭୋଜନ କରନ୍ତି ଏବଂ ନିତ୍ୟ ଅଗ୍ନିକାର୍ଯ୍ୟ ପରାୟଣ ହୋଇ ପ୍ରତ୍ୟୁଷରେ ପ୍ରବୋଧିତ ହୁଅନ୍ତି, ସେ ଅତିରାତ୍ରଯଜ୍ଞର ଉତ୍କୃଷ୍ଟ ଫଳ ପ୍ରାପ୍ତ ହୁଅନ୍ତି । ୧୬ । ସେ ନର ମୟୂର ଓ ହଂସଯୁକ୍ତ ବିମାନ ଲାଭ କରନ୍ତି । ସପ୍ତର୍ଷିଗଣଙ୍କ ଲୋକରେ ଅପ୍ସରାଗଣଙ୍କର ସହିତ ସର୍ବଦା ବସତି କରନ୍ତି । ୧୭ । ତିନିଶତ କୋଟି ବର୍ଷ ଉତ୍ତାରେ ସେଠାରୁ ତାହାଙ୍କର ପ୍ରତ୍ୟାବୃତ୍ତି ହୁଏ । ଏହି କଥା ପଣ୍ଡିତଗଣ ଜାଣନ୍ତି । ଯେ ଦ୍ୱାଦଶ ମାସ ହୁତାଶନରେ ହୋମ କରି ଚତୁର୍ଥ ଦିବସରେ ଏକାହାର କରନ୍ତି, ସେ ବାଜପେୟ ଯଜ୍ଞର ଉତ୍କୃଷ୍ଟ ଫଳ ପ୍ରାପ୍ତ ହୁଅନ୍ତି । ସେ ଇନ୍ଦ୍ରକନ୍ୟାଙ୍କଦ୍ୱାରା ଅଧିରୂଢ଼ ବିମାନ ଲାଭ କରନ୍ତି । ସାଗରର ପ୍ରାନ୍ତଭାଗରେ ବାସବଲୋକରେ ବାସ କରନ୍ତି (୨୧) ଏବଂ ନିତ୍ୟକାଳ ଦେବରାଜଙ୍କ କ୍ରୀଡ଼ା ଅବଲୋକନ କରନ୍ତି ।

ଯେ ଦ୍ୱାଦଶ ମାସ ଅଗ୍ନିଦେବଙ୍କୁ ଆହୁତି ପ୍ରଦାନ କରନ୍ତି, ପଞ୍ଚମ ଦିବସରେ ଏକାହାର କରନ୍ତି ଏବଂ ଅଲୁବ୍ଧ, ସତ୍ୟବାଦୀ, ବ୍ରହ୍ମନିଷ୍ଠ, ଅହିଂସକ, ଅସୂୟାଶୂନ୍ୟ ଓ ନିଷ୍ପାପ ହୁଅନ୍ତି, ସେ ବାଜପେୟ ଯଜ୍ଞର ଫଳ ଲାଭ କରନ୍ତି । ସ୍ୱର୍ଣ୍ଣମୟ ହଂସଚିହ୍ନିତ, ସୂର୍ଯ୍ୟମାଳସମ ପ୍ରଭାସମନ୍ୱିତ ପାଣ୍ଡୁରବର୍ଣ୍ଣ ଭବନତୁଲ୍ୟ ଦିବ୍ୟ ବିମାନରେ ଆରୋହଣ କରନ୍ତି ଏବଂ ସେଠାରେ ଏକ ପଞ୍ଚାଶତ୍ ପଦ୍ମ ପରିମାଣ ସମ୍ବତ୍ସର କାଳ ସୁଖରେ ବାସ କରନ୍ତି । ଯେ ଦ୍ୱାଦଶ ମାସ ହୁତାଶନରେ ଆହୁତି ପ୍ରଦାନ କରି ସର୍ବଦା ମନନଶୀଳ ହୋଇ ଷଷ୍ଠ ଦିବସରେ ଭୋଜନ କରନ୍ତି ଏବଂ ସର୍ବଦା ତ୍ରିକାଳସ୍ନାୟୀ, ବ୍ରହ୍ମଚାରୀ ଓ ଅସୂୟାଶୂନ୍ୟ ହୁଅନ୍ତି, ସେ ଗୋମେଧ ଯଜ୍ଞର ଅତ୍ୟୁତ୍ତମ ଫଳ ପ୍ରାପ୍ତ ହୁଅନ୍ତି । ସେ ଅଗ୍ନିଜ୍ୱାଳା ସଦୃଶ ପ୍ରଭାସମନ୍ୱିତ, ହଂସ ଓ ମୟୂର ସଂଯୋଜିତ ସ୍ୱର୍ଣ୍ଣମୟ ଉତ୍କୃଷ୍ଟ ବିମାନ ଲାଭ କରନ୍ତି ଏବଂ ଅପ୍ସରାଗଣଙ୍କ ଅଙ୍କତଳରେ ସୁପ୍ତ ହୋଇ ନୂପୁର ସମୂହର ନିଃସ୍ୱନ ଓ ମେଖଳା ନିକରର ନିନାଦଦ୍ୱାରା ପ୍ରବୋଧିତ ହୁଅନ୍ତି । ୩୦ । ତିନି ସହସ୍ର ତିନିଶତକୋଟି ଅଷ୍ଟାଦଶ ପଦ୍ମ ଦୁଇ ମହାପଦ୍ମ ପଞ୍ଚାଶତ୍ ଅୟୁତ ଏବଂ ଶତ

ବୃଷ ଚର୍ମରେ ଯାବତ୍ ପରିମାଣ ଲୋମ ଥାଏ, ତାବତ୍ ପରିମାଣ ବର୍ଷର ବ୍ରହ୍ମଲୋକରେ ବାସ କରନ୍ତି ।

ଯେ ଦ୍ୱାଦଶ ମାସ ହୁତାଶନରେ ଆହୁତି ପ୍ରଦାନ କରି ସପ୍ତମ ଦିବସରେ ଏକାହାର କରନ୍ତି, ମୌନାବଲମ୍ବନ କରି ବ୍ରହ୍ମଚର୍ଯ୍ୟ ଅନୁଷ୍ଠାନ କରନ୍ତି ଏବଂ ସ୍ରକ୍‌ଚନ୍ଦନ ଓ ମଧୁମାଂସ ପରିତ୍ୟାଗ କରନ୍ତି, ସେହି ପୁରୁଷ ଦେବଲୋକ ମଧ୍ୟରେ ଇନ୍ଦ୍ରଲୋକକୁ ଗମନ କରନ୍ତି ଏବଂ ସେହି ସେହି ସ୍ଥାନରେ ସିଦ୍ଧାର୍ଥ ହୋଇ ଦେବକନ୍ୟାଗଣଙ୍କଦ୍ୱାରା ପୂଜିତ ହୁଅନ୍ତି । ସେହି ମାନବ, ବହୁ ସୁବର୍ଣ୍ଣ ଯଜ୍ଞର ଫଳ ଲାଭ କରନ୍ତି (୩୫), ଏବଂ ପୂର୍ବୋକ୍ତ ଲୋକରେ ଅସଂଖ୍ୟ କାଳ ବସତି କରନ୍ତି । ଯେ ଦେବକାର୍ଯ୍ୟପରାୟଣ ହୋଇ ନିତ୍ୟ ଅଗ୍ନିରେ ଆହୁତି ପ୍ରଦାନ କରି ସମ୍ବତ୍ସର କାଳ କ୍ଷମାଶୀଳ ହୋଇ ଅଷ୍ଟମ ଦିବସରେ ଏକାହାର କରନ୍ତି, ସେ ପୌଣ୍ଡରୀକ ଯଜ୍ଞର ଅତ୍ୟୁତ୍ତମ ଫଳ ପ୍ରାପ୍ତ ହୁଅନ୍ତି ଏବଂ ପଦ୍ମବର୍ଣ୍ଣ ସନ୍ନିଭ ବିମାନରେ ଆରୋହଣ କରନ୍ତି ଓ କୃଷ୍ଣବର୍ଣ୍ଣା, କନକବର୍ଣ୍ଣା, ଶ୍ୟାମାଙ୍ଗୀ, ବୟୋରୂପବିଳାସିନୀ କାମିନୀଗଣଙ୍କୁ ଲାଭ କରନ୍ତି, ଏ ବିଷୟରେ ସଂଶୟ ନାହିଁ । ଯେ ଦ୍ୱାଦଶମାସ ଅଗ୍ନିରେ ନିତ୍ୟ ଆହୁତି ପ୍ରଦାନ କରି ସମ୍ବତ୍ସର ମଧ୍ୟରେ ପ୍ରତ୍ୟେକ ନବମ ଦିବସରେ ଏକାହାର କରନ୍ତି, ସେ ସହସ୍ର ଅଶ୍ୱମେଧ ଯଜ୍ଞର ଅତି ଉତ୍କୃଷ୍ଟ ଫଳ ଲାଭ କରନ୍ତି । ସେ ପୁଣ୍ଡରୀକ ସଦୃଶ ପ୍ରକାଶମାନ ବିମାନ ଲାଭ କରନ୍ତି, ପ୍ରଦୀପ୍ତ ତପନ ଓ ହୁତାଶନ ସମାନ ତେଜସ୍ୱିନୀ ଦିବ୍ୟମାଳାଧାରିଣୀ ରୁଦ୍ର କନ୍ୟା-ଗଣ ତାହାଙ୍କୁ ସନାତନ ସ୍ୱର୍ଗଲୋକକୁ ନିଅନ୍ତି ଏବଂ ସେହି ମାନବ ଅଷ୍ଟାଦଶ ସହସ୍ର ବର୍ଷ ଓ ଶତସହସ୍ର କୋଟି କଳ୍ପ ପରିମାଣ କାଳ ସେହି ଲୋକ-ମାନଙ୍କରେ ପ୍ରମୋଦିତ ହୁଅନ୍ତି ।

ଯେ ଦ୍ୱାଦଶ ମାସ ନିୟତ ହୁତାଶନରେ ଆହୁତି ପ୍ରଦାନ କରି ସମ୍ବତ୍ସର କାଳ ପ୍ରତ୍ୟେକ ଦଶ ଦିବସରେ ଏକାହାର କରନ୍ତି ସେ ସର୍ବଭୂତ-ମନୋହର ବ୍ରହ୍ମ କନ୍ୟାଗଣଙ୍କ ନିବାସରେ ସହସ୍ର ଅଶ୍ୱମେଧ ଯଜ୍ଞର ଫଳପ୍ରାପ୍ତ ହୁଅନ୍ତି, ସଂଶୟ ନାହିଁ । ନୀଳୋତ୍ପଳ ଓ ରକ୍ତୋତ୍ପଳ ସମାନ ବର୍ଣ୍ଣା ରୂପବତୀ ରମଣୀଗଣ ସର୍ବଦା ସେହି ନରଙ୍କୁ ପ୍ରମୋଦିତ କରନ୍ତି । ସେ ଆବର୍ତ୍ତ ଗହନାକୁଳ ସାଗର ତରଙ୍ଗତୁଲ୍ୟ ମଣ୍ଡଳାବର୍ତ୍ତ ଉତ୍କୃଷ୍ଟ ବିମାନ ଲାଭ କରନ୍ତି । ୪୬ । ବିଚିତ୍ର ମଣିମାଳାବିରାଜିତ ଶଙ୍ଖନିଃସ୍ୱନ ନିନାଦିତ ସ୍ଫଟିକ ଓ ହୀରକ ସ୍ତମ୍ଭଯୁକ୍ତ ବେଦସମ୍ପନ୍ନ ହଂସସାରସନାଦିତ ମହାଯାନରେ ଆରୋହଣ

କରନ୍ତି । ସେ ଶତ ସହସ୍ର କୋଟି ସମ୍ବତ୍ସର ଦେବଲୋକରେ ପ୍ରମୁଦିତ ହୁଅନ୍ତି । ୪୮ ।

ଯେ ଦ୍ୱାଦଶ ବର୍ଷ ହୁତାଶନରେ ଆହୁତି ପ୍ରଦାନ କରି ଏକାଦଶ ଦିବସରେ ଘୃତ ପ୍ରାଶନ କରନ୍ତି; ପରସ୍ତ୍ରୀକୁ ବାକ୍ୟ ଅବା ମନରେ ଅଭିଳାଷ ନ କରନ୍ତି, ଜନକଜନନୀ ନିମିତ୍ତ ସୁଦ୍ଧା ମିଥ୍ୟା ବାକ୍ୟ ପ୍ରୟୋଗ ନ କରନ୍ତି, ସେ ବିମାନସ୍ଥ ହୋଇ ମହାବଳ ମହାଦେବଙ୍କ ଅଭିମୁଖକୁ ଗମନ କରନ୍ତି, ଏବଂ ସହସ୍ର ଅଶ୍ୱମେଧ ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି ।୫୧। ସ୍ୱୟମ୍ଭୂଙ୍କ ବିମାନ ସମ୍ମୁଖରେ ଉପନୀତ ହେବାର ଅବଲୋକନ କରନ୍ତି ଏବଂ କାଞ୍ଚନ ସଦୃଶ ରୂପବନ୍ତ କୁମାରୀଗଣ ତାହାଙ୍କୁ ସୁରଲୋକରେ ଦେଦୀପ୍ୟମାନ ମନୋହର ରୁଦ୍ରଗଣଙ୍କ ଅଧିବାସକୁ ନିଅନ୍ତି । ସେ ପ୍ରଳୟାଗ୍ନି ସଦୃଶ ପ୍ରଭାଯୁକ୍ତ ହୋଇ ଅନନ୍ତକାଳ ଶତ ସହସ୍ର କୋଟି ଓ ଶତ ଶତ କୋଟି ପରିମିତ କାଳ ଦେବ ଦାନବଗଣଙ୍କ ସମ୍ମତ ମହାଦେବଙ୍କୁ ସର୍ବଦା ପ୍ରଣାମ କରନ୍ତି, ମହାଦେବ ତାହାଙ୍କୁ ପ୍ରତିଦିନ ଦର୍ଶନ ପ୍ରଦାନ କରନ୍ତି ।

ଯେ ଦ୍ୱାଦଶବର୍ଷ ନିମାଗତ ଦ୍ୱାଦଶ ଦିବସରେ ଘୃତପ୍ରାଶନ କରନ୍ତି, ସେ ସର୍ବମେଧ ଯଜ୍ଞର ଫଳ ଲାଭ କରନ୍ତି । ଦ୍ୱାଦଶ ଆଦିତ୍ୟଙ୍କ ମଧ୍ୟରେ ତାଙ୍କର ବିମାନ ସନ୍ନିଧାନ ହୁଏ । ୫୫ । ସେହି ସ୍ଥାନ ମହାର୍ହ ମଣିମୁକ୍ତା-ପ୍ରବାଳ ଦ୍ୱାରା ପରିଶୋଭିତ, ହଂସମାଳା ପରିବେଷ୍ଟିତ ଓ ନାଗଶ୍ରେଣୀ-ସମାକୁଳ, କୂଜନକାରୀ ମୟୂର ଓ ଚକ୍ରବାକ ବିହଙ୍ଗବ୍ୟୂହଦ୍ୱାରା ଉପଶୋଭିତ ସୁମହତ୍ ଅଟ୍ଟାଳିକାସଂଯୁକ୍ତ, ବ୍ରହ୍ମଲୋକରେ ପ୍ରତିଷ୍ଠିତ, ନରନାରୀ ସମାକୁଳ, ନିତ୍ୟଆବାସପ୍ରାପ୍ତ ହୁଅନ୍ତି । ହେ ରାଜନ୍ ! ମହାଭାଗ ଧର୍ମଜ୍ଞ ଅଙ୍ଗିରା ଋଷି ଏହିପରି କହିଅଛନ୍ତି ।୫୯। ଯେ ଦ୍ୱାଦଶ ମାସ ନିୟତ ତ୍ରୟୋଦଶ ଦିବସରେ ଘୃତ ପ୍ରାଶନ କରନ୍ତି, ସେ ଦେବସତ୍ରର ଫଳ ପ୍ରାପ୍ତ ହୁଅନ୍ତି । ୬୦ । ସେହି ମାନବ ସୁବର୍ଣ୍ଣବିରଚିତ ରତ୍ନସଞ୍ଚୟଭୂଷିତ ଦେବକନ୍ୟାଗଣଙ୍କ ଦ୍ୱାରା ସମାକୀର୍ଣ୍ଣ ଦିବ୍ୟାଭରଣ ଭୂଷିତ, ପବିତ୍ର ଗନ୍ଧସମନ୍ୱିତ ବାୟବ୍ୟ ଅସ୍ତ୍ର ନିବହ ଦ୍ୱାରା ସୁଶୋଭିତ, ରକ୍ତପଦ୍ମୋଦୟ ନାମକ ବିମାନପ୍ରାପ୍ତ ହୁଅନ୍ତି । ୬୨ । ସେ ସେଠାରେ ଶଙ୍ଖ ପତାକା ଯୁଗାନ୍ତକଳ୍ପ ଅଯୁତାଯୁତ ପଦ୍ମ ଓ ସମୁଦ୍ର ପରିମିତ-କାଳ ବସତି କରନ୍ତି । ୬୩ । ସେ ଦେବକନ୍ୟାକର୍ତ୍ତୃକ ଗୀତ ଗନ୍ଧର୍ବଧ୍ୱନି ଓ ଭେରୀପଣବନିଃସ୍ୱନ ଦ୍ୱାରା ସର୍ବଦା ପ୍ରହ୍ଲାଦିତ ହୋଇ ଦେବକନ୍ୟାଗଣଙ୍କ ଦ୍ୱାରା ପୂଜିତ ହୁଅନ୍ତି । ୬୪ ।

ଯେ ଦ୍ୱାଦଶ ମାସ ମଧ୍ୟରେ ଚତୁର୍ଦ୍ଦଶ ଦିବସ ପୂର୍ଣ୍ଣ ହେଲାରୁ ଘୃତପ୍ରାଶନ କରନ୍ତି, ସେ ମହାମେଧ ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି । ୭୫ । ଅନିର୍ଦ୍ଦେଶ୍ୟ ବୟୋରୂପସମ୍ପନ୍ନା ଦିବ୍ୟାଭରଣଭୂଷିତା, ମାର୍ଜିତ କେୟୂରଧାରିଣୀ ଦେବକନ୍ୟାଗଣ ବିମାନଦ୍ୱାରା ତାହାଙ୍କ ନିକଟରେ ଉପନୀତ ହୁଅନ୍ତି । ୭୬। ସେ ସେଠାରେ କଳହଂସନିନାଦସନ୍ନିଭ ନୂପୁରସମୂହର ନିଃସ୍ୱନ ଓ କାଞ୍ଚୀ ଗୁଣର ସମ୍ୟକ୍ ଉତ୍କର୍ଷାବହ ନାଦଦ୍ୱାରା ପ୍ରବୋଧିତ ହୁଅନ୍ତି । ୭୭ । ମାନବ ସେହି ଜାହ୍ନବୀ ବାଲୁକାକୀର୍ଣ୍ଣ ଦେବକନ୍ୟା ନିବାସରେ ପୂର୍ଣ୍ଣ ସଂବତ୍ସର କାଳ ବାସ କରନ୍ତି । ୭୮ ।

ଯେ ଦ୍ୱାଦଶ ମାସ ହୁତାଶନରେ ଆହୁତି ପ୍ରଦାନ କରି ଜିତେନ୍ଦ୍ରିୟ ହୋଇ ପକ୍ଷାନ୍ତରେ ଏକବାର ଆହାର କରନ୍ତି, ସେ ସହସ୍ର ରାଜସୂୟ ଯଜ୍ଞର ଅତି ଉତ୍କୃଷ୍ଟ ଫଳ ପ୍ରାପ୍ତ ହୁଅନ୍ତି । ସେ ହଂସ ମୟୂରସେବିତ, ବିବିଧ ମଣିମଣ୍ଡଳମଣ୍ଡିତ ଜାତରୂପ ସମାବୃତ ଦିବ୍ୟାଭରଣବିଭୂଷିତ, ସୁରାଙ୍ଗନାଗଣଙ୍କଦ୍ୱାରା ଅଳଙ୍କୃତ ମଣିମୁକ୍ତା ପ୍ରବାଳରାଶି ଦ୍ୱାରା ବିଭୂଷିତ, ଏକସ୍ତମ୍ଭ ଚତୁର୍ଦ୍ୱାର ସପ୍ତଭୂମିକା ସମନ୍ୱିତ ସୁମଙ୍ଗଳ ବୈଜୟନ୍ତୀ ସହସ୍ର ଦ୍ୱାରା ସୁଶୋଭିତ, ଗୀତନିଃସ୍ୱନନିନାଦିତ ଓ ଦିବ୍ୟଗୁଣସମନ୍ୱିତ ତଡ଼ିତ୍-ଦ୍ୟୁତିସନ୍ନିଭ ଦିବ୍ୟ ବିମାନରେ ଆରୋହଣ କରନ୍ତି ।୭୯। ସେ ଖଡ୍ଗ ଓ ଗଜବାହନ ହୋଇ ସହସ୍ର ଯୁଗ ପର୍ଯ୍ୟନ୍ତ ବାସ କରନ୍ତି ।

ଯେ ଦ୍ୱାଦଶ ମାସ ନିୟତ ଷୋଡ଼ଶ ଦିବସ ସମାଗତ ହେଲେ ଏକ ଭୋଜନ କରନ୍ତି, ସେ ସୋମଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି । ସେ ସୋମ କନ୍ୟାଗଣଙ୍କ ନିକେତନରେ ସର୍ବଦା ଅଧିବସତି କରନ୍ତି । ୭୫ । ସେ ସୌମ୍ୟ ଗନ୍ଧଦ୍ୱାରା ଅନୁଲିପ୍ତ ଓ କାମଚାରୀ ହୁଅନ୍ତି । ବିମାନସ୍ଥ ତାହାଙ୍କୁ ସୁଦର୍ଶନା ସୁମଧୁରା ନାରୀବୃନ୍ଦ ଅର୍ଚ୍ଚନା କରନ୍ତି । ସେ ବହୁଳ କାମଭୋଗ-ଦ୍ୱାରା ସେବିତ ହୁଅନ୍ତି । ଈଦୃଶ ବ୍ରତପରାୟଣ ନର ଶତପଦ୍ମ ପରିମିତ ଦଶାଧିକ ମହାକଳ୍ପ ଏବଂ ଆବର୍ତ୍ତନ ଚତୁଷ୍ଟୟ ପରିମିତ କାଳ ଫଳଭୋଗ କରନ୍ତି ।

ଯେ ନିୟତ ଦ୍ୱାଦଶ ମାସ ହୁତାଶନରେ ଆହୁତି ପ୍ରଦାନ କରି ସପ୍ତଦଶ ଦିବସ ଉପସ୍ଥିତ ହେଲେ ଘୃତପ୍ରାଶନ କରନ୍ତି (୭୮), ସେ ବାରୁଣ, ଐନ୍ଦ୍ର ଓ ରୌଦ୍ରଲୋକରେ ଅଧିବାସ କରନ୍ତି (୭୯) ଏବଂ ସେ ମାରୁତ, ଔଶନସ ଓ ବ୍ରହ୍ମଲୋକକୁ ମଧ୍ୟ ଗମନ କରନ୍ତି । ସେଠାରେ ଦେବକନ୍ୟା-ଗଣ ଆସନଦ୍ୱାରା ତାହାଙ୍କର ପରିଚର୍ଯ୍ୟା କରନ୍ତି । ୮୦ । ଭୂର୍ଲୋକ,

ଭୁବଲୋକ ଓ ଦେବର୍ଷି ବିଶ୍ୱରୂପଙ୍କୁ ଦର୍ଶନ କରନ୍ତି, ସେଠାରେ ଦ୍ୱିଶତ ପ୍ରକାର ରୂପଧାରିଣୀ, ମଧୁରଦର୍ଶନା, ସମଲଙ୍କୃତା ଦେବାଧିଦେବଙ୍କ କୁମାରୀ-ଗଣ ତାହାଙ୍କ ସହିତ କ୍ରୀଡ଼ା କରନ୍ତି । ହେ ପ୍ରଭୋ ! ଯାବତ୍ ଆଦିତ୍ୟ ଓ ଚନ୍ଦ୍ରମା ଗଗନ ମଣ୍ଡଳରେ ବିଚରଣ କରନ୍ତି, ତାବତ୍ କାଳ ଉକ୍ତ ଧୀର ସୁଧା ଓ ଦେବଭୋଜ୍ୟ ଅମୃତ ରସ ଅଶନ କରି ରୁଦ୍ରଲୋକରେ ବସତି କରନ୍ତି ।

ଯେ ଦ୍ୱାଦଶ ମାସ ନିଯୁକ୍ତ ଅଷ୍ଟାଦଶ ଦିବସରେ ଏକାହାର କରନ୍ତି, ସେ ସପ୍ତଲୋକ ଦର୍ଶନ କରନ୍ତି, ଦେବକନ୍ୟାଧିରୂଢ଼ ଭ୍ରାଜମାନ ସୁରୁଚିରୁ-ରୂପରେ ଅଳଂକୃତ ବାଦ୍ୟଗଣନିନାଦସମନ୍ୱିତ ରଥବୃନ୍ଦ ତାହାଙ୍କ ପଶ୍ଚାତ୍ ଭାଗରେ ଗମନ କରେ । ୮୪ । ସେ ଅତ୍ୟନ୍ତ ସୁଖୀ ହୋଇ ହଂସ ବ୍ୟାଘ୍ର-ସଂଯୁକ୍ତ ମେଘସ୍ୱନ ଉତ୍କୃଷ୍ଟ ଦିବ୍ୟ ବିମାନରେ ଆରୋହଣ କରନ୍ତି । ସେ ସେଠାରେ ସହସ୍ରକଳ୍ପ ପରିମିତ କାଳ କନ୍ୟାଗଣଙ୍କ ସହିତ ପ୍ରମୋଦିତ ହୁଅନ୍ତି (୮୬) ଏବଂ ଅମୃତୋପମ ଉତ୍ତମ ସୁଧାରସ ଭୋଜନ କରନ୍ତି ।

ଯେ ନିଯୁକ୍ତ ଦ୍ୱାଦଶ ମାସ ଊନବିଂଶ ଦିନରେ ଏକାହାର କରନ୍ତି, ସେ ସପ୍ତଲୋକ ଦର୍ଶନ କରିବାକୁ ସମର୍ଥ ହୁଅନ୍ତି ଏବଂ ଅପ୍ସରାଗଣ-ନିଷେବିତ ଉତ୍ତମ ସ୍ଥାନ ଲାଭ କରନ୍ତି । ଗନ୍ଧର୍ବଗଣଙ୍କ ଦ୍ୱାରା ଗୀତ ସୂର୍ଯ୍ୟ-ବର୍ଚ୍ଚସ ବିମାନ ପ୍ରାପ୍ତ ହୁଅନ୍ତି । ସେଠାରେ ବିଜ୍ୱର, ଦିବ୍ୟାମ୍ବରଧର ଓ ଶ୍ରୀମାନ୍ ହୋଇ ଶତ ଶତ ଅଯୁତ ପରିମିତ କାଳ ଉତ୍କୃଷ୍ଟ ଦେବସ୍ତ୍ରୀଗଣଙ୍କ ସହିତ ପ୍ରମୋଦ ପ୍ରାପ୍ତ ହୁଅନ୍ତି ।

ଯେ ଦ୍ୱାଦଶମାସ ସତ୍ୟବାଦୀ, ଧୃତବ୍ରତ, ଅମାଂସାଶୀ, ବ୍ରହ୍ମଚାରୀ, ସମସ୍ତ ପ୍ରାଣୀସମୂହର ହିତରେ ରତ ହୋଇ ବିଂଶ ଦିବସ ପୂର୍ଣ୍ଣ ହେଲେ ଏକାହାର କରନ୍ତି, ସେ ଆଦିତ୍ୟଗଣଙ୍କର ବିପୁଳ ରମଣୀୟ ଲୋକବୃନ୍ଦ ଭୋଗ କରନ୍ତି । ୯୨ । ଦିବ୍ୟ ମାଲ୍ୟାନୁଲେପନ ଗନ୍ଧର୍ବ ଓ ଅପ୍ସରାଗଣ ଏବଂ ଦିବ୍ୟ କାଞ୍ଚନ ବିମାନସମୂହ ତାହାଙ୍କ ପଶ୍ଚାତ୍ ପଶ୍ଚାତ୍ ଗମନ କରେ ।

ଯେ ସର୍ବଦା ଦ୍ୱାଦଶ ମାସ ଅଗ୍ନିରେ ହୋମ କରି ଏକବିଂଶ ଦିବସରେ ଏକାହାର କରନ୍ତି, ସେ ବିମାନରେ ଆରୋହଣପୂର୍ବକ ପରମ ସୁଖରେ ଦୁଃଖବର୍ଜିତ ହୋଇ ଦେବସ୍ତ୍ରୀମାନଙ୍କ ସହିତ ବାରମ୍ବାର ଅମରବତ୍ ବିହାର କରି ଶୁକ୍ର, ଇନ୍ଦ୍ର, ବାୟୁ, ଅଶ୍ୱିନୀକୁମାର, ଏହିମାନଙ୍କ ଲୋକ-ସମୂହକୁ ଗମନ କରନ୍ତି । ୯୫ ।

ଯେ ଦ୍ୱାଦଶ ମାସ ସର୍ବଦା ଅଗ୍ନିରେ ଆହୁତି ପ୍ରଦାନ କରି ଦ୍ୱାବିଂଶ ଦିବସ ଉପସ୍ଥିତ ହେଲେ ଏକାହାର କରନ୍ତି ଏବଂ ଅହିଂସାନିରତ, ସତ୍ୟବାଦୀ, ଧୀମାନ୍ ଓ ଅନସୂୟକ ହୋଇ ରହନ୍ତି, ସେ ଦିବାକରଙ୍କ ସଦୃଶ ପ୍ରଭାଯୁକ୍ତ ହୋଇ ବସୁଗଣଙ୍କ ଲୋକସମୂହ ପ୍ରାପ୍ତ ହୁଅନ୍ତି । ସେ କାମାଗ୍ରୁଣୀ, ସୁଧାହାରୀ, ହୋଇ ଉତ୍କୃଷ୍ଟ ବିମାନରେ ଆରୋହଣ କରନ୍ତି ଏବଂ ଦିବ୍ୟା-ଭରଣରେ ଭୂଷିତ ହୋଇ ଦେବକନ୍ୟାଗଣଙ୍କ ସହିତ କ୍ରୀଡ଼ା କରନ୍ତି ।

ଯେଉଁ ମିତାହାରୀ ଓ ଜିତେନ୍ଦ୍ରିୟ ପୁରୁଷ ଦ୍ୱାଦଶ ମାସ ତ୍ରୟୋବିଂଶ ଦିବସରେ ଏକବାର ମାତ୍ର ଭୋଜନ କରନ୍ତି, ସେ ବାୟୁଲୋକ, ଭାର୍ଗବଲୋକ, ଓ ରୁଦ୍ରଲୋକକୁ ଗମନ କରନ୍ତି । ସେ କାମଗ୍ରୁଣୀ, କାମଗାମୀ ଓ ଅପ୍‌ସରାଗଣଙ୍କ କର୍ତ୍ତୃକ ପୂଜ୍ୟମାନ ଓ ଦିବ୍ୟାଭରଣଭୂଷିତ ହୋଇ ବିବିଧ ଗୁଣଯୁକ୍ତ ବିମାନରେ ଆରୋହଣ କରି ଦେବକନ୍ୟାଗଣଙ୍କ ସହିତ କ୍ରୀଡ଼ା କରନ୍ତି ।

ଯେ ଦ୍ୱାଦଶ ମାସ ଅଗ୍ନିରେ ନିରନ୍ତର ଆହୁତି ପ୍ରଦାନ କରି ଚତୁର୍ବିଂଶ ଦିବସ ଉପସ୍ଥିତ ହେବାରୁ ଘୃତପ୍ରାଶନ କରନ୍ତି (୧୦୨), ସେ ଦିବ୍ୟମାଲ୍ୟ ଦିବ୍ୟାମ୍ବର ଧାରଣ କରି ଦିବ୍ୟଗନ୍ଧରେ ଅନୁଲିପ୍ତ ହୋଇ, ଆଦିତ୍ୟଗଣଙ୍କ ଅଧିବାସରେ ପ୍ରମୋଦିତ ହୃଦୟରେ ଚିରକାଳ ବାସ କରନ୍ତି, ହଂସଯୁକ୍ତ ମନୋହର ଦିବ୍ୟ ବିମାନରେ ସହସ୍ର ଓ ଅଯୁତସଂଖ୍ୟକ ଦେବକନ୍ୟାଗଣଙ୍କ ସହିତ କ୍ରୀଡ଼ା କରନ୍ତି ।

ଯେ ସର୍ବଦା ଦ୍ୱାଦଶ ମାସ ପଞ୍ଚବିଂଶ ଦିବସରେ ଏକାହାର କରନ୍ତି, ସେ ପୁଷ୍କଳ ଯାନରେ ଆରୋହଣ କରନ୍ତି । ସିଂହ ବ୍ୟାଘ୍ରଦ୍ୱାରା ପରିଗୃହୀତ ମେଘନିଃସ୍ୱନନିନାଦିତ ଆନନ୍ଦବର୍ଦ୍ଧନଧ୍ୱନିସମନ୍ୱିତ, ଦେବକନ୍ୟାସମାରୂଢ଼ ଶତ ଶତ ବିମଳ କାଞ୍ଚନମୟ ରଥସମୂହ ତାହାଙ୍କ ପଶ୍ଚାତ୍ ଅନୁଗମନ କରେ । ସେ ଅତି ମନୋହର ଉତ୍ତମ ଦିବ୍ୟ ବିମାନରେ ଆରୋହଣ କରି ସେହି ଶତ ଶତ ରମଣୀପରିବୃତ ସ୍ଥାନରେ ଅମୃତୋପମ ଉତ୍ତମ ସୁଧାରସ ଉପଜୀବ୍ୟ କରି ସହସ୍ରକଳ୍ପ କାଳ ବସତି କରନ୍ତି ।

ଯେ ନିୟତ ସତ୍ୟତାହାର, ଜିତେନ୍ଦ୍ରିୟ ଓ ବୀତରାଗ ହୋଇ ଅଗ୍ନିରେ ଆହୁତି ପ୍ରଦାନ କରି ଷଡ଼୍‌ବିଂଶ ଦିବସରେ ଏକାହାର କରନ୍ତି, ସେ ସର୍ବରତ୍ନସମଲଂକୃତ ଦିବ୍ୟ ସ୍ଫଟିକ ବିମାନଦ୍ୱାରା ସପ୍ତମରୁତ୍ ଓ ଅଷ୍ଟବସୁଙ୍କ ଲୋକସମୂହ ଉପଭୋଗ କରନ୍ତି । ଦିବ୍ୟ ତେଜସମନ୍ୱିତ ହୋଇ

ଦେବ ପରିମାଣରେ ଦ୍ୱିସହସ୍ର ଯୁଗ ଗନ୍ଧର୍ବ ଓ ଅପ୍ସରାଗଣଙ୍କ କର୍ତ୍ତୃକ ପୂଜ୍ୟମାନ ହୋଇ ପ୍ରମୋଦ ଲାଭ କରନ୍ତି ।

ଯେ ଦ୍ୱାଦଶ ମାସ ନିତ୍ୟ ହୁତାଶନରେ ଆହୁତି ପ୍ରଦାନ କରି ସପ୍ତବିଂଶ ଦିବସରେ ଏକାହାର କରନ୍ତି, ସେ ବିପୁଳ ଫଳପ୍ରାପ୍ତ ହୁଅନ୍ତି, ଦେବଲୋକରେ ପୂଜିତ ହୁଅନ୍ତି, ସେଠାରେ ଅମୃତାଶୀ ହୋଇ ବାସ କରି ତୃଷ୍ଣାଶୂନ୍ୟ ଓ ପ୍ରମୋଦଯୁକ୍ତ ହୁଅନ୍ତି । ହେ ରାଜନ୍ ! ସେହି ଦିବ୍ୟଶରୀରଧାରୀ ନର ଉତ୍କୃଷ୍ଟ ବିମାନରେ ଆରୋହଣ କରି ଦେବର୍ଷି ଚରିତ ଓ ରାଜର୍ଷିଗଣଙ୍କ ଦ୍ୱାରା ଅନୁଷ୍ଠିତ ଲୋକରେ ଅଧିବାସ କରନ୍ତି । ସେ ମନୋରମ ରମଣୀଗଣଙ୍କ ସହିତ ମଦୋନ୍ମତ୍ତ ହୋଇ ରମଣ କରନ୍ତି । ସେ ସହସ୍ରଯୁଗ ପରିମିତ କଳ୍ପ-କାଳ ସୁଖରେ ବସତି କରନ୍ତି ।

ଯେ ଜିତଚିତ୍ତ ଓ ଜିତେନ୍ଦ୍ରିୟ ହୋଇ ଦ୍ୱାଦଶମାସ ନିତ୍ୟ ଅଷ୍ଟାବିଂଶ ଦିବସରେ ଏକାହାର କରନ୍ତି, ସେ ଦେବର୍ଷିରଚିତ ବିପୁଳ ଫଳ ଭୋଗ କରନ୍ତି । ସେହି ଭୋଗଶାଳୀ ନର ତେଜଦ୍ୱାରା ନିର୍ମଳ ସହସ୍ରାଂଶୁ ସଦୃଶ ପ୍ରଦୀପ୍ତ ହୁଅନ୍ତି । ପୀନସ୍ତନୋରୁଜଘନା, ଦିବ୍ୟାଭରଣଭୂଷିତା, ତେଜସ୍ୱିନୀ, ରମମାଣା ସୁକୁମାରୀ ନାରୀମାନେ ସୂର୍ଯ୍ୟସନ୍ନିଭ କାମଗାମୀ ମନୋରମ ଦିବ୍ୟ ବିମାନରେ ଶତାଯୁତକଳ୍ପପରିମିତ ସମ୍ବତ୍ସରକାଳ ତାହାଙ୍କ ମନକୁ ବିନୋଦନ କରନ୍ତି ।

ଯେ ସତ୍ୟବ୍ରତପରାୟଣ ହୋଇ ଦ୍ୱାଦଶମାସ ନିତ୍ୟ ଏକୋନତ୍ରିଂଶ ଦିବସରେ ଏକମାତ୍ର ଆହାର କରନ୍ତି, ତାହାଙ୍କ ନିମିତ୍ତ ଦେବର୍ଷି ଓ ରାଜର୍ଷି-ଗଣପୂଜିତ ଦିବ୍ୟ ପବିତ୍ର ଲୋକସମୂହ ପ୍ରସ୍ତୁତ ଅଛି । ସେ ସର୍ବରତ୍ନବିଭୂଷିତ ଅପ୍ସରାଗଣପରିପୂର୍ଣ୍ଣ ଗନ୍ଧର୍ବକୁଳନିନାଦିତ ସୂର୍ଯ୍ୟ ଓ ସୁଧାକରସନ୍ନିଭ, ସୁବର୍ଣ୍ଣମୟ, ଦିବ୍ୟବିମାନରେ ଅଧିରୋହଣ କରନ୍ତି, ସେଠାରେ ଦିବ୍ୟାଭରଣ ଭୂଷିତା, ମନୋଽଭିରାମା ମଦବିହ୍ୱଳା, ମଧୁରା, ପବିତ୍ରା ମହିଳାମାନେ ତାହାଙ୍କୁ ବିନୋଦିତ କରନ୍ତି । ସେହି ଭୋଗଶାଳୀ ତେଜଃସମ୍ପନ୍ନ, ବୈଶ୍ୱାନରସମପ୍ରଭ ଦିବ୍ୟମୂର୍ତ୍ତି ଅମରସଦୃଶ ଦୀପ୍ୟମାନ ଦିବ୍ୟପୁରୁଷ, ବସୁଗଣ, ମରୁଦ୍‌ଗଣ, ସାଧ୍ୟସମୂହ, ଅଶ୍ୱିନୀକୁମାରଯୁଗଳ ଓ ରୁଦ୍ରଗଣଙ୍କ ଲୋକସମୂହକୁ ଏବଂ ବ୍ରହ୍ମଲୋକକୁ ଗମନ କରନ୍ତି ।

ଯେଉଁ ଶମଗୁଣାନ୍ୱିତ ନର ଦ୍ୱାଦଶ ମାସ ସର୍ବଦା ଏକମାସ ଅତୀତ ହେଲେ, ଏକାହାର କରନ୍ତି, ସେ ବ୍ରହ୍ମଲୋକ ପ୍ରାପ୍ତ ହୁଅନ୍ତି । ସେ ସୁଧାରସ ପାନ କରି ଶ୍ରୀମାନ୍ ଓ ସର୍ବଜନର ମନୋହର ହୁଅନ୍ତି

ତେଜଶ୍ରୀ ଓ ସ୍ୱପ୍ରଭାଦ୍ୱାରା ସୂର୍ଯ୍ୟସଦୃଶ ଦେଦୀପ୍ୟମାନ ହୁଅନ୍ତି । ଦିବ୍ୟ-ମାଲ୍ୟାମ୍ବରଧର, ଦିବ୍ୟମାଲ୍ୟାନୁଲେପନ, ସୁଖରେ ନିରତ ଭୋଗୀ, ଦୁଃଖ-ଅନୁଭବରେ ଅନଭିଜ୍ଞ ହୋଇ ସ୍ୱୟଂପ୍ରଭ ସ୍ତ୍ରୀଗଣଙ୍କ ସହିତ ବିମାନସ୍ଥ ହୋଇ ପୂଜିତ ହୁଅନ୍ତି (୧୩୦), ଏବଂ ରୁଦ୍ର ଓ ଦେବର୍ଷି କନ୍ୟାଗଣଙ୍କଦ୍ୱାରା ସର୍ବଦା ସର୍ବତୋଭାବରେ ପୂଜିତ ହୁଅନ୍ତି । ବିବିଧ ରୂପରେ ବିନୋଦିନୀ, ନାନାବିଧ ସ୍ତ୍ରୀଗଣକର୍ତ୍ତୃକ ବହୁଳ ଭାଷା ଓ ବହୁବିଧ ରତିଗୃତ୍ତିଦ୍ୱାରା ସୂର୍ଯ୍ୟ ଓ ବୈଦୁର୍ଯ୍ୟସନ୍ନିଭ ଗଗନାକାର ପୃଷ୍ଠଦେଶରେ, ସୋମପ୍ରକାଶ ଅଭିମୁଖରେ ଅଭ୍ରସନ୍ନିଭ ଦକ୍ଷିଣ ଭାଗରେ ରକ୍ତ ବର୍ଣ୍ଣ ଆଭାଯୁକ୍ତ, ଅଧୋ-ଦେଶରେ, ନୀଳମଣ୍ଡଳାକାର ଊର୍ଦ୍ଧ୍ୱରେ ବିଚିତ୍ର ପ୍ରକାଶବିମାନରେ ପୂଜିତ ହୋଇ ଅନେକ ସୁରକନ୍ୟାଙ୍କ ସହିତ ସୁରଲୋକରେ ବସତି କରନ୍ତି । ଜମ୍ବୁଦ୍ୱୀପରେ ଯାବତ୍ ସହସ୍ର ବର୍ଷ ବୃଷ୍ଟି ହୁଏ, ସେହି ଧୀଶକ୍ତିସମ୍ପନ୍ନ ଯୋଗୀଙ୍କର ବ୍ରହ୍ମଲୋକରେ ତାବତ୍ ସମ୍ବତ୍ସର ବାସ ହୁଏ ବୋଲି ଉକ୍ତ ଅଛି । ବର୍ଷାକାଳରେ ଗଗନତଳରୁ ବର୍ଷଣଜନିତ ଯାବତ୍ ପରିମାଣ ଜଳବିନ୍ଦୁ ନିପତିତ ହୁଏ, ତାବତ୍ କାଳ ସେ ଅମର ପ୍ରଭା ଅତିକ୍ରମ କରି ସୁରପୁରରେ ବସତି କରନ୍ତି । ମାସୋପବାସୀ ନର ଦଶବର୍ଷ କାଳ ଏତାଦୃଶ କଠୋର ବ୍ରତ ପାଳନ କରି ମହର୍ଷିତ୍ୱ ପ୍ରାପ୍ତ ହୋଇ ସଶରୀରରେ ଉତ୍କୃଷ୍ଟ ସ୍ୱର୍ଗଲୋକକୁ ଗମନ କରନ୍ତି ।

ମନନଶୀଳ, ଦାନ୍ତ, କ୍ରୋଧବିଜୟୀ ଶତଶତ ଜିତଶିଶ୍ନୋଦର, ଅଗ୍ନିରେ ଆହୁତି ପ୍ରଦାତା, ନିରନ୍ତର ସନ୍ଧ୍ୟୋପାସନସେବୀ, ଯେଉଁ ନର ଏବଂବିଧ ବହୁଳ ନିୟମାବଳୀଦ୍ୱାରା ଶୁଚି ହୋଇ ମାସଶେଷରେ ଏକବାର ମାତ୍ର ଆହାର କରନ୍ତି, ସେହି ଆକାଶ ସଦୃଶ ନିର୍ମଳ, ଏବଂ ସୂର୍ଯ୍ୟକାନ୍ତି ସଦୃଶ ତେଜସ୍ୱୀ ପୁରୁଷ ଶରୀର ସହିତ ସୁରପୁରକୁ ଗମନ କରି ଅମର-ସଦୃଶ କାମନାନୁସାରେ ପବିତ୍ର ସ୍ୱର୍ଗସୁଖ ଉପଭୋଗ କରନ୍ତି । ୧୩୯ । ହେ ଭରତଶ୍ରେଷ୍ଠ ମହାରାଜ ! ତୁମ୍ଭ ନିକଟରେ ଏହି ଉପବାସ ଫଳାତ୍ମକ ଉତ୍କୃଷ୍ଟ ଯଜ୍ଞବିଧି ଆନୁପୂର୍ବିକ ଆଖ୍ୟାତ ହେଲା । ୧୪୦ । ହେ ପାର୍ଥ ! ଦରିଦ୍ର ମନୁଜଗଣ ଏହି ସମସ୍ତ ଉପବାସ କରି ଯଜ୍ଞ ଫଳ ପ୍ରାପ୍ତ ହୁଅନ୍ତି ଏବଂ ପରମଗତି ଲାଭ କରନ୍ତି । ହେ ଭରତସତ୍ତମ ! ତୁମ୍ଭେ ଦେବ ଓ ଦ୍ୱିଜଗଣଙ୍କ ପୂଜାରତ ଅଟ । ୧୪୧ । ଏହି ନିମିତ୍ତ ତୁମ୍ଭ ନିକଟରେ ଏହି ଉପବାସ-ବିଧି ବିସ୍ତାର କ୍ରମେ କୀର୍ତ୍ତିତ ହେଲା । ହେ ଭରତ ! ସର୍ବଦା ଅପ୍ରମତ୍ତ,

ଶୌଚସମନ୍ବିତ, ଦମ୍ଭ କ୍ରୋଧ ନିବୃତ୍ତ, କୃତବୁଦ୍ଧି, ଅଚଞ୍ଚଳ, ଅନବଧାନ-ବିହୀନ, ମହାନୁଭବଗଣଙ୍କଠାରେ ଏହି ବିଷୟରେ ତୁମ୍ଭର ସଂଶୟ ନ ହେଉ । ୧୪୪ ।

---

## ଅଧ୍ୟାୟ—୧୦୮

ଯୁଧିଷ୍ଠିର କହିଲେ—ହେ ପିତାମହ ! ସମସ୍ତ ତୀର୍ଥସମୂହ ମଧ୍ୟରେ ଯାହା ଯାହା ଉତ୍କୃଷ୍ଟ ଏବଂ ଯହିଁରେ ପରମ ପବିତ୍ରତା ହୁଏ, ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହୁଅନ୍ତୁ । ୧ । ଭୀଷ୍ମ କହିଲେ, ସମସ୍ତ ତୀର୍ଥସମୂହ ମନୀଷିଗଣ ପକ୍ଷରେ ଫଳପ୍ରଦ; ମାତ୍ର ତନ୍ମଧ୍ୟରେ ଯାହା ପବିତ୍ର ତୀର୍ଥ, ତାହା ସମାହିତ ହୋଇ ଆମ୍ଭ ନିକଟରୁ ଶ୍ରବଣ କର । ୨ ।

ମନୁଷ୍ୟ ଶାଶ୍ୱତ ସତ୍ତ୍ୱ ଅବଲମ୍ବନପୂର୍ବକ ଅଗାଧ, ନିର୍ମଳ, ବିଶୁଦ୍ଧ ଏବଂ ସତ୍ୟରୂପ ଜଳ ଓ ଧୃତିରୂପ ହ୍ରଦ ସଂଯୁକ୍ତ ମାନସତୀର୍ଥରେ ସ୍ନାନ କରିବେ । ୩ । ସେହି ତୀର୍ଥରେ ସ୍ନାନ କଲେ ଅନର୍ଥିତ୍ୱ, ସରଳତା, ସତ୍ୟ, ମୃଦୁତା, ସର୍ବଭୂତରେ ଅନୃଶଂସତା, ଇନ୍ଦ୍ରିୟ ଦମନ ଶକ୍ତି ଓ ଶାନ୍ତିଗୁଣ ଲାଭ ହୁଏ । ୪ । ଯେଉଁମାନେ ନିର୍ଦ୍ଦ୍ୱନ୍ଦ୍ୱ, ମମତାଶୂନ୍ୟ, ଅହଂକାର ବିହୀନ ଓ ନିଷ୍ପରିଗ୍ରହ ହୋଇ ଭିକ୍ଷା ଦ୍ରବ୍ୟଦ୍ୱାରା ଜୀବନଯାପନ କରନ୍ତି, ସେମାନେ ପବିତ୍ର ତୀର୍ଥସ୍ୱରୂପ ଅଟନ୍ତି । ୫ । ତତ୍ତ୍ୱଜ୍ଞାନସମ୍ପନ୍ନ ଅହଂକାରବିହୀନ ବ୍ୟକ୍ତି ଶ୍ରେଷ୍ଠ ତୀର୍ଥ ଅଟନ୍ତି ବୋଲି କଥିତ ହୋଇଅଛି । ଆପଣ ଜାଣିବେ, ସର୍ବତ୍ର ସମଦର୍ଶନ କେବଳ ପବିତ୍ରତାର ଲକ୍ଷଣ ଅଟେ । ୬ । ଯେଉଁମାନଙ୍କ ଚିତ୍ତରୁ ରଜୋଗୁଣ, ତମୋଗୁଣ ଓ ସତ୍ତ୍ୱଗୁଣ ନିର୍ଧୌତ ହୋଇଅଛି, ଯେଉଁମାନେ ଶୌଚାଶୌଚସମାଯୁକ୍ତ, ସ୍ୱକାର୍ଯ୍ୟନିର୍ବାହ ବିଷୟରେ ନିରନ୍ତର ନିବିଷ୍ଟ, ସର୍ବତ୍ୟାଗ ବିଷୟରେ ସର୍ବତୋଭାବରେ ଅନୁରକ୍ତ, ସର୍ବଜ୍ଞ, ସର୍ବଦର୍ଶୀ, ଶୌଚଦ୍ୱାରା ଯେଉଁମାନଙ୍କର ପବିତ୍ରତା ଜନ୍ମିଅଛି, ସେହିମାନେ ତୀର୍ଥ ଏବଂ ସେହିମାନେ ଶୁଚି । ୮ ।

ଜଳଦ୍ୱାରା ଗାତ୍ରପ୍ରକ୍ଷାଳନକାରୀ ବ୍ୟକ୍ତିଙ୍କୁ ସ୍ନାତ ବୋଲାଯାଏ ନାହିଁ । ଯେ ଇନ୍ଦ୍ରିୟ ଦମନ କରିଅଛନ୍ତି, ସେ ଯଥାର୍ଥ ସ୍ନାତ, ସେ ବାହ୍ୟ ଏବଂ

ଅଭ୍ୟନ୍ତରରେ ଶୁଚି ଅଟନ୍ତି । ୯ । ଯେଉଁମାନେ ଅପ୍ରାପ୍ତ ବିଷୟରେ ଅନପେକ୍ଷ, ପ୍ରାପ୍ତ ପଦାର୍ଥରେ ନିର୍ମମ ଏବଂ ଯେଉଁମାନଙ୍କର କୌଣସି ପଦାର୍ଥ ଗ୍ରହଣ କରିବାକୁ ସ୍ପୃହା ହୁଏ ନାହିଁ, ସେହିମାନେ ପରମପବିତ୍ର ।୧୦। ପ୍ରଜ୍ଞାନ ଶରୀର ବିଶେଷତଃ ଶୌଚ ଓ ନିଷ୍କିଞ୍ଚନତ୍ୱ, ମନର ପ୍ରସନ୍ନତା (୧୧), ଚରିତ୍ରଶୁଦ୍ଧି ଓ ତୀର୍ଥଶୁଦ୍ଧି ଏହି ଦ୍ୱିବିଧ ଶୁଦ୍ଧି ଅପେକ୍ଷା ଜ୍ଞାନୋତ୍ପନ୍ନ ଶୁଦ୍ଧି କେବଳ ପରମ ଶୁଦ୍ଧିରୂପେ ସମ୍ମତ ଅଟେ । ୧୨ । ଯେ ଜ୍ଞାନୋଜ୍ଜ୍ୱଳ ଅର୍ଥାତ୍ ପରିଶୁଦ୍ଧ ମନ ଓ ବ୍ରହ୍ମଜ୍ଞାନ ଜଳଦ୍ୱାରା ମାନସ ତୀର୍ଥରେ ଅବଗାହନ କରନ୍ତି, ତାହାଙ୍କ ସ୍ନାନକୁ ପ୍ରକୃତ ସ୍ନାନ ବୋଲି ତତ୍ତ୍ୱଦର୍ଶିଗଣ କହନ୍ତି ।୧୩। ଶୌଚସମ୍ପନ୍ନ, ସର୍ବଦା ଭାବସମାହିତ, ଗୁଣବାନ୍ ନର କେବଳ ସର୍ବଦା ପବିତ୍ର । ୧୪ । ହେ ଭାରତ । ଏହି ସମସ୍ତ ଶରୀରସ୍ଥିତ ତୀର୍ଥମାନଙ୍କୁ କହିଲୁଁ । ପୃଥିବୀ ମଧ୍ୟରେ ଯେଉଁ ସବୁ ପବିତ୍ର ତୀର୍ଥସମୂହ ଅଛନ୍ତି ତତ୍ସମୁଦାୟ ଶ୍ରବଣ କର । ୧୫ ।

ଶରୀରର କେତେକ ଅବୟବ ଯେଉଁପରି ପବିତ୍ର ରୂପରେ ପରିକୀର୍ତ୍ତିତ, ତଦ୍ୱତ୍ ପୃଥିବୀର କେତେକ ଅଂଶ ଓ ସଲିଳସମୂହ ପବିତ୍ରରୂପେ କଥିତ ହୋଇଅଛନ୍ତି । ୧୬ । ତୀର୍ଥର ନାମକୀର୍ତ୍ତନ, ତୀର୍ଥରେ ସ୍ନାନ ଓ ତୀର୍ଥରେ ପିତୃତର୍ପଣ ହେତୁରୁ ଯେଉଁମାନେ ପାପ ପ୍ରକ୍ଷାଳନ କରନ୍ତି, ସେମାନେ ଅନାୟାସରେ ସୁରପୁରକୁ ଗମନ କରନ୍ତି ।୧୭। ସାଧୁ-ସଂସର୍ଗରୁ, ପୁଣ୍ୟକ୍ଷେତ୍ର ପ୍ରଭାବରୁ ଏବଂ ପବିତ୍ର ଜଳରାଶିର ତେଜରୁ ତୀର୍ଥ-ସେବୀ ନରଗଣ ଅତ୍ୟନ୍ତ ପୁଣ୍ୟଭାଗୀ ହୁଅନ୍ତି । ୧୮ । ମନ ଓ ପୃଥିବୀ-ସମ୍ବନ୍ଧୀ ପୁଣ୍ୟ ତୀର୍ଥମାନେ ନିର୍ଦ୍ଦିଷ୍ଟ ହୋଇଅଛନ୍ତି । ସେ ଉଭୟ ତୀର୍ଥରେ ଯେଉଁମାନେ ସ୍ନାନ କରନ୍ତି, ସେ ଅବିଳମ୍ବରେ ସିଦ୍ଧ ହୁଅନ୍ତି ।୧୯। ଯେଉଁପରି କ୍ରିୟାହୀନ ବଳ ଓ ବଳବର୍ଜିତା କ୍ରିୟା ଇହଲୋକରେ କାର୍ଯ୍ୟସାଧନ କରି ନ ପାରେ, କିନ୍ତୁ ଉଭୟେ ସଂଯୁକ୍ତ ହେଲେ କାର୍ଯ୍ୟ ସିଦ୍ଧ ହୁଏ, ସେହି-ପରି ଶରୀରଶୌଚ ଓ ତୀର୍ଥଶୌଚସମନ୍ୱିତ ହେଲେ ନର ପବିତ୍ର ହୋଇ ସିଦ୍ଧି ଲାଭକରେ । ଅତଏବ ଉକ୍ତ ଦ୍ୱିବିଧ ଶୌଚ ଉତ୍ତମ । ୨୦ ।

---

# ଅଧ୍ୟାୟ—୧୦୯

ଯୁଧିଷ୍ଠିର କହିଲେ—ସମସ୍ତ ଉପବାସ ମଧ୍ୟରେ ଯାହା ଶ୍ରେଷ୍ଠ ଓ ସୁମହତ୍ ଫଳଜନକ ଏବଂ ଯାହା ଲୋକସମାଜରେ ସଂଶୟଶୂନ୍ୟ, ତାହା ଆପଣ ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ । ୧ ।

ଭୀଷ୍ମ କହିଲେ, ହେ ରାଜନ୍ ! ସ୍ୱୟମ୍ଭୂ ସ୍ୱୟଂ ଯେଉଁପରି କୀର୍ତ୍ତନ କରିଅଛନ୍ତି, ଯାହା କଲେ ପୁରୁଷ ନିବୃତ୍ତିଲାଭ କରନ୍ତି, ତାହା ଶ୍ରବଣ କର । ଏହି ବିଷୟରେ କିଛି ସଂଶୟ ନାହିଁ । ୨ । ମାର୍ଗଶୀର୍ଷ ମାସରେ ଦ୍ୱାଦଶୀ ତିଥିରେ ଅହୋରାତ୍ର କେଶବଙ୍କୁ ଅର୍ଚ୍ଚନା କଲେ ଅଶ୍ୱମେଧ ଯଜ୍ଞର ଫଳଲାଭ ହୁଏ ଏବଂ ଯେ ଅର୍ଚ୍ଚନା କରନ୍ତି ତାହାଙ୍କର ଦୁଷ୍କୃତି ନଷ୍ଟ ହୁଏ । ୩ । ସେହି-ପରି ଦ୍ୱାଦଶୀ ତିଥିରେ ପୌଷମାସରେ ନାରାୟଣଙ୍କୁ ପୂଜା କଲେ ନର ବାଜପେୟ ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି ଏବଂ ପରମ ସିଦ୍ଧି ଲାଭ କରନ୍ତି । ୪ ।

ମାଘମାସ ଦ୍ୱାଦଶୀ ତିଥିରେ ଅହୋରାତ୍ର ମାଧବଙ୍କୁ ପୂଜା କଲେ ରାଜସୂୟ ଯଜ୍ଞର ଫଳପ୍ରାପ୍ତି ହୁଏ ଏବଂ ପୂଜକ ନିଜ କୁଳ ଉଦ୍ଧାର କରନ୍ତି । ୫ । ତଦ୍‌ବତ୍ ଫାଲ୍‌ଗୁନ ମାସ ଦ୍ୱାଦଶୀରେ ଯେ 'ଗୋବିନ୍ଦ' ଏହି ନାମ ଉଚ୍ଚାରଣ ପୂର୍ବକ ପୂଜା କରନ୍ତି, ସେ ଅତିରାତ୍ର ଯଜ୍ଞର ଫଳ ଲାଭ କରନ୍ତି ଏବଂ ସୋମଲୋକକୁ ଗମନ କରନ୍ତି । ଯେ ଚୈତ୍ରମାସ ଦ୍ୱାଦଶୀରେ ଅହୋରାତ୍ର 'ବିଷ୍ଣୁ' ଏହି ନାମ ସ୍ମରଣପୂର୍ବକ ପୂଜା କରନ୍ତି, ସେ ପୌଣ୍ଡରୀକ ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି ଏବଂ ଦେବଲୋକକୁ ଗମନ କରନ୍ତି । ୭ । ଯେ ବୈଶାଖମାସ ଦ୍ୱାଦଶୀ ତିଥିରେ ମଧୁସୂଦନଙ୍କ ପୂଜା କରନ୍ତି, ସେ ଅଗ୍ନିଷ୍ଟୋମ ଯଜ୍ଞର ଫଳପ୍ରାପ୍ତ ହୁଅନ୍ତି ଏବଂ ସୋମଲୋକକୁ ଗମନ କରନ୍ତି । ୮ । ଯେ ଜ୍ୟୈଷ୍ଠମାସ ଦ୍ୱାଦଶୀରେ ଅହୋରାତ୍ର ତ୍ରିବିକ୍ରମଙ୍କ ପୂଜା କରନ୍ତି, ସେ ଗୋ-ମେଧ ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି ଏବଂ ଅପ୍‌ସରାଗଣଙ୍କ ଦ୍ୱାରା ପ୍ରମୋଦପ୍ରାପ୍ତ ହୁଅନ୍ତି । ୯ ।

ଯେ ଆଷାଢ଼ ମାସ ଦ୍ୱାଦଶୀରେ ବାମନଦେବଙ୍କ ପୂଜା କରନ୍ତି ସେ ନରମେଧ ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି ଏବଂ ଅପ୍‌ସରାଗଣଙ୍କ ଦ୍ୱାରା ପ୍ରମୋଦିତ ହୁଅନ୍ତି ଓ ମହତ୍ ପୁଣ୍ୟ ଲାଭ କରନ୍ତି । ୧୦ । ଯେ ଶ୍ରାବଣମାସ ଦ୍ୱାଦଶୀରେ ଅହୋରାତ୍ର ଶ୍ରୀଧରଙ୍କୁ ଅର୍ଚ୍ଚନା କରନ୍ତି, ସେ ପଞ୍ଚଯଜ୍ଞର ଫଳପ୍ରାପ୍ତ ହୁଅନ୍ତି

। ୧୧ । ଯେ ଭାଦ୍ରମାସ ଦ୍ୱାଦଶୀରେ ହୃଷୀକେଶଙ୍କୁ ପୂଜା କରନ୍ତି, ସେ ସୌତ୍ରାମଣି ଯଜ୍ଞର ଫଳ ପ୍ରାପ୍ତ ହୁଅନ୍ତି ଏବଂ ପବିତ୍ରଚିତ୍ତ ହୁଅନ୍ତି । ୧୨ । ଯେ ଆଶ୍ୱିନମାସ ଦ୍ୱାଦଶୀରେ ପଦ୍ମନାଭଙ୍କୁ ଅର୍ଚ୍ଚନା କରନ୍ତି ସେ ସହସ୍ର ଗୋ ଦାନର ପବିତ୍ର ଫଳ ପ୍ରାପ୍ତ ହୁଅନ୍ତି । ଏ ବିଷୟରେ ସଂଶୟ ନାହିଁ ।୧୩।

କାର୍ତ୍ତିକମାସ ଦ୍ୱାଦଶୀରେ ପୁରୁଷ ଅବା ସ୍ତ୍ରୀ ଯେ ଦାମୋଦରଙ୍କୁ ପୂଜା କରନ୍ତି, ସେ ପବିତ୍ରତମ ଗୋଯଜ୍ଞର ଫଳପ୍ରାପ୍ତ ହୁଅନ୍ତି, ଏହି ବିଷୟ-ରେ ସଂଶୟ ନାହିଁ । ୧୪ । ଯେ ଏହିରୂପେ ସମ୍ୱତ୍ସରକାଳ ପୁଣ୍ଡରୀକାକ୍ଷଙ୍କ ପୂଜା କରନ୍ତି, ସେ ଜାତିସ୍ମର ହୁଅନ୍ତି ଏବଂ ବହୁ ସୁବର୍ଣ୍ଣ ଲାଭ କରନ୍ତି ।୧୫। ଯେ ପ୍ରତିଦିନ ଉପେନ୍ଦ୍ରଙ୍କ ପୂଜା କରନ୍ତି, ସେ ତାହାଙ୍କ ସହିତ ତାଦାତ୍ମ୍ୟ ଲାଭ କରନ୍ତି । ଏହି ବ୍ରତ ସମାପ୍ତ ହେଲେ ବ୍ରାହ୍ମଣ ଭୋଜନ କରାଇବେ, ଅଥବା ଘୃତଦାନ କରିବେ । ୧୬ । ଏହା ଅପେକ୍ଷା ଉପବାସ ନାହିଁ, ଏହା ନିଶ୍ଚିତ ଅଟେ । ସନାତନ ଭଗବାନ ନାରାୟଣ ସ୍ୱୟଂ ଏହି କଥା କହି-ଅଛନ୍ତି । ୧୭ ।

---

## ଅଧ୍ୟାୟ—୧୧୦

ବୈଶମ୍ପାୟନ କହିଲେ—ମହାପ୍ରାଜ୍ଞ ଯୁଧିଷ୍ଠିର ଶରଶଯ୍ୟାଗତ ବୃଦ୍ଧତମ କୁରୁପିତାମହ ଭୀଷ୍ମଙ୍କ ନିକଟକୁ ଗମନପୂର୍ବକ ପ୍ରଶ୍ନ କଲେ ।

ଯୁଧିଷ୍ଠିର କହିଲେ, ଅଙ୍ଗସମୂହର ରୂପ, ସୌଭାଗ୍ୟ ଓ ପ୍ରିୟତ୍ୱ କେଉଁପରି ହୁଏ ? ଏବଂ ଧର୍ମାର୍ଥସଂଯୁକ୍ତ ପୁରୁଷ କେଉଁପରି ସୁଖଭାଗୀ ହୁଅନ୍ତି ? । ୨ । ଭୀଷ୍ମ କହିଲେ, ହେ ରାଜେନ୍ଦ୍ର ! ମାର୍ଗଶୀର୍ଷ ମାସର ଶୁକ୍ଳ ପ୍ରତିପଦରେ ମୂଳାନକ୍ଷତ୍ର ସହିତ ଚନ୍ଦ୍ରଙ୍କର ସଂଯୋଗ ହେଲେ ନିଜ ଦେବତା ସହ ମୂଳା ନକ୍ଷତ୍ର ସହିତ ଚନ୍ଦ୍ରଙ୍କ ପଦଦ୍ୱୟ କଳ୍ପନା କରିବେ ଏବଂ ରୋହିଣୀ ନକ୍ଷତ୍ର ସହିତ ଚନ୍ଦ୍ରଙ୍କ ଜଙ୍ଘା କଳ୍ପନା କରିବେ । ଅଶ୍ୱିନୀ ନକ୍ଷତ୍ର ସହିତ ଚନ୍ଦ୍ରଙ୍କ ସକ୍ଥିଦ୍ୱୟ, ପୂର୍ବାଷାଢ଼ା ନକ୍ଷତ୍ର ସହିତ ଉରୁଯୁଗଳ, ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ର ସହିତ ଗୁହ୍ୟ ଓ କୃତ୍ତିକା ନକ୍ଷତ୍ର ସହିତ କଟି କଳ୍ପନା କରିବେ । ପୂର୍ବ ଭାଦ୍ରପଦ ଓ ଉତ୍ତର ଭାଦ୍ରପଦ ସହିତ ନାଭି, ରେବତୀ ନକ୍ଷତ୍ର ସହିତ ନେତ୍ରଦ୍ୱୟ

ଧନିଷ୍ଠା ନକ୍ଷତ୍ର ସହିତ ଉଦର, ବିଶାଖା ନକ୍ଷତ୍ର ସହିତ ବାହୁଦ୍ୱୟ ଏବଂ ହସ୍ତାନକ୍ଷତ୍ର ସହିତ ଚନ୍ଦ୍ରଙ୍କ ଯୋଗ ହେଲେ ହସ୍ତଦ୍ୱୟ ନିର୍ଦ୍ଦେଶ କରିବେ ।

ହେ ରାଜନ୍ ! ପୁନର୍ବସୁ ନକ୍ଷତ୍ର ସହିତ ଚନ୍ଦ୍ରମାଙ୍କ ସମ୍ବନ୍ଧ ହେଲେ ଅଙ୍ଗୁଳିବୃନ୍ଦ ଏବଂ ଅଶ୍ଳେଷା ନକ୍ଷତ୍ରର ଯୋଗହେଲେ ନଖସମୂହ କଳ୍ପନା କରିବେ । ହେ ରାଜେନ୍ଦ୍ର ! ଜ୍ୟେଷ୍ଠା ନକ୍ଷତ୍ରଯୋଗରେ ଗ୍ରୀବା ଏବଂ ଶ୍ରବଣା ନକ୍ଷତ୍ରଯୋଗରେ ଶ୍ରବଣଯୁଗଳ, ପୁଷ୍ୟା ନକ୍ଷତ୍ରଯୋଗରେ ମୁଖ ଓ ସ୍ୱାତି ନକ୍ଷତ୍ର ଯୋଗରେ ଦନ୍ତ ଓ ଓଷ୍ଠ ଉକ୍ତ ହୁଏ, ଶତଭିଷା ନକ୍ଷତ୍ରଯୋଗରେ ଆସ୍ୟ, ମଘା ନକ୍ଷତ୍ରଯୋଗରେ ନାସିକା, ମୃଗଶିର ନକ୍ଷତ୍ରଯୋଗରେ ନେତ୍ରଯୁଗଳ, ଚିତ୍ରାନକ୍ଷତ୍ରରେ ଲଲାଟ କଳ୍ପନା କରିବେ । ଭରଣୀ ନକ୍ଷତ୍ରଯୋଗରେ ମସ୍ତକ ଏବଂ ଆର୍ଦ୍ରା ନକ୍ଷତ୍ର ସହିତ ଚନ୍ଦ୍ରଙ୍କର ଯୋଗହେଲେ ତଦୀୟ କେଶ-ସମୂହ କଳ୍ପନା କରିବେ । ହେ ନରାଧିପ ! ଏହି ଚନ୍ଦ୍ରବ୍ରତ ସମାପ୍ତ ହେଲେ ବେଦପାରଗ ବ୍ରାହ୍ମଣଙ୍କୁ ଘୃତ ଦାନ କରିବେ । ମନୁଷ୍ୟ ଏହିପରି ଜପହୋମାଦି ଦ୍ୱାରା ବ୍ରତ କଲେ ସୁଭଗ, ଦର୍ଶନୀୟ ଏବଂ ଜ୍ଞାନଭାଗୀ ହୁଅନ୍ତି, ପୂର୍ଣ୍ଣିମା ଚନ୍ଦ୍ର ସଦୃଶ ପରିପୂର୍ଣ୍ଣାଙ୍ଗ ହୁଅନ୍ତି । ୧୦ ।

---

## ଅଧ୍ୟାୟ—୧୧୧

ଯୁଧିଷ୍ଠିର କହିଲେ—ହେ ସର୍ବଶାସ୍ତ୍ରବିଶାରଦ ମହାପ୍ରାଜ୍ଞ ପିତାମହ ! ମର୍ତ୍ତ୍ୟଗଣଙ୍କର ଉତ୍କୃଷ୍ଟ ସଂସାରବିଧି ଜାଣିବାକୁ ଇଚ୍ଛା କରୁଅଛୁଁ । ହେ ରାଜେନ୍ଦ୍ର ନରପାଳ ! ଭୂମଣ୍ଡଳରେ ନରଗଣ କେଉଁ ପ୍ରକାରେ ବ୍ୟବହାର କଲେ ଉତ୍କୃଷ୍ଟ ସ୍ୱର୍ଗ ଅଥବା ନରକ ପ୍ରାପ୍ତ ହୁଅନ୍ତି ? ଜନଗଣ କାଷ୍ଠ ଲୋଷ୍ଟ୍ରସମ ମୃତ ଦେହକୁ ପରିତ୍ୟାଗପୂର୍ବକ ପରଲୋକକୁ ଗମନ କରନ୍ତି, ଅତଏବ ସେତେବେଳେ କିଏ ସେମାନଙ୍କର ଅନୁଗମନ କରେ ? ଭୀଷ୍ମ କହିଲେ, ଏହି ଉଦାର ଧୀଶକ୍ତିଶାଳୀ ଭଗବାନ୍ ବୃହସ୍ପତି ଆଗମନ କରୁ-ଅଛନ୍ତି ; ଏହି ସୁମହାଭାଗଙ୍କୁ ଏହି ସନାତନ ଗୁହ୍ୟ ବିଷୟ ପ୍ରଶ୍ନ କର । ସମ୍ପ୍ରତି ଏହାଙ୍କ ବିନା ଅନ୍ୟ କେହି ଏହି ବିଷୟ କହିପାରିବେ ନାହିଁ । ବୃହସ୍ପତିଙ୍କ ସଦୃଶ ଅନ୍ୟ କେହି ବକ୍ତା କୌଣସିଠାରେ ନାହାନ୍ତି ।

ବୈଶମ୍ପାୟନ କହିଲେ, ତେତେବେଳେ ଯୁଧିଷ୍ଠିର ଓ ଧୃତରାଷ୍ଟ୍ର ଏହିପରି କଥୋପକଥନ କରୁଥିବା ସମୟରେ ସ୍ୱର୍ଗଲୋକରୁ ବିଶୁଦ୍ଧଚିତ୍ତ ବୃହସ୍ପତି ଆଗମନ କଲେ, ତହୁଁରେ ଧୃତରାଷ୍ଟ୍ର ପୁରଃସର ରାଜା ଏବଂ ସେହିସମସ୍ତ ସଭାସଦ୍‌ଗଣ ଗାତ୍ରୋତ୍ଥାନପୂର୍ବକ ତାହାଙ୍କୁ ଅନୁପମ ପୂଜା କଲେ । ତଦନନ୍ତର ଧର୍ମପୁତ୍ର ରାଜା ଯୁଧିଷ୍ଠିର ଭଗବାନ୍ ବୃହସ୍ପତିଙ୍କ ନିକଟକୁ ଗମନ କରି ଯଥାନ୍ୟାୟରେ ଯଥାର୍ଥ ରୂପେ ପ୍ରଶ୍ନ କଲେ । ୮ ।

ଯୁଧିଷ୍ଠିର କହିଲେ, ହେ ସର୍ବଶାସ୍ତ୍ରବିଶାରଦ ! ସର୍ବଧର୍ମଜ୍ଞ ଭଗବନ୍ ! ପିତା, ମାତା, ପୁତ୍ର, ଗୁରୁ, ଜ୍ଞାତି, ସମ୍ବନ୍ଧିବର୍ଗ ଓ ମିତ୍ରଗଣଙ୍କ ମଧ୍ୟରେ ମନୁଷ୍ୟର ସହାୟ କିଏ ? ଜୀବଗଣ କାଷ୍ଠ ଓ ଲୋଷ୍ଟ୍ରସମ ମୃତଶରୀରକୁ ପରିତ୍ୟାଗ କରି ଗମନ କରନ୍ତି, ଅତଏବ ପରଲୋକରେ କିଏ ତାଙ୍କର ଅନୁଗମନ କରେ ? ୧୦ ।

ବୃହସ୍ପତି କହିଲେ, ରାଜନ୍ ! ମନୁଷ୍ୟ ଏକାକୀ ପ୍ରସୂତ ହୁଏ, ଏକାକୀ ବିନଷ୍ଟ ହୁଏ, ଏକାକୀ ଦୁର୍ଗସମୂହ ଉତ୍ତୀର୍ଣ୍ଣ ହୁଏ ଏବଂ ଏକାକୀ ଦୁର୍ଗତି ଲାଭକରେ । ୧୧ । ପିତା, ମାତା, ଭ୍ରାତା, ପୁତ୍ର, ଜ୍ଞାତି, ସମ୍ବନ୍ଧୀ ଓ ମିତ୍ରବର୍ଗ କେହି ତାହାଙ୍କର ସହାୟ ନୁହନ୍ତି । ୧୨ । ଜନଗଣ କାଷ୍ଠ ଓ ଲୋଷ୍ଟ୍ର ସମାନ ମୃତଶରୀରକୁ ପରିତ୍ୟାଗପୂର୍ବକ ମୁହୂର୍ତ୍ତମାତ୍ର ରୋଦନ କରି ପରାଙ୍ମୁଖ ହୋଇ ନିଜ ନିଜ ସ୍ଥାନକୁ ଗମନ କରନ୍ତି । ୧୩ । କେବଳ ଧର୍ମ ପିତାମାତା ପ୍ରଭୃତିଙ୍କଦ୍ୱାରା ପରିତ୍ୟକ୍ତ ସେହି ଶରୀରକୁ ଅନୁଗମନ କରନ୍ତି । ସେହି କାରଣରୁ ସମସ୍ତଙ୍କର ଧର୍ମ ସହାୟ, ସର୍ବଦା ଧର୍ମକୁ ସେବା କରିବା ନରଗଣଙ୍କର ଉଚିତ । ୧୪ । ଧର୍ମପରାୟଣ ପ୍ରାଣୀ ଉତ୍କୃଷ୍ଟ ସ୍ୱର୍ଗ ଗତି ଲାଭ କରନ୍ତି ଏବଂ ଅଧାର୍ମିକ ନର ନରକକୁ ଗମନ କରନ୍ତି । ୧୫ । ସେହି କାରଣରୁ ପଣ୍ଡିତବ୍ୟକ୍ତି ନ୍ୟାୟୋପାର୍ଜିତ ଧନଦ୍ୱାରା ଧର୍ମଙ୍କୁ ସେବା କରିବେ, ଧର୍ମ କେବଳ ନରଗଣଙ୍କର ପାରଲୌକିକ ସହାୟ ; ଅଦୂରଦର୍ଶୀ ନର ପର ନିମିତ୍ତ ଲୋଭରେ ମୋହିତ ହୋଇ, ଲୋଭ, ମୋହ, ହିଂସା ଓ ଭୟ ହେତୁରୁ ନାନାବିଧ ଅକାର୍ଯ୍ୟସମୂହ କରନ୍ତି । ୧୭ । ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ ଜୀବିତ ସମୟର ଫଳ, ଅତଏବ ଅଧର୍ମ ପରିବର୍ଜିତ ଏହି ତ୍ରିବର୍ଗ ପ୍ରାଣୀମାନଙ୍କର ପ୍ରାପ୍ୟ ଅଟେ । ୧୮ ।

ଯୁଧିଷ୍ଠିର କହିଲେ, ହେ ଭଗବନ୍ ! ଆପଣଙ୍କଠାରୁ ଧର୍ମଯୁକ୍ତ ପରମହିତ ବାକ୍ୟ ଶ୍ରବଣ କଲୁ, ସଂପ୍ରତି ଶରୀରର ଅବସ୍ଥା ଜାଣିବାକୁ ଆମ୍ଭ ଚିତ୍ତରେ ଅଭିଳାଷ ଜନ୍ମିଅଛି । ୧୯ । ନରଗଣଙ୍କର ମୃତଶରୀର

ସୂକ୍ଷ୍ମରୂପରେ ଅପ୍ରକାଶିତ ହୁଏ, ସେହି ହେତୁରୁ ତାହା ଚକ୍ଷୁର ବିଷୟ ହୁଏ ନାହିଁ, ଅତଏବ ଧର୍ମ କେଉଁ ପ୍ରକାରେ ତାହାର ପଶ୍ଚାତ୍ ଗମନ କରେ ? ୨୦ ।

ବୃହସ୍ପତି କହିଲେ, ପୃଥିବୀ, ବାୟୁ, ଆକାଶ, ଜଳ, ଜ୍ୟୋତି, ମନ, ଯମ, ବୁଦ୍ଧି ଏବଂ ଆତ୍ମା, ସାକ୍ଷୀଭୂତା ନିଶା ଓ ଦିବସ, ଏହି ସମସ୍ତ ମିଳିତ ହୋଇ ଇହଲୋକରେ ସମସ୍ତ ପ୍ରାଣୀଗଣର ଧର୍ମକୁ ନିରନ୍ତର ନିରୀକ୍ଷଣ କରନ୍ତି । ୨୨ । ଧର୍ମ ଏହିମାନଙ୍କ ସହିତ ଜୀବର ପଶ୍ଚାତ୍ ଗମନ କରନ୍ତି । ୨୩ ।

ହେ ମହାମତେ ! ଅସ୍ଥି, ଚର୍ମ, ମାଂସ, ଶୁକ୍ର ଓ ରକ୍ତ ଏହିମାନେ ଜୀବନଶୂନ୍ୟ ଶରୀରକୁ ତ୍ୟାଗ କରନ୍ତି । ତତ୍ପରେ ଧର୍ମପରିଯୁକ୍ତ ଜୀବ ଅନ୍ୟ ଦେହକୁ ପ୍ରାପ୍ତ ହୁଅନ୍ତି । ପରିଶେଷରେ ପଞ୍ଚଭୂତସ୍ଥ ଦେବତାମାନେ ସେହି ଜୀବଙ୍କର ଶୁଭ ଅଥବା ଅଶୁଭ କର୍ମସମୂହ ଦର୍ଶନ କରନ୍ତି । ପୁନଶ୍ଚ କୌଣସି ବିଷୟ ଶ୍ରବଣ କରିବାକୁ ଅଭିଳାଷୀ ହେଉଅଛ ।୨୫। ଧର୍ମ-ସମନ୍ୱିତ ସେହି ଜୀବ ଇହଲୋକରେ ଏବଂ ପରଲୋକରେ ସୁଖଲାଭ କରନ୍ତି, ପୁନଶ୍ଚ ତୁମ୍ଭଙ୍କୁ କଅଣ କହିବା । ୨୬ ।

ଯୁଧିଷ୍ଠିର କହିଲେ, ହେ ଭଗବନ୍ ! ଧର୍ମ ଯେଉଁପରି ଅନୁଗମନ କରନ୍ତି, ତାହା ଆପଣ ପ୍ରଦର୍ଶନ କଲେ । କେଉଁପରି ଏହି ରେତ ପ୍ରବୃତ୍ତ ହୁଏ ଏହା ଜାଣିବାକୁ ଇଚ୍ଛା କରୁଅଛୁ ।୨୭। ବୃହସ୍ପତି କହିଲେ, ହେ ନରେଶ୍ୱର ! ଶରୀରସ୍ଥ ଦେବଗଣ, ପୃଥିବୀ, ବାୟୁ, ଆକାଶ, ଜଳ, ଜ୍ୟୋତି ଓ ମନ ଯେଉଁ ଅନ୍ନ ଅଶନ କରନ୍ତି (୨୮), ହେ ରାଜେନ୍ଦ୍ର ! ହେ ଶୁଦ୍ଧାତ୍ମନ୍ ! ସେହି ମନଃ ଷଷ୍ଠ ପଞ୍ଚଭୂତ ପରିତୃପ୍ତ ହେବାରୁ ପୂର୍ବୋକ୍ତ ଭୁକ୍ତ ଅନ୍ନ ମହତ୍ ରେତଃ ସ୍ୱରୂପରେ ସମ୍ପନ୍ନ ହୁଏ ।୨୯। ହେ ନୃପ ! ଅନନ୍ତର ସ୍ତ୍ରୀପୁରୁଷଙ୍କର ଆଶ୍ଳେଷ ହେତୁରୁ ଗର୍ଭ ସମ୍ଭାବନା ହୁଏ । ଏହି ସମୁଦାୟ ତୁମ୍ଭଙ୍କୁ କହିଲୁ । ପୁନଶ୍ଚ କଅଣ ଶ୍ରବଣ କରିବାକୁ ଇଚ୍ଛା କରୁଅଛ ? ୩୦ ।

ଯୁଧିଷ୍ଠିର କହିଲେ, ଗର୍ଭ ଯେଉଁପରି ଜନ୍ମେ, ତାହା ଆପଣଙ୍କ କର୍ତ୍ତୃକ ଆଖ୍ୟାତ ହେଲା ଏବଂ ଜାତ ପୁରୁଷ ରେତଃ ସହିତ କେଉଁପରି ତାଦାତ୍ମ୍ୟ ଲାଭ କରେ, ତାହା କୀର୍ତ୍ତନ କରିବା ହେଉନ୍ତୁ ।୩୧।

ବୃହସ୍ପତି କହିଲେ, ଆସନ୍ନମାତ୍ର ପୁରୁଷ ଭୂତାବେଶ ନ୍ୟାୟରେ ରେତୋଦ୍ୱାରା ଶରୀରାକାରତ୍ୱକୁ ପ୍ରାପ୍ତ ସେହି ସେହି ଭୂତମାନଙ୍କ ସହିତ ତାଦାତ୍ମ୍ୟ ଲାଭ କରି ବର୍ଦ୍ଧିତ ହୁଏ ଏବଂ ସେହି ସମସ୍ତ ଭୂତଗଣ ଦ୍ୱାରା

ବପ୍ରଯୁକ୍ତ ହୋଇ ଅପଗଗତ ପ୍ରାପ୍ତ ହୁଏ, ଅର୍ଥାତ୍ ତାଦାତ୍ମ୍ୟ ଅଭିମାନରୂପ ଅଭିଭବ ହେତୁରୁ ଏହି ଜୀବ ସର୍ବଭୂତସମନ୍ୱିତ ହୋଇ କର୍ତ୍ତୃତ୍ୱାଦି ଅଭିମାନୀ ହୁଏ । ତତ୍‌କାଳରେ ପଞ୍ଚଭୂତସ୍ଥ ଦେବଗଣ ଜୀବର ଶୁଭାଶୁଭ କର୍ମ ଦର୍ଶନ କରନ୍ତି । ପୁନଶ୍ଚ କେଉଁ ବିଷୟ ଶ୍ରବଣ ନିମିତ୍ତ ଇଚ୍ଛା କରୁଅଛ ?

ଯୁଧିଷ୍ଠିର କହିଲେ, ହେ ଭଗବନ୍ ! ତ୍ୱକ୍, ଅସ୍ଥି ଓ ମାଂସ ପରିତ୍ୟାଗ କଲେ ସେହି ସେହି ଭୂତଗଣ କର୍ତ୍ତୃକ ବିବର୍ଜିତ ସେହି ଜୀବ କେଉଁ ସ୍ଥାନରେ ରହି ସୁଖଭୋଗ କରେ ? ୩୪ ।

ବୃହସ୍ପତି କହିଲେ, ହେ ଭାରତ ! କର୍ମସମନ୍ୱିତ ଜୀବ ଅବିଳମ୍ବରେ ରେତସ୍ତ୍ୱ ପ୍ରାପ୍ତ ହୋଇ ସ୍ତ୍ରୀଲୋକସମୂହର ପୁଷ୍ପ ଅବଲମ୍ବନ ପୂର୍ବକ ଯଥା କାଳରେ ପ୍ରସୂତ ହୁଏ । ୩୫ । ନର ଯମପୁରୁଷଗଣଙ୍କଦ୍ୱାରା ବଧ ଭୋଗ କରି ଦୁଃଖମୟ ସଂସାରଚକ୍ରରେ କ୍ଳେଶସମୂହ ଭୋଗ କରନ୍ତି । ୩୬ । ହେ ରାଜନ୍ ! ସେହି ପ୍ରାଣୀ ଇହଲୋକରେ ଆଜନ୍ମ ଧର୍ମଫଳ ଅବଲମ୍ବନ କଲେ ସୁକୃତ କର୍ମର ଫଳ ଭୋଗ କରନ୍ତି । ଜନ୍ମାବଧି ଯଥାଶକ୍ତି ଯଦି ଧର୍ମ ସେବା କରନ୍ତି, ତେବେ ସେ ପୁରୁଷ ହୋଇ ସର୍ବଦା ସୁଖ ଭୋଗ କରନ୍ତି (୩୮) ଏବଂ ଧର୍ମ ମଧ୍ୟରେ ଯଦି ଅଧର୍ମ ସେବା କରନ୍ତି, ତେବେ ଜୀବ ସୁଖାନନ୍ତର ଦୁଃଖ ଭୋଗ କରନ୍ତି । ୩୯ ।

ଯେଉଁ ଜୀବ ଅଧର୍ମସଂଯୁକ୍ତ ସେ ଯମାଳୟକୁ ଗମନ କରି ମହା-ଦୁଃଖ ଭୋଗପୂର୍ବକ ପରିଶେଷରେ ତିର୍ଯ୍ୟକ୍‌ଯୋନିରେ ଜନ୍ମପରିଗ୍ରହ କରନ୍ତି (୪୦), ମୋହସଂଯୁକ୍ତ ଜୀବ ଇହଲୋକରେ ଯେଉଁ ଯେଉଁ କର୍ମ-ଦ୍ୱାରା ଯେଉଁ ଯେଉଁ ଯୋନିରେ ଜନ୍ମନ୍ତି, ତାହା ଆମ୍ଭେ କହୁଅଛୁ ଶ୍ରବଣ କର । ୪୧ । ଇତିହାସସହ, ଶାସ୍ତ୍ର-ସମୂହରେ ଏବଂ ବେଦରେ ଉକ୍ତ ହୋଇଅଛି ଯେ ମର୍ତ୍ତ୍ୟବାସୀ ଲୋକ ଘୋରତର ଯମସଦନକୁ ଗମନ କରନ୍ତି । ୪୨ । ହେ ଭୂପତେ ! ଏହି ପୃଥିବୀରେ ଦେବଲୋକସଦୃଶ ପବିତ୍ର ସ୍ଥାନସମୂହ ଅଛନ୍ତି । ସେଠାକୁ ତିର୍ଯ୍ୟକ୍‌ଯୋନିଗତ ଜୀବସମୂହ ଗମନ କରିପାରନ୍ତି ନାହିଁ; ତଦ୍ଭିନ୍ନ ସମସ୍ତ ଜୀବମାନଙ୍କର ଗତି ହୁଏ । ୪୩ । ଜୀବ ବ୍ରହ୍ମଲୋକସଦୃଶ ଯମଦେବଙ୍କ ଦିବ୍ୟ ସଦନରେ ସର୍ବଦା କର୍ମ-ଗୁଣଦ୍ୱାରା ବଦ୍ଧ ହୋଇ ବିବିଧ ଦୁଃଖ ଭୋଗ କରନ୍ତି । ୪୪ । ପୁରୁଷ ଯେଉଁ ଯେଉଁ ଭାବ, ଯେଉଁ ଯେଉଁ କର୍ମଦ୍ୱାରା ଘୋରତର କଠିନ ଗତିକ ପ୍ରାପ୍ତ ହୁଅନ୍ତି, ତାହା ଆମ୍ଭେ ଅତଃପର ତୁମ୍ଭଙ୍କୁ କହିବୁଁ । ୪୫ ।

ବ୍ରାହ୍ମଣ ଚତୁର୍ବେଦ ଅଧ୍ୟୟନ ପୂର୍ବକ ମୋହଗ୍ରସ୍ତ ହୋଇ ଯଦି ପତିତ ବ୍ୟକ୍ତିଠାରୁ ପ୍ରତିଗ୍ରହ କରନ୍ତି, ତେବେ ଖରଯୋନିରେ ଜାତ ହୁଅନ୍ତି ।୪୬। ହେ ଭାରତ ! ସେ ଖର ହୋଇ ପଞ୍ଚଦଶ ବର୍ଷ ଜୀବିତ ହୁଅନ୍ତି । ଖର ମୃତ ହୋଇ ବଳୀବର୍ଦ୍ଦ ହୁଏ । ବଳୀବର୍ଦ୍ଦ ରୂପେ ସପ୍ତବର୍ଷ ଜୀବିତ ହୋଇ ରହେ ।୪୭। ବଳୀବର୍ଦ୍ଦ ମୃତ ହୋଇ ବ୍ରହ୍ମରାକ୍ଷସରୂପେ ଜନ୍ମ ପରିଗ୍ରହ କରେ । ବ୍ରହ୍ମରାକ୍ଷସ ରୂପେ ମାସତ୍ରୟ ଜୀବିତ ରହି ତତ୍ପରେ ବ୍ରାହ୍ମଣ ହୁଏ ।୪୮। ବ୍ରାହ୍ମଣ ପତିତ ବ୍ୟକ୍ତିର ଯାଜନ କଲେ କୃମିଯୋନିରେ ଜନ୍ମ ପରିଗ୍ରହ କରନ୍ତି । ହେ ଭାରତ ! ସେ କୃମିଯୋନିରେ ପଞ୍ଚଦଶବର୍ଷ ଜୀବିତ ହୋଇ ରହନ୍ତି ।୪୯। କୃମିଯୋନିରୁ ବିମୁକ୍ତ ହୋଇ ଗର୍ଦ୍ଦଭ ରୂପେ ଜନ୍ମଗ୍ରହଣ କରନ୍ତି । ସେ ଗର୍ଦ୍ଦଭ ହୋଇ ପଞ୍ଚବର୍ଷ ଜୀବିତ ହେଲା ଉତ୍ତାରେ ଶୂକରଜନ୍ମକୁ ପ୍ରାପ୍ତ ହୁଅନ୍ତି । ଶୂକରରୂପେ ପଞ୍ଚବର୍ଷ ଜୀବିତ ରହି କୁକ୍କୁଟ ଯୋନିରେ ଜନ୍ମଗ୍ରହଣ କରନ୍ତି । କୁକ୍କୁଟଯୋନିରେ ପଞ୍ଚବର୍ଷ ଜୀବିତ ହୋଇ ତତ୍ପରେ ଜମ୍ବୁକଯୋନିରେ ଜନ୍ମ ପରିଗ୍ରହ କରନ୍ତି । ଜମ୍ବୁକଯୋନିରେ ପଞ୍ଚବର୍ଷ ଜୀବିତ ରହି ତତ୍ପରେ କୁକୁର ଜନ୍ମ ପ୍ରାପ୍ତ ହୁଅନ୍ତି । ଏକବର୍ଷ ଉତ୍ତାରେ କୁକୁର ଜନ୍ମରୁ ମୁକ୍ତ ହୋଇ ମାନବ ହୁଅନ୍ତି ।୫୧।

ଯେଉଁ ନିର୍ବୁଦ୍ଧି ଶିଷ୍ୟ ଉପାଧ୍ୟାୟଙ୍କ ନିକଟରେ ପାପ କରନ୍ତି, ସେହି ଜୀବ ଇହଲୋକରେ ବାରତ୍ରୟ ତିର୍ଯ୍ୟକ୍ ଯୋନିରେ ଜନ୍ମ ପରିଗ୍ରହ କରନ୍ତି । ଏହି ବିଷୟରେ ସଂଶୟ ନାହିଁ ।୫୨। ହେ ରାଜେନ୍ଦ୍ର ! ସେ ପ୍ରଥମତଃ କୁକୁର ହୁଅନ୍ତି । ତତ୍ପରେ ମାଂସଭୋଜୀ ହିଂସ୍ର ଜନ୍ତୁ ହୋଇ ଜନ୍ମଗ୍ରହଣ କରନ୍ତି, ତତ୍ପରେ ଗର୍ଦ୍ଦଭ ହୋଇ ଜନ୍ମନ୍ତି । ଅବଶେଷରେ ପ୍ରେତରୂପରେ ନାନାପ୍ରକାର କ୍ଲେଶ ପ୍ରାପ୍ତ ହୋଇ ପଶ୍ଚାତ୍ ବ୍ରାହ୍ମଣ ରୂପରେ ଜନ୍ମଗ୍ରହଣ କରନ୍ତି ।୫୩।

ଯେଉଁ ପାପାତ୍ମା ଶିଷ୍ୟ ମନେ ମନେ ଗୁରୁପତ୍ନୀଙ୍କ ନିକଟକୁ ଗମନ କରନ୍ତି, ସେ ଅଧର୍ମ ତତ୍ତ୍ୱାରା ପରଲୋକକୁ ଗମନ କରି ଇହଲୋକରେ ଉଗ୍ରତର ଜନ୍ମ ଲାଭ କରନ୍ତି ।୫୪। ସେ ପ୍ରଥମତଃ କୁକୁରଯୋନିରେ ଜନ୍ମ ପରିଗ୍ରହ କରି ତିନବର୍ଷ ଜୀବିତ ହୋଇ ରହନ୍ତି, କୁକୁର ଯୋନିରେ ନିଧନ ଲାଭ କରି କୃମିଯୋନିରେ ଜାତ ହୁଅନ୍ତି ।୫୫। କୃମିଭାବ ପ୍ରାପ୍ତ ହୋଇ ଏକବର୍ଷ କାଳ ଜୀବିତ ହୋଇ ରହନ୍ତି । ପରିଶେଷରେ ନିଧନପ୍ରାପ୍ତ ହୋଇ ବ୍ରାହ୍ମଣ ଯୋନିରେ ଜନ୍ମଗ୍ରହଣ

କରନ୍ତି । ୫୬ । ଗୁରୁ ଯଦି ଆପଣା ଇଚ୍ଛାନୁସାରେ ପୁତ୍ରସମ ଶିଷ୍ୟଙ୍କୁ ଅକାରଣରେ ଆଘାତ କରନ୍ତି, ତେବେ ସେ ହିଂସ୍ରଜନ୍ତୁ ହୋଇ ଜାତ ହୁଅନ୍ତି । ୫୭ ।

ହେ ରାଜନ୍ ! ଯେଉଁ ପୁତ୍ର ପିତାମାତାଙ୍କୁ ଅବମାନନା କରନ୍ତି, ସେ ମୃତ ହୋଇ ପ୍ରଥମରେ ଗର୍ଦ୍ଦଭଯୋନିରେ ଜନ୍ମଗ୍ରହଣ କରନ୍ତି । ୫୮ । ସେ ଗର୍ଦ୍ଦଭତ୍ୱ ପ୍ରାପ୍ତ ହୋଇ ଦଶବର୍ଷ ଜୀବିତ ରହନ୍ତି, ଦଶବର୍ଷ ପରେ ଗର୍ଦ୍ଦଭ ଜନ୍ମରୁ ମୁକ୍ତ ହୋଇ ଏକବର୍ଷ କାଳ କୁମ୍ଭୀର ଶରୀର ପ୍ରାପ୍ତ ହୋଇ ପରିଶେଷରେ ମାନବ ଜନ୍ମ ପରିଗ୍ରହ କରନ୍ତି ।୫୯। ପିତାମାତା ଦୁହେଁ ଯେଉଁ ପୁତ୍ରଠାରେ ରୁଷ୍ଟ ହୁଅନ୍ତି, ସେହି ପୁତ୍ର ଗୁରୁଜନଙ୍କ ଅସନ୍ତୋଷବଶରୁ ମୃତ ହୋଇ ଗର୍ଦ୍ଦଭଯୋନିରେ ଜନ୍ମଗ୍ରହଣ କରନ୍ତି ।୬୦। ଗର୍ଦ୍ଦଭ ହୋଇ ଦଶମାସ ଜୀବିତ ହୁଅନ୍ତି ; ପରେ କୁକୁର ହୋଇ ଚତୁର୍ଦ୍ଦଶ ମାସ ଜୀବନଧାରଣ କରନ୍ତି ; ତତ୍ପରେ ବିଡ଼ାଲ ଯୋନିରେ ଜନ୍ମଗ୍ରହଣ କରି ସପ୍ତମାସ ପର୍ଯ୍ୟନ୍ତ ଜୀବିତ ହୁଅନ୍ତି । ବିଡ଼ାଲ ଜନ୍ମରୁ ମୁକ୍ତ ହୋଇ ଅବଶେଷରେ ମାନବ ଜନ୍ମ ପ୍ରାପ୍ତ ହୁଅନ୍ତି । ୬୧ ।

ଯେ ପିତାମାତାଙ୍କଠାରେ ଆକ୍ରୋଶ ପ୍ରକାଶ କରନ୍ତି ସେ ସାରିକା ପକ୍ଷୀରୂପେ ଜନ୍ମଗ୍ରହଣ କରନ୍ତି । ହେ ରାଜନ୍ ! ପିତାମାତାଙ୍କୁ ତାଡ଼ନା କଲେ କଚ୍ଛପ ହୁଅନ୍ତି । ୬୨ । କଚ୍ଛପ ହେବାର ଦଶବର୍ଷ ଉତ୍ତାରେ ନିଧନ-ପ୍ରାପ୍ତ ହୋଇ ଶଲ୍ଲକପକ୍ଷୀରୂପେ ତିନବର୍ଷ ଜୀବିତ ହୁଅନ୍ତି ; ତତ୍ପରେ ଶଲ୍ଲକ ଜନ୍ମରୁ ମୁକ୍ତ ହୋଇ ଛମାସ ସର୍ପ ଦେହରେ ଜୀବିତ ହୁଅନ୍ତି । ତଦନନ୍ତର ମରଣ ଉତ୍ତାରେ ମନୁଷ୍ୟ ହୁଅନ୍ତି । ୬୩ । ଯେ ପ୍ରଭୁଙ୍କ ଅନ୍ନ ଭୋଜନ କରି ରାଜଵିଦ୍ୱିଷ୍ଟ ବିଷୟ ସବୁ ସେବା କରନ୍ତି, ସେହି ମୋହଗ୍ରସ୍ତ ନର ମୃତ ହୋଇ ବାନରଯୋନିରେ ଜନ୍ମଗ୍ରହଣ କରନ୍ତି । ୬୪ । ବାନର ହୋଇ ଦଶବର୍ଷରେ ନିଧନ ଲାଭକରି ମୂଷିକ ହୁଅନ୍ତି, ମୂଷିକ ଦେହରେ ପାଞ୍ଚବର୍ଷ ଜୀବିତ ହୋଇ, ଶେଷରେ କୁକୁରଯୋନିରେ ଜନ୍ମନ୍ତି । କୁକୁରଯୋନିରେ ଜନ୍ମଲାଭ କରିବାର ଛ ମାସ ଉତ୍ତାରେ ମରଣାନନ୍ତର ମନୁଷ୍ୟ ଜନ୍ମ ଲାଭ କରନ୍ତି । ୬୫ । ନ୍ୟସ୍ତ ଧନ ଅପହରଣକାରୀ ଜନ ଯମରାଜ୍ୟକୁ ଯାଇ ଶତ ଶତ ଯୋନିରେ ଭ୍ରମଣ କରି ପରିଶେଷରେ କୃମିଯୋନିରେ ଜାତ ହୁଅନ୍ତି ।

ହେ ଭାରତ ! ସେହି କୃମିଯୋନିରେ ପଞ୍ଚଦଶ ବର୍ଷ ଜୀବନଧାରଣ କରନ୍ତି । ତତ୍ପରେ ଦୁଷ୍କୃତ କର୍ମ କ୍ଷୟ କରି ମନୁଷ୍ୟ ଜନ୍ମ ପ୍ରାପ୍ତ ହୁଅନ୍ତି ।୬୬।

ଅସୂୟାଯୁକ୍ତ ନର ମୃତ ହୋଇ ମୃଗଯୋନିରେ ଜନ୍ମପରିଗ୍ରହ କରନ୍ତି । ବିଶ୍ୱାସଘାତକ ଦୁର୍ବୁଦ୍ଧି ଲୋକ ମୀନରୂପ ଧାରଣ କରନ୍ତି । ୬୮ । ସେ ମୀନଯୋନିରେ ଜନ୍ମଗ୍ରହଣ କଲାରୁ ଅଷ୍ଟବର୍ଷ କାଳ ପ୍ରାଣ ଧାରଣ କରନ୍ତି; ତତ୍ପରେ ନିଧନପ୍ରାପ୍ତ ହୋଇ ମୃଗଯୋନିରେ ଜନ୍ମଗ୍ରହଣ କରନ୍ତି । ମୃଗ ହୋଇ ଚାରିମାସ କାଳ ଯାପନ କଲା ଉତ୍ତାରେ ଦେହାନ୍ତରେ ଛାଗଯୋନିରେ ଜାତ ହୁଅନ୍ତି । ୬୯ । ଏକବର୍ଷ ପୂର୍ଣ୍ଣ ହେଲାରୁ ଛାଗ ମୃତ ହୋଇ କୀଟ-ଯୋନିରେ ଜାତ ହୁଅନ୍ତି । କୀଟଯୋନିରୁ ମୁକ୍ତ ହୋଇ ଜୀବ ମନୁଷ୍ୟଯୋନିରେ ଜନ୍ମଗ୍ରହଣ କରନ୍ତି । ୭୦ ।

ହେ ମହାରାଜ ! ଯେଉଁ ବ୍ୟକ୍ତି ଅଜ୍ଞାନବଶରୁ ଅଚେତନ ହୋଇ, ଧାନ୍ୟ, ଯବ, ତିଳ, ମାଷ, କୁଳଥି, ସର୍ଷପ, ଚଣକ, କଳାୟ, ବ୍ରୀହି, ଗୋଧୂମ, ଅତସୀ ଅର୍ଥାତ୍ ଫେଶୀ ଓ ଅନ୍ୟାନ୍ୟ ଶସ୍ୟ ସବୁ ହରଣ କରନ୍ତି, ସେହି ନିର୍ଲ୍ଲଜ ମନୁଷ୍ୟ ମୂଷିକଯୋନିରେ ଜନ୍ମଗ୍ରହଣ କରନ୍ତି । ୭୨ । ହେ ମହାରାଜ ! ତଦନନ୍ତର ସେ ମୃତ ହୋଇ ଶୂକରଯୋନିରେ ଜନ୍ମନ୍ତି, ଶୂକର ହୋଇ ଜନ୍ମିଲା ମାତ୍ରେ ରୋଗବଶତଃ ପ୍ରାଣ ପରିତ୍ୟାଗ କରନ୍ତି । ୭୩ । ତଦନନ୍ତର ସେହି ମୂଢ଼ ତାଦୃଶ କର୍ମବଶତଃ କୁକୁରଯୋନିରେ ଜାତ ହୁଅନ୍ତି, କୁକୁରତନୁ ଧାରଣ କରିବାର ପଞ୍ଚବର୍ଷ ଉତ୍ତାରେ ନରଜନ୍ମ ପ୍ରାପ୍ତ ହୁଅନ୍ତି । ୭୪ । ମନୁଷ୍ୟ ପରଦାର ହରଣ କଲେ ବୃକଯୋନିରେ ଜନ୍ମନ୍ତି । କ୍ରମେ କ୍ରମେ ସେ କୁକୁର, ଶୃଗାଳ, ଗୃଧ୍ର, ସର୍ପ, କଙ୍କ ଓ ବକ ଜନ୍ମ ଲାଭ କରନ୍ତି । ୭୫ ।

ହେ ରାଜନ୍ ! ଯେଉଁ ପାପାତ୍ମା ମୋହିତ ହୋଇ ଭ୍ରାତୃଭାର୍ଯ୍ୟା ହରଣ କରନ୍ତି, ସେ ଏକ ବର୍ଷ ପୁଂସ୍କୋକିଳତ୍ୱ ପ୍ରାପ୍ତ ହୁଅନ୍ତି । ୭୬ । ଯେଉଁ ବ୍ୟକ୍ତି ପ୍ରିୟଜନଭାର୍ଯ୍ୟା, ଗୁରୁଭାର୍ଯ୍ୟା ଓ ରାଜଭାର୍ଯ୍ୟାଙ୍କୁ କାମବଶତଃ ହରଣ କରନ୍ତି, ସେ ମୃତ ହୋଇ ଶୂକରଯୋନିରେ ଜନ୍ମନ୍ତି । ୭୭ । ସେ ଶୂକର-ତନୁ ଧାରଣ କରି ପଞ୍ଚବର୍ଷ ଉତ୍ତାରେ ପଞ୍ଚତ୍ୱ ପ୍ରାପ୍ତ ହୁଅନ୍ତି, ତତ୍ପରେ ବୃକ-ଯୋନିରେ ଜନ୍ମଗ୍ରହଣ କରି ଦଶବର୍ଷ ଜୀବିତ ହୁଅନ୍ତି । ତତ୍ପରେ ମରଣ ଉତ୍ତାରେ ବିଡ଼ାଲଯୋନିରେ ଜନ୍ମଗ୍ରହଣ କରନ୍ତି, ବିଡ଼ାଲ ଦେହରେ ପଞ୍ଚବର୍ଷ ଜୀବିତ ରହି, କାଳଗ୍ରାସରେ ପତିତ ହୁଅନ୍ତି । ତତ୍ପରେ ଦଶବର୍ଷ କୁକ୍କୁଟ ହୋଇ ଜନ୍ମଗ୍ରହଣ କରନ୍ତି । ୭୮ । କୁକ୍କୁଟ ଦେହ ପରିତ୍ୟାଗ କରି ପିପୀଲିକା ରୂପେ ଜନ୍ମଗ୍ରହଣ କରନ୍ତି । ପିପୀଲିକା ଦେହରେ ତିନିମାସ ଜୀବିତ ହୋଇ କାଳଗ୍ରାସରେ ପତିତ ହୁଅନ୍ତି । ପିପୀଲିକା ଜନ୍ମ ଉତ୍ତାରେ

ଏକମାସ କୀଟରୂପ ଧାରଣ କରନ୍ତି । ଏହି ସମସ୍ତ ଜନ୍ମଲାଭ କରି ପରିଶେଷରେ କୃମିଯୋନିରେ ଚତୁର୍ଦ୍ଦଶ ମାସ ପ୍ରାଣ ଧାରଣ କରନ୍ତି । ତତ୍ପରେ ଅଧର୍ମ କ୍ଷୟ କରି ପୁନଶ୍ଚ ନରଦେହ ଧାରଣ କରନ୍ତି ।୮୦।

ହେ ରାଜନ୍ ! ବିବାହ, ଯଜ୍ଞ ଅଥବା ଦାନ କର୍ମ ଉପସ୍ଥିତ ହେଲେ ଯେଉଁ ବ୍ୟକ୍ତି ମୋହବଶତଃ ବିଘ୍ନ କରନ୍ତି, ସେ ମୃତ ହୋଇ କୃମିଯୋନିରେ ଜନ୍ମଗ୍ରହଣ କରନ୍ତି । ୮୧ । ହେ ଭାରତ ! ସେହି କୃମି ଦେହରେ ପଞ୍ଚଦଶ ବର୍ଷ ଜୀବିତ ହୋଇ ରହି ତତ୍ପରେ ମୃତ ହୁଅନ୍ତି । ତଦନନ୍ତର ଅଧର୍ମ କ୍ଷୟ କରି ନର ଜନ୍ମଗ୍ରହଣ କରନ୍ତି । ୮୨ । ହେ ରାଜନ୍ ! ପ୍ରଥମତଃ ଏକ ବ୍ୟକ୍ତି କନ୍ୟା ଦାନ କରି, ଯେ ଦ୍ୱିତୀୟ ବ୍ୟକ୍ତିଙ୍କୁ ଦେବା ନିମିତ୍ତ ଇଚ୍ଛୁକ ହୁଅନ୍ତି, ସେହି ବ୍ୟକ୍ତି ମୃତ ହୋଇ କୃମିଯୋନିରେ ଜନ୍ମଗ୍ରହଣ କରନ୍ତି । ୮୩ । ହେ ଯୁଧିଷ୍ଠିର ! ସେ ସେହି କୃମିଜନ୍ମରେ ତ୍ରୟୋଦଶ ବର୍ଷ ଜୀବିତ ହୋଇ ରହନ୍ତି । ତତ୍ପରେ ଅଧର୍ମ କ୍ଷୟ ହେଲେ ଦେହାନ୍ତରରେ ପୁନଶ୍ଚ ମନୁଷ୍ୟ ଜନ୍ମଗ୍ରହଣ କରନ୍ତି । ୮୪ । ଯେଉଁ ବ୍ୟକ୍ତି ଦେବକାର୍ଯ୍ୟ ଅଥବା ପିତୃକାର୍ଯ୍ୟ ନିର୍ବାହ ନ କରି ଭୋଜନ କରନ୍ତି, ସେ ମୃତ ହୋଇ ବାୟସଯୋନିରେ ଜନ୍ମନ୍ତି । ୮୫ । ବାୟସଯୋନିରେ ଶତବର୍ଷ ଜୀବନଧାରଣ ପୂର୍ବକ ମରଣ ଉତ୍ତାରେ କୁକ୍କୁଟ ଜନ୍ମ ଲାଭ କରନ୍ତି, କୁକ୍କୁଟ ଜନ୍ମ ପରିତ୍ୟାଗ ପୂର୍ବକ ଏକମାସ ସର୍ପ ହୁଅନ୍ତି; ତତ୍ପରେ ନରଦେହ ଧାରଣ କରନ୍ତି । ୮୬ ।

ଯେଉଁ ବ୍ୟକ୍ତି ପିତୃତୁଲ୍ୟ ଜ୍ୟେଷ୍ଠ ଭ୍ରାତାଙ୍କୁ ଅବମାନନା କରନ୍ତି, ସେ ନିଧନ ଲାଭ କରି କ୍ରୌଞ୍ଚଯୋନିରେ ଉତ୍ପନ୍ନ ହୁଅନ୍ତି । ୮୭ । କ୍ରୌଞ୍ଚ ହୋଇ ଏକ ବର୍ଷ ଚରକ ଜୀବନ ଧାରଣ କରନ୍ତି, ତତ୍ପରେ ନିଧନ ଉତ୍ତାରେ ମନୁଷ୍ୟତ୍ୱ ପ୍ରାପ୍ତ ହୁଅନ୍ତି । ୮୮ । ଶୂଦ୍ର, ବ୍ରାହ୍ମଣୀ ହରଣ କଲେ କୃମି-ଯୋନିରେ ଜାତ ହୁଅନ୍ତି, ତତ୍ପରେ ନିଧନ ଲାଭ କରି ପୁନଶ୍ଚ ଶୂକର ହୁଅନ୍ତି । ୮୯ । ହେ ରାଜନ୍ ! ସେ ଶୂକର ଜନ୍ମଗ୍ରହଣ କଲମାତ୍ରେ ରୋଗଦ୍ୱାରା ମୃତ ହୁଅନ୍ତି । ହେ ପାର୍ଥିବ ! ସେହି ମୂଢ଼ କୃତକର୍ମ ବଶତଃ କୁକୁର-ଯୋନିରେ ଜନ୍ମଗ୍ରହଣ କରନ୍ତି । ୯୦ । କୁକୁର ଦେହରେ କର୍ମଫଳ ଭୋଗ କରି ପରିଶେଷରେ ମନୁଷ୍ୟତ୍ୱ ପ୍ରାପ୍ତ ହୁଅନ୍ତି । ମନୁଷ୍ୟ ଜନ୍ମରେ ଅପତ୍ୟ ଉତ୍ପାଦନପୂର୍ବକ ମୃତ ହୋଇ ମୂଷିକଯୋନିରେ ଜନ୍ମଗ୍ରହଣ କରନ୍ତି । ୯୧ । ହେ ରାଜନ୍ ! କୃତଘ୍ନ ନର ମରଣ ଉତ୍ତାରେ ଯମାଳୟକୁ ଗମନ କରି, କ୍ରୋଧଯୁକ୍ତ ଯମଦୂତଗଣଙ୍କଦ୍ୱାରା ଦାରୁଣ ପୀଡ଼ା ପ୍ରାପ୍ତ ହୁଅନ୍ତି । ୯୨ । ହେ

ଭରତ ! ଯମଲୋକରେ ଦୂତମାନେ କୋଧାବିଷ୍ଟ ହୋଇ ଦଣ୍ଡ, ମୁଦ୍‌ଗର, ଶୂଳ, ଅଗ୍ନିକୁଣ୍ଡ, ଖଡ୍‌ଗ, ଉତ୍ତପ୍ତ ବାଲୁକା ଓ କଣ୍ଟକଯୁକ୍ତ ଶାଲ୍ମଳୀ ପ୍ରଭୃତି ଏବଂ ଅନ୍ୟାନ୍ୟ ବିବିଧ କ୍ଲେଶକର ଉଗ୍ର ବସ୍ତୁଦ୍ୱାରା ତାହାଙ୍କୁ ଘୋରତର ଯନ୍ତ୍ରଣା ପ୍ରଦାନପୂର୍ବକ ନିପାଡିତ କରନ୍ତି । ୯୪ ।

ହେ ଭରତଶ୍ରେଷ୍ଠ ! ତତ୍ପରେ ସେହି କୃତଘ୍ନ ସେଠାରେ ଉଗ୍ରଦଣ୍ଡ ଦ୍ୱାରା ହତ ହୋଇ ସଂସାରଚକ୍ର ଅବଲମ୍ବନପୂର୍ବକ କୃମିଯୋନିରେ ଜନ୍ମଗ୍ରହଣ କରନ୍ତି । ୯୫ । ହେ ଭରତ ! ସେ ପଞ୍ଚଦଶ ବର୍ଷ କୃମି ହୋଇ ରହନ୍ତି ; ତଦନନ୍ତର ଗର୍ଭକୁ ଗମନ କରି ସେହି ଗର୍ଭସ୍ଥ ଶିଶୁ ଅବସ୍ଥାରେ ମୃତ ହୁଅନ୍ତି । ୯୬ । ପରେ ବହୁଶତ ଗର୍ଭରେ ଜନ୍ମଗ୍ରହଣ କରନ୍ତି ; ବହୁ ଜନ୍ମ ଉତ୍ତାରେ ତିର୍ଯ୍ୟକ୍‌ଯୋନିରେ ଉତ୍ପନ୍ନ ହୁଅନ୍ତି । ୯୭ । ପରିଶେଷରେ ଇହଲୋକରେ ଦୁଃଖ ଅନୁଭବ କରି ପୁନର୍ଜନ୍ମ ରହିତ ହୋଇ କୃମିଯୋନିରେ ଜନ୍ମଗ୍ରହଣ କରନ୍ତି । ୯୮ । ଦୁର୍ମତି ନର ଦଧି ହରଣ କଲେ ବକ ହୁଅନ୍ତି ଏବଂ ଅସଂସ୍କୃତ ମତ୍ସ୍ୟ ହରଣ କଲେ ପ୍ଲବ ଅର୍ଥାତ୍ ବାନର ଅଥବା କାରଣ୍ଡକ ପକ୍ଷୀ ହୋଇ ଜନ୍ମଗ୍ରହଣ କରନ୍ତି, ଯେଉଁ ଦୁର୍ବୁଦ୍ଧି ମଧୁ ଅପହରଣ କରନ୍ତି, ସେ ଦଂଶ ରୂପରେ ଜନ୍ମଗ୍ରହଣ କରନ୍ତି । ୯୯ । ଫଳମୂଳ ଅଥବା ଅପୂପ ଅର୍ଥାତ୍ ଉତ୍କୃଷ୍ଟ ପିଷ୍ଟକ ହରଣ କଲେ ମନୁଷ୍ୟ ପିପୀଲିକା ହୁଅନ୍ତି । ରାଜମାଷ ହରଣ କଲେ ହଲଗୋଲକ ଅର୍ଥାତ୍ ଦୀର୍ଘ ପୁଚ୍ଛବିଶିଷ୍ଟ ଗୋଲାକାର କୀଟଯୋନିରେ ଜନ୍ମଗ୍ରହଣ କରନ୍ତି । ୧୦୦ । ପାୟସ ହରଣ କଲେ ତିତ୍ତିରିପକ୍ଷୀ ହୁଅନ୍ତି, ପିଷ୍ଟମୟ ପୂପ ହରଣ କଲେ କୁମ୍ଭୋଲୂକ ଅର୍ଥାତ୍ ପେଚକଭେଦ ପକ୍ଷୀଯୋନିରେ ଜନ୍ମଗ୍ରହଣ କରନ୍ତି । ୧୦୧ ।

ଦୁର୍ବୁଦ୍ଧି ବ୍ୟକ୍ତି ଲୌହ ହରଣ କରି ବାୟସଯୋନିରେ ଜାତ ହୁଅନ୍ତି ଓ କାଂସ୍ୟ ହରଣ କଲେ ହାରିତ ପକ୍ଷୀ ହୁଅନ୍ତି ।୧୦୨। ରଜତପାତ୍ର ହରଣ କଲେ କପୋତକୁଳରେ ଉତ୍ପନ୍ନ ହୁଅନ୍ତି, ସୁବର୍ଣ୍ଣପାତ୍ର ହରଣ କଲେ କୃମିଯୋନିରେ ଜନ୍ମନ୍ତି ।୧୦୩। ଧୌତ କୌଶେୟ ବସ୍ତ୍ର ଅପହରଣ କଲେ କୃକର ଅର୍ଥାତ୍ କୃକଳ ପକ୍ଷୀ ହୁଅନ୍ତି । କୃମିକୋଷସମ୍ଭୂତ ବସ୍ତ୍ର ଅପହରଣ କଲେ ନର ବର୍ତ୍ତିକ ପକ୍ଷୀ ହୁଅନ୍ତି । ୧୦୪ । ସାଧାରଣ ଛିନ୍ନ-ବସ୍ତ୍ର ହରଣ କଲେ ମନୁଷ୍ୟ ଶୁକପକ୍ଷୀ ହୋଇ ଜନ୍ମଗ୍ରହଣ କରନ୍ତି । ଶୁକ୍ଳ ପଟ୍ଟବସ୍ତ୍ର ହରଣ କଲେ ମନୁଷ୍ୟ ମରଣ ଉତ୍ତାରେ ହଂସଯୋନିରେ ଜାତ ହୁଅନ୍ତି । ୧୦୫ । ମାନବ କାର୍ପାସ ବସ୍ତ୍ର ହରଣ କଲେ ମରଣ ଉତ୍ତାରେ

କ୍ରୌଞ୍ଚଯୋନିରେ ଜନ୍ମଗ୍ରହଣ କରନ୍ତି । ୧୦୭ । କ୍ଷୌମ ଓ ମେଷ ଲୋମଜ ବସ୍ତ୍ର ଅପହରଣ କଲେ ମନୁଷ୍ୟ ଶଶକଯୋନିରେ ଜନ୍ମନ୍ତି, ବର୍ଣ୍ଣକ ଅର୍ଥାତ୍ ହରିତାଳ ପ୍ରଭୃତି ଅପହରଣ କଲେ ମୟୂର ଓ ରକ୍ତବସ୍ତ୍ର ଅପହରଣ କଲେ ଚକୋରଯୋନିରେ ଜାତ ହୁଅନ୍ତି ।

ହେ ରାଜନ୍ ! ଯେ ଲୋଭପରାୟଣ ହୋଇ ଇହଲୋକରେ ବର୍ଣ୍ଣକ (ରଙ୍ଗ) ପ୍ରଭୃତି ଗନ୍ଧ ଦ୍ରବ୍ୟ ଅପହରଣ କରନ୍ତି, ସେ ଛୁଞ୍ଚୁନ୍ଦରତ୍ୱ ପ୍ରାପ୍ତ ହୁଅନ୍ତି । ସେହି ଅବସ୍ଥାରେ ପଞ୍ଚଦଶ ବର୍ଷ ଜୀବିତ ହୋଇ ରହନ୍ତି, ତତ୍ପରେ ଅଧର୍ମ କ୍ଷୟ କରି ମନୁଷ୍ୟ ଜନ୍ମ ପ୍ରାପ୍ତ ହୁଅନ୍ତି । ମନୁଷ୍ୟ ଦୁଗ୍ଧ ଅପହରଣ କଲେ ମରଣ ଉତ୍ତାରେ ବଲାକା ଅର୍ଥାତ୍ ବକଯୋନିରେ ଜନ୍ମନ୍ତି । ହେ ରାଜନ୍ ! ଯେଉଁ ଜନ ମୋହଗ୍ରସ୍ତ ହୋଇ ତୈଳ ଅପହରଣ କରନ୍ତି, ସେ ମୃତ ହୋଇ ତୈଳପାୟୀ ଯୋନିରେ ଉତ୍ପନ୍ନ ହୁଅନ୍ତି । ୧୧୧ । ଯେଉଁ ଶସ୍ତ୍ରଧାରୀ ପୁରୁଷାଧମ ଧନାର୍ଥୀ ବା ଶତ୍ରୁ ହୋଇ ଶସ୍ତ୍ରହୀନ ନରଙ୍କୁ ନିହତ କରନ୍ତି, ସେ ମରଣ ଉତ୍ତରେ ଖରଯୋନିରେ ଜନ୍ମଗ୍ରହଣ କରନ୍ତି । ଖର ହୋଇ ଦୁଇବର୍ଷ ଜୀବିତ ହୁଅନ୍ତି, ତତ୍ପରେ ସେ ଶସ୍ତ୍ରଦ୍ୱାରା ହତ ହୁଅନ୍ତି । ଖରଜନ୍ମ ଉତ୍ତାରେ ସେ ମୃଗଯୋନିରେ ଜନ୍ମଗ୍ରହଣ କରନ୍ତି । ସେହି ମୃଗ ସର୍ବଦା ପ୍ରାଣଭୟରେ ଶଙ୍କିତ ହେଉଥାଏ, ଏକବର୍ଷ ଅତୀତ ହେଲାରୁ ସେହି ମୃଗ ଶସ୍ତ୍ରଦ୍ୱାରା ହତ ହୁଏ, ସେ ମୃଗ ଦେହ ପରିତ୍ୟାଗପୂର୍ବକ ମୀନଯୋନିରେ ଜାତ ହୁଏ । ଚତୁର୍ଥ ମାସରେ ସେହି ମୀନ ଜାଲଦ୍ୱାରା ବଦ୍ଧ ଓ ହତ ହୁଏ । ୧୧୪ । ତତ୍ପରେ ସେ ଶ୍ୱାପଦ ଯୋନିରେ ଜନ୍ମେ, ଶ୍ୱାପଦ ହୋଇ ଦଶବର୍ଷ ଜୀବିତ ହୁଏ, ତତ୍ପରେ ମରଣ ଉତ୍ତାରେ ପାଞ୍ଚବର୍ଷ ଦ୍ୱୀପୀ ହୋଇ ଜୀବିତ ରହେ । ୧୧୫ । ତତ୍ପରେ ନିଧନ ଲାଭ କରି କାଳକ୍ରମରେ ଅଧର୍ମ-କ୍ଷୟପୂର୍ବକ ମନୁଷ୍ୟ ଜନ୍ମଗ୍ରହଣ କରେ । ୧୧୬ ।

ମହାରାଜ ! ଦୁର୍ବୁଦ୍ଧି ଜନ ପରସ୍ତ୍ରୀହରଣ ପୂର୍ବକ ଯମାଳୟକୁ ଯାଇ ବହୁବିଧ କ୍ଲେଶ ଭୋଗ କରି ଏକବିଂଶତି ଯୋନିରେ ପରିଭ୍ରମଣ କରନ୍ତି । ୧୧୭ । ପଶ୍ଚାତ୍ କୃମିଯୋନିରେ ଜାତ ହୁଅନ୍ତି । ସେ ବିଂଶତି ବର୍ଷ କୃମି ଦେହ ଧାରଣ ପୂର୍ବକ ନରକ ଭୋଗ କଲାପରେ ପଶ୍ଚାତ୍ ନରଜନ୍ମ ପ୍ରାପ୍ତ ହୁଅନ୍ତି । ୧୧୮ । ମନୁଷ୍ୟ ଭୋଜନଦ୍ରବ୍ୟ ଅପହରଣ କଲେ ମକ୍ଷିକା ହୋଇ ଜନ୍ମନ୍ତି ଏବଂ ବହୁମାସ ମକ୍ଷିକାସମୂହର ବଶବର୍ତ୍ତୀ ହୋଇ ରହନ୍ତି । ତତ୍ପରେ ପାପକ୍ଷୟ ହେଲାରୁ ମନୁଷ୍ୟତ୍ୱ ପ୍ରାପ୍ତ ହୁଅନ୍ତି । ମନୁଷ୍ୟ ଧାନ୍ୟ ଅପହରଣ କଲେ ପରଜନ୍ମରେ ଲୋମଯୁକ୍ତ ହୋଇ

ଜନ୍ମଗ୍ରହଣ କରନ୍ତି । ୧୨୦ । ଯେ ତିଳକଲ୍କ ମିଶ୍ରିତ ଭୋଜନ ଦ୍ରବ୍ୟ ଅପହରଣ କରେ, ସେ ସେହି ଅପହୃତ ଦ୍ରବ୍ୟ ପରିମିତାକାର ମଶକ ହୋଇ ଜନ୍ମଗ୍ରହଣ ପୂର୍ବକ ପ୍ରତିଦିନ ନରଗଣଙ୍କୁ ଦଂଶନ କରେ । ତଦ୍ଦ୍ୱାରା ଜୀବିତ ରହେ । ଦୁର୍ବୁଦ୍ଧି ମନୁଷ୍ୟ ଘୃତହରଣ କଲେ କାକମଦ୍‌ଗୁ ଅର୍ଥାତ୍ ଶୃଙ୍ଗବିଶିଷ୍ଟ ଜଳପକ୍ଷୀ ହୁଏ ଅର୍ଥାତ୍ ଦାତ୍ୟୁହ ହୁଏ । ୧୨୨ । ଦୁର୍ମତି ନର ମତ୍ସ୍ୟମାଂସ ହରଣ କଲେ କାକଜନ୍ମ ଲାଭ କରେ, ଲବଣ ଅପହରଣ କଲେ ଚିରିକାକଯୋନିରେ ଜାତ ହୁଏ । ୧୨୩ ।

ଯେଉଁ ବ୍ୟକ୍ତି ବିଶ୍ୱାସବଶରୁ ଅନ୍ୟର ନ୍ୟସ୍ତ ଧନ ଅପହରଣ କରେ, ସେ ପରମାୟୁ ଶେଷରେ ମତ୍ସ୍ୟଯୋନିରେ ଜନ୍ମଗ୍ରହଣ କରେ ।୧୨୪। ମତ୍ସ୍ୟଯୋନି ଲାଭ କରି ମରଣ ଉତ୍ତାରେ ନରଜନ୍ମ ଲାଭ କରେ । ନରତ୍ୱ ପ୍ରାପ୍ତ ହୋଇ କ୍ଷୀଣାୟୁ ହୁଏ । ୧୨୫ । ହେ ଭାରତ ! ନରଗଣ ନାନାବିଧ ପାପକାର୍ଯ୍ୟ କରି ତିର୍ଯ୍ୟକ୍‌ଯୋନିରେ ଜାତ ହୁଅନ୍ତି । ସେମାନେ ନିଜର ପ୍ରମାଣ କୌଣସି ଧର୍ମ ଜାଣନ୍ତି ନାହିଁ । ୧୨୬ । ଯେଉଁ ନରଗଣ ବହୁବିଧ ପାପାଚରଣ କରି ସର୍ବଦା ବାସ କରନ୍ତି, ସେହିମାନେ ସୁଖଦୁଃଖସମନ୍ୱିତ ଓ ବ୍ୟାଧିଗ୍ରସ୍ତ ହୁଅନ୍ତି । ୧୨୭ । ଲୋଭମୋହସମନ୍ୱିତ ପାପାଶ୍ରିତ ନରଗଣ ମ୍ଳେଚ୍ଛ ଜନ ପରି ସହବାସର ଯୋଗ୍ୟ ନୁହନ୍ତି; ଏଥି ବିଷୟରେ ସଂଶୟ ନାହିଁ । ୧୨୮ । ଯେଉଁ ନରବୃନ୍ଦ ଜନ୍ମଠାରୁ ପାପସମୂହକୁ ତ୍ୟାଗ କରନ୍ତି, ସେମାନେ ରୋଗବିହୀନ, ରୂପବାନ୍ ଓ ଧନଶାଳୀ ହୁଅନ୍ତି । ୧୨୯ । ସ୍ତ୍ରୀସମୂହ ଏତାଦୃଶ କାର୍ଯ୍ୟ କଲେ ପାପଗ୍ରସ୍ତ ହୁଅନ୍ତି ଏବଂ ଏତାଦୃଶ ଜନ୍ତୁସମୂହର ପତ୍ନୀତ୍ୱ ପ୍ରାପ୍ତ ହୁଅନ୍ତି ।

ହେ ଅନଘ ! ପରସ୍ୱ ହରଣ କଲେ ଯେଉଁ ଦୋଷମାନ ହୁଏ, ତାହାସବୁ କୀର୍ତ୍ତିତ ହେଲା, ଆମ୍ଭେ ତୁମ୍ଭ ନିକଟରେ ଏହା ଲେଶ ମାତ୍ର କହିଲୁଁ; ହେ ଭାରତ ! ପ୍ରସଙ୍ଗ ବଶତଃ ଅନ୍ୟ କଥା ଶ୍ରବଣ କରିବ ।୧୩୧। ହେ ମହାରାଜ ! ଆମ୍ଭେ ପୂର୍ବକାଳରେ ଦେବର୍ଷିଗଣଙ୍କ ମଧ୍ୟରେ ଯେଉଁପରି ରହି ବ୍ରହ୍ମାଙ୍କ ମୁଖରୁ ଏହା ଶ୍ରବଣ କରିଥିଲୁଁ, ତୁମ୍ଭ ପ୍ରଶ୍ନ ଶୁଣି ଯଥାର୍ଥ-ରୂପେ ସମସ୍ତ ବିଷୟ କୀର୍ତ୍ତନ କଲୁଁ । ହେ ମହାରାଜ ! ଏହା ଶ୍ରବଣ କରି ଧର୍ମ ବିଷୟରେ ମାନସ ଯୋଗ କର । ୧୩୩ ।

---

# ଅଧ୍ୟାୟ—୧୧୨

ଯୁଧିଷ୍ଠିର କହିଲେ—ହେ ଅନଘ ! ବକ୍ତୃଶ୍ରେଷ୍ଠ ବ୍ରହ୍ମନ୍ ! ଆପଣ ଆମ୍ଭ ନିକଟରେ ଅଧର୍ମର ଗତି କୀର୍ତ୍ତନ କଲେ । ସମ୍ପ୍ରତି ଆମ୍ଭେ ଧର୍ମର ଗତି ଶୁଣିବା ନିମିତ୍ତ ଇଚ୍ଛା କରୁଅଛୁ । ୧ । ନରଗଣ ପାପକର୍ମ ଆଚରଣ କରି କେଉଁପରି ଶୁଭ ଗତି ପ୍ରାପ୍ତ ହୁଅନ୍ତି ? ଇହଲୋକରେ କେଉଁ କର୍ମ କରି ଶୁଭଗତି ପ୍ରାପ୍ତ ହୁଅନ୍ତି ? ୨ ।

ବୃହସ୍ପତି କହିଲେ, ଯେ ଅଧର୍ମର ବଶୀଭୂତ ହୋଇ ପାପକର୍ମ କରନ୍ତି, ସେ ବିପରୀତ ବୁଦ୍ଧିଦ୍ୱାରା ନରକଗାମୀ ହୁଅନ୍ତି । ୩ । ଯେଉଁ ବ୍ୟକ୍ତି ମୋହବଶତଃ ଅଧର୍ମ କାର୍ଯ୍ୟ କରି ପୁନଶ୍ଚ ପଶ୍ଚାତ୍ ଅନୁତପ୍ତ ହୁଅନ୍ତି ଏବଂ ମନକୁ ସମାଧିଦ୍ୱାରା ସଂଯତ କରନ୍ତି, ସେ ଆଉ ଦୁଷ୍କୃତର ଫଳ ଭୋଗ କରନ୍ତି ନାହିଁ । ୪ । ଯାହାଙ୍କ ଅନ୍ତଃକରଣ ଯେଉଁ ଯେଉଁ ରୂପେ ପାପକର୍ମକୁ ନିନ୍ଦା କରେ, ସେ ସେହି ସେହି ରୂପେ ଅଧର୍ମରୁ ମୁକ୍ତ ହୁଅନ୍ତି । ୫ । ହେ ରାଜନ୍ ! ମନୁଷ୍ୟ ଯଦି ଧର୍ମଜ୍ଞ ବ୍ରାହ୍ମଣଙ୍କ ନିକଟରେ ସ୍ୱକୃତ ଅଧର୍ମ ପ୍ରକାଶ କରନ୍ତି, ତେବେ ସେ ତତ୍‌କ୍ଷଣାତ୍ ଅଧର୍ମଜନିତ ଅପବାଦରୁ ବିମୁକ୍ତ ହୁଅନ୍ତି । ୬ । ମନୁଷ୍ୟ ସମାହିତଚିତ୍ତ ହୋଇ ଆତ୍ମକୃତ ଅଧର୍ମକୁ ଯେଉଁ ଯେଉଁପରି କୀର୍ତ୍ତନ କରିବେ, ସେ ସେହି ସେହି ପରି ଅଧର୍ମରୁ ବିମୁକ୍ତ ହେବେ । ୭ । ମନୁଷ୍ୟ ସମ୍ୟକ୍ ରୂପେ ସ୍ୱୀୟ ଅଧର୍ମକୁ ବ୍ୟକ୍ତ କଲେ ନିର୍ମୋକନିର୍ମୁକ୍ତ ସର୍ପ ସଦୃଶ ପାପରୁ ବିମୁକ୍ତ ହୁଅନ୍ତି । ୮ । ଯେଉଁ ବ୍ୟକ୍ତି ମୋହବଶତଃ ପାପାନୁଷ୍ଠାନ କରି ସମାହିତ ଚିତ୍ତରେ ବ୍ରାହ୍ମଣଗଣଙ୍କୁ ବିବିଧ ବସ୍ତୁ ଦାନ କରନ୍ତି, ପରଲୋକରେ ତାହାଙ୍କର ନିଶ୍ଚୟ ଉତ୍କୃଷ୍ଟ ଗତି ଲାଭ ହୁଏ । ୮ ।

ହେ ଯୁଧିଷ୍ଠିର ! ମନୁଷ୍ୟ ପାପାଚରଣ କରିଥିଲେ ଯେଉଁ ଯେଉଁ ବସ୍ତୁ ଦାନ କରିବାଦ୍ୱାରା ପାପରୁ ବିମୁକ୍ତ ଓ ଧର୍ମଶୀଳ ହୁଅନ୍ତି, ତାହା କୀର୍ତ୍ତନ କରୁଅଛୁ ଶ୍ରବଣ କର । ୯ । ଅନ୍ନଦାନ ସମସ୍ତ ଦାନ ଅପେକ୍ଷା ଶ୍ରେଷ୍ଠ, ଅତଏବ ଧର୍ମାକାଂକ୍ଷୀମାନେ ସରଳ ହୃଦୟରେ ପ୍ରଥମତଃ ଅନ୍ନ ଦାନ କରିବେ । ୧୦ । ଅନ୍ନ ନରଗଣଙ୍କର ପ୍ରାଣ ସ୍ୱରୂପ, ପ୍ରାଣିକୁଳ ଅନ୍ନ ହେତୁରୁ ସମୁଦ୍ଭୂତ ହୁଅନ୍ତି ଏବଂ ଅନ୍ନରେ ସମସ୍ତ ଲୋକ ପ୍ରତିଷ୍ଠିତ । ସେହି କାରଣରୁ ଅନ୍ନ ପ୍ରଶଂସନୀୟ । ୧୧ । ଦେବଗଣ, ପିତୃଗଣ, ଋଷିଗଣ ଓ ନରଗଣ

ଏନ୍ତି ସମସ୍ତେ କେବଳ ଅନ୍ନକୁ ପ୍ରଶଂସା କରନ୍ତି । ରନ୍ତିଦେବ ଅନ୍ନଦାନଦ୍ୱାରା ସ୍ୱର୍ଗଲାଭ କରିଥିଲେ । ୧୨ । ଶୁଦ୍ଧଚିତ୍ତରେ, ପ୍ରହୃଷ୍ଟ ମନରେ, ବେଦାଧ୍ୟାୟୀ ବ୍ରାହ୍ମଣଗଣଙ୍କୁ ନ୍ୟାୟଲବ୍ଧ ଉତ୍ତମ ଅନ୍ନ ଦାନ କରିବାର ବିଧେୟ ।୧୩। ଦଶାଧିକ ଏକଶତ ବ୍ରାହ୍ମଣ, ହୃଷ୍ଟ ମନରେ ଯାହାଙ୍କର ଶୁଦ୍ଧ ଚିତ୍ତଦ୍ୱାରା ପ୍ରଦତ୍ତ ଅନ୍ନ ଭୋଜନ କରନ୍ତି, ସେ ତିର୍ଯ୍ୟକ୍‌ଯୋନିରେ ଜାତ ହୁଅନ୍ତି । ୧୪ । ହେ ନରବର ! ଦଶାଧିକ ସହସ୍ର ବ୍ରାହ୍ମଣ ଯାହାଙ୍କ ଅନ୍ନଭୋଜନ କରନ୍ତି, ସେ ବ୍ୟକ୍ତି ଅଧର୍ମରୁ ମୁକ୍ତ ହୋଇ ନିରନ୍ତର ଯୋଗଶୀଳ ହୁଅନ୍ତି । ୧୫ । ଯେଉଁ ବେଦପାରଗ ବ୍ରାହ୍ମଣ ବେଦାଧ୍ୟାୟନରତ ବ୍ରାହ୍ମଣଙ୍କୁ ଶ୍ରଦ୍ଧାପୂର୍ବକ ଅନ୍ନଦାନ କରନ୍ତି, ସେ ସୁଖୀ ହୁଅନ୍ତି । ୧୬ ।

ହେ ଧର୍ମାତ୍ମନ୍ ପାଣ୍ଡବ ! ଯେଉଁ କ୍ଷତ୍ରିୟ ବ୍ରାହ୍ମଣ ଧନରେ ଲୋଭ ନ କରି ନ୍ୟାୟାନୁସାରେ ପ୍ରଜାପାଳନପୂର୍ବକ ନିଜ ଉପାର୍ଜିତ ଧନଲବ୍ଧ ଧନ ବେଦଜ୍ଞ ବ୍ରାହ୍ମଣମାନଙ୍କୁ ଶୁଚି ଓ ସମାହିତ ହୋଇ ପ୍ରଦାନ କରନ୍ତି, ସେ ସେହି ଧର୍ମଦ୍ୱାରା ସମସ୍ତ ଦୁଷ୍କୃତ କର୍ମ ବିନାଶ କରନ୍ତି । ୧୮ । ବୈଶ୍ୟ ଯଦି ନିଜ ଉପାର୍ଜିତ କୃଷିଲବ୍ଧ ଦ୍ରବ୍ୟସମୂହକୁ ଛଅଭାଗରେ ବିଭକ୍ତ କରି ତନ୍ମଧ୍ୟରୁ ଏକଭାଗ ବ୍ରାହ୍ମଣଙ୍କୁ ପ୍ରଦାନ କରନ୍ତି, ତେବେ ସେ ସମସ୍ତ ପାପରୁ ବିମୁକ୍ତ ହୁଅନ୍ତି । ୧୯ । ଯେଉଁ ଶୂଦ୍ର ପ୍ରାଣପଣରେ ଭାର-ବହନାଦିଦ୍ୱାରା ଅର୍ଥୋପାର୍ଜନ କରି ବ୍ରାହ୍ମଣମାନଙ୍କୁ ଅନ୍ନଦାନ କରନ୍ତି, ତାହାଙ୍କର ସମସ୍ତ ପାପ ବିନଷ୍ଟ ହୁଏ । ୨୦ । ଯେଉଁ ବ୍ୟକ୍ତି ହିଂସାବିହୀନ ହୋଇ ପରିଶ୍ରମଦ୍ୱାରା ଅନ୍ନ ଉପାର୍ଜନ ପୂର୍ବକ ବ୍ରାହ୍ମଣମାନଙ୍କୁ ପ୍ରଦାନ କରନ୍ତି, ସେ କଦାପି ଦୁଃଖରେ ଅଭିଭୂତ ହୁଅନ୍ତି ନାହିଁ । ଯେଉଁ ନର ହର୍ଷାନ୍ୱିତ ହୋଇ ବେଦଜ୍ଞ ଦ୍ୱିଜଗଣଙ୍କୁ ନ୍ୟାୟୋପାର୍ଜିତ ଅନ୍ନ ପ୍ରଦାନ କରନ୍ତି, ସେ ପାପରୁ ବିମୁକ୍ତ ହୁଅନ୍ତି । ୨୨ । ଇହଲୋକରେ ନର ଉର୍ଜସ୍କର ଅନ୍ନ ଅର୍ଥାତ୍ ବଳକର ଅନ୍ନ ପ୍ରଦାନ କଲେ ବଳବାନ୍ ହୁଅନ୍ତି । ସଜ୍ଜନ-ମାନଙ୍କ ପଥରେ ଅନୁଗମନ କଲେ ସର୍ବପାପରୁ ବିମୁକ୍ତ ହୁଅନ୍ତି । ୨୩ ।

ପଣ୍ଡିତଗଣ ଦାନଶୀଳ ବ୍ୟକ୍ତିମାନଙ୍କ ପଥ ଅବଲମ୍ବନ କରନ୍ତି, ଅନ୍ନଦାତାଙ୍କୁ ପ୍ରାଣଦାତା ବୋଲି ନିର୍ଦ୍ଦେଶ କରାଯାଏ । ସନାତନ ଧର୍ମ ଅନ୍ନଦାତାଙ୍କୁ ଆଶ୍ରୟ କରନ୍ତି, ଅର୍ଥାତ୍ ଅନ୍ନଦାତାମାନଙ୍କ ହେତୁରୁ ସନାତନ ଧର୍ମ ରକ୍ଷିତ ହୁଏ । ୨୪ । ନ୍ୟାୟୋପାର୍ଜିତ ସର୍ବାବସ୍ଥ ଅନ୍ନକୁ ସର୍ବଦା ସତ୍‌ପାତ୍ରରେ ଦାନ କରିବାର ମନୁଷ୍ୟମାନଙ୍କର ଉଚିତ; କାରଣ, ଅନ୍ନ ପରମଗତି । ୨୫ । ନର ଅନ୍ନ ପ୍ରଦାନ କଲେ ନରକଗାମୀ ହୁଅନ୍ତି

ନାହିଁ, ସେହି କାରଣରୁ ଅନ୍ୟାୟ ପରିବର୍ଜିତ ଅନ୍ନ ପ୍ରଦାନ କରିବାର ଉଚିତ । ୨୬ । ଗୃହୀ ବ୍ୟକ୍ତି ବ୍ରାହ୍ମଣମାନଙ୍କୁ ଅନ୍ନଭୋଜନ କରାଇ ପଶ୍ଚାତ୍ ସ୍ୱୟଂ ଭୋଜନ କରିବାକୁ ଯତ୍ନଶୀଳ ହେବେ । ମନୁଷ୍ୟ ଅନ୍ନଦାନଦ୍ୱାରା ଦିବସକୁ ସଫଳ କରିବେ । ୨୭ ।

ହେ ରାଜନ୍ ! ନ୍ୟାୟବିତ୍ତ ପୁରୁଷ, ଦଶଶତ ବେଦଜ୍ଞ ଇତିହାସ-ବେତ୍ତା ଧର୍ମଜ୍ଞ ବ୍ରାହ୍ମଣଗଣଙ୍କୁ ଭୋଜନ କରାଇଲେ, ଘୋରତର ନରକକୁ ଗମନ କରନ୍ତି ନାହିଁ, ବାରମ୍ବାର ସଂସାର ଚକ୍ରରେ ଭ୍ରମଣ କରନ୍ତି ନାହିଁ, ପରଲୋକରେ ସର୍ବକାମସଂଯୁକ୍ତ ହୋଇ ସୁଖ ଭୋଗ କରନ୍ତି ଏବଂ ବିଜ୍ୱର ହୋଇ ବିଳାସ କରନ୍ତି । ସେହି ବ୍ୟକ୍ତି ରୂପବାନ୍, କୀର୍ତ୍ତିବାନ୍ ଓ ଧନବାନ୍ ହୁଅନ୍ତି । ହେ ଭାରତ ! ତୁମ୍ଭଙ୍କୁ ଏହି ସମସ୍ତ ସୁମହତ୍ ଅନ୍ନଦାନର ଫଳସମୂହ କହିଲୁଁ, ଏହା ସମସ୍ତ ଧର୍ମ ଓ ସମସ୍ତ ଦାନର ମୂଳ ଅଟେ । ୩୧ ।

---

## ଅଧ୍ୟାୟ—୧୧୩

ଯୁଧିଷ୍ଠିର କହିଲେ—ଅହିଂସା, ବୈଦିକ କର୍ମ, ଧ୍ୟାନ, ଇନ୍ଦ୍ରିୟସଂଯମ, ତପସ୍ୟା ଓ ଶୁଶ୍ରୂଷା, ଏହି ସମସ୍ତଙ୍କ ମଧ୍ୟରେ ପୁରୁଷଙ୍କ ପକ୍ଷରେ କିଏ ଶ୍ରେୟସ୍କର ଅଟେ ? ୧ ।

ବୃହସ୍ପତି କହିଲେ, ହେ ଭରତଶ୍ରେଷ୍ଠ ! ଏହି ଛଅଗୋଟି ଧର୍ମ ସଙ୍ଗତ । ଏମାନେ ସମସ୍ତେ ପୃଥକ୍ ପୃଥକ୍ ରୂପେ ଧର୍ମର ଦ୍ୱାରସ୍ୱରୂପ, ଅତଏବ ତାହା କୀର୍ତ୍ତନ କରୁଅଛୁ ଶ୍ରବଣ କର । ୨ ।

ଯେଉଁ ନର ଯେଉଁ ହିଂସାଶ୍ରୟ ଧର୍ମ ସାଧନ କରନ୍ତି, ତାହା ଜୀବ-ଗଣଙ୍କର ନିଃଶ୍ରେୟସ ନାଶ କରେ, ଅତଏବ ଆମ୍ଭେ ସେହି ଧର୍ମକୁ ଉତ୍କୃଷ୍ଟ ବୋଲି କହୁନାହୁଁ । ୩ । ପୁରୁଷ କାମ, କ୍ରୋଧ, ଲୋଭରୂପ ଦୋଷତ୍ରୟକୁ ଶରୀରସ୍ଥ ସର୍ବଭୂତରେ ଅର୍ପଣ କରି ଏବଂ ସ୍ୱୟଂ ସେହି ଦୋଷତ୍ରୟକୁ ସଂଯତ କଲେ ସିଦ୍ଧିପ୍ରାପ୍ତ ହୁଏ । ୪ ।

ଯେଉଁ ବ୍ୟକ୍ତି ସ୍ୱକୀୟ ସୁଖ ଇଚ୍ଛା କରି ହିଂସାବଶରୁ ଭୂତସମୂହକୁ ଦଣ୍ଡଦ୍ୱାରା ନିହତ କରନ୍ତି, ସେ ପରଲୋକରେ ସୁଖୀ ହୁଅନ୍ତି ନାହିଁ । ୫ । ଯେଉଁ ପୁରୁଷ ସର୍ବଭୂତମାନଙ୍କରେ ଆତ୍ମୋପମ, ନ୍ୟସ୍ତଦଣ୍ଡ ଓ ଜିତକ୍ରୋଧ,

ସେ ପରଲୋକଗାମୀ ହୋଇ ସୁଖୀ ହୁଅନ୍ତି । ୬ । ସେ ଆପଣା ଦୁଃଖସଦୃଶ ପରଦୁଃଖରେ ଉଦ୍‌ବିଗ୍ନ ହୁଅନ୍ତି, ତତ୍ତ୍ୱ ଦୃଷ୍ଟିଦ୍ୱାରା ସର୍ବଭୂତଙ୍କୁ ଆତ୍ମସଦୃଶ ଦର୍ଶନ କରନ୍ତି, ଅର୍ଥାତ୍ ସେ ସମସ୍ତଙ୍କୁ ଆପଣା ସଦୃଶ ସୁଖଭୋଗାଭିଳାଷୀ ଏବଂ ଦୁଃଖଭୋଗ ବିଷୟରେ ଅନିଚ୍ଛୁକ ବିବେଚନା କରି ସମସ୍ତଙ୍କଠାରେ ସମାନ ଦୃଷ୍ଟିସମ୍ପନ୍ନ ହୁଅନ୍ତି, ଦେବଗଣ ସେହି ପୁରୁଷଙ୍କ ଗତିନିର୍ଦ୍ଦେଶ ବିଷୟରେ ବିମୁଗ୍ଧ ହୁଅନ୍ତି । ୭ । ଯାହା ଆପଣା ପକ୍ଷରେ ପ୍ରତିକୂଳ ହୁଏ, ତାହା ପରଠାରେ ସନ୍ଧାନ କରିବାର ଉଚିତ ନୁହେଁ, ଏହା ସଂକ୍ଷେପରେ ଧର୍ମ ଅଟେ । ଆମ୍ଭେ ତୁମ୍ଭ ନିକଟରେ ଏହି ଧର୍ମର ସଂକ୍ଷେପ ଲକ୍ଷଣ କୀର୍ତ୍ତନ କଲୁଁ । ସେ କାମବଶରେ ଏହି ମତର ବିରୁଦ୍ଧ ବ୍ୟବହାର କରନ୍ତି, ତାହାଙ୍କର ଅଧର୍ମାନୁଷ୍ଠାନ ହୁଏ ।୮। ପୁରୁଷ ପ୍ରତ୍ୟାଖ୍ୟାନ ଦାନ, ସୁଖ ଦୁଃଖ, ପ୍ରିୟ ଅପ୍ରିୟ ବିଷୟରେ ଆପଣାର ଉପମାଦ୍ୱାରା ପ୍ରମାଣପ୍ରାପ୍ତ ହୁଅନ୍ତି, ଅର୍ଥାତ୍ ଏହି କତିପୟ ହେତୁରୁ ଯେଉଁ ସନ୍ତୋଷ ଓ ଅସନ୍ତୋଷ ଉତ୍ପନ୍ନ ହୁଏ, ମନୁଷ୍ୟ ତାହା ଆତ୍ମପର୍ଯ୍ୟାଲୋଚନା ଦ୍ୱାରା ସାଧାରଣ ଧର୍ମ ବୋଲି ଅବଗତ ହେବେ । ମନୁଷ୍ୟ ହିଂସା କଲେ ନିଜେ ହିଂସିତ ହୁଅନ୍ତି, ପ୍ରତିପାଳନ କଲେ ପ୍ରତିପାଳିତ ହୁଅନ୍ତି, ଅତଏବ ହିଂସା ନ କରି ସମସ୍ତଙ୍କୁ ପ୍ରତିପାଳନ କରିବା ଉଚିତ । ସେ କେବଳ ଲୋକର ପ୍ରତିପାଳନ ବିଷୟରେ ନିରତ, ସେ ସାଧୁପଦଭ୍ରଷ୍ଟ, ଧର୍ମସଦୃଶ ଜୀବଲୋକର ପ୍ରମାଣ ସ୍ଥଳ ହୁଅନ୍ତି । ବୈଶମ୍ପାୟନ କହିଲେ, ଧୀଶକ୍ତିସମ୍ପନ୍ନ ଦେବଗୁରୁ ବୃହସ୍ପତି ଧର୍ମପୁତ୍ର ଯୁଧିଷ୍ଠିରଙ୍କୁ ଏହିପରି ଉପଦେଶ ପ୍ରଦାନ କରି ଆମ୍ଭ ସମସ୍ତଙ୍କ ସାକ୍ଷାତରେ ଆକାଶ ମାର୍ଗରେ ପ୍ରସ୍ଥାନ କଲେ । ୧୧ ।

---

## ଅଧ୍ୟାୟ—୧୧୪

ବୈଶମ୍ପାୟନ କହିଲେ—ମହାରାଜ ! ସୁରଗୁରୁ ପ୍ରସ୍ଥାନ କଲା ପରେ ମହାତେଜା ବକ୍ତୃବର ଧର୍ମପୁତ୍ର ରାଜା ଯୁଧିଷ୍ଠିର ଶରଶଯ୍ୟାରେ ଶୟାନ ପିତାମହଙ୍କୁ ପୁନଶ୍ଚ ପଚାରିଲେ । ୧ ।

ଯୁଧିଷ୍ଠିର କହିଲେ, ହେ ମହାମତେ ! ବେଦପ୍ରାମାଣ୍ୟ ଦର୍ଶନ ହେତୁରୁ ଋଷିଗଣ, ବ୍ରାହ୍ମଣଗଣ ଓ ଦେବଗଣ ଅହିଂସଲକ୍ଷଣ ଧର୍ମକୁ ପ୍ରଶଂସା

କରନ୍ତି । ୨ । ହେ ପାର୍ଥିବସତ୍ତମ ! ମନୁଷ୍ୟ ବାକ୍ୟ, ମନ ଓ କର୍ମଦ୍ୱାରା ହିଂସା କରି କପରି ଦୁଃଖରୁ ବିମୁକ୍ତ ହେଉଅଛନ୍ତି ? ୩ ।

ଭୀଷ୍ମ କହିଲେ, ଅରିସୂଦନ ! ବ୍ରହ୍ମବାଦୀ ଋଷିଗଣ ଏହି ହିଂସାକୁ ମନ, ବାକ୍ୟ, କର୍ମ ଓ ଭକ୍ଷଣଭେଦରେ ଚତୁର୍ବିଧ ରୂପରେ ନିର୍ଦ୍ଦେଶ କରି-ଅଛନ୍ତି, ଅତଏବ ହିଂସା ଚତୁର୍ବିଧଯୁକ୍ତ, ଅହିଂସା ମଧ୍ୟ ସେହିପରି ଚାରି ପ୍ରକାର । ତନ୍ମଧ୍ୟରୁ ଗୋଟିଏ ତ୍ୟକ୍ତ ହେଲେ ମଧ୍ୟ ସର୍ବତୋଭାବରେ ଅହିଂସା ହୁଏ ନାହିଁ । ୪ । ହେ ମହୀପାଳ ! ଚତୁଷ୍ପାଦ ଜୀବ ଯେଉଁପରି ତ୍ରିପାଦଦ୍ୱାରା ଦଣ୍ଡାୟମାନ ହୋଇ ନ ପାରନ୍ତି, ତଦ୍‌ବତ୍ ଅହିଂସା କାରଣତ୍ରୟଦ୍ୱାରା ଉକ୍ତ ହୋଇପାରେ ନାହିଁ । ୫ । ଯେଉଁପରି ପାଦଗାମୀ ଜୀବଗଣଙ୍କ କ୍ଷୁଦ୍ର ପାଦ-ଚିହ୍ନସମୂହ ହସ୍ତୀପଦ ଚିହ୍ନ ଅନ୍ତର୍ଭୁକ୍ତ ହୋଇଥାଏ, ସେହିପରି ଅହିଂସା ଧର୍ମରେ ଅନ୍ୟାନ୍ୟ ଧର୍ମବୃନ୍ଦ ସମ୍ପୂର୍ଣ୍ଣ ରୂପେ ସମାବିଷ୍ଟ ହୁଏ । ଅତଏବ ପୂର୍ବକାଳରୁ ଧର୍ମତଃ ଅହିଂସା ଶ୍ରେଷ୍ଠ ରୂପରେ ନିର୍ଦ୍ଦିଷ୍ଟ ହୋଇଅଛି । ଜୀବ ବାକ୍ୟ, ମନ ଓ କର୍ମଦ୍ୱାରା ଲିପ୍ତ ହୁଅନ୍ତି ।୭। ପ୍ରଥମତଃ ମନେ ମନେ ତ୍ୟାଗ କରି ତଦନନ୍ତର ବାକ୍ୟ ଓ କର୍ମଦ୍ୱାରା ପରିହାର କରି ଯେ ମାଂସ ଭକ୍ଷଣ କରନ୍ତି, ସେ ବିମୁକ୍ତ ହୁଅନ୍ତି ।

ମନୁଷ୍ୟ କାୟମନୋବାକ୍ୟରେ ହିଂସା କଲେ, ସେ ତଜ୍ଜନିତ ପାପରେ ଲିପ୍ତ ହୁଅନ୍ତି । ଯେ କାୟମନୋବାକ୍ୟରେ ପ୍ରାଣୀହିଂସା ମନୋ-ବୃତ୍ତିରେ ପ୍ରବୃତ୍ତ ନୁହନ୍ତି ଏବଂ କଦାପି ମାଂସଭକ୍ଷଣ ନ କରନ୍ତି, ସେ ବିମୁକ୍ତ ହୁଅନ୍ତି । ମାଂସ ଭକ୍ଷଣରେ ଅଭିଳାଷ, ମାଂସ ଭକ୍ଷଣରେ ଉପଦେଶ ପ୍ରଦାନ ଓ ମାଂସଭକ୍ଷଣ ଏହିମାନଙ୍କଦ୍ୱାରା ହିଂସାଜନିତ ପାପ ଜନ୍ମେ । ଏହି ନିମିତ୍ତ ତପସ୍ୟାପରାୟଣ ମନୀଷୀଗଣ କଦାପି ମାଂସାହାର କରନ୍ତି ନାହିଁ । ହେ ରାଜନ୍ ! ମାଂସ ଭକ୍ଷଣର ଦୋଷସମୂହ ଆମ୍ଭ ନିକଟରୁ ଶ୍ରବଣ କର । ୧୧ ।

ଯେ ମୋହପ୍ରଭାବରେ ପୁତ୍ରମାଂସ ସଦୃଶ ମାଂସ ଭକ୍ଷଣ କରନ୍ତି, ସେ ଅତି ଘୃଣାସ୍ପଦ ଅଧମ ବୋଲି ପରିଗଣିତ ହୁଅନ୍ତି । ଯେଉଁପରି ସ୍ତ୍ରୀ ପୁରୁଷ ସଂଯୋଗ ସନ୍ତାନୋତ୍ପତ୍ତିର ଅଦ୍ୱିତୀୟ କାରଣ ଅଟେ, ସେହିପରି ହିଂସା କେବଳ ବହୁବିଧ ପାପଯୋନିରେ ଜନ୍ମଗ୍ରହଣ କରିବାର ପ୍ରଧାନ କାରଣ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ୧୨ । ଜିହ୍ୱା ଯେଉଁପରି ରସଜ୍ଞାନର କାରଣ, ସେହିପରି ମାଂସର ଆସ୍ୱାଦନ, ମାଂସାନୁରାଗର ହେତୁ ବୋଲି ଅଭିହିତ ହୁଏ । ପାକର ତାରତମ୍ୟାନୁସାରେ ମାଂସ ମନୁଷ୍ୟଚିତ୍ତ ଆକର୍ଷଣ

କରେ ; ସଂସ୍କୃତ ଅଥବା ଅସଂସ୍କୃତ, ପକ୍ୱ ସଲବଣ କିମ୍ବା ଅଲବଣ ଯେଉଁ ପ୍ରକାର ଖାଦ୍ୟ ଦ୍ରବ୍ୟ ପ୍ରସ୍ତୁତ ହୁଏ, ତହିଁରେ ଚିତ୍ତ ତଦନୁସାରେ ନିରୁଦ୍ଧ ହୁଏ । ମାଂସଭକ୍ଷକ ମନ୍ଦ ନରଗଣ ପରଲୋକରେ ଭେରୀ ଓ ମୃଦଙ୍ଗଧ୍ୱନି ଏବଂ ଅତି ମଧୁର ତନ୍ତ୍ରୀ ଶବ୍ଦ କେଉଁପରି ଶ୍ରବଣ କରିବେ ? ୧୫ । ଯେଉଁ-ମାନେ ଫଳାର୍ଥୀ ହୋଇ ରସଲୋଭରେ ଅଭିଭୂତ ହୁଅନ୍ତି, ସେହିମାନେ ଅଚିନ୍ତିତ, ଅନିର୍ଦ୍ଦିଷ୍ଟ, ଅସଂକଳ୍ପିତ ମାଂସକୁ ପ୍ରଶଂସା କରନ୍ତି । ୧୬ । ମାଂସର ପ୍ରଶଂସା ଦୋଷକର୍ମ ଫଳ ସମନ୍ୱିତ ଅଟେ ; ଅସଂଖ୍ୟ ସାଧୁଜନଗଣ ନିଜ ଜୀବନ ପରିତ୍ୟାଗ କରି, ସ୍ୱମାଂସଦ୍ୱାରା ପରମାଂସ ପରିପାଳନପୂର୍ବକ ସ୍ୱର୍ଗକୁ ଗମନ କରିଥିଲେ । ୧୮ । ହେ ମହାରାଜ ! ଆମ୍ଭେ ତୁମ୍ଭ ନିକଟରେ ସର୍ବ-ଧର୍ମାନୁସଙ୍ଗତା କାରଣ ଚତୁଷ୍ଟୟ ପରିବୃତା ଏହି ଅହିଂସା ଧର୍ମ କୀର୍ତ୍ତନ କଲୁ । ୧୯ ।

---

## ଅଧ୍ୟାୟ—୧୧୫

ଯୁଧିଷ୍ଠିର କହିଲେ—ହେ ପିତାମହ ! ଆପଣ ଏଥିପୂର୍ବେ ଅହିଂସା ପରମ ଧର୍ମ ଅଟେ ବୋଲି ବାରମ୍ବାର କୀର୍ତ୍ତନ କରିଅଛନ୍ତି, କିନ୍ତୁ ଶ୍ରାଦ୍ଧ ବିଷୟରେ ପିତୃଗଣ ଆମିଷାକାଂକ୍ଷୀ ହୁଅନ୍ତି ବୋଲି କହିଅଛନ୍ତି । ପୂର୍ବେ ଆପଣ ବହୁବିଧ ମାଂସଦ୍ୱାରା ଶ୍ରାଦ୍ଧର ବିଧି କହିଅଛନ୍ତି ; ହିଂସା ନ କଲେ ମାଂସ କେଉଁଠାରୁ ମିଳିବ, ଅତଏବ ଏହି କଥା ସହିତ ପୂର୍ବ ବାକ୍ୟର ବିରୋଧ ହେଉଅଛି । ୨ । ସୁତରାଂ ମାଂସପରିତ୍ୟାଗ ରୂପ ଧର୍ମ ବିଷୟରେ ଆମ୍ଭମାନଙ୍କର ସଂଶୟ ଜନ୍ମିଅଛି । ମାଂସ ଭକ୍ଷଣକାରୀଙ୍କର କି ଦୋଷ ହୁଏ ? ମାଂସ ଭକ୍ଷଣ ନ କଲେ କେଉଁ ଗୁଣ ହୁଏ ? ୩ । ଭକ୍ଷଣାର୍ଥ ସ୍ୱୟଂ ହନନ କଲେ କିମ୍ବା ଅନ୍ୟଦ୍ୱାରା ହତ ଜୀବର ମାଂସ ଭକ୍ଷଣ କଲେ କି ଦୋଷ ହୁଏ ? ଯେ ପର ନିମିତ୍ତ ପଶୁ ହନନ କରେ ଏବଂ ଯେ କ୍ରୟ କରି ଭକ୍ଷଣ କରେ, ସେମାନଙ୍କର କି ଦୋଷ ହୁଏ ? ୪ । ହେ ଅନଘ ! ଏହି ବିଷୟରେ ଆପଣ ଯଥାର୍ଥରୂପେ କୀର୍ତ୍ତନ କରନ୍ତୁ । ଆମ୍ଭେ ଏହି ସନାତନ ଧର୍ମକୁ ନିଶ୍ଚୟ ରୂପେ ଜାଣିବାକୁ ଇଚ୍ଛା କରୁଅଛୁଁ । ୫ । ପୁରୁଷ କେଉଁପରି ପରମାୟୁ ପ୍ରାପ୍ତ ହୁଅନ୍ତି ? କେଉଁପରି ବଳଶାଳୀ ହୁଅନ୍ତି ? କେଉଁପରି ଅବ୍ୟଙ୍ଗ ଅର୍ଥାତ୍ ରୂପବାନ, କେଉଁ କାରଣରୁ ଲକ୍ଷଣଯୁକ୍ତ ହୋଇ ଜନ୍ମଗ୍ରହଣ କରନ୍ତି ? ୬ ।

ଭୀଷ୍ମ କହିଲେ, ହେ ରାଜନ୍ କୁରୁନନ୍ଦନ ! ମାଂସ ଭକ୍ଷଣ ନ କଲେ ଯେଉଁ ଧର୍ମ ହୁଏ ଏବଂ ଏହି ବିଷୟରେ ଯେଉଁ ଉତ୍କୃଷ୍ଟ ବିଧି ଅଛି, ତାହା ଆମ୍ଭ ନିକଟରୁ ଶ୍ରବଣ କର । ୭ । ଯେଉଁମାନେ ସୌନ୍ଦର୍ଯ୍ୟ, ରୂପସୌଷ୍ଠବ, ଆୟୁବୃଦ୍ଧି, ସତ୍ତ୍ୱ, ବଳ ଓ ସ୍ମରଣଶକ୍ତି ପାଇବାକୁ ଇଚ୍ଛା କରନ୍ତି, ସେହି ମହାତ୍ମା ଜନଗଣ ହିଂସା ପରିତ୍ୟାଗ କରନ୍ତି । ୮ । ହେ କୁରୁନନ୍ଦନ ଯୁଧିଷ୍ଠିର ! ଏହି ବିଷୟରେ ଋଷିଗଣଙ୍କର ବହୁଳ ସଂବାଦ ଅଛି; ତନ୍ମଧ୍ୟରେ ସେହିମାନଙ୍କର ମତ ଶ୍ରବଣ କର । ୯ । ହେ ଯୁଧିଷ୍ଠିର ! ଯେଉଁ ବ୍ୟକ୍ତି ସର୍ବଦା ମଧୁମାଂସ ବର୍ଜନ କରନ୍ତି, ସେମାନେ ଯତବ୍ରତ ହୋଇ ପ୍ରତିମାସରେ ଅଶ୍ୱମେଧ ଯଜ୍ଞ କରୁଥିବା ବ୍ୟକ୍ତିଙ୍କ ତୁଲ୍ୟ । ହେ ରାଜନ୍ ! ସପ୍ତଋଷିଗଣ, ବାଲଖିଲ୍ୟଗଣ ଏବଂ ମରୀଚିଗଣ, ଏହି ସମସ୍ତ ମନୀଷିବୃନ୍ଦ ଅମାଂସଭକ୍ଷଣକୁ ପ୍ରଶଂସା କରନ୍ତି । ୧୧ ।

ସ୍ୱାୟମ୍ଭୁବ ମନୁ କହିଅଛନ୍ତି ଯେ, ଯେଉଁ ବ୍ୟକ୍ତି ମାଂସଭକ୍ଷଣ ନ କରନ୍ତି ଏବଂ ପଶୁହିଂସା ନ କରନ୍ତି ଓ ପଶୁଘାତ ନ କରନ୍ତି, ସେ ସର୍ବଭୂତର ମିତ୍ର ହୁଅନ୍ତି । ୧୨ । ଯେଉଁ ବ୍ୟକ୍ତି ମାଂସ ଭୋଜନ ନ କରନ୍ତି, ସେ ସର୍ବଭୂତର ଅଧର୍ଷଣୀୟ, ସର୍ବଜନ୍ତୁଙ୍କର ବିଶ୍ୱାସପାତ୍ର ଓ ସାଧୁମାନଙ୍କର ସମ୍ମାନଭାଜନ ହୁଅନ୍ତି । ୧୩ ।

ତପୋଧନାଗ୍ରଗଣ୍ୟ ଦେବର୍ଷି ଧର୍ମାତ୍ମା ନାରଦ କହିଅଛନ୍ତି, ଯେଉଁ ବ୍ୟକ୍ତି ପରମାଂସଦ୍ୱାରା ସ୍ୱକୀୟ ମାଂସ ବର୍ଦ୍ଧନ ନିମିତ୍ତ ଇଚ୍ଛା କରନ୍ତି, ସେ ସର୍ବଦା ନିଶ୍ଚୟ କ୍ଳେଶ ଭୋଗ କରନ୍ତି । ୧୪ । ବୃହସ୍ପତି କହିଅଛନ୍ତି, ଯେଉଁ ବ୍ୟକ୍ତି ମଧୁପାନ ଓ ମାଂସଭକ୍ଷଣରୁ ନିବୃତ୍ତ ହୁଅନ୍ତି, ସେ ଦାତା, ଯଜ୍ଞଶୀଳ ଓ ତପସ୍ୱୀ ହୁଅନ୍ତି । ୧୫ । ଯେଉଁ ବ୍ୟକ୍ତି ଶତବର୍ଷ ପ୍ରତିମାସରେ ଅଶ୍ୱମେଧ ଯଜ୍ଞ କରନ୍ତି, ମାଂସଭୋଜନପରାଙ୍ମୁଖ ବ୍ୟକ୍ତି ତାହାଙ୍କ ସଦୃଶ ପରିଗଣିତ ହୁଅନ୍ତି ବୋଲି ଆମ୍ଭର ମତ ଅଟେ । ୧୬ । ମଧୁମାଂସ-ବିବର୍ଜନବଶରୁ ପୁରୁଷ ସର୍ବଦା ସତ୍ରଦ୍ୱାରା ଯଜ୍ଞ କରନ୍ତି, ସର୍ବଦା ଦାନ କରିବାର ଫଳ ପ୍ରାପ୍ତ ହୁଅନ୍ତି ଏବଂ ନିରନ୍ତର ତପସ୍ୱୀ ହୁଅନ୍ତି । ୧୭ । ହେ ଭାରତ ! ଯେଉଁ ବ୍ୟକ୍ତି ମାଂସଭକ୍ଷଣ କରି ପଶ୍ଚାତ୍ ତହିଁରୁ ନିବୃତ୍ତ ହୁଅନ୍ତି, ତାହାଦ୍ୱାରା ଯେଉଁ ଫଳ ହୁଏ, ବେଦସମୂହ ତାଦୃଶ ଫଳ ପ୍ରଦାନ କରିବାକୁ ଯୋଗ୍ୟ ହୁଅନ୍ତି ନାହିଁ । ୧୮ । ରସଜ୍ଞାନ ହେଲେ ମାଂସ ପରିତ୍ୟାଗ କରିବାର ଅତି ଦୁଷ୍କର କର୍ମ । ସର୍ବ ପ୍ରାଣୀଙ୍କର ଅଭୟପ୍ରଦ, ଏହି ବ୍ରତ ଆଚରଣ କରିବା ଅତି ଉତ୍କୃଷ୍ଟ । ୧୯ ।

ଯେଉଁ ବିଦ୍ୱାନ୍ ବ୍ୟକ୍ତି ସର୍ବଭୂତଙ୍କୁ ଅଭୟ ଦକ୍ଷିଣା ଦାନ କରନ୍ତି, ସେ ଲୋକମଧ୍ୟରେ ପ୍ରାଣଦାତା ହୁଅନ୍ତି, ଏ ବିଷୟରେ ସଂଶୟ ନାହିଁ । ୨୦ । ପଣ୍ଡିତ ଜନଗଣ ଏହି ପରମଧର୍ମକୁ ପ୍ରଶଂସା କରନ୍ତି, ଆପଣାର ପ୍ରାଣସମୂହ ଯେଉଁପରି ଅଭିଳଷିତ, ଭୂତଗଣଙ୍କର ପ୍ରାଣସମୂହ ମଧ୍ୟ ସେହିପରି ଅଭିଳଷିତ ଅଟେ । ୨୧ । ବିଶୁଦ୍ଧଚିତ୍ତ ବୁଦ୍ଧିମାନ ବ୍ୟକ୍ତିଗଣଙ୍କର ଆତ୍ମା ଉପମାଦ୍ୱାରା ଜ୍ଞାନ କରିବାର ଉଚିତ । ଐଶ୍ୱର୍ଯ୍ୟକାମୀ ବିଦ୍ୱାନ୍‌ଗଣଙ୍କର ମୃତ୍ୟୁଠାରୁ ଭୟ ଅଛି । ୨୨ । ସୁତରାଂ ମାଂସୋପଜୀବୀ ପାପ ପୁରୁଷଙ୍କଦ୍ୱାରା ବଳପୂର୍ବକ ହନ୍ୟମାନ, ରୋଗହୀନ, ନିଷ୍ପାପ ଜୀବଗଣଙ୍କର ମୃତ୍ୟୁଭୟ ହୋଇପାରେ, ଏଥିରେ ସନ୍ଦେହ କି ? ୨୩ । ହେ ମହାରାଜ ! ସେହି କାରଣରୁ ମାଂସ ପରିତ୍ୟାଗକୁ ଧର୍ମ, ସ୍ୱର୍ଗ ଓ ସୁଖର ଆୟତନ ବୋଲି ଜାଣ । ୨୪ ।

ଅହିଂସା ପରମ ଧର୍ମ, ଅହିଂସା ପରମ ସତ୍ୟ, ଅହିଂସା ପରମ ତପସ୍ୟା, କାରଣ ତାଠାରୁ ଧର୍ମ ପ୍ରବୃତ୍ତ ହୁଏ । ୨୫ । ତୃଣ, କାଷ୍ଠ ଅବା ପ୍ରସ୍ତରରୁ ମାଂସ ଜନ୍ମେ ନାହିଁ, ଜୀବହତ୍ୟା କଲେ ମାଂସ ଉତ୍ପନ୍ନ ହୁଏ, ସେହି କାରଣରୁ ତାହା ଭକ୍ଷଣ କଲେ ଦୋଷ ଘଟେ । ୨୬ । ସତ୍ୟ ଓ ସରଳତାପ୍ରିୟ ଦେବଗଣ ସ୍ୱାହା ଓ ସ୍ୱଧାମନ୍ତ୍ର ଦ୍ୱାରା ପ୍ରଦତ୍ତ ଅମୃତ ଭୋଜନ କରନ୍ତି ଏବଂ ଜିହ୍ୱାରସପରାୟଣ ମାଂସାଶୀଗଣଙ୍କୁ ରାକ୍ଷସ ବୋଲି ଜାଣ । ୨୭ । ହେ ରାଜନ୍ ! ଯେ ମାଂସ ଭକ୍ଷଣ ନ କରନ୍ତି, ସେ ଦୁର୍ଗମ ପଥରେ, ଘୋରତର ଦୁର୍ଗରେ, ଗହ୍ୱରସମୂହରେ, ରାତ୍ରିକାଳରେ, ଦିବସରେ, ସନ୍ଧ୍ୟା ସମୟରେ, ଚତ୍ୱରରେ, ସଭାସମୂହରେ, ଉଦ୍ୟତ ଶସ୍ତ୍ରଧାରୀ ବୀର-ମଣ୍ଡଳରେ, ବ୍ୟାଳକୁଳରୁ ଅଥବା ଅନ୍ୟଠାରୁ ଭୀତ ହୁଅନ୍ତି ନାହିଁ । ୨୯ । ଯେ ମାଂସ ଭକ୍ଷଣ ନ କରନ୍ତି, ସେ ସର୍ବଭୂତର ଶରଣ୍ୟ, ସମସ୍ତ ଜୀବ-ଗଣଙ୍କର ବିଶ୍ୱାସପାତ୍ର ! ଲୋକସମୂହର ଅନୁଦ୍‌ବେଗକର ହୁଅନ୍ତି ଏବଂ ସ୍ୱୟଂ ମଧ୍ୟ ଉଦ୍‌ବିଗ୍ନ ହୁଅନ୍ତି ନାହିଁ । ୩୦ ।

ଯଦି ଖାଦକ ନ ଥାଆନ୍ତେ, ତେବେ ଘାତକ ହୁଅନ୍ତେ ନାହିଁ; ଖାଦକ ନିମିତ୍ତ ଘାତକ ହୁଏ । ମନୁଷ୍ୟ ମାଂସଭକ୍ଷକମାନଙ୍କ ନିମିତ୍ତ ପଶୁହନନ କରନ୍ତି । ୩୧ । ଏହା ଅଭକ୍ଷ୍ୟ, ଏହିପରି ବିଚାର କରୁଥିଲେ ଲୋକମାନଙ୍କର ହିଂସା ନିବୃତ୍ତି ହୋଇଥାଆନ୍ତା, ଅତଏବ ଖାଦକମାନଙ୍କ ନିମିତ୍ତ ମୃଗ ପ୍ରଭୃତି ଜୀବ-ମାନଙ୍କଠାରେ ହିଂସା ପ୍ରବର୍ତ୍ତିତ ହେଉଅଛି । ୩୨ । ହେ ମହାଦ୍ୟୁତେ ! ଯେଉଁ କାରଣରୁ ହନ୍ୟମାନ ଜୀବ ହିଂସକମାନଙ୍କ ଆୟୁ ଗ୍ରାସ କରେ, ସେହି କାରଣରୁ ଯେ ଆପଣାର ଐଶ୍ୱର୍ଯ୍ୟକାମୀ ହେବେ, ସେ କଦାପି ମାଂସଭକ୍ଷଣ

କରିବେ ନାହିଁ । ୩୩ । ପ୍ରାଣହିଂସକ ରୌଦ୍ର କର୍ମଶୀଳ ନରଗଣ କଦାପି ପରିତ୍ରାଣକର୍ତ୍ତା ପ୍ରାପ୍ତ ହୁଅନ୍ତି ନାହିଁ; ସେମାନେ ହିଂସ୍ରଜନ୍ତୁ, ସର୍ପ ଓ ବ୍ୟାଘ୍ର-ସଦୃଶ ସମସ୍ତ ଜୀବଗଣଙ୍କର ଉଦ୍‌ବେଗଜନକ ହୁଅନ୍ତି ।୩୪। ଲୋଭ ହେତୁ, ବୁଦ୍ଧିହୀନତା ହେତୁରୁ, ମୋହ, ଅଥବା ବଳବୀର୍ଯ୍ୟକରିରୁ କିମ୍ବା ପାପାଶ୍ରିତ-ମାନଙ୍କ ସଂସର୍ଗ ହେତୁରୁ ମନୁଷ୍ୟମାନଙ୍କର ଅଧର୍ମରେ ରୁଚି ହୁଏ । ୩୫ । ଯେଉଁ ବ୍ୟକ୍ତି ପରମାଂସ ଦ୍ୱାରା ନିଜ ମାଂସ ବୃଦ୍ଧି କରିବାକୁ ଇଚ୍ଛା କରନ୍ତି, ସେ ଯେଉଁ ଯେଉଁ ସ୍ଥାନରେ ଜାତ ହୁଅନ୍ତି, ସେହି ସେହି ସ୍ଥାନମାନଙ୍କରେ ଉଦ୍‌ବିଗ୍ନ ହୋଇ ବାସ କରନ୍ତି । ୩୬ । ସଂଯତଚିତ୍ତ ମହର୍ଷିଗଣ ମାଂସର ଅଭକ୍ଷଣକୁ ଧନ, ଯଶ ଓ ଆୟୁବୃଦ୍ଧିକର, ସ୍ୱର୍ଗଜନକ ଏବଂ ମହତ୍ ସ୍ୱସ୍ତ୍ୟୟନ ବୋଲି କହନ୍ତି । ୩୭ ।

ହେ କୌନ୍ତେୟ ! ମାଂସଭକ୍ଷଣ କଲେ ଯେଉଁ ଦୋଷସମୂହ ଜନ୍ମେ, ତାହା ପୂର୍ବେ ଆମ୍ଭେ ମହାମୁନି ମାର୍କଣ୍ଡେୟଙ୍କଠାରୁ ଶୁଣିଅଛୁ । ୩୮ । ଯେଉଁ ବ୍ୟକ୍ତିଗଣ ଜୀବିତ, ପ୍ରିୟ ଜୀବଗଣଙ୍କ ମଧ୍ୟରୁ କୌଣସି ସ୍ୱୟଂହତ, ଅଥବା ଅନ୍ୟ କର୍ତ୍ତୃକ ନିପାତିତ, ପ୍ରାଣିଗଣଙ୍କ ମାଂସ ଭକ୍ଷଣ କରନ୍ତି, ସେମାନେ ହତ୍ୟାକାରୀ ବ୍ୟକ୍ତି ସଦୃଶ ଫଳ ଭୋଗ କରନ୍ତି । ୩୯ । ଯେ କୌଣସି ଜନ୍ତୁଙ୍କୁ ସଂହାର କରିବା ନିମିତ୍ତ କ୍ରୟ କରନ୍ତି, ଯେଉଁ ବ୍ୟକ୍ତି ତାହାକୁ ସଂହାର କରନ୍ତି ଏବଂ ଯେ ମାଂସାହାର କରନ୍ତି, ସେହି ତିନି ବ୍ୟକ୍ତି ହତ୍ୟାଜନିତ ମହାପାପରେ ଲିପ୍ତ ହୁଅନ୍ତି; ସୁତରାଂ ଏହି ରୂପେ ତ୍ରିବିଧ ହତ୍ୟା ହୁଏ ।୪୦।

ଯେଉଁ ବ୍ୟକ୍ତି ସ୍ୱୟଂ ମାଂସ ଭକ୍ଷଣ ନ କରି ଅଭିପ୍ରାୟ ଦୋଷରେ ଭକ୍ଷକଙ୍କୁ ଅନୁମୋଦନ କରନ୍ତି, ଅଥବା ହନନକାରୀଙ୍କୁ ଅନୁମୋଦନ କରିବା ନିମିତ୍ତ ପ୍ରବୃତ୍ତ ହୁଅନ୍ତି, ସେ ବ୍ୟକ୍ତି ମଧ୍ୟ ଦୋଷଦ୍ୱାରା ଲିପ୍ତ ହୁଅନ୍ତି ।୪୧। ଯେ ମାଂସ ଭକ୍ଷଣ ନ କରି ପ୍ରାଣୀମାନଙ୍କଠାରେ ଦୟାବାନ୍ ହୁଅନ୍ତି, ସେ ଦୀର୍ଘାୟୁ, ରୋଗବିହୀନ ଓ ସର୍ବଭୂତରେ ଅଦୃଶ୍ୟ ହୋଇ ପରମସୁଖରେ କାଳଯାପନ କରନ୍ତି । ଆମ୍ଭେମାନେ ଶୁଣିଅଛୁ, ମାଂସ ଭକ୍ଷଣ ନ କଲେ ହିରଣ୍ୟ ଦାନ, ଗୋଦାନ ଓ ଭୂମିଦାନ ଅପେକ୍ଷା ଅଧିକତର ଧର୍ମଲାଭ ହୁଏ ।୪୩। ଯେଉଁବ୍ୟକ୍ତି ବିଧିବର୍ଜିତ ଅପ୍ରୋକ୍ଷିତ ବୃଥାମାଂସ ଭୋଜନ କରନ୍ତି, ସେ ନିଶ୍ଚୟ ନିରୟଗାମୀ ହୁଅନ୍ତି, ଏଥିରେ ସଂଶୟ ନାହିଁ ।୪୪। ଯେଉଁ ବ୍ୟକ୍ତି ପ୍ରୋକ୍ଷିତ କିମ୍ବା ଅଭ୍ୟୁକ୍ଷିତ ଅଥବା ବ୍ରାହ୍ମଣ କାମନାବଶରୁ ଯଦି ମାଂସ ଭୋଜନ କରନ୍ତି, ତେବେ ତାହାଙ୍କର ଅଳ୍ପ ଦୋଷ ହୁଏ ଜାଣିବ ଏବଂ ଯଦି ଏହାର ବିପରୀତ ହୁଏ, ତେବେ ଦୋଷରେ ଲିପ୍ତ ହୁଏ । ୪୪ ।

ଯେଉଁ ପୁରୁଷାଧମ ଘାତକ ଖାଦକ ନିମିତ୍ତ ପଶୁ ହିଂସା କରେ, ତଦ୍‌ବିଷୟରେ ସେହି ଘାତକ ମହାଦୋଷରେ ଲିପ୍ତ ହୁଏ ଏବଂ ଖାଦକ ତାଦୃଶ ପାପରେ ଲିପ୍ତ ହୁଏ ନାହିଁ । ୪୬ । ଯଜ୍ଞ ଉପନିଷଦରେ ବୋଧହୀନ ଯେଉଁ ଅଧମ ନର, ଦେବପୂଜା ଓ ଅଶ୍ୱମେଧାଦି ଯଜ୍ଞ ଏବଂ ଶ୍ରୁତିପ୍ରଦର୍ଶିତ ଉପାୟ ଅବଲମ୍ବନ ପୂର୍ବକ ଜୀବ ହିଂସା କରନ୍ତି, ସେହି ଯଜ୍ଞ ସ୍ଥଳରେ ମାଂସଲୋଭୀ ନର ନରକକୁ ଗମନ କରନ୍ତି ।୪୭। ଯେଉଁ ବ୍ୟକ୍ତି ପ୍ରଥମରେ ମାଂସ ଭୋଜନ କରି ପଶ୍ଚାତ୍ ତହିଁରୁ ନିବୃତ୍ତ ହୁଅନ୍ତି, ତାଙ୍କର ସୁମହାନ୍ ଧର୍ମ ହୁଏ, କାରଣ ସେ ପାପରୁ ନିବୃତ୍ତ ହୁଅନ୍ତି ।୪୮। ଆହର୍ତ୍ତା, ଅନୁମନ୍ତା, ଘାତକ, କ୍ରୟବିକ୍ରୟକାରୀ, ସଂସ୍କର୍ତ୍ତା ଓ ଉପଭୋକ୍ତା ଏମାନେ ସମସ୍ତେ ଖାଦକ । ୪୯ । ପୁରାଣ ଋଷିଗଣସେବିତ, ବେଦରେ ପରିନିଷ୍ଠିତ ଅର୍ଥାତ୍ ସର୍ବଭାବରେ ନିଶ୍ଚିତ, ବିଧିବିନିର୍ମିତ ଏହି ଗୋଟିଏ ଅନ୍ୟ ପ୍ରମାଣ କହୁଅଛୁ । ୫୦ ।

ହେ ରାଜଶାର୍ଦ୍ଦୂଳ ! ପ୍ରଜାର୍ଥୀଗଣ ଯେଉଁ ପ୍ରବୃତ୍ତି ଲକ୍ଷଣ ଧର୍ମ କହିଅଛନ୍ତି, ତାହା ମୋକ୍ଷାଭିଳାଷୀ ମାନବଗଣଙ୍କର ଧର୍ମ ନୁହେଁ । ୫୧ । ହେ ଭରତଶ୍ରେଷ୍ଠ ! ବେଦୋକ୍ତ ପ୍ରମାଣ ଓ ପିତୃଗଣଙ୍କର ପ୍ରକ୍ରିୟା ସମ୍ବନ୍ଧରେ ଯେଉଁ ମାଂସ ମନ୍ତ୍ରଦ୍ୱାରା ସଂସ୍କୃତ, ପ୍ରୋକ୍ଷିତ ଓ ଅଭ୍ୟୁକ୍ଷିତ ହୁଏ, ତାହା ପବିତ୍ର ହବିଃ ସ୍ୱରୂପ । ତଦ୍‌ବ୍ୟତୀତ ସମୁଦାୟ ବୃଥା ମାଂସ ଅଭକ୍ଷ୍ୟ, ଅସ୍ୱର୍ଗ୍ୟ, ଅଯଶସ୍ୟ ଓ ରାକ୍ଷସମାନଙ୍କ ଭକ୍ଷ୍ୟ ପରି ଅଟେ, ଏହି କଥା ମନୁ କହିଅଛନ୍ତି । ୫୩ । ହେ ରାଜନ୍ ! ନର ପ୍ରଥମରୁ ବିଧିହୀନ, ଅର୍ଥାତ୍ ଅଖାଦ୍ୟ ମାଂସ ଭୋଜନ କରିବେ ନାହିଁ, କାରଣ ଅପ୍ରୋକ୍ଷିତ, ଅବୈଧ ମାଂସ ମନୁଷ୍ୟର ଭୋଜନ କରିବାର ଉଚିତ ନୁହେଁ । ୫୪ । କାରଣ ଯେଉଁ ବ୍ୟକ୍ତି ଆପଣାକୁ ଅତ୍ୟନ୍ତ ଉପଦ୍ରବଶୂନ୍ୟ ରଖିବାକୁ ଇଚ୍ଛା କରନ୍ତି, ସେ ସର୍ବତୋଭାବରେ ପ୍ରାଣିଗଣଙ୍କର ମାଂସ ଭକ୍ଷଣ ପରିବର୍ଜନ କରିବେ । ୫୫ । ଶୁଣାଅଛି, ପୂର୍ବକଳ୍ପରେ ବ୍ରୀହିସମୂହ ନରଗଣଙ୍କର ପଶୁ ରୂପେ କଳ୍ପିତ ହୋଇଥିଲା; ଯାଜ୍ଞିକଗଣ ପୁଣ୍ୟଲୋକ ଲାଭ ବିଷୟରେ ଇଚ୍ଛୁକ ହୋଇ ତାହାଦ୍ୱାରା ଯଜ୍ଞକାର୍ଯ୍ୟର ଅନୁଷ୍ଠାନ କରୁଥିଲେ । ୫୬ ।

ପୂର୍ବକାଳରେ ଏକଦା ଋଷିଗଣ ମାଂସ ଭକ୍ଷଣ ବିଷୟରେ ସଂଶୟାବିଷ୍ଟ ହୋଇ ଚେଦିରାଜ ବସୁଙ୍କ ନିକଟକୁ ଗମନପୂର୍ବକ ମାଂସ ଅଭକ୍ଷ୍ୟ କି ଭକ୍ଷ୍ୟ ଏହି କଥା ପ୍ରଶ୍ନ କରିଥିଲେ । ସେ ଅଭକ୍ଷ୍ୟ ମାଂସକୁ ଭକ୍ଷ୍ୟ ବୋଲି ନିର୍ଦ୍ଦେଶ କରିଥିଲେ । ସେହି ଅପରାଧ ହେତୁରୁ ସେ ସ୍ୱର୍ଗଚ୍ୟୁତ ହୋଇ ପୃଥିବୀକୁ

ଆଗମନ କରିଥିଲେ ଏବଂ ପୃଥିବୀକୁ ଆଗମନ କରି ପୁନଶ୍ଚ ମାଂସକୁ ଭକ୍ଷ୍ୟ ବୋଲି ନିର୍ଦ୍ଦେଶ କରିବାରୁ ପାତାଳରେ ପ୍ରବିଷ୍ଟ ହେଲେ । ୬୮ ।

ପ୍ରଜାଗଣଙ୍କର ହିତସାଧନରେ ରତ ମହାନୁଭବ ଅଗସ୍ତ୍ୟ ତପସ୍ୟାଦ୍ୱାରା ସର୍ବ ଦୈବତ୍ୟ ଆରଣ୍ୟକ ମୃଗସମୂହକୁ ପ୍ରୋକ୍ଷଣ କରିଥିଲେ । ପିତୃଗଣ ଓ ଦେବଗଣ ସମ୍ବନ୍ଧୀୟ କ୍ରିୟାସମୂହ ମାଂସଦ୍ୱାରା କ୍ରିୟମାଣ ହେଲେ ଅସଂସ୍କୃତ ହୁଏ ନାହିଁ । ପିତୃଗଣ ନ୍ୟାୟାନୁସାରେ ମାଂସଦ୍ୱାରା ତୃପ୍ତିଲାଭ କରି ପ୍ରୀତିଯୁକ୍ତ ହୁଅନ୍ତି । ହେ ମନୁଜାଧିପ ! ଅନଘ ! ରାଜେନ୍ଦ୍ର ! ମତ୍କର୍ତ୍ତୃକ କୀର୍ତ୍ତ୍ୟମାନ ମାଂସ ଭକ୍ଷଣ ନ କଲେ ସର୍ବସୁଖ ହୁଏ, ଏହି ବିଷୟ ଶ୍ରବଣ କର । ୭୧ । ଯେ ପୂର୍ଣ୍ଣ ଶତବର୍ଷ ଅତି ଦାରୁଣ ତପସ୍ୟା କରନ୍ତି, ଏବଂ ଯେ ମାଂସ ପରିତ୍ୟାଗ କରନ୍ତି । ଆମ୍ଭ ମତରେ ସେ ଦୁହେଁ ସମାନ ଅଟନ୍ତି । ୭୨ । ହେ ନରାଧିପ ! ବିଶେଷତଃ କାର୍ତ୍ତିକ ଶୁକ୍ଳପକ୍ଷରେ ମଧୁମାଂସ ପରିହାର କରିବାର ଉଚିତ, କାରଣ ତହିଁରେ ଧର୍ମ କରିବାର ବିହିତ । ୭୩ ।

ଯେ ବର୍ଷକ ମଧ୍ୟରେ ଚାରିମାସ ମାଂସ ପରିତ୍ୟାଗ କରନ୍ତି, ସେ କୀର୍ତ୍ତି, ଆୟୁ, ଯଶ ଓ ବଳ ଏହି ମଙ୍ଗଳ ଚତୁଷ୍ଟୟ ପ୍ରାପ୍ତ ହୁଅନ୍ତି ।୭୪। ଅଥବା ଯେ ଏକମାସ ସମସ୍ତ ମାଂସ ଭକ୍ଷଣ କରନ୍ତି, ସେ ସମସ୍ତ ଦୁଃଖ ଅତିକ୍ରମ କରି ନିରାମୟ ହୋଇ ପରମସୁଖରେ ଜୀବନଯାପନ କରନ୍ତି ।୭୫। ଯେଉଁମାନେ ଏକମାସ କିମ୍ବା ଏକପକ୍ଷ ମାଂସଭକ୍ଷଣ ପରିତ୍ୟାଗ କରନ୍ତି, ସେହି ସମସ୍ତ ହିଂସାନିବୃତ୍ତ ନରଗଣଙ୍କ ନିମିତ୍ତ ବ୍ରହ୍ମଲୋକ ବିହିତ ଅଟେ । ୭୬ । ହେ ପାର୍ଥ ! ଯେଉଁମାନେ ସଦସତ୍ ବସ୍ତୁ ବିଦିତ ହୋଇ-ଅଛନ୍ତି, ଏବଂ ସମସ୍ତ ଭୂତଙ୍କୁ ଆତ୍ମସଦୃଶ ଜ୍ଞାନ କରନ୍ତି, ସେହି ସମସ୍ତ ନରପାଳଗଣ କାର୍ତ୍ତିକ ଶୁକ୍ଳପକ୍ଷରେ ମାଂସଭକ୍ଷଣ ବର୍ଜନ କରନ୍ତି । ୭୭ । ନାଭାଗ, ଅମ୍ବରୀଷ, ମହାତ୍ମା ଗୟ, ଆୟୁ, ଅରଣ୍ୟ, ଦିଲୀପ, ରଘୁ, ପୁରୁ, କାର୍ତ୍ତବୀର୍ଯ୍ୟ, ଅନିରୁଦ୍ଧ, ନହୁଷ, ଯଯାତି, ନୃଗ, ବିଶ୍ୱକ୍‌ସେନ, ଶଶବିନ୍ଦୁ (୭୯), ଯୁବନାଶ୍ୱ, ଶିବି, ଊଶୀନର, ମୁଚୁକୁନ୍ଦ, ମାନ୍ଧାତା "ଏବଂ ହରିଶ୍ଚନ୍ଦ୍ର (୭୦), ଏହି ସମସ୍ତ ଭୂପାଳଗଣ ଶରତ୍‌କାଳରେ ଶୁକ୍ଳ ପକ୍ଷରେ ମାଂସଭକ୍ଷଣ କରନ୍ତି ନାହିଁ ।

ସତ୍ୟ କଥା କହିବାର ଉଚିତ, ଅସତ୍ୟ କହିବାର ଅନୁଚିତ । ସତ୍ୟ କେବଳ ସନାତନ ଧର୍ମ । ହରିଶ୍ଚନ୍ଦ୍ର ରାଜା ସତ୍ୟଦ୍ୱାରା ସୁରପୁରରେ ଚନ୍ଦ୍ର

ସଦୃଶ ବିହାର କରୁଅଛନ୍ତି । ୭୧ । ହେ ରାଜେନ୍ଦ୍ର ! ଶ୍ୟେନଚିତ୍ର, ସୋମକ, ବୃକ, ରୈବତ, ରନ୍ତିଦେବ, ବସୁ, ସୃଞ୍ଜୟ (୭୨), କୃପ, ଭରତ, ଦୁଷ୍ୟନ୍ତ, କରୂଷ, ରାମ, ଅଲର୍କ, ନଳ, ବିରୂପାଶ୍ୱ, ନିମି, ଧୀମାନ୍ ଜନକ, (୭୩), ଐଳ, ପୃଥୁ, ବୀରସେନ, ଇକ୍ଷ୍ୱାକୁ, ଶମ୍ଭୁ, ଶ୍ୱେତ, ସଗର (୭୪), ଅଜ, ଧୁନ୍ଧୁ, ସୁବାହୁ, ହର୍ଯ୍ୟଶ୍ୱ, କ୍ଷୁପ ଓ ଭରତ (୭୫), ଏହି ସମସ୍ତ ଏବଂ ଅନ୍ୟାନ୍ୟ ନୃପତିଗଣ ଶରତକାଳୀନ ଶୁକ୍ଳପକ୍ଷରେ ମାଂସ ଭକ୍ଷଣ କରନ୍ତି ନାହିଁ । ତନ୍ନିମିତ୍ତ ସ୍ୱର୍ଗଲାଭ କରିଅଛନ୍ତି । ୭୬ । ସେମାନେ ଶ୍ରୀଯୁକ୍ତ ସହସ୍ର-ସଂଖ୍ୟକ ସ୍ତ୍ରୀଗଣଙ୍କ ଦ୍ୱାରା ପରିବେଷ୍ଟିତ, ଗନ୍ଧର୍ବମାନଙ୍କଦ୍ୱାରା ଉପାସ୍ୟମାନ ଓ ଦେଦୀପ୍ୟମାନ ହୋଇ ବ୍ରହ୍ମଲୋକରେ ଅବସ୍ଥାନ କରିଅଛନ୍ତି । ୭୭ । ସେହି କାରଣରୁ ଯେଉଁ ମହାତ୍ମାମାନେ, ଏହି ଅହିଂସା ଧର୍ମଲକ୍ଷଣ ଉତ୍ତମ ଧର୍ମକୁ ଆଚରଣ କରନ୍ତି, ସେମାନେ ସ୍ୱର୍ଗପୃଷ୍ଠରେ ବସତି କରନ୍ତି । ୭୮ ।

ଇହଲୋକରେ ଯେଉଁସବୁ ଧାର୍ମିକଗଣ ଆଜନ୍ମରୁ ନିତ୍ୟ ମଧୁମାଂସ ଓ ମଦ୍ୟ ବର୍ଜନ କରନ୍ତି, ସେମାନେ ସମସ୍ତେ ମୁନିସଦୃଶ ଅଟନ୍ତି । ୭୯ । ଯେ ଏହି ମାଂସ ଭକ୍ଷଣ ନ କରିବା ବିଷୟକ ଅହିଂସା ଧର୍ମକୁ ଆଚରଣ କରନ୍ତି, ଅଥବା ଅନ୍ୟକୁ ଶ୍ରବଣ କରାନ୍ତି, ସେ ଅତି ଦୁରାଚାର ହେଲେ ସୁଦ୍ଧା କଦାପି ନରକଗାମୀ ହୁଅନ୍ତି ନାହିଁ । ୮୦ । ହେ ରାଜନ୍ ! ଯେ ଏହି ଋଷିପୂଜିତ ପବିତ୍ର ଅମାଂସଭକ୍ଷଣ ଧର୍ମକୁ ଅନୁକ୍ଷଣ ପାଠ କରନ୍ତି, ଅଥବା ନିରନ୍ତର ଶ୍ରବଣ କରନ୍ତି (୮୧), ସେ ସର୍ବ ପାପରୁ ବିମୁକ୍ତ ହୁଅନ୍ତି ଓ ସର୍ବକାମସମ୍ପନ୍ନ ହୁଅନ୍ତି ଏବଂ ଜ୍ଞାତି ମଧ୍ୟରେ ବୈଶିଷ୍ଟ୍ୟ ଲାଭ କରନ୍ତି, ଏହି ବିଷୟରେ ସଂଶୟ ନାହିଁ । ୮୨ । ଆପଦ୍‌ଗ୍ରସ୍ତ ବ୍ୟକ୍ତି ଆପଦରୁ ମୁକ୍ତ ହୁଏ, କାରାରୁଦ୍ଧ ପୁରୁଷ କାରାଗାରରୁ ମୁକ୍ତ ହୁଏ, ରୋଗାତୁର ନର ରୋଗରୁ ମୁକ୍ତି ଲାଭ କରେ, ଦୁଃଖିତ ବ୍ୟକ୍ତି ଦୁଃଖରୁ ବିମୁକ୍ତ ହୁଏ ।୮୩।

ହେ କୁରୁଶ୍ରେଷ୍ଠ ! ଯେଉଁ ନର ମାଂସ ଭକ୍ଷଣ ନ କରନ୍ତି, ସେ ତିର୍ଯ୍ୟକ୍‌ଯୋନିକୁ ଗମନ କରନ୍ତି ନାହିଁ, ସେ ରୂପବାନ୍ ସମୃଦ୍ଧିମାନ୍ ହୁଅନ୍ତି ଏବଂ ମହତ୍ ଯଶ ପ୍ରାପ୍ତ ହୁଅନ୍ତି । ୮୪ । ହେ ରାଜନ୍ ! ତୁମ୍ଭ ନିକଟରେ ଏହି ମାଂସ ପରିବର୍ଜନ ବିଷୟରେ ପ୍ରବୃତ୍ତି ଓ ନିବୃତ୍ତି ଘଟିତ ଋଷିନିର୍ମିତ ବିଧାନ କହିଲୁଁ । ୮୫ ।

---

# ଅଧ୍ୟାୟ—୧୧୭

ଯୁଧିଷ୍ଠିର କହିଲେ—ହେ ପିତାମହ ! ଇହଲୋକରେ ଏହି ମାଂସ-ଲୋଲୁପ ନରଗଣ ବିବିଧ ଭକ୍ଷ୍ୟ ବିସର୍ଜନପୂର୍ବକ ମହାରାକ୍ଷସଗଣ ସଦୃଶ ନୃଶଂସ ହୁଅନ୍ତି । ଏମାନେ ଭକ୍ଷଣରେ ଯାଦୃଶ ଅଭିଳାଷ କରନ୍ତି, ବିବିଧାକାର ଅପୂପ, ନାନାବିଧ ଶାକସମୂହ ଓ ରସଯୁକ୍ତ ଖାଣ୍ଡବ, ଅର୍ଥାତ୍ ମିଷ୍ଟାନ୍ନ ଦ୍ରବ୍ୟ ଭକ୍ଷଣରେ ତାଦୃଶ ଇଚ୍ଛା ପ୍ରକାଶ କରନ୍ତି ନାହିଁ । ୨ । ଅତଏବ ଏହି ବିଷୟରେ ବିବେଚନା ପକ୍ଷରେ ଆମ୍ଭର ବୁଦ୍ଧି ଅତି ମୁଗ୍ଧ ହୋଇଅଛି । ଆମ୍ଭେ ବିବେଚନା କରୁଅଛୁଁ, ମାଂସ ଅପେକ୍ଷା ସୁମଧୁର ରସଯୁକ୍ତ ଅନ୍ୟ କିଛିମାତ୍ର ପଦାର୍ଥ ନାହିଁ । ୩ । ହେ ପ୍ରଭୋ ପୁରୁଷର୍ଷଭ ! ମାଂସ ଭକ୍ଷଣ ନ କଲେ ଯେଉଁ ଗୁଣ ହୁଏ, ତାହା ଶୁଣିବା ନିମିତ୍ତ ଆମ୍ଭେ ଅଭିଳାଷ କରୁଅଛୁଁ । ହେ ଧର୍ମଜ୍ଞ, କିଏ ଭକ୍ଷ୍ୟ, କିଏ ଅଭକ୍ଷ୍ୟ, ତାହାସବୁ ଧର୍ମାନୁସାରେ ଯଥାର୍ଥ ରୂପେ ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ । ୫ । ହେ ପିତାମହ ! ଏହା ଯେଉଁପର ଓ ଯାଦୃଶ ଅଟେ, ଏହାକୁ ବର୍ଜନ କଲେ ଯେଉଁ ଗୁଣ ସବୁ ହୁଏ ଏବଂ ଭକ୍ଷଣ କଲେ ଯେଉଁ ଦୋଷସମୂହ ଜନ୍ମେ, ତାହା ଆମ୍ଭ ନିକଟରେ ବର୍ଣ୍ଣନ କରନ୍ତୁ । ୬ ।

ଭୀଷ୍ମ କହିଲେ, ହେ ମହାବାହୋ ଭରତ ! ତୁମ୍ଭେ ଯାହା କହୁଅଛ ତାହା ଯଥାର୍ଥ ଅଟେ । ଭୂଲୋକରେ ମାଂସ ଅପେକ୍ଷା ଅନ୍ୟ କିଛି ଉତ୍କୃଷ୍ଟ ରସ ନାହିଁ । ୭ । କ୍ଷତ, କ୍ଷୀଣ, ସନ୍ତପ୍ତ, ଗ୍ରାମ୍ୟଧର୍ମରେ ରତ ଓ ପଥଶ୍ରାନ୍ତ ନରଗଣଙ୍କର ପକ୍ଷରେ ମାଂସ ଅପେକ୍ଷା ଅନ୍ୟ କିଛି ଶ୍ରେଷ୍ଠ ଭକ୍ଷ୍ୟ ନାହିଁ । ୮ । ହେ ପରନ୍ତପ ! ମାଂସ ତତ୍କ୍ଷଣାତ୍ ବଳବୃଦ୍ଧି କରେ ଏବଂ ଉତ୍କୃଷ୍ଟ ପୁଷ୍ଟି ବିଧାନ କରେ, ଅତଏବ ମାଂସ ଅପେକ୍ଷା କିଛି ଉତ୍କୃଷ୍ଟ ଭକ୍ଷ୍ୟଦ୍ରବ୍ୟ ନାହିଁ । ୯ ।

ହେ କୌରବନନ୍ଦନ ! ନରଗଣଙ୍କର ମାଂସଭକ୍ଷଣ ପରିବର୍ଜନ-ଦ୍ୱାରା ଯେଉଁ ବହୁତ ଗୁଣ ହୁଏ, ତାହା ଆମେ କହୁଅଛୁଁ ଶ୍ରବଣ କର ।୧୦। ଯେଉଁ ବ୍ୟକ୍ତି ପରମାଂସଦ୍ୱାରା ନିଜ ମାଂସ ବୃଦ୍ଧି କରିବାକୁ ଇଚ୍ଛା କରନ୍ତି, ତାହାଙ୍କ ଅପେକ୍ଷା ଅତି କ୍ଷୁଦ୍ର ଓ ଅତି ନୃଶଂସ ଅନ୍ୟ କୌଣସି ନର ନାହାନ୍ତି । ୧୧ । ଇହଲୋକରେ ପ୍ରାଣ ଅପେକ୍ଷା ଅନ୍ୟ କୌଣସି ପ୍ରିୟତର ବସ୍ତୁ ନାହିଁ, ଅତଏବ ମନୁଷ୍ୟ ଆପଣାଠାରେ ଯେଉଁପର

ଦୟା କରନ୍ତୁ, ପରଠାରେ ମଧ୍ଯ ସେହିପରି ଦୟା କରିବା କର୍ତ୍ତବ୍ୟ । ୧୨ । ହେ ତାତ ! ଶୁକ୍ରରୁ ମାଂସ ସମ୍ଭୂତ ହୁଏ, ଏ ବିଷୟରେ ସଂଶୟ ନାହିଁ । ଅତଏବ ତାହା ଭକ୍ଷଣ କଲେ ମହାନ୍ ଦୋଷ ହୁଏ, ଏବଂ ଭକ୍ଷଣ ନ କଲେ ମହାନ୍ ପୁଣ୍ୟ ହୁଏ । ୧୩ ।

କିନ୍ତୁ ଇହଲୋକରେ ବେଦବିହିତ ବିଧି ଅନୁସାରେ ମାଂସଭୋଜନ କଲେ ଦୋଷ ହୁଏ ନାହିଁ । "ଯଜ୍ଞାର୍ଥେ ପଶୁଗଣ ସୃଷ୍ଟ ହୋଇଅଛନ୍ତି"—ଶ୍ରୁତିରେ ଏହା ଶୁଣାଅଛୁ । ୧୪ । ବେଦବିଧିର ଅନ୍ୟଥା ଆଚରଣରେ ପ୍ରବୃତ୍ତ ନରଗଣଙ୍କର ଅନୁଷ୍ଠାନକୁ ରାକ୍ଷସବିଧି କୁହାଯାଏ । କ୍ଷତ୍ରିୟଗଣଙ୍କର ଯେଉଁ ବିଧି ଦୃଷ୍ଟ ଅଛି, ତାହା ତୁମ୍ଭେ ଆମ୍ଭଠାରୁ ଶ୍ରବଣ କର । କ୍ଷତ୍ରିୟ ବାହୁବୀର୍ଯ୍ୟଦ୍ୱାରା ଉପାର୍ଜିତ ମାଂସ ଭକ୍ଷଣ କଲେ ଦୋଷଯୁକ୍ତ ହୁଅନ୍ତି ନାହିଁ । ୧୫ । ହେ ରାଜନ୍ ! ପୂର୍ବକାଳରେ ଅଗସ୍ତ୍ୟ ମୁନିଙ୍କଦ୍ୱାରା ସମସ୍ତ ଦେବଗଣଙ୍କ ଉଦ୍ଦେଶ୍ୟରେ ଆରଣ୍ୟକ ପଶୁସମୂହ ସର୍ବତୋଭାବରେ ପ୍ରୋକ୍ଷିତ ହୋଇଥିଲେ; ଏହି ନିମିତ୍ତ ମୃଗୟା ପ୍ରଶଂସନୀୟ ହୋଇଅଛି ।୧୬। ଆପଣାକୁ ପରିତ୍ୟାଗ ନ କଲେ ମୃଗୟା ହୁଏ ନାହିଁ । ଅନ୍ୟମାନ ପଶୁଠାରୁ ଆପଣାର ବଧ ସମ୍ଭାବନା ଥିବା ହେତୁରୁ ପ୍ରାଣପଣରେ କ୍ରିୟମାଣ ମୃଗୟା ଦୋଷର କାରଣ ହୁଏ ନାହିଁ । ୧୭ । ସମତା ପ୍ରାପ୍ତ ହୋଇ ମନୁଷ୍ୟ ମୃଗୟାରେ ପଶୁହନନ କରନ୍ତୁ, ଅଥବା ସ୍ୱୟଂ ପଶୁଦ୍ୱାରା ହତ ହୁଅନ୍ତୁ । ହେ ଭାରତ ! ଏହି ନିମିତ୍ତ ରାଜର୍ଷିଗଣ ମୃଗୟାକୁ ଗମନ କରନ୍ତି । ୧୮ । ସେମାନେ ଏହାଦ୍ୱାରା ପାପରେ ଲିପ୍ତ ହୁଅନ୍ତି ନାହିଁ, ଏବଂ ମୃଗୟାକୁ ପାପକର୍ମ ବୋଲି ଜ୍ଞାନ କରନ୍ତି ନାହିଁ । ହେ କୌରବନନ୍ଦନ ! ସର୍ବଭୂତରେ ଦୟାପ୍ରକାଶ ସଦୃଶ ଅନ୍ୟ କୌଣସି ଧର୍ମ ଇହ ଓ ପରଲୋକ ମଧ୍ୟରେ ନାହିଁ । ଇହଲୋକରେ ଦୟାବାନ୍ ନରଙ୍କର କଦାପି ଭୟ ହୁଏ ନାହିଁ ।୨୦। ଦୟାଶୀଳ ତପସ୍ୱୀଗଣଙ୍କର ଇହଲୋକ ଓ ପରଲୋକସମୂହ ଜୟ ହୁଏ; ଧର୍ମଜ୍ଞ ବ୍ୟକ୍ତିଗଣ ଅହିଂସାକୁ ଧର୍ମର ଲକ୍ଷଣ ବୋଲି ଜାଣନ୍ତି । ୨୧ । ଯେଉଁ କର୍ମ ଅହିଂସାତ୍ମକ, ଆତ୍ମବାନ୍ ନର ତାହା କରିବେ, ପିତୃଯଜ୍ଞ ଓ ଦୈବଯଜ୍ଞରେ ପ୍ରୋକ୍ଷିତ ମାଂସ ହବିଃ ରୂପରେ କଥିତ ହୁଏ । ୨୨ ।

ଯେଉଁ ନର ଦୟାଳୁ ହୋଇ ସର୍ବଭୂତଙ୍କୁ ଅଭୟ ଦାନ କରନ୍ତି, ତାହାଙ୍କୁ ଜୀବସମୂହ ଅଭୟ ଦାନ କରନ୍ତି ବୋଲି ଆମ୍ଭେମାନେ ଶୁଣିଅଛୁ । ୨୩ । ସମସ୍ତ ପ୍ରାଣିଗଣ ସେହି ଅଭୟଦାତାଙ୍କୁ କ୍ଷତ, ସ୍ଖଳିତ, ପତିତ,

କଷ୍ଟ ଓ ଆହତରୁ ଅଥବା ସମ ବିଷମ ପ୍ରଦେଶରେ ରକ୍ଷା କରନ୍ତି । ୨୪ । ଯେଉଁ ବ୍ୟକ୍ତି ଭୟ ସମୟରେ ପରଜନଗଣଙ୍କୁ ମୋଚନ କରନ୍ତି, ତାହାଙ୍କୁ ହିଂସ୍ର ଜନ୍ତୁଗଣ ଏବଂ ପିଶାଚ ଓ ରାକ୍ଷସଗଣ ହନନ କରନ୍ତି ନାହିଁ, ତାହାଙ୍କର ଭୟ ଉପସ୍ଥିତ ହେଲେ ସେ ତହିଁରୁ ମୁକ୍ତ ହୁଅନ୍ତି । ୨୫ । ଇହଲୋକରେ ପ୍ରାଣଦାନ ଅପେକ୍ଷା କିଛି ଉତ୍କୃଷ୍ଟ ଦାନ ନାହିଁ କି ହେବ ନାହିଁ, ଆତ୍ମା ଅପେକ୍ଷା ଅନ୍ୟ କିଛି ଅଧିକ ପ୍ରିୟ ନାହିଁ ଏହା ନିଶ୍ଚିତ ଅଟେ । ୨୬ ।

ହେ ଭରତ ! ସମସ୍ତ ଭୂତଗଣ ମରଣକୁ ଇଚ୍ଛା କରନ୍ତି ନାହିଁ । ଜୀବଗଣଙ୍କର ମୃତ୍ୟୁ ସମୟରେ କମ୍ପ ଜାତ ହୁଏ । ୨୭ । ଜୀବଗଣ ଗର୍ଭବାସ ଓ ଜନ୍ମ-ଜରା-ଦୁଃଖ ଦ୍ୱାରା ସର୍ବଦା ସଂସାରସାଗରରେ ପରିଭ୍ରମଣ କରୁଅଛନ୍ତି ଏବଂ ମରଣଠାରୁ ଉଦ୍‌ବେଗଯୁକ୍ତ ହେଉଅଛନ୍ତି । ୨୮ । ଜୀବଗଣ ଗର୍ଭବାସ କାଳରେ ମୂତ୍ର ପୁରୀଷ ଓ ଶ୍ଲେଷ୍ମାସମୂହର ଅତ୍ୟନ୍ତ ଦାରୁଣ ଅତି ଉତ୍କଟ କ୍ଷାର ଅମ୍ଳ ଓ କଟୁରସଦ୍ୱାରା ପଚ୍ୟମାନ ହୁଅନ୍ତି । ୨୯ । ମାଂସଲୋଭୀ ନରଗଣ ଜନ୍ମଗ୍ରହଣ କରି ତେତେବେଳେ ଅବଶ ଓ ବିବଶ ଥିବାରୁ ବାରମ୍ବାର ଛିଦ୍ୟମାନ ଓ ପଚ୍ୟମାନ ହେବାର ଦେଖାଯାଉଥାଆନ୍ତି । ୩୦ । ସେମାନେ ତତ୍ତତ୍‌ଯୋନି ଲାଭ କରି କୁମ୍ଭୀପାକ ନରକରେ ପକ୍ୱ ହୁଅନ୍ତି; ସେମାନେ ଅନ୍ୟଦ୍ୱାରା ଆକ୍ରାନ୍ତ ଓ ଆହତ ହୋଇ ବାରମ୍ବାର ସଂସାରଚକ୍ରରେ ଭ୍ରମଣ କରୁଥାଆନ୍ତି । ୩୧ । ପୃଥିବୀ ଭ୍ରମଣ କରି ଦେଖିଲେ ଜଣାଯାଏ ଯେ, ଆତ୍ମା ଅପେକ୍ଷା ଅନ୍ୟ କିଛି ଅଧିକ ପ୍ରିୟ ନାହିଁ; ଅତଏବ ବୁଦ୍ଧିମାନ ବ୍ୟକ୍ତି ସମସ୍ତ ପ୍ରାଣିଗଣଙ୍କଠାରେ ଦୟାବାନ୍ ହେବେ । ୩୨ । ହେ ରାଜନ୍ ! ଯେ ଯାବଜ୍ଜୀବନ କାହାର ମାଂସ ଭକ୍ଷଣ ନ କରନ୍ତି, ସେ ସୁରପୁରରେ ଅତି ଉତ୍କୃଷ୍ଟ ସ୍ଥାନ ପ୍ରାପ୍ତ ହୁଅନ୍ତି ଏହି ବିଷୟରେ ସଂଶୟ ନାହିଁ । ୩୩ । ଯେଉଁମାନେ ଜୀବିତାଭିଳାଷୀ ଜୀବଗଣଙ୍କ ମାଂସ ଭକ୍ଷଣ କରନ୍ତି ସେମାନେ ସେହି ଜୀବଗଣଙ୍କ ଦ୍ୱାରା ଭକ୍ଷିତ ହୁଅନ୍ତି, ଏଥିରେ ଆମ୍ଭର ସଂଶୟ ନାହିଁ । ୩୪ ।

ହେ ଭରତ ! 'ମାଂସ' ସେ ଆମ୍ଭଙ୍କୁ ପୂର୍ବଜନ୍ମରେ ଭକ୍ଷଣ କରିଥିଲା, ଆମ୍ଭେ ଇହଜନ୍ମରେ ତାହାକୁ ଭକ୍ଷଣ କରିବୁ (୩୫), 'ମାଂସ' ଶବ୍ଦରୁ ଏହିପରି ଅର୍ଥ ପ୍ରକାଶିତ ହେଉଅଛି । ହେ ରାଜନ୍ ! ଘାତକ ଓ ଭକ୍ଷକ ସର୍ବଦା ବଧଯୋଗ୍ୟ । ଆକ୍ରୋଶପ୍ରକାଶକାରୀ ନର ନିତ୍ୟ ଆକ୍ରୋଶପ୍ରାପ୍ତ ହୁଏ ଏବଂ ଦ୍ୱେଷକାରୀ ଜନ ନିତ୍ୟ ଦ୍ୱେଷପ୍ରାପ୍ତ ହୁଏ । ୩୬ । ଯେଉଁ ବ୍ୟକ୍ତି

ଯେଉଁ ଯେଉଁ ଶରୀର ଦ୍ୱାରା ଯେଉଁ ଯେଉଁ କର୍ମ କରେ, ସେ ସେହି ସେହି ଶରୀରଦ୍ୱାରା ସେହି ସେହି ଫଳ ପ୍ରାପ୍ତ ହୁଏ । ୩୭ ।

ଅହିଂସା ପରମ ଧର୍ମ, ଅହିଂସା ପରମ ଦମ, ଅହିଂସା ପରମ ଦାନ ଏବଂ ଅହିଂସା ତପସ୍ୟା ଅଟେ । ୩୮ । ଅହିଂସା ପରମ ଯଜ୍ଞ, ଅହିଂସା ପରମ ମିତ୍ର ଓ ଅହିଂସା ପରମ ସୁଖ ଅଟେ । ୩୯ । ଅହିଂସା ପରମ ସତ୍ୟ ଏବଂ ଅହିଂସା ପରମ ଶ୍ରୁତ । ସମସ୍ତ ଯଜ୍ଞରେ ଯାହା ଦାନ କରାଯାଏ ଓ ସମସ୍ତ ତୀର୍ଥରେ ଯେଉଁ ସ୍ନାନ ହୁଏ, ତାହା ଏବଂ ସମସ୍ତ ଦାନର ଫଳ ଅହିଂସା ସଦୃଶ ନୁହେଁ । ୪୦ । ଅହିଂସ୍ର ମାନବଗଣଙ୍କର ତପସ୍ୟା ଅକ୍ଷୟ ହୁଏ । ଅହିଂସ୍ର ବ୍ୟକ୍ତି ସର୍ବଦା ଯଜ୍ଞ କରନ୍ତି, ଅହିଂସ୍ର ନର ସର୍ବଦା ପ୍ରାଣି-ଗଣଙ୍କର ପିତାମାତା ସଦୃଶ ଅଟନ୍ତି । ୪୧ । ହେ କୁରୁପୁଙ୍ଗବ ! ଆମ୍ଭେ ତୁମ୍ଭ ନିକଟରେ ଏହି ଅହିଂସାର ଫଳ କୀର୍ତ୍ତନ କଲୁ । ଏହା ଅପେକ୍ଷା ଅଧିକତର ଯେଉଁ ଫଳ ଅଛି, ତାହା ଶତବର୍ଷରେ ମଧ୍ୟ କୁହାଯାଇ ପାରିବ ନାହିଁ । ୪୨ ।

---

## ଅଧ୍ୟାୟ—୧୧୭

ଯୁଧିଷ୍ଠିର କହିଲେ—ହେ ପିତାମହ ! ଯେଉଁମାନେ ଅକାମ ଅବା ସକାମ୍ ହୋଇ ରଣରେ ନିଧନପ୍ରାପ୍ତ ହୁଅନ୍ତି, ସେମାନଙ୍କର କେଉଁ ଗତି ହୁଏ ? ଆପଣ ଆମ୍ଭ ନିକଟରେ ତାହା କୀର୍ତ୍ତନ କରିବା ହେଉନ୍ତୁ । ହେ ମହାପ୍ରାଜ୍ଞ, ସଂଗ୍ରାମରେ ନରଗଣଙ୍କର ପ୍ରାଣ ପରିତ୍ୟାଗ ଦୁଃଖକର ଅଟେ, ସମୃଦ୍ଧି ବା ଅସମୃଦ୍ଧି କାଳରେ, ଶୁଭ ବା ଅଶୁଭ ସମୟରେ ପ୍ରାଣତ୍ୟାଗ କରିବା ଅତି ଦୁଃସହ ଅଟେ । ତାହା ଆପଣ ଜାଣନ୍ତି । ଆମ୍ଭେ ଆପଣଙ୍କୁ ସର୍ବଜ୍ଞ ବୋଲି ଜାଣୁଁ, ଅତଏବ ତଦ୍ ବିଷୟର କାରଣ ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ । ୩ । ଭୀଷ୍ମ କହିଲେ, ହେ ପୃଥିବୀପତେ ! ଯୁଧିଷ୍ଠିର ! ସମୃଦ୍ଧ ବା ଅସମୃଦ୍ଧ, ଶୁଭ ବା ଅଶୁଭ ବଂଶରେ ଏହି ସଂସାରରେ ସମୁତ୍ପନ୍ନ ପ୍ରାଣୀଗଣ ଯେଉଁ ଭାବରେ ନିରତ ହୁଅନ୍ତି, ଆମ୍ଭ ନିକଟରୁ ତାହାର କାରଣ ଶ୍ରବଣ କର । ତୁମ୍ଭେ ଆମ୍ଭଙ୍କୁ ଏହା ଉତ୍ତମ ପ୍ରଶ୍ନ କରିଅଛ । ୫ । ହେ ରାଜନ୍ ଯୁଧିଷ୍ଠିର ! ଏହି ବିଷୟରେ ଦ୍ୱୈପାୟନ ଓ କୀଟର ସଂବାଦ ସମ୍ବଳିତ ସେହି ଇତିହାସ ବର୍ଣ୍ଣନ କରୁଅଛୁଁ । ୬ ।

ପୂର୍ବକାଳରେ ବ୍ରାହ୍ମଣଶ୍ରେଷ୍ଠ କୃଷ୍ଣ ଦ୍ୱୈପାୟନ ବ୍ରହ୍ମସ୍ୱରୂପରେ ବିଚରଣ କରୁ କରୁ, ଶକଟପଥରେ ଶୀଘ୍ର ଧାବମାନ ଗୋଟିଏ କୀଟକୁ ଅବଲୋକନ କଲେ । ୭ । ସର୍ବଭୂତଗଣଙ୍କର ଗତିଜ୍ଞ ଓ ଶରୀରଧାରୀ-ମାନଙ୍କର ଭାଷାଜ୍ଞ, ସର୍ବଜ୍ଞ, ସେହି ବେଦବ୍ୟାସ ତତ୍କାଳରେ କୀଟ ଦର୍ଶନ କରି କହିଲେ (୮) , ହେ କୀଟ ! ତୁମ୍ଭେ ଅତି ସନ୍ତ୍ରସ୍ତ ଓ ତ୍ୱରାଯୁକ୍ତ ଲକ୍ଷିତ ହେଉଅଛ ! ଧାବିତ ହୋଇ କେଉଁ ସ୍ଥାନକୁ ଯାଉଅଛ, ତୁମ୍ଭର କାହାଠାରୁ ଭୟ ଉପସ୍ଥିତ ହୋଇଅଛି ? ତାହା କହ । ୯ ।

କୀଟ କହିଲା, ହେ ମହାମତେ ! ଏହି ବୃହତ୍ ଶକଟର ଶବ୍ଦ ଶ୍ରବଣ କରି ଆମ୍ଭର ଭୟ ଜନ୍ମୁଅଛି । ଏହି ଅତି ଦାରୁଣ ଶବ୍ଦ ଶୁଣାଯାଉଅଛି । ଏ କାଳେ ଆମ୍ଭଙ୍କୁ ନଷ୍ଟ କରିବ, ଏହି ଭୟରେ ଆମ୍ଭେ ଏହି ସ୍ଥାନରୁ ପଳାୟନ କରୁଅଛୁ । ସୁମହତ୍ ଭାରବାହୀ, କଶାଘାତଦ୍ୱାରା ତାଡ଼ିତ, ବଳୀବର୍ଦ୍ଦମାନଙ୍କର ଏହି ନିଃଶ୍ୱାସଶବ୍ଦକୁ ଶ୍ରବଣ କରୁଅଛୁ ଏବଂ ଶକଟ-ଚାଳକ ନରଗଣଙ୍କର ସନ୍ନିକର୍ଷ ହେତୁରୁ ବିବିଧ ନିଃସ୍ୱନ ଶ୍ରୁତିବିବରରେ ପ୍ରବିଷ୍ଟ ହେଉଅଛି । ୧୨ । ଆମ୍ଭ ସଦୃଶ କୀଟ ଈଦୃଶ ଶବ୍ଦ ଶୁଣିବାକୁ ସମର୍ଥ ନୁହେଁ, ଅତଏବ ଏହି ଅତି ଦାରୁଣ ଭୟବଶରୁ ଆମ୍ଭେ ଏ ସ୍ଥାନରୁ ସ୍ଥାନାନ୍ତରକୁ ଯାଉଅଛୁ । ୧୩ । ଜୀବଗଣଙ୍କର ମୃତ୍ୟୁ କେବଳ ଦୁଃଖ, ଜୀବନ ଅତି ଦୁର୍ଲ୍ଲଭ ଅଟେ । ଏହି ହେତୁରୁ ଆମ୍ଭେ ପଳାୟନ କରୁଅଛୁ ଏବଂ ସୁଖମୟ ଜୀବନ ପରିତ୍ୟାଗପୂର୍ବକ ଦୁଃଖମୟ ମରଣ ଲାଭ କରିବାକୁ ଆମ୍ଭର ପ୍ରବୃତ୍ତି ହେଉନାହିଁ । ୧୪ ।

ଭୀଷ୍ମ କହିଲେ, ହେ ମହାରାଜ ! ବ୍ୟାସଦେବ କୀଟଠାରୁ ଏହି ବାକ୍ୟ ଶ୍ରବଣ କରି ତାହାକୁ କହିଲେ, ହେ କୀଟ ! ତୁମ୍ଭର ସୁଖ କେଉଁଠାରେ ଅଛି ? ଆମ୍ଭେ ବିବେଚନା କରୁଅଛୁ ତୁମ୍ଭେ ତିର୍ଯ୍ୟକ୍‌ଯୋନିରେ ଜନ୍ମଗ୍ରହଣ କରିଅଛ, ଅତଏବ ମରଣ ତୁମ୍ଭର ସୁଖ ଅଟେ । ୧୫ । ହେ କୀଟ ! ତୁମ୍ଭେ ଶବ୍ଦ ସ୍ପର୍ଶ ରସ ଗନ୍ଧ ଏବଂ ବହୁବିଧ ଉତ୍କୃଷ୍ଟ ଭୋଗ୍ୟ ବସ୍ତୁସମୂହ ଭୋଗ କରି ଜାଣ ନାହିଁ, ଅତଏବ ମରଣ ତୁମ୍ଭର ଶ୍ରେୟସ୍କର ଅଟେ । ୧୬ ।

କୀଟ କହିଲା, ହେ ମହାପ୍ରାଜ୍ଞ ! ଜୀବଗଣଙ୍କର ଇହଲୋକରେ ସୁଖ ଭୋଗ କରିବାକୁ ଆସକ୍ତି ଅଛି, ଅତଏବ ଏହି ଶରୀରରେ ଆମ୍ଭର ସୁଖ ଅଛି ବୋଲି ଆମ୍ଭେ ଜାଣୁଅଛୁ, ଏହି ନିମିତ୍ତ ଜୀବିତ ହେବାକୁ ଅଭିଳାଷ କରୁଅଛୁ । ଏହି କୀଟଶରୀରରେ ଦେହାନୁସାରେ ସମସ୍ତ ବିଷୟ ପ୍ରବର୍ତ୍ତିତ ହେଉଅଛି, ମନୁଷ୍ୟ ଓ ସ୍ଥାବର ଜୀବ ସମସ୍ତଙ୍କର ଭୋଗସମୂହ ବିଶେଷ

ରୂପେ ପୃଥକ୍ ପୃଥକ୍ ଅଛେ । ୧୮ । ହେ ପ୍ରଭୋ ! ଆମ୍ଭେ ପୂର୍ବଜନ୍ମରେ ବହୁ ଧନଶାଳୀ ଶୂଦ୍ର ଜାତୀୟ ମନୁଷ୍ୟ ଥିଲୁଁ, ଆମ୍ଭେ ବ୍ରହ୍ମନିଷ୍ଠ ହୋଇ ନୃଶଂସ, କୃପଣ, ବୃଦ୍ଧିଜୀବୀ (୧୯), ତୀକ୍ଷ୍ଣ ବାକ୍ୟଭାଷୀ, ଛଳଗ୍ରାହୀ ଏବଂ ସର୍ବତୋଭାବରେ ସମସ୍ତଙ୍କର ଦ୍ୱେଷ୍ଟା ଥିଲୁଁ, ପରସ୍ପରଙ୍କଠାରେ ଛଳନା କରି ପରସ୍ୱହରଣରେ ରତ ଥିଲୁ । ଗୃହ ମଧ୍ୟରେ ଭୃତ୍ୟ ଓ ଅତିଥି ପ୍ରଭୃତିଙ୍କୁ ପରିତ୍ୟାଗ କରି ସ୍ୱୟଂ ଅଗ୍ରେ ଭୋଜନ କରୁଥିଲୁଁ, ମାତ୍ସର୍ଯ୍ୟ ହେତୁ ସ୍ୱାଦୁକାମ ଓ ନୃଶଂସ ହୋଇ ଭୋଜନ କରିବାକୁ ଇଚ୍ଛୁକ ଥିଲୁ । ୨୧ । ଆମ୍ଭେ ପୂର୍ବଜନ୍ମରେ ଅର୍ଥକାମ ହୋଇ ଦେବତା ଓ ପିତୃପକ୍ଷ ନିମିତ୍ତ ଶ୍ରଦ୍ଧା ପୂର୍ବକ ଆହୃତ ଅନ୍ନ ପ୍ରଦାନ କରିନାହୁଁ । ଅଗ୍ରେ ଅନ୍ନଦାନ କରିବାକୁ ଇଚ୍ଛା କରି ସୁଦ୍ଧା ପରେ ତହିଁରୁ ନିବୃତ୍ତ ହେଉଁ ।୨୨। ଯେଉଁମାନେ ଗୁପ୍ତରେ ଶରଣାଗତ ହେବା ନିମିତ୍ତ ଆମ୍ଭଙ୍କୁ ଆଶ୍ରୟ କରନ୍ତି ଏବଂ ଯେଉଁମାନେ ଭୟବଶତଃ ଆମ୍ଭର ଶରଣାଗତ ହୁଅନ୍ତି, ଆମ୍ଭେ ଅକସ୍ମାତ୍ ସେମାନଙ୍କୁ ପରି-ତ୍ୟାଗ କରୁଥିଲୁଁ ; ଯେଉଁମାନେ ଅଭୟ ପ୍ରାର୍ଥନା କରନ୍ତି, ସେମାନଙ୍କୁ ପରିତ୍ରାଣ କରୁ ନ ଥିଲୁ । ୨୩ । ଅନ୍ୟ ବ୍ୟକ୍ତିମାନଙ୍କର ଧନଧାନ୍ୟ, ପ୍ରିୟ ପତ୍ନୀ, ଅଦ୍ଭୁତ ଯାନ ଏବଂ ବସନ ଓ ସମ୍ପତ୍ତି ଦେଖି ଆମ୍ଭେ ନିରର୍ଥକ ଅସୂୟା କରୁଥାଉଁ । ୨୪ । ଆମ୍ଭେ ଅନ୍ୟର ଐଶ୍ୱର୍ଯ୍ୟ ଇଚ୍ଛା ନ କରି ପରମ ସୁଖ ଦେଖିଲେ ଈର୍ଷା କରୁ । ନିଜ ଇଚ୍ଛାରେ ଅନ୍ୟର ଧର୍ମ, ଅର୍ଥ ଓ କାମ ବିଧ୍ୱସ୍ତ କରୁ । ୨୫ ।

ପୂର୍ବ ଜନ୍ମରେ ଆମ୍ଭେ ବହୁଳ ନୃଶଂସ ଗୁଣଯୁକ୍ତ କର୍ମ କରିଥିଲୁଁ । ଆପଣାର ପ୍ରିୟ ପୁତ୍ରକୁ ପରିତ୍ୟାଗ କଲେ ଯେଉଁପରି ପରିତାପ ହୁଏ, ଆମ୍ଭେ ସମ୍ପ୍ରତି ସେହି କର୍ମମାନ ସ୍ମରଣ କରି ତଦ୍ୱତ୍ ଅନୁତାପ କରୁଅଛୁଁ । ୨୬ । ଆମ୍ଭେ ଯେଉଁ ସତ୍ କର୍ମମାନଙ୍କର ଅନୁଷ୍ଠାନ କରିଥିଲୁଁ, ତାହାର କିଛି ଫଳ ଜାଣୁନାହୁଁ । ଆମ୍ଭଦ୍ୱାରା ବୃଦ୍ଧା ଜନନୀ ପୂଜିତା ହେଉଥିଲେ ଏବଂ ବ୍ରାହ୍ମଣଗଣ ଅର୍ଚ୍ଚିତ ହେଉଥିଲେ । ୨୭ । ଏକଦିନେ ଜାତିଗୁଣସମନ୍ୱିତ କୌଣସି ଅତିଥି ସଙ୍ଗତିକ୍ରମରେ ଆମ୍ଭ ଗୃହକୁ ଗମନ କରିଥିଲେ, ଆମ୍ଭେ ତାହାଙ୍କର ପୂଜା କରିଥିଲୁଁ । ସେହି ନିମିତ୍ତ ସ୍ମରଣ ଶକ୍ତି ଆମ୍ଭଙ୍କୁ ପରିତ୍ୟାଗ କରିନାହିଁ । ୨୮ । ହେ ତପୋଧନ ! ଆମ୍ଭେ କର୍ମଦ୍ୱାରା ଭବିଷ୍ୟତ ସୁଖକୁ ଲକ୍ଷ୍ୟ କରୁଅଛୁଁ, ଅତଏବ ଆପଣଙ୍କ ନିକଟରୁ ସେହି ଶ୍ରେୟ ଶୁଣିବା ନିମିତ୍ତ ଇଚ୍ଛା କରୁଅଛୁ । ୨୯ ।

---

# ଅଧ୍ୟାୟ--୧୧୮

ବ୍ୟାସ କହିଲେ—ହେ କୀଟ ! ତୁମ୍ଭେ ତିର୍ଯ୍ୟକ୍‌ଯୋନିରେ ଜନ୍ମଗ୍ରହଣ କରି ଶୁଭକର୍ମଦ୍ୱାରା ଯେ ମୁଗ୍ଧ ହୋଇନାହିଁ, ତାହା ଆମ୍ଭର କର୍ମ । ଆମ୍ଭେ ତପୋବଳରେ ଦର୍ଶନ ମାତ୍ରେ ତୁମ୍ଭଙ୍କୁ ଉଦ୍ଧାର କରିବୁଁ ; ତପୋବଳ ଅପେକ୍ଷା ଅନ୍ୟ କିଛି ଉତ୍କୃଷ୍ଟ ବଳ ନାହିଁ । ୨ । ଆମ୍ଭେ ଜାଣୁଅଛୁ, ତୁମ୍ଭେ ସ୍ୱୀୟକୃତ ପାପସମୂହଦ୍ୱାରା କୀଟାନୁକୀଟତା ପ୍ରାପ୍ତ ହୋଇଅଛ । ଯଦି ଧର୍ମରେ ଆସ୍ଥା କରିବ, ତେବେ ପୁନଶ୍ଚ ଧର୍ମ ପ୍ରାପ୍ତ ହେବ । ୩ । ଦେବତା ତିର୍ଯ୍ୟକ୍ ପ୍ରଭୃତି ସମସ୍ତେ କର୍ମଭୂମିରେ ଅନୁଷ୍ଠିତ ପାପପୁଣ୍ୟ କର୍ମର ଫଳ ଭୋଗ କରନ୍ତି । ନରଗଣଙ୍କର ଧର୍ମ ଓ ଗୁଣସମୂହ କାମ ନିମିତ୍ତ ହୁଏ । ୪ । ବାକ୍, ବୁଦ୍ଧି, ପାଣି, ପାଦବିହୀନ ମନୁଷ୍ୟ, ପଣ୍ଡିତ ଅବା ମୂର୍ଖ ଏମାନେ ଜୀବିତ ଥିବା ପର୍ଯ୍ୟନ୍ତ ଏମାନଙ୍କୁ କର୍ମଫଳ ପରିତ୍ୟାଗ କରେ ନାହିଁ । ୫ । ଦ୍ୱିଜବର ଜୀବିତ ଥିଲେ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ପୂଜା କରନ୍ତି ଏବଂ ପବିତ୍ର କଥା କହନ୍ତି ; ଅତଏବ ହେ କୀଟ ! ଆମ୍ଭେ ତୁମ୍ଭଙ୍କୁ ସେହି ବ୍ରାହ୍ମଣଯୋନିରେ ପ୍ରବେଶ କରାଇବୁ । ୬ । ତୁମ୍ଭେ ସେହି ବ୍ରାହ୍ମଣକୁଳରେ ଜନ୍ମପରିଗ୍ରହ କରି ଅନାୟାସରେ ରୂପରସାଦି ବିଷୟ ଉପଭୋଗ କରିବ । ଏହି ସମୟରେ ଆମ୍ଭେ ତୁମ୍ଭଙ୍କୁ ବ୍ରହ୍ମବିଦ୍ୟା ପ୍ରଦାନ କରିବୁଁ ଏବଂ ତୁମ୍ଭେ ଯେଉଁ ଲୋକକୁ ଯିବା ନିମିତ୍ତ ଅଭିଳାଷ କରିବ, ଆମ୍ଭେ ସେଠାକୁ ତୁମ୍ଭଙ୍କୁ ନେଇଯିବୁଁ ।

ମହର୍ଷି ବ୍ୟାସଦେବ ଏହି କଥା କହିବାରୁ କୀଟ ତାହାଙ୍କ ବାକ୍ୟରେ ସମ୍ମତ ହୋଇ ପଥ ମଧ୍ୟରେ ଅବସ୍ଥାନ କଲା । ଏହି ଅବସର ମଧ୍ୟରେ ଦୈବଗତିରେ ଅତି ବୃହତ୍ ଶକଟସମୂହ ସମାଗତ ହୁଅନ୍ତେ ଚକ୍ରର ଆକ୍ରମଣଦ୍ୱାରା ସେହି କୀଟ ବିଦଳିତ ହୋଇ ପ୍ରାଣତ୍ୟାଗ କଲା । ଅପରିମିତ ତେଜୋନିଧାନ ବ୍ୟାସଦେବଙ୍କ ପ୍ରସାଦରୁ ସେହି କୀଟ ନାନାଯୋନିରେ ଜନ୍ମଗ୍ରହଣ ପୂର୍ବକ ପରିଶେଷରେ କ୍ଷତ୍ରିୟକୁଳରେ ପ୍ରସୂତ ହେଲା । ୯ । ସେ କ୍ରମେ କ୍ରମେ ଶଲ୍ଲକୀ, ଗୋଧା, ବରାହ, ମୃଗ, ପକ୍ଷୀ, ଚଣ୍ଡାଳ, ଶୂଦ୍ର ଓ ବୈଶ୍ୟଯୋନିରେ ପରିଭ୍ରମଣ କରି ପରିଶେଷରେ କ୍ଷତ୍ରିୟକୁଳରେ ଜନ୍ମଗ୍ରହଣ କଲା । ପୂର୍ବୋକ୍ତ ଶଲ୍ଲକୀ ପ୍ରଭୃତି ସମସ୍ତ ଯୋନିରେ ସେ ବେଦବ୍ୟାସଙ୍କ ସହିତ ସାକ୍ଷାତ୍କାର କରିଥିଲା । କ୍ଷତ୍ରିୟଯୋନିରେ ଜନ୍ମଗ୍ରହଣ କରି ସେ

ପୂର୍ବବତ୍ ବ୍ୟାସଦେବଙ୍କ ନିକଟକୁ ଗମନ ପୂର୍ବକ ତଦୀୟ ଚରଣରେ ନିପତିତ ହୋଇ କୃତାଞ୍ଜଳିପୁଟରେ କହିଲେ—

ହେ ଭଗବନ୍ ! ଆମ୍ଭେ ଦଶ ଜନ୍ମରେ ଏହି ଅଭିଲଷିତ ଅତୁଳ-ପଦ ପ୍ରାପ୍ତ ହୋଇଅଛୁଁ, କାରଣ ଆମ୍ଭେ କୀଟତ୍ୱ ଲାଭ କରି ରାଜପୁତ୍ର ହୋଇଅଛୁଁ, ସୁବର୍ଣ୍ଣମାଳାସମନ୍ୱିତ ଅତି ବଳସମ୍ପନ୍ନ ହସ୍ତିଗଣ ଆମ୍ଭଙ୍କୁ ବହନ କରୁଅଛନ୍ତି ଏବଂ ରଥରେ ନିଯୋଜିତ କାମ୍ବୋଜଦେଶୀୟ ବାଜୀଗଣ ଏବଂ ଉଷ୍ଟ୍ର ଓ ଅଶ୍ୱତରଯୋନିଜାତ ଯାନସମୂହ ଆମ୍ଭଙ୍କୁ ବହନ କରିବାକୁ ପ୍ରସ୍ତୁତ ଅଛନ୍ତି; ଆମ୍ଭେ ବାନ୍ଧବ ଓ ଅମାତ୍ୟବର୍ଗଙ୍କ ସହିତ ମାଂସଯୁକ୍ତ ଅନ୍ନ ଭକ୍ଷଣ କରୁଅଛୁଁ । ୧୪ । ହେ ମହାଭାଗ ! ସମୀରସଞ୍ଚାରସମନ୍ୱିତ ସୌଧସମୂହରେ ମହାମୂଲ୍ୟ ସୁଖଶୟନରେ ସୁପୂଜିତ ହୋଇ ଶୟନ କରୁଅଛୁଁ । ପ୍ରିୟବାଦୀ ଦେବଗଣ ଯେଉଁପରି ଦେବଗଣଙ୍କୁ ସ୍ତବ କରନ୍ତି, ସେହିପରି ସୂତ, ମାଗଧ, ବନ୍ଦୀଗଣ ଆମ୍ଭଙ୍କୁ ପ୍ରଭାତରେ ସ୍ତୁତି କରୁଅଛନ୍ତି । ୧୬ । ଆପଣ ସତ୍ୟସନ୍ଧ ଏବଂ ଅପରିମିତ ତେଜସ୍ୱୀ ଅଟନ୍ତି । ଆପଣଙ୍କ ପ୍ରସାଦରୁ ଆମ୍ଭେ କୀଟଜନ୍ମଠାରୁ ରାଜପୁତ୍ରତ୍ୱ ପ୍ରାପ୍ତ ହୋଇଅଛୁ, ଆମ୍ଭେ କେଉଁ କାର୍ଯ୍ୟ କରିବୁଁ ତାହା ଆପଣ ଆମ୍ଭଙ୍କୁ ଆଦେଶ କରନ୍ତୁ । ଆମ୍ଭେ ଆପଣଙ୍କ ତପୋବଳଦ୍ୱାରା ନିର୍ଦ୍ଦିଷ୍ଟ ଏହି ପଦ ପ୍ରାପ୍ତ ହୋଇଅଛୁଁ ।୧୮।

ବ୍ୟାସ କହିଲେ, ହେ ରାଜନ୍ ! ଅଦ୍ୟ ଆମ୍ଭେ ଦୈବଗତିରେ ତୁମ୍ଭ ବାକ୍ୟଦ୍ୱାରା ଅର୍ଚ୍ଚିତ ହେଲୁଁ । କୀଟତ୍ୱ ପ୍ରାପ୍ତ ହୋଇଥିବା ସମୟରେ ତୁମ୍ଭର ସ୍ମରଣଶକ୍ତି କଳୁଷିତ ହୋଇଯାଇଥିଲା । ୧୯ ।

ଯାହା ହେଉ ତୁମ୍ଭେ ପୂର୍ବେ ଶୂଦ୍ରଯୋନିରେ ଆତତାୟୀ, ନୃଶଂସ ଓ ଧନାଢ୍ୟ ଥିଲ । ସେହି ସମୟରେ ଯେଉଁ ପାପସମୂହ ସଞ୍ଚୟ କରିଥିଲ, ଅଦ୍ୟାପି ତୁମ୍ଭର ସେହି ପାପ ଧ୍ୱଂସ ହୋଇନାହିଁ । ୨୦ । ତୁମ୍ଭେ ତିର୍ଯ୍ୟକ୍-ଯୋନିରେ ଜନ୍ମଗ୍ରହଣ କରି ଯେ ଆମ୍ଭର ଅର୍ଚ୍ଚନା କରିଥିଲ, ସେହି ସୁକୃତିଦ୍ୱାରା ଆମ୍ଭର ଦର୍ଶନ ଲାଭ କରିଅଛ । ୨୧ । ତୁମ୍ଭେ ରଣାଙ୍ଗନରେ ଗୋବ୍ରାହ୍ମଣଙ୍କ ନିମିତ୍ତ ନିଜ ପ୍ରାଣ ପ୍ରଦାନପୂର୍ବକ ରାଜପୁତ୍ରତ୍ୱ ରୂପରେ ଆପଣାକୁ ହତକରି ବ୍ରାହ୍ମଣତ୍ୱ ପ୍ରାପ୍ତ ହେବ । ୨୨ । ହେ ରାଜପୁତ୍ର ! ତୁମ୍ଭେ ଅନାୟାସରେ ଆପ୍ତଦକ୍ଷିଣ ଯଜ୍ଞସମୂହ ନିର୍ବାହ କରି ସ୍ୱର୍ଗପୁରରେ ସୁଖଭୋଗ କରି ପରିଶେଷରେ ଅବ୍ୟୟ ବ୍ରହ୍ମମୟ ହେବ । ୨୩ । ତିର୍ଯ୍ୟକ୍‌ଯୋନିରୁ

ଶୂଦ୍ରତ୍ୱ ପ୍ରାପ୍ତ ହୁଏ, ଶୂଦ୍ରତ୍ୱରୁ ବୈଶ୍ୟ ଓ ବୈଶ୍ୟତ୍ୱରୁ କ୍ଷତ୍ରିୟ, ବ୍ରାହ୍ମଣତ୍ୱ ପ୍ରାପ୍ତ ହୁଅନ୍ତି ଏବଂ ସତ୍ତ୍ୱସ୍ୱଭାବ ସୁଶୀଳ ବ୍ରାହ୍ମଣ ପରିଶେଷ ସ୍ୱର୍ଗଲାଭ କରନ୍ତି ।୨୪।

---

## ଅଧ୍ୟାୟ—୧୧୯

ଭୀଷ୍ମ କହିଲେ—ହେ ରାଜନ୍ ! ସେହି ବୀର୍ଯ୍ୟବାନ୍ କୀଟ, କ୍ଷତ୍ରିୟ ଧର୍ମପ୍ରାପ୍ତ ହୋଇ ପୂର୍ବ ବୃତ୍ତାନ୍ତ ସ୍ମରଣ କରି କୀଟତ୍ୱ ପରିତ୍ୟାଗପୂର୍ବକ ବିପୁଳ ତପଶ୍ଚରଣ କରିଥିଲେ ।୧। ସେହି ଧର୍ମାର୍ଥବେତ୍ତାଙ୍କ ତାଦୃଶ ସୁମହତ୍ ତପସ୍ୟା ଦର୍ଶନ କରି ତେତେବେଳେ ଦ୍ୱିଜଶ୍ରେଷ୍ଠ ବ୍ୟାସଦେବ, ତାହାଙ୍କ ନିକଟକୁ ଆଗମନ କଲେ । ୨ ।

ବ୍ୟାସଦେବ କହିଲେ, ହେ କୀଟ ! କ୍ଷତ୍ରିୟ ଧର୍ମ ସର୍ବଭୂତଗଣଙ୍କର ପରିପାଳନ ହେତୁ ଦେବବ୍ରତ ଅଟେ । ଅତଏବ କ୍ଷତ୍ରିୟ ଧର୍ମକୁ ଦେବବ୍ରତ ରୂପେ ଧ୍ୟାନ କଲେ ତପୃରେ ବିପ୍ରତ୍ୱ ପ୍ରାପ୍ତ ହେବ ।୩। ତୁମ୍ଭେ ଶୁଭାଶୁଭବେତ୍ତା ଓ ଆତ୍ମବାନ୍ ହୋଇ ଉତ୍ତମରୂପେ ପ୍ରଜାଗଣଙ୍କୁ ପାଳନ କର, ପରିଶେଷ ଶୁଭକାମ ଦ୍ୱାରା ଅଶୁଭ ସମୂହର ପରିହାର କର । ୪ ।ସ୍ୱଧର୍ମାଚରଣରେ ରତ ହୋଇ ଆତ୍ମବାନ୍ ଓ ଉତ୍ତମ ପ୍ରୀତିଯୁକ୍ତ ହୁଅ ; ତଦନନ୍ତର କ୍ଷତ୍ରିୟଦେହ ପରିତ୍ୟାଗପୂର୍ବକ ବିପ୍ରତ୍ୱ ପ୍ରାପ୍ତ ହେବ । ୫ ।

ଭୀଷ୍ମ କହିଲେ, ହେ ନୃପସତ୍ତମ ଯୁଧିଷ୍ଠିର ! ସେହି କୀଟ, ମହର୍ଷି କୃଷ୍ଣ ଦ୍ୱୈପାୟନଙ୍କ ବାକ୍ୟ ଶ୍ରବଣ କରି ଧର୍ମାନୁସାରେ ପ୍ରଜାପାଳନଦ୍ୱାରା ପୁନଶ୍ଚ ଅରଣ୍ୟ ଗମନପୂର୍ବକ ପ୍ରଜାପାଳନଦ୍ୱାରା ପରଲୋକକୁ ଗମନ କରି ଅଳ୍ପକାଳ ମଧ୍ୟରେ ବିପ୍ରତ୍ୱ ପ୍ରାପ୍ତ ହେଲେ । ୭ ।

ତଦନନ୍ତର ମହାଯଶା ମହାପ୍ରାଜ୍ଞ କୃଷ୍ଣ ଦ୍ୱୈପାୟନ ତେତେବେଳେ ତାହାଙ୍କୁ ବ୍ରାହ୍ମଣ ଦେଖି ପୁନଶ୍ଚ ତପାସ୍ନ ନିକଟକୁ ଆଗମନ କଲେ ।୮। ବ୍ୟାସଦେବ କହିଲେ, ଭୋ ଭୋ ଶ୍ରୀମାନ୍ ବିପ୍ରବର ! ତୁମ୍ଭେ ଶୁଭଯୋନିରେ ଶୁଭକାର୍ଯ୍ୟ କରିଅଛ ଏବଂ ପାପଯୋନରେ ପାପକାର୍ଯ୍ୟ କରିଅଛ, ଅତଏବ କଦାପି ବ୍ୟଥିତ ହୁଅ ନାହିଁ ।୯ ।

ହେ ଧର୍ମଜ୍ଞ ! ଯେଉଁପରି ହେଉ, ପାପର ଫଳ ଉତ୍ପନ୍ନ ହୁଏ । ଅତଏବ ହେ କୀଟେ ! ତନ୍ନିମିତ୍ତ ତୁମ୍ଭେ ମୃତ୍ୟୁଭୟବଶତଃ କଦାପି ବ୍ୟଥିତ

ହୁଅନା । ୧୦ । ତୁମ୍ଭର ଯଦି ଧର୍ମ ଲୋପ ବିଷୟରେ ଭୟ ହୁଏ, ତେବେ ଉତ୍ତମ ଧର୍ମ ଆଚରଣ କର । କୀଟ କହିଲା, ଭଗବନ୍ ! ଆପଣଙ୍କ ହେତୁରୁ ଆମ୍ଭେ ସୁଖ ଅପେକ୍ଷା ଅଧିକ ସୁଖ ଲାଭ କରିଅଛୁ । ୧୧ । ଧର୍ମମୂଳ ସମ୍ପତ୍ତି-ସମୂହ ଲାଭ କରିବାରୁ ଏତେବେଳେ ଆମ୍ଭର ପାପ ନଷ୍ଟ ହୋଇଅଛି । ଭୀଷ୍ମ କହିଲେ, ରାଜନ୍ ! କୀଟ ଭଗବାନ ବ୍ୟାସଦେବଙ୍କ ବାକ୍ୟାନୁସାରେ ଦୁର୍ଲଭ ବ୍ରାହ୍ମଣ୍ୟ ପ୍ରାପ୍ତ ହୋଇ ପୃଥିବୀକୁ ଶତ ଶତ ଯଜ୍ଞ ଯୂପଦ୍ୱାରା ଅଙ୍କିତ କଲେ । ହେ ପାର୍ଥ ! ତଦନନ୍ତର ସେହି ବ୍ରହ୍ମଜ୍ଞଶ୍ରେଷ୍ଠ କୀଟ, ବ୍ରହ୍ମସାଲୋକ୍ୟ ଲାଭ କରି ବ୍ୟାସଦେବଙ୍କ ବଚନାନୁସାରେ ତେତେବେଳେ ସ୍ୱକର୍ମ ଫଳ ନିବୃତ୍ତ ସନାତନ ବ୍ରହ୍ମପଦ ପ୍ରାପ୍ତ ହେଲେ । ୧୪ । ହେ ପୁତ୍ର ! ତୁମ୍ଭ ପ୍ରଭାବ ଦ୍ୱାରା ଯେଉଁ କ୍ଷତ୍ରିୟସମୂହ ହତ ହୋଇଅଛନ୍ତି, ସେମାନେ ପବିତ୍ର ଗତି ପ୍ରାପ୍ତ ହୋଇଅଛନ୍ତି; ଅତଏବ ତୁମ୍ଭେ ସେମାନଙ୍କ ନିମିତ୍ତ ଶୋକ କର ନାହିଁ । ୧୫ ।

---

## ଅଧ୍ୟାୟ—୧୨୦

ଯୁଧିଷ୍ଠିର କହିଲେ—ହେ ସାଧୁଶ୍ରେଷ୍ଠ ପିତାମହ ! ବିଦ୍ୟା, ତପସ୍ୟା, ଦାନ ଏହି ତିନିଗୁ ମଧ୍ୟରେ କିଏ ଶ୍ରେଷ୍ଠ ? ଏହି କଥା ଆମ୍ଭେ ଆପଣଙ୍କୁ ପ୍ରଶ୍ନ କରୁଅଛୁ, ଆପଣ ଆମ୍ଭ ନିକଟରେ ତାହା କୀର୍ତ୍ତନ କରନ୍ତୁ । ୧ ।

ଭୀଷ୍ମ କହିଲେ, ଏହି ବିଷୟରେ ପ୍ରାଚୀନ ପଣ୍ଡିତଗଣ ମୈତ୍ରେୟ ଓ କୃଷ୍ଣ ଦ୍ୱୈପାୟନଙ୍କ ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି । ୨ । ହେ ରାଜନ୍ ! କୃଷ୍ଣ ଦ୍ୱୈପାୟନ ଅଜ୍ଞାତଚରିତ ରୂପେ ବିଚରଣ କରି ବାରାଣସୀ ନଗରୀରେ ମୁନିମଣ୍ଡଳମଧ୍ୟରେ ଅଜ୍ଞାତଚରିତ ମୈତ୍ରେୟ ମୁନିଙ୍କ ନିକଟରେ ଉପସ୍ଥିତ ହେଲେ । ୩ । ମୁନିଶ୍ରେଷ୍ଠ ମୈତ୍ରେୟ ତାହାଙ୍କୁ ସମାଗତ ଓ ସମାସୀନ ଜାଣି ଅର୍ଚ୍ଚନା କରି ଉତ୍କୃଷ୍ଟ ଭୋଜନ-ସାମଗ୍ରୀ ସମୂହ ଭୋଜନ କରାଇଲେ । ୪ । ମହାମନା କୃଷ୍ଣଦ୍ୱୈପାୟନ ସେହି ଉତ୍କୃଷ୍ଟ ସୁଗନ୍ଧଯୁକ୍ତ ସାର୍ବକାମିକ ଉତ୍ତମ ଅନ୍ନ ଭୋଜନ କରି ସ୍ଥିତ ହୋଇ ପ୍ରୀତ ଓ ହୃଷ୍ଟଚିତ୍ତ ହେଲେ । ୫ ।

ମୈତ୍ରେୟ ସେହି କୃଷ୍ଣଦ୍ୱୈପାୟନଙ୍କୁ ବିସ୍ମୟାବିଷ୍ଟ ଦେଖି କହିଲେ, ଧର୍ମାତ୍ମନ୍ ! ଆପଣ କାହିଁକି ବିସ୍ମୟାପନ୍ନ ହେଲେ, ତାହାର କାରଣ କହିବା ହେଉନ୍ତୁ । ୭ । ହେ ବିଦ୍ୱନ୍ ! ଆପଣ ତପସ୍ୱୀ ଓ ଧୃତିମାନ୍, ଅତଏବ ଆପଣଙ୍କର କାହିଁକି ପ୍ରମୋଦ ହେଲା ? ଆମ୍ଭେ ଅଭିବାଦନ ଓ ପ୍ରଣାମ କରି ଏହା ପ୍ରଶ୍ନ କରୁଅଛୁ ; ଏହା ଆପଣଙ୍କର ତପୋଭାଗ୍ୟ ଅଥବା ମହାଭାଗ୍ୟ ? କାରଣ ଆଶ୍ଚର୍ଯ୍ୟଦର୍ଶନ ବ୍ୟତିରେକେ ବିସ୍ମୟ ଜାତ ହୁଏ ନାହିଁ । ଉପାଧି-ପରିଚ୍ଛିନ୍ନ ଜୀବ ଏବଂ ଅନୁପାଧିକ ବ୍ରହ୍ମ, ସେ ଉଭୟଙ୍କୁ ପୃଥକ୍ ଆଚରଣ କଲେ ଜୀବନ୍ମୁକ୍ତ ଏବଂ ମୁକ୍ତାମୁକ୍ତ ଉଭୟାତ୍ମକ ଆତ୍ମ ଅପେକ୍ଷା ଆମ୍ଭେ ଆପଣଙ୍କୁ ଅଲ୍ପାନ୍ତର ଜ୍ଞାନ କରୁଅଛୁ, କାରଣ ଆପଣ ଆତ୍ମ ଭାଗ୍ୟ ଦେଖି ବିସ୍ମିତ ହୋଇଅଛନ୍ତି । ଅତଏବ ଆମ୍ଭେ ଆପଣଙ୍କ ଅପେକ୍ଷା ଆପଣାକୁ ଅଲ୍ପାନ୍ତର ରୂପେ ଅନୁମାନ କରୁଅଛୁ ଏବଂ ମିତ୍ର ବଂଶ ଅପେକ୍ଷା ଆପଣଙ୍କୁ ବିଶିଷ୍ଟ ବୋଲି ଜ୍ଞାନ କରୁଅଛୁ । ୮ ।

ବ୍ୟାସ କହିଲେ, ମଶକ କର୍ତ୍ତୃକ ସମୁଦ୍ର ଶୋଷଣସଦୃଶ ଅତ୍ୟନ୍ତ ଅଶକ୍ୟ ବିଷୟ ଅତି ଛନ୍ଦ ଅତି ବାଦଦ୍ୱାରା ଏହି ବିସ୍ମୟ ସମ୍ୟକ୍‌ରୂପେ ଉପାଗତ ହୋଇଅଛି; ବେଦବଚନ ସତ୍ୟ ନୁହେଁ, ଏହା ଅବା କେଉଁପରି ସମ୍ଭବ ହେବ ? ବେଦ କେଉଁ କାରଣରୁ ମିଥ୍ୟା କହି ହେବ ? ଅର୍ଥାତ୍ ଏହି ସ୍ଥାନ ଯତ୍ନଶତ ବିଧାନଦ୍ୱାରା ପ୍ରାପ୍ୟ, ଏ ରୂପ ବେଦବଚନ ସତ୍ୟ, କିନ୍ତୁ ଜଳମାତ୍ର ଦାନଦ୍ୱାରା ତତ୍‌ପ୍ରାପ୍ତି ଦର୍ଶନ ହେଉଅଛି । ଅଳ୍ପ ମଧ୍ୟ ଦେଶକାଳପାତ୍ରଶ୍ରଦ୍ଧା ହେତୁରୁ ମହତ୍ତମତ୍ୱକୁ ନଳଦୌକ୍ତିକ ନ୍ୟାୟରେ ପ୍ରାପ୍ତ ହୁଏ, ଅତଏବ ବେଦ ଅନୃତବାଦୀ ନୁହେଁ । ୯ । ପୁରୁଷଙ୍କର ଏହି ତିନିଗୋଟି ବିଷୟକୁ ପଣ୍ଡିତଗଣ ଉତ୍ତମ ବ୍ରତ ବୋଲି କହନ୍ତି । କାହାଠାରେ ଦ୍ରୋହାଚରଣ କରିବ ନାହିଁ, ଦାନ କରିବ, କେବଳ ସତ୍ୟ କଥା କହିବ । ୧୦ । ପ୍ରଥମରେ ଋଷିଗଣଙ୍କଦ୍ୱାରା ଏହି ବେଦୋକ୍ତବିଧି ପରିକଳ୍ପିତ ହୋଇଅଛି । ସମ୍ପ୍ରତି ଆମ୍ଭମାନଙ୍କର ଏହା କର୍ତ୍ତବ୍ୟ, ଏବଂ ପୂର୍ବେ ମଧ୍ୟ ଏହା ଶୁଣାଥିଲା । ୧୧ ।

ଅବଶ୍ୟ କର୍ତ୍ତବ୍ୟ ଦାନ ଅଳ୍ପ ହେଲେ ସୁଦ୍ଧା ମହା ଫଳଜନକ ହୁଏ । ତୁମ୍ଭେ ଅସୂୟାଶୂନ୍ୟ ହୃଦୟରେ ତୃଷିତ ବ୍ୟକ୍ତିଙ୍କୁ ଜଳଦାନ କରିଅଛ । ତୁମ୍ଭେ ତୃଷିତ ହେଲେ ସୁଦ୍ଧା ଆମ୍ଭଙ୍କୁ ତୃଷିତ ଜାଣି ଏହି ଅନ୍ନ ଦାନ କରିଅଛ । ଅତଏବ ମହାଯଜ୍ଞଦ୍ୱାରା ଯେଉଁ ସମସ୍ତ ଲୋକ ଜୟ ହୁଏ, ତୁମ୍ଭେ ଏହି ଅନ୍ନଦ୍ୱାରା ସେହି ସମସ୍ତ ଉତ୍କୃଷ୍ଟ ଲୋକ ଜୟ କରିଅଛ,

ଅତଏବ ତୁମ୍ଭର ପବିତ୍ର ଦାନ ଓ ତପସ୍ୟାଦ୍ୱାରା ପ୍ରୀତ ଏବଂ ବର୍ଦ୍ଧିତ ହୋଇଅଛୁଁ । ତୁମ୍ଭର ସତ୍ତ୍ୱ ଗୁଣ ହେତୁରୁ ତୁମ୍ଭର ଦର୍ଶନ ମଧ୍ୟ ପୁଣ୍ୟ ସାପେକ୍ଷ । ୧୪ । ତୁମ୍ଭର ବିଧାନଜନିତ କର୍ମ ପୁଣ୍ୟଗନ୍ଧଯୁକ୍ତ ବୋଲି ବିବେଚନା କରୁଅଛୁଁ । ହେ ତାତ ! ତୀର୍ଥ ସ୍ନାନ ଓ ବେଦବ୍ରତ ସମାପନାପେକ୍ଷା ତୁମ୍ଭର ଦର୍ଶନ ପ୍ରଭୃତି ଅତି ପବିତ୍ର ଅଟେ । ୧୫ ।

ହେ ଦ୍ୱିଜ ! ସମସ୍ତ ପବିତ୍ର ବିଷୟ ଅପେକ୍ଷା ଦାନ ପରମଶୁଭ ।୧୬। ତୁମ୍ଭେ ଯେଉଁ ସବୁ ଉତ୍କୃଷ୍ଟ ବେଦୋକ୍ତ ବିଧାନର ପ୍ରଶଂସା କରୁଅଛ, ସେମାନଙ୍କ ଅପେକ୍ଷା ଦାନ ଉତ୍କୃଷ୍ଟ, ଏ ବିଷୟରେ ଆମ୍ଭର ସଂଶୟ ନାହିଁ । ୧୭ । ଦାତୃଗଣ ଯେଉଁ ପଥ ନିର୍ମାଣ କରିଅଛନ୍ତି, ପଣ୍ଡିତମାନେ ସେହି ପଥରେ ଗମନ କରନ୍ତି । ସେହିମାନେ ପ୍ରାଣଦାତା, ସେହି-ମାନଙ୍କଠାରେ ଧର୍ମ ପ୍ରତିଷ୍ଠିତ । ୧୮ । ସୁନ୍ଦରରୂପେ ଅଧୀତ ବେଦସମୂହ ଯେଉଁପରି ଉତ୍କୃଷ୍ଟ, ଯେଉଁପରି ଇନ୍ଦ୍ରିୟସଂଯମ ଶ୍ରେଷ୍ଠ ଏବଂ ସର୍ବ ତ୍ୟାଗ ଯେପରି ବିଶିଷ୍ଟ, ଦାନ ତଦ୍‌ବତ୍ ଅତି ଉତ୍କୃଷ୍ଟ ଅଟେ । ୧୯ । ହେ ତାତ ! ତୁମ୍ଭେ ମହାନ୍ ବୁଦ୍ଧିଶାଳୀ ଅଟ, ଅନାୟାସରେ ଶୋଭନ ସୁଖ ଲାଭ କରିବ, କାରଣ ବୁଦ୍ଧିମାନ ଜନ ସୁଖ ଅପେକ୍ଷା ଅତିଶୟ ସୁଖ ପ୍ରାପ୍ତ ହୁଅନ୍ତି । ୨୦ । ଆମ୍ଭମାନଙ୍କ ସାକ୍ଷାତ୍ତରେ ଏହା ନିଃସଂଶୟରୂପେ ଉପଲବ୍‌ଧ ହେଲା ।

ଅର୍ଥସମୃଦ୍ଧ ଦାନ ଓ ଯଜ୍ଞସମୃଦ୍ଧ ଶ୍ରୀମାନ ପୁରୁଷଙ୍କୁ ଯଥା ସୁଖରେ ପ୍ରାପ୍ତ ହୁଅନ୍ତି । ୨୧ । ହେ ମହାପ୍ରାଜ୍ଞ ! ସୁଖ ଉତ୍ତାରେ ଦୁଃଖ, ଦୁଃଖ ଉତ୍ତାରେ ସୁଖ, ସ୍ୱଭାବତଃ ସର୍ବଦା ଦେଖାଯାଏ । ୨୨ । ମନୀଷିଗଣ ନରବୃନ୍ଦଙ୍କୁ ତ୍ରିବିଧ ବୃତ୍ତିଶାଳୀ ବୋଲି କୀର୍ତ୍ତନ କରନ୍ତି । ନରଗଣଙ୍କ ମଧ୍ୟରେ କତିପୟ ପୁଣ୍ୟଶୀଳ, କତିପୟ ପାପପରାୟଣ ଓ କତିପୟ ପାପପୁଣ୍ୟବର୍ଜିତ ଅଟନ୍ତି । ୨୩ । ଯେଉଁମାନେ ଯଜ୍ଞ, ଦାନ ଓ ତପସ୍ୟା ପ୍ରଭୃତି ସତ୍ କାର୍ଯ୍ୟର ଅନୁଷ୍ଠାନ କରନ୍ତି, ସେମାନେ ପୁଣ୍ୟଶୀଳ ବୋଲି ନିର୍ଦ୍ଦିଷ୍ଟ ହୁଅନ୍ତି, ଯେଉଁ-ମାନେ ଅନ୍ୟର ବିଦ୍ରୋହାଚରଣ ପ୍ରଭୃତି ଅସତ୍‌କାର୍ଯ୍ୟ କରନ୍ତି, ସେମାନେ ପାପପରାୟଣ ବୋଲି ନିର୍ଦ୍ଦିଷ୍ଟ ହୁଅନ୍ତି ଏବଂ ଯେଉଁମାନେ ଯଜ୍ଞାଦି ସତ୍ କାର୍ଯ୍ୟ ଓ ପରଦ୍ରୋହ ପ୍ରଭୃତି ଅସତ୍‌କାର୍ଯ୍ୟ ପରିତ୍ୟାଗପୂର୍ବକ କେବଳ ବ୍ରହ୍ମଜ୍ଞାନ ଅନୁଷ୍ଠାନ ବିଷୟରେ ଯତ୍ନଶୀଳ ହୁଅନ୍ତି, ସେହିମାନଙ୍କୁ ପାପପୁଣ୍ୟବିବର୍ଜିତ ବୋଲି ନିର୍ଦ୍ଦେଶ କରାଯାଏ ।

କତିପୟ ବ୍ୟକ୍ତି ପାପପୁଣ୍ୟ ନାହିଁ ବୋଲି ବିବେଚନା କରି ଅନାୟାସରେ ପରଦ୍ରବ୍ୟ ହରଣ ପ୍ରଭୃତି ପାପକାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି,

ସେମାନଙ୍କୁ କଦାପି ପାପପୁଣ୍ୟ ବିବର୍ଜିତ ବୋଲି ନିର୍ଦ୍ଦେଶ କରାଯାଏ ନାହିଁ । ସେହି ଦୁରାତ୍ମାଗଣ ଅତିଶୟ ପାପପରାୟଣ, ସେହିମାନେ ଦୁଃଖିତ ହୋଇ ଦେହାନ୍ତରରେ ନିଶ୍ଚୟ ଘୋରତର ନରକରେ ପତିତ ହୁଅନ୍ତି । ତଦ୍‌ଭିନ୍ନ ଯେଉଁସବୁ ସ୍ୱଜାତିବିହିତ କର୍ମ, ତାହା ପାପପୁଣ୍ୟ ନୁହେ । ୨୬ । କ୍ରୀଡ଼ା କର, ବୁଦ୍ଧି ଲାଭକର, ଆମୋଦ କର, ଯଜ୍ଞ କର ଓ ଦାନ କର, ତାହାହେଲେ ତୁମ୍ଭଙ୍କୁ ବେଦପରାୟଣ ଓ ତପସ୍ୱୀଗଣ ଅଭିଭବ କରିବାକୁ ସମର୍ଥ ହେବ ନାହିଁ । ୨୭ ।

---

## ଅଧ୍ୟାୟ—୧୨୧

ଭୀଷ୍ମ କହିଲେ—ଅତିଶୟ ଶ୍ରୀସମ୍ପନ୍ନ କୁଳରେ ଜାତ, ପ୍ରାଜ୍ଞ, ବହୁ-ଶ୍ରୁତ, କର୍ମପ୍ରଶଂସାକାଂକ୍ଷୀ ମୈତ୍ରେୟ ବେଦବ୍ୟାସଙ୍କ ଏହିପରି ବାକ୍ୟ ଶ୍ରବଣ କରି କହିଲେ । ୧ ।

ମୈତ୍ରେୟ କହିଲେ, ହେ ମହାପ୍ରାଜ୍ଞ ! ବିଭୋ ! ଆପଣ ଯେଉଁପରି କହିଲେ, ତାହା ସତ୍ୟ ଅଟେ, ସଂଶୟ ନାହିଁ । କିନ୍ତୁ ଆମ୍ଭେ ଆପଣଙ୍କ ଦ୍ୱାରା ଅନୁଜ୍ଞାତ ହେଲେ କିଞ୍ଚିତ କହିବାକୁ ଅଭିଳାଷ କରୁଅଛୁ । ୨ । ବ୍ୟାସଦେବ କହିଲେ, ହେ ମହାପ୍ରାଜ୍ଞ ! ମୈତ୍ରେୟ ! ତୁମ୍ଭେ ଯେଉଁ ଯେଉଁ ବିଷୟ ଯେଉଁପରି ଯେଉଁ ପରିମାଣରେ କହିବାକୁ ଇଚ୍ଛା କରୁଅଛ, ତାହା ଯଥାର୍ଥ ରୂପେ କୀର୍ତ୍ତନ କର । ଆମ୍ଭେ ତୁମ୍ଭ ବଚନ ଶ୍ରବଣ କରିବାକୁ ଇଚ୍ଛୁକ ହୋଇଅଛୁ । ୩ ।

ମୈତ୍ରେୟ କହିଲେ, ଦାନସମ୍ବନ୍ଧୀୟ ବଚନ ବିଦ୍ୟା ଓ ତପସ୍ୟା-ପେକ୍ଷା ନିର୍ଦ୍ଦୋଷ ଓ ନିର୍ମଳ ଅଟେ, ଆପଣ ଆତ୍ମଜ୍ଞାନ ଲାଭ କରିଅଛନ୍ତି ସଂଶୟ ନାହିଁ ।୪। ଆପଣ ଅତି ସଦାଶୟ ଓ ପବିତ୍ରସ୍ୱଭାବ, ଆପଣ ଆମ୍ଭ ଆଳୟରେ ଆତିଥ୍ୟ ସ୍ୱୀକାର କରିବାରୁ ଆମ୍ଭେ କୃତାର୍ଥ ହୋଇଅଛୁ । ୫ । ଆପଣଙ୍କ ଦର୍ଶନ ମାତ୍ରେ ଆମ୍ଭମାନଙ୍କର ଯେ ଅଭ୍ୟୁଦୟ ହେବ, ଆପଣଙ୍କ ଅନୁଗ୍ରହ କେବଳ ତାହାର କାରଣ । ଆପଣଙ୍କର ଆମ୍ଭଠାରେ ଯେଉଁ ଅନୁଗ୍ରହ ଦୃଷ୍ଟି ନିପତିତ ହୋଇଅଛି, ତାହା ମଦୀୟ କର୍ମଫଳଜନିତ ଅଟେ, ସଂଶୟ ନାହିଁ । ୬ । ଯେ ତପସ୍ୟାନିରତ, ବେଦଜ୍ଞାନସମ୍ପନ୍ନ ଓ ବିଶୁଦ୍ଧ ବ୍ରାହ୍ମଣକୁଳରେ

ସମ୍ଭୂତ, ତାହାଙ୍କୁ ଯଥାର୍ଥ ବ୍ରାହ୍ମଣ ବୋଲି ନିର୍ଦ୍ଦେଶ କରାଯାଏ । ଏହି ଗୁଣସମୂହଦ୍ୱାରା ସମ୍ପନ୍ନ ହେଲେ ଦ୍ୱିଜ ବୋଲନ୍ତି । ୭ ।

ବ୍ରାହ୍ମଣ ତୃପ୍ତ ହେଲେ ପିତୃଗଣ ଓ ଦେବଗଣ ତୃପ୍ତ ହୁଅନ୍ତି, ଶାସ୍ତ୍ରଜ୍ଞାନସମ୍ପନ୍ନ ବ୍ରାହ୍ମଣଙ୍କ ଅପେକ୍ଷା ଅନ୍ୟ କେହି ଶ୍ରେଷ୍ଠ ନୁହନ୍ତି ।୮। ଅନ୍ନ, ତପସ୍ୟା ସ୍ୱରୂପ, ଅନ୍ନ ନ ଥିଲେ କିଛି ସଞ୍ଜାତ ହୁଏ ନାହିଁ; ଅନ୍ନର ଅଭାବରେ ଗୃଭୁର୍ବର୍ଣ୍ଣ୍ୟ ବିଧାନ, ଧର୍ମାଧର୍ମ ଓ ସତ୍ୟମିଥ୍ୟା କିଛି ପ୍ରବର୍ତ୍ତିତ ହୁଅନ୍ତି ନାହିଁ ।୯। ମନୁଷ୍ୟ ଉତ୍କୃଷ୍ଟ କ୍ଷେତ୍ରରେ ଯେଉଁପରି ଫଳଲାଭ କରନ୍ତି, ଶାସ୍ତ୍ରଜ୍ଞାନସମ୍ପନ୍ନ ବ୍ରାହ୍ମଣଙ୍କୁ ଦାନ କଲେ ସେହିପରି ତାହାର ଫଳ ଭୋଗ କରନ୍ତି । ୧୦ । ଶାସ୍ତ୍ରଜ୍ଞାନ ଓ ସଚ୍ଚରିତ୍ର ସମ୍ପନ୍ନ ଦାନର ପ୍ରତିଗ୍ରହିତା ବ୍ରାହ୍ମଣ ଯଦି ନ ଥାନ୍ତି, ତେବେ ଧନୀଗଣଙ୍କ ଧନ ନିରର୍ଥ ହୁଏ । ୧୧ । ଅବିଦ୍ୱାନ୍ ବ୍ରାହ୍ମଣଙ୍କୁ ଅନ୍ନ ପ୍ରଦାନ କଲେ, ସେହି ଦାନଦ୍ୱାରା ଦାତାଙ୍କର କିଛି ଧର୍ମ ଲାଭ ହୁଏ ନାହିଁ; ପ୍ରତ୍ୟୁତଃ ସେହି ଅଦ୍ୟମାନ ଅନ୍ନ, ଦାତା ଓ ଗ୍ରହୀତା ଏହି ଉଭୟଙ୍କର ଅଧର୍ମ ଉତ୍ପାଦନ କରେ । ଯେଉଁ ଅନ୍ନ ରକ୍ଷା କରେ, ତାହାକୁ ଅନ୍ନ କୁହାଯାଏ, ଏବଂ ଯେଉଁ ଅବିଦ୍ୱାନ୍ ବ୍ୟକ୍ତି ଅନ୍ନ ଫଳକୁ ନଷ୍ଟ କରନ୍ତି, ସେହି ଅବିଦ୍ୱାନ୍ ବ୍ୟକ୍ତି ହତ ହୁଅନ୍ତି । ୧୨ । ବିଦ୍ୱାନ୍ ବ୍ୟକ୍ତି ଅନ୍ନ ଭକ୍ଷଣ କରିବାକୁ ସମର୍ଥ, ସେ ଈଶ୍ୱର ହୋଇ ଅନ୍ନ ଉତ୍ପାଦନ କରନ୍ତି, ଅନ୍ନରୁ ଯେଉଁ ବ୍ୟତିକ୍ରମ ଉତ୍ପନ୍ନ ହୁଏ, ତାହା ଅତି ସୂକ୍ଷ୍ମ । ୧୩ । ଦାତାଙ୍କର ଯାଦୃଶ ପୁଣ୍ୟ ହୁଏ, ପ୍ରତିଗ୍ରହୀତାଙ୍କର ମଧ୍ୟ ତାଦୃଶ ପୁଣ୍ୟ ହୁଏ । ଦାତା ଓ ପ୍ରତିଗ୍ରହୀତା ଏହି ଉଭୟ ବ୍ୟକ୍ତି ଚକ୍ରବତ୍ ଲୋକତନ୍ତ୍ର ବହନ କରନ୍ତି, ଏହି କଥା ଋଷିଗଣ ଜାଣନ୍ତି । ୧୪ ।

ଯେଉଁ ସ୍ଥାନରେ ବହୁଶାସ୍ତ୍ରଜ୍ଞାନସମ୍ପନ୍ନ ଓ ସଚ୍ଚରିତ୍ର ବ୍ରାହ୍ମଣଗଣ ଅବସ୍ଥାନ କରିଥାଆନ୍ତି, ସେହି ସ୍ଥାନରେ ଦାନର ଫଳ ଇହଲୋକ ଓ ପରଲୋକରେ ଭୋଗ ହୁଏ । ୧୫ । ଯେଉଁମାନେ ସଦ୍‌ବଂଶରେ ଜନ୍ମଗ୍ରହଣ କରି ସର୍ବଦା ତପସ୍ୟାରେ ଅତିଶୟ ରତ ହୁଅନ୍ତି ଏବଂ ଯେଉଁମାନେ ଦାନ ଓ ଅଧ୍ୟୟନସମ୍ପନ୍ନ, ସେହିମାନେ ସର୍ବଦା ପୂଜ୍ୟତମ । ୧୬ । ସେହି ସମସ୍ତ ସାଧୁଗଣ ଯେଉଁ ପଥ ନିର୍ମାଣ କରିଅଛନ୍ତି, ସେହି ପଥରେ ଗମନ କଲେ ମନୁଷ୍ୟ ମୁଗ୍‌ଧ ହୁଅନ୍ତି ନାହିଁ । ସେହିମାନେ ଯଜ୍ଞବାହ ସନାତନ ସ୍ୱର୍ଗମାର୍ଗର ପ୍ରଦର୍ଶକ ଅଟନ୍ତି । ୧୭ ।

---

# ଅଧ୍ୟାୟ—୧୨୨

ଋଷି କହିଲେ—ସେହି ଭଗବାନ୍ ବେଦବ୍ୟାସ ଏହି ବାକ୍ୟ ଶ୍ରବଣ କରି ମୈତ୍ରେୟଙ୍କୁ ପ୍ରତ୍ୟୁତ୍ତର କଲେ ଯେ, ଦୈବକ୍ରମରେ ତୁମ୍ଭେ ଏତାଦୃଶ ଜ୍ଞାନବାନ୍ ହୋଇଅଛ, ଦୈବବଶତଃ ତୁମ୍ଭର ଈଦୃଶୀ ବୁଦ୍ଧି ହୋଇଅଛି ।୧। ଲୋକମାନେ ଆର୍ଯ୍ୟମାନଙ୍କ ଗୁଣସମୂହକୁ ଭୂୟିଷ୍ଠ ରୂପେ ପ୍ରଶଂସା କରନ୍ତି । ଭାଗ୍ୟବଶତଃ ରୂପମଦ, ବୟୋମଦ ଓ ଶ୍ରୀମଦ ତୁମ୍ଭଙ୍କୁ ଅଭିଭବ କରି ନାହାନ୍ତି, ଏହା ନିଃସଂଶୟ ଅଟେ । ତୁମ୍ଭ ବିଷୟରେ ଏହା ଦୈବାନୁଗ୍ରହ ଅଟେ । ଯାହା ଦାନ ଅପେକ୍ଷା ଉତ୍କୃଷ୍ଟତର, ତାହା ତୁମ୍ଭ ନିକଟରେ ବର୍ଣ୍ଣନ କରିବୁଁ, ଶ୍ରବଣ କର । ୩ ।

ଇହଲୋକରେ ଯେଉଁ ସମସ୍ତ ଆଗମ ଶାସ୍ତ୍ର ଏବଂ ଯେ କୌଣସି ପ୍ରବୃତ୍ତି ଅଛି, ତାହାସବୁ ବେଦକୁ ପୁରସ୍କାର କରି ଯଥାକ୍ରମେ ପ୍ରବୃତ୍ତ ହୋଇ-ଅଛନ୍ତି । ୪ । ଆମ୍ଭେ ଦାନକୁ ପ୍ରଶଂସା କରୁଅଛୁ, ଆପଣ ତପସ୍ୟା ଓ ଶାସ୍ତ୍ର-ଜ୍ଞାନକୁ ପ୍ରଶଂସା କରୁଅଛନ୍ତି । ତପସ୍ୟା ପବିତ୍ର, ତପସ୍ୟା ବେଦ ଓ ସ୍ୱର୍ଗର ସାଧନ । ୫ । ଆମ୍ଭେମାନେ ଶୁଣିଅଛୁଁ, ମନୁଷ୍ୟ ତପସ୍ୟା ଓ ବିଦ୍ୟାଦ୍ୱାରା ମହତ୍ତ୍ୱ ପ୍ରାପ୍ତ ହୁଅନ୍ତି । ଅନ୍ୟ ଯେ କୌଣସି ଦୁଷ୍କୃତ ଥାଏ, ତାହାସବୁ ତପସ୍ୟାଦ୍ୱାରା ଖଣ୍ଡନ କରନ୍ତି । ୬ । ଆମ୍ଭେମାନେ ଶୁଣିଅଛୁଁ, ମନୁଷ୍ୟ ଯେ କୌଣସି ସତ୍‌କାର୍ଯ୍ୟ ସାଧନ ନିମିତ୍ତ ତପସ୍ୟା କରନ୍ତି । ବିଦ୍ୟା ଓ ତପସ୍ୟା ପ୍ରଭାବରେ ତାହାସବୁ ପ୍ରାପ୍ତ ହୁଅନ୍ତି ।୭। ଯାହା କିଛି ଦୁରନ୍ୱୟ, ଦୁଷ୍ପ୍ରଧର୍ଷ, ଦୁରତିକ୍ରମ ଓ ଦୁଷ୍ପ୍ରାପ୍ୟ ଅଟେ, ତାହାସବୁ ସେ ତପସ୍ୟାଦ୍ୱାରା ପ୍ରାପ୍ତ ହୁଏ, କାରଣ ତପସ୍ୟା ବଳବତ୍ତର । ୮ ।

ସୁରାପାୟୀ, ପରଧନାପହାରୀ ଭ୍ରୂଣହତ୍ୟାକାରୀ ଓ ଗୁରୁତଳ୍ପଗାମୀ ମାନେ ତପସ୍ୟାଦ୍ୱାରା ସମସ୍ତ ପାପରୁ ଉତ୍ତୀର୍ଣ୍ଣ ହୁଅନ୍ତି ଏବଂ ସମସ୍ତ ପାତକରୁ ମୁକ୍ତ ହୁଅନ୍ତି । ୯ । ଯେ ସର୍ବଜ୍ଞ ହୋଇ ଜ୍ଞାନଚକ୍ଷୁଦ୍ୱାରା ସମସ୍ତ ଅବଲୋକନ କରନ୍ତି, ଯେ ଯେ କୌଣସି ପ୍ରକାରରେ ତପସ୍ୟା କରନ୍ତି, ସେହି ଦୁହିଁଙ୍କୁ ନମସ୍କାର କରିବାର ବିଧେୟ । ୧୦ । ଶାସ୍ତ୍ରଜ୍ଞାନସମ୍ପନ୍ନ, ଦାତା ଓ ତପସ୍ୱୀ ମାନବଗଣ ସମସ୍ତେ ପୂଜନୀୟ । ସେମାନେ ସମସ୍ତେ ଇହଲୋକରେ ଶ୍ରୀସମ୍ପନ୍ନ ହୋଇ ପରଲୋକରେ ସୁଖଲାଭ କରନ୍ତି । ୧୧ । ଯେଉଁମାନେ ଇହଲୋକରେ ସୁକୃତ କାମ କରନ୍ତି, ସେମାନେ ଅନ୍ନଦାନ ଦ୍ୱାରା ଇହଲୋକ ଓ ବଳବତ୍ତର

ଲୋକସମୂହ ପ୍ରାପ୍ତ ହୁଅନ୍ତି । ୧୨ । ପୂଜିତ ବ୍ୟକ୍ତିଗଣ ସେମାନଙ୍କୁ ପୂଜା କରନ୍ତି ଏବଂ ସମ୍ମାନିତ ନରଗଣ ସେମାନଙ୍କୁ ସମ୍ମାନିତ କରନ୍ତି । ସେହି ଦାତା ଯେଉଁ ଯେଉଁ ସ୍ଥାନକୁ ଗମନ କରନ୍ତି, ସେହି ସେହି ସ୍ଥାନରେ ସର୍ବତୋଭାବରେ ପ୍ରଶଂସିତ ହୁଅନ୍ତି । ୧୩ । ଅକର୍ତ୍ତା ହେଉନ୍ତୁ, ଅଥବା କର୍ତ୍ତା ହେଉନ୍ତୁ, ଯାହାଙ୍କର ଯାଦୃଶ କର୍ମ, ସେ ତାଦୃଶ ଫଳ ଲାଭ କରନ୍ତି ।

ଊର୍ଦ୍ଧ୍ୱ ଭାଗରେ ହେଉ ବା ଅଧୋଭାଗରେ ହେଉ ତୁମ୍ଭେ ସ୍ୱୀୟ ଲୋକକୁ ଅଭିଗମନ କରିବ (୧୪) ଏବଂ ସେଠାରେ ଯାହା କିଛି ଅନ୍ନପାନ ବାଞ୍ଛା କରିବ, ତାହା ପ୍ରାପ୍ତ ହେବ । ତୁମ୍ଭେ ମେଧାବୀ ସଦ୍‌ବଂଶରେ ଜନ୍ମିଅଛ, ଶାସ୍ତ୍ରଜ୍ଞାନସମ୍ପନ୍ନ, ଅନୃଶଂସ୍ୟ ସମନ୍ୱିତ (୧୫), କୌମାର, ବ୍ରହ୍ମଚର୍ଯ୍ୟ, ବ୍ରତଶୀଳ ଅଟ ; ଅତଏବ ସମସ୍ତ ଭୂତଗଣଙ୍କର ସୁହୃଦ୍ ହୁଅ । ହେ ମୈତ୍ରେୟ ! ଗୃହମେଧିମାନଙ୍କର ଏହି ପ୍ରଥମ ସ୍ୱଧର୍ମକୁ ଗ୍ରହଣ କର ।୧୬। ଯେଉଁ ପତି ପତ୍ନୀଙ୍କଠାରେ ପରିତୁଷ୍ଟ ଏବଂ ଯେଉଁ ପତ୍ନୀ ପତିଙ୍କଠାରେ ପରିତୁଷ୍ଟ, ଯେଉଁ ବଂଶରେ ସମସ୍ତେ ଏହିପରି ଆଚରଣ କରନ୍ତି, ସେହି ବଂଶରେ କଲ୍ୟାଣ ବର୍ତ୍ତମାନ ହୁଏ ।୧୭ । ଶରୀର ଯେଉଁପରି ଜଳଦ୍ୱାରା ନିର୍ମଳ ହୁଏ, ଅଗ୍ନି ପ୍ରଭାଦ୍ୱାରା ଅନ୍ଧକାର ଯେଉଁପରି ବିଦୂରିତ ହୁଏ, ତଦ୍‌ବତ୍ ଦାନ ଓ ତପସ୍ୟାଦ୍ୱାରା ସମସ୍ତ ପାପ ବିନଷ୍ଟ ହୁଏ । ୧୮ । ହେ ମୈତ୍ରେୟ ! ତୁମ୍ଭେ ସ୍ୱସ୍ତି ଲାଭକର, ଆମ୍ଭେ ଗୃହକୁ ଗମନ କରୁଅଛୁଁ, ଏହିପରି କଲେ ଶ୍ରେୟ ଲାଭ ହେବ । ଏହି କଥା ମନରେ ବିଚାର କରିବାର ଉଚିତ । ୧୯ । ତଦନନ୍ତର ମୈତ୍ରେୟ ତାହାଙ୍କୁ ପ୍ରଣାମପୂର୍ବକ ପ୍ରଦକ୍ଷିଣ କରି 'ଭଗବାନ୍ ଆପଣ ସ୍ୱସ୍ତିପ୍ରାପ୍ତ ହୁଅନ୍ତୁ', କୃତାଞ୍ଜଳି ହୋଇ ଏହି କଥା କହିଲେ । ୨୦ ।

---

## ଅଧ୍ୟାୟ—୧୨୩

ଯୁଧିଷ୍ଠିର କହିଲେ—ହେ ସର୍ବଧର୍ମଜ୍ଞପ୍ରବର ! ପିତାମହ ! ଆମ୍ଭେ ଆପଣଙ୍କଠାରୁ ସତୀ ସ୍ତ୍ରୀଗଣଙ୍କ ସମସ୍ତ ଆଚରଣ ଶ୍ରବଣ କରିବାକୁ ଅଭିଳାଷୀ ହୋଇଅଛୁଁ, ଅତଏବ ଆପଣ ଆମ୍ଭ ନିକଟରେ ତାହା କୀର୍ତ୍ତନ କରିବା ହେଉନ୍ତୁ । ୧ ।

ଭୀଷ୍ମ କହିଲେ, ସୁମନା ନାମ୍ନୀ କେକୟରାଜଦୁହିତା ଦେବଲୋକରେ ସର୍ବଜ୍ଞା ସର୍ବତତ୍ତ୍ୱଜ୍ଞା ମନସ୍ୱିନୀ ଶାଣ୍ଡିଲୀଙ୍କୁ ପଚାରିଥିଲେ, ହେ କଲ୍ୟାଣି ! ତୁମ୍ଭେ କେଉଁପରି ଚରିତ ଏବଂ କେଉଁ ପ୍ରକାର ଆଚାରଦ୍ୱାରା ଦେବଲୋକକୁ ଆଗମନ କରିଅଛ ? ୩ । ତୁମ୍ଭେ ଅଗ୍ନିଶିଖାସଦୃଶ ସ୍ୱକୀୟ ତେଜଦ୍ୱାରା ପ୍ରଜ୍ୱଳିତ ହୋଇଅଛ ଏବଂ ତାରାଧିପଙ୍କ ତନୟା ସଦୃଶ ନିଜ ପ୍ରଭାଦ୍ୱାରା ସ୍ୱର୍ଗଲୋକକୁ ଆଗମନ କରିଅଛ । ୪ । କ୍ଲାନ୍ତିବିହୀନା ହୋଇ ଉତ୍ତମ ବସ୍ତ୍ରଧାରଣ କରିଅଛ । ହେ ଶୁଭେ ! ତୁମ୍ଭେ ବିମାନରେ ଥାଇ ନିଜ ତେଜଦ୍ୱାରା ସହସ୍ର ଗୁଣରେ ଶୋଭା ପାଉଅଛ । ୫ । ତୁମ୍ଭେ ଅଳ୍ପ ତପସ୍ୟା ଦାନ ଓ ନିୟମଦ୍ୱାରା ଏହି ଲୋକକୁ ଆଗମନ କରିନାହଁ । ଅତଏବ ତୁମ୍ଭେ ଆମ୍ଭ ନିକଟରେ ଯଥାର୍ଥ କଥା କହ । ୬ ।

ଚାରୁହାସିନୀ ଶାଣ୍ଡିଲୀ ସୁମନାଙ୍କ ମୁଖରୁ ସୁମଧୁର ଭାବରେ ଏହିପରି ପ୍ରଶ୍ନ ଶ୍ରବଣ କରି ତାହାଙ୍କୁ ନିଭୃତ ଭାବରେ ଏହି କଥା କହିଲେ । ଆମ୍ଭେ କଷାୟବସନା ଅଥବା ବଲ୍କଳଧାରିଣୀ ନୋହୁଁ, ଆମ୍ଭେ ମୁଣ୍ଡା ଅଥବା ଜଟିଳା ହୋଇ ଦେବତ୍ୱ ପ୍ରାପ୍ତ ହୋଇନାହୁଁ, ଆମ୍ଭେ ଅପ୍ରମତ୍ତ ହୋଇ କଦାପି ପତିଙ୍କୁ ଅହିତ ଓ ପରୁଷ ବାକ୍ୟ କହିନାହୁଁ । ଦେବଗଣ, ପିତୃଗଣ ଓ ବ୍ରାହ୍ମଣଗଣଙ୍କ ପୂଜା ବିଷୟରେ ସର୍ବଦା ସାବଧାନ ହୋଇଥାଉଁ, ଶ୍ୱଶ୍ରୂ ଓ ଶ୍ୱଶୁରଙ୍କ ଶୁଶ୍ରୂଷା କରିବାକୁ ସର୍ବଦା ନିଯୁକ୍ତ ଥାଉଁ । ୧୦ । ପୈଶୂନ୍ୟ କାର୍ଯ୍ୟରେ କଦାପି ପ୍ରବୃତ୍ତ ହେଉନାହୁଁ ଏବଂ ପୈଶୂନ୍ୟ କାର୍ଯ୍ୟ କରିବାକୁ ଆମ୍ଭେ କେତେବେଳେ ସୁଦ୍ଧା ମନରେ ବିଚାର କରୁନାହୁଁ, ଅଥବା କୌଣସି ବ୍ୟକ୍ତିଙ୍କ ସହିତ ଅଧିକକ୍ଷଣ କଥୋପକଥନରେ ପ୍ରବୃତ୍ତ ହେଉନାହୁଁ । ୧୧ । କୌଣସି ଅସତ୍ କର୍ମ ବା ହାସ୍ୟ ଅଥବା କାର୍ଯ୍ୟଦ୍ୱାରା କୌଣସି ଅହିତ କାର୍ଯ୍ୟ ପ୍ରକାଶ୍ୟ ବା ଅପ୍ରକାଶ୍ୟ ଭାବରେ କରିବାକୁ ଆମ୍ଭର ପ୍ରବୃତ୍ତି ହୁଏ ନାହିଁ । ୧୨ ।

ଆମ୍ଭ ସ୍ୱାମୀ କାର୍ଯ୍ୟାର୍ଥରେ ସ୍ଥାନାନ୍ତରକୁ ଯାଇ ସେଠାରୁ ପୁନଶ୍ଚ ଗୃହକୁ ପ୍ରତ୍ୟାଗତ ହେଲେ ଆମ୍ଭେ ତାହାଙ୍କୁ ଆସନରେ ଉପବେଶନ କରାଇ ସମାହିତା ହୋଇ ପୂଜା କରୁ । ୧୩ । ପତି ଯେଉଁ ଅନ୍ନକୁ ଉତ୍କୃଷ୍ଟ ବୋଲି ଜ୍ଞାନ ନ କରନ୍ତି ଏବଂ ଯାହାକୁ ଅଭିନନ୍ଦନ ନ କରନ୍ତି, ତାଦୃଶ ଭକ୍ଷ୍ୟ ଅଥବା ଲେହ୍ୟ ବସ୍ତୁ ଆମ୍ଭେ ପରିତ୍ୟାଗ କରୁ ।୧୪। କୁଟୁମ୍ବଙ୍କ ଅର୍ଥରେ ଯାହା କିଛି ଆନୀତ ହୁଏ ଏବଂ ଯାହା କିଛି କର୍ତ୍ତବ୍ୟ ହୁଏ, ତାହା ସବୁ ପ୍ରାତଃକାଳରେ ଉତ୍ଥିତ ହୋଇ ସ୍ୱୟଂ ନିର୍ବାହ କରୁ ଏବଂ ଅନ୍ୟଦ୍ୱାରା ନିର୍ବାହ କରାଉଁ ।୧୫।

କୌଣସି କାର୍ଯ୍ୟବଶତଃ ଆମ୍ଭର ପତି ଯଦି ପ୍ରବାସକୁ ଯାଆନ୍ତି, ତେବେ ଆମ୍ଭେ ସେତେବେଳେ ମଙ୍ଗଳସୂତ୍ର ଧାରଣ କରି ସଂଯତ ହୋଇ ରହିଥାଉଁ ।୧୬। ସ୍ୱାମୀ ବିଦେଶକୁ ଗମନ କଲେ ଆମ୍ଭେ ଅଞ୍ଜନ, ରୋଚନା, ସ୍ନାନ, ମାଲ୍ୟ-ଧାରଣ, ଅନୁଲେପନ ଓ ପ୍ରସାଧନ କର୍ମକୁ ଅଭିନନ୍ଦନ କରୁନାହିଁ । ୧୭ ।

ଯେତେବେଳେ ପତି ସୁଖରେ ଶୟନ କରିଥାଆନ୍ତି, ସେତେବେଳେ ବିଶେଷ କାର୍ଯ୍ୟ ଥିଲେ ସୁଦ୍ଧା ଆମ୍ଭେ ତାହାଙ୍କୁ ଉତ୍‌ଥାପନ କରୁନାହୁଁ । ସେହି ହେତୁରୁ ଆମ୍ଭ ମନ ସନ୍ତୁଷ୍ଟ ଥାଏ । ୧୮ । କୁଟୁମ୍ବଙ୍କ ଅର୍ଥରେ ଆମ୍ଭେ ସ୍ୱାମୀଙ୍କୁ ସର୍ବଦା ଆୟାସଯୁକ୍ତ କରୁନାହୁଁ, ଗୋପନ ବିଷୟ ସବୁ ଗୋପନୀୟ କରି ରଖୁ ଏବଂ ସର୍ବଦା ଗୃହସମୂହ ପରିଷ୍କାର କରି ରଖିଥାଉଁ । ୧୯ । ହେ ଦେବି ! ଯେଉଁ ନାରୀ ସମାହିତା ହୋଇ ଏହି ଧର୍ମପଥକୁ ପାଳନ କରନ୍ତି, ସେ ନିଶ୍ଚୟ ଅରୁନ୍ଧତୀଙ୍କ ସଦୃଶ ସ୍ୱର୍ଗଲୋକରେ ବସତି କରନ୍ତି । ୨୦ ।

ଭୀଷ୍ମ କହିଲେ, ତପସ୍ୱିନୀ ମହାଭାଗା ସେହି ଶାଣ୍ଡିଲୀଦେବୀ ସୁମନାଙ୍କୁ ଏହି ପତିବ୍ରତା ଧର୍ମ କହି ତାହାଙ୍କ ସମକ୍ଷରେ ଅନ୍ତର୍ହିତା ହେଲେ । ହେ ପାଣ୍ଡବ ! ଯେଉଁ ବ୍ୟକ୍ତି ପ୍ରତି ପର୍ବରେ ଏହି ଆଖ୍ୟାନ ପାଠ କରନ୍ତି, ସେ ଦେବଲୋକ ପ୍ରାପ୍ତ ହୋଇ ନନ୍ଦନବନରେ ସୁଖରେ ବାସ କରନ୍ତି । ୨୨ ।

---

## ଅଧ୍ୟାୟ—୧୨୪

ଯୁଧିଷ୍ଠିର କହିଲେ—ହେ ଭରତଶ୍ରେଷ୍ଠ ! ସାମ ଓ ଦାନ ଏହି ଉଭୟ ମଧ୍ୟରେ ଆପଣଙ୍କ ମତରେ କିଏ ଶ୍ରେଷ୍ଠ ? ଏହି ଉଭୟ ମଧ୍ୟରେ ଯାହା ଉତ୍କୃଷ୍ଟ ଅଟେ, ଆପଣ ତାହା କୀର୍ତ୍ତନ କରନ୍ତୁ । ୧ ।

ଭୀଷ୍ମ କହିଲେ, କୌଣସି ବ୍ୟକ୍ତି ସାନ୍ତ୍ୱନା ବାକ୍ୟଦ୍ୱାରା ପ୍ରସନ୍ନ ହୁଅନ୍ତି, କେହି ଅବା ଦାନଦ୍ୱାରା ପ୍ରସନ୍ନ ହୁଅନ୍ତି, ଅତଏବ ପ୍ରାଜ୍ଞ ବ୍ୟକ୍ତି ପୁରୁଷ ସ୍ୱଭାବ ଜାଣି ସାମ ଓ ଦାନର ଅନ୍ୟତରକୁ ସେବା କରନ୍ତି । ୨ । ହେ ଭରତଶ୍ରେଷ୍ଠ ! ରାଜନ୍ ! ଦାରୁଣ ଜୀବଗଣ ଯେଉଁପରି ସାନ୍ତ୍ୱବାଦ ଦ୍ୱାରା ଆରାଧନା କରନ୍ତି, ସେହି ସାନ୍ତ୍ୱ ଗୁଣସମୂହ ଆମ୍ଭ ନିକଟରୁ ଶ୍ରବଣ

କର । ୩ । କୌଣସି କାନନରେ ଜଣେ ବ୍ରାହ୍ମଣ ରାକ୍ଷସଦ୍ୱାରା ଗୃହୀତ ହୋଇ ଯେଉଁପରି ମୁକ୍ତ ହୋଇଥିଲେ, ଏହି ବିଷୟରେ ପ୍ରାଚୀନ ପଣ୍ଡିତଗଣ ଏହି ପୁରାତନ ଇତିହାସ କୀର୍ତ୍ତନ କରନ୍ତି । ୪ ।

କୌଣସି ବାକ୍‌ବୁଦ୍ଧିସମ୍ପନ୍ନ ବ୍ରାହ୍ମଣ ବିଜନ ବନମଧ୍ୟରେ ବୁଭୁକ୍ଷୁ ରାକ୍ଷସ କର୍ତ୍ତୃକ ଗୃହୀତ ହୋଇ କଷ୍ଟ ପ୍ରାପ୍ତ ହୋଇଥିଲେ ।୫। ସେହି ବୁଦ୍ଧିଶକ୍ତି-ସମ୍ପନ୍ନ ଶାସ୍ତ୍ରଜ୍ଞାନନିପୁଣ ବ୍ରାହ୍ମଣ ଅତିଶୟ ଭୟଙ୍କର ରାକ୍ଷସକୁ ନିରୀକ୍ଷଣ କରି ତାହାଙ୍କ ପ୍ରତି ସାନ୍ତ୍ୱନା ବାକ୍ୟ ପ୍ରୟୋଗ କଲେ ଏବଂ ମୁଗ୍ଧ ଅଥବା ବ୍ୟଥିତ ହେଲେ ନାହିଁ ।୬। ସେହି ରାକ୍ଷସ ବ୍ରାହ୍ମଣଙ୍କୁ ବାକ୍ୟଦ୍ୱାରା ସମ୍ମାନନା କରି ତାହାଙ୍କୁ ପ୍ରଶ୍ନ ପଚାରିଲେ । ସେ କହିଲେ, ତୁମ୍ଭେ ଆମ୍ଭ ପ୍ରଶ୍ନର ଉତ୍ତର ପ୍ରଦାନ କଲେ ମୁକ୍ତ ହେବ, ଆମ୍ଭେ କେଉଁ କାରଣରୁ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛୁଁ, ତୁମ୍ଭେ ତାହା କହ । ୭ । ତତ୍ପରେ ବ୍ରାହ୍ମଣ ମୁହୂର୍ତ୍ତ କାଳ ଚିନ୍ତା କରି ଅବ୍ୟଗ୍ର ଭାବରେ ଏହି ସମସ୍ତ ଗାଥାଦ୍ୱାରା ସେହି ନିଶାଚରଙ୍କ ପ୍ରଶ୍ନର ପ୍ରତ୍ୟୁତ୍ତର କଲେ । ୮ ।

ବ୍ରାହ୍ମଣ କହିଲେ, ତୁମ୍ଭେ ବିଦେଶରେ ରହି ଲୋକଶୂନ୍ୟ ପ୍ରଦେଶରେ ସୁହୃଜ୍ଜନଙ୍କ ବ୍ୟତିରେକେ ନିଶ୍ଚୟ ଅତୁଳ ବିଷୟ ଭୋଗ କରିଅଛ, ଏହି କାରଣରୁ କୃଶ ଓ ପାଣ୍ଡୁର ବର୍ଣ୍ଣ ହୋଇଅଛ ।୯। ହେ ନିଶାଚର ! ତୁମ୍ଭର ମିତ୍ରଗଣ ତୁମ୍ଭଙ୍କୁ ଉତ୍ତମରୂପେ ପରିଚର୍ଯ୍ୟା କରନ୍ତି, କିନ୍ତୁ ତୁମ୍ଭର ନିଜ ଦୋଷ ହେତୁରୁ ସେମାନେ ତୁମ୍ଭଠାରେ ବିରକ୍ତ ହୋଇଅଛନ୍ତି, ଅତଏବ ତୁମ୍ଭେ କୃଶ ଓ ପାଣ୍ଡୁରବର୍ଣ୍ଣ ହୋଇଅଛ ।୧୦। ବୋଧହୁଏ ତୁମ୍ଭେ ଗୁଣବାନ୍ ହୋଇ ଅନ୍ୟାନ୍ୟ ସମ୍ମାନଯୋଗ୍ୟ ନରଗଣଙ୍କୁ ନିର୍ଗୁଣ ନିରୀକ୍ଷଣ କରିଅଛ ଏବଂ ତୁମ୍ଭେ ଧର୍ମତତ୍ତ୍ୱ ଓ ପ୍ରାଜ୍ଞ ହୋଇ ଅନ୍ୟ ବ୍ୟକ୍ତିଗଣଙ୍କୁ ପ୍ରଜ୍ଞାଶୂନ୍ୟ ଦେଖିଅଛ, ତନ୍ନିମିତ୍ତ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୧୩ । ଜଣାଯାଏ ସମଧିକ ଧନ ଓ ଐଶ୍ୱର୍ଯ୍ୟସମ୍ପନ୍ନ ଏବଂ ତୁମ୍ଭର ଗୁଣ ଅପେକ୍ଷା ଅତି ନିକୃଷ୍ଟ ମୂର୍ଖଗଣ ତୁମ୍ଭଙ୍କୁ ଅବଜ୍ଞା କରିଅଛନ୍ତି, ତନ୍ନିମିତ୍ତ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୧୧ । ଜଣାଯାଏ ତୁମ୍ଭେ ବୃତ୍ତି ବ୍ୟତିରେକେ କ୍ଳେଶ ପ୍ରାପ୍ତ ହୋଇ ବୃତ୍ତିର ଉପାୟ ସମୂହକୁ ନିନ୍ଦା କରି ମହାନୁଭବତାବଶତଃ ବ୍ୟଥିତ ହେବାରୁ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୧୨ ।

ଶ୍ରେଷ୍ଠଭାବଶରୁ କୌଣସି ବ୍ୟକ୍ତି ଆତ୍ମାକୁ ପୀଡ଼ା ନ କରି ତୁମ୍ଭ-ଦ୍ୱାରା ହତ ହୋଇ ତୁମ୍ଭଙ୍କୁ ପରାଜିତ ଜ୍ଞାନ କରିଅଛି । ହେ ସାଧୋ ! ସେହି କାରଣରୁ ତୁମ୍ଭେ କୃଶ ଓ ପାଣ୍ଡୁର ବର୍ଣ୍ଣ ହୋଇଅଛ । ୧୪ ।

କାମ କ୍ରୋଧଦ୍ୱାରା ଆବୃତଚିତ୍ତ ବ୍ୟକ୍ତିଗଣ ବିପଥରେ ପତିତ ହୋଇ କ୍ଲେଶ ପାଉଅଛନ୍ତି । ଜଣାଯାଏ, ତୁମ୍ଭେ ସେହିମାନଙ୍କ ନିମିତ୍ତ ଚିନ୍ତା କରୁଅଛ, ଅତଏବ ତୁମ୍ଭେ କୃଶ ଓ ପାଣ୍ଡୁର ବର୍ଣ୍ଣ ହୋଇଅଛ ।୧୫। ତୁମ୍ଭେ ପ୍ରଜ୍ଞାବାନ୍ ହୋଇ ପ୍ରଜ୍ଞାଶୂନ୍ୟ ଜନଗଣଙ୍କଦ୍ୱାରା ନିନ୍ଦିତ ହୋଇଅଛ; ସୁତରାଂ ଦୁର୍ବୃତ୍ତ ଜନଗଣ କର୍ତ୍ତୃକ ହ୍ରିୟମାନ ହୋଇଅଛ, ତନ୍ନିମିତ୍ତ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ ।୧୬। ଜଣାଯାଏ କୌଣସି ମିତ୍ରମୁଖ ଶତ୍ରୁ ସାଧୁସମାନ ଆଚରଣ କରି ତୁମ୍ଭଙ୍କୁ ବଞ୍ଚନା କରୁଅଛି । ସେହି କାରଣରୁ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ ।୧୭।

ଜଣାଯାଏ ତୁମ୍ଭେ ପ୍ରକାଶାର୍ଥ ଗତିରହସ୍ୟକୁଶଳ ଓ କୃତ୍ସ୍ନ ଅଟ, ତଥାପି ତତ୍ତ୍ୱଜ୍ଞ ବ୍ୟକ୍ତିଗଣ କର୍ତ୍ତୃକ ପୂଜିତ ହେଉନାହିଁ; ଏହି କାରଣରୁ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ ।୧୮। ଅଭିନିବେଶ ଅସତ୍ ବ୍ୟକ୍ତିଙ୍କ ନିକଟରେ ତୁମ୍ଭେ ଯଶସ୍ୱୀ ବିଷୟ ସମୂହ କୀର୍ତ୍ତନ କଲେ ସୁଦ୍ଧା ତୁମ୍ଭର ଗୁଣଗ୍ରାମ ପ୍ରକାଶ ହୋଇନାହିଁ; ତନ୍ନିମିତ୍ତ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ ।୧୯। ଜଣାଯାଏ, ତୁମ୍ଭେ ଧନ, ବୁଦ୍ଧି ଓ ଶାସ୍ତ୍ରଜ୍ଞାନବିହୀନ ଅଟ, କେବଳ ତେଜଃସମନ୍ୱିତ ହୋଇ ଉତ୍କୃଷ୍ଟ ପଦ ପ୍ରାର୍ଥନା କରୁଅଛ; ତନ୍ନିମିତ୍ତ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ ।୨୦।

ଆମ୍ଭେ ତୁମ୍ଭଙ୍କୁ ତପସ୍ୟାଦ୍ୱାରା ପ୍ରଣିହିତ ଚିତ୍ତ ଏବଂ ଅରଣ୍ୟାଭିଳାଷୀ ଜ୍ଞାନ କରୁଅଛୁ, ତୁମ୍ଭଙ୍କୁ ବାନ୍ଧବଗଣ ଅଭିନନ୍ଦନ କରୁନାହାନ୍ତି, ସେହି କାରଣରୁ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ ।୨୧। ତୁମ୍ଭେ ଭାର୍ଯ୍ୟାଙ୍କ ପ୍ରତି ପ୍ରୀତିକର ଥାଅ, ତୁମ୍ଭର କୌଣସି ପ୍ରତିବେଶୀ ମହାଧନଶାଳୀ ଯୁବା ସୁନ୍ଦର ଏବଂ କାମୁକ ଅଟନ୍ତି, ତନ୍ନିମିତ୍ତ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ ।୨୨। ଅର୍ଥବାନ୍ ବ୍ୟକ୍ତିବର୍ଗଙ୍କ ମଧ୍ୟରେ ଯଥାକାଳରେ ତୁମ୍ଭଦ୍ୱାରା କଥିତ ଅନୁତ୍ତମ ବାକ୍ୟ ଶୋଭିତ ହୁଏ ନାହିଁ, ଏହି କାରଣରୁ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ ।୨୩। ଦୃଢ଼ତର ହୃଦୟପ୍ରିୟ କୋପଯୁକ୍ତ ଶ୍ରୁତପୂର୍ବ ମୂର୍ଖକୁ ଅନୁନୟ କରିବାକୁ ସମର୍ଥ ହୁଅ ନାହିଁ, ସେହି କାରଣରୁ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ ।୨୪। ଜଣାଯାଏ କେହି ବ୍ୟକ୍ତି କୌଣସି ଈପ୍ସିତ କାର୍ଯ୍ୟରେ ଆସକ୍ତ ହୋଇ ନିରନ୍ତର ତୁମ୍ଭ ନିକଟରେ ପ୍ରାର୍ଥନା କରୁଅଛି, ସେହି କାରଣରୁ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ ।୨୫।

ଜଣାଯାଏ କୌଣସି ସୁହୃଦ୍ ବ୍ୟକ୍ତି ତୁମ୍ଭଙ୍କୁ ସୁନ୍ଦର ଗୁଣଯୁକ୍ତ ଓ ପୂଜ୍ୟମାନ ଜ୍ଞାନ କରି ଆମ୍ଭର ଅର୍ଥ ବୋଲି ଜାଣନ୍ତି, ସେହି କାରଣରୁ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୨୬ । ତୁମ୍ଭେ ନିଷ୍ଠପୂ ଅନ୍ତର୍ଗତ ଅଭିପ୍ରାୟକୁ ଲଜ୍ଜାବଶତଃ କହିବାକୁ ଇଚ୍ଛା କର ନାହିଁ, ସୁତରାଂ 'ପ୍ରାପ୍ତି-ଶୈଥିଲ୍ୟ ହେବାରୁ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୨୭ । ଲୋକରେ ନାନାବିଧ ବୁଦ୍ଧି ଓ ରୁଚିଯୁକ୍ତ ମନୁଷ୍ୟସମୂହକୁ ତୁମ୍ଭେ ନିଜ ଗୁଣଦ୍ୱାରା ଗ୍ରହଣ କରିବାକୁ ଇଚ୍ଛା କରୁଅଛ, ବୋଧହୁଏ ତନ୍ନିମିତ୍ତ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୨୮ । ତୁମ୍ଭେ ବିଦ୍ୟାହୀନ ଓ ଭୀରୁ ହୋଇ ଅଳ୍ପ ଅର୍ଥରେ ବିଦ୍ୟା, ବିକ୍ରମ ଓ ଦାନଜନିତ ଯଶ ପ୍ରାର୍ଥନା କରୁଅଛ, ବୋଧହୁଏ ତନ୍ନିମିତ୍ତ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୨୯ । ତୁମ୍ଭେ କୌଣସି ଚିରାଭିଳଷିତ ଫଳ ପ୍ରାପ୍ତ ହୋଇନାହିଁ ଏବଂ ଅନ୍ୟ ବ୍ୟକ୍ତିଗଣ ତୁମ୍ଭର ସେହି ପଦାର୍ଥ ଅପହରଣ କରିଅଛନ୍ତି, ସେହି କାରଣରୁ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ ।୩୦। ବୋଧହୁଏ ତୁମ୍ଭେ ନିଜର କୌଣସି ଆତ୍ମକୃତ ଦୋଷ ନ ଦେଖି ଅକାରଣ ଅଭିଶାପଗ୍ରସ୍ତ ହୋଇଅଛ । ସେହି କାରଣରୁ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୩୧ ।

ତୁମ୍ଭେ ସାଧୁଗଣଙ୍କୁ ଗୃହସ୍ଥ ଏବଂ ଅସାଧୁଗଣଙ୍କୁ ବନେଚର ବିବେଚନା କରି ଓ ମୁକ୍ତ ପୁରୁଷମାନଙ୍କୁ ଗୃହରେ ଥିବାର ଦେଖି କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୩୨ । ତୁମ୍ଭେ ସୁହୃଦ୍‌ଗଣଙ୍କର ଓ ଆତ୍ମବ୍ୟକ୍ତି-ମାନଙ୍କର ଦୁଃଖ ଓ ପୀଡ଼ାମୋଚନ କରିବାକୁ ସମର୍ଥ ହୋଇନାହିଁ, ତୁମ୍ଭେ ଅତିଶୟ ଅର୍ଥହୀନ ଓ ଗୁଣହୀନ ଅଟ; ତନ୍ନିମିତ୍ତ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୩୩ । ନରଗଣ ତୁମ୍ଭର ଧର୍ମ, ଅର୍ଥ, କାମ ଓ କଥିତ ବାକ୍ୟକୁ ଯଥାକାଳରେ ପ୍ରଶଂସା କରନ୍ତି ନାହିଁ, ଜଣାଯାଏ ତୁମ୍ଭେ ସେହି କାରଣରୁ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୩୪ । ତୁମ୍ଭେ ମନୀଷୀ ହୋଇ କୃପଣଗଣଙ୍କ ପ୍ରଦତ୍ତ ଅର୍ଥ ପ୍ରାପ୍ତ ହୋଇ ତଦ୍ଦ୍ୱାରା ଜୀବିକା ନିର୍ବାହ କରିବାକୁ ଇଚ୍ଛୁକ ହୋଇଅଛ, ତନ୍ନିମିତ୍ତ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୩୫ । ଉନ୍ନତିଶୀଳ ବ୍ୟକ୍ତିଗଣଙ୍କ ପାପସମୂହ ଓ ଅବସନ୍ନ ବ୍ୟକ୍ତିଗଣଙ୍କ ମଙ୍ଗଳ ଦର୍ଶନ କରି ତୁମ୍ଭେ ସର୍ବଦା ନିନ୍ଦା କର, ବୋଧହୁଏ ସେହି କାରଣରୁ ତୁମ୍ଭେ କୃଶ ଓ ପାଣ୍ଡୁବର୍ଣ୍ଣ ହୋଇଅଛ । ୩୬ ।

ତୁମ୍ଭେ ସୁହୃଜ୍ଜନଙ୍କ ଅନୁରୋଧରେ ପରସ୍ପର ବିରୁଦ୍ଧ ବ୍ୟକ୍ତିମାନଙ୍କ ପ୍ରିୟକାର୍ଯ୍ୟ କରିବାକୁ ଇଚ୍ଛୁକ ହୁଅ, ତନ୍ନିମିତ୍ତ କୃଶ ଓ ପାଣ୍ଡୁବର୍ଣ୍ଣ

ହୋଇଅଛ । ୩୭ । ତୁମ୍ଭେ ଶ୍ରୋତ୍ରିୟଗଣଙ୍କୁ କୁମାର୍ଗଶାଳୀ ଓ ପ୍ରାଜ୍ଞ ବ୍ୟକ୍ତି-ମାନଙ୍କୁ ଅଜିତେନ୍ଦ୍ରିୟ ରୂପେ ଚିନ୍ତା କରିଥିବାରୁ ବୋଧହୁଏ କୃଶ ଓ ପାଣ୍ଡୁ-ବର୍ଣ୍ଣ ହୋଇଅଛ । ୩୮ । ବୁଦ୍ଧିମାନ୍ ବ୍ରାହ୍ମଣ ଏହି କଥା କହିଲାରୁ ରାକ୍ଷସ ତାହାଙ୍କ ବାକ୍ୟରେ ପରିତୁଷ୍ଟ ହୋଇ ତାହାଙ୍କ ସହିତ ମିତ୍ରତା ସଂସ୍ଥାପନପୂର୍ବକ ତାହାଙ୍କୁ ଯଥୋଚିତ ସତ୍କାର ଓ ଅତୁଳ ସମ୍ପତ୍ତି ପ୍ରଦାନ ପୂର୍ବକ ବିଦାୟ କଲେ । ୩୯ ।

---

## ଅଧ୍ୟାୟ—୧୨୫

ଯୁଧିଷ୍ଠିର କହିଲେ—ହେ ଗଙ୍ଗାନନ୍ଦନ ପିତାମହ ! ଅତ୍ୟନ୍ତ ଦୁର୍ଲ୍ଲଭ କର୍ମକ୍ଷେତ୍ରରେ ମନୁଷ୍ୟଜନ୍ମ ଲାଭ କରି କଲ୍ୟାଣାର୍ଥୀ ଦରିଦ୍ର ଜନ କେଉଁ କାର୍ଯ୍ୟ କରିବେ ? ୧ । ଦାନସମୂହ ମଧ୍ୟରେ ଯେଉଁ ଦାନ ଶ୍ରେଷ୍ଠ ଏବଂ ମାନ୍ୟ ଓ ପୂଜ୍ୟଗଣଙ୍କୁ ଯାହା ଯେଉଁପରି ଦାତବ୍ୟ, ସେହି ରହସ୍ୟ ବିଷୟ କୀର୍ତ୍ତନ କରିବା ହେଉନ୍ତୁ । ୨ ।

ବୈଶମ୍ପାୟନ କହିଲେ, ଭୀଷ୍ମ ନରପାଳ ଯୁଧିଷ୍ଠିରଙ୍କ ପ୍ରଶ୍ନ ଶ୍ରବଣ କରି ତାହାଙ୍କୁ ଧର୍ମସମୂହର ପରମ ଗୁହ୍ୟ ବିଷୟ କହିଲେ । ୩ । ଭୀଷ୍ମ କହିଲେ, ହେ ରାଜନ୍ ! ଭାରତ ! ପୂର୍ବକାଳରେ ଭଗବାନ ବେଦବ୍ୟାସ ଆମ୍ଭ ନିକଟରେ ଯେଉଁ ସବୁ ଗୋପନୀୟ ଧର୍ମ କୀର୍ତ୍ତନ କରିଥିଲେ, ତୁମ୍ଭେ ସ୍ଥିରଚିତ୍ତ ହୋଇ ତାହା ଶ୍ରବଣ କର । ୪ । ହେ ରାଜନ୍ ! ଏ ବିଷୟ ଦେବଗଣଙ୍କ ସମ୍ବନ୍ଧରେ ମଧ୍ୟ ଗୋପନୀୟ ଅଟେ; ପୂର୍ବେ ଅକ୍ଲିଷ୍ଟକର୍ମା ଯମ-ଦେବ ନିୟମସ୍ଥ ଓ ଯୋଗଯୁକ୍ତ ହୋଇ ଉତ୍କୃଷ୍ଟ ତପସ୍ୟାର ଫଳ ସ୍ୱରୂପେ ଏହା ପ୍ରାପ୍ତ ହୋଇଥିଲେ । ୫ । ଯାହାଦ୍ୱାରା ଦେବଗଣ, ପିତୃଗଣ, ଋଷିଗଣ, ପ୍ରମଥଗଣ, ଶ୍ରୀ, ଚିତ୍ରଗୁପ୍ତ ଓ ଦିଗ୍‌ଗଜସମୂହ ପ୍ରୀତିଯୁକ୍ତ ହୁଅନ୍ତି, ଯହିଁରେ ସରହସ୍ୟ ମହାଫଳଜନକ ଋଷିଧର୍ମ ସ୍ମୃତ ହୋଇଥାଏ ଏବଂ ଯହିଁରେ ମହାଦାନର ଫଳ ଓ ସର୍ବଯଜ୍ଞ ଫଳ ଶ୍ରୁତ ହୁଏ, ହେ ଅନଘ ! ସଦୋଷ ଅଥବା ନିର୍ଦ୍ଦୋଷ ହେଉନ୍ତୁ, ଯେ ଏହି ବିଷୟ ଅବଗତ ହୁଅନ୍ତି, ଅଥବା ଅବଗତ ହୋଇ ତାହା ଆଚରଣ କରନ୍ତି, ସେ ସମସ୍ତ ଗୁଣଦ୍ୱାରା ଯୁକ୍ତ ହୁଅନ୍ତି । ୮ ।

ଯେଉଁ ସ୍ଥାନରେ ଦଶଗୋଟି ପଶୁଙ୍କୁ ବଧ କରାଯାଏ, ସେହି ସ୍ଥାନକୁ ଏବଂ ପଶୁଘ୍ନ ଜାତିଙ୍କୁ ଦଶସୂନା କହିବାକୁ ହୁଏ । ଗୋଟିଏ ଚକ୍ରବାନ୍ ଅର୍ଥାତ୍ ତୈଳିକ ସେହି ଦଶସୂନା ସଦୃଶ ; ଗୋଟିଏ ଧ୍ୱଜ, ଅର୍ଥାତ୍ ସୁରାପାୟୀ ଶୌଣ୍ଡିକ ଦଶଚକ୍ର ଅର୍ଥାତ୍ ଦଶଗୋଟି ତୈଳିକ ସମାନ ; ଗୋଟିଏ ବେଶ୍ୟା ଦଶଗୋଟି ଶୌଣ୍ଡିକ ସଦୃଶ ଏବଂ ଗୋଟିଏ କ୍ଷୁଦ୍ର ନୃପତି ଦଶଗୋଟି ବେଶ୍ୟା ସମାନ । ସୁତରାଂ ଗୋଟିଏ କ୍ଷୁଦ୍ର ରାଜା ଦଶ ସହସ୍ର ପଶୁଘାତି ସଦୃଶ ଅଟନ୍ତି, ଅତଏବ ଯେଉଁ ରାଜା ପ୍ରଧାନ ସେ ପଞ୍ଚ ସହସ୍ର ପଶୁଘାତକଙ୍କ ସମାନ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ଅତଏବ ସେମାନଙ୍କ ନିକଟରୁ ପ୍ରତିଗ୍ରହ କରିବାର ନିତାନ୍ତ ନିଷିଦ୍ଧ । ସାଧୁ ବ୍ରାହ୍ମଣମାନେ ଏହି ସମସ୍ତ ଅପବିତ୍ର ଲୋକଙ୍କ ନିକଟରୁ ପ୍ରତିଗ୍ରହ ନ କରି ସ୍ୱର୍ଗଶାସ୍ତ୍ର, ଧର୍ମଶାସ୍ତ୍ର ଓ ଯେଉଁ ଶାସ୍ତ୍ରରେ ପିତୃଗଣ ଓ ଦେବଗଣଙ୍କର ରହସ୍ୟ କୀର୍ତ୍ତିତ ହୋଇଅଛି, ସେହି ଦେବଚରିତ ଶାସ୍ତ୍ର ଶ୍ରବଣ କରିବେ । ପ୍ରତିଗ୍ରହ ନିମିତ୍ତ ଏହି ସମସ୍ତ ତାରତମ୍ୟ ଉକ୍ତ ହୁଏ । ଦୁଷ୍ପ୍ରତିଗ୍ରହ ପରାଙ୍ମୁଖ ମନୁଷ୍ୟଙ୍କର ପୁଣ୍ୟ ଲକ୍ଷଣଯୁକ୍ତ ପବିତ୍ର ଧର୍ମାର୍ଥ, କାମଶାସ୍ତ୍ର ଅବଗତ ହେବା ବିଧେୟ । ତ୍ରିଦଶଗଣକର୍ତ୍ତୃକ ବିହିତ ପବିତ୍ର ଧର୍ମ, ବ୍ୟାକରଣ, ମହତ୍ ରହସ୍ୟ ଓ ଧର୍ମସଂଯୁକ୍ତ ଆଖ୍ୟାନ ଶ୍ରବଣ କରିବାର ଉଚିତ ।

ଶ୍ରାଦ୍ଧ କର୍ମରେ ପିତୃଗଣଙ୍କର ଯାହା ଗୁହ୍ୟ ବିଷୟ ଅଛି, ତାହା କହିବା ଏବଂ ଦେବଗଣଙ୍କର ସମସ୍ତ ରହସ୍ୟ ବିଷୟ କୀର୍ତ୍ତନ କରିବା । ୧୨। ଯହିଁରେ ସରହସ୍ୟ ମହାଫଳ ଋଷିଧର୍ମ ସ୍ତୁତ ହୁଏ, ମହାଯଜ୍ଞ ଫଳ ଓ ସମସ୍ତ ଦାନଫଳ ଯେଉଁ ନରବୃନ୍ଦ ସର୍ବଦା ପାଠ କରନ୍ତି, ସେହିମାନଙ୍କ ନିକଟରେ ଶାସ୍ତ୍ରସମୂହ ସମ୍ୟକ୍‌ରୂପେ ସ୍ଥିତ ହୁଅନ୍ତି । ଯେ ଶ୍ରବଣ କରି ଫଳ କୀର୍ତ୍ତନ କରନ୍ତି, ସେ ସ୍ୱୟଂ ନାରାୟଣ ପ୍ରଭୁଙ୍କ ସଦୃଶ ହୁଅନ୍ତି । ୧୪ । ଯେଉଁ ନର ଅତିଥି ପୂଜା କରନ୍ତି, ସେ ଗୋଦାନର ଫଳ, ତୀର୍ଥଫଳ, ଯଜ୍ଞଫଳ ଏହି ସମସ୍ତ ଫଳ ପ୍ରାପ୍ତ ହୁଅନ୍ତି । ୧୫ । ଯେଉଁମାନେ ଶ୍ରଦ୍ଧାଯୁକ୍ତ ହୋଇ ଶାସ୍ତ୍ର ଶ୍ରବଣ କରନ୍ତି ଓ କାର୍ଯ୍ୟ କରନ୍ତି, ଯେଉଁମାନଙ୍କ ମାନସ ବିଶୁଦ୍ଧ, ହେହି ସମସ୍ତ ଶ୍ରଦ୍ଧାଯୁକ୍ତ ସାଧୁଗଣଙ୍କ ଦ୍ୱାରା ସମସ୍ତ ଲୋକସମୂହ ଜିତ ହୁଏ । ୧୬ । ଶ୍ରଦ୍ଧାଯୁକ୍ତ ସାଧୁବ୍ୟକ୍ତି ପାପରୁ ବିମୁକ୍ତ ହୁଅନ୍ତି । ସେ କଦାପି କୌଣସି ପାପରେ ଲିପ୍ତ ହୁଅନ୍ତି ନାହିଁ । ସେ ପରମଲୋକକୁ ଗମନ କଲେ ସର୍ବଦା ଧର୍ମଫଳ ଲାଭ କରନ୍ତି । ୧୭ ।

କିଞ୍ଚିତ୍ କାଳ ଉତ୍ତାରେ ଦେବଦୂତ ଯଦୃଚ୍ଛାକ୍ରମରେ ଅନ୍ତର୍ହିତ ଥାଇ ବାସବଙ୍କୁ ପ୍ରଶ୍ନ କଲେ, ସେହି କାମଗୁଣସମନ୍ୱିତ ଭିଷକ୍‌ବର ଅଶ୍ୱିନୀ-କୁମାରଯୁଗଳଙ୍କ ଆଜ୍ଞାଦ୍ୱାରା ଆମ୍ଭେ ନରଗଣ, ପିତୃଗଣ ଓ ଦେବଗଣଙ୍କ ନିକଟରେ ଉପସ୍ଥିତ ହୋଇଅଛୁଁ । ୧୯ । କେଉଁ କାରଣରେ ଶ୍ରାଦ୍ଧ ବିଷୟରେ କର୍ତ୍ତା ଓ ଭୋକ୍ତାଙ୍କର ମୈଥୁନ ବିବର୍ଜ୍ଜିତ ହୁଏ ? କେଉଁ ନିମିତ୍ତ ପିଣ୍ଡତ୍ରୟ ପୃଥକ୍ ପୃଥକ୍ ରୂପେ ପ୍ରବିଭକ୍ତ ହୁଏ ? ୨୦ । ପ୍ରଥମ ପିଣ୍ଡ କାହାକୁ ପ୍ରଦାନ କରିବାର ଉଚିତ, ମଧ୍ୟମ ପିଣ୍ଡ କେଉଁ ସ୍ଥାନକୁ ଯାଏ ? ଅବଶିଷ୍ଟ ପିଣ୍ଡ କାହା ନିମିତ୍ତ ସ୍ମୃତ ହୋଇଅଛି ? ଏହା ଜାଣିବା ନିମନ୍ତେ ଆମ୍ଭେ ଇଚ୍ଛା କରୁଅଛୁ । ୨୧ । ଶ୍ରଦ୍‌ଦଧାନ ଦୂତକର୍ତ୍ତୃକ ଏହି ଧର୍ମ ସମ୍ବନ୍ଧ ବାକ୍ୟ ଭାଷିତ ହେଲାରୁ ପୂର୍ବସ୍ଥିତ ତ୍ରିଦଶଗଣ ଓ ପିତୃଗଣ ସେହି ଖେଚରଙ୍କୁ ପୂଜା କରି କହିଲେ । ୨୨ ।

ପିତୃଗଣ କହିଲେ, ହେ ଖେଚରୋତ୍ତମ ! ତୁମ୍ଭେ ସୁଖରେ ଆଗମନ କରିଅଛ ତ ? ତୁମ୍ଭର ମଙ୍ଗଳ ହେଉ, ତୁମ୍ଭେ ଗୂଢାର୍ଥଯୁକ୍ତ ପରମ ଉତ୍କୃଷ୍ଟ ପ୍ରଶ୍ନ କରିଅଛ । ୨୩ । ଯେଉଁ ବ୍ୟକ୍ତି ଶ୍ରାଦ୍ଧ କରି ଅଥବା ଶ୍ରାଦ୍ଧରେ ଭୋଜନ କରି ସ୍ତ୍ରୀ ନିକଟକୁ ଗମନ କରନ୍ତି, ତାହାଙ୍କ ପିତୃଗଣ ସେହି ମାସରେ ସେହି ରେତ ମଧ୍ୟରେ ଶୟନ କରନ୍ତି । ୨୪ । ସମ୍ପ୍ରତି ପିଣ୍ଡ-ତ୍ରୟର ବିଭାଗ ବିଷୟ ଆନୁପୂର୍ବିକ କ୍ରମରେ କହୁଅଛୁଁ । ଯେଉଁ ପିଣ୍ଡ ଅଧସ୍ତାତ୍ ଗମନ କରେ, ତାହା ଜଳରେ ଆବିଷ୍ଟ ହୁଏ, ଏହି କଥା ବିସ୍ତର କରିବାର ଉଚିତ । ୨୫ । ମଧ୍ୟମ ପିଣ୍ଡକୁ କେବଳ ପତ୍ନୀ ଭୋଜନ କରନ୍ତି, ତନ୍ମଧ୍ୟରେ ଯେଉଁ ତୃତୀୟ ପିଣ୍ଡ ତାହା ଅଗ୍ନିରେ ପ୍ରଦାନ କରିବ ।୨୬। ଆମ୍ଭେ ଧର୍ମାନୁସାରେ ଏହି ଶ୍ରାଦ୍ଧ ଧର୍ମକୁ କହିଲୁଁ, ଏହା କଦାପି ଲୁପ୍ତ ହୁଏ ନାହିଁ ।

ଯେ ଶ୍ରାଦ୍ଧ କରନ୍ତି ତାହାଙ୍କ ପିତୃଗଣ ପ୍ରହୃଷ୍ଟଚିତ୍ତ ଓ ସର୍ବଦା ସନ୍ତୁଷ୍ଟ ହୁଅନ୍ତି । ୨୭ । ତାହାଙ୍କର ସନ୍ତାନବୃଦ୍ଧି ଓ ଅକ୍ଷୟ ଧନ ହୁଏ । ଦେବଦୂତ କହିଲେ, ଆପଣ ଆନୁପୂର୍ବିକକ୍ରମେ ପିଣ୍ଡସମୂହର ପୃଥକ୍ ପୃଥକ୍ ବିଭାଗ-ବିଷୟ କହିଲେ ଏବଂ ପିଣ୍ଡତ୍ରୟରେ ସମସ୍ତ ପିତୃଗଣଙ୍କ ନିରୁକ୍ତି ମଧ୍ୟ କହିଲେ । ୨୮ । ଅଧସ୍ତାତ୍ ଜଳରେ ଯେଉଁ ଏକପିଣ୍ଡ ନିକ୍ଷିପ୍ତ ହୁଏ ତାହା କାହା ନିକଟକୁ ଗମନ କରେ ? ୨୯ । ତାହା କେଉଁପରି ପିତୃ-ଗଣଙ୍କୁ ଉଦ୍ଧାର କରେ ଓ ଦେବଗଣଙ୍କୁ ପରିତୃପ୍ତ କରେ ? ପତ୍ନୀ ଅନୁଜ୍ଞାତ ମଧ୍ୟମ ପିଣ୍ଡ ଭୋଜନ କରନ୍ତି । ୩୦ । ପିତୃଗଣ କେଉଁ ନିମିତ୍ତ ତାହାର କବ୍ୟ ଭୋଜନ କରନ୍ତି ? ଏଥିରେ ଯେଉଁ ଅନ୍ତିମ ପିଣ୍ଡ ଅଗ୍ନିରେ ଅର୍ପିତ

ହୁଏ (୩୧), ତାହାର କେଉଁ ଗତି ହୁଏ ? ତାହା ଅବା କାହା ନିକଟକୁ ଗମନ କରେ ? ପିଣ୍ଡବିଷୟର ଯେଉଁ ଗତି ହୁଏ ଓ ପିଣ୍ଡଦାତା ଯେଉଁ ଫଳ ବ୍ୟବହାର ଓ ପଥ ପ୍ରାପ୍ତ ହୁଅନ୍ତି, ତାହା ଶ୍ରବଣ କରିବା ନିମିତ୍ତ ଇଚ୍ଛୁକ ହୋଇଅଛୁଁ ।

ପିତୃଗଣ କହିଲେ, ହେ ଖେଚର ! ତୁମ୍ଭେ ଯେଉଁ ପ୍ରଶ୍ନ କଲ, ତାହା ଅତି ମହତ୍ ରହସ୍ୟ ଅଟେ, ଆମ୍ଭେମାନେ ଏହି ବିଷୟରେ ତୁଷ୍ଟ ହୋଇଅଛୁଁ । ଦେବଗଣ ଓ ଋଷିଗଣ ଏତାଦୃଶ ପ୍ରଶ୍ନକୁ ପ୍ରଶଂସା କରନ୍ତି । ୩୪ । ସେମାନେ ମଧ୍ୟ ଏହିପରି ପିତୃକାର୍ଯ୍ୟରେ ବିଶେଷ ନିର୍ଣ୍ଣୟ ଜାଣନ୍ତି ନାହିଁ । କେବଳ ଯେଉଁ ମହାତ୍ମା ପିତୃଭକ୍ତ ହେତୁରୁ ବର ଲାଭ କରି ମହାଯଶସ୍ୱୀ ହୋଇଅଛନ୍ତି, ସେହି ଚିରଜୀବୀ ମାର୍କଣ୍ଡେୟ ମୁନିଙ୍କ ବ୍ୟତିରେକେ ଅନ୍ୟ କେହି ଏହି ବିଷୟ ଜାଣନ୍ତି ନାହିଁ । ଭଗବାନ୍ଙ୍କ ନିକଟରେ ପିଣ୍ଡବିଷୟର ଗତିକି ଶ୍ରବଣ କରି, ଦେବଦୂତ ଯେଉଁ ଶ୍ରାଦ୍ଧ-ବିଧି ନିଚୟ ପ୍ରଶ୍ନ କରିଥିଲେ, ଆମ୍ଭ ନିକଟରୁ ସେହି ପିଣ୍ଡବିଷୟର ଗତିକି ସ୍ଥିର ଚିତ୍ତରେ ଶ୍ରବଣ କର । ୩୭ ।

ହେ ମହାମତେ ! ଯେଉଁ ପିଣ୍ଡଟି ଜଳରେ ନିକ୍ଷିପ୍ତ ହୁଏ, ସେହି ପିଣ୍ଡଦ୍ୱାରା ଭଗବାନ୍ ଚନ୍ଦ୍ର ପ୍ରୀତ ହୁଅନ୍ତି, ଚନ୍ଦ୍ର ସେହି ପିଣ୍ଡଦ୍ୱାରା ସ୍ୱୟଂ ପ୍ରୀତିଯୁକ୍ତ ହୋଇ ଦେବ ଓ ପିତୃଗଣଙ୍କୁ ପ୍ରୀତିଯୁକ୍ତ କରାନ୍ତି । ୩୮ । ପୁତ୍ରକାମା ପତ୍ନୀ ପିତୃଗଣଙ୍କ ଅନୁଜ୍ଞାନୁସାରେ ଯେଉଁ ମଧ୍ୟମ ପିଣ୍ଡ ଭୋଜନ କରନ୍ତି, ତାହାଦ୍ୱାରା ପିତାମହଗଣ ପୁତ୍ର ପ୍ରଦାନ କରନ୍ତି । ୩୯ । ହବ୍ୟବାହରେ ଯେଉଁ ପିଣ୍ଡ ପ୍ରଦତ୍ତ ହୁଏ, ତଦ୍‌ବିଷୟ ଆମ୍ଭ ନିକଟରୁ ଶ୍ରବଣ କର । ତାହାଦ୍ୱାରା ପିତୃଗଣ ପରିତୃପ୍ତ ହୁଅନ୍ତି ଏବଂ ଅଭିଲଷିତ ଫଳ ପ୍ରଦାନ କରନ୍ତି । ପିଣ୍ଡବିଷୟ ମଧ୍ୟରେ ଯେଉଁପରି ଗତି ହୁଏ, ଏହିପରି ତାହାସବୁ ତୁମ୍ଭ ନିକଟରେ କହିଲୁ । ୪୦ । ଶ୍ରାଦ୍ଧଭୋକ୍ତା ବ୍ରାହ୍ମଣ ଯଜମାନଙ୍କ ପିତୃତ୍ୱ ପ୍ରାପ୍ତ ହୁଅନ୍ତି । ଶ୍ରାଦ୍ଧ ଦିବସରେ ମୈଥୁନ ପରିହାର୍ଯ୍ୟ ବୋଲି ଏହା ସାଧୁସମ୍ମତ ଅଟେ । ୪୧ ।

ହେ ଖେଚରୋତ୍ତମ ! ସର୍ବଦା ଶୁଚି ହୋଇ ଶ୍ରାଦ୍ଧ ଭୋଜନ କର୍ତ୍ତବ୍ୟ । ୪୨ । ଆମ୍ଭେ ଯେଉଁସବୁ ଦୋଷର କଥା କହୁଅଛୁଁ, ତାହା ତାଦୃଶ ଅଟେ ; ଅନ୍ୟଥା ନୁହେଁ ; ଅତଏବ ବ୍ରାହ୍ମଣ ସ୍ନାନପୂର୍ବକ ଶୁଚି ଓ କ୍ଷମାଶୀଳ ହୋଇ ଶ୍ରାଦ୍ଧାନ୍ନ ଭୋଜନ କରିବେ । । ୪୩ । ଯେ ସମ୍ୟକ୍‌ରୂପେ ଏହିପରି ଅନୁଷ୍ଠାନ କରନ୍ତି, ତାଙ୍କର ସନ୍ତାନ ବୃଦ୍ଧି ହୁଏ ।

ତତ୍ପରେ ବିଦ୍ୟୁତ୍ପ୍ରଭ ନାମକ ମହାତପା ଋଷି, ଯାହାଙ୍କ ରୂପ ଆଦିତ୍ୟଙ୍କ ତେଜ ସଦୃଶ ପ୍ରକାଶିତ ହେଉଥିଲା, ସେ ସମସ୍ତ ଧର୍ମ ରହସ୍ୟ ଶ୍ରବଣ କରି ଦେବରାଜଙ୍କୁ କହିଲେ (୪୫), ନରଗଣ ମୋହିତ ହୋଇ ତିର୍ଯ୍ୟକ୍-ଯୋନିଗତ ସମସ୍ତ କୀଟ, ପିପୀଲିକା, ସର୍ପ, ମେଷ, ମୃଗ ଓ ପକ୍ଷୀସମୂହଙ୍କୁ ହିଂସା କରନ୍ତି । ୪୬ । ଏହାଦ୍ୱାରା ସେମାନେ ନିରନ୍ତରସ୍ଥ ପାପଭାଜନ ହୁଅନ୍ତି, ଅତଏବ ଏମାନଙ୍କର କେଉଁ ପ୍ରକାର ପ୍ରତିକାର ହୋଇପାରେ ? ତଦନନ୍ତର ସମସ୍ତ ଦେବଗଣ, ତପୋଧନ ଋଷିଗଣ, ମହାଭାଗ ପିତୃଗଣ ସେହି ମୁନିଙ୍କୁ ପୂଜା କଲେ । ୪୮ । ଇନ୍ଦ୍ରଦେବ କହିଲେ, କୁରୁକ୍ଷେତ୍ର, ଗୟା, ଗଙ୍ଗା, ପ୍ରଭାସ ପୁଷ୍କର ପ୍ରଭୃତି ତୀର୍ଥସମୂହଙ୍କୁ ମନେ ମନେ ଧ୍ୟାନ କରି ପରିଶେଷରେ ଜଳରେ ସ୍ନାନ କରିବାର ଉଚିତ । ତାହାହେଲେ ଚନ୍ଦ୍ରମା ଯେଉଁପରି ରାହୁମୁଖରୁ ବିମୁକ୍ତ ହୁଅନ୍ତି, ମନୁଷ୍ୟ ତଦ୍‌ବତ୍ ପାପରୁ ମୁକ୍ତ ଲାଭ କରନ୍ତି । ୪୯ । ଯେ ତିନ ଦିବସ ସ୍ନାନ କରି ନିରାହାର ହେବେ, ସେ ଗୋଗଣଙ୍କ ପୃଷ୍ଠ ସ୍ପର୍ଶ କରିବେ ଓ ସେମାନ ଲାଙ୍ଗୂଳସମୂହକୁ ନମସ୍କାର କରିବେ । ୫୦ ।

ତତ୍ପରେ ବିଦ୍ୟୁତ୍‌ପ୍ରଭ ବାସବଙ୍କୁ କହିଲେ, ହେ ଶତକ୍ରତୋ ! ଏହା ସୂକ୍ଷ୍ମରେ ଧର୍ମ ଅଟେ ଜାଣ । ୫୧ । ମନୁଷ୍ୟ ବଟ, ଜଟା, କଷାୟଦ୍ୱାରା ଘୃଷ୍ଟ ଓ ପ୍ରିୟଙ୍ଗୁଦ୍ୱାରା ଅନୁଲିପ୍ତ ହୋଇ କ୍ଷୀର ସହିତ ।ଷଷ୍ଟୀବ୍ରତ ପକ୍ୱଧାନ୍ୟ ଭକ୍ଷଣ କଲେ ସମସ୍ତ ପାପରୁ ବିମୁକ୍ତ ହୁଅନ୍ତି । ୫୨ । ଋଷିଚନ୍ତିତ ଅନ୍ୟ ଏକ ଗୋପନୀୟ ରହସ୍ୟ ବିଷୟ ଶ୍ରବଣ କର । ଆମ୍ଭେ ଶିବଙ୍କ ସମୀପସ୍ଥ ହୋଇ ତାହାଙ୍କ ସହିତ ଭାଷମାଣ ବୃହସ୍ପତିଙ୍କ ନିକଟରୁ ଯାହା ଶ୍ରବଣ କରିଅଛୁ, ଦେବେଶ ଶଚୀପତେ ! ତୁମ୍ଭେ ତାହା ଶ୍ରବଣ କର । ୫୩ । ମନୁଷ୍ୟ ପର୍ବତରେ ଆରୋହଣପୂର୍ବକ ଏକପାଦରେ ଅବସ୍ଥାନ କରି ନିରାହାର, ଊର୍ଦ୍ଧ୍ୱବାହୁ ଓ କୃତାଞ୍ଜଳି ହୋଇ ପ୍ରଭାକରଙ୍କୁ ନିରୀକ୍ଷଣ କରିବେ ; ଏହିପରି ଉତ୍କୃଷ୍ଟ ତପସ୍ୟାଯୁକ୍ତ ବ୍ୟକ୍ତି ଉପବାସର ଫଳ ଲାଭ କରନ୍ତି (୫୫) ଏବଂ ସୂର୍ଯ୍ୟକିରଣଦ୍ୱାରା ତାପିତ ହୋଇ ସର୍ବପାପ ପରିତ୍ୟାଗ କରନ୍ତି ।

ଗ୍ରୀଷ୍ମକାଳରେ ଓ ଶୀତ ସମୟରେ ଏହିପରି କଲେ ପାପ ବିନଷ୍ଟ ହୁଏ । ୫୬ । ତତ୍ପରେ ପାପରୁ ମୁକ୍ତ ହେବା ବ୍ୟକ୍ତିଙ୍କର ଶାଶ୍ୱତୀ ଦ୍ୟୁତି ହୁଏ । ସେ ତେତେବେଳେ ସେହି ତେଜଦ୍ୱାରା ସୂର୍ଯ୍ୟଦେବଙ୍କ ସଦୃଶ ଉଦ୍ଦୀପ୍ତ ହୋଇ ପୁନଶ୍ଚ ଚନ୍ଦ୍ରଙ୍କ ସଦୃଶ ଶୋଭମାନ ହୁଅନ୍ତି । ୫୭ । ତଦନନ୍ତର ତ୍ରିଦଶବର୍ଗ ମଧ୍ୟରେ ଦେବରାଜ ଶତକ୍ରତୁ ବୃହସ୍ପତିଙ୍କୁ ଅତି ଉତ୍କୃଷ୍ଟ ମଧୁର

ବାକ୍ୟ କହିଲେ । ୫୮ । ହେ ଭଗବନ୍ ! ନରଗଣଙ୍କର ଗୋପନୀୟ ଧର୍ମ ଏବଂ ରହସ୍ୟ ସହିତ ଯେଉଁ ଦୋଷସମୂହ ଅଛି, ତାହା ସବୁ ଆପଣ ଯଥାର୍ଥ ରୂପେ କୀର୍ତ୍ତନ କରିବା ହେଉନ୍ତୁ । ୫୯ ।

ବୃହସ୍ପତି କହିଲେ, ଯେଉଁମାନେ ସୂର୍ଯ୍ୟଙ୍କ ଅଭିମୁଖରେ ମୂତ୍ର ପୁରୀଷ ପରିତ୍ୟାଗ କରନ୍ତି, ଯେଉଁମାନେ ଅନଳ ପ୍ରତି ଦ୍ୱେଷ କରନ୍ତି, ଯେଉଁ-ମାନେ ପ୍ରଦୀପ୍ତ ହୁତାଶନରେ ସମିଧ ହୋମ ନ କରନ୍ତି (୬୦), ଯେଉଁମାନେ କ୍ଷୀର କାରଣରୁ ବାଳବତ୍ସା ଧେନୁ ଦୋହନ କରନ୍ତି, ହେ ଶଚୀପତେ ! ସେହିମାନଙ୍କର ଦୋଷସମୂହ କହିବା, ଶ୍ରବଣ କର । ୬୧ । ହେ ବାସବ ! ସୂର୍ଯ୍ୟଦେବ, ପବନ, ଅଗ୍ନି ଓ ଲୋକମାତା ଧେନୁବୃନ୍ଦ ସ୍ୱୟମ୍ଭୂଙ୍କ ଦ୍ୱାରା ସୃଷ୍ଟ ହୋଇଅଛନ୍ତି । ୬୨ । ଏହିସବୁ ଦେବତା ନରଗଣଙ୍କ ପରିତ୍ରାଣ ନିମିତ୍ତ ସମର୍ଥ ଅଟନ୍ତି । ଆପଣମାନେ ସମସ୍ତେ ପ୍ରତ୍ୟେକ ଧର୍ମ ନିଶ୍ଚୟ ଶ୍ରବଣ କରିବା ହେଉନ୍ତୁ । ୬୩ ।

ଯେଉଁ ସବୁ ଦୁର୍ବୃତ୍ତ ପୁରୁଷ ଓ ଦୁର୍ବୃତ୍ତା ସ୍ତ୍ରୀ, ସୂର୍ଯ୍ୟଙ୍କ ଅଭିମୁଖରେ ମଳମୂତ୍ର ପରିତ୍ୟାଗ କରନ୍ତି, ସେମାନେ ଷଡ଼ଶୀତିବର୍ଷ ପର୍ଯ୍ୟନ୍ତ କୁଳପାଂଶନ ହୁଅନ୍ତି ।୬୪। ହେ ଶକ୍ର ! ଯେଉଁମାନେ ଅନଳଙ୍କ ଦ୍ୱେଷ କରନ୍ତି, ସେମାନଙ୍କ ଗର୍ଭସ୍ଥ ସନ୍ତାନଗଣ ବିଚ୍ୟୁତ ହୁଅନ୍ତି । ଯେଉଁମାନେ ମହାପ୍ରଦୀପ୍ତ ହୁତା-ଶନରେ ସମିଧ ହୋମ ନ କରନ୍ତି, ସେମାନଙ୍କର ଅଗ୍ନିକାର୍ଯ୍ୟରେ ପାବକ-ଦେବ ହବ୍ୟ ଭକ୍ଷଣ କରନ୍ତି ନାହିଁ । ଇହଲୋକରେ ଯେଉଁ ସବୁ ନରଗଣ ବାଳବତ୍ସା ଧେନୁଙ୍କ କ୍ଷୀର ପାନ କରନ୍ତି (୬୬), ସେମାନଙ୍କର ଦୁଗ୍ଧପୋଷ୍ୟ କୁଳବର୍ଦ୍ଧନ ସନ୍ତାନ ଜନ୍ମଗ୍ରହଣ କରନ୍ତି ନାହିଁ, ସୁତରାଂ ପ୍ରଜାକ୍ଷୟ ହେତୁରୁ ସେମାନଙ୍କଅ କୁଳ ଓ ବଂଶ କ୍ଷୟ ହୁଏ । ୬୭ । କୁଳବୃଦ୍ଧ ଦ୍ୱିଜାତିଗଣ ପୂର୍ବକାଳରେ ଏହା ଦର୍ଶନ କରିଥିଲେ । ଆମ୍ଭେ ତୁମ୍ଭଙ୍କୁ ଏହା ସତ୍ୟ କହୁ-ଅଛୁ, ସେହି କାରଣରୁ ଐଶ୍ୱର୍ଯ୍ୟକାମୀ ନର ବର୍ଜନୀୟ ବିଷୟ ସମୂହ ବର୍ଜନ କରିବେ ଓ କର୍ତ୍ତବ୍ୟ ବିଷୟର ଅନୁଷ୍ଠାନ କରିବାକୁ ସର୍ବଦା ଯତ୍ନଶୀଳ ହେବେ ।

ହେ ମହାଭାଗ ! ତଦନନ୍ତର ସମସ୍ତ ମରୁଦ୍‌ଗଣଙ୍କ ସହିତ ସମସ୍ତ ଦେବଗଣ ଓ ମହାଭାଗ ଋଷିଗଣ ପିତୃଗଣଙ୍କୁ ପ୍ରଶ୍ନ କରିଥିଲେ । ହେ ପିତୃଗଣ ! ଆପଣମାନେ ଅଳ୍ପବୁଦ୍ଧି ନରଗଣଙ୍କର କେଉଁ କର୍ମଦ୍ୱାରା ତୁଷ୍ଟ ହୁଅନ୍ତି ? (୬୦) ଏବଂ ଔର୍ଦ୍ଧ୍ୱଦେହିକ ଦାନ କେଉଁପରି ଅକ୍ଷୟ ହୁଏ ଓ ମାନବଗଣ କୀଦୃଶ କର୍ମଦ୍ୱାରା କେଉଁପରି ପିତୃଗଣଙ୍କ ନିକଟରେ ଆନୃଣ୍ୟ ଲାଭ କରନ୍ତି ।୭୧। ଆମ୍ଭେମାନେ ଏହା ଶୁଣିବା ନିମିତ୍ତ ଅଭିଳାଷ କରୁଅଛୁ,

ଏହି ବିଷୟରେ ଆମ୍ଭମାନଙ୍କର ଅତିଶୟ କୌତୂହଳ ଜନ୍ମିଅଛି । ପିତୃଗଣ କହିଲେ, ହେ ମହାଭାଗସମୂହ ! ଆପଣମାନେ ନ୍ୟାୟାନୁସାରେ ଏହି ସଂଶୟ ବିଷୟ ପ୍ରଶ୍ନ କରୁଅଛନ୍ତି । ୭୨ ।

ସାଧୁକର୍ମଶୀଳ ମର୍ତ୍ତ୍ୟଗଣଙ୍କର କେଉଁ କର୍ମଦ୍ୱାରା ଆମ୍ଭେମାନେ ତୁଷ୍ଟ ହେଉ ତାହା ଆପଣମାନେ ଶ୍ରବଣ କରିବା ହେଉନ୍ତୁ । ନରଗଣ ଅମାବସ୍ୟା ତିଥିରେ ନୀଳବର୍ଣ୍ଣ ବୃଷ ବିମୋଚନ ପୂର୍ବକ ତିଳୋଦକଦ୍ୱାରା ତର୍ପଣ କଲେ ଏବଂ ବର୍ଷାକାଳରେ ଦୀପଦାନ କଲେ ପିତୃଗଣଙ୍କ ନିକଟରେ ଋଣଶୂନ୍ୟ ହୁଅନ୍ତି । ଏହି ଦାନ ଅକ୍ଷୟ, ନିର୍ବ୍ୟଳିକ ଏବଂ ମହାଫଳଜନକ ଅଟେ ।୭୪। ଆମ୍ଭମାନଙ୍କର ପରିତୋଷ ହୁଏ ବୋଲି ଏହା ଅକ୍ଷୟ ରୂପେ କୀର୍ତ୍ତିତ ହୋଇଅଛି । ଯେଉଁ ନରସମୂହ ଶ୍ରଦ୍ଧାଯୁକ୍ତ ହୋଇ ସନ୍ତାନ ଉତ୍ପାଦନ କରନ୍ତି (୭୫), ସେମାନେ ପ୍ରପିତାମହଗଣଙ୍କୁ ଦୁର୍ଗମ ନରକରୁ ଉଦ୍ଧାର କରନ୍ତି । ମହାତେଜା ତପୋଧନ ବୃଦ୍ଧ ଗର୍ଗମୁନି ପିତୃଗଣଙ୍କ ବାକ୍ୟ ଶ୍ରବଣ କରି ପୁଲକିତ ହୋଇ ସେମାନଙ୍କୁ ଏହିପରି ବାକ୍ୟ କହିଲେ—ହେ ତପୋଧନଗଣ ! ନୀଳବର୍ଣ୍ଣ ବୃଷ ବିମୋଚନ କଲେ, ବର୍ଷାକାଳରେ ଦୀପ-ଦାନ କଲେ ଏବଂ ତିଳୋଦକଦ୍ୱାରା ତର୍ପଣ କଲେ କେଉଁ ଫଳ ହୁଏ ?

ପିତୃଗଣ କହିଲେ, ନୀଳବର୍ଣ୍ଣ ବୃଷଭର ଲାଙ୍ଗୁଳ ଯଦି ଜଳଉତ୍ତୋଳନ କରେ, ତେବେ ପିତୃଗଣ ଷଷ୍ଟିସହସ୍ର ବର୍ଷ ତାହାଦ୍ୱାରା ତର୍ପିତ ହୋଇ ରହନ୍ତି । ବୃଷଭ ଯଦି କୂଳରୁ ଶୃଙ୍ଗଗତ ପଙ୍କ ଉଦ୍ଧାର କରି ଅବସ୍ଥିତ ହୁଏ, ତେବେ ତାହାଦ୍ୱାରା ପିତୃଗଣ ସୋମଲୋକକୁ ଗମନ କରନ୍ତି, ସଂଶୟ ନାହିଁ । ବର୍ଷାକାଳରେ ଦୀପଦାନ ଦ୍ୱାରା ମନୁଷ୍ୟ ଚନ୍ଦ୍ର ସଦୃଶ ଶୋଭମାନ ହୁଅନ୍ତି । ୮୦ । ଯେ ଦୀପଦାନ କରନ୍ତି, ତାହାଙ୍କର ରୂପ ଅନ୍ଧକାର ସଦୃଶ ହୁଏ ନାହିଁ । ହେ ତପୋଧନ ! ଯେଉଁ ନରବୃନ୍ଦ ଅମାବାସ୍ୟାରେ ଉଦୁମ୍ବର ପାତ୍ର ଗ୍ରହଣ ପୂର୍ବକ ମଧୁମିଶ୍ରିତ ତିଳୋଦକ ପ୍ରଦାନ କରନ୍ତି, ସେମାନଙ୍କର ଯଥାର୍ଥ ରୂପେ ସରହସ୍ୟ ଶ୍ରାଦ୍ଧ କାର୍ଯ୍ୟ ସାଧନ ହୁଏ । ୮୨ । ସେମାନଙ୍କ ସନ୍ତାନଗଣ ସର୍ବଦା ହୃଷ୍ଟପୁଷ୍ଟମନା ହୁଅନ୍ତି, ପିଣ୍ଡଦାତାଙ୍କର କୁଳ ଓ ବଂଶ-ବୃଦ୍ଧି ରୂପ ଫଳଲାଭ ହୁଏ । ଯେ ଶ୍ରଦ୍ଧାଯୁକ୍ତ ହୋଇ ଶ୍ରାଦ୍ଧ କରନ୍ତି, ସେ ପିତୃଗଣଙ୍କ ନିକଟରେ ଋଣଶୂନ୍ୟ ହୁଅନ୍ତି ।୮୩। ଏହିପରି ଶ୍ରାଦ୍ଧର କାଳ ଓ ଶ୍ରାଦ୍ଧର କ୍ରମ ନିର୍ଦ୍ଦିଷ୍ଟ ହୋଇଅଛି; ଅତଏବ ବିଧି, ପାତ୍ର ଓ ଫଳ ଯଥାର୍ଥ ରୂପେ କୀର୍ତ୍ତିତ ହେଲା । ୮୪ ।

---

# ଅଧ୍ୟାୟ—୧୬୭

ଋଷିଷ୍ଠ କହିଲେ—"କେଉଁ କର୍ମଦ୍ୱାରା ଆପଣଙ୍କର ପ୍ରୀତି ହୁଏ ଏବଂ ଆପଣ କେଉଁପରି ସନ୍ତୋଷ ଲାଭ କରନ୍ତି ?" ଐଶ୍ୱର୍ଯ୍ୟଶାଳୀ ହରିଙ୍କୁ ଏହିପରି ପ୍ରଶ୍ନ କରନ୍ତେ ସେ କହିଲେ (୧)— ବଷିଷ୍ଠ କହିଲେ, ହେ ପୁରନ୍ଦର ! ବ୍ରାହ୍ମଣଗଣଙ୍କର ନିନ୍ଦା ଆମ୍ଭର ଅସହ୍ୟ; ବ୍ରାହ୍ମଣଗଣ ସର୍ବଦା ପୂଜିତ ହେଲେ, ଆମ୍ଭେ ପୂଜିତ ହେଉଁ, ଏଥିରେ ସଂଶୟ ନାହିଁ । ୨ । ଦ୍ୱିଜେନ୍ଦ୍ରଗଣ ନିତ୍ୟଅଭିବାଦନୀୟ, ଭୋଜନାନନ୍ତର ସନ୍ଧ୍ୟାକାଳରେ ଶିଷ୍ଟାଗ୍ରହ-ବଶରୁ ତଦୀୟ ପାଦ ଅଭିବାଦ୍ୟ । ଯେଉଁ ମାନବ ଗୋମୟଲିପ୍ତ ସ୍ଥାନରେ ସୁଦର୍ଶନ ମନ୍ତ୍ରଦ୍ୱାରା ପୂଜା କରନ୍ତି, ଆମ୍ଭେ ସେହିସବୁ ମାନବଗଣଙ୍କ ପ୍ରତି ସନ୍ତୁଷ୍ଟ ହେଉଁ । ଯେ ବାମନ ବ୍ରାହ୍ମଣଙ୍କୁ, ଜଳୋତ୍‌ଥିତ ବରାହଙ୍କୁ ଏବଂ ଉଦ୍ଧୃତା ଧରଣୀଙ୍କୁ ଦର୍ଶନ କରି ନମସ୍କାର କରନ୍ତି (୪), ସେହିମାନଙ୍କର କୌଣସି ଅଶୁଭ ଏବଂ ପାପ ଉତ୍ପନ୍ନ ହୁଏ ନାହିଁ । ଯେଉଁ ମାନବ ସର୍ବଦା ଅଶ୍ୱତ୍ଥ, ଗୋରଚନା ଓ ଗୋପୂଜା କରନ୍ତି (୫), ତାହାଙ୍କ ଦ୍ୱାରା ଦେବାସୁର ମାନବ ସହିତ ସମସ୍ତ ଜଗତ ପୂଜିତ ହୁଏ, ଆମ୍ଭେ ଯଥାର୍ଥ ରୂପେ ଉକ୍ତ ପ୍ରକାରେ ସେହିମାନଙ୍କର ପୂଜା ଗ୍ରହଣ କରୁ । ୬ । ଯାବତ୍-କାଳ ଲୋକସମୂହ ପ୍ରତିଷ୍ଠିତ, ତାବତ୍‌କାଳ ଏହା ଆମ୍ଭର ପୂଜା, ଏହାଠାରୁ ଅନ୍ୟ ଆଉ କିଛି ନାହିଁ । ଅଳ୍ପବୁଦ୍ଧି ମନୁଷ୍ୟଗଣ ଏହା ଅନ୍ୟଥା କଲେ ସେମାନଙ୍କ ପୂଜା ବୃଥା ହୁଏ; ଆମ୍ଭେ ତାହା ପ୍ରତିଗ୍ରହ କରୁନାହିଁ, ତହିଁରେ ଆମ୍ଭର ସନ୍ତୋଷ ହୁଏ ନାହିଁ । ୮ । ଇନ୍ଦ୍ର କହିଲେ, ଚକ୍ର, ପାଦଦ୍ୱୟ, ବରାହ, ବ୍ରାହ୍ମଣ, ବାମନ ଓ ଉଦ୍ଧୃତା ଧରଣୀଙ୍କୁ ଆପଣ କି ନିମିତ୍ତ ପ୍ରଶଂସା କରନ୍ତି ? ୯ । ଆପଣ ଜୀବସମୂହକୁ ସର୍ଜନ କରିଅଛନ୍ତି, ଆପଣ ଜୀବଗଣଙ୍କୁ ସଂହାର କରୁଅଛନ୍ତି, ଆପଣ ସମସ୍ତ ଭୂତ ଓ ନରଗଣଙ୍କର ସନାତନୀ ପ୍ରକୃତି ଅଟନ୍ତି । ୧୦ ।

ଋଷିଷ୍ଠ କହିଲେ, ତଦନନ୍ତର ବଷିଷ୍ଠ ଈଷତ୍ ହାସ୍ୟ କରି ଏହି କଥା କହିଲେ ଯେ, ଚକ୍ରଦ୍ୱାରା ଦୈତ୍ୟଗଣ ନିହତ ହୋଇଅଛନ୍ତି, ପଦଦ୍ୱୟ-ଦ୍ୱାରା ବସୁନ୍ଧରା ଆକ୍ରାନ୍ତା ହୋଇଥିଲେ । ୧୧ । ବରାହରୂପ ଧାରଣ କରି ଆମ୍ଭେ ହିରଣ୍ୟାକ୍ଷ ଦୈତ୍ୟର ବଧ ସାଧନ କରିଥିଲୁ, ଏବଂ ବାମନ ରୂପ ଧାରଣ କରି ଆମ୍ଭେ ବଳିରାଜାଙ୍କୁ ଜୟ କରିଥିଲୁ । ୧୨ । ଅତଏବ

ଏତାଦୃଶ ମହାତ୍ମା ମନୁଷ୍ୟଗଣଙ୍କଠାରେ ପରିତୁଷ୍ଟ ହେଉଁ । ସୁତରାଂ ଯେଉଁମାନେ ଆମ୍ଭଙ୍କୁ ପୂଜା କରନ୍ତି, ସେମାନଙ୍କର ପରାଭବ ହୁଏ ନାହିଁ । ୧୩ । ସମାଗତ ବ୍ରାହ୍ମଣ ଅଥବା ବ୍ରହ୍ମଚାରୀଙ୍କୁ ଦର୍ଶନ କରି ପ୍ରଥମରେ ବ୍ରାହ୍ମଣଙ୍କୁ ଆହୁତି ପ୍ରଦାନ କଲେ ତାହାଙ୍କର ଅମୃତ ଭୋଜନ ହୁଏ । ୧୪ । ଯେ ଆଦିତ୍ୟାଭିମୁଖ ହୋଇ ପ୍ରାତଃସନ୍ଧ୍ୟାରେ ଉପାସନା କରନ୍ତି, ସେ ସମସ୍ତ ତୀର୍ଥସ୍ନାନର ଫଳ ଲାଭ କରି ସର୍ବପାପରୁ ବିମୁକ୍ତ ହୁଅନ୍ତି । ୧୫ । ହେ ତପୋଧନଗଣ ! ସଂଶୟ ବିଷୟ ପ୍ରଶ୍ନକାରକ ତୁମ୍ଭମାନଙ୍କୁ ଏହି ସମସ୍ତ ଗୋପନୀୟ ବିଷୟ କହିଲୁ; ପୁନଶ୍ଚ ଆପଣ-ମାନଙ୍କର କେଉଁ ବିଷୟ କହିବା ? ୧୬ ।

ବଳଦେବ କହିଲେ, ମନୁଷ୍ୟଗଣଙ୍କର ସୁଖାବହ ପରମ ଗୁହ୍ୟ ବିଷୟ ଶ୍ରବଣ କର । ମୂଢଗଣ ଯେଉଁ ବିଷୟସମୂହ ନ ଜାଣି ଭୂତଗଣଙ୍କ-ଦ୍ୱାରା ପୀଡ଼ିତ ହୋଇ କ୍ଳେଶ ପ୍ରାପ୍ତ ହୁଅନ୍ତି (୧୭), ଯେଉଁ ମନୁଷ୍ୟ ପ୍ରଭାତ ସମୟରେ ଗାତ୍ରୋତ୍ଥାନ ପୂର୍ବକ ଗୋ, ଘୃତ, ଦଧି, ସର୍ଷପ ଓ ପ୍ରିୟଙ୍ଗୁ ଫଳ ସ୍ପର୍ଶ କରନ୍ତି, ସେ ପାପରୁ ମୁକ୍ତ ହୁଅନ୍ତି । ୧୮ । ତପୋଧନ-ଗଣ ଅଗ୍ର ଓ ପଶ୍ଚାତ୍ ଭାଗସ୍ଥିତ ସମସ୍ତ ଭୂତଗଣଙ୍କୁ ପରିହାର କରନ୍ତି, ଏବଂ ଶୂଦ୍ରଗଣଙ୍କର ଉଚ୍ଛିଷ୍ଟ ଦର୍ଶନ କରନ୍ତି ନାହିଁ । ୧୯ । ଦେବଗଣ କହିଲେ, ଯେଉଁ ବ୍ୟକ୍ତି ଉତ୍ତରାଭିମୁଖ ହୋଇ ଉଦକପୂର୍ଣ୍ଣ ତାମ୍ର ପାତ୍ର ଗ୍ରହଣ ପୂର୍ବକ ଉପବାସ ଓ ବ୍ରତ ସଂକଳ୍ପ କରନ୍ତି, ତାହାଙ୍କଠାରେ ଦେବଗଣ ପରିତୁଷ୍ଟ ହୁଅନ୍ତି, ଏବଂ ତାହାଙ୍କର କାମନା ସିଦ୍ଧ ହୁଏ । ଅଳ୍ପବୁଦ୍ଧି ମନୁଷ୍ୟ ଅନ୍ୟଥାଚରଣ କଲେ ତାହାଙ୍କର ସେ ସମସ୍ତ ବୃଥା ହୁଏ । ୨୧ । ଉପବାସରେ ସଂକଳ୍ପ ଓ ବଳିକାର୍ଯ୍ୟରେ ତାମ୍ର ପାତ୍ର ପ୍ରଶସ୍ତ ଅଟେ । ବଳି, ଭିକ୍ଷା, ଅର୍ଘ୍ୟ ଓ ପିତୃଗଣଙ୍କ ତିଳୋଦକ ତାମ୍ର ପାତ୍ରଦ୍ୱାରା ଦାତବ୍ୟ, ତାହାର ଅନ୍ୟଥା ଆଚରଣ କଲେ ଅଳ୍ପ ଫଳ ହୁଏ । ଦେବଗଣ ଯେଉଁପରି ପରିତୁଷ୍ଟ ହୁଅନ୍ତି, ତାହା ଗୁହ୍ୟ ରୂପେ ସମୁଦ୍ଦିଷ୍ଟ ହେଲା । ୨୩ ।

ଧର୍ମ କହିଲେ, ରାଜପୁରୁଷଙ୍କର କାର୍ଯ୍ୟକାରୀ ବିପ୍ର, ଘଣ୍ଟାବାଦକ, ଅର୍ଥାତ୍ ପୂଜାରୀ, ପରିଚାରକ, ଗୋରକ୍ଷକ, ବାଣିଜ୍ୟ ବ୍ୟବସାୟୀ, ଶିଳ୍ପ ବ୍ୟବସାୟୀ, ନଟ, ମିତ୍ରଦ୍ରୋହୀ, ବେଦାଧ୍ୟୟନ ବିମୁଖ, ଏହି ସମସ୍ତଙ୍କୁ ଦୈବ ଓ ପୈତ୍ର କାର୍ଯ୍ୟରେ କୌଣସି ପ୍ରକାର ଦାନ କରିବ ନାହିଁ । ୨୫ । ଦାନ କଲେ ସେ ପିଣ୍ଡପ୍ରଦଗଣଙ୍କ ଦ୍ୱାରା ହୀନ ହୁଅନ୍ତି ଏବଂ ତାହାଙ୍କଠାରେ ପିତୃଗଣ ପ୍ରୀତ ହୁଅନ୍ତି ନାହିଁ । ସେ ପିତୃଗଣଙ୍କୁ ପ୍ରୀତିଯୁକ୍ତ କରିପାରନ୍ତି

ନାହିଁ, ଅତିଥି ଯାହାଙ୍କ ଗୃହରୁ ଭଗ୍ନାଶ ହୋଇ ପ୍ରତିନିବୃତ୍ତ ହୁଅନ୍ତି, ତାହାଙ୍କ ପିତୃଗଣ, ଦେବଗଣ ଓ ଅଗ୍ନିସମୂହ ଅତିଥିର ଅପ୍ରତିଗ୍ରହ ହେତୁରୁ ନିରାଶ ହୋଇ ପ୍ରତିଗମନ କରନ୍ତି । ୨୭ । ଯାହାଙ୍କ ଗୃହରେ ଅତିଥି ଅର୍ଚ୍ଚିତ ନ ହୋଇ ଗମନ କରନ୍ତି, ସେ ସ୍ତ୍ରୀଘ୍ନ, ଗୋଘ୍ନ, କୃତଘ୍ନ, ବ୍ରହ୍ମଘ୍ନ ଓ ଗୁରୁତଳ୍ପ ବ୍ୟକ୍ତିଗଣଙ୍କ ସଦୃଶ ଦୋଷଭାଗୀ ହୁଅନ୍ତି । ୨୮ ।

ଅଗ୍ନିଦେବ କହିଲେ, ଯେଉଁ ଅତି ଦୁର୍ମତି ନର ପଦ ଉଦ୍ୟତ କରି ଗୋ, ମହାଭାଗ ବ୍ରାହ୍ମଣ ଓ ଦୀପ୍ୟମାନ ଅଗ୍ନିଙ୍କୁ ସ୍ପର୍ଶ କରନ୍ତି ; ତାହାଙ୍କ ଦୋଷସମୂହ କହୁଅଛୁଁ, ସ୍ଥିରମନା ହୋଇ ଶ୍ରବଣ କର । ଯେଉଁ ବ୍ୟକ୍ତି ଏତାଦୃଶ କର୍ମ କରନ୍ତି, ତାହାଙ୍କର ନାମବାଚକ ଶବ୍ଦ ସ୍ୱର୍ଗକୁ ସ୍ପର୍ଶ କରେ ନାହିଁ ; ତାହାଙ୍କର ପିତୃଗଣ ତ୍ରାସଯୁକ୍ତ ହୁଅନ୍ତି (୩୦) ଏବଂ ତଦ୍ଦ୍ୱାରା ଦେବଗଣଙ୍କର ବିଶେଷ ବୈମନସ୍ୟ ସାଧିତ ହୁଏ ; ମହାତେଜା ପାବକ ତାହାଙ୍କର ହବ୍ୟ ଗ୍ରହଣ କରନ୍ତି ନାହିଁ । ୩୧ । ସେ ଶତ ଜନ୍ମ ପର୍ଯ୍ୟନ୍ତ ନରକରେ ପତିତ ହୁଅନ୍ତି, କୌଣସି ସ୍ଥାନରେ ତାହାଙ୍କର ନିଷ୍କୃତି ହୁଏ ନାହିଁ ; ଏହି କଥା ପଣ୍ଡିତମାନେ ଅନୁମାନ କରନ୍ତି । ୩୨ । ସେହି କାରଣରୁ ଗୋଗଣଙ୍କୁ କଦାପି ପାଦଦ୍ୱାରା ସ୍ପର୍ଶ କରିବାର ଉଚିତ ନୁହେଁ ଏବଂ ମହାତେଜା ବ୍ରାହ୍ମଣ ଓ ଦେଦୀପ୍ୟମାନ ଅନଳଙ୍କୁ ପାଦଦ୍ୱାରା ସ୍ପର୍ଶ କରିବାର ଉଚିତ ନୁହେଁ । ୩୩ । ଯେଉଁ ଶ୍ରଦ୍ଧାଯୁକ୍ତ ନର ଆପଣାର ହିତ କାମନା କରନ୍ତି, ସେ ଗୋ ବ୍ରାହ୍ମଣ ଓ ହୁତାଶନଙ୍କୁ ପାଦଦ୍ୱାରା ସ୍ପର୍ଶ କରିବେ ନାହିଁ । ଯେଉଁ ବ୍ୟକ୍ତି ଏହି ତିନିଙ୍କରେ ପାଦ ସ୍ପର୍ଶ କରନ୍ତି, ଆମ୍ଭେ ତାହାଙ୍କର ଏହି ଦୋଷସମୂହ କୀର୍ତ୍ତନ କଲୁଁ । ୩୪ ।

ବିଶ୍ୱାମିତ୍ର କହିଲେ, ଧର୍ମସଂହିତା ସମ୍ବନ୍ଧୀୟ ପରମ ଗୋପନୀୟ ରହସ୍ୟ ଶ୍ରବଣ କର । ଭାଦ୍ରମାସ ଶୁକ୍ଳପକ୍ଷରେ ମଘା ନକ୍ଷତ୍ରରେ ତ୍ରୟୋଦଶୀ ତିଥିରେ ଗଜଚ୍ଛାୟା ଯୋଗ ହେଲେ, ଯେ ଦକ୍ଷିଣାଭିମୁଖ ହୋଇ ମଧ୍ୟାହ୍ନ କାଳରେ ପରମାନ୍ନଦ୍ୱାରା ପିତୃଗଣଙ୍କୁ ଉପହାର ପ୍ରଦାନ କରନ୍ତି, ସେହି ଦାନର ଯାଦୃଶ ବହୁଳ ଫଳ ହୁଏ, ତାହା ଶ୍ରବଣ କର । ଯେଉଁ ବ୍ୟକ୍ତି ପୂର୍ବୋକ୍ତରୂପେ ପିତୃଗଣଙ୍କୁ ଉପହାର ପ୍ରଦାନ କରନ୍ତି, ତାହାଙ୍କ ଦ୍ୱାରା ଇହଲୋକରେ ତ୍ରୟୋଦଶ ବର୍ଷ ସାଧ୍ୟ ଅତି ଉତ୍କୃଷ୍ଟ ଶ୍ରାଦ୍ଧ ସମ୍ପାଦିତ ହୁଏ । ୩୭ । ଗୋଗଣ କହିଲେ, ହେ ବହୁଳେ ! ହେ ସମଙ୍ଗେ ! ହେ ଅକୁତୋଭୟେ ! ହେ କ୍ଷମେ, ହେ ସଖି, ହେ ଭୂୟସି ! ତୁମ୍ଭେ ବତ୍ସସହିତା ହୋଇ ପୂର୍ବକାଳରେ ବ୍ରହ୍ମପୁରରେ ପୁରନ୍ଦରଙ୍କର ଯଜ୍ଞରେ ବିଷ୍ଣୁପଦରେ

ବିଭାବସୁଙ୍କ ପଥରେ ଅବସ୍ଥାନ କରିଥିଲ, ସମସ୍ତ ଦେବଗଣ ନାରଦଙ୍କ ସହିତ ଏକତ୍ରିତ ହୋଇ ତୁମ୍ଭଙ୍କୁ ସର୍ବଂସହା ନାମ ପ୍ରଦାନ କରିଥିଲେ— ଏହି କଥା କହି ଯେ ଧେନୁଗଣଙ୍କୁ ଅର୍ଚ୍ଚନା କରନ୍ତି, ତାହାଙ୍କର କିଞ୍ଚିତ୍ ମାତ୍ର ପାପ ରହେ ନାହିଁ । ସେ ଇନ୍ଦ୍ର ଲୋକ, ଗୋଲୋକ ଓ ଚନ୍ଦ୍ରସଦୃଶ କାନ୍ତି ଲାଭ କରିବାକୁ ସମର୍ଥ ହୁଅନ୍ତି । ଯେଉଁ ବ୍ୟକ୍ତି ପର୍ବକାଳରେ ଗୋଷ୍ଠ ମଧ୍ୟରେ ଦେବଗଣ ସେବିତ ଏହି ମନ୍ତ୍ରକୁ ପାଠ କରନ୍ତି, ତାହାଙ୍କର ଶୋକ ହୁଏ ନାହିଁ ଓ ପାପ ହୁଏ ନାହିଁ ଏବଂ ଭୟ ରହେ ନାହିଁ; ସେ ଇନ୍ଦ୍ରଲୋକକୁ ଗମନ କରନ୍ତି । ୪୧ ।

ଭୀଷ୍ମ କହିଲେ, ତଦନନ୍ତର ଲୋକବିଖ୍ୟାତ ବଶିଷ୍ଠ ପ୍ରଭୃତି ମହାତ୍ମା ସପ୍ତର୍ଷିଗଣ ସମସ୍ତେ ପଦ୍ମସମ୍ଭବ ପ୍ରଜାପତିଙ୍କୁ ପ୍ରଦକ୍ଷିଣପୂର୍ବକ ପ୍ରାଞ୍ଜଳି ହୋଇ ଦଣ୍ଡାୟମାନ ହେଲେ । ସେହିମାନଙ୍କ ମଧ୍ୟରେ ବ୍ରହ୍ମଜ୍ଞାନିବର ବଶିଷ୍ଠ ତାହାଙ୍କୁ କହିଲେ (୪୩), ଏହି ପ୍ରଶ୍ନ ସମସ୍ତ ପ୍ରାଣିଗଣଙ୍କର ବିଶେଷତଃ ବ୍ରାହ୍ମଣ କ୍ଷତ୍ରିୟଙ୍କର ହିତକାରକ । ଦ୍ରବ୍ୟହୀନ, ସଚ୍ଚରିତ୍ର, ଦରିଦ୍ର ନରଗଣ, କେଉଁ ପ୍ରକାରରେ କେଉଁ କର୍ମଦ୍ୱାରା ଇହଲୋକରେ ଯଜ୍ଞଫଳ ପ୍ରାପ୍ତ ହୁଅନ୍ତି ?

ବ୍ରହ୍ମା ସେହିମାନଙ୍କର ଏହି ବାକ୍ୟ ଶ୍ରବଣ କରି କହିଲେ (୪୫), ହେ ମହାଭାଗଗଣ ! ତୁମ୍ଭେମାନେ ଯେଉଁ ପ୍ରଶ୍ନ କରିଅଛ, ତାହାର ଅର୍ଥ, ଅତି ଗୂଢ଼ ଓ ସୂକ୍ଷ୍ମ । ଏହା ନରଗଣଙ୍କର ପରମ ଶୁଭ ଓ ଶ୍ରେୟସ୍କର (୪୬); ଅତଏବ ହେ ତପୋଧନଗଣ ! ମନୁଷ୍ୟ ଯେଉଁ ପ୍ରକାରରେ ନିଃସଂଶୟରେ ଯଜ୍ଞର ଫଳ ଲାଭ କରନ୍ତି, ଆମ୍ଭେ ତାହା ବିସ୍ତାର କ୍ରମରେ କହୁଅଛୁ, ଶ୍ରବଣ କର । ୪୭ । ପୌଷମାସ ଶୁକ୍ଳ ପକ୍ଷରେ ଯେଉଁଦିନ ରୋହିଣୀ ନକ୍ଷତ୍ର ଯୋଗ ହୁଏ, ସେହି ନକ୍ଷତ୍ରଯୋଗରେ ମନୁଷ୍ୟ ଶୂନ୍ୟ ପ୍ରଦେଶରେ ଅର୍ଥାତ୍ ମଞ୍ଚା ଉପରେ ଶୟନ କରିବେ (୪୮) ଏବଂ ଏକ ବସ୍ତ୍ର, ଶୁଚି, ସ୍ନାନଶୀଳ, ଶ୍ରଦ୍ଧାଯୁକ୍ତ ଓ ସ୍ଥିରମନା ହୋଇ ଚନ୍ଦ୍ରକିରଣ ସମୂହ ପାନ କଲେ, ମହାଯଜ୍ଞର ଫଳ ଲାଭ କରିବେ । ୪୯ । ହେ ସୂକ୍ଷ୍ମତତ୍ତ୍ୱାର୍ଥଦର୍ଶୀ ଦ୍ୱିଜଶ୍ରେଷ୍ଠସମୂହ ! ତୁମ୍ଭେମାନେ ଯାହା ଆମ୍ଭଙ୍କୁ ପ୍ରଶ୍ନ କଲ, ଆମ୍ଭେ ତୁମ୍ଭମାନଙ୍କ ନିକଟରେ ଏହି ସେହି ପରମ ଗୋପନୀୟ ବିଷୟ କହିଲୁ । ୫୦ ।

---

# ଅଧ୍ୟାୟ—୧୨୭

ସୂର୍ଯ୍ୟ କହିଲେ—ଯେଉଁ ନର ପୌର୍ଣ୍ଣମାସୀ ତିଥିରେ ଉଦୀୟମାନ ଚନ୍ଦ୍ରଙ୍କ ଅଭିମୁଖୀନ ହୋଇ ତାହାଙ୍କୁ ସମ୍ପୂର୍ଣ୍ଣ ଏକ ଅଞ୍ଜଳି ଜଳ ଏବଂ ଘୃତମିଶ୍ରିତ ଅକ୍ଷତ ବଳି ଉପହାର ରୂପେ ପ୍ରଦାନ କରନ୍ତି, ତାହାଙ୍କର ଅଗ୍ନି କାର୍ଯ୍ୟ କରିବାର ହୁଏ, ଅର୍ଥାତ୍ ଅଗ୍ନିହସ୍ତରେ ହୋମ କଲେ ଯେଉଁ ଫଳ ହୁଏ, ତାହା ସିଦ୍ଧିହୁଏ । ଯେଉଁ ବୁଦ୍ଧିଶୂନ୍ୟ ବ୍ୟକ୍ତି ଅମାବାସ୍ୟାତିଥିରେ ବନସ୍ପତିର ଶାଖାପଲ୍ଲବ ଛେଦନ କରନ୍ତି, ତାହାଙ୍କର ଯେଉଁ ପାପ ହୁଏ ତାହା କହିହେବ ନାହିଁ । ମନୁଷ୍ୟ ଗୋଟିଏ ମାତ୍ର ପତ୍ର ଛେଦନ କଲେ ବ୍ରହ୍ମହତ୍ୟା ପାତକରେ ଲିପ୍ତ ହୁଅନ୍ତି ।୩। ଯେଉଁ ନିର୍ବୁଦ୍ଧି ନର ଅମାବାସ୍ୟା ତିଥିରେ ବନସ୍ପତି ଶରୀରରୁ ଦନ୍ତକାଷ୍ଠ ଛେଦନ ପୂର୍ବକ ଦନ୍ତଘର୍ଷଣ କରନ୍ତି, ସେ ଚନ୍ଦ୍ରମାଙ୍କୁ ହିଂସାକରନ୍ତି ଏବଂ ପିତୃଗଣଙ୍କୁ ଉଦ୍‌ବିଗ୍ନ କରନ୍ତି ।୪। ପର୍ବକାଳରେ ଦେବଗଣ ତାହାଙ୍କର ହବ୍ୟ ପ୍ରତିଗ୍ରହ କରନ୍ତି ନାହିଁ । ତାହାଙ୍କର ପିତୃଲୋକସମୂହ କୋପଯୁକ୍ତ ହୁଅନ୍ତି ଏବଂ ତଦୀୟ ବଂଶ ଓ କୁଳ ନାଶପ୍ରାପ୍ତ ହୁଅନ୍ତି । ୫ ।

ଶ୍ରୀ କହିଲେ, ଯେଉଁ ବ୍ୟକ୍ତିଙ୍କ ଗୃହରେ ମହିଳାଗଣ ପ୍ରହାର ଯନ୍ତ୍ରଣା ଭୋଗ କରନ୍ତି ଏବଂ ପାନ ଭୋଜନ ପାତ୍ର ଓ ଆସନ ସବୁ ଇତସ୍ତତଃ ବିକୀର୍ଣ୍ଣ ହୋଇ ରହେ, ଦେବତା ଓ ପିତୃଗଣ, ପର୍ବ ଉତ୍ସବ ଉପଲକ୍ଷରେ ତାହାଙ୍କର ସେହି ପାପମୟ ଗୃହରେ କଦାପି ହବ୍ୟକବ୍ୟ ଭୋଜନ କରନ୍ତି ନାହିଁ । ୭ ।

ଅଙ୍ଗିରା କହିଲେ, ଯେଉଁ ବ୍ୟକ୍ତି ପୂର୍ଣ୍ଣ ସମ୍ବତ୍ସର କାଳ ସୁବର୍ଚ୍ଚଳା ଲତାର ମୂଳ ହସ୍ତରେ ଧାରଣ ପୂର୍ବକ କରଞ୍ଜକ ବୃକ୍ଷମୂଳରେ ଦୀପ ପ୍ରଦାନ କରନ୍ତି ତାହାଙ୍କର ପ୍ରଜାବୃଦ୍ଧି ହୁଏ । ୮ ।

ଗାର୍ଗ୍ୟ କହିଲେ, ମନୁଷ୍ୟ ସର୍ବଦା ଅତିଥି ସେବା କରିବେ, ଯଜ୍ଞଶାଳାରେ ଦୀପ ଦାନ କରିବେ ଏବଂ ଦିବାନିଦ୍ରା ପରିହାର କରିବେ ଓ ମାଂସ ଭକ୍ଷଣ କରିବେ ନାହିଁ । ୯ । ଗୋ-ବ୍ରାହ୍ମଣଙ୍କର ହିଂସା କରିବେ ନାହିଁ । ପୁଷ୍କର ତୀର୍ଥ ନାମ କୀର୍ତ୍ତନ କରିବେ, ଏହି ମହାଫଳଜନକ ସରହସ୍ୟ ଧର୍ମ ଶ୍ରେଷ୍ଠତମ । ୧୦ । ଶତ ଶତ ଯଜ୍ଞର ଅନୁଷ୍ଠାନ କଲେ ସୁଦ୍ଧା ସେହି ସବୁର ଫଳ କ୍ଷୀଣ ହୋଇପାରେ ; କିନ୍ତୁ ଶ୍ରଦ୍ଧାଯୁକ୍ତ ହୋଇ ନିରନ୍ତର

ପୂର୍ବୋକ୍ତ ଅତିଥିସତ୍କାରାଦ ଧର୍ମ ପ୍ରତିପାଳନ କଲେ ତାହାର ଫଳ କଦାପି କ୍ଷୟ ପ୍ରାପ୍ତ ହୁଏ ନାହିଁ । ୧୧ । ଶ୍ରାଦ୍ଧବିଧି, ତୀର୍ଥ ସମ୍ବନ୍ଧୀୟ ଦେବକାର୍ଯ୍ୟ ଓ ପର୍ବକାଳୀନ ଏହି ସରହସ୍ୟ ପରମ ଗୋପନୀୟ ବିଷୟ ଶ୍ରବଣ କର ।୧୨। ରଜସ୍ୱଳା, ଶ୍ୱିତ୍ରି, ରୋଗବନ୍ତ, ପୁତ୍ରହୀନା ନାରୀ ଯଦ ଏହା ଦର୍ଶନ କରନ୍ତି, ତାହାହେଲେ ଦେବଗଣ ନିଶ୍ଚୟ ତାହାର ସେହି ହବନୀୟ ଦ୍ରବ୍ୟଭୋଜନରେ ପରାଙ୍ମୁଖ ହୁଅନ୍ତି ଏବଂ ପିତୃଗଣ ତ୍ରୟୋଦଶ ବର୍ଷ ତାହାଙ୍କଠାରେ ଅସନ୍ତୁଷ୍ଟ ହୁଅନ୍ତି । ୧୩ । ଶୁକ୍ଳବର୍ଣ୍ଣ ବସନ ପରିଧାନପୂର୍ବକ ପବିତ୍ର ମନରେ ବ୍ରାହ୍ମଣ-ଗଣଦ୍ୱାରା ସ୍ୱସ୍ତିବାଚନ ଏବଂ ମହାଭାରତ ପାଠ କରାଇ ଯଜ୍ଞାନୁଷ୍ଠାନ କଲେ ଅକ୍ଷୟ ଫଳ ଲାଭ ହୁଏ । ୧୪ ।

ଧୌମ୍ୟ କହିଲେ, ଭଗ୍ନ ଭାଣ୍ଡ, ଭଗ୍ନ ଖଟ୍ୱା, କୁକ୍‌କୁଟ, କୁକୁର ଏବଂ ଗୃହ ମଧ୍ୟରେ ଯେଉଁ ବୃକ୍ଷ ହୁଏ, ଏହାସବୁ ଅପ୍ରଶସ୍ତ । ୧୫ । ପୁରାତନ ପଣ୍ଡିତଗଣ କହନ୍ତି, ଗୃହରେ ଭଗ୍ନଭାଣ୍ଡ ରହିଲେ କଳହ ହୁଏ, ଭଗ୍ନଖଟ୍ୱା ରହିଲେ ଧନକ୍ଷୟ ହୁଏ, କୁକ୍‌କୁଟ ଅଥବା କୁକୁର ରହିଲେ ଦେବଗଣ ହବ ଭକ୍ଷଣ କରନ୍ତି ନାହିଁ । ବୃକ୍ଷମୂଳରେ ନିଶ୍ଚୟ ବୃଶ୍ଚିକ ଓ ସର୍ପ ବାସ କରନ୍ତି, ଅତଏବ ଗୃହ ମଧ୍ୟରେ ବୃକ୍ଷାରୋପଣ କର୍ତ୍ତବ୍ୟ ନୁହେଁ । ୧୬ । ଜମଦଗ୍ନି କହିଲେ, ଯେଉଁ ବ୍ୟକ୍ତି ଅଶ୍ୱମେଧ ବା ଶତ ଶତ ବାଜପେୟ ଯଜ୍ଞର ଅନୁଷ୍ଠାନ କରନ୍ତି, କମ୍ବା ଅବାକ୍‌ଶିରା ହୋଇ ଲମ୍ବମାନ ହୁଅନ୍ତି, ଅଥବା ପ୍ରଭୂତ ସତ୍ର ଆହରଣ କରନ୍ତି (୧୭), କନ୍ତୁ ତାହାଙ୍କର ହୃଦୟ ଯଦ ଶୁଦ୍ଧ ନ ହୁଏ, ତେବେ ସେ ନିଶ୍ଚୟ ନରକକୁ ଗମନ କରନ୍ତି । ଯଜ୍ଞ, ସତ୍ୟ ଓ ଅନ୍ତଃକରଣଶୁଦ୍ଧି ଏହି ତିନୟ ସମାନ ଅଟେ । ୧୮ । କୌଣସି ବ୍ୟକ୍ତି ଶୁଦ୍ଧ ଚିତ୍ତରେ ବ୍ରାହ୍ମଣଙ୍କୁ ଏକ ପ୍ରସ୍ଥ ଶକ୍ତୁ ପ୍ରଦାନ କର ବ୍ରହ୍ମଲୋକକୁ ଗମନ କରଥିଲେ, ତାହାର ନିଦର୍ଶନ ଏ ବିଷୟରେ ପର୍ଯ୍ୟାପ୍ତ ଅଟେ । ୧୯ ।

---

# ଅଧ୍ୟାୟ—୧୨୮

ବାୟୁ କହିଲେ—ମାନବଗଣଙ୍କର ସୁଖାବହ କିଞ୍ଚିତ୍ ଧର୍ମ କହୁଅଛୁଁ, ଏବଂ ରହସ୍ୟ ସହିତ ଯେଉଁ ସବୁ ଦୋଷ ଅଛି ତାହା ମଧ୍ୟ ସମନ୍ୱିତ ହୋଇ ଶ୍ରବଣ କର ।୧। ଯେଉଁ ବ୍ୟକ୍ତି ବର୍ଷକ ମଧ୍ୟରେ ଚାରିମାସ ବେଦପାରଗ ବ୍ରାହ୍ମଣଙ୍କୁ ତିଳୋଦକ ଦାନ କରନ୍ତି ଏବଂ ଯଥାଶକ୍ତି ଭୋଜନ କରାନ୍ତି, କର୍ତ୍ତବ୍ୟ ଅଗ୍ନିକାର୍ଯ୍ୟ ନିର୍ବାହ କରନ୍ତି, ଉତ୍କୃଷ୍ଟ ଅନ୍ନଦ୍ୱାରା ଭୋଜନ କରାନ୍ତି, ପିତୃଗଣଙ୍କୁ ତିଳୋଦକ ଦାନ ଓ ଦୀପଦାନ କରନ୍ତି, ସେହି ଶ୍ରଦ୍ଧାଯୁକ୍ତ ସ୍ଥିରମନା ମନୁଷ୍ୟ ଏହି ବିଧିସମୂହଦ୍ୱାରା ଶତପଶୁବଧ ଯଜ୍ଞର ଉତ୍କୃଷ୍ଟ ଫଳ ପ୍ରାପ୍ତ ହୁଅନ୍ତି । ୪ ।

ଏହା ପରମ ଗୁହ୍ୟ ପ୍ରଶସ୍ତ ବୋଲି ଜ୍ଞାନ କର । ଶୂଦ୍ର ଯଦି ଅରଣୀସ୍ଥ ଅଗ୍ନିଙ୍କୁ ଦେଶାନ୍ତରକୁ ନେଇ ଯାଆନ୍ତି, ଯଦି ସ୍ତ୍ରୀବୃନ୍ଦ ସୋମ, ଆଜ୍ୟ, ପୟଃ ପ୍ରଭୃତି ଯଜ୍ଞାବଶିଷ୍ଟ ହବିଦ୍ୱାରା ମୃତ ହୁଅନ୍ତି, ଏହାକୁ ଯେଉଁ ବ୍ରାହ୍ମଣ ଧର୍ମ ବୋଲି ମନେ କରନ୍ତି, ସେ ଅଧର୍ମଦ୍ୱାରା ଲିପ୍ତ ହୁଅନ୍ତି । ତାହାଙ୍କଠାରେ ଅଗ୍ନି ସ୍ୱୟଂ କୋପଯୁକ୍ତ ହୁଅନ୍ତି ଓ ସେ ଶୂଦ୍ର ଯୋନି ପ୍ରାପ୍ତ ହୁଅନ୍ତି ।୭। ବିଶେଷତଃ ଦେବଗଣ ଓ ପିତୃଗଣ ତାହାଙ୍କଠାରେ ତୁଷ୍ଟ ହୁଅନ୍ତି ନାହିଁ । ତଦ୍ୱିଷୟରେ ଯେଉଁ ପ୍ରାୟଶ୍ଚିତ୍ତ ହୁଏ ଓ ଯାହା କଲେ ଜନ ବିଜ୍ୱର ଏବଂ ସମ୍ୟକ୍ ସୁଖୀ ହୁଏ, ତାହା ସବୁ ଆମ୍ଭ ନିକଟରୁ ଶ୍ରବଣ କର । ୮ । ମନୁଷ୍ୟ ନିରାହାର ଓ ସ୍ଥିରଚିତ୍ତ ହୋଇ ଦିନତ୍ରୟ ଗୋମୂତ୍ର, ଗୋମୟ, ଗୋଦୁଗ୍ଧ ଓ ଗୋଘୃତଦ୍ୱାରା ଅଗ୍ନି କାର୍ଯ୍ୟ କରିବେ । ୯ । ତତ୍ପରେ ସମ୍ବତ୍ସର ପୂର୍ଣ୍ଣ ହେଲେ ଦେବଗଣ ତଦୀୟ ଦତ୍ତ ଦ୍ରବ୍ୟ ପ୍ରତିଗ୍ରହ କରନ୍ତି ଏବଂ ଶ୍ରାଦ୍ଧ କାଳ ଉପସ୍ଥିତ ହେଲେ ତଦୀୟ ପିତୃଗଣ ତୁଷ୍ଟ ଓ ହୃଷ୍ଟ ହୋଇଥାନ୍ତି ।୧୦। ଏହି ରହସ୍ୟଯୁକ୍ତ ଧର୍ମ ଓ ଅଧର୍ମ କୀର୍ତ୍ତିତ ହେଲା । ସ୍ୱର୍ଗକାମ ନରଗଣ ପରଲୋକକୁ ଗମନ କଲେ, ଏହା ସ୍ୱର୍ଗଲୋକରେ ସୁଖାବହ ହୁଏ । ୧୧ ।

---

# ଅଧ୍ୟାୟ—୧୨୯

ଲୋମଶ ମୁନି କହିଲେ—ଯେଉଁମାନେ ଦାରପରିଗ୍ରହ ନ କରି ପରଦାରରେ ଆସକ୍ତ ହୁଅନ୍ତି, ଶ୍ରାଦ୍ଧକାଳ ଉପସ୍ଥିତ ହେଲେ ସେହିମାନଙ୍କ ପିତୃଗଣ ନିରାଶ ହୁଅନ୍ତି ।୧। ଯେଉଁ ବ୍ୟକ୍ତି ପରଦାରରେ ନିରତ ଏବଂ ବନ୍ଧ୍ୟା ସ୍ତ୍ରୀ ଉପାସନା କରନ୍ତି ଓ ଯେଉଁ ବ୍ୟକ୍ତି ବ୍ରହ୍ମସ୍ୱ ହରଣ କରନ୍ତି, ସେମାନେ ସମସ୍ତେ ସମଦୋଷସମନ୍ୱିତ ହୁଅନ୍ତି । ୨ । ଏବଂ ସେମାନେ ପିତୃଗଣଙ୍କର ଅସମ୍ଭାଷ୍ୟ ହୁଅନ୍ତି ଏହି ବିଷୟରେ ସଂଶୟ ନାହିଁ । ଦେବତା ଓ ପିତୃଗଣ ସେହିମାନଙ୍କର ପ୍ରଦତ୍ତ ହବ୍ୟ ସମାଦରପୂର୍ବକ ଗ୍ରହଣ କରନ୍ତି ନାହିଁ । ୩ । ଅତଏବ ପରସ୍ତ୍ରୀଗମନ ଓ ବନ୍ଧ୍ୟା ସ୍ତ୍ରୀଠାରେ ଅନୁରାଗ ପରିତ୍ୟାଗ କରିବା ବିଧେୟ । ଯେ ନିଜର ହିତକାମନା କରନ୍ତି, ତାହାଙ୍କର ବ୍ରହ୍ମସ୍ୱ ହରଣ କରିବାର ଉଚିତ ନୁହେଁ । ୪ ।

ଧର୍ମ ସମ୍ବନ୍ଧୀୟ ଅନ୍ୟ ଗୋପନୀୟ ରହସ୍ୟ ବିଷୟ ଶ୍ରବଣ କର । ମନୁଷ୍ୟ ଶ୍ରଦ୍ଧା ସହକାରେ ଗୁରୁମାନଙ୍କ ବାକ୍ୟ ସର୍ବଦା ପ୍ରତିପାଳନ କରିବେ । ୫ । ଯେଉଁ ବ୍ୟକ୍ତି ପ୍ରତି ମାସର ଦ୍ୱାଦଶୀ ଓ ପୂର୍ଣ୍ଣିମା ତିଥିରେ ବ୍ରାହ୍ମଣଗଣଙ୍କୁ ଘୃତାକ୍ଷତ ପ୍ରଦାନ କରନ୍ତି, ତାହାଙ୍କ ପୁଣ୍ୟ ଫଳ ଶ୍ରବଣ କର । ୬ । ତାହାଙ୍କର ସେହି ଦାନଦ୍ୱାରା ଚନ୍ଦ୍ର ଓ ମହୋଦଧି ସମୁଦ୍ର ବର୍ଦ୍ଧିତ ହୁଅନ୍ତି । ବାସବ ସେହି ପ୍ରଦାନକର୍ତ୍ତାଙ୍କ ନିମିତ୍ତ ଅଶ୍ୱମେଧ ଯଜ୍ଞର ଚତୁର୍ଥାଂଶ ଫଳ ସୃଜନ କରନ୍ତି । ୭ । ମନୁଷ୍ୟ ଏହି ଦାନଦ୍ୱାରା ତେଜସ୍ୱୀ ଓ ବୀର୍ଯ୍ୟବାନ୍ ହୁଅନ୍ତି, ଭଗବାନ୍ ଚନ୍ଦ୍ରମା ପ୍ରୀତ ହୋଇ ତାହାଙ୍କୁ ଅଭିଳଷିତ କାମ୍ୟ ବିଷୟ ସମୂହ ପ୍ରଦାନ କରନ୍ତି । ୮ । ଅନ୍ୟ ଗୋଟିଏ ରହସ୍ୟଯୁକ୍ତ ମହାଫଳଜନକ ଧର୍ମ ଶ୍ରବଣ କର, ଏହା ଏହି କଳିଯୁଗରେ ମନୁଷ୍ୟମାନଙ୍କର ସୁଖାବହ ଅଟେ । ୯ । ଯେଉଁ ନର ପ୍ରାତଃକାଳରେ ଗାତ୍ରୋତ୍ଥାନପୂର୍ବକ ଅବଗାହନ କରନ୍ତି ଓ ସ୍ଥିରମନା ହୋଇ ବ୍ରାହ୍ମଣଗଣଙ୍କୁ ଶୁକ୍ଳ ବସ୍ତ୍ର ସହିତ ତିଳପୂର୍ଣ୍ଣ ପାତ୍ର ପ୍ରଦାନ କରନ୍ତି (୧୦), ଏବଂ ଯେ ପିତୃଗଣଙ୍କୁ ମଧୁମିଶ୍ରିତ ତିଳୋଦକ ଦୀପ ଓ କୃଶର ପ୍ରଦାନ କରନ୍ତି, ତାହାଙ୍କର ଯେଉଁ ଫଳ ହୁଏ ତାହା ଶ୍ରବଣ କର । ୧୧ ।

ଭଗବାନ୍ ଦେବରାଜ ଇନ୍ଦ୍ର ତିଳପାତ୍ର ଦାନର ଫଳ କହିଅଛନ୍ତି ଯେ, ଯେ ଗୋପ୍ରଦାନ ଏବଂ ଶାଶ୍ୱତ ଭୂମି ପ୍ରଦାନ କରନ୍ତି (୧୨), ଏବଂ

କହୁ ଦକ୍ଷିଣାଯୁକ୍ତ ଅଗ୍ନିଷ୍ଟୋମ ଯଜ୍ଞ କରନ୍ତୁ, ଦେବଗଣ ତିଳପାତ୍ର ଦାନ ସହିତ ସେହି ଦାନସମୂହ ଓ ଯଜ୍ଞର ଫଳ ସମାନ ବୋଲି ଜ୍ଞାନ କରନ୍ତି । ୧୩ । ପିତୃଗଣ ଶ୍ରାଦ୍ଧ କାଳରେ ତିଳୋଦକକୁ ସର୍ବଦା ଅକ୍ଷୟ ବୋଲି ଜ୍ଞାନ କରନ୍ତି । ଧୂପଦାନ ଓ କୃଶର ଦାନ କଲେ ତାହାଙ୍କର ପିତାମହଗଣ ପ୍ରୀତ ହୁଅନ୍ତି । ୧୪ । ସ୍ୱର୍ଗରେ ଏବଂ ପିତୃଲୋକରେ ଦେବଗଣ ଓ ପିତୃଗଣଙ୍କଦ୍ୱାରା ପୂଜିତ ଏହି ଋଷିଦୃଷ୍ଟ ପୁରାତନ ବିଷୟ ଆମ୍ଭଦ୍ୱାରା ଏହିପରି ଉଦ୍ଦିଷ୍ଟ ହେଲା । ୧୫ ।

---

## ଅଧ୍ୟାୟ—୧୩୦

ଭୀଷ୍ମ କହିଲେ—ତତ୍ପରେ ସମସ୍ତ ଋଷିବୃନ୍ଦ, ଦେବଗଣ ଓ ପିତୃଗଣ ସମାହିତ ହୋଇ ତପୋବୃଦ୍ଧା ଅରୁନ୍ଧତୀଙ୍କୁ ପଚାରିଲେ । ୧ । ତପୋବୃଦ୍ଧା ଅରୁନ୍ଧତୀ ମହାତ୍ମା ବଶିଷ୍ଠଙ୍କ ସଦୃଶ ବ୍ରତଚାରିଣୀ, ତପୋବଳଯୁକ୍ତା ଓ ସୁଶୀଳା ଅଟନ୍ତି ବୋଲି ଋଷିଗଣ ନିଷ୍ଚୟ କରି ଅରୁନ୍ଧତୀଙ୍କୁ କହିଲେ, ହେ ଭଦ୍ରେ ! ଆମ୍ଭେମାନେ ତୁମ୍ଭ ନିକଟରୁ ଧର୍ମ ରହସ୍ୟ ଶୁଣିବାକୁ ଇଚ୍ଛା କରୁଅଛୁ । ତୁମ୍ଭ ନିକଟରେ ଯେଉଁ ସମସ୍ତ ଧର୍ମ ଅତି ଗୋପନୀୟ ଭାବରେ ଅଛି, ତାହା କୀର୍ତ୍ତନ କରିବା ହେଉନ୍ତୁ । ୩ ।

ଅରୁନ୍ଧତୀ କହିଲେ, ହେ ତପୋଧନଗଣ ! ଆପଣମାନଙ୍କ ସ୍ମରଣ ଦ୍ୱାରା ଆମ୍ଭେ ତପୋବୃଦ୍ଧି ଲାଭ କଲୁଁ; ଆପଣମାନଙ୍କ ପ୍ରସାଦରେ ଆମ୍ଭେ ରହସ୍ୟଯୁକ୍ତ ଶାଶ୍ୱତ ଧର୍ମସମୂହ କହୁଅଛୁ, ଆପଣମାନେ ତାହା ସବୁ ଅଶେଷ ପ୍ରକାରରେ ଶ୍ରବଣ କରିବା ହେଉନ୍ତୁ । ଶ୍ରଦ୍ଧାଯୁକ୍ତ ମନୁଷ୍ୟଙ୍କ ନିକଟରେ ଏବଂ ଯାହାଙ୍କ ମନ ପବିତ୍ର ତାହାଙ୍କ ସନ୍ନିଧିରେ ଏହା ପ୍ରୟୋଗ କରିବାର ଉଚିତ ।୫। ଶ୍ରଦ୍ଧାହୀନ, ଅହଂକାରୀ, ବ୍ରହ୍ମହତ୍ୟାକାରୀ, ଗୁରୁତଳ୍ପ-ଗାମୀ, ଏହି ଚାରିପ୍ରକାର ବ୍ୟକ୍ତିଙ୍କ ସହିତ ସମ୍ଭାଷଣ କରିବାର ଉଚିତ ନୁହେଁ, ଅତଏବ ଏମାନଙ୍କ ନିକଟରେ ଧର୍ମ ବିଷୟ ପ୍ରକାଶ କରିବାର ଅନୁଚିତ । ୬ । ଯେଉଁ ବ୍ୟକ୍ତି ଦ୍ୱାଦଶ ବର୍ଷକାଳ ପ୍ରତିଦିନ ଗୋଟିଏ ଗୋଟିଏ କପିଳାଧେନୁ ପ୍ରଦାନ କରନ୍ତି ଏବଂ ଯେଉଁ ନର ପ୍ରତି ମାସରେ ସର୍ବଦା ସତ୍ର କରନ୍ତି (୭) ଏବଂ ଯେ ଜ୍ୟେଷ୍ଠ ପୁଷ୍କର ତୀର୍ଥରେ ଶତସହସ୍ର ଗୋଦାନ

କରନ୍ତୁ, ସେ ମଧ୍ୟ ଅତିଥି ସନ୍ତୋଷ ସମ୍ପାଦକ ମାନବଙ୍କ ସଦୃଶ ଉତ୍କୃଷ୍ଟ ଫଳଭାଗୀ ହୋଇ ପାରନ୍ତି ନାହିଁ । ୮ ।

ମାନବଗଣଙ୍କର ସୁଖାବହ ଅନ୍ୟ ଗୋଟିଏ ଧର୍ମତତ୍ତ୍ୱ କୀର୍ତ୍ତନ କରୁଅଛୁଁ ଶ୍ରବଣ କର । ଶ୍ରଦ୍ଧାଯୁକ୍ତ ମାନବଙ୍କର ଏହି ମହାଫଳଜନକ ରହସ୍ୟଯୁକ୍ତ ଧର୍ମ ପ୍ରତିପାଳନ କରିବାର ଉଚିତ । ୯ । ପ୍ରଭାତରେ ଗାତ୍ରୋତ୍ଥାନ କରି ଜଳ ସମ୍ମିତ କୁଶ ଗ୍ରହଣ ପୂର୍ବକ ଗୋଗଣଙ୍କ ମଧ୍ୟରେ ସେହି ଜଳ ସେଚନ କରିବେ; ତାହା କଲେ ତହିଁରୁ ଯେଉଁ ଧର୍ମଫଳ ହେବ ତାହା ଶ୍ରବଣ କର ।୧୦। ତ୍ରିଲୋକ ମଧ୍ୟରେ ଯେଉଁ ସିଦ୍ଧଚାରଣଗଣସେବିତ ଓ ମହର୍ଷିଗଣସେବିତ ତୀର୍ଥସମୂହ ଶ୍ରୁତ ହୋଇଅଛନ୍ତି, ତହିଁରେ ସ୍ନାନ କଲେ ଯେଉଁ ଫଳ ହୁଏ, ଗୋଗଣଙ୍କ ଶୃଙ୍ଗୋଦକ ଦ୍ୱାରା ଅଭିଷିକ୍ତ ହେଲେ ତାହାର ସମାନ ଫଳ ହୁଏ ।୧୧। ଦେବଗଣ, ପିତୃଗଣ ଓ ସମସ୍ତ ଭୂତଗଣ ଅରୁନ୍ଧତୀଙ୍କ ଏହି ବାକ୍ୟ ଶ୍ରବଣ କରି ସନ୍ତୁଷ୍ଟ ହୋଇ ତାହାଙ୍କୁ ବାରମ୍ବାର ଧନ୍ୟବାଦ ପ୍ରଦାନ କଲେ । ୧୨ ।

ବ୍ରହ୍ମା କହିଲେ, ହେ ମହାଭାଗେ ! ତୁମ୍ଭେ ଯେଉଁ ରହସ୍ୟଯୁକ୍ତ ଧର୍ମ କୀର୍ତ୍ତନ କଲ, ତାହା ଅତି ଆଶ୍ଚର୍ଯ୍ୟ । ହେ ଧନ୍ୟେ ! ଆମ୍ଭେ ତୁମ୍ଭଙ୍କୁ ବର ପ୍ରଦାନ କରୁଅଛୁ, ତୁମ୍ଭର ତପସ୍ୟା ସର୍ବଦା ପରିବର୍ଦ୍ଧିତ ହେଉ ।୧୩।

ଯମ କହିଲେ, ହେ ଭଦ୍ରେ ! ଆମ୍ଭ ତୁମ୍ଭ ନିକଟରୁ ଯେଉଁ ଦିବ୍ୟ କଥା ଶ୍ରବଣ କଲୁଁ, ତାହା ଅତି ରମଣୀୟ । ସମ୍ପ୍ରତି ଆମ୍ଭର ପ୍ରିୟତର ଚିତ୍ରଗୁପ୍ତଙ୍କ ବାକ୍ୟ ଶ୍ରବଣ କର । ୧୪ । ଏହି ଧର୍ମସଂଯୁକ୍ତ ରହସ୍ୟ ମହର୍ଷିଗଣଙ୍କର ଶ୍ରବଣୀୟ । ଯେଉଁ ଶ୍ରଦ୍ଧାଯୁକ୍ତ ମନୁଷ୍ୟ ଆପଣାର ହିତ ଇଚ୍ଛା କରନ୍ତି, ତାହାଙ୍କ କୃତ ପାପପୁଣ୍ୟ କଦାପି ବିନଷ୍ଟ ହୁଏ ନାହିଁ । ପୂର୍ବକାଳରେ ଯାହା କିଛି ଆଦିତ୍ୟଙ୍କ ନିକଟରେ ଉପନୀତ ହୁଏ, ମନୁଷ୍ୟ ପରଲୋକକୁ ଗମନ କଲେ, ସୂର୍ଯ୍ୟଦେବ ତାହା ସବୁ ଅବଗତ ହୁଅନ୍ତି ଏବଂ ପୁଣ୍ୟାତ୍ମା ମନୁଷ୍ୟ ସ୍ୱେଚ୍ଛା ସେହି ବିଷୟରେ ଭୋଗ କରନ୍ତି । ୧୫ ।

ଚିତ୍ରଗୁପ୍ତଙ୍କର ପବିତ୍ର ଧର୍ମମତ କଥିତ ହେଉଅଛି । ମନୁଷ୍ୟ, ପାନୀୟ, ପ୍ରଦୀପ, ପାଦୁକା ଓ ଛତ୍ର ପ୍ରଦାନ କରିବେ ଏବଂ କପିଳା ଗୋ ସର୍ବଦା ଦାନ କରିବାର ଉଚିତ । ପୁଷ୍କର ତୀର୍ଥରେ ବେଦପାରଗ ବ୍ରାହ୍ମଣଙ୍କୁ କପିଳାଧେନୁ ଦାନ କରିବାର ବିଧେୟ ।୧୬। ସର୍ବ ପ୍ରଯତ୍ନରେ ଅଗ୍ନି ହୋତ୍ର ପ୍ରତିପାଳନ କର୍ତ୍ତବ୍ୟ; ଏହା ଏବଂ ଏତଦ୍ ବ୍ୟତୀତ ଅନ୍ୟ ଧର୍ମ ମଧ୍ୟ

ବିଷୟ ପ୍ରଶ୍ନଦ୍ୱାରା କଥିତ ହୋଇଅଛି । ୨୦ । ସଜ୍ଜନଗଣ ଏହାର ଫଳ ପୃଥକ୍ ରୂପେ ଶ୍ରବଣ କରିବାର ଉପଯୁକ୍ତ, କାଳକ୍ରମେ ସମସ୍ତ ପ୍ରାଣୀଗଣ ପ୍ରଳୟ ପ୍ରାପ୍ତ ହେବେ । ୨୧ । ଯେତେବେଳେ ଅଳ୍ପବୁଦ୍ଧି ମାନବଗଣ କ୍ଷୁଧା ଏବଂ ତୃଷ୍ଣାରେ ନିପୀଡ଼ିତ ଓ ଦହ୍ୟମାନ ହୋଇ କ୍ଲେଶପ୍ରାପ୍ତ ହେବେ ଏବଂ ଯେତେ-ବେଳେ ତାହାଙ୍କର ସେହି ଦୁର୍ଗମ ସ୍ଥାନରୁ ପଳାୟନର ଉପାୟ ନାହିଁ ଓ ସେହି ଘୋରତର ଅନ୍ଧକାରରେ ପ୍ରବେଶ କରି ନାନା ପ୍ରକାର କ୍ଲେଶ ଯନ୍ତ୍ରଣା ଭୋଗ କରିବେ, ତତ୍କାଳରେ ଯାହାଦ୍ୱାରା ସେହି ଦୁର୍ଗମ ସ୍ଥାନରୁ ଉତ୍ତୀର୍ଣ୍ଣ ହେବେ, ତଦ୍ୱିଷୟକ ଧର୍ମ କହୁଅଛୁଁ । ୨୩ ।

ଅଳ୍ପ ବ୍ୟୟସାଧ୍ୟ ଅଥଚ ମହତ୍ ପ୍ରୟୋଜନସାଧକ କାର୍ଯ୍ୟଦ୍ୱାରା ପରଲୋକରେ ସୁଖୋଦୟ ହୁଏ, ଜଳଦାନର ଦିବ୍ୟ ଫଳସମୂହ ପରଲୋକରେ ବିଶେଷରୂପେ ଉପକାର ହୁଏ । ସେଠାରେ ସେମାନଙ୍କ ନିମିତ୍ତ ପୁଣ୍ୟୋଦକା ନାମ୍ନୀ ନଦୀ ବିହିତ ହୁଏ, ତହିଁରେ ଜଳ ଶୀତଳ, ଅକ୍ଷୟ ଓ ଅମୃତ ସଦୃଶ ହୁଏ । ୨୫ । ଯେ ଇହଲୋକରେ ଜଳଦାନ କରନ୍ତି, ସେ ପରଲୋକରେ ସେହି ନଦୀରେ ଜଳପାନ କରିବାକୁ ଅଧିକାରୀ ହୁଅନ୍ତି, ପ୍ରଦୀପ ପ୍ରଦାନ କଲେ ଯେଉଁ ବିଷୟର ଗୁଣ ହୁଏ, ତାହା ଶ୍ରବଣ କର । ୨୬ ।

ଦୀପଦାତା ମାନବ କଦାପି ଦୁଃଖମୟ ଅନ୍ଧକାର ଦର୍ଶନ କରନ୍ତି ନାହିଁ; ନିଶାକର, ଭାସ୍କର ଓ ବୈଶ୍ୱାନର ତାହାଙ୍କୁ ପ୍ରଭା ପ୍ରଦାନ କରନ୍ତି । ୨୭ । ଦେବଗଣ ତାହାଙ୍କୁ ସମ୍ମାନ କରନ୍ତି, ସମସ୍ତ ଦିକ୍‌ସମୂହ ତାହାଙ୍କ ପକ୍ଷରେ ନିର୍ମଳ ହୁଅନ୍ତି । ପ୍ରଦୀପଦାତା ନର, ପରଲୋକଗାମୀ ହେଲେ ଆଦିତ୍ୟ ଦେବଙ୍କ ସଦୃଶ ଦେଦୀପ୍ୟମାନ ହୁଅନ୍ତି । ୨୮ । ଅତଏବ ଦୀପ ଏବଂ ବିଶେଷତଃ ପାନୀୟ ପ୍ରଦାନ କରିବାର ବିହିତ । ଯେଉଁମାନେ ପୁଷ୍କର ତୀର୍ଥରେ ବେଦପାରଗ ବିପ୍ରଙ୍କୁ କପିଳା ଧେନୁ ପ୍ରଦାନ କରନ୍ତି, ତାହାଙ୍କର ବୃଷଭ ସହିତ ଶତସଂଖ୍ୟକ ଧେନୁଦାନର ଉତ୍କୃଷ୍ଟ ଫଳ ହୁଏ । ୩୦ । ବ୍ରହ୍ମହତ୍ୟାସଦୃଶ ଯେଉଁ କୌଣସି ପାପ ହୋଇଥାଏ, ପ୍ରଦତ୍ତ ଗୋଶତସଦୃଶ ଗୋଟିଏ ମାତ୍ର କପିଳା ଧେନୁ ତାହା ଶୋଧନ କରନ୍ତି ।୩୧। ଅତଏବ ଜ୍ୟେଷ୍ଠ ପୁଷ୍କର ତୀର୍ଥରେ ଶୁକ୍ଳ ପକ୍ଷରେ କପିଳାଧେନୁ ଦାନ କରିବାର ଅତି ଉଚିତ । ଯେ ପାତ୍ରଭୂତ ଦ୍ୱିଜବରଙ୍କୁ ଦୁଇଗୋଟି ପାଦୁକା ପ୍ରଦାନ କରନ୍ତି, ତାହାଙ୍କର କୌଣସି ବିଷମ ବିଷୟ ବା କୌଣସି ଦୁଃଖ ଅଥବା କଣ୍ଟକ ଭୟ ହୁଏ ନାହିଁ । ମନୁଷ୍ୟ ଛତ୍ର ଦାନ କଲେ ପରଲୋକକୁ

ଗମନ କରି ସୁଖକର ଗ୍ରୁସ୍ଥା ପ୍ରାପ୍ତ ହୁଅନ୍ତି । ୩୩ । ଇହଲୋକରେ ଯେ ଦାନ କରନ୍ତି, ତାହାଙ୍କର କଦାପି ବିନାଶ ହୁଏ ନାହିଁ ।

ମହାଦ୍ୟୁତି ଭଗବାନ୍ ସୂର୍ଯ୍ୟଦେବ ଚିତ୍ରଗୁପ୍ତଙ୍କ ମତ ଶ୍ରବଣ କରି ପୁଲକିତ ହେଲେ, ଏବଂ ସମସ୍ତ ଦେବଗଣ ଓ ପିତୃଗଣଙ୍କୁ କହିଲେ ।

ହେ ମହାନୁଭବ ସମୂହ ! ଆପଣମାନେ ସମସ୍ତେ ଚିତ୍ରଗୁପ୍ତଙ୍କ ଗୁହ୍ୟ ଧର୍ମ ଶ୍ରବଣ କଲେ । ୩୫ । ଯେଉଁ ସମସ୍ତ ଶ୍ରଦ୍ଧାଶୀଳ ନର ମହାନୁଭବ ବିପ୍ରଗଣଙ୍କୁ ଏହା ସବୁ ଦାନ କରନ୍ତି, ସେହିମାନଙ୍କର କୌଣସି ଭୟ ହୁଏ ନାହିଁ ।୩୬। ଯେଉଁମାନେ ବ୍ରହ୍ମଘାତୀ, ଗୋଘ୍ନ, ପରଦାରପରାୟଣ, ବେଦରେ ଶ୍ରଦ୍ଧାଶୂନ୍ୟ ଓ ଜାୟାଜୀବୀ, ଏହି ଦୋଷଯୁକ୍ତ ପଞ୍ଚବ୍ୟକ୍ତିଙ୍କର ଇହଲୋକରେ ନିଷ୍କୃତି ନାହିଁ । ସେହି ଅନାଚାର ନରାଧମଗଣଙ୍କୁ ପରିତ୍ୟାଗ କରିବାର ବିଧେୟ, ସେମାନଙ୍କ ସହିତ ବାକ୍ୟାଳାପ କରିବାର ଉଚିତ ନୁହେଁ ।୩୮। ସେହି ପାପକର୍ମୀମାନେ ପ୍ରେତଲୋକକୁ ଗମନ କରି ପୂୟରକ୍ତଭୋଜୀ ମୀନଗଣଙ୍କ ପରି ପରିପାକ ପ୍ରାପ୍ତ ହୁଅନ୍ତି । ୩୯ । ପିତୃଗଣ, ଦେବଗଣ, ସ୍ନାତକ ବ୍ରାହ୍ମଣସମୂହ ଓ ତଦ୍‌ଭିନ୍ନ ଯେଉଁ ତପୋଧନଗଣ ଅଛନ୍ତି, ସେମାନେ ସମସ୍ତେ ସେହି ପଞ୍ଚବିଧ ବ୍ୟକ୍ତିଙ୍କ ସହିତ କଥୋପକଥନ ପରିହାର କରିବେ । ୪୦ ।

---

## ଅଧ୍ୟାୟ—୧୩୧

ଭୀଷ୍ମ କହିଲେ—ତଦନନ୍ତର ମହାତ୍ମା ଦେବଗଣ, ପିତୃଗଣ ଓ ମହାଭାଗ ଋଷିଗଣ ପ୍ରମଥଗଣଙ୍କୁ କହିଲେ (୧), ହେ ନିଶାଚର ପ୍ରମଥ-ଗଣ ! ତୁମ୍ଭମାନେ ସମସ୍ତେ ମହୈଶ୍ୱର୍ଯ୍ୟଶାଳୀ ଅପରୋକ୍ଷ ନିଶାଚର ଅଟ; ତୁମ୍ଭେମାନେ କେଉଁ ପ୍ରକାରରେ ଉଚ୍ଛିଷ୍ଟ ଶରୀର ଓ କ୍ଷୁଦ୍ର ଅର୍ଥାତ୍ ନୀଚ ନରଗଣଙ୍କୁ ହିଂସା କର ? ୨ । ନରଗଣ କେଉଁ କେଉଁ କାର୍ଯ୍ୟର ଅନୁଷ୍ଠାନ କଲେ ତୁମ୍ଭମାନଙ୍କ ଅତ୍ୟାଚାରରୁ ପରିତ୍ରାଣ ପ୍ରାପ୍ତ ହୁଅନ୍ତି । କେଉଁ କେଉଁ କାର୍ଯ୍ୟ ଅନୁଷ୍ଠିତ ହେଲେ ତୁମ୍ଭେମାନେ ମନୁଷ୍ୟମାନଙ୍କ ଗୃହରେ ଉପଦ୍ରବ କରି ନ ପାର—ଏହି ସମସ୍ତ ବୃତ୍ତାନ୍ତ ଶ୍ରବଣ କରିବାକୁ

ଆମ୍ଭେ ଇଚ୍ଛା କରୁଅଛୁଁ । ଅତଏବ ତୁମ୍ଭେମାନେ ଏହି ସମସ୍ତ ବିଷୟ ଉତ୍ତମରୂପେ କୀର୍ତ୍ତନ କର । ୩ ।

ପ୍ରମଥଗଣ କହିଲେ, ଯେଉଁମାନେ ସ୍ତ୍ରୀସମ୍ଭୋଗଉତ୍ତାରେ ପବିତ୍ର ହୁଅନ୍ତି ନାହିଁ ଏବଂ ଯେଉଁମାନେ ପ୍ରଧାନ ଲୋକଙ୍କୁ ଅପମାନ କରନ୍ତି, ମୋହବଶତଃ ଅବୈଧ ମାଂସ ଭୋଜନ କରନ୍ତି, ବୃକ୍ଷମୂଳରେ ଶୟନ କରନ୍ତି, ମସ୍ତକରେ ଆମିଷ ସଂସ୍ଥାପନ କରନ୍ତି, ଜଳରେ ଶ୍ଳେଷ୍ମା ପ୍ରଭୃତି ଅପବିତ୍ର ବସ୍ତୁ ପରିତ୍ୟାଗ କରନ୍ତି, ଅଥବା ମସ୍ତକସଂସ୍ଥାପନ ସ୍ଥାନରେ ପଦ ଓ ପଦ ସଂସ୍ଥାପନ ସ୍ଥାନରେ ମସ୍ତକ ସଂସ୍ଥାପିତ କରି ଶୟନ କରନ୍ତି, ସେହି ସମସ୍ତ ବହୁଛିଦ୍ରସମ୍ପନ୍ନ ଅପବିତ୍ର ନରବୃନ୍ଦ ଆମ୍ଭମାନଙ୍କର ବଧ ଓ ଭକ୍ଷ୍ୟ ଅଟନ୍ତି, ଏହି ବିଷୟରେ କିଛି ସଂଶୟ ନାହିଁ । ୭ । ଯେଉଁମାନଙ୍କର ଏହିପରି ସ୍ୱଭାବ, ଏବଂ ଏହି ପ୍ରକାର ବ୍ୟବହାର, ତାଦୃଶ ନରଗଣଙ୍କୁ ଆମ୍ଭେମାନେ ପୀଡ଼ା ପ୍ରଦାନ କରୁ ।

ଯେଉଁ କର୍ମଦ୍ୱାରା ଆମ୍ଭେମାନେ ହିଂସା କରିବାକୁ ଅସମର୍ଥ ହେଉଁ, ସେହି ପ୍ରତିଘାତସମୂହକୁ ଶ୍ରବଣ କର ।୭। ଯେଉଁମାନେ ଶରୀରରେ ଗୋରୋଚନା ଲେପନ କରନ୍ତି, ହସ୍ତରେ କବଚ ଧାରଣ କରନ୍ତି, ଏବଂ ତତ୍ପରାୟଣ ହୋଇ ମସ୍ତକରେ ଘୃତଯୁକ୍ତ ଅକ୍ଷତ ଦାନ କରନ୍ତି, ଆମ୍ଭେମାନେ ସେହିମାନଙ୍କୁ ହିଂସା କରିବାକୁ ଅସମର୍ଥ ଅଟୁ । ଯାହାଙ୍କ ଗୃହରେ ନିବାରିତ ସର୍ବଦା ଅଗ୍ନି ପ୍ରଜ୍ୱଳିତ ହୁଏ, ଯେଉଁ ଗୃହସ୍ଥ ବ୍ୟକ୍ତିଙ୍କ ଗୃହରେ ତରକ୍ଷୁ, ବ୍ୟାଘ୍ରଚର୍ମ ଓ ଦନ୍ତ ଥାଏ, ପର୍ବତ ଗୁହାଶାୟୀ ସ୍ଥୂଳ କଚ୍ଛପ, ଆଜ୍ୟ ଧୂମ, ବିଡ଼ାଲ ଏବଂ କୃଷ୍ଣବର୍ଣ୍ଣ ଓ ପିଙ୍ଗଳ ବର୍ଣ୍ଣ ଛାଗ ଏହି ସବୁ ଥାଆନ୍ତି, ଅସ୍ମାଦୃଶ ଅତି ଦାରୁଣ ମାଂସାଶୀ ରାକ୍ଷସଗଣ ସେହି ଗୃହସ୍ଥଙ୍କୁ କିଛି ପୀଡ଼ା ପ୍ରଦାନ କରିବାକୁ ସମର୍ଥ ହୁଅନ୍ତି ନାହିଁ । ଅସ୍ମଦ୍‌ବିଧ ବ୍ୟକ୍ତିଗଣ ତଦ୍ଭିନ୍ନ ସମସ୍ତ ଲୋକସମୂହରେ ଯଥାସୁଖରେ ବିଚରଣ କରନ୍ତି । ହେ ନିଶାଂପତେ ! ସେହି କାରଣରୁ ଯେଉଁ ସମସ୍ତ ବିଷୟ ଗୃହରେ ଥିଲେ ରାକ୍ଷସଗଣ ସେହି ଗୃହ ସମୂହରେ ଉପଦ୍ରବ କରି ନ ପାରନ୍ତି, ଏବଂ ଯହିଁରେ ତୁମ୍ଭର ମହାନ୍ ସଂଶୟ ଜନ୍ମି ଥିଲା, ତାହାସବୁ କୀର୍ତ୍ତନ କଲୁଁ । ୧୨ ।

---

# ଅଧ୍ୟାୟ—୧୩୨

ଭୀଷ୍ମ କହିଲେ—ତଦନନ୍ତର ପଦ୍ମ ପ୍ରତୀକାଶ ପଦ୍ମୋଦ୍ଭବ ପିତାମହ ଦେବଗଣ ଓ ଶଚୀପତି ବାସବଙ୍କୁ ଏହି କଥା କହିଲେ (୧), ହେ ଅମର-ଗଣ ! ଏହି ରସାତଳଗୃହୀ ମହାବଳପରାକ୍ରାନ୍ତ ରେଣୁକ ନାମା ତେଜସ୍ୱୀ ନାଗ ଅଛନ୍ତି । ୨ । ଯେଉଁ ଅତି ତେଜସ୍ୱୀ ମହାବୀର୍ଯ୍ୟ ମହାଗଜସମୂହ ଗିରି-ବନ ସହିତ ସମସ୍ତ ଭୂମଣ୍ଡଳ ଧାରଣ କରି ରହିଅଛନ୍ତି, ରେଣୁକ ତୁମ୍ଭ-ମାନଙ୍କ ଆଜ୍ଞାନୁସାରେ ସେଠାକୁ ଯାଇ ସେହି ମହାଗଜମାନଙ୍କୁ ଗୋପନୀୟ ଧର୍ମସମୂହ ପ୍ରଶ୍ନ କରନ୍ତୁ । ୪ ।

ଦେବଗଣ ପିତାମହଙ୍କ ବାକ୍ୟ ଶ୍ରବଣ କରି ତେତେବେଳେ ଯେଉଁ ସ୍ଥାନରେ ସେହି ଧରଣୀଧର ଦିଗ୍‌ଗଜଗଣ ଥିଲେ, ସେହି ସ୍ଥାନକୁ ଅତି ଶୀଘ୍ରରେ ଶୁକଙ୍କୁ ପ୍ରେରଣ କଲେ । ୫ । ତେତେବେଳେ ରେଣୁକ ସେମାନଙ୍କ ନିକଟରେ ଉପସ୍ଥିତ ହୋଇ ସେମାନଙ୍କୁ ସମ୍ବୋଧନପୂର୍ବକ କହିଲେ, ହେ ମହାବଳ ଦିଗ୍‌ଗଜବୃନ୍ଦ ! ଆମ୍ଭେ ଆପଣମାନଙ୍କ ନିକଟରୁ ଗୋପନୀୟ ସମସ୍ତ ଧର୍ମ ଯଥାର୍ଥ ରୂପେ ଶ୍ରବଣ କରିବା ନିମିତ୍ତ ଦେବଗଣ ଓ ପିତୃଗଣଙ୍କ ଦ୍ୱାରା ଅନୁଜ୍ଞାତ ହୋଇଅଛୁ; ଅତଏବ ହେ ମହାଭାଗଗଣ ! ଆପଣମାନେ ଧର୍ମର ନିଗୂଢ଼ ତତ୍ତ୍ୱ କୀର୍ତ୍ତନ କରିବା ହେଉନ୍ତୁ । ୭ ।

ଦିଗ୍‌ଗଜଗଣ କହିଲେ, କାର୍ତ୍ତିକ ମାସ କୃଷ୍ଣ ପକ୍ଷରେ ଅଶ୍ଳେଷା ନକ୍ଷତ୍ରଯୁକ୍ତ ଅଷ୍ଟମୀ ତିଥିରେ ଯେ ଶ୍ରାଦ୍ଧ କାଳରେ ଯତାହାର ଓ ଅକୋପନ ହୋଇ ଏହି ମନ୍ତ୍ର ଜପ କରି ଗୁଡ଼ୌଦନ ଦାନ କରନ୍ତି, "ବଳଦେବ ପ୍ରଭୃତି ଯେଉଁ ବଳବତ୍ତର ଅନନ୍ତ ଅକ୍ଷୟ ନିତ୍ୟଭୋଗୀ ଅତିଶୟ ମହାବଳ ନାଗ-ସମୂହ ଅଛନ୍ତି ଏବଂ ସେମାନଙ୍କର ବଳୋଦ୍ଭବ ଯେଉଁ ମହାଭୁଜ ଭୁଜଙ୍ଗମ-ସମୂହ ଅଛନ୍ତି, ସେମାନେ ବଳ ଓ ତେଜୋବୃଦ୍ଧି ନିମିତ୍ତ ଆମ୍ଭର ବଳି ପ୍ରତିଗ୍ରହଣ କରନ୍ତୁ । ଯେତେବେଳେ ଶ୍ରୀମାନ୍ ନାରାୟଣ ବସୁନ୍ଧରା ଉଦ୍ଧାର କରିଥିଲେ (୧୦), ଧରାଉଦ୍ଧାରକାରୀ ସେହି ଦେବଙ୍କ ସଦୃଶ ବଳ ହେଉ" ଏହି ମନ୍ତ୍ର ଜପ କରି ବଲ୍ମୀକ ମଧ୍ୟରେ ବଳି ନିବେଦନ କରିବ । ୧୧ । ଦିବାକର ଅସ୍ତଗିରି ଅବଲମ୍ବନ କରନ୍ତେ ଗଜେନ୍ଦ୍ର କୁସୁମାକୀର୍ଣ୍ଣ ନୀଳବସ୍ତ୍ରାନୁ-ଲେପନ ସେହି ବଳି ବଲ୍ମୀକରେ ନିକ୍ଷେପ କରିବେ । ୧୨ । ଏହି ପ୍ରକାର କଲେ, ଅଧଃପ୍ରଦେଶରେ ଭାରପୀଡ଼ିତ ହୋଇ ସୁଦ୍ଧା ଆମ୍ଭେମାନେ ଅତି

ସନ୍ତୁଷ୍ଟ ହେଉଁ ଏବଂ ବସୁନ୍ଧରା ଧାରଣଜନ୍ୟ ଶ୍ରମ ଜାଣି ପାରୁନାହୁଁ । ୧୩ । ଆମ୍ଭେମାନେ ଏହିପରି ଉଦାର୍ଭି ଓ ନିରପେକ୍ଷ ହୋଇ ସମସ୍ତ ବିଷୟ ଅବଗତ ହେଉଁ ।

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଅଥବା ଶୂଦ୍ର ଯଦି ଉପୋଷିତ ହୋଇ (୧୪) ସମ୍ବତ୍ସର ପର୍ଯ୍ୟନ୍ତ ଏହିପରି ଦାନ କରନ୍ତି, ତେବେ ସେମାନଙ୍କର ବହୁ ଫଳ ହୁଏ । ବଲ୍ମୀକରେ ବଳି ପ୍ରଦାନ କଲେ ଆମ୍ଭମାନଙ୍କ ମତରେ ବହୁ ଫଳ ହୁଏ ।୧୫। ତ୍ରିଲୋକ ମଧ୍ୟରେ ଯେଉଁ ସମସ୍ତ ମହାବୀର୍ଯ୍ୟ ନାଗ ଅଛନ୍ତି, ଶତବର୍ଷକାଳ ଯଥାର୍ଥ ରୂପେ ସେମାନଙ୍କର ଆତିଥ୍ୟ ହୁଏ । ୧୬ । ମହାଭାଗ ଦେବଗଣ, ପିତୃଗଣ ଏବଂ ଋଷିଗଣ ସମସ୍ତେ ଦିଗ୍‌ଗଜମାନଙ୍କର ସେହି କଥା ଶ୍ରବଣ କରି ରେଣୁକଙ୍କୁ ପୂଜା କଲେ । ୧୭।

---

## ଅଧ୍ୟାୟ—୧୩୩

ମହେଶ୍ୱର କହିଲେ—ତୁମ୍ଭେମାନେ ସାର ଉଦ୍ଧାର କରି ସାଧୁ ଧର୍ମ କୀର୍ତ୍ତନ କଲ, ଫଳତଃ ତୁମ୍ଭେମାନେ ସମସ୍ତେ ଆମ୍ଭ ନିକଟରୁ ଗୋପନୀୟ ଧର୍ମ ଶ୍ରବଣ କର ।୧। ଯେଉଁମାନଙ୍କ ବୁଦ୍ଧି ଧର୍ମାଶ୍ରିତ ଏବଂ ଯେଉଁ ସମସ୍ତ ନର ଶ୍ରଦ୍ଧାଯୁକ୍ତ ଅଟନ୍ତି, ସେହିମାନଙ୍କ ନିକଟରେ ସରହସ୍ୟ ମହାଫଳ ଧର୍ମ କୀର୍ତ୍ତନ କରିବାର ବିଧେୟ । ୨ । ଯେଉଁ ବ୍ୟକ୍ତି ନିରୁଦ୍‌ବିଗ୍ନ ହୋଇ ଏକମାସ କାଳ ପ୍ରଶସ୍ତ ମନରେ, ଗୋସମୂହଙ୍କୁ ପ୍ରଚୁର ପରିମାଣରେ ଭକ୍ଷ୍ୟ-ଦ୍ରବ୍ୟ ପ୍ରଦାନ କରନ୍ତି ଓ ଦିବସ ମଧ୍ୟରେ ସ୍ୱୟଂ ଏକବାର ମାତ୍ର ଆହାର କରନ୍ତି, ତାହାଙ୍କର ଯେଉଁ ଫଳ ହୁଏ, ତାହା ଶ୍ରବଣ କର । ୩ ।

ଏହି ସମସ୍ତ ମହାଭାଗ ଗୋସମୂହ ପରମ ପବିତ୍ରରୂପେ ସ୍ମୃତ ହୋଇ ଅଛନ୍ତି, ଏମାନେ ଦେବାସୁର ନର ସହିତ ଲୋକତ୍ରୟ ଧାରଣ କରି-ଅଛନ୍ତି । ୪ । ସେହିମାନଙ୍କୁ ଶୁଶ୍ରୂଷା କଲେ ମହାପୁଣ୍ୟ ଓ ଫଳ ହୁଏ । ଯେଉଁ ବ୍ୟକ୍ତି ପ୍ରତିଦିନ ଗୋସେବା କରନ୍ତି, ସେ ଧର୍ମ ଉପାର୍ଜନ କରନ୍ତି ।୫। ପୂର୍ବେ ସତ୍ୟଯୁଗରେ ଗୋବୃନ୍ଦ ଆମ୍ଭଦ୍ୱାରା ଅନୁଜ୍ଞା ପ୍ରାପ୍ତ ହୋଇଥିଲେ ; ତଦନନ୍ତର ପଦ୍ମଯୋନି ବ୍ରହ୍ମା ଆମ୍ଭଙ୍କୁ ଅନୁନୟ କରିଥିଲେ । ୬ । ତନ୍ନିମିତ୍ତ ବୃଷଭ ଆମ୍ଭର ଧ୍ୱଜ ସ୍ଥାନରେ ଅବସ୍ଥାନ କରିଅଛନ୍ତି । ଆମ୍ଭେ ଗୋସମୂହର

ସହିତ କ୍ରୀଡ଼ା କରନ୍ତି, ସେହି କାରଣରୁ ସେମାନେ ସର୍ବଦା ପୂଜନୀୟ । ୭ । ମହାପ୍ରଭବ ବରପ୍ରଦ ଗୋଗଣଙ୍କୁ ଉପାସନା କଲେ ସେମାନେ ବରପ୍ରଦାନ କରନ୍ତି, ମନୁଷ୍ୟ ସର୍ବକର୍ମ କଲେ ଯେଉଁ ଫଳ ଲାଭ କରନ୍ତି, ଗୋସମୂହ ତାହାସବୁ ଅନୁମୋଦନ କରନ୍ତି । ୮ । ଯେଉଁ ବ୍ୟକ୍ତି ଗୋବୃନ୍ଦଙ୍କୁ ଏକ ଦିବସର ଆହାରୋପଯୋଗୀ ଭକ୍ଷ୍ୟଦ୍ରବ୍ୟ ପ୍ରଦାନ କରନ୍ତି, ସେ ସମସ୍ତ କର୍ମଫଳର ଚତୁର୍ଥାଂଶ ଲାଭ କରିବାକୁ ସମର୍ଥ ହୁଅନ୍ତି । ୯ ।

---

## ଅଧ୍ୟାୟ—୧୩୪

କାର୍ତ୍ତିକେୟ କହିଲେ—ସମସ୍ତେ ସମାହିତ ହୋଇ ଆମ୍ଭର ଅନୁମତ ଧର୍ମ ଶ୍ରବଣ କରନ୍ତୁ । ଯେଉଁ ବ୍ୟକ୍ତି ନୀଳ ବୃଷର ଶୃଙ୍ଗଦ୍ୱୟରୁ ମୃତ୍ତିକା ଗ୍ରହଣପୂର୍ବକ ସ୍ୱୀୟ ଶରୀରରେ ଅନୁଲେପନପୂର୍ବକ ତିନି ଦିବସ ସ୍ନାନ କରନ୍ତି, ତାହାଙ୍କର କିଛିମାତ୍ର ଅମଙ୍ଗଳ ହୁଏ ନାହିଁ । ସେ ସର୍ବତ୍ର ଏବଂ ପର-ଲୋକରେ ଆଧିପତ୍ୟ ଲାଭ କରନ୍ତି (୨) ଏବଂ ସେ ଭୂମଣ୍ଡଳରେ ଯେତେବାର ଜନ୍ମପରିଗ୍ରହ କରନ୍ତି, ସେତେବାର ସେ ବୀର ପୁରୁଷ ବୋଲି ବିଖ୍ୟାତ ହୁଅନ୍ତି । ସମ୍ପ୍ରତି ଅନ୍ୟ ଏକ ରହସ୍ୟ ଧର୍ମ କୀର୍ତ୍ତନ କରୁଅଛୁଁ, ଶ୍ରବଣ କରନ୍ତୁ । ୩ । ଯେଉଁ ବ୍ୟକ୍ତି ପୂର୍ଣ୍ଣିମା ତିଥିରେ ତାମ୍ର ପାତ୍ରରେ ମଧୁମିଶ୍ରିତ ପକ୍ୱାନ୍ନ ଗ୍ରହଣପୂର୍ବକ ଉଦିତ ଚନ୍ଦ୍ରଙ୍କୁ ବଳିପ୍ରଦାନ କରନ୍ତି, ତାହାଙ୍କର ସେହି ବଳିପ୍ରଭାବରେ ଅଶ୍ୱିନୀକୁମାରଦ୍ୱୟ, ସାଧ୍ୟଗଣ, ରୁଦ୍ରଗଣ, ଆଦିତ୍ୟ-ଗଣ, ବିଶ୍ୱେଦେବଗଣ ମରୁଦ୍‌ଗଣ ଓ ବସୁଗଣ ସେହି ବଳି ପ୍ରତିଗ୍ରହଣ କରନ୍ତି, ତଦ୍ଦ୍ୱାରା ଚନ୍ଦ୍ରମା ଓ ମହୋଦଧି ସମୁଦ୍ର ବର୍ଦ୍ଧିତ ହୁଅନ୍ତି । ୬ । ଏହି ରହସ୍ୟଯୁକ୍ତ ସୁଖାବହ ଧର୍ମ ଆମ୍ଭଦ୍ୱାରା ସମୁଦ୍ଦିଷ୍ଟ ହେଲା । ୭ ।

ବିଷ୍ଣୁ କହିଲେ, ଯେଉଁ ବ୍ୟକ୍ତି ଅସୂୟାଶୂନ୍ୟ, ଶ୍ରଦ୍ଧାଯୁକ୍ତ ଓ ସମାହିତ ହୋଇ ପ୍ରତିଦିନ ଦେବଗଣଙ୍କର ଗୋପନୀୟ ଧର୍ମସମୂହ ଓ ମହାତ୍ମା ଋଷି-ଗଣଙ୍କର ଗୁହ୍ୟ ଧର୍ମସମୂହ ସର୍ବଦା ପାଠ କରନ୍ତି ଅଥବା ସର୍ବଦା ଶ୍ରବଣ କରନ୍ତି, ତାହାଙ୍କର କୌଣସି ବିଘ୍ନ ହୁଏ ନାହିଁ ଏବଂ କୌଣସି ଭୟ ରହେ ନାହିଁ । ୯ । ଯେଉଁ ସମସ୍ତ ରହସ୍ୟସମ୍ପନ୍ନ ଶୁଭକର ପବିତ୍ର ଧର୍ମ ଉଦାହୃତ ହୋଇଅଛି, ଯେଉଁ ବ୍ୟକ୍ତି ବିଶେଷ ରୂପେ ଜିତେନ୍ଦ୍ରିୟ ହୋଇ ତାହା ପାଠ

କରନ୍ତି ତାହାଙ୍କର ସେହି ସମସ୍ତ ଧର୍ମ ଫଳ ହୁଏ । ତାହାଙ୍କର ପାପ ରହେ ନାହିଁ ଏବଂ ସେ ପାପରେ ଲିପ୍ତ ହୁଅନ୍ତି ନାହିଁ । ଏହି ସମସ୍ତ ଧର୍ମ ରହସ୍ୟ ପାଠ କରି, ଶ୍ରବଣ କରି ଓ ଶ୍ରବଣ କରାଇ ଫଳପ୍ରାପ୍ତ ହୁଅନ୍ତି ।୧୨। ପିତୃ-ଗଣ ଓ ଦେବଗଣ ତାହାଙ୍କର ଅକ୍ଷୟ ହବ୍ୟକବ୍ୟ ଭୋଗ କରନ୍ତି । ଯେଉଁ ନର ପର୍ବକାଳରେ ପ୍ରଯତ ହୋଇ ବିପ୍ରଗଣଙ୍କୁ ଏହି ଧର୍ମ ରହସ୍ୟ ଶ୍ରବଣ କରାନ୍ତି, ସେ ଋଷିଗଣ, ଦେବଗଣ ଓ ପିତୃଗଣଙ୍କର ନିୟତ ଅଭିମତ ଶ୍ରୀମାନ୍ ଓ ଧର୍ମ ବିଷୟରେ ସର୍ବଦା ପ୍ରଯତ ହୁଅନ୍ତି । ମନୁଷ୍ୟ ମହାପାତକବର୍ଜିତ ସମସ୍ତ ପାପକର୍ମ କରି ଏହି ରହସ୍ୟ ଧର୍ମ ଶ୍ରବଣ କଲେ ସମସ୍ତ ପାପରୁ ବିମୁକ୍ତ ହୁଅନ୍ତି ।୧୪।

ଭୀଷ୍ମ କହିଲେ, ହେ ରାଜନ୍ ! ତୁମ୍ଭ ନିକଟରେ ସର୍ବଦେବପୂଜିତ ବ୍ୟାସୋଦ୍ଦିଷ୍ଟ ଦେବତାମାନଙ୍କର ଏହି ଧର୍ମ ରହସ୍ୟ ଆମ୍ଭଦ୍ୱାରା କୀର୍ତ୍ତିତ ହେଲା । ଏହା ରତ୍ନପରିପୂର୍ଣ୍ଣ ଭୂମଣ୍ଡଳ ଏବଂ ଅତି ଉତ୍କୃଷ୍ଟ ଜ୍ଞାନ ସ୍ୱରୂପ, ଅତଏବ ଧର୍ମଜ୍ଞ ମନୁଷ୍ୟ ଏହାକୁ ଶ୍ରବଣୀୟ ବୋଲି ଜାଣିବେ । ଶ୍ରଦ୍ଧାଶୂନ୍ୟ, ନାସ୍ତିକ, ନଷ୍ଟଧର୍ମ, ନିର୍ଘୃଣ, ହେତୁଦୁଷ୍ଟ, ଗୁରୁଦ୍ରୋହୀ ଏବଂ ଅନାତ୍ମଭୂତ ବ୍ୟକ୍ତିଙ୍କ ନିକଟରେ ଏହା ନିବେଦନ କରିବାର ଉଚିତ ନୁହେଁ ।୧୭।

---

## ଅଧ୍ୟାୟ—୧୩୫

ଯୁଧିଷ୍ଠିର କହିଲେ—ହେ ଭରତ ! ଏହି ସଂସାରରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚତୁର୍ବିଧ ବର୍ଣ୍ଣଙ୍କ ମଧ୍ୟରେ କେଉଁ କେଉଁ ବର୍ଣ୍ଣଙ୍କର କେଉଁ କେଉଁ ଭୋଜ୍ୟାନ୍ନ ନିର୍ଦ୍ଦିଷ୍ଟ ହୋଇଅଛି, ତାହା କୀର୍ତ୍ତନ କରିବା ହେଉନ୍ତୁ ।୧।

ଭୀଷ୍ମ କହିଲେ, ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ, ଏମାନେ ପରସ୍ପର ପରସ୍ପରଙ୍କ ଅନ୍ନ ଭୋଜନ କରିପାରିବେ, କିନ୍ତୁ ଏମାନଙ୍କ ପକ୍ଷରେ ଶୂଦ୍ର ଅନ୍ନ ବର୍ଜନୀୟ ।୨। କ୍ଷତ୍ରିୟଙ୍କ ପକ୍ଷରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କ ଅନ୍ନ ଭୋଜ୍ୟ; କେବଳ ବିକର୍ମଶୀଳ, ସର୍ବଭକ୍ଷ ଶୂଦ୍ରଙ୍କ ଅନ୍ନ ପରିତ୍ୟାଜ୍ୟ ।୩। ବୈଶ୍ୟଗଣ ବିପ୍ର ଓ କ୍ଷତ୍ରିୟଗଣଙ୍କ ଅନ୍ନ ଭୋଜନ କରିବେ । ଯେଉଁମାନେ ନିତ୍ୟ ଅଗ୍ନିହୋତ୍ର କରନ୍ତି, ଯେଉଁମାନେ ବିରକ୍ତ,

ଏବଂ ଯେଉଁମାନେ ଗୃହଶୁର୍ମାସ୍ୟ ରତ ଅଟନ୍ତି, ସେହି ବୈଶ୍ୟଗଣଙ୍କର ଅନ୍ନ କ୍ଷତ୍ରିୟ ଓ ବିପ୍ରଗଣଙ୍କର ଭୋଜନୀୟ ଅଟେ । ୪ ।

ଯେଉଁ ବ୍ରାହ୍ମଣ, କ୍ଷତ୍ରିୟ କିମ୍ବା ବୈଶ୍ୟ ବା ଶୂଦ୍ରଙ୍କ ଅନ୍ନ ଭୋଜନ କରନ୍ତି, ସେମାନେ ପୃଥିବୀର ମଳ ଭୋଜନ କରନ୍ତି ! ସେ ନରଗଣଙ୍କର ମଳପାନ କରନ୍ତି ଏବଂ ସେ ଜନଗଣଙ୍କର ମଳଭୋଜନ କରନ୍ତି । ୫ । ଯେ ଶୂଦ୍ରଗଣଙ୍କର ଅନ୍ନଭୋଜନ କରନ୍ତି, ସେ ପୃଥିବୀମଳ ଭୋଜନ କରନ୍ତି । ଯେଉଁ ଦ୍ୱିଜଗଣ ଶୂଦ୍ରଗଣଙ୍କର ଅନ୍ନଭୋଗୀ ହୁଅନ୍ତି, ସେମାନେ ପୃଥିବୀ ମଳ ଭୋଗ କରନ୍ତି । ୬ । ବଶିଷ୍ଟକର୍ମ ସନ୍ଧ୍ୟା ବନ୍ଦନାଦିଯୁକ୍ତ ବ୍ରାହ୍ମଣ ଯଦି ଶୂଦ୍ରଙ୍କ ସେବାରେ ନିଯୁକ୍ତ ହୁଅନ୍ତି, ତେବେ ସେ ନରକରେ ନିମଗ୍ନ ହୁଅନ୍ତି । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ସ୍ୱକର୍ମସ୍ଥ ହୋଇ ଯଦି ଶୂଦ୍ରଙ୍କ ସେବା କରନ୍ତି, ତେବେ ସେମାନେ ସମସ୍ତେ ନିରୟଗାମୀ ହୁଅନ୍ତି । ୭ ।

ପୁରାତନ ଋଷିଗଣ କହିଅଛନ୍ତି ଯେ, ବିପ୍ରଗଣ ସ୍ୱାଧ୍ୟାୟ ପାଠରେ ଏବଂ ନରଗଣଙ୍କର ସ୍ୱସ୍ତ୍ୟୟନ ବିଷୟରେ ନିରତ ହେବେ, କ୍ଷତ୍ରିୟଗଣ ମାନବଗଣଙ୍କୁ ରକ୍ଷା କରିବା ବିଷୟରେ ନିଯୁକ୍ତ ହେବେ ଏବଂ ବୈଶ୍ୟଗଣ ମାନବବୃନ୍ଦଙ୍କର ପୁଷ୍ଟିକାର୍ଯ୍ୟରେ ପ୍ରବୃତ୍ତ ହେବେ । ୮ । ବୈଶ୍ୟ ଯେଉଁ କାର୍ଯ୍ୟ କରନ୍ତି, ତାହା ଦାନକରି ଜୀବନଧାରଣ କରନ୍ତି । ବୈଶ୍ୟଗଣଙ୍କ ପକ୍ଷରେ, କୃଷି, ଗୋରକ୍ଷଣ ଓ ବାଣିଜ୍ୟ ବ୍ୟବସାୟ ନିନ୍ଦନୀୟ ନୁହେଁ । ୯ ।

ଯେଉଁ ବ୍ରାହ୍ମଣ ସ୍ୱକର୍ମ ପରିତ୍ୟାଗପୂର୍ବକ ଶୂଦ୍ରକାର୍ଯ୍ୟ କରନ୍ତି, ସେ ଶୂଦ୍ର ସଦୃଶ ଅଟନ୍ତି । ତାହାଙ୍କ ଅନ୍ନ କଦାପି ଭୋଜନୀୟ ନୁହେ । ୧୦ । ଚିକିତ୍ସକ, ଆୟୁଧୋପଜୀବୀ, ପୁରାଧ୍ୟକ୍ଷ, ପୁରୋହିତ ଏବଂ ସମ୍ବତ୍ସର କାଳ ବୃଥାଧ୍ୟାୟୀ ଏହି ବ୍ରାହ୍ମଣଗଣ ସମସ୍ତେ ଶୂଦ୍ରସଦୃଶ ଅଟନ୍ତି ।୧୧। ଏହିମାନଙ୍କ ମଧ୍ୟରେ ଯେଉଁ ବ୍ୟକ୍ତି ଲଜ୍ଜାହୀନ ହୋଇ ଶୂଦ୍ରଙ୍କ କର୍ମରେ ଭୋଜନ କରନ୍ତି, ସେ ଅଭୋଜ୍ୟ ଭୋଜନ କରି ଦାରୁଣ ଭୟ ପ୍ରାପ୍ତ ହୁଅନ୍ତି । ୧୨ । ତାହାଙ୍କର କୁଳ, ବୀର୍ଯ୍ୟ ଓ ତେଜ ନଷ୍ଟ ହୋଇଯାଏ ଏବଂ ସେହି ବ୍ୟକ୍ତି ତିର୍ଯ୍ୟକ୍-ଯୋନିରୁ ପ୍ରାପ୍ତ ହୁଅନ୍ତି ଓ ସେ ଧର୍ମବର୍ଜିତ କୁକ୍କୁର ସଦୃଶ ନିକ୍ଷିପ୍ତ ହୁଅନ୍ତି ।୧୩। ଯେଉଁ ବ୍ୟକ୍ତି ଚିକିତ୍ସକଙ୍କ ଅନ୍ନ ଭୋଜନ କରନ୍ତି, ସେ ପୁରୀଷ ଭକ୍ଷଣ କରନ୍ତି । ପୁଂଶ୍ଚଳୀଙ୍କ ଅନ୍ନ ମୂତ୍ରସଦୃଶ ଅଟେ, ଶିଳ୍ପକରଙ୍କ ଅନ୍ନ ଶୋଣିତ ସଦୃଶ ଅଟେ । ୧୪ । ଯେଉଁ ସାଧୁ ସମ୍ମତ ବ୍ରାହ୍ମଣ ବିଦ୍ୟୋପଜୀବୀଙ୍କ ଅନ୍ନ ଭୋଜନ କରନ୍ତି, ସେ ଶୂଦ୍ରାନ୍ନ ଭୋଜନ କରିବା ପାପରେ ଲିପ୍ତ ହୁଅନ୍ତି ।

ଅତଏବ ସାଧୁ ବ୍ରାହ୍ମଣ ତାହା ପରିତ୍ୟାଗ କରିବେ । ନିନ୍ଦନୀୟ ବ୍ୟକ୍ତିଙ୍କ ଅନ୍ନ ଭୋଜନ ଶୋଣିତ ହ୍ରଦର ତରଙ୍ଗ ସଦୃଶ ଅଟେ ବୋଲି ପଣ୍ଡିତଗଣ କହନ୍ତି । ପଣ୍ଡିତଗଣ ପିଶୁନ ବ୍ୟକ୍ତିଙ୍କ ଅନ୍ନଭୋଜନକୁ ବ୍ରହ୍ମହତ୍ୟା ସମାନ ଜ୍ଞାନ କରନ୍ତି । ୧୬ ।

ଅସତ୍କୃତ ଓ ଅବଜ୍ଞାତ ହୋଇ କଦାପି ଭୋଜନ କରିବେ ନାହିଁ । ୧୭ । ବ୍ରାହ୍ମଣ ଯଦି ତାଦୃଶ ଭାବରେ ଭୋଜନ କରନ୍ତି, ତେବେ ଶୀଘ୍ର ତାହାଙ୍କର ବ୍ୟାଧି ଓ କୁଳ କ୍ଷୟ ହୁଏ । ନଗରରକ୍ଷକଙ୍କ ଅନ୍ନ ଭୋଜନ କଲେ ଚଣ୍ଡାଳତ୍ୱ ପ୍ରାପ୍ତ ହୁଅନ୍ତି । ଗୋଘ୍ନ, ବ୍ରହ୍ମଘ୍ନ, ସୁରାପାୟୀ ଓ ଗୁରୁତଳ୍ପଗାମୀଙ୍କ ଅନ୍ନ ଭୋଜନ କଲେ ବ୍ରାହ୍ମଣ ରାକ୍ଷସଗଣଙ୍କ କୁଳବର୍ଦ୍ଧନ କରନ୍ତି (୧୯) ଅର୍ଥାତ୍ ରାକ୍ଷସକୁଳରେ ଜନ୍ମନ୍ତି । ନ୍ୟସ୍ତ ଧନାପହାରୀ, କ୍ଲୀବ ଓ କୃତଘ୍ନଙ୍କ ଅନ୍ନ ଭୋଜନ କଲେ ମଧ୍ୟ ଦେଶ-ବହିଷ୍କୃତ ଶବରବାସରେ ଜନ୍ମ ହୁଅନ୍ତି । ୨୦ । ହେ କୁନ୍ତୀନନ୍ଦନ ! ଏହି ଆମ୍ଭେ ଅଭୋଜ୍ୟ ଓ ଭୋଜ୍ୟ-ଗଣଙ୍କର ବିଷୟ ଯଥାବିଧି କୀର୍ତ୍ତନ କଲୁଁ । ସଂପ୍ରତି ଆମ୍ଭ ନିକଟରୁ ତୁମ୍ଭେ ଆଉ କେଉଁ ବିଷୟ ଶ୍ରବଣ କରିବାକୁ ଇଚ୍ଛା କରୁଅଛ ? ୨୧ ।

---

## ଅଧ୍ୟାୟ—୧୩୭

ଯୁଧିଷ୍ଠିର କହିଲେ—ହେ ପିତାମହ ! ଆପଣ ଯାହାଙ୍କ ଅନ୍ନ ଭୋଜ୍ୟ ଓ ଯାହାଙ୍କ ଅନ୍ନ ଅଭୋଜ୍ୟ ତାହାସବୁ କୀର୍ତ୍ତନ କଲେ; କିନ୍ତୁ ଆମ୍ଭର ଏହି ବିଷୟରେ ସନ୍ଦେହ ଉପସ୍ଥିତ ହୋଇଅଛି, ଅତଏବ ଆପଣ ସେହି ସଂଶୟ ଛେଦନ କରନ୍ତୁ । ବ୍ରାହ୍ମଣଗଣଙ୍କ ହବ୍ୟକବ୍ୟ ପରିଗ୍ରହ ବିଷୟରେ ବିଶେଷତଃ ନାନାବିଧ ଭୋଜ୍ୟ ବିଷୟରେ ଯେଉଁ ପ୍ରାୟଶ୍ଚିତ୍ତ ସବୁ ଅଛି, ଆପଣ ଆମ୍ଭ ନିକଟରେ ତତ୍ସମୁଦାୟ କୀର୍ତ୍ତନ କରିବା ହେଉନ୍ତୁ । ୨ ।

ଭୀଷ୍ମ କହିଲେ, ହେ ରାଜନ୍ ! ଉତ୍ତମ ମହାନୁଭବ ବ୍ରାହ୍ମଣଗଣ ପ୍ରତିଗ୍ରହ ଓ ଭୋଜ୍ୟ ବିଷୟରେ ଯାହାଦ୍ୱାରା ପାପରୁ ମୁକ୍ତ ହୁଅନ୍ତି, ତାହା ତୁମ୍ଭ ନିକଟରେ କହୁଅଛୁ । ୩ । ହେ ଯୁଧିଷ୍ଠିର ! ଘୃତ ପ୍ରତିଗ୍ରହ କଲେ ସାବିତ୍ରୀ ମନ୍ତ୍ରଦ୍ୱାରା ସମିଧ୍ ହୋମ କରିବାର ବିଧେୟ; ତିଳ ପ୍ରତିଗ୍ରହ ମଧ୍ୟ ତଦ୍‌ବତ୍ ପ୍ରାୟଶ୍ଚିତ୍ତ ହୁଏ ବୋଲି ଜ୍ଞାନ କର । ୪ । ମଧୁ ମାଂସ ଓ ଲବଣ

ପ୍ରତିଗ୍ରହ କଲେ ପ୍ରତିଗ୍ରହ ସମୟଠାରୁ ସୂର୍ଯ୍ୟଙ୍କ ଉଦୟକାଳ ପର୍ଯ୍ୟନ୍ତ ଦଣ୍ଡାୟମାନ ହୋଇ ରହି ବ୍ରାହ୍ମଣ ପବିତ୍ର ହୁଅନ୍ତି । ୫ । ବ୍ରାହ୍ମଣ ସୁବର୍ଣ୍ଣ ପ୍ରତିଗ୍ରହ କଲେ, ଗୁରୁ ଶ୍ରୁତି ଅର୍ଥାତ୍ ସାବିତ୍ରୀ ଜପ କରି ପ୍ରକାଶ୍ୟ ଭାବରେ ଲୌହଧାରଣ କଲେ ନିଷ୍ପାପ ହୁଅନ୍ତି ।

ହେ ନରବର ! ଏହିପରି ସ୍ତ୍ରୀ ବ୍ୟକ୍ତିଙ୍କ ଧନ ଓ ବସ୍ତ୍ର ପ୍ରତିଗ୍ରହ କଲେ, ପୂର୍ବୋଲ୍ଲିଖିତ ଜପ କରି ବ୍ରାହ୍ମଣ ପାପରୁ ବିମୁକ୍ତ ହୁଅନ୍ତି । ୭ । ଅନ୍ନ ପ୍ରତିଗ୍ରହ କଲେ, ପାୟସ, ଇକ୍ଷୁରସ, ଇକ୍ଷୁଦଣ୍ଡ, ତୈଳ ଓ ପବିତ୍ର ବସ୍ତୁସମୂହ ଗ୍ରହଣ କଲେ ତ୍ରିସନ୍ଧ୍ୟାରେ ସ୍ନାନ କରିବା ବିଧେୟ । ୮ । ଧାନ୍ୟ, ପୁଷ୍ପ, ଜଳ, ପିଷ୍ଟମୟ ଦ୍ରବ୍ୟ, ପିଷ୍ଟକ, ଯାବକ ଓ ଦଧିଦୁଗ୍ଧ ପ୍ରତିଗ୍ରହ କଲେ ଶତବାର ଗାୟତ୍ରୀ ଜପ କରିବାର ବିଧେୟ । ପ୍ରେତୋଦ୍ଦେଶରେ ଦତ୍ତ ପାଦୁକା, ଛତ୍ର ଓ ବସ୍ତ୍ର ପ୍ରତିଗ୍ରହ କଲେ, ସମାହିତ ଚିତ୍ତରେ ଶତବାର ସାବିତ୍ରୀ ଜପ କରିବା ବିଧେୟ । ତାହା କଲେ, ବିପ୍ର ପାପରୁ ବିମୁକ୍ତ ହୁଅନ୍ତି । ୧୦ । ଗ୍ରହଣ ଓ ସୂତକ ଅଶୌଚ କାଳରେ କ୍ଷେତ୍ର ପ୍ରତିଗ୍ରହ କଲେ ତ୍ରିରାତ୍ର ଉପବାସ କରି ବ୍ରାହ୍ମଣ ଉକ୍ତ ପାପରୁ ବିମୁକ୍ତ ହୁଅନ୍ତି । ୧୧ । ଯେଉଁ ବ୍ରାହ୍ମଣ କୃଷ୍ଣପକ୍ଷରେ ପିତୃଗଣଙ୍କ ଶ୍ରାଦ୍ଧାନ୍ନ ଭୋଜନ କରନ୍ତି, ସେ ସେହି ଅନ୍ନ ଭୋଜନ ହେତୁରୁ ଅହୋରାତ୍ର ଉପବାସ କରି ପବିତ୍ର ହୁଅନ୍ତି । ୧୨ । ବ୍ରାହ୍ମଣ ସ୍ନାନ ନ କରି ସନ୍ଧ୍ୟାଦେବୀଙ୍କର ଉପାସନା କରିବେ ନାହିଁ ଓ ଜପ କରିବାକୁ ପ୍ରବୃତ୍ତ ହେବେ ନାହିଁ ଏବଂ ପୁନଶ୍ଚ ଭୋଜନ କରିବେ ନାହିଁ, ତାହା ହେଲେ ବ୍ରାହ୍ମଣ ପବିତ୍ର ହେବେ । ୧୩ ।

ଅପରାହ୍ଣରେ ଯୁକ୍ତବୋଧ ହେତୁରୁ ପିତୃଲୋକଙ୍କର ଶ୍ରାଦ୍ଧ ବିହିତ ଅଟେ । ତତ୍ସମୟରେ ପୂର୍ବ ନିମନ୍ତ୍ରିତ ବ୍ରାହ୍ମଣଗଣ ଭୋଜନ କରିବେ । ଯେଉଁ ବ୍ରାହ୍ମଣ ମୃତବ୍ୟକ୍ତିଙ୍କ ଗୃହରେ ତୃତୀୟ ଦିବସରେ ଅନ୍ନ ଭୋଜନ କରନ୍ତି, ସେ ତ୍ରିକାଳୀନ ସ୍ନାନ କରି ଦ୍ୱାଦଶାହରେ ବିଶୁଦ୍ଧ ହୁଅନ୍ତି । ଦ୍ୱାଦଶ ଦିବସ ବ୍ୟତୀତ ହେଲେ ବିଶେଷ ରୂପେ କୃତ ଶୌଚ ହୋଇ ବ୍ରାହ୍ମଣଗଣଙ୍କୁ ଘୃତ ପ୍ରଦାନ ପୂର୍ବକ ପାପରୁ ବିମୁକ୍ତ ହେବେ । ୧୬ । ଯେ ମୃତବ୍ୟକ୍ତିଙ୍କ ଗୃହରେ ଦଶଦିବସ ପର୍ଯ୍ୟନ୍ତ ଅନ୍ନ ଭୋଜନ କରନ୍ତି, ସେ ପଶ୍ଚାଦୁକ୍ତ ପ୍ରାୟଶ୍ଚିତ୍ତ ସମୂହ କରିବେ; ସାବିତ୍ରୀ ଜପ, ରୈବତ ସାମ, ପବିତ୍ରେଷ୍ଟି, ଯଦେବା, ଦେବହେଡ଼ନ, ଏହି ଅନୁବାକ୍ ପଞ୍ଚକ ଓ ଅଘମର୍ଷଣ ମନ୍ତ୍ର ଜପ କରିବେ । ୧୭ ।

ଯେଉଁ ବ୍ରାହ୍ମଣ ମୃତବ୍ୟକ୍ତିଙ୍କ ଗୃହରେ ନିରନ୍ତର ଭୋଜନ କରନ୍ତି ସେ ସପ୍ତନିଷବଣ ସ୍ନାନ କରି ପବିତ୍ର ହୁଅନ୍ତି (୧୮), ବିପୁଳ ସିଦ୍ଧିଲାଭ କରନ୍ତି ଏବଂ ଆପଦଗ୍ରସ୍ତ ହୁଅନ୍ତି ନାହିଁ । ୧୯ । ଯେଉଁ ବ୍ରାହ୍ମଣ ଶୂଦ୍ରଗଣଙ୍କ ସହିତ ଏକତ୍ର ଭୋଜନ କରନ୍ତି, ତାହାଙ୍କର ବିଧିବତ୍ ଅଶୌଚ ଗ୍ରହଣ ଦ୍ୱାରା ସିଦ୍ଧି ବିହିତ ହୁଏ । ୨୦ । ଯେଉଁ ବ୍ରାହ୍ମଣ ବୈଶ୍ୟଗଣଙ୍କ ସହିତ ଏକତ୍ର ଭୋଜନ କରନ୍ତି, ସେ ନିରନ୍ତର ଭିକ୍ଷାଦ୍ୱାରା ଜୀବନଯାପନ କରି ସେହି କର୍ମରୁ ମୁକ୍ତ ହୁଅନ୍ତି । ୨୧ । ଯେଉଁ ବ୍ରାହ୍ମଣ କ୍ଷତ୍ରିୟଙ୍କ ସହିତ ଏକତ୍ର ଭୋଜନ କରନ୍ତି, ସେ ନିରନ୍ତର ବସ୍ତ୍ର ସହ ସ୍ନାନ କରି ସେହି ପାପରୁ ବିମୁକ୍ତ ହୁଅନ୍ତି ।୨୨।

ଏକତ୍ର ଭୋଜନ ଶୂଦ୍ରର କୁଳ ନଷ୍ଟ କରେ, ବୈଶ୍ୟଙ୍କର ପଶୁ ଓ ବାନ୍ଧବସମୂହଙ୍କୁ ବିନଷ୍ଟ କରେ, କ୍ଷତ୍ରିୟଙ୍କର ଶ୍ରୀ ନାଶ କରେ ଏବଂ ବ୍ରାହ୍ମଣଙ୍କ ତେଜୋହ୍ରାସ କରେ । ୨୩ । ଅତଏବ ତାହାର ପ୍ରାୟଶ୍ଚିତ୍ତ, ଶାନ୍ତିହୋମ, ସାବିତ୍ରୀ ଜପ, ରୈବତ ନାମକ ଇଷ୍ଟି, କୁଷ୍ମାଣ୍ଡ ହୋମ ଓ ଅଘମର୍ଷଣ ମନ୍ତ୍ର ପ୍ରଭୃତି ଜପ କରିବେ (୨୪) ଏବଂ ଯଦି ପରସ୍ପର ଉଚ୍ଛିଷ୍ଟ ଭୋଜନ କରନ୍ତି, ତେବେ ଗୋରୋଚନା, ଦୁବା ଓ ହରିଦ୍ରା ପ୍ରଭୃତି ମାଙ୍ଗଲ୍ୟ ଦ୍ରବ୍ୟ ସ୍ପର୍ଶ କରିବାର ଉଚିତ ଅଟେ । ତାହା ହେଲେ ସେହି ପାପର ଶାନ୍ତି ହୁଏ, ଏହି ବିଷୟରେ ସଂଶୟ ନାହିଁ । ୨୫ ।

---

## ଅଧ୍ୟାୟ—୧୩୭

ଯୁଧିଷ୍ଠିର କହିଲେ—ହେ ପିତାମହ ! ଭାରତ ! ଦାନ ଓ ତପସ୍ୟା ମଧ୍ୟରେ ପୃଥିବୀ ମଧ୍ୟରେ କିଏ ଶ୍ରେଷ୍ଠ ତାହା କୀର୍ତ୍ତନ କରି ଆପଣ ଆମ୍ଭର ମନୋଦୁଃଖ ନିବାରଣ କରିବା ହେଉନ୍ତୁ । ୧ । ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ଯେଉଁ ସମସ୍ତ ଦାନପୁଣ୍ୟରତ, ଧର୍ମ ନିରତ, ତପସ୍ୟାଦ୍ୱାରା ଶୁଦ୍ଧ-ଚିତ୍ତ ନୃପଗଣ ବିନା ସଂଶୟରେ ଯେଉଁ ଲୋକସମୂହ ପ୍ରାପ୍ତ ହୋଇଅଛନ୍ତି, ତାହା ଶ୍ରବଣ କର । ୨ ।

ହେ ରାଜନ୍ ! ମହର୍ଷି ଆତ୍ରେୟ ମୁନି ଶିଷ୍ୟଗଣଙ୍କଦ୍ୱାରା ସତ୍କାର ପ୍ରାପ୍ତ ହୋଇ ସେହିମାନଙ୍କୁ ନିର୍ଗୁଣ ବ୍ରହ୍ମଙ୍କ ବିଷୟ ଉପଦେଶ ପ୍ରଦାନ କରି ଅତି ଉତ୍କୃଷ୍ଟ ଲୋକସମୂହକୁ ପ୍ରାପ୍ତ ହୋଇଥିଲେ ।୩। ଔଶୀନର ଶିବି ନରପାଳ

ବ୍ରାହ୍ମଣଙ୍କ ନିମିତ୍ତ ପ୍ରିୟ ପୁତ୍ରପ୍ରାଣମାନଙ୍କୁ ପ୍ରଦାନ କରି ଇହଲୋକରୁ ସ୍ୱର୍ଗକୁ ଗମନ କରିଥିଲେ । ୪ । କାଶୀପତି ପ୍ରତର୍ଦ୍ଦନ ବ୍ରାହ୍ମଣାର୍ଥ ସ୍ୱୀୟ ପୁତ୍ର ପ୍ରଦାନ କରି ଇହଲୋକ ଓ ପରଲୋକରେ ଅନୁତ୍ତମ କୀର୍ତ୍ତି ଭୋଗ କରି ଅଛନ୍ତି ।୫। ସଂକୃତିନନ୍ଦନ ରନ୍ତିଦେବ ମହାତ୍ମା ବଶିଷ୍ଠଙ୍କୁ ବିଧିବତ୍ ଅର୍ଘ୍ୟ ପ୍ରଦାନ କରି ଉତ୍କୃଷ୍ଟ ଲୋକସମୂହକୁ ଗମନ କରିଅଛନ୍ତି । ୬ । ମହାତ୍ମା ଦେବବୃଧ ବ୍ରାହ୍ମଣଙ୍କୁ ଯଜ୍ଞ ନିମିତ୍ତ ଦିବ୍ୟ ଶତଶଲାକାସଂଯୁକ୍ତ କାଞ୍ଚନମୟ ଶୁଭଛତ୍ର ପ୍ରଦାନ କରି ସ୍ୱର୍ଗକୁ ଗମନ କରିଅଛନ୍ତି । ୭ ।

ଭଗବାନ୍ ଅମ୍ବରୀଷ ରାଜା ଅପରିମିତ ତେଜସ୍ୱୀ ବ୍ରାହ୍ମଣଙ୍କୁ ସମସ୍ତ ରାଜ୍ୟ ସଂପ୍ରଦାନ କରି ସ୍ୱର୍ଗଲୋକ ଲାଭ କରିଅଛନ୍ତି । ୮ । ସୂର୍ଯ୍ୟବଂଶ ସମ୍ଭୂତ ଜନମେଜୟ ନରପତି ବ୍ରାହ୍ମଣଙ୍କୁ ଯାନ, ଦିବ୍ୟକୁଣ୍ଡଳ ଓ ଧେନୁସମୂହ ପ୍ରଦାନ କରି ଅତି ଉତ୍କୃଷ୍ଟ ଲୋକସମୂହକୁ ଗମନ କରିଅଛନ୍ତି । ୯ । ରାଜର୍ଷି ବୃଷାଦର୍ଭି ବ୍ରାହ୍ମଣଗଣଙ୍କୁ ବିବିଧ ରତ୍ନ ଓ ରମଣୀୟ ଆଶ୍ରମସମୂହ ସଂପ୍ରଦାନ କରି ସ୍ୱର୍ଗରେ ସୁଖ ସମ୍ଭୋଗ କରିଅଛନ୍ତି । ୧୦ । ବିଦର୍ଭାଧିପତି ନିମି ମହାତ୍ମା ଅଗସ୍ତ୍ୟଙ୍କୁ ସ୍ୱୀୟ କନ୍ୟା ଓ ରାଜ୍ୟ ସଂପ୍ରଦାନ କରି ପୁତ୍ର, ପଶୁ ଓ ବାନ୍ଧବ-ବର୍ଗଙ୍କ ସହିତ ସ୍ୱର୍ଗକୁ ଗମନ କରିଅଛନ୍ତି । ୧୧ । ମହାଯଶା ଜମଦଗ୍ନିନନ୍ଦନ ପରଶୁରାମ ବ୍ରାହ୍ମଣଙ୍କୁ ପୃଥିବୀ ଦାନ କରି ମନଃ ସଂକଳ୍ପ ଅପେକ୍ଷା ଅଧିକତର ଅତି ଉତ୍କୃଷ୍ଟ ଅକ୍ଷୟ ଲୋକସମୂହକୁ ଗମନ କରିଅଛନ୍ତି । ୧୨ । ଅନାବୃଷ୍ଟି ସମୟରେ ଭୂଦେବ ରାଜବଶିଷ୍ଠ ପ୍ରାଣିସମୂହଙ୍କୁ ଜୀବିତ ରଖିଥିଲେ, ଯାହାଦ୍ୱାରା ଅକ୍ଷୟ ଗତି ପ୍ରାପ୍ତ ହୋଇଅଛନ୍ତି । ୧୩ ।

ଦଶରଥପୁତ୍ର ରାମ ଯଜ୍ଞସମୂହରେ ଧନ ବିତରଣ କରି ଅକ୍ଷୟ ଲୋକସମୂହକୁ ଗମନ କରିଥିଲେ । ଲୋକରେ ଯାହାଙ୍କର ଉତ୍କୃଷ୍ଟ ଯଶ ହୋଇଅଛି, ସେହି ଦଶରଥନନ୍ଦନ ରାମ ଯଜ୍ଞସମୂହରେ ଧନ ବିତରଣ ଦ୍ୱାରା ଅକ୍ଷୟ ଲୋକସମୂହକୁ ଗମନ କରିଅଛନ୍ତି । ୧୪ । ରାଜର୍ଷି କକ୍ଷସେନ ମହାତ୍ମା ବଶିଷ୍ଠଙ୍କୁ ଯଥାବିଧି ନ୍ୟସ୍ତ ଧନ ପ୍ରଦାନ କରି ଅତିଶୟ ଯଶସ୍ୱୀ ହୋଇ ସ୍ୱର୍ଗକୁ ଗମନ କରିଅଛନ୍ତି । ୧୫ । କରନ୍ଧମଙ୍କ ପୌତ୍ର ଅବିକ୍ଷିତଙ୍କ ପୁତ୍ର ମରୁତ୍ତ ଅଙ୍ଗିରାଙ୍କୁ କନ୍ୟା ପ୍ରଦାନ କରି ଅବିଳମ୍ବରେ ସ୍ୱର୍ଗକୁ ଗମନ କରିଥିଲେ । ୧୬ । ପାଞ୍ଚାଳ ଦେଶୀୟ ନରପତି ଧାର୍ମିକଶ୍ରେଷ୍ଠ ବ୍ରହ୍ମଦତ୍ତ ଶଂଖରତ୍ନ ପ୍ରଦାନ କରି ପରମଗତି ପ୍ରାପ୍ତ ହୋଇଥିଲେ । ୧୭ । ରାଜା ମିତ୍ରସହ ମହାତ୍ମା ବଶିଷ୍ଠଙ୍କୁ ମଦୟନ୍ତୀ ନାମ୍ନୀ ପ୍ରିୟପତ୍ନୀଙ୍କୁ ପ୍ରଦାନ କରି ସ୍ୱର୍ଗକୁ ଗମନ କରିଥିଲେ । ୧୮ ।

ମନୁପୁତ୍ର ସୁଦ୍ୟୁମ୍ନ ମହାତ୍ମା ଲିଖିତଙ୍କୁ ଧର୍ମାନୁସାରେ ଚୌର୍ଯ୍ୟଯୋଗ୍ୟ ହସ୍ତଚ୍ଛେଦନ ରୂପ ଦଣ୍ଡବିଧାନ କରିଥିଲେ ବୋଲି ଉତ୍କୃଷ୍ଟ ଲୋକସମୂହ ଲାଭ କରିଥିଲେ । ୧୯ । ମହାଯଶା ରାଜର୍ଷି ସହସ୍ରଚିତ୍ୟ ବ୍ରାହ୍ମଣଙ୍କ ନିମିତ୍ତ ପ୍ରିୟତମ ପ୍ରାଣ ପରିତ୍ୟାଗ କରି ଉତ୍କୃଷ୍ଟ ଲୋକସମୂହକୁ ଗମନ କରିଥିଲେ । ୨୦ । ରାଜା ଶତଦ୍ୟୁମ୍ନ ମୌଦ୍‌ଗଲ୍ୟ ମୁନିଙ୍କୁ ସର୍ବକାମ ସମ୍ପୂର୍ଣ୍ଣ ହିରଣ୍ମୟ ଭବନ ପ୍ରଦାନ କରି ସ୍ୱର୍ଗକୁ ଗମନ କରିଥିଲେ । ୨୧ । ପୂର୍ବକାଳରେ ସୁମନ୍ୟୁ ନରପତି ଶାଣ୍ଡିଲ୍ୟ ମୁନିଙ୍କୁ ପର୍ବତାକାର ରାଶି ରାଶି ଭକ୍ଷ୍ୟଭୋଜ୍ୟ ଦ୍ରବ୍ୟସମୂହ ଦାନ କରି ସ୍ୱର୍ଗକୁ ପ୍ରସ୍ଥାନ କରିଥିଲେ । ୨୨ । ଶାଲ୍ୱ ରାଜ୍ୟାଧିପତି ମହାଦ୍ୟୁତି ଦ୍ୟୁତିମାନ୍ ନାମକ ରାଜା ମହାତ୍ମା ଋଚୀକ ଋଷିଙ୍କୁ ରାଜ୍ୟ ଦାନ କରି ଅନୁତ୍ତମ ଲୋକସମୂହକୁ ଗମନ କରିଥିଲେ । ୨୩।

ରାଜର୍ଷି ମଦିରାଶ୍ୱ ହିରଣ୍ୟହସ୍ତ ମୁନିଙ୍କୁ ସ୍ୱୀୟ କନ୍ୟା ସୁମଧ୍ୟମାଙ୍କୁ ସମ୍ପ୍ରଦାନ କରି ଦେବଗଣଙ୍କ ଅଧିଷ୍ଠିତ ଲୋକସମୂହକୁ ଗମନ କରିଥିଲେ । ୨୪ । ରାଜର୍ଷି ଲୋମପାଦ ଋଷ୍ୟଶୃଙ୍ଗଙ୍କୁ ଶାନ୍ତା ନାମ୍ନୀ କନ୍ୟା ପ୍ରଦାନ କରି ବିପୁଳ ସର୍ବକାମସମନ୍ୱିତ ହୋଇଥିଲେ । ୨୫ । ରାଜର୍ଷି ଭଗୀରଥ କୌତ୍ସ ଋଷିଙ୍କୁ ଯଶସ୍ୱିନୀ ହଂସୀ ନାମ୍ନୀ କନ୍ୟା ପ୍ରଦାନ କରି ଅକ୍ଷୟ ଲୋକସମୂହକୁ ଗମନ କରିଥିଲେ । ୨୬ । ରାଜର୍ଷି ଭଗୀରଥ କୋହଳ ମୁନିଙ୍କୁ ଶତସହସ୍ର ସବତ୍ସା ଧେନୁ ଦାନ କରି ଅତି ଉତ୍କୃଷ୍ଟ ଲୋକସମୂହ ପ୍ରାପ୍ତ ହୋଇଥିଲେ । ୨୭ ।

ହେ ଯୁଧିଷ୍ଠିର ! ଏହି ସମସ୍ତ ଏବଂ ଅନ୍ୟାନ୍ୟ ଅନେକାନେକ ଭୂପାଳଗଣ ଦାନ ଓ ତପସ୍ୟାଦ୍ୱାରା ସ୍ୱର୍ଗକୁ ଗମନ କରିଥିଲେ ଏବଂ ବାରମ୍ବାର ନିବୃତ୍ତ ହୋଇଥିଲେ । ୨୮ । ଯାବତ୍‌କାଳ ପୃଥିବୀ ରହିଥିବ, ତାବତ୍‌କାଳ ସେହିମାନଙ୍କର କୀର୍ତ୍ତି ପ୍ରତିଷ୍ଠାପ୍ରାପ୍ତ ହୋଇ ରହିଥିବ । ହେ ଯୁଧିଷ୍ଠିର ! ଯେଉଁ ସମସ୍ତ ଗୃହସ୍ଥଗଣ ଦାନ ଓ ତପସ୍ୟାଦ୍ୱାରା ଲୋକସମୂହ ଜୟ କରିଅଛନ୍ତି, ସେହି ସମସ୍ତ ଶିଷ୍ଟଗଣଙ୍କ ଚରିତ ଆମ୍ଭେ ତୁମ୍ଭ ନିକଟରେ କୀର୍ତ୍ତନ କଲୁଁ । ଏହି ନରପତିଗଣ କେବଳ ଦାନ, ଯଜ୍ଞ ଓ ସନ୍ତାନ ଉତ୍ପାଦନଦ୍ୱାରା ସ୍ୱର୍ଗଲୋକ ଲାଭ କରିଅଛନ୍ତି । ୩୦ । ହେ କୁରୁକୁଳତିଳକ ମହାରାଜ ! ପୂର୍ବରେ ଉଲ୍ଲିଖିତ ନରପାଳସମୂହ ସର୍ବଦା ଦାନ କରି ଧର୍ମୋପଚୟଶାଳିନୀ ବୁଦ୍ଧିକି ଦାନ ଓ ଯଜ୍ଞକ୍ରିୟାରେ ନିଯୁକ୍ତ ରଖିଥିଲେ । ହେ ନୃପଶାର୍ଦ୍ଦୂଳ ! ସମ୍ପ୍ରତି ସନ୍ଧ୍ୟାସମୟ ସମୁପସ୍ଥିତ, ଯେଉଁ ବିଷୟରେ ତୁମ୍ଭର ସନ୍ଦେହ ହେବ, ତାହା କାଲି ପ୍ରଭାତରେ କହିବ ।୩୨।

---

# ଅଧ୍ୟାୟ—୧୩୮

ଯୁଧିଷ୍ଠିର କହିଲେ—ହେ ସତ୍ୟବ୍ରତ ସତ୍ୟପରାକ୍ରମ ପିତାମହ ! ସୁମହତ୍ ଦାନ ଧର୍ମଦ୍ୱାରା ଯେଉଁ ସବୁ ନୃପତି ଦିବ୍ୟଧାମକୁ ଗମନ କରି-ଅଛନ୍ତି, ଆମ୍ଭେ ତାହା ସବୁ ଆପଣଙ୍କ ନିକଟରୁ ଶ୍ରବଣ କଲୁଁ । ହେ ଧାର୍ମିକପ୍ରବର ! ଏତେବେଳେ କେତେକ ପ୍ରକାର ଦାନ କରିବାର ଉଚିତ ଏବଂ ତହିଁରୁ କି ଫଳ ଲାଭ ହୁଏ ? ୨ । ଏହିସବୁ ଧର୍ମ ଶ୍ରବଣ କରିବାକୁ ଅଭିଳାଷ କରୁଅଛୁଁ । କେଉଁମାନଙ୍କୁ କେଉଁ ପ୍ରକାରରେ ଧର୍ମାନୁସାରେ ଦାନ କରିବାର ଉଚିତ, କେଉଁପରି ଇଷ୍ଟ ହୁଏ ? କେଉଁ କେଉଁ କାରଣରୁ କେତେ ପ୍ରକାର ଦାନ କରିବାର ଉଚିତ, ତାହା ଯଥାର୍ଥରୂପେ ଶ୍ରବଣ କରିବାକୁ ଇଚ୍ଛା କରୁଁ । ୩ ।

ଭୀଷ୍ମ କହିଲେ, ହେ ଅନଘ କୁନ୍ତୀନନ୍ଦନ ଭାରତ ! ସର୍ବବର୍ଣ୍ଣରେ ଯେଉଁପରି ଦାନ କରିବାକୁ ହୁଏ, ତାହା ଆମ୍ଭ ନିକଟରୁ ଯଥାର୍ଥରୂପେ ଶ୍ରବଣ କର । ୪ । ହେ ଭାରତ ! ଧର୍ମ, ଅର୍ଥ, ଭୟ, କାମ ଓ କାରୁଣ୍ୟ ଏହି ପଞ୍ଚବିଧ କାରଣ ହେତୁରୁ ଦାନ ପାଞ୍ଚ ପ୍ରକାର ବୋଲି ଅଭିହିତ ହୁଏ, ଜାଣିବ । ଯେଉଁ କାରଣରୁ ଯାହା ହୁଏ ତାହା ଶ୍ରବଣ କର ।

ଈର୍ଷାପରିଶୂନ୍ୟ ହୋଇ ବ୍ରାହ୍ମଣଗଣଙ୍କୁ ଦାନକରିବାର ଉଚିତ ଅଟେ । ଦାନ କଲେ ମନୁଷ୍ୟ ଇହଲୋକରେ କୀର୍ତ୍ତି ଏବଂ ପରଲୋକରେ ପରମ ସୁଖ ଲାଭ କରନ୍ତି । ୬ ।ଏ ଆମ୍ଭଙ୍କୁ ଦାନ କରିଅଛନ୍ତି, ବା କରିବେ ଅଥବା କରୁଅଛନ୍ତି; ଅର୍ଥିଗଣଙ୍କର ଏହି ସମୁଦାୟ କଥା ଶ୍ରବଣ କରି ସେହିମାନଙ୍କୁ ସମୁଦାୟ ବସ୍ତୁ ଦାନ କରିବାର ବିଧେୟ । ୭ । "ଆମ୍ଭେ ଏହାଙ୍କର ନୋହୁ ଏବଂ ଏହି ବ୍ୟକ୍ତି ଆମ୍ଭର ନୁହନ୍ତି, କିନ୍ତୁ ଏ ବ୍ୟକ୍ତି ବିମାନିତ ହେଲେ ପାପ କାର୍ଯ୍ୟ କରିବେ" ଏହି ବିବେଚନା କରି ପଣ୍ଡିତ ବ୍ୟକ୍ତି ଦୃଢ଼ତର ଭୟ-ବଶରୁ ମୂଢ଼ ନରଙ୍କୁ ଦାନ କରିବେ । ୮ । "ଏ ଆମ୍ଭର ପ୍ରିୟ ଏବଂ ଆମ୍ଭେ ଏହାର ପ୍ରିୟ" ବୁଦ୍ଧିମାନ୍ ମନୁଷ୍ୟ ଏହିପରି ବିବେଚନା କରି ଅଳସଶୂନ୍ୟ ହୋଇ ରହସ୍ୟ ବ୍ୟକ୍ତିଙ୍କୁ ଦାନ କରିବେ । ୯ । "ଏ ବ୍ୟକ୍ତି ଅତି ଦୀନ, ଏହି ନିମିତ୍ତ ପ୍ରାର୍ଥନା କରୁଅଛି ଏବଂ ଅଳ୍ପ ଧନଦ୍ୱାରା ସନ୍ତୁଷ୍ଟ ହେବ" ଏହି କଥା ବିବେଚନା କରି କରୁଣାବଶରୁ ଦରିଦ୍ର ବ୍ୟକ୍ତିଙ୍କୁ ଦାନ କରିବାର

ଉଚିତ ଅଟେ । ୧୦ । ପ୍ରଜାପତି କହିଅଛନ୍ତି ଯେ, ଏହି ପଞ୍ଚବିଧ ଦାନ, ପୁଣ୍ୟ ଓ କୀର୍ତ୍ତି ବୃଦ୍ଧି କରେ, ଅତଏବ ଶକ୍ତି ଅନୁସାରେ ପ୍ରଦାନ କରିବାର ବିଧେୟ । ୧୧ ।

---

## ଅଧ୍ୟାୟ—୧୩୯

ଯୁଧିଷ୍ଠିର କହିଲେ—ହେ ସର୍ବଶାସ୍ତ୍ରବିଶାରଦ ମହାପ୍ରାଜ୍ଞ ପିତାମହ ! ଆପଣ ଆମ୍ଭମାନଙ୍କର ଏହି ପ୍ରବର କୁଳରେ ବହୁଶାସ୍ତ୍ରଜ୍ଞାନସମ୍ପନ୍ନ ଅଟନ୍ତି ।୧। ହେ ଅରିନ୍ଦମ ! ଆପଣଙ୍କ ନିକଟରୁ ଉତ୍ତରକାଳରେ ସୁଖକର ଲୋକସମୂହର ଆଶ୍ଚର୍ଯ୍ୟ ସ୍ୱରୂପ ଧର୍ମାର୍ଥସଂଯୁକ୍ତ ବାକ୍ୟସମୂହ ଶ୍ରବଣ କରିବାକୁ ଅଭିଳାଷ କରୁ ।୨। ଏତେବେଳେ ଆମ୍ଭମାନଙ୍କର ଜ୍ଞାତିବାନ୍ଧବସମୂହ ବିନାଶପ୍ରାପ୍ତ ହୋଇଅଛନ୍ତି, ଅତଏବ ହେ ପୁରୁଷସିଂହ ! ଆପଣଙ୍କ ବ୍ୟତିରେକେ ଆମ୍ଭମାନଙ୍କର ଅନ୍ୟ କେହି ଶାସ୍ତ୍ର ଉପଦେଷ୍ଟା ନାହାନ୍ତି ।୩। ହେ ନିଷ୍ପାପ ! ଆମ୍ଭେ ଭ୍ରାତୃବର୍ଗଙ୍କ ସହିତ ଆପଣଙ୍କର ଯଦି ଅନୁଗ୍ରହଭାଜନ ଅଟୁ, ତେବେ ଆମ୍ଭେ ଆପଣଙ୍କୁ ଯାହା ପ୍ରଶ୍ନ କରୁଅଛୁଁ, ଆପଣ ତାହାର ଉତ୍ତର ପ୍ରଦାନ କରିବା ହେଉନ୍ତୁ । ସମସ୍ତ ନରପାଳଗଣଙ୍କର ସମ୍ମାନଭାଜନ ଏହି ଶ୍ରୀମାନ୍ ନାରାୟଣ ଆପଣଙ୍କୁ ବହୁ ମାନ ଓ ବିନୟଦ୍ୱାରା ସେବା କରୁଅଛନ୍ତି । ୫ । ଏହାଙ୍କର ଏବଂ ସମସ୍ତ ରାଜନ୍ୟବୃନ୍ଦଙ୍କ ସମକ୍ଷରେ ଆମ୍ଭର ଓ ଭ୍ରାତୃଗଣଙ୍କ ପ୍ରିୟ ନିମିତ୍ତ ଆପଣ ଏହି ବିଷୟ ସ୍ନେହରେ କୀର୍ତ୍ତନ କରିବା ହେଉନ୍ତୁ ।୬। ବୈଶମ୍ପାୟନ କହିଲେ, ଗଙ୍ଗାଙ୍କ ପୁତ୍ର ଭୀଷ୍ମ ଯୁଧିଷ୍ଠିରଙ୍କ ସେହି କଥା ଶ୍ରବଣ ପୂର୍ବକ ସ୍ନେହବଶତଃ ସସମ୍ଭ୍ରମ ହୋଇ ଏହିପ୍ରକାର ବଚନ କହିଲେ । ୭ ।

ଭୀଷ୍ମ କହିଲେ, ହେ ରାଜନ୍ ! ପୂର୍ବକାଳରେ ଆମ୍ଭେ ବିଷ୍ଣୁଙ୍କର ଯେଉଁ ପ୍ରଭାବ ଶ୍ରବଣ କରିଅଛୁଁ, ସେହି ଅତି ମନୋହର କଥା ତୁମ୍ଭ ନିକଟରେ କହିବୁଁ (୮) ଏବଂ ବୃଷଧ୍ୱଜଙ୍କର ଯେଉଁପରି ପ୍ରଭାବ ଶ୍ରବଣ କରିଅଛୁଁ ତାହା ଏବଂ ରୁଦ୍ର ଓ ରୁଦ୍ରାଣୀଙ୍କର ଯେଉଁପରି ସଂଶୟ ହୋଇଥିଲା, ତାହା ମଧ୍ୟ ଆମ୍ଭ ନିକଟରୁ ଶ୍ରବଣ କର । ୯ । ପୂର୍ବକାଳରେ ଧର୍ମାତ୍ମା କୃଷ୍ଣ ଦ୍ୱାଦଶ ବାର୍ଷିକ ବ୍ରତ ଆଚରଣ କରିଥିଲେ । ସେ ଦୀକ୍ଷିତ ହେବାରୁ

ପର୍ବତ, ନାରଦମୁନି, କୃଷ୍ଣଦ୍ୱୈପାୟନ, ଜାପକଶ୍ରେଷ୍ଠ ଧୌମ୍ୟ, ଦେବଳ, କାଶ୍ୟପ, ହସ୍ତିକାଶ୍ୟପ, ଏବଂ ଅନ୍ୟାନ୍ୟ ପ୍ରସାଦମସମନ୍ୱିତ ସଶିଷ୍ୟ ସାଧୁମହର୍ଷିଗଣ ଏବଂ ଦେବକଳ୍ପ ସିଦ୍ଧ ତପୋଧନଗଣ ତାହାଙ୍କୁ ଦେଖିବା ନିମିତ୍ତ ଆଗମନ କଲେ । ଦେବକୀନନ୍ଦନ ସେମାନଙ୍କଠାରେ ପ୍ରୀତ ହୋଇ ଦେବସଦୃଶ ଅର୍ଚ୍ଚନୀୟ ଅତିଥିଗଣଙ୍କ ଯଥୋଚିତ ସତ୍କାର କଲେ । ମହର୍ଷିଗଣ ପ୍ରସନ୍ନ ହୋଇ କେହି କେହି ହରିଦ୍ବର୍ଣ୍ଣ, କେହି କେହି ସୁବର୍ଣ୍ଣ ବର୍ଣ୍ଣ, କେହି କେହି ମୟୂର ପିଚ୍ଛଯୁକ୍ତ ଆସନରେ କେହି କେହି ଅବା ଅନ୍ୟାନ୍ୟ ପ୍ରକାର ନୂତନ ଆସନରେ କୃଷ୍ଣଙ୍କ ନିକଟରେ ଉପବେଶନ କଲେ । ୧୪ ।

ତଦନନ୍ତର ସେହି ସମସ୍ତ ତପୋଧନଗଣ ରାଜର୍ଷି ଓ ସୁରଗଣଙ୍କ ଧର୍ମସମନ୍ୱିତ ମଧୁର କଥାସମୂହ ଆଳାପ କଲେ । ତଦନନ୍ତର ଅଦ୍ଭୁତକର୍ମା କୃଷ୍ଣଙ୍କ ମୁଖମଣ୍ଡଳରୁ ବ୍ରତଚର୍ଯ୍ୟାରୂପ ଇନ୍ଧନୋତ୍‌ଥିତ ନାରାୟଣ ତେଜଃସ୍ୱରୂପ ବହ୍ନି କୃଷ୍ଣଙ୍କ ମୁଖରୁ ନିଃସୃତ ହୋଇ (୧୬) ବୃକ୍ଷ, ଲତା, କ୍ଷୁଦ୍ରତରୁ, ପକ୍ଷୀ, ମୃଗ, ଶ୍ୱାପଦ, ସରୀସୃପ ସହିତ ସେହି ଶୈଳକୁ ଦଗ୍‌ଧ କଲା । ୧୭ । ବିବିଧାକାର ମୃଗଗଣ ହାହାକାର କରି ଅଚେତନ ହେଲେ, ସେହି ଶୈଳର ଶିଖର ପ୍ରଦେଶ ପ୍ରାନ୍ଦର୍ଦନ ଓ ମଥିତ ହେଲା । ସେହି ମହୋଜ୍ଜ୍ୱଳ ବହ୍ନି ସମସ୍ତଙ୍କୁ ନିଃଶେଷରୂପେ ଦଗ୍‌ଧ କରି ବିଷ୍ଣୁଙ୍କ ନିକଟରେ ଉପସ୍ଥିତ ହୋଇ ଶିଷ୍ୟସଦୃଶ ତାହାଙ୍କ ଚରଣଦ୍ୱୟ ସ୍ପର୍ଶ କରିଥିଲା । ୧୯ ।

ତଦନନ୍ତର ଅରିକର୍ଷଣ ବିଷ୍ଣୁ ସେହି ଶୈଳକୁ ନିଃଶେଷରୂପେ ଦଗ୍‌ଧ ହେବାର ଦର୍ଶନ କରି ସୌମ୍ୟ ଦୃଷ୍ଟିପାତଦ୍ୱାରା ପୁନଶ୍ଚ ତାହାକୁ ପ୍ରକୃତିସ୍ଥ କଲେ । ୨୦ । ସେହି ପର୍ବତ ପୁନଶ୍ଚ ପୂର୍ବବତ୍ ପୁଷ୍ପିତ ଲତା ଓ ବୃକ୍ଷ-ସମୂହରେ ସମନ୍ୱିତ, ବିହଙ୍ଗଗଣର ସଂଘୋଷ ସଂଯୁକ୍ତ ଏବଂ ଶ୍ୱାପଦ ଓ ସରୀସୃପ ସମୂହରେ ବିରାଜିତ ହେଲା । ୨୧ । ସେତେବେଳେ ମୁନିଗଣ ସେହି ଅଦ୍ଭୁତ ଓ, ଅଚିନ୍ତ୍ୟ ବ୍ୟାପାର ଦର୍ଶନ କରି ବିସ୍ମିତ, ପୁଲକିତ ଏବଂ ଲୋତକଦ୍ୱାରା ଆବିଲଲୋଚନ ହେଲେ । ୨୨ । ତଦନନ୍ତର ବକ୍ତୃବର ନାରାୟଣ ସେହି ଋଷିଗଣଙ୍କୁ ବିସ୍ମୟାନ୍ୱିତ ଦେଖି ବିନୟନମ୍ର ହୋଇ ମଧୁର ସ୍ନିଗ୍‌ଧ ବଚନରେ ପଚାରିଲେ (୨୩), ହେ ଋଷିବୃନ୍ଦ ! ଆପଣମାନେ ସମସ୍ତେ ସର୍ବଦା ତ୍ୟକ୍ତ ସଙ୍ଗ, ନିର୍ମମ, ଆଗମ ସମନ୍ୱିତ ; ତେବେ ଆପଣ-ମାନଙ୍କର କାହିଁକି ବିସ୍ମୟ ସମୁପସ୍ଥିତ ହେଲା ? ୨୪ । ହେ ତପୋଧନଗଣ !

ଆପଣମାନେ ସମସ୍ତେ ଅବଧୂତ ଋଷି, ଅତଏବ ଆମ୍ଭର ଏହି ସଂଶୟାର୍ଥ ବିଷୟରେ ନିଷ୍ପତ୍ତାର୍ଥ ବ୍ୟକ୍ତ କରିବାର ଆପଣମାନଙ୍କର ଉଚିତ ଅଟେ ।୨୫।

ଋଷିଗଣ କହିଲେ, ହେ ମଧୁସୂଦନ ! ଆପଣ ଲୋକସମୂହର ସୃଷ୍ଟି କରନ୍ତି, ଆପଣ ପୁନଶ୍ଚ ସମସ୍ତଙ୍କୁ ସଂହାର କରନ୍ତି । ଆପଣ ଶୀତ, ଆପଣ ଉଷ୍ଣ, ଆପଣ କେବଳ ବୃଷ୍ଟି କରନ୍ତି । ୨୬ । ପୃଥିବୀରେ ଯେଉଁ ସମସ୍ତ ସ୍ଥାବର ଓ ଜଙ୍ଗମ ଜୀବ ଅଛନ୍ତି, ସେହିମାନଙ୍କର ଆପଣ କେବଳ ପିତା ଏବଂ ମାତା ଅଟନ୍ତି । ଆପଣ ସେମାନଙ୍କର ପ୍ରଭୁ ଓ ଜନ୍ମକର୍ତ୍ତା ଅଟନ୍ତି । ୨୭। ଅତଏବ ହେ କଲ୍ୟାଣକର ମଧୁସୂଦନ ! ଆପଣଙ୍କ ମୁଖରୁ ବହ୍ନି ବିନିର୍ଗମନ ବଶରୁ ଆମ୍ଭମାନଙ୍କର ଯେଉଁ ବିସ୍ମୟକର ସଂଶୟ ହୋଇଅଛି, ଆପଣ ସେହି ସଂଶୟର ବିଷୟ କହିବା ହୁଅନ୍ତୁ । ୨୮ । ହେ ହରେ ! ହେ ଅରିକର୍ଷଣ ! ତଦନନ୍ତର ଆମ୍ଭେମାନେ ତ୍ରାସହୀନ ହୋଇ ଯାହା ଦେଖିଲୁଁ ଏବଂ ଯାହା ଶ୍ରବଣ କଲୁଁ, ତତ୍ସମୁଦାୟ କୀର୍ତ୍ତନ କରିବୁଁ । ୨୯ ।

ବାସୁଦେବ କହିଲେ, ଆମ୍ଭ ବଦନରୁ ବୈଷ୍ଣବ ତେଜ ବିନିଃସୃତ ହୋଇଥିଲା । ଏହା ପ୍ରଳୟକାଳୀନ ଅନଳ ସଦୃଶ ଆଭା ସମନ୍ୱିତ ; ଏହାଦ୍ୱାରା ଏହି ପର୍ବତ ମଥିତ ହେଲା (୩୦) ଏବଂ କ୍ରୋଧବିଜୟୀ, ଜିତେନ୍ଦ୍ରିୟ, ଦେବକଳ୍ପ, ତପୋଧନ ଜ୍ଞାନ ସମ୍ପନ୍ନ ଆପଣମାନେ ପୀଡ଼ିତ ଓ ବ୍ୟଥିତ ହୋଇଥିଲେ । ୩୧ । ତପସ୍ୱୀ ବ୍ରତସେବାବଶତଃ ଆମ୍ଭେ ବ୍ରତାଚରଣ-ପରାୟଣ ହେବାରୁ ଆମ୍ଭ ବଦନରୁ ବହ୍ନି ଉଦ୍ଭୂତ ହୋଇଥିଲା । ଅତଏବ ଆପଣମାନେ ବ୍ୟଥିତ ହୁଅନ୍ତୁ ନାହିଁ । ୩୨ । ଆମ୍ଭେ ବ୍ରତାଚରଣ କରିବା ନିମିତ୍ତ ଏହି ପବିତ୍ର ପର୍ବତକୁ ଆଗମନ କରିଅଛୁଁ । ବୀର୍ଯ୍ୟବଳରେ ଆମ୍ଭ ସଦୃଶ ପୁତ୍ରଲାଭ କରିବା ନିମିତ୍ତ ତପସ୍ୟା କରିବାକୁ ଆସିଅଛୁଁ । ୩୩ । ତଦନନ୍ତର ଆମ୍ଭ ଦେହରେ ଯେଉଁ ଆତ୍ମା ଅଛନ୍ତି, ସେ ଅଗ୍ନିରୂପରେ ବିନିଃସୃତ ହୋଇ ସର୍ବଲୋକ ପିତାମହ ବରଦଦେବଙ୍କୁ ଦର୍ଶନ କରିବା ନିମିତ୍ତ ଯାଇଥିଲେ । ୩୪ ।

ହେ ମୁନିସତ୍ତମଗଣ ! ବୃଷଧ୍ୱଜ ଆମ୍ଭର ଆତ୍ମା, ଅର୍ଦ୍ଧତେଜଦ୍ୱାରା ତୁମ୍ଭର ପୁତ୍ର ହେବେ, ଏହା କହି ପୁତ୍ର ନିମିତ୍ତ ଆତ୍ମାକୁ ଆମ୍ଭ ନିକଟକୁ ପ୍ରେରଣ କଲେ । ୩୫ । ଏହି ସେହି ହୁତାଶନ, ଆମ୍ଭର ପରିଚର୍ଯ୍ୟା ନିମିତ୍ତ ଶିଷ୍ୟପରି ଆମ୍ଭ ପାଦ ମୂଳରେ ସମାଗତ ହୋଇ ଶାନ୍ତ ଓ ପ୍ରକୃତ ପ୍ରାପ୍ତ ହେଲେ ।୩୬। ହେ ତପୋଧନଗଣ ! ବୁଦ୍ଧିମାନ୍ ପଦ୍ମନାଭଙ୍କର ଏହି ରହସ୍ୟ ଆପଣମାନଙ୍କ

ନିକଟରେ ସମ୍ୟକ୍ ରୂପେ କୀର୍ତ୍ତନ କଲୁଁ; ଅତଏବ ଆପଣମାନେ ଭୟ କରନ୍ତୁ ନାହିଁ । ୩୭ । ଆପଣମାନେ ଦୀର୍ଘଦର୍ଶୀ, ଆପଣମାନଙ୍କ ଜ୍ଞାନ-ବିଜ୍ଞାନଶୋଭିତ ତପସ୍ୱୀବ୍ରତ ସଂପ୍ରାପ୍ତ ସର୍ବଦା ଅବ୍ୟଗ୍ରଚିତ୍ତ ବିଦ୍ୟମାନ ରହିଅଛି । ୩୮ । ଅତଏବ ଆପଣମାନେ ଦ୍ୟୁଲୋକ ଅବା ଭୂଲୋକରେ ଯାହା ପରମ ଆଶ୍ଚର୍ଯ୍ୟ ବିଷୟ ଶ୍ରବଣ ବା ଦର୍ଶନ କରିଅଛନ୍ତି, ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୩୯ ।

ଆପଣମାନେ ତପୋବନନିବାସୀ ମହର୍ଷି, ଆପଣମାନଙ୍କ ଅମୃତ ସଦୃଶ ବାକ୍ୟମଧୁ ଆସ୍ୱାଦନ କରିବାକୁ ଆମ୍ଭର ସ୍ପୃହା ହେଉଅଛି । ୪୦ । ହେ ଅମରଦର୍ଶନ ତପୋଧନଗଣ ! ଆମ୍ଭେ ଯଦି ଦ୍ୟୁଲୋକରେ ବା ଭୂଲୋକରେ ଆପଣମାନଙ୍କର ଅଦୃଷ୍ଟ କୌଣସି ଅଦ୍ଭୁତଦର୍ଶନ ଦ୍ରବ୍ୟ ବିଷୟ ଦର୍ଶନ କରୁ, ସେ ଆମ୍ଭର ପରମାପ୍ରକୃତି, ତାହା ସର୍ବଦା ଅପ୍ରତିହତ, ଆମ୍ଭର ଆତ୍ମଗତ ଐଶ୍ୱର୍ଯ୍ୟ ଆଶ୍ଚର୍ଯ୍ୟରୂପେ ପ୍ରତିଭାତ ହୁଏ ନାହିଁ । ୪୨ । ଶ୍ରଦ୍ଧାଦ୍ୱାରା କଥିତ ବିଷୟ ସାଧୁଗଣଙ୍କର ଶ୍ରବଣଗୋଚର ହେଲେ ତାହା ମେଦିନୀମଣ୍ଡଳରେ ପାଷାଣ ଲିପି ସଦୃଶ ଚିରସ୍ଥାୟୀ ହୁଏ । ୪୩ । ଅତଏବ ଆମ୍ଭେ ଆପଣମାନଙ୍କର ସମାଗମ ସମୟରେ ସଜ୍ଜନ ମୁଖରୁ ନିଃସୃତ ମାନବଗଣଙ୍କର ବୁଦ୍ଧି ଉଦ୍ଦୀପନକର ବିଷୟସମୂହ କୀର୍ତ୍ତନ କରିବୁ ।୪୪।

ତଦନନ୍ତର ମୁନିଗଣ କୃଷ୍ଣଙ୍କ ନିକଟରେ ବିସ୍ମୟାବିଷ୍ଟ ହୋଇ କମଳଦଳ ତୁଳିତଲୋଚନ ସମୂହ ଦ୍ୱାରା ଜନାର୍ଦ୍ଦନ ଅବଲୋକନ କଲେ । ୪୫ । କେହି କେହି ମଧୁସୂଦନଙ୍କୁ ପ୍ରଶଂସା କଲେ, କେହି କେହି ପୂଜା କଲେ ଏବଂ ଅନ୍ୟମାନେ ଋକ୍ ମନ୍ତ୍ରବିଭୂଷିତ ବାକ୍ୟଦ୍ୱାରା ସ୍ତବ କରିବାକୁ ଆରମ୍ଭ କଲେ ।୪୬। ତଦନନ୍ତର ସେତେବେଳେ ମୁନିଗଣ ବାକ୍ୟ କୋବିଦ ଦେବଦର୍ଶନ ନାରଦଙ୍କୁ ବାକ୍ୟ ପ୍ରୟୋଗ ବିଷୟରେ ନିଯୋଜିତ କଲେ । ୪୭ । ମୁନିଗଣ କହିଲେ, ହେ ମୁନେ ! ତୀର୍ଥଯାତ୍ରାପରାୟଣ ମୁନିଗଣ ହିମାଳୟରେ ଯେଉଁ ଅଚିନ୍ତ୍ୟମୟ ଆଶ୍ଚର୍ଯ୍ୟ ଅନୁଭବ କରିଥିଲେ, ଋଷିଗଣଙ୍କ ହିତ ନିମିତ୍ତ ଆପଣ ହୃଷୀକେଶଙ୍କ ନିକଟରେ ତାହା ସବୁ ଯେଉଁପରି ଦର୍ଶନ କରିଥିଲେ, ସେହି ସମସ୍ତ ବିଷୟ ଯଥାର୍ଥରୂପେ କୀର୍ତ୍ତନ କରିବା ହେଉନ୍ତୁ । ୪୯ । ଦେବର୍ଷି ଭଗବାନ୍ ନାରଦ ମୁନି, ମୁନିଗଣଙ୍କଦ୍ୱାରା ଏହିପରି କଥିତ ହୋଇ ପୂର୍ବ ବୃତ୍ତାନ୍ତ କହିଲେ । ୫୦ ।

---

# ଅଧ୍ୟାୟ—୧୪୦

ଋଷି କହିଲେ—ତଦନନ୍ତର ନାରାୟଣଙ୍କ ସୁହୃତ୍ ଭଗବାନ ନାରଦ ଋଷି ଉମାଙ୍କ ସହିତ ଶଙ୍କରଙ୍କର ଯେଉଁ କଥୋପକଥନ ହୋଇଥିଲା, ତାହା କହିଲେ । ୧ । ନାରଦ କହିଲେ, ସିଦ୍ଧଚାରଣସେବିତ, ଔଷଧିସମନ୍ୱିତ, ନାନାପୁଷ୍ପ ସମାକୁଳ, ଅପସରାଗଣସଂକୀର୍ଣ୍ଣ, ଭୂତସଂଘନିଷେବିତ ରମଣୀୟ ପବିତ୍ର ହିମାଳୟ ପର୍ବତରେ ଧର୍ମାତ୍ମା ସୁରଗଣେଶ୍ୱର ବୃଷଧ୍ୱଜ ତପଶ୍ଚରଣ କରୁଥିଲେ । ୩ । ମହାଦେବ ସେହି ସ୍ଥାନରେ ଶତ ଶତ ଭୂତସମୂହରେ ପରିବୃତ ହୋଇ ହର୍ଷଯୁକ୍ତ ହୋଇଥିଲେ । ଭୂତଗଣ ନାନାବିଧ ରୂପ ଧାରଣ କରିଥିଲେ ।

ସେହି ସମୟରେ ତାହାଙ୍କ ନିକଟରେ ଯେଉଁସବୁ ଭୂତଗଣ ଥିଲେ, ସେହିମାନଙ୍କ ମଧ୍ୟରେ କେହି କେହି ବିକଟ ରୂପ, କେହି କେହି ଦିବ୍ୟରୂପ, କେହି କେହି ଅଦ୍ଭୁତଦର୍ଶନ, କେହି କେହି ସିଂହ ଓ ବ୍ୟାଘ୍ର ସଦୃଶ, କେହି କେହି ସର୍ବଜାତିସମନ୍ୱିତ; କେହି ଶୃଗାଳବଦନ, କେହି ଦ୍ୱିପିତୁଲ୍ୟ ବଦନ, କେହି ଭଲ୍ଲୁକମୁଖ, କେହି ପେଚକମୁଖ, କେହି ଭୟଙ୍କର, କେହି କେହି ବୃକ ଓ ଶ୍ୟେନପକ୍ଷୀ ସଦୃଶ ମୁଖଯୁକ୍ତ । କେହି ନାନାବର୍ଣ୍ଣ ମୃଗମୁଖ, କେହି ସର୍ବଜାତି ସମନ୍ୱିତ (୭), କିନ୍ନର, ଯକ୍ଷ, ରାକ୍ଷସ, ଗନ୍ଧର୍ବ ଓ ଭୂତଗଣ କର୍ତ୍ତୃକ ଏବଂ ଦିବ୍ୟ ପୁଷ୍ପଦ୍ୱାରା ସମାକୀର୍ଣ୍ଣ, ଦିବ୍ୟଜ୍ୱାଳା-ସମାକୁଳ, ଦିବ୍ୟଚନ୍ଦନସଂଯୁକ୍ତ, ଦିବ୍ୟଧୂପଦ୍ୱାରା ଧୂପିତ ସେହି ବୃଷଧ୍ୱଜଙ୍କ ସଭା ଦିବ୍ୟବାଦ୍ୟନିନାଦଯୁକ୍ତ, ମୃଦଙ୍ଗ ଓ ପଣବ ଶବ୍ଦରେ ସମାଯୁକ୍ତ ହୋଇଥିଲା । ଶଙ୍ଖଭେରୀ ନିନାଦିତ, ନୃତ୍ୟକାରୀ ଭୂତଗଣ ଓ ମୟୂରଗଣରେ ସଂଯୁକ୍ତ ହୋଇଥିଲା । ୯ ।

ସେଠାରେ ଅପ୍‌ସରାଗଣ ନୃତ୍ୟ କରୁଥିଲେ, ସେଠାରେ ଦେବର୍ଷି-ଗଣ ସର୍ବଦା ଅବସ୍ଥାନ କରିଥାଆନ୍ତି; ସେହି ସଭା ଅତିଶୟ ଦର୍ଶନୀୟ, ଅଥଚ ଅନିର୍ଦ୍ଦେଶ୍ୟ, ଦିବ୍ୟ ଏବଂ ଅଦ୍ଭୁତ ଦର୍ଶନ, ସେହି ଶୈଳ-ଗିରି ଶଙ୍କରଙ୍କର ତପସ୍ୟାଦ୍ୱାରା ସୁଶୋଭିତ ହୋଇଥିଲା । ସ୍ୱାଧ୍ୟାୟପାଠପରାୟଣ ବିପ୍ରଗଣ କର୍ତ୍ତୃକ ବେଦଧ୍ୱନି ଦ୍ୱାରା ନିନାଦିତ ହୋଇଥିଲା ।୧୧। ହେ ମାଧବ ! ସେହି ଗିରି ଷଟ୍‌ପଦଗଣ କର୍ତ୍ତୃକ ଉପଗୀତ ହୋଇ ଅପ୍ରମିତ ହୋଇଥିଲା । ହେ ଜନାର୍ଦ୍ଦନ ! ମହୋତ୍ସବ ସଦୃଶ ଭୀମରୂପଧର ଶଙ୍କରଙ୍କୁ ଦର୍ଶନ କରି

ମୁନିଗଣଙ୍କ ମନରେ ପରମ ପ୍ରୀତି ଜନ୍ମିଥିଲା । ମହାଭାଗ ମୁନିଗଣ, ଊର୍ଦ୍ଧ୍ୱରେତା ସିଦ୍ଧଗଣ, ମରୁଦ୍‌ଗଣ, ବସୁଗଣ, ସାଧ୍ୟଗଣ, ବାସବଙ୍କ ସହିତ ବିଶ୍ୱଦେବଗଣ, ଯକ୍ଷଗଣ, ନାଗଗଣ, ପିଶାଚଗଣ, ଲୋକପାଳବୃନ୍ଦ, ହୁତାଶନସମୂହ, ସମୀରଣଗଣ ଏବଂ ମହାଭୂତସମୂହ ସେଠାରେ ସମାଗତ ହୋଇଥିଲେ । ଋତୁଗଣ ଅତି ଅଦ୍ଭୁତ ପୁଷ୍ପସମୂହ ବିକୀର୍ଣ୍ଣ କରୁଥିଲେ ।୧୫।

ତୃଣଜ୍ୟୋତିରାଶି ପ୍ରଜ୍ୱଳିତ ହୋଇ ସେହି ବନକୁ ଉଜ୍ଜ୍ୱଳ କରୁଥିଲା । ବିହଙ୍ଗଗଣ ହର୍ଷାବିଷ୍ଟ ହୋଇ ନୃତ୍ୟ ଓ ନିନାଦ କରୁଥିଲେ । ୧୬ । ରମଣୀୟ ଗିରିପୃଷ୍ଠରେ ଜନପ୍ରିୟ ବିହଗଗଣ ବିଚରଣ କରୁଥିଲେ । ସେହି ଦିବ୍ୟଧାତୁବିଭୂଷିତ ଗିରିତଟରେ ମହାମନା ମହାଦେବ ପର୍ଯ୍ୟଙ୍କରେ ଉପବିଷ୍ଟ ହେଲାପରି ବିରାଜିତ ହୋଇଥିଲେ । ତେତେବେଳେ ସେ ବ୍ୟାଘ୍ରଚର୍ମାମ୍ବରଧର, ସିଂହଚର୍ମୋତ୍ତରଚ୍ଛଦ, ବ୍ୟାଳଯଜ୍ଞୋପବୀତୀ, ଲୋହିତାଙ୍ଗଦ ଭୂଷିତ ହୋଇଥିଲେ । ହରିତ୍‌ଶ୍ମଶ୍ରୁ, ଜଟୀ, ଭୀମ, ସୁରଶତ୍ରୁଗଣଙ୍କର ଭୟକର୍ତ୍ତା (୧୯) ଏବଂ ସର୍ବଭୂତର ଅଭୟଦାତା, ଭକ୍ତଗଣଙ୍କର ଭୟହାତା ବୃଷଧ୍ୱଜ ବିରାଜିତ ହୋଇଥିଲେ । ମହର୍ଷିଗଣ ତାହାଙ୍କୁ ଦର୍ଶନ କରି ଅବନତ ମସ୍ତକରେ ଭୂତଳରେ ପତିତ ହୋଇଥିଲେ । ୨୦ । ସେମାନେ ପ୍ରଣତ ହେବା ମାତ୍ରେ କ୍ଷମାଯୁକ୍ତ ଓ ସର୍ବପାପରୁ ବିମୁକ୍ତ ହୋଇଥିଲେ ।

ତେତେବେଳେ ସେହି ଭୂତପତିଙ୍କ ଆଶ୍ରମ ଭୀମରୂପ ଧାରଣ କରି ଶୋଭିତ ହୋଇଥିଲା । ୨୧ । ତେତେବେଳେ ତାହା ଅପ୍ରଧୃଷ୍ୟତର ଏବଂ ମହୋରଗକୁଳଦ୍ୱାରା ସମାକୁଳ ହୋଇଥିଲା । ହେ ମଧୁସୂଦନ ! କ୍ଷଣକ ସମୟ ମଧ୍ୟରେ ସେହି ସ୍ଥାନ ଅଦ୍ଭୁତ ହୋଇଥିଲା ।୨୨। ବୃଷଧ୍ୱଜଙ୍କର ସେହି ସଭା ଭୟଙ୍କର ରୂପ ଧାରଣ କରି ଶୋଭା ପାଉଥିଲା । ହରତୁଲ୍ୟ ଅମ୍ବରଧାରିଣୀ, ସମାନବ୍ରତଚାରିଣୀ, ଶୈଳନନ୍ଦିନୀ ଭୂତସ୍ତ୍ରୀଗଣଙ୍କଦ୍ୱାରା ପରିବୃତା ହୋଇ ତାହାଙ୍କ ଅଭିମୁଖକୁ ଗମନ କଲେ । ସେ ତେତେବେଳେ ସର୍ବତୀର୍ଥଜଳୋଦ୍ଭବ ସୁବର୍ଣ୍ଣକଳସ ଧାରଣ କରି ପଶ୍ଚାତ୍ ଭାଗରେ ଗିରିନିର୍ଝରିଣୀଗଣ କର୍ତ୍ତୃକ ଅନୁଗତା ହୋଇ ଶୋଭା ପାଉଥିଲେ । ବହୁବିଧ ଗନ୍ଧ ଓ ପୁଷ୍ପବୃଷ୍ଟି କରି ହିମାଳୟର ପାର୍ଶ୍ୱସେବା ପୂର୍ବକ ହରଙ୍କ ପାର୍ଶ୍ୱକୁ ଆଗମନ କଲେ । ୨୫ ।

ତଦନନ୍ତର ସେହି ଚାରୁଦର୍ଶନା ଦେବୀ ହାସ୍ୟ କରି କୌତୁକ ନିମିତ୍ତ ପାଣିଯୁଗଳଦ୍ୱାରା ସହସା ହରଙ୍କ ସୁଚାରୁ ନେତ୍ରଯୁଗଳ ଆବରଣ

କଲେ । ୨୬। ମହାଦେବଙ୍କର ନେତ୍ରଦ୍ୱୟ ସବୃତ ହେବାରୁ ସହସା ଜଗନ୍ମଣ୍ଡଳ ତମୋମୟ ଏବଂ ଅଚେତନ ହେଲା ଏବଂ ନିର୍ହୋମ ଏବଂ ବଷଟ୍‌କାରବର୍ଜିତ ହୋଇ ରହିଲା । ୨୭ । ସମସ୍ତ ଜନଗଣ ବିମନା ଓ ଭୟତ୍ରାସସମନ୍ୱିତ ହେଲେ । ଭୂତପତିଙ୍କ ନୟନ ନିମୀଳିତ ହେବାରୁ ଆକାଶମଣ୍ଡଳ ନଷ୍ଟ-ସୂର୍ଯ୍ୟପରି ଜଣାଗଲା । ୨୮ । ଅନନ୍ତର ଶିବଙ୍କ ଲଲାଟରେ ସହସା ଏକ ଯୁଗାନ୍ତକାଳୀନ ପ୍ରଚଣ୍ଡ ସୂର୍ଯ୍ୟସଦୃଶ ନେତ୍ର ଉତ୍ପନ୍ନ ହେଲା ।

ତଦନନ୍ତର କ୍ଷଣକାଳ ମଧ୍ୟରେ ଲୋକବୃନ୍ଦ ତିମିରଶୂନ୍ୟ ହେଲା, ଶିବଙ୍କ ଲଲାଟରୁ ମହତୀ ପ୍ରଦୀପ୍ତ ଜ୍ୱାଳା ନିଃସୃତ ହେଲା (୨୯) ଏବଂ ତାହାଙ୍କର ଆଦିତ୍ୟ ସଦୃଶ ତୃତୀୟ ନେତ୍ର ଯୁଗାନ୍ତସଦୃଶ ପ୍ରଦୀପ୍ତରୂପେ ସମ୍ଭୂତ ହେଲା, ଯାହାଦ୍ୱାରା ସେହି ହିମାଳୟଗିରି ମଥିତ ହୋଇଥିଲା ଅର୍ଥାତ୍ ଦଗ୍ଧ ହୋଇଥିଲା । ୩୦ । ତଦନନ୍ତର ଆୟତଲୋଚନା ଶୈଳାଧିରାଜତନୟା ଦୀପ୍ତାନଳସଦୃଶଲୋଚନଙ୍କୁ ଅବଲୋକନ କରି ଅବନତ ମସ୍ତକରେ ପ୍ରଣାମ କଲେ । ୩୧ । ଶାଳ ଓ ସରଳ ଦ୍ରୁମସମନ୍ୱିତ ରମଣୀୟ ଚନ୍ଦନବନଯୁକ୍ତ ଏବଂ ଦିବ୍ୟୌଷଧି ପ୍ରଦୀପିତ ସେହି ବନ ଦହ୍ୟମାନ ହୁଅନ୍ତେ ମୃଗଗଣ ଭୀତ ଓ ଧାବିତ ହୋଇ କୌଣସି ସ୍ଥାନରେ ଆଶ୍ରୟ ନ ପାଇ ହରଙ୍କ ନିକଟରେ ପ୍ରବିଷ୍ଟ ହେଲେ । ସେହି କାରଣରୁ ସେସ୍ଥ ସଭା ସଙ୍କୁଳ ହୋଇ ଶୋଭା ପାଇଲା । ୩୩ ।

ଅନନ୍ତର ଗଗନସ୍ପର୍ଶୀ ଜ୍ୱାଳାମାଳାସମାକୁଳ ତଡ଼ିଲ୍ଲତାସଦୃଶ ଚଞ୍ଚଳ ଦ୍ୱିତୀୟଯୁଗାନ୍ତ ଅନଳସଦୃଶ ଦ୍ୱାଦଶାଦିତ୍ୟ ସଙ୍କାଶ ଉତ୍କଟ ଅନଳ-ଦ୍ୱାରା କ୍ଷଣକାଳ ମଧ୍ୟରେ ହିମାଳୟଗିରି ନିଃଶେଷରୂପେ ଦଗ୍ଧ ହେଲା । ଧାତୁ, ଶିଖର, ପରିସ୍ରବ, ବନ ଓ ଔଷଧିସମୂହ ଦଗ୍ଧ ହେଲା । ୩୫ ।

ତଦନନ୍ତର ଶୈଳତନୟା ସେହି ଗିରିକୁ ଦଗ୍ଧ ହେବାର ଦେଖି କୃତାଞ୍ଜଳି ହୋଇ ଭଗବାନ୍ ଶିବଙ୍କର ଶରଣାଗତା ହେଲେ । ୩୬ । ତେତେବେଳେ ଶିବ ଉମାଙ୍କୁ ସ୍ତ୍ରୀସ୍ୱଭାବସୁଲଭ ମାର୍ଦ୍ଦବଶାଳିନୀ ଏବଂ ପିତାଙ୍କ ଦୈନ୍ୟଦର୍ଶନରେ ଅଭିଳାଷଶୂନ୍ୟା ଦେଖି ପ୍ରୀତିପୂର୍ବକ ହିମାଳୟ ଉପରେ ଦୃଷ୍ଟି ନିକ୍ଷେପ କଲେ । ୩୭ । କ୍ଷଣକାଳ ମଧ୍ୟରେ ହିମାଳୟ ପ୍ରକୃତିସ୍ଥ ଓ ସୁଦୃଶ୍ୟ ହେଲା । ବିହଗଗଣ ପ୍ରମୁଦିତ, ବନତରୁବୃନ୍ଦ ସୁପୁଷ୍ପିତ ହେଲେ । ୩୮ ।

ଅନିନ୍ଦିତା ଉମା ତେତେବେଳେ ହିମାଳୟଙ୍କୁ ପ୍ରକୃତିସ୍ଥ ଦେଖି ପ୍ରୀତିଯୁକ୍ତା ହୋଇ ସର୍ବଲୋକପତି ମହେଶ୍ୱରଦେବଙ୍କୁ କହିଲେ । ୩୯ ।

ଉମା କହିଲେ, ହେ ସର୍ବଭୂତେଶ ମହାବ୍ରତ ଶୂଳପାଣେ ଭଗବନ୍ ! ଆମ୍ଭର ଅତିଶୟ ସଂଶୟ ହୋଇଅଛି, ଅତଏବ ଆପଣ ତଦ୍‌ବିଷୟ କୀର୍ତ୍ତନ କରିବା ହେଉନ୍ତୁ । ୪୦ । ହେ ଦେବ ! ଆପଣଙ୍କ ଲଲାଟରେ କି ନିମିତ୍ତ ତୃତୀୟ ନେତ୍ର ସମୁତ୍ଥିତ ହେଲା ? କେଉଁ କାରଣରେ ପକ୍ଷିଗଣ ଓ କାନନ ସହିତ ଗିରିବର ଦଗ୍‌ଧ ହେଲା ? ୪୧ । କେଉଁ କାରଣରେ ଅବା ଆପଣ ପୁନଶ୍ଚ ଆମ୍ଭ ପିତାଙ୍କୁ ପ୍ରକୃତିସ୍ଥ ଓ ପୂର୍ବବତ୍ ତରୁଗଣଦ୍ୱାରା ଆଚ୍ଛନ୍ନ କରିବା ହେଲେ ? ୪୨ ।

ମହେଶ୍ୱର କହିଲେ, ହେ ଅନିନ୍ଦିତେ ଦେବି ! ତୁମ୍ଭେ ବାଲସ୍ୱଭାବ-ବଶତଃ ଆମ୍ଭର ନେତ୍ରଯୁଗଳ ସଂବୃତ କରିବାରୁ କ୍ଷଣକାଳ ମଧ୍ୟରେ ଲୋକ ଆଲୋକଶୂନ୍ୟ ହେଲା । ହେ ନଗନନ୍ଦିନି ! ଲୋକ ଆଦିତ୍ୟହୀନ ହୋଇ ତମୋମୟ ହେବାରୁ ପ୍ରଜାଗଣଙ୍କୁ ରକ୍ଷା କରିବା କାରଣ ଆମ୍ଭେ ପ୍ରଦୀପ୍ତ ତୃତୀୟ ନେତ୍ରର ସୃଷ୍ଟି କଲୁଁ । ସେହି ନେତ୍ରର ଉତ୍‌କୃଷ୍ଟ ତେଜଦ୍ୱାରା ଏହି ଶୈଳ ଦଗ୍‌ଧ ହେଲା । ହେ ଦେବି ! ତୁମ୍ଭର ପ୍ରିୟକାର୍ଯ୍ୟ ସାଧନ ନିମିତ୍ତ ଆମ୍ଭେ ପୁନଶ୍ଚ ଶୈଳରାଜଙ୍କୁ ପ୍ରକୃତିସ୍ଥ କଲୁ । ୪୫ ।

ଉମା କହିଲେ, ହେ ଭଗବନ୍ ! ଆପଣଙ୍କର ଚନ୍ଦ୍ରସଂଯୁକ୍ତ ଶୋଭା-ଯୁକ୍ତ ପ୍ରିୟଦର୍ଶନ ଆନନ କି ନିମିତ୍ତ ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ଓ ଊର୍ଦ୍ଧ୍ୱମୁଖ ହେଲା ? ଏବଂ କେଉଁ କାରଣରେ ଅବା ଆପଣ ରୌଦ୍ରରୂପ ଧାରଣ କଲେ ? କେଉଁ ନିମିତ୍ତ ଆପଣଙ୍କ ଜଟାଜୂଟ କପିଳବର୍ଣ୍ଣ ହେଲା ? କେଉଁ କାରଣରେ ବା ଆପଣ କଣ୍ଠଦେଶକୁ ବର୍ହିବର୍ହ ସଦୃଶ ନୀଳବର୍ଣ୍ଣ କଲେ ? ହେ ଦେବ ! କେଉଁ କାରଣରୁ ଆପଣଙ୍କ ହସ୍ତରେ ପିନାକଧନୁ ସର୍ବଦା ଧୃତ ହୋଇଥାଏ ? ଆପଣ କେଉଁ ନିମିତ୍ତ ସର୍ବଦା ଜଟିଳ ଓ ବ୍ରହ୍ମଚାରୀ ହୋଇଅଛନ୍ତି ? ହେ ପ୍ରଭୋ ! ହେ ବୃଷଧ୍ୱଜ ! ଆମ୍ଭେ ଆପଣଙ୍କର ସହଧର୍ମଚାରିଣୀ ଏବଂ ଆପଣଙ୍କଠାରେ ଭକ୍ତିମତୀ; ଅତଏବ ଆମ୍ଭର ଏହି ସଂଶୟର ବିଷୟ ଆପଣ କୀର୍ତ୍ତନ କରିବା ହେଉନ୍ତୁ । ୪୯ ।

(ଭୀଷ୍ମ କହିଲେ) ନାରଦ କହିଲେ, ଭଗବାନ୍ ପ୍ରଭୁ ପିନାକପାଣି ଗିରିସୁତାଙ୍କ ଦ୍ୱାରା ଏହିପରି ଅଭିହିତ ହୋଇ ତାହାଙ୍କ ଧୈର୍ଯ୍ୟ ଓ ବୁଦ୍ଧିଦ୍ୱାରା ପ୍ରୀତିଯୁକ୍ତ ହେଲେ ।୫୦। ତତ୍‌ପରେ ତାହାଙ୍କୁ କହିଲେ, ହେ ରୁଚିରାନନେ ! ସୁଭଗେ ! ଯେଉଁ ସମସ୍ତ କାରଣରେ ଆମ୍ଭର ଏହି ରୂପସମୃଦ୍ଧ ହୋଇଅଛି, ତାହା ଶ୍ରବଣ କର । ୫୧ ।

---

# ଅଧ୍ୟାୟ—୧୪୧

ଶ୍ରୀ ଭଗବାନ୍ କହିଲେ, ପୂର୍ବକାଳରେ ତିଳୋତ୍ତମା ନାମ୍ନୀ ବ୍ରହ୍ମାଙ୍କର ଗୋଟିଏ ଲଳନା ଥିଲେ । ସର୍ବଲୋକପିତାମହ ବ୍ରହ୍ମା ରତ୍ନସମୂହକୁ ତିଳ ତିଳ ପ୍ରମାଣ ସାରାଂଶ ଗ୍ରହଣ କରି ତିଳୋତ୍ତମା ନାମରେ ଗୋଟିଏ ସ୍ତ୍ରୀରତ୍ନର ସୃଷ୍ଟି କରିଥିଲେ । ୧ । ହେ ଦେବି ! ଶୁଭେ ! ଭୂଲୋକରେ ଅପ୍ରତିମ ସୌନ୍ଦର୍ଯ୍ୟଶାଳିନୀ ସେହି ରୁଚିରାନନା ଲଳନା ଆମ୍ଭଙ୍କୁ ପ୍ରଦକ୍ଷିଣପୂର୍ବକ ପ୍ରଲୋଭନ ପ୍ରଦର୍ଶନ କରି ଆମ୍ଭ ସମ୍ମୁଖକୁ ଆଗମନ କଲେ । ୨ । ହେ ଦେବି ! ସେହି ସୁଦତୀ ଯେଉଁ ଦିଗରେ ଆମ୍ଭ ନିକଟକୁ ଆଗମନ କଲେ, ସେହି ସେହି ଦିଗରେ ଯୋଗବଳରେ ଆମ୍ଭର ମନୋହର ମୁଖ ନିର୍ଗତ ହେଲା । ୩ । ତାହାଙ୍କୁ ଦର୍ଶନ କରିବା ନିମିତ୍ତ ଅଭିଳାଷୀ ହୋଇ ଆମ୍ଭେ ଯୋଗବଶତଃ ଚତୁର୍ମୂର୍ତ୍ତି ଅବଲମ୍ବନ କଲୁଁ ଏବଂ ଉତ୍କୃଷ୍ଟ ଯୋଗ ପ୍ରଦର୍ଶନ କରି ଚତୁର୍ମୁଖ ହେଲୁଁ । ୪ । ହେ ଅନିନ୍ଦିତେ ! ଆମ୍ଭେ ପୂର୍ବମୁଖଦ୍ୱାରା ଇନ୍ଦ୍ରଙ୍କୁ ଶାସନ କରୁଁ, ଉତ୍ତର ବଦନଦ୍ୱାରା ତୁମ୍ଭ ସହିତ କ୍ରୀଡ଼ା କରୁଁ ; ଆମ୍ଭର ପଶ୍ଚିମ ମୁଖ ଅତି ପ୍ରିୟଦର୍ଶନ, ଏହା ସର୍ବ ପ୍ରାଣିଗଣର ସୁଖାବହ ଏବଂ ଦକ୍ଷିଣ ମୁଖ ଅତି ଭୟଙ୍କର ଓ ରୌଦ୍ର ହୋଇ ପ୍ରଜାବୃନ୍ଦର ସଂହାର ସାଧନ କରେ ।୬। ଆମ୍ଭେ ଲୋକସମୂହର ହିତକାମନା ହେତୁରୁ ଜଟିଳ ଓ ବ୍ରହ୍ମଚାରୀ ହୋଇଅଛୁଁ । ଦେବକାର୍ଯ୍ୟ ସିଦ୍ଧି ନିମିତ୍ତ ଆମ୍ଭେ ହସ୍ତରେ ପିନାକ ଧନୁ ଧାରଣ କରିଅଛୁଁ । ୭ । ପୂର୍ବକାଳରେ ଦେବରାଜ ଶ୍ରୀକାମନା କରି ଆମ୍ଭଙ୍କୁ ବଜ୍ର ନିକ୍ଷେପ କରିଥିଲେ । ସେହି ବଜ୍ର ଆମ୍ଭର କଣ୍ଠ ଦଗ୍ଧ କରି ଯାଇଥିଲା ! ସେହି କାରଣରୁ ଆମ୍ଭେ ଶ୍ରୀକଣ୍ଠ ହୋଇଅଛୁ । ୮ ।

ଉମା କହିଲେ, ହେ ସତ୍ତମ ! ଏହି ସ୍ଥାନରେ ଅନ୍ୟାନ୍ୟ ଶ୍ରୀମାନ୍ ବାହନସମୂହ ଥାଉଁ ଥାଉଁ ବୃଷ କେଉଁ କାରଣରୁ ଆପଣଙ୍କ ବାହନ ହେଲେ ? ୯ । ମହେଶ୍ୱର କହିଲେ, ବ୍ରହ୍ମା କ୍ଷୀରକ୍ଷରଣକାରିଣୀ ଦେବଧେନୁ ସୁରଭିଙ୍କୁ ନିର୍ମାଣ କରିଥିଲେ । ସୁରଭି ଉତ୍ପନ୍ନ ହୋଇ ପୟୋରୂପ ଅମୃତ କ୍ଷରଣ କରି ବହୁଧା ହେଲେ । ତାହାଙ୍କ ବତ୍ସ ମୁଖରୁ ଉତ୍ସୃଷ୍ଟ ଫେନ ଆମ୍ଭ ଗାତ୍ରରେ ଆସି ସଂଲଗ୍ନ ହୋଇଥିଲା । ତଦନନ୍ତର ଗୋସମୂହ ଆମ୍ଭଦ୍ୱାରା ଦଗ୍ଧ ହୋଇ ନାନାବର୍ଣ୍ଣ ଧାରଣ କଲେ । ୧୧ । ପରିଶେଷରେ ଅର୍ଥବେତ୍ତା

ଲୋକଗୁରୁ ବ୍ରହ୍ମା ଆମ୍ଭଙ୍କୁ ଶାନ୍ତ କଲେ ଏବଂ ସେ ଆମ୍ଭଙ୍କୁ ଧ୍ୱଜ ନିମିତ୍ତ ଏହି ବୃଷ ବାହନ ପ୍ରଦାନ କଲେ । ୧୨ ।

ଉମା କହିଲେ, ଭଗବନ୍ ! ସ୍ୱର୍ଗ ମଧ୍ୟରେ ସର୍ବସୌନ୍ଦର୍ଯ୍ୟସମନ୍ୱିତ ବହୁବିଧ ବାସସ୍ଥାନ ଅଛି, ଆପଣ ତାହାସବୁ ପରିତ୍ୟାଗ କରି କେଶ ଓ ଅସ୍ଥି ପରିପୂର୍ଣ୍ଣ ଭୟଙ୍କର କପାଳ ଓ କଳସଙ୍କୁଳ, ବହୁଳ ଗୃଧ୍ର ଓ ଗୋମାୟୁ-ସେବିତ, ଶତ ଶତ ଚିତାନଳସଙ୍କୁଳ, ଅପବିତ୍ର ମାଂସରାଶିସମାକୀର୍ଣ୍ଣ, ବସା ଶୋଣିତଦ୍ୱାରା କର୍ଦ୍ଦମମୟ ଅନ୍ତ୍ର ଓ ଅସ୍ଥି ସଞ୍ଚୟାବକୀର୍ଣ୍ଣ ଏବଂ ଶିବାନାଦ-ନିନାଦିତ ଶ୍ମଶାନରେ କି ନିମିତ୍ତ କ୍ରୀଡ଼ା କରନ୍ତି ? ୧୫ । ମହେଶ୍ୱର କହିଲେ, ଆମ୍ଭେ ପବିତ୍ର ସ୍ଥାନ ଅନ୍ୱେଷଣ କରି ସର୍ବଦା ସମସ୍ତ ମହୀମଣ୍ଡଳ ବିଚରଣ କରୁଁ । କିନ୍ତୁ ଏହି ଭୂମଣ୍ଡଳ ମଧ୍ୟରେ ଶ୍ମଶାନ ଅପେକ୍ଷା ମେଧ୍ୟତର ଅନ୍ୟ କୌଣସି ସ୍ଥାନ ଲକ୍ଷ୍ୟ ହୁଏ ନାହିଁ । ୧୬ । ସେହି କାରଣରୁ ସମସ୍ତ ବାସସ୍ଥଳ ମଧ୍ୟରେ ବଟଶାଖା-ସମାଚ୍ଛନ୍ନ ଛିନ୍ନଭିନ୍ନ ସ୍ରଗ୍-ବିଭୂଷିତ ଶ୍ମଶାନରେ ଆମ୍ଭ ମନ ରତ ହୁଏ ।୧୭। ହେ ଶୁଚିସ୍ମିତେ ! ଏହି ଭୂତସମୂହ ସେହି ଶ୍ମଶାନରେ କ୍ରୀଡ଼ା କରନ୍ତି । ହେ ଦେବି ! ଭୂତଗଣଙ୍କ ବ୍ୟତିରେକେ ଆମ୍ଭେ ବାସ କରିବାକୁ ଉତ୍ସାହୀ ହେଉନାହିଁ । ୧୮ ! ହେ ଶୁଭେ ! ଆମ୍ଭର ଏହି ଶ୍ମଶାନବାସ ପବିତ୍ର ଓ ସ୍ୱର୍ଗୀୟୋତ୍ତମ । ଯେଉଁମାନେ ପବିତ୍ରତା କାମନା କରନ୍ତି, ସେମାନେ ଏହି ପରମ ପବିତ୍ର ସ୍ଥାନର ଉପାସନା କରନ୍ତି । ୧୯ ।

ଉମା କହିଲେ, ହେ ସର୍ବଧର୍ମବିଶାରଦ ବର ! ବରଦ ! ସର୍ବ-ଭୂତେଶ ! ପିନାକପାଣେ ! ଭଗବନ୍ ! ଆମ୍ଭର ଏହି ମହାନ୍ ସଂଶୟ ଯେ ଏହି ସମସ୍ତ ମୁନିଗଣ ତପସ୍ୟା କରୁଅଛନ୍ତି । ନଖ, ଲୋମ ଓ ଜଟାଧାରୀ ତପୋ-ବେଶଧର, ବିବିଧାକୃତିଲୋକ ଲୋକମଧ୍ୟରେ ଭ୍ରମଣ କରନ୍ତି । ହେ ଅରିନ୍ଦମ ! ଏହି ଋଷିବୃନ୍ଦଙ୍କର ଏବଂ ଆମ୍ଭର ପ୍ରିୟ କାମନା ନିମିତ୍ତ ଆମ୍ଭର ଏହି ମହତ୍ ସନ୍ଦେହ ଭଞ୍ଜନ କରିବା ଆପଣଙ୍କର ଉଚିତ । ଧର୍ମର ଲକ୍ଷଣ କି ? ଏବଂ ଯେଉଁମାନେ ଧର୍ମଜ୍ଞ ନୁହନ୍ତି, ତାଦୃଶ ନରଗଣ କେଉଁ ପ୍ରକାରରେ ଧର୍ମାଚରଣ କରିବାକୁ ସମର୍ଥ ହେବେ ? ହେ ଧର୍ମଜ୍ଞ ! ଆପଣ ଏହି ବିଷୟ ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୨୩ ।

ନାରଦ କହିଲେ, ତଦନନ୍ତର ସେହି ସମସ୍ତ ମୁନିଗଣ ଋଗ୍-ବିଭୂଷିତ ବାକ୍ୟ ଏବଂ ଅର୍ଥଯୁକ୍ତ ସ୍ତୋତ୍ରଦ୍ୱାରା ସେହି ଦେବଙ୍କୁ ପୂଜା

କଲେ । ୨୪ । ମହେଶ୍ୱର କହିଲେ, ଅହିଂସା, ସତ୍ୟକଥନ, ସର୍ବଭୂତରେ ଅନୁକମ୍ପା, ଶମ ଓ ଯଥାଶକ୍ତି ଦାନ ଏହା କେବଳ ଉତ୍କୃଷ୍ଟ ଗାର୍ହସ୍ଥ୍ୟ ଧର୍ମ । ୨୫ । ପରଦାରରେ ଅସଂସକ୍ତି, ନ୍ୟାସ ଓ ସ୍ତ୍ରୀପରିରକ୍ଷଣ, ଅଦତ୍ତ ଦ୍ରବ୍ୟର ଅନାଦାନ, ବିରମ, ମଧୁମାଂସ ବିବର୍ଜନ ଏହି ପଞ୍ଚବିଧ ଧର୍ମ ବହୁଶାଖା ସମନ୍ୱିତ ଓ ସୁଖାବହ ଅଟେ । ଧର୍ମପରାୟଣ ଦେହିଗଣଙ୍କର ଧର୍ମାଚରଣ କରିବାର ଉଚିତ । ୨୬ । ଉମା କହିଲେ, ଭଗବନ୍ ! ଆମ୍ଭେ ଆପଣଙ୍କୁ ସଂଶୟର ବିଷୟ ପ୍ରଶ୍ନ କରିଅଛୁଁ । ଅତଏବ ଆପଣ ବର୍ଣ୍ଣ ଚତୁଷ୍ଟୟ ମଧ୍ୟରେ ସ୍ୱ ସ୍ୱ ଧର୍ମରେ ଯାହା ସୁଖାବହ ଆମ୍ଭ ନିକଟରେ ତଦ୍‌ବିଷୟ କୀର୍ତ୍ତନ କରିବା ହେଉନ୍ତୁ । ୨୮ । ବ୍ରାହ୍ମଣଙ୍କର କାଦୃଶ ଧର୍ମ, କ୍ଷତ୍ରିୟଙ୍କର କେଉଁ ପ୍ରକାର ଧର୍ମ, ବୈଶ୍ୟଙ୍କ ଧର୍ମର ଲକ୍ଷଣ କି ? ଏବଂ ଶୂଦ୍ରଙ୍କର କି ପ୍ରକାର ଧର୍ମ ଅଟେ ? ତାହା କୀର୍ତ୍ତନ କରିବା ହେଉନ୍ତୁ । ୨୯ ।

ମହେଶ୍ୱର କହିଲେ, ହେ ମହାଭାଗେ ! ତୁମ୍ଭେ ନ୍ୟାୟାନୁସାରେ ଏହି ସଂଶୟର ବିଷୟ ପ୍ରଶ୍ନ କରିଅଛ । ଲୋକମଧ୍ୟରେ ମହାଭାଗ ଦ୍ୱିଜାତିଗଣ ସର୍ବଦା ଭୂମିଦେବ ବୋଲି ବିଖ୍ୟାତ । ୩୦ । ବ୍ରାହ୍ମଣଙ୍କର ଉପବାସ ଅର୍ଥାତ୍ ଇନ୍ଦ୍ରିୟଜୟ ଧର୍ମ ଅଟେ, ଏହି ବିଷୟରେ ସଂଶୟ ନାହିଁ । ଧର୍ମାର୍ଥସମ୍ପନ୍ନ ବ୍ରାହ୍ମଣ ବ୍ରାହ୍ମଣତ୍ୱ ଲାଭର ଉପଯୁକ୍ତ ଅଟନ୍ତି । ୩୧ । ନ୍ୟାୟାନୁସାରେ ବ୍ରହ୍ମଚର୍ଯ୍ୟ ତାହାଙ୍କର ଧର୍ମକ୍ରିୟା, ବ୍ରତ ଓ ଉପନୟନ ତାହାଙ୍କର ଧର୍ମ ଅଟେ, ତାହାଦ୍ୱାରା ଦ୍ୱିଜତ୍ୱ ଲାଭ ହୁଏ । ୩୨ । ଗୁରୁ ଓ ଦେବଗଣଙ୍କ ପୂଜା ନିମିତ୍ତ ଧର୍ମପରାୟଣ ଦେହିଗଣଙ୍କର ଧର୍ମ ସମ୍ଭବ । ବେଦାଭ୍ୟାସ କରିବାର ଉଚିତ । ୩୩ । ଉମା କହିଲେ, ହେ ଭଗବନ୍ ! ଆମ୍ଭର କୌଣସି ସଂଶୟ ଉପସ୍ଥିତ ହୋଇଅଛି, ଆପଣ ତାହା ଅପନୋଦନ କରିବାର ଉପଯୁକ୍ତ ଅଟନ୍ତି । ଅତଏବ ଆପଣ ବର୍ଣ୍ଣଚତୁଷ୍ଟୟର ଧର୍ମ ନିପୁଣଭାବରେ କୀର୍ତ୍ତନ କରିବା ହେଉନ୍ତୁ । ୩୪ ।

ମହେଶ୍ୱର କହିଲେ, ବ୍ରାହ୍ମଣଙ୍କର ରହସ୍ୟଶ୍ରବଣ, ବେଦବ୍ରତନିଷେବଣ, ଅଗ୍ନିକାର୍ଯ୍ୟ ଏବଂ ଗୁରୁକାର୍ଯ୍ୟ ପ୍ରସାଧନ ଧର୍ମ ଅଟେ । ୩୫ । ନିତ୍ୟ ଯଜ୍ଞୋପବୀତ ଧାରଣ ଓ ଭୈକ୍ଷଚର୍ଯ୍ୟା ପରମଧର୍ମ ଅଟେ । ନିତ୍ୟ ସ୍ୱାଧ୍ୟାୟ ପାଠ ଓ ବ୍ରହ୍ମଚର୍ଯ୍ୟ ଆଶ୍ରୟ ବ୍ରାହ୍ମଣଙ୍କର ଧର୍ମ । ୩୬ । ବ୍ରାହ୍ମଣ ବ୍ରହ୍ମଚର୍ଯ୍ୟ ସମାପନ ଉତ୍ତାରେ ସମାବର୍ତ୍ତନ ସ୍ନାନ କରି ଗୁରୁଙ୍କ ଅନୁଜ୍ଞା ଗ୍ରହଣପୂର୍ବକ ଗୃହକୁ ଆଗମନ କରିବେ ଓ ସ୍ୱୀୟ ଅନୁରୂପ କାମିନୀଙ୍କ ପାଣି ଗ୍ରହଣ କରିବେ । ବ୍ରାହ୍ମଣଙ୍କ ଶୂଦ୍ରାନ୍ନ ବର୍ଜ୍ଜନ, ସତ୍ପଥସେବନ, ନିତ୍ୟ

ଉପବାସ ଓ ବ୍ରହ୍ମଚର୍ଯ୍ୟ ଧର୍ମ ଅଟେ । ୩୮ । ଗୃହସ୍ଥ ମାନବ ଆହିତାଗ୍ନି, ଅଧ୍ୟୟନଶୀଳ, ସଂଯତେନ୍ଦ୍ରିୟ, ନିତ୍ୟ ହୋମକାରୀ, ବିଘସାଶୀ, ଯତାହାର, ସତ୍ୟବାଦୀ ଓ ଶୁଚି ହେବେ । ୩୯ । ଗୃହସ୍ଥଙ୍କର ଅତିଥି ପରିଚର୍ଯ୍ୟା କରିବାର ଧର୍ମ ; ଦକ୍ଷିଣାଗ୍ନି, ଗାର୍ହପତ୍ୟ ଓ ଆହବନୀୟ ଅଗ୍ନି ଏହି ଅଗ୍ନିତ୍ରୟ ଧାରଣ କରିବାର ବ୍ରାହ୍ମଣଙ୍କର ଧର୍ମ ଅଟେ ।

ବିଧିପୂର୍ବକ ପଶୁବନ୍ଧ ପ୍ରଭୃତି ଯଜ୍ଞର ଅନୁଷ୍ଠାନ ବ୍ରାହ୍ମଣଙ୍କର କର୍ତ୍ତବ୍ୟ କର୍ମ ଅଟେ । ୪୦ । ଯଜ୍ଞାନୁଷ୍ଠାନ, ଏକାହାର ଓ ଅହିଂସା ଅପେକ୍ଷା ଅନ୍ୟ କିଛି ବ୍ରାହ୍ମଣଙ୍କର ଉତ୍କୃଷ୍ଟ ଧର୍ମ ନାହିଁ । ପରିଜନଗଣଙ୍କ ଭୋଜନ ଉତ୍ତାରେ ସ୍ୱୟଂ ଭୋଜନ କରିବାର ଗୃହସ୍ଥ ଶ୍ରୋତ୍ରିୟ ବ୍ରାହ୍ମଣ-ମାନଙ୍କର ଅବଶ୍ୟ କର୍ତ୍ତବ୍ୟ କର୍ମ ଅଟେ । ୪୨ । ଭାର୍ଯ୍ୟା ଓ ସ୍ୱାମୀଙ୍କର ସମାନଶୀଳତାକୁ ଧର୍ମ ବୋଲଯାଏ । ଗୃହଦେବତାମାନଙ୍କୁ ପ୍ରତିଦିନ ପୁଷ୍ପ ଓ ବଳପ୍ରଦାନ କରିବାର ଏବଂ ଗୃହରେ ନିତ୍ୟ ଗୋମୟ ଲେପନ କରିବାର, ଉପବାସ ଓ ହୋମ କରିବାର ଗୃହସ୍ଥଙ୍କର ପ୍ରଧାନ ଧର୍ମ ଅଟେ ଏବଂ ଉପଲିପ୍ତ ଗୃହରେ ନିତ୍ୟ ଆଜ୍ୟଯୁକ୍ତ ଧୂମ ରହିବାର ଉଚିତ । ଦ୍ୱିଜଗଣଙ୍କର ଲୋକଧାରଣ ଏହି ଗାର୍ହସ୍ଥ୍ୟଧର୍ମ, ସାଧୁ ବିପ୍ରଗଣଙ୍କର ସର୍ବଦା ଏହି ଧର୍ମରେ ପ୍ରବୃତ୍ତି ହୁଏ । ୪୫ ।

ହେ ଦେବି ! ତୁମ୍ଭେ କ୍ଷତ୍ରିୟଙ୍କ ଧର୍ମ ବିଷୟରେ ଯେଉଁ ପ୍ରଶ୍ନ କରିଅଛ, ଆମ୍ଭେ ତୁମ୍ଭଙ୍କୁ ତାହା କହୁଅଛୁଁ । ତୁମ୍ଭେ ସ୍ଥିର ମନରେ ତାହା ଶ୍ରବଣ କର । ୪୬ । କ୍ଷତ୍ରିୟମାନଙ୍କର ପ୍ରଜାପାଳନ ଧର୍ମ ଅଟେ । କ୍ଷତ୍ରିୟ-ଗଣ ପ୍ରଜାପାଳନ କଲେ ଯଜ୍ଞର ଫଳ ଲାଭ କରିବାକୁ ସମର୍ଥ ହୁଅନ୍ତି । ଯେଉଁ ନରପତି ଧର୍ମାନୁସାରେ ପ୍ରଜାପାଳନ କରନ୍ତି, ତାହାଙ୍କର ସେହି ପ୍ରଜାପାଳନ ସଞ୍ଚିତ ଧର୍ମଦ୍ୱାରା ଅର୍ଜିତ ଲୋକସମୂହ ଲାଭ ହୁଏ । ତାହାଙ୍କର ଇନ୍ଦ୍ରିୟଦମନ, ସ୍ୱଶାଖୋକ୍ତ ବେଦପାଠ, ଅଗ୍ନି ହୋତ୍ର, ଦାନ ଓ ଅଧ୍ୟୟନ ପରମଧର୍ମ ଅଟେ । ଯଜ୍ଞୋପବୀତଧାରଣ, ଯଜ୍ଞର ଧର୍ମକ୍ରିୟା, ଭୃତ୍ୟବୃନ୍ଦର ଭରଣ ଏବଂ କୃତକର୍ମର ସାଫଲ୍ୟ, ଏହି ସବୁ କ୍ଷତ୍ରିୟ ଧର୍ମ ଅଟେ । ୫୦ । ଦଣ୍ଡରେ ସମ୍ୟକ୍ ମର୍ଯ୍ୟାଦାରକ୍ଷା, ବେଦୋକ୍ତ ଯଜ୍ଞକ୍ରିୟାର ବ୍ୟବହାର ସ୍ଥିତି ଓ ସତ୍ୟବାକ୍ୟରେ ରତି, କ୍ଷତ୍ରିୟଙ୍କର ଧର୍ମ । ୫୧ ।

ଆର୍ତ୍ତ ବ୍ୟକ୍ତିମାନଙ୍କ ହସ୍ତରେ ପ୍ରଦାନକର୍ତ୍ତା ନୃପତି ଇହଲୋକ ଓ ପରଲୋକରେ ପୂଜିତ ହୁଅନ୍ତି । ଗୋବ୍ରାହ୍ମଣଗଣଙ୍କ ଅର୍ଥରେ ବିପନ୍ନ ଓ ସଂଗ୍ରାମରେ ନିହତ ହେବା ନୃପତି ତ୍ରିଦିବାଳୟରେ ଅଶ୍ୱମେଧଯଜ୍ଞଦ୍ୱାରା

ଲଭ୍ୟ ଲୋକସମୂହକୁ ପ୍ରାପ୍ତ ହୁଅନ୍ତି । ୫୭ । ସର୍ବଦା ପଶୁପାଳନ ଓ କୃଷିକାର୍ଯ୍ୟ ବୈଶ୍ୟଙ୍କ ଧର୍ମ ଅଟେ । ଅଗ୍ନିହୋତ୍ର, ଦାନ, ଅଧ୍ୟୟନ, ସତ୍ପଥରେ ସ୍ଥିତି, ଅତିଥି ପରିଚର୍ଯ୍ୟା, ପ୍ରଶମ, ଦମ, ବିପ୍ରଗଣଙ୍କୁ ସ୍ୱାଗତ ପ୍ରଶ୍ନ, ଓ ଧନଦାନ ବୈଶ୍ୟଗଣଙ୍କର ସନାତନ ଧର୍ମ । ୫୮ । ସତ୍-ପଥରେ ସମାଶ୍ରିତ ବୈଶ୍ୟ ବାଣିଜ୍ୟ କାର୍ଯ୍ୟରେ ନିଯୁକ୍ତ ହୋଇ ଗନ୍ଧ, ତିଳ ଓ ରସ ବିକ୍ରୟ କରିବେ ନାହିଁ । ସର୍ବପ୍ରକାରେ ଆତିଥ୍ୟ ଏବଂ ଯଥାଶକ୍ତି, ଯଥାଯୋଗ୍ୟ ଧର୍ମାର୍ଥକାମର ସେବା କରିବେ । ଦ୍ୱିଜାତିଗଣଙ୍କୁ ନିତ୍ୟଶୁଶ୍ରୂଷା କରିବାର ଶୂଦ୍ରମାନଙ୍କର ପରମଧର୍ମ ଅଟେ । ଯେଉଁ ବ୍ୟକ୍ତି ସଂଶିତ-ତପା, ସତ୍ୟବାଦୀ, ଜିତେନ୍ଦ୍ରିୟ ଏବଂ ଉପସ୍ଥିତ ଅତିଥିଙ୍କର ଶୁଶ୍ରୂଷା କରି ଉତ୍କୃଷ୍ଟ ତପସ୍ୟା ସଞ୍ଚୟ କରନ୍ତି, ସେହି ଶୂଦ୍ର, ଦେବତା ଓ ଦ୍ୱିଜପୂଜକ, ଶୁଭାଚାର, ବୁଦ୍ଧିମାନ୍ ଶୂଦ୍ର ଅଭିମତ ଫଳପ୍ରାପ୍ତ ହୁଅନ୍ତି । ୫୯ ।

ହେ ଶୋଭନେ ! ତୁମ୍ଭଙ୍କୁ ବର୍ଣ୍ଣଚତୁଷ୍ଟୟ ମଧ୍ୟରେ ପ୍ରତ୍ୟେକଙ୍କର ଏହି ସମସ୍ତ ଧର୍ମ କହିଲୁଁ । ହେ ସୁଭଗେ ! ଆଉ କେଉଁ ବିଷୟ ଶ୍ରବଣ ନିମିତ୍ତ ଅଭିଳାଷ କରୁଅଛ ? ୬୦ । ଉମା କହିଲେ, ହେ ଭଗବନ୍ ! ଆପଣ ବର୍ଣ୍ଣଚତୁଷ୍ଟୟର ହିତକର ଓ ଶୁଭକର ପୃଥକ୍ ପୃଥକ୍ ଧର୍ମ କହିବା ହେଲେ, ସମ୍ପ୍ରତି ଯେଉଁ ଧର୍ମ ସର୍ବବ୍ୟାପୀ, ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୬୧ ।

ମହେଶ୍ୱର କହିଲେ, ଗାଣାର୍ଥିଦେବ ବିଧାତା ସଂସାରରୁ ସମସ୍ତଙ୍କୁ ଉଦ୍ଧାର କରିବା ନିମିତ୍ତ ନରଗଣଙ୍କ ମଧ୍ୟରେ ଭୂଦେବ ବ୍ରାହ୍ମଣଙ୍କୁ ସର୍ବ-ଲୋକର ସାରଦ୍ୱାର ନିର୍ମାଣ କରିଅଛନ୍ତି । ୬୨ । ସେମାନଙ୍କର ଧର୍ମ କର୍ମ ଓ ତାହାର ଫଳୋଦୟ ସବୁ କହୁଅଛୁଁ । ବ୍ରାହ୍ମଣଗଣଙ୍କଠାରେ ଯେଉଁ ଧର୍ମ ଅଛି, ତାହା ପରମଧର୍ମ ଅଟେ । ୬୩ । ଲୋକମାନଙ୍କ ଧର୍ମ ନିମିତ୍ତ ସୃଷ୍ଟି ସମୟରେ ସ୍ୱୟମ୍ଭୂ ବ୍ରହ୍ମା ଯେଉଁ ଧର୍ମତ୍ରୟ ସର୍ଜନ କରିଅଛନ୍ତି, ତାହା ଆମ୍ଭଠାରୁ ଶ୍ରବଣ କର । ୬୪ । ବେଦୋକ୍ତ ଧର୍ମ, ସ୍ମୃତି ଓ ଶାସ୍ତ୍ରୋଲ୍ଲିଖିତ ଧର୍ମ ଏବଂ ଶିଷ୍ଟାଚାର ଏହି ଧର୍ମତ୍ରୟ ସନାତନ ଧର୍ମ ବୋଲି ଉକ୍ତ ହୋଇଅଛି । ୬୫ । ତ୍ରୈବିଦ୍ୟ ବିଦ୍ୱାନ୍ ବ୍ରାହ୍ମଣ ଋକ୍‌ମନ୍ତ୍ର ଅଧ୍ୟୟନ-ଦ୍ୱାରା ଜୀବନଯାପନ କରି ଦାନ ଅଧ୍ୟୟନ ଓ ଯଜନ ଏହି ତ୍ରିକର୍ମକୁ ଆଶ୍ରୟ କରି ଓ ତ୍ରିପରିକ୍ରାନ୍ତ ଅର୍ଥାତ୍ କାମ, କ୍ରୋଧ, ଲୋଭ ଏହି ତ୍ରିତୟକୁ ପରିତ୍ୟାଗ କରି ସର୍ବଭୂତରେ ସମଦର୍ଶୀ ହୋଇ ଦ୍ୱିଜ ବୋଲି କଥିତ

ହୁଅନ୍ତି । ୬୬ । ଭୁବନେଶ୍ୱର ପ୍ରଜାପତି ବ୍ରାହ୍ମଣକୁଳର ବୃତ୍ତି ନିମିତ୍ତ ଯେଉଁ ଛଅଗୋଟି ଧର୍ମ କହିଥିଲେ, ସେହି ସନାତନ ଧର୍ମ ସବୁ ଶ୍ରବଣ କର ।୬୭।

ଯଜନ, ଯାଜନ, ଦାନ, ପ୍ରତିଗ୍ରହ, ଅଧ୍ୟୟନ ଓ ଅଧ୍ୟାପନ ଏହି ଷଟ୍‌କର୍ମଶାଳୀ ବ୍ରାହ୍ମଣ ଧର୍ମଭାଗୀ ହୁଅନ୍ତି । ୬୮ । ନିତ୍ୟ ସ୍ୱାଧ୍ୟାୟ ପାଠ ଓ ସନାତନ ଯଜ୍ଞ ବ୍ରାହ୍ମଣଙ୍କର ଧର୍ମ ; ବ୍ରାହ୍ମଣଙ୍କର ଯଥାଶକ୍ତି ଓ ଯଥାବିଧି ଦାନ କରିବାର ପ୍ରଶସ୍ତ ଅଟେ ।୬୯। ସାଧୁଗଣରେ ନିତ୍ୟ ପ୍ରବୃତ୍ତ ଶାନ୍ତି ପରମ ଧର୍ମ ଅଟେ । ନିରନ୍ତର ଶାନ୍ତିଗୁଣ ଅବଲମ୍ବନ ଓ ସାଧୁ ସଂସର୍ଗ ଅପେକ୍ଷା ଗୃହସ୍ଥଙ୍କର ଅନ୍ୟ କିଛି ଉତ୍କୃଷ୍ଟ ଧର୍ମ ନାହିଁ । ୭୦ । ପଞ୍ଚଯଜ୍ଞର ଅନୁଷ୍ଠାନ କରି ଶୁଦ୍ଧିଲାଭ, ସତ୍ୟବାକ୍ୟ ପ୍ରୟୋଗ, ଈର୍ଷା ପରିତ୍ୟାଗ, ଦାନ, ବ୍ରାହ୍ମଣଙ୍କ ସତ୍କାର, ପରିଷ୍କୃତ ଆବାସରେ ଅବସ୍ଥାନ, ଅଭିମାନ ଓ କପଟ ପରିତ୍ୟାଗ, ପ୍ରିୟବାକ୍ୟ ବିନ୍ୟାସ, ଅତିଥିସତ୍କାର ବିଷୟରେ ଅନୁରାଗ ଓ ପରିଜନ-ଗଣଙ୍କ ଭୋଜନ ଉତ୍ତାରେ ଭୋଜନ କରିବାର ଗୃହସ୍ଥଙ୍କର ଅବଶ୍ୟ କର୍ତ୍ତବ୍ୟ କର୍ମ ଅଟେ । ୭୨ ।

ଯେଉଁ ବ୍ୟକ୍ତି ଅତିଥିମାନଙ୍କୁ ପାଦ୍ୟ, ଅର୍ଘ୍ୟ, ଆସନ, ଶଯ୍ୟା, ଦୀପ ଓ ଆଶ୍ରୟ ପ୍ରଦାନ କରନ୍ତି, ସେ ପରମ ଧାର୍ମିକ ଅଟନ୍ତି । ୭୩ । ଯେଉଁ ବ୍ୟକ୍ତି ପ୍ରାତଃକାଳରେ ଗାତ୍ରୋତ୍‌ଥାନ ଓ ଆଚମନପୂର୍ବକ ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରି ମଧ୍ୟାହ୍ନ ସମୟରେ ତାହାଙ୍କୁ ଯଥାଶକ୍ତି ଭୋଜନ କରାଇ କିୟଦ୍‌ଦୂର ତାହାଙ୍କର ଅନୁଗମନ କରନ୍ତି, ତାହାଙ୍କର ସନାତନ ଧର୍ମ ଲାଭ ହୁଏ । ୭୪ । ସର୍ବପ୍ରକାରରେ ଅତିଥି ସତ୍କାର ଓ ବିବାରିତ ଧର୍ମାଦି ତ୍ରିବର୍ଗର ଅନୁଷ୍ଠାନ କଲେ ଗୃହସ୍ଥ ଶୂଦ୍ରଙ୍କର ପରମଧର୍ମ ଲାଭ ହୁଏ ।୭୫। ଗୃହସ୍ଥଙ୍କ ପକ୍ଷରେ ପ୍ରବୃତ୍ତିଲକ୍ଷଣ ଧର୍ମ ବିହିତ ଅଟେ । ଅତଏବ ସର୍ବଭୂତର ହିତକର ସେହି ପ୍ରବୃତ୍ତି ଲକ୍ଷଣ ଶୁଭକର ଧର୍ମ କୀର୍ତ୍ତନ କରୁଅଛୁଁ । ୭୬ ।

ଐଶ୍ୱର୍ଯ୍ୟକାମ ମନୁଷ୍ୟଙ୍କର ଶକ୍ତି ଅନୁସାରେ ବାରମ୍ବାର ଦାନ କରିବାର, ଯଜ୍ଞ କରିବାର ଓ ପୁଷ୍ଟିକାର୍ଯ୍ୟବିଧାନ କରିବାର ଉଚିତ । ୭୭ । ଧର୍ମଦ୍ୱାରା ଅର୍ଥ ଆହରଣ କରିବାର ଉଚିତ, ଧର୍ମଲବ୍ଧ ଧନ ତ୍ରିବିଧ ବିଭାଜିତ ହେବ । ମାନବ ପ୍ରଯତ୍ନପୂର୍ବକ ଧର୍ମାର୍ଥ ଧନ ବିତରଣ କରିବେ ।୭୮। ଐଶ୍ୱର୍ଯ୍ୟକାମ ମାନବ ଏକଅଂଶ ଧନଦ୍ୱାରା ଧର୍ମ ଓ ଅର୍ଥ ଆଚରଣ କରିବେ । ଏକଭାଗଦ୍ୱାରା କାମଭୋଗ କରିବେ ଏବଂ ଏକଅଂଶର ବୃଦ୍ଧି ସମ୍ପାଦନ କରିବେ । ଧର୍ମଲବ୍ଧ ଧନ ଏହିପରି ତିନି ଭାଗରେ ବିଭକ୍ତ ହେବାର ଉଚିତ । ୭୯ ।

ହେ ଦେବ ! ନିବୃତ୍ତି ଲକ୍ଷଣ ଅନ୍ୟ ଏକ ଧର୍ମମୋକ୍ଷର କାରଣ ଅଟେ । ତାହାର ବୃତ୍ତାନ୍ତ ଆମ୍ଭେ ଯଥାର୍ଥରୂପେ କହୁଅଛୁଁ ଶ୍ରବଣ କର ।୮୦। ମୋକ୍ଷାକାଙ୍‌କ୍ଷୀ ମାନବଗଣଙ୍କର ସର୍ବଭୂତରେ ଦୟା, ଏକ ଗ୍ରାମରେ ବାସ ନ କରିବାର ଏବଂ ଆଶାପାଶବିମୋଚନ କରିବାର ପ୍ରଶସ୍ତ ଧର୍ମ ଅଟେ । ମୋକ୍ଷ୍ୟାର୍ଥୀ ମନୁଷ୍ୟ ଗୃହରେ, ଉଦକରେ, ବସନରେ, ଆସନରେ, ତ୍ରିଦଣ୍ଡରେ, ଶୟନରେ, ହୁତାଶନ ନିକଟରେ ଓ ରକ୍ଷକଙ୍କ ନିକେତନରେ ସଙ୍ଗ କରିବେ ନାହିଁ । ୮୨ । ଯାହାଙ୍କ ଚିତ୍ତ ଅଧ୍ୟାତ୍ମ ପଥରେ ବିଚରଣ କରେ, ଯେ ଚିନ୍ତନା, ତତ୍ତ୍ୱପରାୟଣ, ଯୋଗ ଓ ସମାଧିରେ ସର୍ବଦା ଅନୁରକ୍ତ, ବୃକ୍ଷମୂଳରେ ବସତିକାରୀ, ଶୂନ୍ୟ ଗୃହରେ ସ୍ଥାୟୀ, ନଦୀର ପୁଳିନଶାୟୀ, ନଦୀତୀରରେ ରତ ଏବଂ ଯେଉଁ ବ୍ରାହ୍ମଣ ସର୍ବସଙ୍ଗ ଓ ସମସ୍ତଙ୍କ ସ୍ନେହବନ୍ଧନରୁ ବିମୁକ୍ତ, ସେ ସ୍ୱୟଂ ନିଜଭାବରେ ସମାସକ୍ତ ହେବେ । ୮୫ । ମୋକ୍ଷଦ୍ରଷ୍ଟା କର୍ମଦ୍ୱାରା ସ୍ଥାଣୁ ସଦୃଶ ନିରାହାର ହୋଇ ରହିବେ । ଯେ ଯୋଗୀ ହୋଇ ପରିଭ୍ରମଣ କରନ୍ତି, ତାହାଙ୍କର ସନାତନ ଧର୍ମ ହୁଏ । ୮୬ । ମୁକ୍ତ ବ୍ୟକ୍ତି ଏକ ସ୍ଥାନରେ ଆସକ୍ତ ହୋଇ ରହିବେ ନାହିଁ, ଏକ ଗ୍ରାମରେ ସର୍ବଦା ବାସ କରିବେ ନାହିଁ, ଏକ ପୁଳିନରେ ଶୟନ କରିବେ ନାହିଁ, ନିର୍ମୁକ୍ତ ହୋଇ ଭ୍ରମଣ କରିବେ । ୮୭ । ମୋକ୍ଷ ବାଞ୍ଛା ସାଧୁଗଣଙ୍କର ଏହା ବେଦୋକ୍ତ ସତ୍‌ପଥ ସ୍ୱରୂପ ଧର୍ମ ଅଟେ; ଯେଉଁ ବ୍ୟକ୍ତି ଏହି ପଥର ଅନୁବର୍ତ୍ତୀ ହୁଅନ୍ତି, ତାହାଙ୍କର କୌଣସି ବ୍ୟବସାୟ ରହେ ନାହିଁ । ୮୮ ।

କୁଟୀଚକ, ବହୂଦକ, ହଂସ ଓ ପରମହଂସ ଭେଦରେ ଭିକ୍ଷୁ ଚତୁର୍ବିଧ ହୁଅନ୍ତି । ଯେ ଯାହାଙ୍କର ପଶ୍ଚାତ୍ ଉଲ୍ଲିଖିତ ହୋଇଅଛନ୍ତି, ସେ ତଦପେକ୍ଷା ଉତ୍କୃଷ୍ଟ । ୮୯ । କୁଟୀଚକ ଓ ବହୂଦକ, ଏହି ଉଭୟ ବ୍ୟକ୍ତି ତ୍ରିଦଣ୍ଡଧାରଣ କରନ୍ତି । ତନ୍ମଧ୍ୟରେ ପ୍ରଥମୋକ୍ତ ଭିକ୍ଷୁବ୍ୟକ୍ତି ଗୃହରେ ବସତି କରନ୍ତି । ଦ୍ୱିତୀୟ ବ୍ୟକ୍ତି ତୀର୍ଥ ପର୍ଯ୍ୟଟନ କରନ୍ତି । ତୃତୀୟ ଭିକ୍ଷୁ ଆଶ୍ରମ ଧର୍ମରେ ନିରତ, ଚତୁର୍ଥ ଭିକ୍ଷୁ ନିସ୍ତ୍ରୈଗୁଣ୍ୟ ପଥରେ ବିଚରଣ କରନ୍ତି । ପରମହଂସ ଆଶ୍ରମ ଅପେକ୍ଷା ଶ୍ରେଷ୍ଠତମ, ଅଦୁଃଖ, ଅସୁଖି, ପ୍ରିୟଦର୍ଶନ, ଅଜର, ଅମର ଓ ଅବ୍ୟୟ ଆଶ୍ରମ ଅନ୍ୟ ନାହିଁ । ଲୋକମାନେ ଅତିଶୟ କଷ୍ଟବଶତଃ ଏହା ଆଚରଣ କରନ୍ତି ନାହିଁ । ୯୦ ।

ଉମା କହିଲେ, ଗାର୍ହସ୍ଥ୍ୟଧର୍ମ ଏବଂ ସଜ୍ଜନଗଣକର୍ତ୍ତୃକ ଆଚରିତ ମୋକ୍ଷ ଧର୍ମ, ଯାହା ଜୀବଲୋକର ମହାନ୍ ମଙ୍ଗଳକର ପଥ, ତାହା

ଆପଣ କୀର୍ତ୍ତନ କଲେ । ୯୧ । ହେ ଧର୍ମଜ୍ଞ ! ଅତଃପର ଆମ୍ଭେ ଋଷିଧର୍ମ ଶ୍ରବଣ କରିବାକୁ ଅଭିଳାଷ କରିଅଛୁଁ । ତପୋବନନିବାସୀ ଋଷିଗଣଙ୍କ ଧର୍ମଶ୍ରବଣ ବିଷୟରେ ଆମ୍ଭର ସର୍ବଦା ସ୍ପୃହା ହେଉଅଛି । ୯୨ । ହେ ମହେଶ୍ୱର ! ଆଜ୍ୟ ଧୂମସମୁଦ୍ଭବ ଗନ୍ଧ ଯେଉଁପରି ତପୋବନକୁ ଆବରଣ କରେ, ତାହା ଦର୍ଶନ କରି ଆମ୍ଭ ମନ ସର୍ବଦା ପ୍ରୀତିଯୁକ୍ତ ହୁଏ । ୯୩ । ହେ ପ୍ରଭୋ ! ଦେବଦେବ ! ମହାଦେବ ! ଆପଣ ସମସ୍ତ ଧର୍ମାର୍ଥର ତତ୍ତ୍ୱବିଜ୍ଞ ଅଟନ୍ତି, ମୁନିଧର୍ମ ବିଷୟରେ ଆମ୍ଭର ଯେଉଁ ସଂଶୟ ଜନ୍ମିଅଛି, ଆମ୍ଭେ ତାହା ଆପଣଙ୍କୁ ପ୍ରଶ୍ନ କଲୁଁ, ଆପଣ ତାହାର ଉତ୍ତର ଯଥାର୍ଥରୂପେ କୀର୍ତ୍ତନ କରିବା ହେଉନ୍ତୁ । ୯୪ ।

ଶ୍ରୀ ମହେଶ୍ୱର କହିଲେ, ହେ ଶୁଭେ ! ସନ୍ନ୍ୟାସୀ ମୁନିଗଣ ଯାହା ଆଚରଣ କରି ନିଜ ତପସ୍ୟା ଦ୍ୱାରା ସିଦ୍ଧିଲାଭ କରନ୍ତି, ଆମ୍ଭେ ତୁମ୍ଭ ନିକଟରେ ସେହି ଅତି ଉତ୍କୃଷ୍ଟ ମୁନିଧର୍ମ କହିବୁ । ୯୫ । ହେ ଧର୍ମଜ୍ଞେ ! ମହାଭାଗେ ! ଧର୍ମବେତ୍ତା ଫେନପ-ସାଧୁ ଋଷିଗଣଙ୍କର ଯେଉଁ ଧର୍ମ, ତାହା ପ୍ରଥମତଃ ତୁମ୍ଭେ ଆମ୍ଭ ନିକଟରୁ ଶ୍ରବଣ କର । ୯୬ । ଯେଉଁମାନେ ସୃଷ୍ଟିର ପୂର୍ବକ୍ଷଣରେ ପଦ୍ମଯୋନିଙ୍କ ଦ୍ୱାରା ପୀତ, ଯଜ୍ଞରୁ ପ୍ରସୃତ, ପିତୃଲୋକଙ୍କ ତୃପ୍ତି ସାଧନ ଜଳର ଫେନ ପାନ କରି ଦିନ ଯାପନ କରନ୍ତି, ସେହିମାନେ ଫେନପାୟୀ ବୋଲି ଅଭିହିତ ହୁଅନ୍ତି । ହେ ତପୋଧନେ ! ସେହି ବିଶୁଦ୍ଧ-ଫେନପାୟୀ ଋଷିଗଣଙ୍କ ଧର୍ମଚର୍ଯ୍ୟା କୃତମାର୍ଗ କଥିତ ହେଲା । ସଂପ୍ରତି ବାଲଖିଲ୍ୟ ମୁନିଗଣଙ୍କ ଧର୍ମ ଶ୍ରବଣ କର । ୯୮ ।

ଧର୍ମଜ୍ଞ ତପଃସିଦ୍ଧ ବାଲଖିଲ୍ୟ ମୁନିଗଣ ସୂର୍ଯ୍ୟମଣ୍ଡଳରେ ଶାକୁନୀ ବୃତ୍ତି ଅବଲମ୍ବନପୂର୍ବକ ଉଞ୍ଛବୃତ୍ତିରେ ଅବସ୍ଥାନ କରନ୍ତି । ୯୯ । ସେମାନେ ମୃଗଚର୍ମ ଅଥବା ବଲ୍କଳ ବସ୍ତ୍ର ପରିଧାନ କରନ୍ତି । ତପୋଧନ ବାଲଖିଲ୍ୟ-ଗଣ ନିର୍ଦ୍ୱନ୍ଦ୍ୱ ହୋଇ ସତ୍ପଥ ଅବଲମ୍ବନ କରନ୍ତି । ୧୦୦ । ଯେଉଁମାନେ ଅଙ୍ଗୁଷ୍ଠପର୍ବ ପରିମାଣ ହୋଇ ସ୍ୱ ସ୍ୱ ଧର୍ମରେ ଅବସ୍ଥିତ ରହିଅଛନ୍ତି ଏବଂ ତପଶ୍ଚରଣରେ ଚେଷ୍ଟା କରୁଅଛନ୍ତି, ସେହିମାନଙ୍କର ଧର୍ମଫଳ ଅତି ଉତ୍କୃଷ୍ଟ । ୧୦୧ । ସେହିମାନେ ଦେବଗଣଙ୍କ କାର୍ଯ୍ୟସିଦ୍ଧି ନିମିତ୍ତ ଅମରଗଣଙ୍କ ସମତା ପ୍ରାପ୍ତ ହୁଅନ୍ତି ଏବଂ ତପସ୍ୟାଦ୍ୱାରା କଳୁଷରାଶିକି ଦହନ କରି ଦଶ ଦିଗକୁ ଦ୍ୟୋତିତ କରନ୍ତି । ୧୦୨ । ଯେଉଁ ସମସ୍ତ ଶୁଦ୍ଧଚରିତ ଦୟାଧର୍ମ-ପରାୟଣ ଅନ୍ୟାନ୍ୟ ଋଷିଗଣ ବସନ୍ତବିହୀନ ହୋଇ ଚକ୍ରବତ୍ ବିଚରଣ କରନ୍ତି ଏବଂ ପବିତ୍ର ହୋଇ ଚନ୍ଦ୍ରଲୋକରେ ସଞ୍ଚରଣ କରନ୍ତି, ସେହିମାନେ

ପିତୃଲୋକଙ୍କ ସମୀପସ୍ଥ ହୋଇ ଯଥାବିଧି ଚନ୍ଦ୍ରଙ୍କ କିରଣସମୂହ ପାନ କରନ୍ତି । ଯେଉଁମାନେ ସମ୍ୟକ୍ ରୂପେ ପାଦାଦି ପ୍ରକ୍ଷାଳନ କରନ୍ତି, ପରଦିନ ନିମିତ୍ତ କିଛିମାତ୍ର ସଞ୍ଚୟ କରି ରଖନ୍ତି ନାହିଁ, ସେହିମାନେ ଏବଂ ସୁପ୍ରକ୍ଷାଳିତାସ୍କୁଞ୍ଚ ଓ ଦନ୍ତୋଲୁଖଳିକ ପ୍ରଭୃତି ଯେଉଁ ସମସ୍ତ ଋଷି ଅଛନ୍ତି, ସେମାନେ ଏବଂ ସୋମପ ଓ ଉଷ୍ମପ ମୁନିଗଣ ଦେବଗଣଙ୍କ ସମୀପସ୍ଥ ହୋଇ ସଦାର ଓ ନିୟତେନ୍ଦ୍ରିୟ ହୋଇ ଉଞ୍ଛବୃତ୍ତି ଅବଲମ୍ବନ କରିଥାଆନ୍ତି ।୧୦୫। ଅଗ୍ନି ପରିଚର୍ଯ୍ୟା, ପିତୃଗଣଙ୍କ ଅର୍ଚ୍ଚନା ଏବଂ ଯଜ୍ଞ-ଯଜନ ସେମାନଙ୍କର ଧର୍ମ ଅଟେ । ୧୦୬ ।

ହେ ଦେବି ! ଉକ୍ତବିଧି ବିଚରିଣକାରୀ ଦେବଲୋକଚର ଦ୍ୱିଜଗଣ-କର୍ତ୍ତୃକ ଏହି ଋଷିଧର୍ମ ସର୍ବଦା ଆଚରିତ ହୋଇଥାଏ । ଏତଦ୍‌ଭିନ୍ନ ଯେଉଁ ଧର୍ମ ଅଛି, ତାହା ଆମ୍ଭ ନିକଟରୁ ଶ୍ରବଣ କର ।୧୦୭। ସମସ୍ତ ଋଷି ଧର୍ମରେ ସୁଯତେନ୍ଦ୍ରିୟ ହୋଇ ଆତ୍ମଜ୍ଞାନ ସାଧନ କରିବାର ବିଧେୟ । ତଦନନ୍ତର କାମ ଓ କ୍ରୋଧକୁ ଜୟ କରିବାର ଉଚିତ, ଆମ୍ଭେ ଏହି କଥା ବିବେଚନା କରୁଅଛୁ । ୧୦୮ । ଅଗ୍ନିହୋତ୍ର ପରିଚର୍ଯ୍ୟା, ସନାତନ ଧର୍ମର ସର୍ବଦା ଅନୁଷ୍ଠାନ, ସୋମଯଜ୍ଞର ଅନୁଜ୍ଞାଦାନ ଏବଂ ପଞ୍ଚମୀ ଯଜ୍ଞ ଦକ୍ଷିଣା, ସର୍ବଦା ଯଜ୍ଞକ୍ରିୟା, ଦେବଗଣ ଓ ପିତୃଗଣଙ୍କ ଅର୍ଚ୍ଚନରେ ଅନୁରାଗ, ଉଞ୍ଛବୃତ୍ତିଦ୍ୱାରା ଉପାର୍ଜିତ ଅନ୍ନରେ ସର୍ବପ୍ରକାରରେ ଅତିଥି ପରିଚର୍ଯ୍ୟା କରିବାର ଧର୍ମ ଅଟେ । ୧୧୦ । ଗୋରସ ସମୂହର ଉପଭୋଗ ବିଷୟରେ ନିବୃତ୍ତି, ଶମବୃତ୍ତି ବିଷୟରେ ରତି, ସ୍ଥଣ୍ଡିଳ ଶୟନରେ ଯୋଗ ଏବଂ ଶାକ ଓ ପର୍ଣ୍ଣଭକ୍ଷଣ, ଫଳମୂଳଭୋଜନ, ବାୟୁ, ଜଳ ଓ ଶୈବାଳ ଭକ୍ଷଣ ଏହାସବୁ ଋଷିଗଣଙ୍କର ନିୟମ, ଏହି ନିୟମଦ୍ୱାରା ସେହିମାନେ ଅଜିତ ଗତିକି ଜୟ କରନ୍ତି ।୧୧୨।

ଯେତେବେଳେ ଗୃହ ଧୂମବିହୀନ, ମୁଷଳ ଧ୍ୱନିବିବର୍ଜିତ ଓ ଅଙ୍ଗାର-ଶୂନ୍ୟ ହୋଇଥାଏ, ପରିଜନଗଣ ଭୋଜନ କରି ଭୋଜନପାତ୍ର ସମୂହ ପରିତ୍ୟାଗ କରି ଥାଆନ୍ତି ଏବଂ ଭିକ୍ଷୁକଗଣ ପରିତୃପ୍ତ ହୋଇ ଯଥା ସ୍ଥାନକୁ ଗମନ କରିଥାଆନ୍ତି, ଯେଉଁ ସତ୍ୟଧର୍ମନିରତ ମହାତ୍ମାମାନେ ସେହି ସମୟରେ ଅବଶିଷ୍ଟ ଅନ୍ନ ଭୋଜନ କରିବାକୁ ପ୍ରବୃତ୍ତ ହୁଅନ୍ତି, ସେହି ସତ୍ୟ ଧର୍ମରତ ଶାନ୍ତ ମୁନିଗଣ ଧର୍ମଯୁକ୍ତ ହୁଅନ୍ତି । ଯେଉଁମାନେ ଗର୍ବ ଓ ଅଭିମାନ-ବିହୀନ, ସର୍ବଦା ଆହ୍ଲାଦିତ, ବିସ୍ମୟବିବର୍ଜିତ ଓ ଶତ୍ରୁମିତ୍ରରେ ସମଜ୍ଞାନସମ୍ପନ୍ନ ହୁଅନ୍ତି, ସେହିମାନଙ୍କୁ ଯଥାର୍ଥ ଧର୍ମବେତ୍ତା ବୋଲି ନିର୍ଦ୍ଦେଶ କରାଯାଇ ପାରେ । ୧୧୫ ।

---

# ଅଧ୍ୟାୟ—୧୪୨

ଉମା କହିଲେ—ହେ ନାଥ ! ରମଣୀୟ ଦେଶସମୂହରେ, ନଦୀବୃନ୍ଦର ନିର୍ଝରସମୂହରେ, ନଦୀବୃନ୍ଦର ନିକୁଞ୍ଜରେ, ପର୍ବତରେ, ବନରେ, ଫଳଯୁକ୍ତ ପବିତ୍ର ପ୍ରଦେଶରେ ଏବଂ ମୂଳବିଶିଷ୍ଟ ମେଧ୍ୟ ପ୍ରଦେଶରେ ସୁସମାହିତ ନିୟତବ୍ରତ ମୁନିଗଣ ବସତି କରିଥାଆନ୍ତି । ହେ ଶଙ୍କର ! ଆମ୍ଭେ ସେହିମାନଙ୍କର ବିବିଧ ପୁଣ୍ୟ ଶ୍ରବଣ ନିମିତ୍ତ ଇଚ୍ଛା କରୁଅଛୁଁ । ହେ ଦେବେଶ ! ସ୍ୱଶରୀରୋପଜୀବୀ ବାନପ୍ରସ୍ଥ ଧର୍ମର ବିଷୟ ଶ୍ରବଣ କରିବାକୁ ଆମ୍ଭର ଅଭିଳାଷ ହୋଇଅଛି । ୩ । ମହେଶ୍ୱର କହିଲେ, ହେ ଦେବି ! ସମାହିତ ହୋଇ ବାନପ୍ରସ୍ଥଗଣଙ୍କ, ଧର୍ମ ଶ୍ରବଣ କର ଏବଂ ଏକମନା ହୋଇ ଶ୍ରବଣ କରି ଧର୍ମବୁଦ୍ଧିପରାୟଣା ହୁଅ । ୪ । ନିୟମସମୂହଦ୍ୱାରା ସମ୍ୟକ୍‌ସିଦ୍ଧ ବନବାସଗତ ସାଧୁ ବାନପ୍ରସ୍ଥଗଣଙ୍କର ଯାଦୃଶକର୍ମ କର୍ତ୍ତବ୍ୟ, ତାହା ଶ୍ରବଣ କର । ୫ ।

ପ୍ରଭାତ, ମଧ୍ୟାହ୍ନ ଓ ସାୟାହ୍ନ, ଏହି କାଳତ୍ରୟରେ ଅଭିଷେକ, ପିତୃଗଣ ଓ ଦେବଗଣଙ୍କ ଅର୍ଚ୍ଚନ, ଅଗ୍ନିହୋତ୍ର ପରିଚର୍ଯ୍ୟା, ଇଷ୍ଟି ଏବଂ ହୋମାନୁଷ୍ଠାନ, ନୀବାର ଗ୍ରହଣ, ଫଳମୂଳ ନିଷେବଣ, ସ୍ନିଗ୍ଧତା ନିମିତ୍ତ ଇଙ୍ଗୁଦ ଓ ଏରଣ୍ଡ ତୈଳ ମର୍ଦ୍ଦନ କର୍ତ୍ତବ୍ୟରୂପେ ନିର୍ଦ୍ଦିଷ୍ଟ ହୋଇଅଛି । ୭ । ଯୋଗଚର୍ଯ୍ୟାକୃତ କାମ କ୍ରୋଧବିବର୍ଜିତ ସିଦ୍ଧ ବୀରସ୍ଥାନ ମହାରଣ୍ୟ ମଧ୍ୟରେ ବସତିକାରୀ, ବୀରଶଯ୍ୟା ଉପାସକ ଯୋଗରତ ସାଧୁ ଯୋଗିଗଣ, ଯେଉଁମାନେ ଗ୍ରୀଷ୍ମକାଳରେ ପଞ୍ଚାଗ୍ନି ସ୍ଥାପନ କରି ଥାଆନ୍ତି ଏବଂ ଯେଉଁମାନେ ହର୍ଷଯୋଗରେ ନିରତ ଓ ଯଥା ନ୍ୟାୟରେ ସମସ୍ତ କାର୍ଯ୍ୟ ନିର୍ବାହ କରନ୍ତି, ସଦା ଉପବେଶନରୂପ ବୀରାସନରେ ଉପବେଶନ କରନ୍ତି, ମଣ୍ଡୂକ ଯୋଗ ସାଧନ ଏବଂ ସ୍ଥଣ୍ଡିଳରେ ଶୟନ କରନ୍ତି, ସେହି ଧର୍ମବୁଦ୍ଧି ମାନବଗଣ ଶୀତକାଳରେ ଶୀତଳ ଜଳ ଓ ଗ୍ରୀଷ୍ମକାଳରେ ଅନଳରେ ଯୋଗଯୁକ୍ତ ହୋଇ ରହିବେ । ୧୦ । ଜଳଭକ୍ଷ୍ୟ, ବାୟୁଭକ୍ଷ୍ୟ ଶୈବାଳଭୋଜୀ, ଅଶ୍ମକୁଟ୍ଟ, ଦାନ୍ତ, ସମ୍ପ୍ରକ୍ଷାଳ ଏବଂ ଅନ୍ୟାନ୍ୟ ଚୀରବଲ୍‌କଳସଂବୀତ, ମୃଗଚର୍ମ ପରିଧାୟୀ ମୁନିଗଣ ଯଥାକାଳରେ ଯଥାବିଧି ଯଥାଧର୍ମ ଯାତ୍ରା କରିବେ । ୧୨ । ବନ ମଧ୍ୟରେ ନିତ୍ୟନିବାସୀ ବନଚର ବନସ୍ଥ ବନଗୋଚର ବନବାସୀ ମୁନିଗଣ ବନକୁ ଗୁରୁସଦୃଶ ଲାଭ କରି ସେଠାରେ ବସତି କରିବେ । ୧୩ । ସେହି-

ମାନଙ୍କର ହୋମକ୍ରିୟା ଓ ପଞ୍ଚଯଜ୍ଞ ନିଷେବଣ, ବେଦୋକ୍ତ ପଞ୍ଚଯଜ୍ଞର ଭାଗ ଓ ଅନୁପାଳନ ଧର୍ମ । ଅଷ୍ଟକା ଶ୍ରାଦ୍ଧ, ଚାତୁର୍ମାସ୍ୟ ଯାଗ, ଦର୍ଶ ଓ ପୌର୍ଣ୍ଣମାସ୍ୟ ଯାଗ ଓ ନିତ୍ୟଯଜ୍ଞ ଅନୁଷ୍ଠାନ କରିବା ସେମାନଙ୍କର ଧର୍ମ ଅଟେ । ୧୫ ।

ଯେଉଁମାନେ ଦାରପରିଗ୍ରହରୁ ବିମୁକ୍ତ ହୋଇଅଛନ୍ତି ଓ ସର୍ବସଙ୍କରରୁ ବିମୁକ୍ତ ହୋଇ ରହିଅଛନ୍ତି, ସେହି ମୁନିଗଣ ସମସ୍ତ ପାପରୁ ବିମୁକ୍ତ ହୋଇ ବନ ମଧ୍ୟରେ ବିଚରଣ କରନ୍ତି । ୧୬ । ଯେଉଁମାନେ ସର୍ବଦା ଶୁକ୍ଳକୃଷ୍ଣ ସଞ୍ଚୟରେ ନିରତ, ଯେଉଁମାନଙ୍କ ଗୃହରେ ସର୍ବଦା ଅଗ୍ନିତ୍ରୟ ବିଦ୍ୟମାନ, ଯେଉଁ ସମସ୍ତ ସାଧୁଗଣ ସର୍ବଦା ସତ୍ପଥରେ ଅବସ୍ଥାନ କରନ୍ତି, ସେମାନେ ପରମଗତି ପ୍ରାପ୍ତ ହୁଅନ୍ତି । ୧୭ । ସତ୍ୟ ଧର୍ମାବଲମ୍ବୀ ସିଦ୍ଧମୁନିଗଣ ମହାପବିତ୍ର ବ୍ରହ୍ମଲୋକ ଓ ଶାଶ୍ୱତ ସୋମଲୋକକୁ ଗମନ କରନ୍ତି । ୧୮ । ହେ ଶୁଭେ ! ହେ ଦେବି ! ଆମ୍ଭେ ଏହି ମଙ୍ଗଳମୟ ବାନପ୍ରସ୍ଥାଶ୍ରମ ଧର୍ମ, ଯାହା ସ୍ଥୂଳରୂପରେ ସମ୍ପନ୍ନ ହୁଏ, ତାହା ବିସ୍ତାରରୂପେ କୀର୍ତ୍ତନ କଲୁଁ । ୧୯ ।

ଉମା କହିଲେ, ହେ ସର୍ବଭୂତ ନମସ୍କୃତ, ସର୍ବଭୂତେଶ ଭଗବାନ୍ ! ମୁନିବୃନ୍ଦଙ୍କର ସିଦ୍ଧିସମ୍ବନ୍ଧରେ ଯେଉଁ ଧର୍ମ ହୁଏ, ତାହା କୀର୍ତ୍ତନ କରିବା ହେଉନ୍ତୁ । ୨୦ । ଯେଉଁମାନେ ସିଦ୍ଧିବାଦରେ ସୁପ୍ରସିଦ୍ଧ, ବନବାସୀ, ସ୍ୱେଚ୍ଛାଚାରୀ ଓ ଦାରପରିଗ୍ରହକାରୀ, ସେହିମାନଙ୍କର କେଉଁ ପ୍ରକାରେ ଧର୍ମସ୍ମୃତ ହୋଇଅଛି ? ୨୧ । ମହେଶ୍ୱର କହିଲେ, ହେ ଦେବି ! ଯେଉଁମାନେ ତପସ୍ୟାଦ୍ୱାରା ଯଥେଷ୍ଟ ଆଚରଣ କରନ୍ତି, ସେହିମାନଙ୍କର ମୁଣ୍ଡନ ଓ କଷାୟବସ୍ତ୍ରଧାରଣ ବିଧେୟ । ଯେଉଁମାନେ ଦାରପରିଗ୍ରହପୂର୍ବକ ବିହାର କରନ୍ତି, ସେମାନଙ୍କର କୁତ୍ରାପି ରାତିରେ ବାସ କରିବାର ବିଧେୟ ନୁହେ । ୨୨ । ଏହିମାନଙ୍କର ସ୍ୱୈରଗଣଙ୍କସଦୃଶ ସ୍ୱେଚ୍ଛାବିହାର ବିହିତ ନୁହେଁ । ପ୍ରତି ପ୍ରଭାତରେ, ମଧ୍ୟାହ୍ନରେ ଓ ସାୟାହ୍ନ ସମୟରେ ଅଭିଷେକ, ଋଷିକୃତ ଉତ୍କୃଷ୍ଟ ଅଗ୍ନିହୋତ୍ର, ସମାଧି ଓ ସତ୍ପଥରେ ଅବସ୍ଥାନ, ଏବଂ ଯଥୋଦ୍ଦିଷ୍ଟ କାର୍ଯ୍ୟସମୂହର ସମ୍ପାଦନ କରିବାର ବନବାସୀଙ୍କ ଧର୍ମ ଅଟେ । ୨୩ । ପୂର୍ବେ ଯାହା ସବୁ କୀର୍ତ୍ତିତ ହୋଇଅଛି, ତାହା ବନବାସୀ ଋଷିଗଣଙ୍କର ଧର୍ମ ଅଟେ । ନରଗଣ ଯଦି ସେହି ସମସ୍ତ ଧର୍ମସେବା କରନ୍ତି, ତେବେ ମହତ୍ ତପସ୍ୟାର ଫଳ ପ୍ରାପ୍ତ ହୁଅନ୍ତି । ୨୪ ।

ଯେଉଁମାନେ ସ୍ୱଦାରରେ ନିୟତେନ୍ଦ୍ରିୟ ହୋଇ ଦମ୍ପତି-ଧର୍ମାନୁସାରେ କାର୍ଯ୍ୟ କରନ୍ତି ଏବଂ ଋତୁକାଳରେ ଅଭିଗମନଶୀଳ ହୋଇ ପୂର୍ବୋକ୍ତ ବିଧିବହିତ ଧର୍ମ ଆଚରଣ କରନ୍ତି, ସେହି ଧାର୍ମିକଗଣଙ୍କର ଋଷିଗଣ କର୍ତ୍ତୃକ ଆଚରିତ ଧର୍ମ ସୁସମ୍ପନ୍ନ ହୁଏ । ଧର୍ମଦର୍ଶୀ ମାନବଗଣଙ୍କର ସ୍ୱେଚ୍ଛାଚାରିତା-ବଶତଃ କାମସେବା କର୍ତ୍ତବ୍ୟ ନୁହେଁ । ୨୬ । ଯେଉଁ ଜନ ହିଂସାଦୋଷ ବିମୁକ୍ତଚିତ୍ତରେ ସମସ୍ତ ପ୍ରାଣୀଗଣଙ୍କ ବିଷୟରେ ସମ୍ୟକ୍ ରୂପେ ଅଭୟ ଦକ୍ଷିଣା ଦାନ କରନ୍ତି, ସେ ଧାର୍ମିକ । ୨୭ । ଯେ ସର୍ବଭୂତରେ ଦୟା ଓ ସରଳତାବାନ୍ ଏବଂ ଯେଉଁ ବ୍ୟକ୍ତି ସର୍ବଭୂତଙ୍କୁ ଆତ୍ମ ସଦୃଶ ଜ୍ଞାନ କରନ୍ତି, ସେ ଧାର୍ମିକ । ୨୮ । ସମସ୍ତ ବେଦାଧ୍ୟୟନ ଉତ୍ତାରେ ସ୍ନାନ କରିବାର ଏବଂ ସର୍ବଭୂତରେ ସରଳତା ପ୍ରଦର୍ଶନ କରିବାର ଏହି ଉଭୟ ସମାନ ହୋଇ ପାରନ୍ତି ଅଥବା ବେଦସ୍ନାନାପେକ୍ଷା ସରଳତା ଉତ୍କୃଷ୍ଟ ହୋଇ-ପାରେ । ୨୯ ।

ପ୍ରାଚୀନ ପଣ୍ଡିତଗଣ ସରଳତାକୁ ଧର୍ମବୋଲି କହନ୍ତି, କୁଟିଳତାକୁ ଅଧର୍ମ ବୋଲି କହନ୍ତି । ମାନବ ଇହଲୋକରେ ସାରଲ୍ୟସମନ୍ୱିତ ହେଲେ ଧର୍ମଯୁକ୍ତ ହୁଅନ୍ତି ।୩୦। ଯେଉଁ ଜନ ନିରନ୍ତର ସରଳତାରେ ରତ ହୋଇ ଥାଆନ୍ତି, ସେ ଦେବଗଣଙ୍କ ନିକଟରେ ବସତି କରନ୍ତି । ଅତଏବ ଯେଉଁ ବ୍ୟକ୍ତି ଆପଣାର ଧର୍ମ କାମନା କରନ୍ତି, ସେ ସରଳସ୍ୱଭାବ ହେବାର ଉଚିତ ।୩୧। କ୍ଷାନ୍ତ, ଦାନ୍ତ, ଜିତକ୍ରୋଧ, ଧର୍ମମୟ, ସର୍ବଭୂତରେ ଅହିଂସକ, ନିତ୍ୟଧର୍ମ ବିଷୟରେ ନିୟତଚିତ୍ତ ମାନବ ଧର୍ମଯୁକ୍ତ ହୁଅନ୍ତି । ୩୨ । ଯେଉଁ ଧର୍ମାତ୍ମା ଜନ ଅଳସଶୂନ୍ୟ ହୋଇ ଶକ୍ତି ଅନୁସାରେ ସତ୍ପଥ ଆଶ୍ରୟ କରିଅଛନ୍ତି, ନିଜ ଚରିତକୁ ଉତ୍କୃଷ୍ଟ ରୂପେ ରକ୍ଷା କରିଅଛନ୍ତି, ସେହି ଜ୍ଞାନବାନ୍ ବ୍ୟକ୍ତି ବ୍ରହ୍ମସ୍ୱରୂପ ଲାଭ କରିବାକୁ ସମର୍ଥ ହୁଅନ୍ତି । ୩୩ ।

ଉମା କହିଲେ, ହେ ଦେବ ! ଯେଉଁ ସମସ୍ତ ତପୋଧନ ତାପସଗଣ ଆଶ୍ରମ ଧର୍ମରେ ଅନୁରକ୍ତ, ସେମାନେ କାଦୃଶ ଆଚରଣଦ୍ୱାରା ଦୀପ୍ତିମନ୍ତ ହୁଅନ୍ତି ? ୩୪ । ହେ ଭଗବନ୍ ! ଯେଉଁମାନେ ନିର୍ଦ୍ଧନ ଓ ମହାଧନ, ସେମାନେ ଏବଂ ରାଜା ଓ ରାଜପୁତ୍ରଗଣ କେଉଁ ପ୍ରକାର କର୍ମଦ୍ୱାରା ମହାଫଳ-ପ୍ରାପ୍ତ ହୁଅନ୍ତି ? ୩୫ । ହେ ଦେବ ! ସେମାନେ ଅକ୍ଷୟ ସ୍ଥାନକୁ ଗମନ କରି ଦିବ୍ୟଚନ୍ଦନଦ୍ୱାରା ବିଭୂଷିତ ହୋଇ କେଉଁ କର୍ମଦ୍ୱାରା ବନବାସୀ ହୁଅନ୍ତି ? । ୩୬ । ହେ ଦେବ ! ତ୍ରିପୁରନାଶନ ତ୍ରିଲୋଚନ ! ଆମ୍ଭର ଏହି ତପ-ଶ୍ଚର୍ଯ୍ୟାଶ୍ରିତ ଶୁଭସଂଶୟର ବିଷୟସମୂହ ଆପଣ ବିସ୍ତାରକ୍ରମେ ବର୍ଣ୍ଣନ କରିବା ହେଉନ୍ତୁ । ୩୭ ।

ମହେଶ୍ୱର କହିଲେ, ଅହିଂସାନିରତ, ସତ୍ୟବାଦୀ, ଦମନଶୀଳ ନରଗଣ ଅନାମୟ ଓ ସମ୍ୟକ୍‌ସିଦ୍ଧ ହୋଇ ପରଲୋକକୁ ଗମନ କରି ଗନ୍ଧର୍ବଗଣଙ୍କ ସହିତ ପ୍ରମୋଦ ସମ୍ଭୋଗ କରିଥାଆନ୍ତି । ୩୮ । ଯେଉଁ ଧର୍ମାତ୍ମା ମାନବ ଯଥାନ୍ୟାୟରେ ଯଥାବିଧି ମଣ୍ଡୂକଯୋଗ ଶୟନରେ ଶୟାନ ହୋଇ ଦୀକ୍ଷା ଆଚରଣ କରନ୍ତି, ସେ ନାଗଗଣଙ୍କ ସହିତ ପ୍ରମୋଦପ୍ରାପ୍ତ ହୁଅନ୍ତି ।୩୯। ଯେ ଦୀକ୍ଷିତ ଓ ସମାହିତ ହୋଇ ମୃଗଗଣଙ୍କ ସହିତ ମୃଗଗଣକର୍ତ୍ତୃକ ଉତ୍ସୃଷ୍ଟ ଉଚ୍ଛିଷ୍ଟ ଶସ୍ୟସମୂହ ସେବନ କରନ୍ତି, ସେ ଅମରାବତୀପୁରୀକୁ ଗମନ କରନ୍ତି । ୪୦ । ଯେ ଶୈବାଳ ଅଥବା ଶୀର୍ଣ୍ଣପତ୍ର ଭକ୍ଷଣ କରି ତପସ୍ୟା କରନ୍ତି, ଶୀତକ୍ଲେଶସହିଷ୍ଣୁ ହୁଅନ୍ତି, ସେ ଚରମରେ ପରମଗତି ଲାଭ କରନ୍ତି । ୪୧ । ଯେ ବାୟୁ ବା ଫଳମୂଳ ଭକ୍ଷଣ କରି କିମ୍ବା ଜଳମାତ୍ର ପାନ କରି କାଳାତିପାତ କରନ୍ତି, ସେ ଯକ୍ଷଲୋକର ଐଶ୍ୱର୍ଯ୍ୟ ଲାଭକରି ଅପ୍‌ସରାଗଣଙ୍କ ସହିତ ବିହାର କରନ୍ତି । ୪୨ ।

ଯେ ଗ୍ରୀଷ୍ମକାଳରେ ବିଧିବିହିତ କର୍ମଦ୍ୱାରା ଦ୍ୱାଦଶ ବର୍ଷକାଳ ପଞ୍ଚାଗ୍ନିର ମଧ୍ୟସ୍ଥଳରେ ଅବସ୍ଥାନ କରନ୍ତି, ସେ ରାଜା ହୁଅନ୍ତି । ୪୩ । ଯେଉଁ ବ୍ୟକ୍ତି ଦ୍ୱାଦଶ ବର୍ଷ ମୌନାବଲମ୍ବନପୂର୍ବକ ଆହାରର ନିୟମ କରି ଯତ୍ନ ସହକାରେ ମରୁସାଧନ ଅର୍ଥାତ୍ ଜଳପାନ ପରିତ୍ୟାଗ କରନ୍ତି, ସେ ପୃଥିବୀରେ ସମ୍ରାଟ୍ ହୁଅନ୍ତି । ୪୪ । ଯେ ଅନାବୃତପ୍ରଦେଶସ୍ଥ ସ୍ଥଣ୍ଡିଳରେ ନିରାସନରେ ଉପବେଶନପୂର୍ବକ ପ୍ରଫୁଲ୍ଲ ମନରେ ଦ୍ୱାଦଶ ବାର୍ଷିକ ବ୍ରତର ଅନୁଷ୍ଠାନ ପୂର୍ବକ ଅନଶନରେ କଳେବର ପରିତ୍ୟାଗ କରନ୍ତି, ସେ ନିଷ୍ଟୟ ଦେବ-ଲୋକକୁ ଗମନପୂର୍ବକ ସୁଖସମୃଦ୍ଧି ଭୋଗ କରନ୍ତି । ସେ ସ୍ୱର୍ଗଲୋକରେ ବିବିଧଯାନ, ଶୟନ ଓ ମହାର୍ହ ଚନ୍ଦ୍ର ସଦୃଶ ଶୁଭ୍ରବର୍ଣ୍ଣ ଗୃହସମୂହ ଉପ-ଭୋଗ କରନ୍ତି ।

ହେ ଭାମିନି ! ଋଷିଗଣ ଉକ୍ତ ଫଳକୁ ସ୍ଥଣ୍ଡିଳଶୟନର ଫଳ ବୋଲି କହନ୍ତି । ଯେ ନିରନ୍ତର ଆତ୍ମାକୁ ଉପଜୀବ୍ୟ କରି ନିୟତାଶନ ହୋଇ ଅଥବା ଅନଶନଦ୍ୱାରା ଦେହ ପରିହାର କରନ୍ତି, ସେ ସ୍ୱର୍ଗଭୋଗ କରନ୍ତି । ଯେ ଆତ୍ମାକୁ ଉପଜୀବ୍ୟ କରି ଦ୍ୱାଦଶବାର୍ଷିକୀ ଦୀକ୍ଷା ଗ୍ରହଣପୂର୍ବକ ମହାର୍ଣ୍ଣବରେ ଶରୀର ପରିହାର କରନ୍ତି, ସେ ବରୁଣଲୋକରେ ସୁଖସମୂହ ଉପଭୋଗ କରନ୍ତି । ଯେ ଆତ୍ମାକୁ ଉପଜୀବ୍ୟ କରି ଦ୍ୱାଦଶବାର୍ଷିକୀ ଦୀକ୍ଷା ଅବଲମ୍ବନ କରନ୍ତି ଏବଂ ପାଷାଣଦ୍ୱାରା ଚରଣଦ୍ୱୟ ଭେଦ କରନ୍ତି, ସେ ଗୁହ୍ୟକଲୋକରେ ପ୍ରମୋଦପ୍ରାପ୍ତ ହୁଅନ୍ତି । ଯେ ନିର୍ଦ୍ଦ୍ୱନ୍ଦ୍ୱ ଓ ନିଷ୍ପରିଗ୍ରହ

ହୋଇ ଆତ୍ମାଦ୍ୱାରା ଆତ୍ମସାଧନ କରି ଦ୍ୱାଦଶବର୍ଷବ୍ୟାପିନୀ ଏହି ମନୋଗତା ଦୀକ୍ଷା ଆଚରଣପୂର୍ବକ ସ୍ୱର୍ଗଲୋକ ପ୍ରାପ୍ତ ହୁଅନ୍ତି, ସେ ଦେବଗଣଙ୍କ ସହିତ ପ୍ରମୋଦ ସମ୍ଭୋଗ କରନ୍ତି । ୫୧ । ଯେ ଆତ୍ମାକୁ ଉପଜୀବ୍ୟ କରି ଦ୍ୱାଦଶ-ବାର୍ଷିକୀ ଦୀକ୍ଷା ଗ୍ରହଣପୂର୍ବକ ଅଗ୍ନିରେ ଦେହ ବିସର୍ଜନ କରନ୍ତି, ସେ ବହ୍ନି-ଲୋକରେ ବସତି କରନ୍ତି । ୫୨ ।

ହେ ଦେବ ! ଯେଉଁ ଦ୍ୱିଜ ଯଥାନ୍ୟାୟରେ ଦୀକ୍ଷିତ ଓ ସଂଯତ ହୋଇ ଆତ୍ମାରେ ଆତ୍ମ ସମାଧାନ କରି ନିର୍ମମ ଓ ଧର୍ମଲାଲସ ହୁଅନ୍ତି ଏବଂ ଦ୍ୱାଦଶ ବର୍ଷ ଏହି ମନୋଗତା ଦୀକ୍ଷା ଆଚରଣ କରି ତରୁସ୍କନ୍ଧରେ ଅରଣୀ ସହିତ ଅଗ୍ନି ବିସର୍ଜନପୂର୍ବକ ଅନାବୃତ ହୋଇ ଗମନ କରନ୍ତି, ସେ ବୀର-ପଥରେ ଗମନପୂର୍ବକ ନିରନ୍ତର ବୀରାସନଗତି ଲାଭ କରି ସର୍ବଦା ବୀର ସ୍ଥାନରେ ଅବସ୍ଥାନ କରି ବୀର ଗତିକୁ ପ୍ରାପ୍ତ ହୁଅନ୍ତି । ସେ ଇନ୍ଦ୍ରଲୋକକୁ ଗମନ କରି ସର୍ବଦା ସର୍ବକାମଦ୍ୱାରା ପୁରସ୍କୃତ ହୁଅନ୍ତି ଏବଂ ଦିବ୍ୟପୁଷ୍ପ-ସମୂହଦ୍ୱାରା ସମାକୀର୍ଣ୍ଣ ଓ ଦିବ୍ୟଚନ୍ଦନଦ୍ୱାରା ବିଭୂଷିତ ହୁଅନ୍ତି । ୫୩ । ସେହି ଧର୍ମାତ୍ମା ନିତ୍ୟ ଦିବଲୋକରେ ଦେବଗଣଙ୍କ ସହିତ ସୁଖରେ ବସତି କରନ୍ତି । ବୀରଲୋକଗତ ବୀରପୁରୁଷ, ସର୍ବଦା ବୀରଯୋଗ ବହନ କରନ୍ତି । ୫୭ ।

ଯେ ସତ୍ତ୍ୱସ୍ଥ ହୋଇ ସମସ୍ତ ପରିତ୍ୟାଗପୂର୍ବକ ସର୍ବଦା ଶୁଚି ଥାଇ ଦୀକ୍ଷିତ ହୁଅନ୍ତି ଏବଂ ବୀରପଥକୁ ଗମନ କରନ୍ତି, ସେ ସନାତନ ଲୋକସମୂହ ପ୍ରାପ୍ତ ହୁଅନ୍ତି । ୫୮ । ସେ ଇଚ୍ଛାନୁସାରେ କାମଗାମୀ ବିମାନରେ ବିଚରଣ କରନ୍ତି ଏବଂ ସେହି ଶ୍ରୀମାନ୍ ମାନବ ନିରାମୟ ହୋଇ ଇନ୍ଦ୍ରଲୋକକୁ ଗମନ-ପୂର୍ବକ ପ୍ରମୋଦ ଲାଭ କରନ୍ତି । ୫୯ ।

---

## ଅଧ୍ୟାୟ—୧୪୩

ଉମା କହିଲେ—ହେ ଭଗବନ୍ ! ଆପଣ ସୂର୍ଯ୍ୟଙ୍କ ଉଗ୍ର ନେତ୍ର ବିନାଶ କରିଅଛନ୍ତି ଓ ଦନ୍ତ ଉତ୍ପାଟନ କରିଅଛନ୍ତି ଏବଂ ଦକ୍ଷଙ୍କ ଯଜ୍ଞ ଧ୍ୱଂସ କରିଅଛନ୍ତି । ଆପଣଙ୍କ ସଦୃଶ କ୍ଷମତାଶାଳୀ ଅନ୍ୟ କେହି ନାହାନ୍ତି । ହେ ତ୍ରିଲୋଚନ ! ଆମ୍ଭର ଏହି ସୁମହାନ୍ ସଂଶୟ ଉପସ୍ଥିତ ହୋଇଅଛି ଯେ, ଭଗବାନ୍ ସ୍ୱୟମ୍ଭୂ ପ୍ରଥମରେ ବର୍ଣ୍ଣଚତୁଷ୍ଟୟର ସୃଷ୍ଟି କରିଅଛନ୍ତି । ତନ୍ମଧ୍ୟରେ

ବୈଶ୍ୟ କେଉଁ କର୍ମବିପାକଦ୍ୱାରା ଶୂଦ୍ରତ୍ୱ ପ୍ରାପ୍ତ ହୁଅନ୍ତି ? ୨ । କ୍ଷତ୍ରିୟ ବୈଶ୍ୟ ହୁଅନ୍ତି, ବ୍ରାହ୍ମଣ ବା କ୍ଷତ୍ରିୟ ହୁଅନ୍ତି ? ହେ ଦେବ ! ପ୍ରତିଲୋମଗତ ଧର୍ମ କେଉଁ ପ୍ରକାରରେ ନିର୍ବାହ ହୋଇପାରେ ? ୩ । ହେ ବିଭୋ ! ବ୍ରାହ୍ମଣ କେଉଁ କର୍ମଦ୍ୱାରା ଶୂଦ୍ରଯୋନିରେ ଜନ୍ମପରିଗ୍ରହ କରନ୍ତି ଏବଂ କ୍ଷତ୍ରିୟ କେଉଁ କର୍ମଦ୍ୱାରା ଶୂଦ୍ରତ୍ୱ ପ୍ରାପ୍ତ ହୁଅନ୍ତି ? ଭୂତପତେ ! ଅନଘଦେବ ! ଆପଣ ଆମ୍ଭର ଏହି ସଂଶୟ ଅପନୋଦନ କରିବା ହେଉନ୍ତୁ । ଇହଲୋକରେ ବ୍ରାହ୍ମଣାଦି ବର୍ଣ୍ଣତ୍ରୟ ସ୍ୱଭାବତଃ କେଉଁ ପ୍ରକାରରେ ବ୍ରାହ୍ମଣତ୍ୱ ପ୍ରାପ୍ତ ହୁଅନ୍ତି ? ୪ ।

ମହେଶ୍ୱର କହିଲେ, ହେ ଦେବି ! ବ୍ରାହ୍ମଣଙ୍କର ସ୍ୱଭାବ ବ୍ୟତିରେକେ ବ୍ରାହ୍ମଣ୍ୟଲାଭ ଅତି ଦୁଷ୍ପ୍ରାପ୍ୟ । କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏମାନେ ସ୍ୱଭାବ ଅନୁସାରେ ହୁଅନ୍ତି ବୋଲି ଆମ୍ଭେ ବିବେଚନାରେ ସିଦ୍ଧ କରିଅଛୁଁ । ୬ । ବ୍ରାହ୍ମଣ ଉତ୍କୃଷ୍ଟ ବର୍ଣ୍ଣ ପ୍ରାପ୍ତ ହେଲେ ସୁଦ୍ଧା ଦୁଷ୍କୃତ କର୍ମବଶତଃ ସ୍ଥାନଭ୍ରଷ୍ଟ ହୁଅନ୍ତି ; ଅତଏବ ବ୍ରାହ୍ମଣଙ୍କୁ ସର୍ବଦା ରକ୍ଷା କରିବାର ଉଚିତ । ୭ । କ୍ଷତ୍ରିୟ ଅଥବା ବୈଶ୍ୟ ବ୍ରାହ୍ମଣ ଧର୍ମରେ ଅବସ୍ଥିତ ହୋଇ ଯଦି ବ୍ରାହ୍ମଣ୍ୟ ଉପଜୀବ୍ୟ କରନ୍ତି, ତେବେ ବ୍ରହ୍ମତ୍ୱ ପ୍ରାପ୍ତ ହୁଅନ୍ତି । ୮ । ଯେ ବ୍ରାହ୍ମଣତ୍ୱ ପରିତ୍ୟାଗ କରି କ୍ଷତ୍ରିୟ ଧର୍ମକୁ ସେବା କରନ୍ତି, ସେ ବ୍ରାହ୍ମଣତ୍ୱରୁ ପରିଭ୍ରଷ୍ଟ ହୋଇ କ୍ଷତ୍ରିୟଯୋନିରେ ଜନ୍ମଲାଭ କରନ୍ତି । ୯ । ଯେଉଁ ଅଳ୍ପବୁଦ୍ଧି ବିପ୍ର ଦୁର୍ଲ୍ଲଭ ବ୍ରାହ୍ମଣତ୍ୱ ଲାଭ କରି ସୁଦ୍ଧା, ଲୋଭ ମୋହର ବଶୀଭୂତ ହୋଇ ସର୍ବଦା ବୈଶ୍ୟଙ୍କ କର୍ମ କରନ୍ତି, ସେହି ବ୍ରାହ୍ମଣ ବୈଶ୍ୟତ୍ୱ ପ୍ରାପ୍ତ ହୁଅନ୍ତି । ୧୦ । କ୍ଷତ୍ରିୟ ବୈଶ୍ୟ କର୍ମଦ୍ୱାରା ବୈଶ୍ୟତ୍ୱ ପ୍ରାପ୍ତ ହୁଅନ୍ତି ଓ ବୈଶ୍ୟ ମଧ୍ୟ ଶୂଦ୍ର କର୍ମ କଲେ ଶୂଦ୍ର ହୁଅନ୍ତି ; ବ୍ରାହ୍ମଣ ସ୍ୱଧର୍ମରୁ ପରିଭ୍ରଷ୍ଟ ହେଲେ ଶୂଦ୍ରତ୍ୱ ପ୍ରାପ୍ତ ହୁଅନ୍ତି । ୧୧ । ଶୂଦ୍ର ହୋଇ ବର୍ଣ୍ଣଭ୍ରଷ୍ଟ ହେଲେ ସର୍ବବହିଷ୍କୃତ ଓ ନିରୟଗାମୀ ହୁଅନ୍ତି; ବ୍ରାହ୍ମଣ ବ୍ରହ୍ମଲୋକରୁ ପରିଭ୍ରଷ୍ଟ ହୋଇ ଶୂଦ୍ର ଯୋନିରେ ଜନ୍ମପରିଗ୍ରହ କରନ୍ତି । ୧୨ ।

ହେ ମହାଭାଗେ ଧର୍ମଚାରିଣି ! କ୍ଷତ୍ରିୟ ଅଥବା ବୈଶ୍ୟ ଯଦି ସ୍ୱୀୟ କର୍ମ ପରିହାରପୂର୍ବକ ଶୂଦ୍ରର କର୍ମ ଆଚରଣ କରନ୍ତି, ତେବେ ସେ ସ୍ୱସ୍ଥାନରୁ ବିଚ୍ୟୁତ ହୋଇ ବର୍ଣ୍ଣସଙ୍କର ହୁଅନ୍ତି । ତାଦୃଶ ବ୍ରାହ୍ମଣ, କ୍ଷତ୍ରିୟ ଅଥବା ବୈଶ୍ୟ ଶୂଦ୍ରତ୍ୱ ପ୍ରାପ୍ତ ହୁଅନ୍ତି । ଯେ ଧର୍ମଦ୍ୱାରା ବୋଧଯୁକ୍ତ ହୁଅନ୍ତି, ଯେ ଜ୍ଞାନ ଓ ବିଜ୍ଞାନସମ୍ପନ୍ନ ଅଟନ୍ତି ଓ ଯେ ଶୁଚିଧର୍ମଜ୍ଞ ଓ ଧର୍ମନିରତ ହୁଅନ୍ତି, ସେ ଧର୍ମଫଳ ଭୋଗ କରନ୍ତି । ୧୫ । ହେ ଦେବି ! ଆମ୍ଭେ ଯାହା

କହିଲେଁ, ତାହା ଓ ଅନ୍ୟାନ୍ୟ ବିଷୟ ବ୍ରହ୍ମା ସ୍ୱୟଂ କୀର୍ତ୍ତନ କରିଅଛନ୍ତି, ଧର୍ମକାମ ସାଧୁଗଣ ଏହି ନୈଷ୍ଠିକ ଅଧ୍ୟାତ୍ମ ବିଷୟ ଆଚରଣ କରନ୍ତି ।

ହେ ଦେବ ! ଉଗ୍ର ଜାତିର ଅନ୍ନ ଅତି ଗର୍ହିତ, ବହୁଜନଙ୍କ ଆହାରାର୍ଥ ପରିପକ୍ୱ ଅନ୍ନ, ଆଦ୍ୟଶ୍ରାଦ୍ଧୀୟ ଅନ୍ନ, ଅଶୌଚାନ୍ନ, ଦୂଷିତାନ୍ନ ଓ ଶୂଦ୍ରାନ୍ନ କଦାପି ଭୋଜନ କରିବାର ଉଚିତ ନୁହେଁ । ୧୭ । ହେ ଦେବ ! ମହାନୁଭବ ଦେବଗଣ ଶୂଦ୍ରାନ୍ନକୁ ସର୍ବଦା ଗର୍ହିତ ଜ୍ଞାନ କରନ୍ତି, ଏହି ବିଷୟରେ ପିତାମହଙ୍କ ମୁଖରୁ ସମୁଚ୍ଚାରିତ ପ୍ରମାଣବାକ୍ୟ ଦ୍ୱାରା ଆମ୍ଭେ ବିବେଚନା କରୁଅଛୁଁ । ୧୮ । ଯେଉଁ ଆହିତାଗ୍ନି ଯାଜ୍ଞିକବ୍ରାହ୍ମଣ ଜଠରରେ ଅବଶିଷ୍ଟ ଶୂଦ୍ରାନ୍ନ ସତ୍ତ୍ୱେ ପଞ୍ଚତ୍ୱ ପ୍ରାପ୍ତ ହୁଅନ୍ତି, ସେ ଶୂଦ୍ରଗତି ଲାଭ କରନ୍ତି । ୧୯ । ଅବଶିଷ୍ଟ ଶୂଦ୍ରାନ୍ନ ଜଠରରେ ଥିବା ହେତୁରୁ ବ୍ରାହ୍ମଣ ବ୍ରହ୍ମସ୍ଥାନରୁ ବିଚ୍ୟୁତ ହୋଇ ଶୂଦ୍ରତ୍ୱ ପ୍ରାପ୍ତ ହୁଅନ୍ତି । ତଦ୍‌ବିଷୟରେ ବିଚାରଣା ନାହିଁ । ୨୦ । ଅବଶିଷ୍ଟ ଅନ୍ନ ଗର୍ଭରେ ଥିବା ସମୟରେ ଯେଉଁ ବ୍ରାହ୍ମଣ ପରିତ୍ୟାଗ କରନ୍ତି, ସେ ଯାହାଙ୍କ ଅନ୍ନକୁ ଉପଜୀବ୍ୟ କରି ଥାଆନ୍ତି, ତଜ୍ଜାତୀୟ ଯୋନିରେ ଜନ୍ମଗ୍ରହଣ କରନ୍ତି । ୨୧ ।

ଯେ ଦୁର୍ଲ୍ଲଭ ପବିତ୍ର ବ୍ରାହ୍ମଣତ୍ୱ ଲାଭ କରି ତାହାକୁ ଅବଜ୍ଞା କରନ୍ତି ଏବଂ ଅଭୋଜ୍ୟ ଅନ୍ନ ଭୋଜନ କରନ୍ତି ସେ ଦ୍ୱିଜତ୍ୱରୁ ପତିତ ହୁଅନ୍ତି । ୨୨ । ସୁରାପାୟୀ, ବ୍ରହ୍ମହା, କ୍ଷୁଦ୍ରାଶୟ, ଚୌର, ଭଗ୍ନବ୍ରତ, ଅଶୁଚି, ବେଦପାଠ-ବିବର୍ଜ୍ଜିତ, ପାପାଚାର, ଲୁବ୍‌ଧ, ଶଠତାପରାୟଣ, ଶଠ, ଅବ୍ରତୀ, ବୃଷଳୀ-ପତି, କୁଣ୍ଡାଶୀ ଅର୍ଥାତ୍ ଯେଉଁ ବ୍ୟକ୍ତି ପାକପାତ୍ରରେ ଭୋଜନ କରନ୍ତି, ସୋମବିକ୍ରୟୀ ଏବଂ ହୀନଜନସେବୀ ବିପ୍ର ବ୍ରହ୍ମଯୋନିରୁ ପରିଭ୍ରଷ୍ଟ ହୁଅନ୍ତି । ୨୪ । ଯେ ଗୁରୁପତ୍ନୀ ହରଣ କରନ୍ତି, ଗୁରୁଙ୍କଠାରେ ଦ୍ୱେଷ କରନ୍ତି ଏବଂ ଗୁରୁଙ୍କ ନିନ୍ଦା କରିବାରେ ଅନୁରକ୍ତ ଥାଆନ୍ତି, ସେହି ବ୍ରାହ୍ମଣ ବ୍ରହ୍ମଜ୍ଞାନୀ କିମ୍ବା ବ୍ରହ୍ମଜ୍ଞାନମାନଙ୍କ ଅପେକ୍ଷା ଅତି ଶ୍ରେଷ୍ଠ ହୋଇଥିଲେ ସୁଦ୍ଧା ବ୍ରହ୍ମଯୋନିରୁ ପରିଭ୍ରଷ୍ଟ ହୁଅନ୍ତି । ୨୫ ।

ହେ ଦେବ ! ଏହି ସମସ୍ତ ପବିତ୍ର କାର୍ଯ୍ୟ ଓ ପବିତ୍ର ଆଚରଣ-ଦ୍ୱାରାଁ ଶୂଦ୍ର ବ୍ରାହ୍ମଣ ହୁଅନ୍ତି ଏବଂ ବୈଶ୍ୟ ମଧ୍ୟ କ୍ଷତ୍ରିୟତ୍ୱ ପ୍ରାପ୍ତ ହୁଅନ୍ତି ।୨୬। ଶୂଦ୍ର ସର୍ବଦା ସତ୍‌ପଥରେ ଅବସ୍ଥାନ କରି ବିମନା ନ ହୋଇ ଯଥାନ୍ୟାୟରେ ଓ ବିଧି ଅନୁସାରେ ପ୍ରଯତ୍ନପୂର୍ବକ ଜ୍ୟେଷ୍ଠ ବର୍ଣ୍ଣଙ୍କ ଶୁଶ୍ରୂଷା ଓ ପରିଚର୍ଯ୍ୟା କରିବେ । ଏହା ଶୂଦ୍ରମାନଙ୍କର ନିର୍ଦ୍ଦିଷ୍ଟ କର୍ମ ଅଟେ । ଦେବ ଓ ଦ୍ୱିଜ-ଗଣଙ୍କ ସମ୍ମାନକାରଣ, ସମସ୍ତଙ୍କ ଆତିଥ୍ୟ କରିବା ନିମିତ୍ତ ବ୍ରତପରାୟଣ,

ଋତୁସ୍ନାନ ଉତ୍ତାରେ ପତ୍ନୀର ସହବାସକାରୀ, ନିୟତ ନିୟମିତଭୋଜୀ, ସ୍ୱୟଂଶୁଚି ଓ ଶୁଚିବ୍ୟକ୍ତିମାନଙ୍କ ଅନ୍ୱେଷଣକାରୀ, ପରିଜନଗଣଙ୍କ ଆହାର ଉତ୍ତାରେ ଯେ ଆହାର କରନ୍ତି, ଯେ ବୃଥା ମାଂସ ଭୋଜନ ନ କରନ୍ତି ଅର୍ଥାତ୍ ପରିତ୍ୟାଗ କରନ୍ତି, ସେହି ଶୂଦ୍ର ପରଜନ୍ମରେ ବୈଶ୍ୟତ୍ୱ ପ୍ରାପ୍ତ ହୁଅନ୍ତି ।

ବୈଶ୍ୟ ଯଦି ସତ୍ୟବାଦୀ, ନିରହଙ୍କାର, ନିର୍ଦ୍ୱନ୍ଦ୍ୱ, ଶାନ୍ତିକୋବିଦ, ବେଦାଧ୍ୟୟନନିରତ ଓ ଶୁଚି ହୋଇ ଯଜ୍ଞଦ୍ୱାରା ଦେବାର୍ଚ୍ଚନା କରନ୍ତି ଏବଂ ଯେ ଦାନ୍ତ ଓ ଦ୍ୱିଜଗଣଙ୍କର ସମ୍ମାନ କରନ୍ତି, ସର୍ବବର୍ଣ୍ଣର ପୁଷ୍ଟିସାଧକ ହୁଅନ୍ତି ଏବଂ ଗାର୍ହସ୍ଥ୍ୟ ଧର୍ମ ଅବଲମ୍ବନ କରି ନିର୍ଦ୍ଦିଷ୍ଟ ଦୁଇ ସମୟରେ ସମସ୍ତଙ୍କ ଭୋଜନ ଉତ୍ତାରେ ସ୍ୱୟଂ ଭୋଜନ କରନ୍ତି, କାମନା ପରିତ୍ୟାଗୀ ହୋଇ ଅଗ୍ନିହୋତ୍ରର ଅନୁଷ୍ଠାନ କରନ୍ତି, ଅତିଥିସତ୍କାର ଓ ଗାର୍ହପତ୍ୟାଦି ଅଗ୍ନିତ୍ରୟର ଉପାସନା କରନ୍ତି, ତେବେ ସେ ଅତି ପବିତ୍ର କ୍ଷତ୍ରିୟ କୁଳରେ ଜନ୍ମପରିଗ୍ରହ କରନ୍ତି । ୩୪ । ସେହି ବୈଶ୍ୟ କ୍ଷତ୍ରିୟକୁଳରେ ଜନ୍ମ ପରିଗ୍ରହ କରି ଯଦି ଜନ୍ମାବଧି ସମସ୍ତ ସଂସ୍କାରଦ୍ୱାରା ସଂସ୍କୃତ ହୋଇ ବ୍ରତ ଓ ଭୂରିଦକ୍ଷିଣ ଯଜ୍ଞର ଅନୁଷ୍ଠାନ, ଦାନ, ଅଧ୍ୟୟନ, ଗାର୍ହପତ୍ୟାଦି ଅଗ୍ନିତ୍ରୟର ଉପାସନା, ଆର୍ତ୍ତ ବ୍ୟକ୍ତିମାନଙ୍କୁ ସାହାଯ୍ୟଦାନ, ଧର୍ମାନୁସାରେ ପ୍ରଜାପାଳନ, ସତ୍ୟବାକ୍ୟ ପ୍ରୟୋଗ, ସତ୍ୟକାର୍ଯ୍ୟର ଅନୁଷ୍ଠାନ, ଧର୍ମାନୁସାରେ ଦଣ୍ଡବିଧାନ, ଧର୍ମକାର୍ଯ୍ୟ ବିଷୟରେ ଉପଦେଶ ପ୍ରଦାନ, ବିବିଧ ସତ୍କାର୍ଯ୍ୟର ଅନୁଷ୍ଠାନ, ପ୍ରଜାମାନଙ୍କ ଶସ୍ୟର ଷଷ୍ଠାଂଶ ଗ୍ରହଣ, ପରସ୍ତ୍ରୀଗମନ ବାସନା ପରିତ୍ୟାଗ, ଋତୁସ୍ନାନ ଉତ୍ତାରେ ପତ୍ନୀଙ୍କ ନିକଟକୁ ଗମନ, ଦିବସରେ ଏକବାର ଓ ରଜନୀଯୋଗରେ ଏକବାର ଆହାର, ବେଦାଧ୍ୟୟନ, ଅଗ୍ନିହୋତ୍ରଗୃହରେ କୁଶ ଉପରେ ଶୟନ, ସମାହିତ ଚିତ୍ତରେ ତ୍ରିବର୍ଗର ସେବା, ଅନ୍ନାର୍ଥୀ ଶୂଦ୍ରମାନଙ୍କୁ ଅନ୍ନଦାନ, ପିତୃଲୋକ, ଦେବତା ଓ ଅତିଥିଗଣଙ୍କ ତୃପ୍ତି-ସାଧନ, ସ୍ୱୀୟ ଗୃହରେ ଅତିଥି ସଦୃଶ ଭୈକ୍ଷ୍ୟ ଉପାସନା, ତ୍ରିକାଳରେ ଆହୁତି ପ୍ରଦାନ ଏବଂ ଗୋବ୍ରାହ୍ମଣମାନଙ୍କ ଜୀବନ ରକ୍ଷା ନିମିତ୍ତ ସମରାଙ୍ଗଣରେ ପ୍ରାଣତ୍ୟାଗ କରନ୍ତି, ତେବେ ସେ ସ୍ୱୀୟ କର୍ମ ପ୍ରଭାବରେ ପରଜନ୍ମରେ ଅନାୟାସରେ ବ୍ରାହ୍ମଣକୁଳରେ ଜନ୍ମପରିଗ୍ରହ କରି ବିଜ୍ଞାନ ଓ ବେଦଶାସ୍ତ୍ରରେ ବିଲକ୍ଷଣ ପାରଦର୍ଶୀ ହୁଅନ୍ତି । ୪୫ ।

ହେ ଦେବି ! ଏହି ସମସ୍ତ କର୍ମଫଳଦ୍ୱାରା ନ୍ୟୂନଜାତିକୁଳୋଦ୍ଭବ ଆଗମସମ୍ପନ୍ନ ଶୂଦ୍ର ସଂସ୍କାରଯୁକ୍ତ ଦ୍ୱିଜ ହୁଅନ୍ତି । ୪୬ । ବ୍ରାହ୍ମଣ ମଧ୍ୟ

ଅସଦ୍‌ବୃତ୍ତ ଏବଂ ସର୍ବସଙ୍କର ଜାତିର ଅନ୍ନଭୋଜନ କଲେ, ବ୍ରାହ୍ମଣତ୍ୱ ପରିତ୍ୟାଗପୂର୍ବକ ଶୂଦ୍ର ହୁଅନ୍ତି । ୪୭ । ହେ ଦେବି ! ଶୁଦ୍ଧଚିତ୍ତ, ଜିତେନ୍ଦ୍ରିୟ ଶୂଦ୍ର ମଧ୍ୟ ପବିତ୍ର କର୍ମଦ୍ୱାରା ଦ୍ୱିଜସଦୃଶ ସେବ୍ୟ ହୁଅନ୍ତି, ଏହି କଥା ସ୍ୱୟଂ ବ୍ରହ୍ମା କହିଅଛନ୍ତି । ୪୮ । ଯେଉଁ ଶୂଦ୍ର ପବିତ୍ର ସ୍ୱଭାବ ଓ ପବିତ୍ର କର୍ମ କରି ଦିନହରଣ କରନ୍ତି, ଆମ୍ଭେ ତାହାଙ୍କୁ ଦ୍ୱିଜ ଅପେକ୍ଷା ଉତ୍କୃଷ୍ଟ ଜ୍ଞାନ କରୁଁ । ୪୯ । ବ୍ରାହ୍ମଣତ୍ୱ ବିଷୟରେ ଯୋନି କାରଣ ନୁହେଁ, ସଂସ୍କାର କାରଣ ନୁହେଁ, ଶାସ୍ତ୍ରଜ୍ଞାନ କାରଣ ନୁହେଁ, ଏବଂ ସନ୍ତତି କାରଣ ନୁହେଁ, କେବଳ ପବିତ୍ର ଚରିତ୍ର କାରଣ ଅଟେ । ୫୦ । ଲୋକମଧ୍ୟରେ ସମସ୍ତ ବ୍ରାହ୍ମଣ କେବଳ ଚରିତ୍ରଦ୍ୱାରା ପ୍ରତିଷ୍ଠିତ ହୁଅନ୍ତି, ସଚ୍ଚରିତ୍ର ସମ୍ପନ୍ନ ଶୂଦ୍ର ମଧ୍ୟ ବ୍ରାହ୍ମଣତ୍ୱ ପ୍ରାପ୍ତ ହୋଇପାରନ୍ତି । ୫୧ ।

ହେ ସୁଶ୍ରୋଣି ! ଆମ୍ଭ ମତରେ ବ୍ରହ୍ମଜ୍ଞାନ ସମସ୍ତଙ୍କ ପକ୍ଷରେ ସମାନ । ଯାହାଙ୍କ ହୃଦୟରେ ନିର୍ଗୁଣ ନିର୍ମଳ ବ୍ରହ୍ମଙ୍କ ଭାବ ପ୍ରକାଶିତ ହୁଏ, ସେ ବ୍ରାହ୍ମଣ ବରଦାତା । ୫୨ । ଲୋକସ୍ରଷ୍ଟା ବ୍ରହ୍ମା ସ୍ୱୟଂ କହିଅଛନ୍ତି ଯେ, ବ୍ରାହ୍ମଣାଦି ବର୍ଣ୍ଣଭେଦ କେବଳ ଶ୍ରେଣୀବିଭାଗ, ସର୍ବଲୋକର ଗତି ସ୍ୱରୂପ, ବେଦପରାୟଣ ବ୍ରହ୍ମଜ୍ଞାନନିରତ ବ୍ରାହ୍ମଣଚରଣବିଶିଷ୍ଟ ଜଙ୍ଗମ କ୍ଷେତ୍ରସ୍ୱରୂପ; ହେ ଭାବିନି ! ସେହି କ୍ଷେତ୍ରରେ ବୀଜ ବପନ କଲେ ପର-ଲୋକରେ ନିଶ୍ଚୟ ତାହାର ଫଳଲାଭ ହୁଏ । ୫୪ ।

ବ୍ରାହ୍ମଣ ସର୍ବଦା ବିଘସାଶୀ ଓ ସତ୍‌ପଥାବଲମ୍ବୀ ହେବେ ଏବଂ ଯେ ଐଶ୍ୱର୍ଯ୍ୟ କାମନା କରନ୍ତି, ତାହାଙ୍କର ବ୍ରହ୍ମପଦ ଅବଲମ୍ବନପୂର୍ବକ କାଳ-ଯାପନ କରିବାର ଉଚିତ । ୫୫ । ଗୃହମେଧି ମନୁଜଙ୍କର ଗୃହରେ ସଂହିତା ଅଧ୍ୟୟନ କରିବାର ବିଧେୟ । ନିରନ୍ତର ସ୍ୱାଧ୍ୟାୟନିରତ ହେବା ଉଚିତ କିନ୍ତୁ ଅଧ୍ୟୟନକୁ କେବଳ ଉପଜୀବ୍ୟ କରିବେ ନାହିଁ । ୫୬ । ଯେଉଁ ବିପ୍ର ଏହି ପ୍ରକାରରେ ସର୍ବଦା ସତ୍‌ପଥରେ ଅବସ୍ଥିତ ହୁଅନ୍ତି ଏବଂ ଆହିତାଗ୍ନି ହୋଇ ଅଧ୍ୟୟନ କରନ୍ତି, ସେ ବ୍ରହ୍ମ ସ୍ୱରୂପଲାଭ କରିବାକୁ ସମର୍ଥ ହୁଅନ୍ତି ।୫୭। ହେ ଦେବି ! ଶୁଚିସ୍ମିତେ ! ଯତଚିତ୍ତ ବ୍ରାହ୍ମଣ ଦୁର୍ଲ୍ଲଭ ବ୍ରାହ୍ମଣତ୍ୱ ଲାଭ କରି ଶୂଦ୍ରାଦି ନୀଚଜାତିଙ୍କ ସଂସର୍ଗ ପରିତ୍ୟାଗ, ଦାନ ପ୍ରତିଗ୍ରହରେ ଅସ୍ୱୀକାର ଓ ବିବିଧ ସତ୍‌କାର୍ଯ୍ୟର ଅନୁଷ୍ଠାନଦ୍ୱାରା ଯତ୍ନପୂର୍ବକ ତାହା ରକ୍ଷା କରିବାର ଉଚିତ । ୫୮ । ହେ ଦେବି ! ଶୂଦ୍ର ଯେଉଁପରି ଧର୍ମଭ୍ରଷ୍ଟ ହୋଇ ଶୂଦ୍ରତ୍ୱ ଲାଭ କରନ୍ତି, ଏହି ଗୁହ୍ୟବିଷୟ ଆମ୍ଭେ ତୁମ୍ଭ ନିକଟରେ କୀର୍ତ୍ତନ କଲୁଁ । ୫୯ ।

---

# ଅଧ୍ୟାୟ—୧୪୪

ଉମା କହିଲେ—ହେ ସୁରାସୁର ନମସ୍କୃତ ସର୍ବଭୂତେଶ ଦେବ ଭଗବନ୍ ! ହେ ବିଭୋ ! ନରଗଣଙ୍କର ଧର୍ମାଧର୍ମ କୀର୍ତ୍ତନ କରିବା ହେଉନ୍ତୁ । ଏହି ବିଷୟରେ ଆମ୍ଭର ସଂଶୟ ଅଛି । ୧ । ମାନବଗଣ କାର୍ଯ୍ୟ, ମନ ଓ ବାକ୍ୟ ପ୍ରଭାବରେ କେତେବେଳେ ବନ୍ଧନଯୁକ୍ତ ଓ କେତେବେଳେ ଉକ୍ତ ବନ୍ଧନରୁ ବିମୁକ୍ତ ହୋଇଥାଆନ୍ତି ? ୨ । ହେ ଦେବ ! ନରଗଣ ଇହ-ଲୋକରେ କେଉଁ ପ୍ରକାର ଚରିତ୍ର, କୀଦୃଶ କର୍ମ ଏବଂ କେଉଁ ପ୍ରକାର ଗୁଣା-ଗୁଣ ଦ୍ୱାରା ସ୍ୱର୍ଗକୁ ଗମନ କରନ୍ତି ? ୩ ।

ମହେଶ୍ୱର କହିଲେ, ହେ ଧର୍ମାର୍ଥତତ୍ତ୍ୱଜ୍ଞେ ! ଧର୍ମନିରତେ ! ଦମ-ନିରତେ ! ଦେବି ! ତୁମ୍ଭେ ଯେଉଁ ପ୍ରଶ୍ନ କରିଅଛ, ତାହା ସର୍ବପ୍ରାଣୀଙ୍କର ହିତକର ଓ ବୁଦ୍ଧିବର୍ଦ୍ଧନ ଅଟେ; ଅତଏବ ତଦ୍‌ବିଷୟର ଉତ୍ତର ଶ୍ରବଣ କର । ୪ । ସତ୍ୟଧର୍ମରତ ସର୍ବ ଆଶ୍ରମ ଲିଙ୍ଗ ବିବର୍ଜିତ ଯେଉଁ ସମସ୍ତ ସାଧୁଗଣ ଧର୍ମଲବ୍‌ଧ ଅର୍ଥ ଭୋଗ କରନ୍ତି, ସେହି ସମସ୍ତ ନରଗଣ ସ୍ୱର୍ଗକୁ ଗମନକରନ୍ତି । ଯେଉଁମାନଙ୍କର ସଂଶୟଚ୍ଛେଦ ହୋଇଅଛି, ସେମାନେ ଧର୍ମ ବା ଅଧର୍ମଦ୍ୱାରା ବଦ୍ଧ ହୁଅନ୍ତି ନାହିଁ । ପ୍ରଳୟ ଓ ଉତ୍ପତ୍ତିର ତତ୍ତ୍ୱଜ୍ଞାତା ସର୍ବଜ୍ଞ ସର୍ବଦର୍ଶୀ ବୀତରାଗ ପୁରୁଷଗଣ କର୍ମବନ୍ଧନରୁ ବିମୁକ୍ତ ହୁଅନ୍ତି । ଯେଉଁମାନେ ବାକ୍ୟମନକର୍ମଦ୍ୱାରା କାହାକୁ ହିଂସା କରନ୍ତି ନାହିଁ, ମନେ ମନେ କୌଣସି ବିଷୟରେ ଆସକ୍ତ ହୁଅନ୍ତି ନାହିଁ (୭), ଯେଉଁମାନେ ଇନ୍ଦ୍ରିୟଗଣର ବିଷୟ ସମୂହରୁ ବିରତ ହୋଇଥାଆନ୍ତି ଏବଂ ଯେଉଁମାନେ ଶୀଳ ସ୍ୱଭାବଯୁକ୍ତ ଓ ଦୟାନ୍ୱିତ, ଦ୍ୱେଷ୍ୟ ଓ ପ୍ରିୟଜନଙ୍କୁ ସମାନ ଜ୍ଞାନ କରନ୍ତି ଏବଂ ଦମନଶୀଳ ଅଟନ୍ତି, ସେମାନେ କର୍ମବନ୍ଧନରୁ ବିମୁକ୍ତ ହୁଅନ୍ତି ।

ଯେଉଁମାନେ ସର୍ବଭୂତରେ ଦୟାଯୁକ୍ତ, ସମସ୍ତ ଜନ୍ତୁମାନଙ୍କର ବିଶ୍ୱାସପାତ୍ର ଏବଂ ହିଂସାବୃତ୍ତି ପରିତ୍ୟାଗ କରିଥାଆନ୍ତି, ସେହି ସମସ୍ତ ମାନବ ସ୍ୱର୍ଗକୁ ଗମନ କରନ୍ତି । ଯେଉଁମାନେ ସର୍ବଦା ପରଧନରେ ନିର୍ମମ, ପରଦାରଭ-ବିରକ୍ତ ଏବଂ ଧର୍ମତଃ ଲବ୍‌ଧ ଅନ୍ନ ଭୋଜନ କରନ୍ତି,ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି । ଯେଉଁ ନରଗଣ ପରସ୍ତ୍ରୀମାନଙ୍କଠାରେ ସର୍ବଦା ମାତୃବତ୍, ଭଗିନୀବତ୍ ଓ ଦୁହିତୃବତ୍ ବ୍ୟବହାର କରନ୍ତି, ସେମାନେ ସ୍ୱର୍ଗଗାମୀ ହୁଅନ୍ତି । ଯେଉଁମାନେ ସର୍ବଦା ଚୌର୍ଯ୍ୟ କାର୍ଯ୍ୟରୁ ବିରତ, ସ୍ୱଧନଦ୍ୱାରା ସନ୍ତୁଷ୍ଟ ଏବଂ ସ୍ୱଭାଗ୍ୟକୁ

ଉପଜୀବ୍ୟ କରି ଜୀବନଯାପନ କରନ୍ତି, ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି । ଯେଉଁ ସ୍ୱଦାରନିରତ ଜନମାନେ ଋତୁସ୍ନାନ ଉତ୍ତାରେ ନିଜ ପତ୍ନୀଙ୍କ ନିକଟକୁ ଅଭିଗମନ କରନ୍ତି (୧୩) ଓ ଗ୍ରାମ୍ୟସୁଖ ଭୋଗ ନ କରନ୍ତି, ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି । ଯେଉଁମାନେ ସର୍ବଦା ପରସ୍ତ୍ରୀମାନଙ୍କଠାରେ ଉତ୍ତମ ଚରିତ୍ରଦ୍ୱାରା ନେତ୍ର ଆବରଣ କରି ରଖନ୍ତି (୧୪), ଯେଉଁମାନେ ଜିତେନ୍ଦ୍ରିୟ ଓ ଶୀଳସ୍ୱଭାବଯୁକ୍ତ ଅଟନ୍ତି, ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି ।

ଏହି ଦେବକୃତ ପଥରେ ପଣ୍ଡିତଜନମାନଙ୍କର ସର୍ବଦା ବିଚରଣ କରିବାର ଉଚିତ । ଅକଷାୟକୃତ ଅର୍ଥାତ୍ ଯହିଁରେ ମନୋମାଳିନ୍ୟ ହେବ ନାହିଁ, ସେହିପରି ମାର୍ଗ ପଣ୍ଡିତମଣ୍ଡଳୀଙ୍କର ସତତ ସେବନୀୟ; ଦାନଧର୍ମତପୋଯୁକ୍ତ, ଶୀଳଶୌଚ ଓ ଦୟାନ୍ୱିତ ପଥ (୧୬), ବୃତ୍ତି ନିମିତ୍ତ ଓ ଧର୍ମ ନିମିତ୍ତ ବୁଧଗଣଙ୍କର ସତତ ସେବନୀୟ । ଯେଉଁମାନେ ସ୍ୱର୍ଗବାସ କାମନା କରନ୍ତି, ସେହିମାନଙ୍କର ଉକ୍ତ ପଥର ଅତିରିକ୍ତ ଧର୍ମ ସେବା କରିବାର ଉଚିତ ନୁହେଁ । ୧୭ ।

ଉମା କହିଲେ, ହେ ଅନଘ ଭୂତନାଥ ! ମନୁଷ୍ୟ ଯାହାଦ୍ୱାରା ବଦ୍ଧ ହୁଅନ୍ତି ଏବଂ ଯାହାଦ୍ୱାରା ମୁକ୍ତ ହୁଅନ୍ତି, ସେହି ସମସ୍ତ କର୍ମ ଆପଣ ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୧୮ । ମହେଶ୍ୱର କହିଲେ, ଇହଲୋକରେ ଯେଉଁ ବ୍ୟକ୍ତିମାନେ ଆପଣା ନିମିତ୍ତ ଅଥବା ପରନିମିତ୍ତ କିମ୍ବା ପରିହାସାବଚ୍ଛଳରେ ମିଥ୍ୟା କଥା କହନ୍ତି ନାହିଁ, ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି ।୧୯। ଯେଉଁମାନେ ବୃତ୍ତି ନିମିତ୍ତ, ଧର୍ମ ନିମିତ୍ତ, କିମ୍ବା ସ୍ୱେଚ୍ଛାବଶତଃ ମିଥ୍ୟା କଥା କହନ୍ତି ନାହିଁ, ସେହି ସମସ୍ତ ନର ସ୍ୱର୍ଗଗାମୀ ହୁଅନ୍ତି ।୨୦। ଯେଉଁମାନେ ମଧୁର, ଚିକ୍କଣ, ବାଧାଶୂନ୍ୟ ଓ ଦୋଷବର୍ଜିତ ବାକ୍ୟ କହନ୍ତି ଏବଂ ସ୍ୱାଗତ ପ୍ରଶ୍ନ କରନ୍ତି, ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି ।୨୧। ଯେଉଁମାନେ ପରୁଷ, ନିଷ୍ଠୁର ଓ କଟୁବାକ୍ୟ କହନ୍ତି ନାହିଁ, ଅପୈଶୂନ୍ୟ କର୍ମରେ ରତ ହୋଇ ସାଧୁ ବ୍ୟବହାର କରନ୍ତି, ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି । ୨୨ । ଯେଉଁମାନେ ମିତ୍ରଭେଦକାରୀ, ପିଶୁନବାଣୀ କହନ୍ତି ନାହିଁ ଏବଂ ସତ୍ୟ ଓ ହିତକର ବାକ୍ୟ କହନ୍ତି, ସେହି ସମସ୍ତ ନରଗଣ ସ୍ୱର୍ଗଗାମୀ ହୁଅନ୍ତି । ୨୩ ।

ଯେଉଁ ପୁରୁଷଗଣ ପରୁଷ ବାକ୍ୟ ଓ ପରଦ୍ରୋହ ପରିହାର କରନ୍ତି ଓ ଯେଉଁମାନେ ସର୍ବଭୂତରେ ସମଦର୍ଶୀ ହୁଅନ୍ତି ଏବଂ ଇନ୍ଦ୍ରିୟ ଦମନ କରନ୍ତି, ସେହି ନରଗଣ ସ୍ୱର୍ଗଗାମୀ ହୁଅନ୍ତି । ୨୪ । ଯେଉଁମାନେ ଅସତ୍ ପ୍ରଳାପରୁ ବିରତ ହୋଇ ବିରୁଦ୍ଧ କାର୍ଯ୍ୟ ପରିବର୍ଜନ କରନ୍ତି ଏବଂ ପ୍ରିୟକଥା ଆଳାପ

କରନ୍ତି, ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି । ୨୫ । ଯେଉଁମାନେ କ୍ରୋଧବଶତଃ ହୃଦୟବିଦାରଣ ବଚନ ବ୍ୟବହାର ନ କରନ୍ତି, କ୍ରୁଦ୍ଧ ହୋଇଥିଲେ ସୁଦ୍ଧା ଶାନ୍ତ ବାକ୍ୟ କହନ୍ତି, ସେହି ସମସ୍ତ ନରଗଣ ସ୍ୱର୍ଗଗାମୀ ହୁଅନ୍ତି । ୨୬ । ହେ ଦେବି ! ନରଗଣଙ୍କର ଏବଂବିଧ ବାକ୍ୟଜନିତ ଧର୍ମ ସର୍ବଦା ସେବନୀୟ । ଏହା ଶୁଭକର ଏବଂ ସତ୍ୟ ଫଳପ୍ରଦ ଅଟେ, ଅତଏବ ପଣ୍ଡିତଗଣଙ୍କର ମିଥ୍ୟା କଥା ସର୍ବଦା ବର୍ଜନୀୟ । ୨୭ ।

ଉମା କହିଲେ, ହେ ପିନାକପାଣେ ! ମହାଭାଗ ଦେବଦେବ ! ପୁରୁଷ ମନେ ମନେ ଯେଉଁ କର୍ମ କରି ବଦ୍ଧ ହୁଅନ୍ତି, ଆପଣ ଆମ୍ଭ ନିକଟରେ ତାହା କୀର୍ତ୍ତନ କରିବା ହେଉନ୍ତୁ । ୨୮ । ମହେଶ୍ୱର କହିଲେ, ହେ କଲ୍ୟାଣି ! ଇହଲୋକରେ ନରଗଣ ଯେଉଁ ମାନସ କର୍ମଦ୍ୱାରା ସଂଯୁକ୍ତ ହେଲେ ସ୍ୱର୍ଗକୁ ଗମନ କରନ୍ତି, ତାହା ଆମ୍ଭେ କୀର୍ତ୍ତନ କରୁଅଛୁଁ, ଶ୍ରବଣ କର । ୨୯। ହେ ଶୁଭାନନେ ! ଦୁଷ୍ଟ ଚିତ୍ତଦ୍ୱାରା ଅନ୍ତରାତ୍ମା ଦୂଷିତ ହୁଏ, ଇହଲୋକରେ ଯେଉଁ କର୍ମଦ୍ୱାରା ମନ ବଦ୍ଧ ହୁଏ, ତୁମ୍ଭେ ଆମ୍ଭ ନିକଟରୁ ତାହା ଶ୍ରବଣ କର । ୩୦ ।

ଜନଶୂନ୍ୟ ଅରଣ୍ୟ ମଧ୍ୟରେ ପରଧନ ଯଦି ନୟନପଥରେ ନିପତିତ ହୁଏ, ତେତେବେଳେ ଯେଉଁ ନରଗଣ ତାହା ହରଣ କରିବାକୁ ମନରେ ଇଚ୍ଛା ନ କରନ୍ତି, ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି । ୩୧ । ଗ୍ରାମରେ, ଗୃହରେ ଅଥବା ନିର୍ଜନ ବନରେ ଯେଉଁ ପରକୀୟ ଦ୍ରବ୍ୟ ଥାଏ, ଯେଉଁମାନେ ତାହାର ଅଭିନନ୍ଦନ ନ କରନ୍ତି, ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି । ୩୨ । ଯେଉଁମାନେ ନିର୍ଜନରେ କାମୁକୀ ପରସ୍ତ୍ରୀମାନଙ୍କୁ ଦେଖିଲେ ମନରେ କାମନା ନ କରନ୍ତି, ସେହି ସମସ୍ତ ନରଗଣ ସ୍ୱର୍ଗଗାମୀ ହୁଅନ୍ତି । ୩୩ । ଯେଉଁ ସମସ୍ତ ନରଗଣ ଶତ୍ରୁ ଅଥବା ମିତ୍ରଙ୍କୁ ଦେଖି ସମାନଭାବରେ ସମ୍ଭାଷଣ କରନ୍ତି, ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି । ୩୪ । ଯେଉଁମାନେ ଶ୍ରୁତବନ୍ତ, ଦୟାବନ୍ତ, ଶୁଚି ଓ ସତ୍ୟସଙ୍ଗର ଏବଂ ସ୍ୱକୀୟ ଅର୍ଥଦ୍ୱାରା ସନ୍ତୁଷ୍ଟ ଥାଆନ୍ତି, ସେହି ସମସ୍ତ ନରଗଣ ସ୍ୱର୍ଗଗାମୀ ହୁଅନ୍ତି । ୩୫ ।

ଯେଉଁମାନଙ୍କର କେହି ଶତ୍ରୁ ନ ଥାନ୍ତି, ଯେଉଁମାନେ କୌଣସି କର୍ମ କଲେ ଆୟାସଯୁକ୍ତ ନୁହନ୍ତି, ଯେଉଁମାନଙ୍କ ହୃଦୟରେ ମିତ୍ରତା ସର୍ବଦା ଜାଗରୂକ ହୋଇ ରହିଥାଏ ଏବଂ ଯେଉଁମାନେ ସର୍ବଦା ସର୍ବଭୂତରେ ଦୟାବାନ୍, ସେହି ସମସ୍ତ ନରଗଣ ସ୍ୱର୍ଗଗାମୀ ହୁଅନ୍ତି । ୩୬ । ଯେଉଁମାନେ ଶ୍ରଦ୍ଧାବାନ୍ ଓ ଦୟାବାନ୍, ମନୋଜ୍ଞ ଓ ମନୋଜ୍ଞଜନଙ୍କ ପ୍ରିୟ ଏବଂ ସର୍ବଦା

ଧର୍ମାଧର୍ମବେତ୍ତା, ସେହି ସମସ୍ତ ନରଗଣ ସ୍ୱର୍ଗଗାମୀ ହୁଅନ୍ତି । ୩୭ । ହେ ଦେବ ! ଯେଉଁମାନେ ଶୁଭାଶୁଭ କର୍ମସମୂହର ଫଳ ସଞ୍ଚୟ ବିଷୟରେ ବିପାକଜ୍ଞ ଅଟନ୍ତି , ସେହିମାନେ ସ୍ୱର୍ଗଗାମୀ ହୁଅନ୍ତି । ୩୮ । ଯେଉଁମାନେ ନିରନ୍ତର ନ୍ୟାୟପରାୟଣ, ଗୁଣସମନ୍ୱିତ, ଦେବଦ୍ୱିଜପରାୟଣ ଓ ଅନବରତ ଜାଗ୍ରତ, ସେହି ସମସ୍ତ ନରଗଣ ସ୍ୱର୍ଗଗାମୀ ହୁଅନ୍ତି । ୩୯ । ହେ ଦେବ ! ଶୁଭକର୍ମ ଫଳଦ୍ୱାରା ଯାହାସବୁ ହୁଏ, ତାହା ଆମ୍ଭେ କୀର୍ତ୍ତନ କଲୁଁ; ତୁମ୍ଭେ ସ୍ୱର୍ଗମାର୍ଗପରାୟଣା ହୋଇ ପୁନଶ୍ଚ ଆଉ କେଉଁ ବିଷୟ ଶୁଣିବାକୁ ଇଚ୍ଛା କରୁଅଛ ? ୪୦ ।

ଉମା କହିଲେ, ହେ ମହେଶ୍ୱର ! ମର୍ତ୍ତ୍ୟଗଣଙ୍କ ବିଷୟରେ ଆମ୍ଭର କୌଣସି ମହତ୍ ସଂଶୟ ଉପସ୍ଥିତ ହୋଇଅଛି, ଅତଏବ ଆପଣ ଆମ୍ଭ ନିକଟରେ ସମ୍ପ୍ରତି ନିପୁଣ ଭାବରେ ସେହି ସଂଶୟର ବିଷୟ ବ୍ୟାଖ୍ୟା କରିବା ହେଉନ୍ତୁ । ୪୧ । ହେ ପ୍ରଭୋ ଦେବ ! ପୁରୁଷ କେଉଁ କର୍ମଦ୍ୱାରା ଦୀର୍ଘ ଆୟୁ ଲାଭ କରନ୍ତି ? କେଉଁ ତପସ୍ୟାଦ୍ୱାରା ସୁମହତ୍ ପରମାୟୁ ପ୍ରାପ୍ତ ହୁଅନ୍ତି ? ୪୨। ଭୂମଣ୍ଡଳରେ ମନୁଷ୍ୟ କେଉଁ କର୍ମଦ୍ୱାରା କ୍ଷୀଣାୟୁ ହୁଅନ୍ତି ? ହେ ଅନିନ୍ଦିତ ଦେବ ! କର୍ମସମୂହର ବିପାକ କୀର୍ତ୍ତନ କରିବା ହେଉନ୍ତୁ । ୪୩ । କେହି କେହି ଭାଗ୍ୟଶାଳୀ, କେହି କେହି ମନ୍ଦଭାଗ୍ୟ ହୁଅନ୍ତି, କେହି କେହି କୁଳୀନ, କେହି କେହି ଅକୁଳୀନ ହୁଅନ୍ତି । ୪୪ । କୌଣସି କୌଣସି ମାନବ ଦୁର୍ଦ୍ଦଶାପନ୍ନ ହୋଇ କାଷ୍ଠବତ୍ ପ୍ରତିଭାତ ହୁଅନ୍ତି, କେହି ପ୍ରିୟଦର୍ଶନ, କେହି ବା ଦର୍ଶନ ମାତ୍ରେ ଦୁର୍ବୁଦ୍ଧିରୂପେ ଉପଲବ୍ଧ ହୁଅନ୍ତି । କେହି କେହି ପ୍ରଜ୍ଞାଶୂନ୍ୟ, କେହି ଜ୍ଞାନବିଜ୍ଞାନସମ୍ପନ୍ନ, ମହାପ୍ରାଜ୍ଞ ପଣ୍ଡିତ, କେହି ଅଳ୍ପ ବାଧାଯୁକ୍ତ, କେହି କେହି ମହାପୀଡ଼ାଗ୍ରସ୍ତ ଦୃଷ୍ଟ ହୁଅନ୍ତି । ଅତଏବ ହେ ଦେବ ! ପୁରୁଷଗଣଙ୍କର ଏତାଦୃଶ ବିଶେଷ ଭେଦର କାରଣ କୀର୍ତ୍ତନ କରିବା ହେଉନ୍ତୁ । ୪୭ ।

ମହେଶ୍ୱର କହିଲେ, ହେ ଦେବି ! ଆମ୍ଭେ ତୁମ୍ଭଙ୍କୁ ଉତ୍ତମ କର୍ମ ଫଳୋଦୟ କହୁଅଛୁଁ । ମର୍ତ୍ତ୍ୟଲୋକରେ ସମସ୍ତ ନରଗଣ ଯାହାଦ୍ୱାରା ସ୍ୱୀୟ କର୍ମଫଳ ଭୋଗ କରନ୍ତି, ତାହା ଶ୍ରବଣ କର । ୪୮ । ଯେଉଁ ବ୍ୟକ୍ତି ପ୍ରାଣ-ବଧ କରିବା ନିମିତ୍ତ ସର୍ବଦା ଦଣ୍ଡହସ୍ତ ଓ ଭୟଙ୍କର ଭାବରେ ଉଦ୍ୟତ ଏବଂ ଶସ୍ତ୍ର ଉଦ୍ୟତ କରି ସର୍ବଦା ଭୂତଗଣଙ୍କୁ ହନନ କରନ୍ତି ଏବଂ ଯେଉଁ ଜନ ନିର୍ଦ୍ଦୟ ସମସ୍ତ ଭୂତଗଣର ସତତ ଉଦ୍‌ବେଗଜନକ; କୀଟ, ପିପୀଲିକା ପ୍ରଭୃତିଙ୍କ ଅଶରଣ୍ୟ ଏବଂ ଅତ୍ୟନ୍ତ ନିର୍ଘୃଣ, ହେ ଦେବି ! ଏବଂଭୂତ ମନୁଷ୍ୟ

ନିରୟରେ ନିମଗ୍ନ ହୁଅନ୍ତି ଓ ଏହାଙ୍କ ବିପରୀତ ବ୍ୟକ୍ତି ଧର୍ମାତ୍ମା ଓ ରୂପବାନ୍ ହୋଇ ଜନ୍ମଗ୍ରହଣ କରନ୍ତି ।୫୧। ହିଂସାତ୍ମା ମନୁଷ୍ୟ ନରକକୁ ଗମନ କରନ୍ତି, ଅହିଂସକ ବ୍ୟକ୍ତି ସ୍ୱର୍ଗଗାମୀ ହୁଅନ୍ତି । ମନୁଷ୍ୟ ନରକକୁ ଗମନ କଲେ, ଘୋରତର କଷ୍ଟକର ଯାତନା ଭୋଗ କରନ୍ତି । ଯେଉଁ କୌଣସି ବ୍ୟକ୍ତି ସେହି ନରକରୁ କଦାଚ ଉତ୍ଥିତ ହୁଅନ୍ତି, ସେହି ମନୁଷ୍ୟ ଜନ୍ମଲାଭ କରି ହୀନାୟୁ ହୁଅନ୍ତି ।୫୩।

ହେ ଦେବି ! ହିଂସାରତ ମାନବ ପାପକର୍ମଦ୍ୱାରା ବଦ୍ଧ ହୁଅନ୍ତି । ସେ ସର୍ବଭୂତର ଅପ୍ରିୟ ଓ ହୀନାୟୁ ହୋଇ ଜନ୍ମଗ୍ରହଣ କରନ୍ତି ।୫୪। ଯେ ବିଶୁଦ୍ଧ ବଂଶରେ ଜନ୍ମଗ୍ରହଣ କରନ୍ତି, ସେ ପ୍ରାଣିହିଂସାବିବର୍ଜିତ, ନିକ୍ଷିପ୍ତ ଶସ୍ତ୍ର ଓ ନିର୍ଦଣ୍ଡ ହୋଇ କଦାପି ହିଂସା କରନ୍ତି ନାହିଁ, ସେ ପରଦ୍ୱାରା ଆଘାତ କରାନ୍ତି ନାହିଁ ଓ ସ୍ୱୟଂ ଆଘାତ କରନ୍ତି ନାହିଁ ଏବଂ ଆଘାତକାରୀ ପ୍ରତି ଅନୁମୋଦନ କରିବାକୁ ବିରତ ହୁଅନ୍ତି । ସେ ସର୍ବଭୂତ ପ୍ରତି ସ୍ନେହବାନ୍ ହୁଅନ୍ତି, ସେ ଆପଣାଠାରେ ଓ ଅନ୍ୟ ବ୍ୟକ୍ତିଙ୍କଠାରେ ସମାନ ଜ୍ଞାନ କରନ୍ତି ।୫୬। ହେ ଦେବି ! ଈଦୃଶ ଉତ୍କୃଷ୍ଟ ପୁରୁଷ ଦେବତ୍ୱ ସମ୍ଭୋଗ କରନ୍ତି, ସେ ହର୍ଷାନ୍ୱିତ ହୋଇ ସୁଖସମୂହ ଉପଭୋଗ କରନ୍ତି ।୫୭। ଅନନ୍ତର ସେ ଯଦି କଦାପି ମନୁଷ୍ୟଲୋକରେ ଜନ୍ମ ପରିଗ୍ରହ କରନ୍ତି, ତେବେ ଦୀର୍ଘାୟୁ ହୋଇ ସୁଖଭୋଗ କରନ୍ତି ।୫୮। ସର୍ବଲୋକପିତାମହ ଭଗବାନ୍ ବ୍ରହ୍ମା ସତ୍କାର୍ଯ୍ୟନିରତ ସଚ୍ଚରିତ୍ର ମହାତ୍ମାମାନଙ୍କର ଦୀର୍ଘାୟୁ ଲାଭ କରିବା ନିମିତ୍ତ ଏହି ପ୍ରାଣିହିଂସା ନିବୃତ୍ତିରୂପ ଉପାୟ ନିର୍ଦ୍ଦେଶ କରି-ଅଛନ୍ତି ।୫୯।

---

## ଅଧ୍ୟାୟ—୧୪୫

ଉମା କହିଲେ—ହେ ନାଥ ! ପୁରୁଷ କୀଦୃଶ ସ୍ୱଭାବ, କେଉଁ ପ୍ରକାର ଆଚାର ବ୍ୟବହାରବିଶିଷ୍ଟ ହୋଇ କେଉଁ କର୍ମ ଏବଂ କୀଦୃଶ ଫଳପ୍ରଦାନଦ୍ୱାରା ସ୍ୱର୍ଗଲାଭ କରନ୍ତି ? ୧ । ମହେଶ୍ୱର କହିଲେ, ହେ ଦେବି ! ଯେଉଁ ବ୍ୟକ୍ତି ଦାତା ଏବଂ ବ୍ରାହ୍ମଣଗଣଙ୍କ ସମ୍ମାନ କରନ୍ତି, ଦୀନ, ଅନ୍ଧ ଓ କୃପଣ ଅର୍ଥାତ୍ କୃପାପାତ୍ର ବ୍ୟକ୍ତିମାନଙ୍କୁ ଭକ୍ଷ୍ୟଭୋଜ୍ୟ ଅନ୍ନଦାନ ଓ ବସନଭୂଷଣ ପ୍ରଦାନ କରନ୍ତି (୨), ଯେ ଆବାସ, ଗୃହ, ସଭା, କୂପ ଓ

ପୁଷ୍କରିଣୀ ଏବଂ ପାନୀୟଶାଳା ପ୍ରସ୍ତୁତ କରିଦିଅନ୍ତି ଏବଂ ନିତ୍ୟ ପ୍ରୟୋଜନୀୟ ସମସ୍ତ ବସ୍ତୁ ଓ ଯେ ଯାହା ପ୍ରାର୍ଥନା କରନ୍ତି, ତାହାଙ୍କୁ ତାହା ପ୍ରଦାନ କରନ୍ତି, ଆସନ, ଶଯ୍ୟା, ଯାନ, ଧନରତ୍ନ, ଗୃହ, ସର୍ବପ୍ରକାର ଶସ୍ୟସମୂହ, ଗୋଗଣ, କ୍ଷେତ୍ରସମୂହ, ସ୍ତ୍ରୀ ପ୍ରଭୃତିଙ୍କୁ ଯେଉଁ ମନୁଷ୍ୟ ପ୍ରୀତିଯୁକ୍ତ ଚିତ୍ତ ହୋଇ ପ୍ରତିଦିନ ପ୍ରଦାନ କରନ୍ତି, ତାଦୃଶ ମାନୁଷ ଦେବଲୋକରେ ବିରାଜିତ ହୁଅନ୍ତି । ୫ ।

ସେ ସେଠାରେ ବହୁକାଳ ପର୍ଯ୍ୟନ୍ତ ଅତି ଉତ୍କୃଷ୍ଟ ଭୋଗସମୂହ ଭୋଗ କରି ଅପ୍ସରାଗଣଙ୍କ ସହିତ ପ୍ରମୋଦ ପ୍ରାପ୍ତ ହୋଇ ନନ୍ଦନ ପ୍ରଭୃତି ବନରେ କ୍ରୀଡ଼ା କରନ୍ତି । ୬ । ତତ୍ପରେ ସ୍ୱର୍ଗଲୋକରୁ ବିଚ୍ୟୁତ ହେଲେ, ମାନୁଷଲୋକରେ ଧନଧାନ୍ୟସମନ୍ୱିତ ମହାକୁଳରେ ତାହାଙ୍କର ଜନ୍ମ ହୁଏ ।୭। ହେ ଦେବି ! ସେଠାରେ ସମସ୍ତ କାମଗୁଣସମ୍ପନ୍ନ ଓ ହର୍ଷଯୁକ୍ତ ହୋଇ ମାନବ ମହାଭୋଗ ମହାକୋଷସମ୍ପନ୍ନ ଧନବାନ୍ ହୁଅନ୍ତି । ୮ । ହେ ଦେବି ! ଏହି ସମସ୍ତ ଦାନଶୀଳ ମହାଭାଗ ପ୍ରାଣିଗଣ ସମସ୍ତଙ୍କର ପ୍ରିୟ-ଦର୍ଶନ ହୁଅନ୍ତି ବୋଲି ଏହି କଥା ପୂର୍ବେ ବ୍ରହ୍ମା କହିଲେ । ୯ ।

ହେ ଦେବି ! ଇତରଗଣ ପ୍ରାର୍ଥନା କଲେ, ବୁଦ୍ଧିଶୂନ୍ୟ ପ୍ରଦାନ-କୃପଣ ଅପର ନରଗଣ ଧନ ଥିଲେ ସୁଦ୍ଧା ସେମାନଙ୍କୁ ଧନଦାନ କରନ୍ତି ନାହିଁ । ୧୦ । ସେମାନେ ଜିହ୍ୱାଲୋଭସମନ୍ୱିତ ହୋଇଥିବାରୁ ଦାନ କରିବାକୁ ଇଚ୍ଛୁକ ହୁଅନ୍ତି ନାହିଁ। ଦୀନ, ଅନ୍ଧ, କୃପାପାତ୍ର, ଭିକ୍ଷୁକ, ଅତିଥି-ଗଣ ସେମାନଙ୍କ ନିକଟରେ ପ୍ରାର୍ଥନା କରି ପରାଙ୍ମୁଖ ହୁଅନ୍ତି । ୧୧ । ସେମାନେ କି ଧନ, କି ବସ୍ତ୍ର, କି ଭୋଗ୍ୟ ବସ୍ତୁ, କି ସୁବର୍ଣ୍ଣ ବା ଧେନୁ, କିମ୍ବା ଅନ୍ନ ବିକାର କିଛି ସୁଦ୍ଧା କଦାପି ପ୍ରଦାନ କରନ୍ତି ନାହିଁ । ୧୨ । ହେ ଦେବି ! ଯେଉଁମାନେ ଦାନ କରିବା ବିଷୟରେ ପ୍ରବୃତ୍ତ ହୁଅନ୍ତି ନାହିଁ, ଲୁବ୍ଧ, ନାସ୍ତିକ ଓ ଦାନବିବର୍ଜିତ, ଈଦୃଶ ଅଳ୍ପବୁଦ୍ଧି ନରଗଣ ନରକଗାମୀ ହୁଅନ୍ତି । ୧୩ । ଯେତେବେଳେ କାଳକ୍ରମରେ ସେମାନେ ପୁନଶ୍ଚ ମନୁଷ୍ୟତ୍ୱ ପ୍ରାପ୍ତ ହୁଅନ୍ତି, ସେତେବେଳେ ସେହି ଅଳ୍ପବୁଦ୍ଧି ନରଗଣ ଧନହୀନ କୁଳରେ ଜନ୍ମ ପରିଗ୍ରହ କରନ୍ତି । ୧୪ । ସେମାନେ କ୍ଷୁତ୍‌ପିପାସା-ସମନ୍ୱିତ, ସର୍ବଲୋକବହିଷ୍କୃତ ଓ ସର୍ବଭୋଗରୁ ବଞ୍ଚିତ ହୋଇ ଅଧମ ଜୀବିକାକୁ ଉପଜୀବ୍ୟ କରି ପ୍ରାଣଧାରଣ କରନ୍ତି ।୧୫। ହେ ଦେବି ! ନରଗଣ ଏହି ସମୁଦାୟ କର୍ମଦ୍ୱାରା ଅଳ୍ପଭୋଗ କୁଳରେ ଜନ୍ମଗ୍ରହଣ କରି ସ୍ୱଳ୍ପଭୋଗରେ ରତ ଓ ନିର୍ଦ୍ଧନ ହୁଅନ୍ତି । ୧୬ ।

ଅପର ନରଗଣ ଧନଗର୍ବବଶତଃ ଅଭିମାନୀ ଓ ସ୍ତମ୍ଭିତ ହୁଅନ୍ତି । ଯେଉଁମାନେ ଅଚେତନ ହୋଇ ଆସନଯୋଗ୍ୟ ମାନ୍ୟ ବ୍ୟକ୍ତିଙ୍କୁ ଆସନ ପ୍ରଦାନ କରନ୍ତି ନାହିଁ, ଯେଉଁ ଅଳ୍ପମେଧା ମାନବଗଣ ପଥପ୍ରଦାନର ଉପଯୁକ୍ତ ବ୍ୟକ୍ତିଙ୍କୁ ପଥ ପ୍ରଦାନ ନ କରନ୍ତି, ଯେଉଁ ଅଳ୍ପବୁଦ୍ଧି ନରଗଣ ପାଦ୍ୟାର୍ହ ବ୍ୟକ୍ତିଙ୍କୁ ପାଦ୍ୟ ପ୍ରଦାନ ନ କରନ୍ତି, ଅର୍ଘଯୋଗ୍ୟ ବ୍ୟକ୍ତିଙ୍କୁ ସତ୍କାର ପୂର୍ବକ ଯଥାବିଧି ଅର୍ଚ୍ଚନା ନ କରନ୍ତି, ଅବୋଧ ନରଗଣ ପୂଜ୍ୟ ବ୍ୟକ୍ତିଙ୍କୁ ଅର୍ଘ୍ୟ ବା ଆଚମନୀୟ ପ୍ରଦାନ ନ କରନ୍ତି, ସମାଗତ ଗୁରୁଙ୍କୁ ଦର୍ଶନ କରି ପ୍ରୀତିପୂର୍ବକ ତାହାଙ୍କ ଗୁରୁ ସଦୃଶ ବ୍ୟବହାର ନ କରନ୍ତି, ଅଭିମାନପ୍ରବୃତ୍ତ ଓ ଲୋଭରେ ପରିପୂର୍ଣ୍ଣ ହୋଇଥାଆନ୍ତି (୨୦), ମାନ୍ୟ ବ୍ୟକ୍ତିଗଣଙ୍କୁ ଅବଜ୍ଞା କରନ୍ତି, ବୃଦ୍ଧ ବ୍ୟକ୍ତିଗଣଙ୍କୁ ପରାଭବ କରନ୍ତି, ହେ ଦେବି ! ଏବଂବିଧ ବ୍ୟକ୍ତିମାନେ ନିରୟଗାମୀ ହୁଅନ୍ତି । ୨୧ । ସେହି ସମସ୍ତ ନରଗଣ ଯଦି ବହୁବର୍ଷ ଉତ୍ତାରେ କଦାପି ନରକରୁ ଉତ୍ତୀର୍ଣ୍ଣ ହୋଇ-ପାରନ୍ତି, ତେବେ ସେମାନେ ପୁନଶ୍ଚ ଅତି କୁତ୍ସିତ କୁଳରେ ଜନ୍ମପରିଗ୍ରହ କରନ୍ତି । ୨୨ ।

ଯେଉଁମାନେ ଗୁରୁ ଓ ବୃଦ୍ଧ ଲୋକମାନଙ୍କୁ ଅବଜ୍ଞା କରନ୍ତି, ସେମାନେ ଚଣ୍ଡାଳ ପୁଲ୍‌କସ ପ୍ରଭୃତି ନିର୍ବୁଦ୍ଧି ଲୋକମାନଙ୍କ କୁତ୍ସିତ କୁଳରେ ଜନ୍ମ-ଗ୍ରହଣ କରନ୍ତି । ୨୩ । ଯେ ଅଭିମାନୀ ଓ ଅହଂକାରୀ ନୁହନ୍ତି ଏବଂ ଦେବତା ଓ ଦ୍ୱିଜଗଣଙ୍କୁ ପୂଜା କରନ୍ତି, ସେ ଲୋକରେ ପୂଜ୍ୟ ହୁଅନ୍ତି । ଯେ ଗୁରୁ-ଜନଙ୍କୁ ନମସ୍କାର କରନ୍ତି ଏବଂ ବିନମ୍ରୀ ହୋଇ ମଧୁର ବାକ୍ୟ କହନ୍ତି, ସେ ସର୍ବବର୍ଣ୍ଣର ପ୍ରିୟକର ଓ ସର୍ବଭୂତର ସର୍ବଦା ହିତକାରକ ହୁଅନ୍ତି । ଅଦ୍ୱେଷୀ, ସୁଖଶାଳୀ, ମଧୁରଭାଷୀ ଏବଂ ଯେ ସ୍ୱାଗତ ପ୍ରଶ୍ନଦ୍ୱାରା ସର୍ବଦା ସ୍ନିଗ୍ଧ ବ୍ୟବହାର କରନ୍ତି, ସର୍ବଭୂତର ଅହିଂସକ, ଅତିଥି ବ୍ୟକ୍ତିଙ୍କୁ ଯଥାଯୋଗ୍ୟ ସତ୍କାର ପୂର୍ବକ ଅର୍ଚ୍ଚନା କରନ୍ତି, ପଥ ପ୍ରଦାନଯୋଗ୍ୟ ବ୍ୟକ୍ତିଙ୍କୁ ପଥପ୍ରଦାନ କରନ୍ତି, ଗୁରୁତର ବ୍ୟକ୍ତିଙ୍କୁ ଗୁରୁଙ୍କ ସଦୃଶ ପୂଜା କରନ୍ତି, ଯେ ଅତିଥି ପରିଚର୍ଯ୍ୟାରେ ଅନୁରକ୍ତ ହୋଇ ଅଭ୍ୟାଗତ ଜନଗଣଙ୍କୁ ପୂଜା କରନ୍ତି, ହେ ଦେବି ! ଏତାଦୃଶ ନର ସ୍ୱର୍ଗଗତି ପ୍ରାପ୍ତ ହୁଅନ୍ତି । ତଦନନ୍ତର ମନୁଷ୍ୟତ୍ୱ ପ୍ରାପ୍ତ ହୋଇ ବିଶିଷ୍ଟ କୁଳରେ ଜନ୍ମପରିଗ୍ରହ କରନ୍ତି । ୨୪ । ସେହି କୁଳରେ ସେହି ବ୍ୟକ୍ତି ସର୍ବରତ୍ନସମନ୍ୱିତ ବିପୁଳ ଭୋଗଦ୍ୱାରା ପୂଜ୍ୟ ବ୍ୟକ୍ତିଗଣଙ୍କୁ ଯଥାଯୋଗ୍ୟ ଦାନ କରନ୍ତି ଏବଂ ଧର୍ମଚର୍ଯ୍ୟାପରାୟଣ ହୁଅନ୍ତି । ୨୯ । ସେ ସର୍ବଭୂତର ସମ୍ମତ ଏବଂ ସର୍ବପ୍ରାଣିଗଣର ନମସ୍କୃତ ହୋଇ ସର୍ବଦା ସ୍ୱୟଂ

ସ୍ୱକୀୟ କର୍ମଫଳ ପ୍ରାପ୍ତ ହୁଅନ୍ତି । ୩୦ । ଈଦୃଶ ମାନବ ପ୍ରଶସ୍ତ ବଂଶରେ ଜନ୍ମଗ୍ରହଣ କରନ୍ତି ଏବଂ ସର୍ବଦା ସୁମହତ୍ କୁଳକୁ ଉଜ୍ଜ୍ୱଳ କରନ୍ତି । ଆମ୍ଭେ ଯେଉଁ ଏହି ଧର୍ମର ବିଷୟ କହିଲୁଁ, ଏହାକୁ ସ୍ୱୟଂ ବିଧାତା କହି-ଥିଲେ । ୩୧ ।

ହେ ଶୋଭନେ ! ଯେଉଁ ବ୍ୟକ୍ତିଙ୍କ ବ୍ୟବହାର ଅତି ଭୟଙ୍କର, ଯାହାଙ୍କୁ ଦେଖିଲେ ସମସ୍ତ ପ୍ରାଣୀ ଭୟ କରନ୍ତି, ଯେଉଁ ବ୍ୟକ୍ତି ହସ୍ତ, ପଦ ବା ରଜ୍ଜୁଦ୍ୱାରା ଜନ୍ତୁଗଣଙ୍କୁ ଆକ୍ରମଣ କରନ୍ତି, ଅଥବା ଦଣ୍ଡ, ଲୋଷ୍ଟ୍ର, ସ୍ତମ୍ଭ ଅଥବା ଅନ୍ୟ କୌଣସି ଉପାୟଦ୍ୱାରା ଜନ୍ତୁଗଣଙ୍କ ପ୍ରତି ଧାବିତ ହୁଅନ୍ତି, ଯାହାଙ୍କ ବୁଦ୍ଧିବୃତ୍ତି ହିଂସା କରିବା ବିଷୟରେ ନିକୃଷ୍ଟ ପଥରେ ଧାବିତ ହୁଏ ଏବଂ ଯେ ସମସ୍ତ ଜୀବଗଣଙ୍କୁ ଉଦ୍‌ବେଜିତ କରନ୍ତି, ସର୍ବଦା ଜୀବଗଣଙ୍କର ଉଦ୍‌ବେଗଜନକ ହୋଇ ସେମାନଙ୍କ ପ୍ରତି ଆକ୍ରମଣ କରନ୍ତି, ଯାହାଙ୍କର ଏହି ପ୍ରକାର, ବ୍ୟବହାର ସେ ନିରୟଗାମୀ ହୁଅନ୍ତି । ୩୪ । କାଳକ୍ରମରେ କୌଣସି ସମୟରେ ଯଦି ତାଦୃଶ ନର ମନୁଷ୍ୟତ୍ୱ ପ୍ରାପ୍ତ ହୁଅନ୍ତି, ତେବେ ବହୁବିଧ ବାଧାଦ୍ୱାରା ପରିକ୍ଲିଷ୍ଟ ହୋଇ ଅଧମ ବଂଶରେ ଜନ୍ମଗ୍ରହଣ କରନ୍ତି । ୩୫ । ଲୋକଦ୍ୱେଷ୍ୟ ମାନବ ସକଳ ପୁରୁଷଗଣଙ୍କ ଅପେକ୍ଷା ଅଧମ । ହେ ଦେବି ! ମନୁଷ୍ୟ ସ୍ୱକୃତକର୍ମଫଳଦ୍ୱାରା ଜ୍ଞାତି ଓ ବନ୍ଧୁ ପ୍ରଭୃତିଙ୍କ ମଧ୍ୟରେ ଅଧମ ହୋଇ ଗଣ୍ୟ ହୁଅନ୍ତି, ଏହି କଥା ବିବେଚନା କରିବାର ବିଧେୟ । ୩୬ ।

ଦୟାବାନ୍, ନିର୍ବୈର, ନିୟତେନ୍ଦ୍ରିୟ ମୈତ୍ରଦୃଷ୍ଟି ମାନବ ସମସ୍ତ ଭୂତଗଣଙ୍କୁ ପିତୃବତ୍ ସମାନରୂପେ ଅବଲୋକନ କରନ୍ତି । ୩୭ । ସେ ଜୀବଗଣଙ୍କୁ ଉଦ୍‌ବିଗ୍ନ ବା ଅବହେଳା କରନ୍ତି ନାହିଁ । ସୁନିୟମିତ ହସ୍ତ ପାଦଦ୍ୱାରା ସମସ୍ତ ପ୍ରାଣିକୁଳର ବିଶ୍ୱାସଭାଜନ ହୁଅନ୍ତି । ୩୮ । ମଧୁରକର୍ମା ଦୟାପରାୟଣ ମନୁଷ୍ୟ ରଜ୍ଜୁ, ଦଣ୍ଡ ଲୋଷ୍ଟ୍ର ଅଥବା ଅସ୍ତ୍ରଦ୍ୱାରା ଜୀବଗଣଙ୍କୁ ଉଦ୍‌ବେଜିତ କରନ୍ତି ନାହିଁ । ୩୯ । ଏବଂବିଧ ସ୍ୱଭାବଯୁକ୍ତ ଓ ବ୍ୟବହାର-ଶାଳୀ ମନୁଷ୍ୟ ସ୍ୱର୍ଗଲୋକରେ ଜନ୍ମଗ୍ରହଣ କରନ୍ତି । ସେ ସୁରପୁରରେ ଦିବ୍ୟଭବନରେ ଦେବତା ସଦୃଶ ବସତି କରନ୍ତି । ୪୦ । ସେହି ମାନବ କର୍ମକ୍ଷୟ ବଶତଃ ଯଦି ମନୁଷ୍ୟ ଲୋକରେ ଜନ୍ମଗ୍ରହଣ କରନ୍ତି, ତେବେ ସେ ଅଳ୍ପବାଧାଯୁକ୍ତ ଓ ନିରାତଙ୍କ ହୋଇ ଜନ୍ମଗ୍ରହଣ କରି ସୁଖସମୃଦ୍ଧି ଭୋଗ କରନ୍ତି । ୪୧ । ସେ ସୁଖଭୋଗୀ, ଆୟାସଶୂନ୍ୟ ଏବଂ ସର୍ବଦା ନିରୁଦ୍‌ବେଗ ହୁଅନ୍ତି । ହେ ଦେବି ! ଏହି ପଥ ସାଧୁଗଣଙ୍କର ଅଟେ । ଏଥିରେ କୌଣସି ବାଧା ନାହିଁ । ୪୨ ।

ଉମା କହିଲେ, ହେ ନାଥ ! ଏହି ଜୀବଲୋକରେ କତିପୟ ବ୍ୟକ୍ତି ତର୍କବିତର୍କ କରିବାରେ ସୁନିପୁଣ ଓ ଜ୍ଞାନବିଜ୍ଞାନସମ୍ପନ୍ନ ପଣ୍ଡିତ ଅଟନ୍ତି (୪୩) ଓ କତିପୟ ବ୍ୟକ୍ତି ଦୁର୍ବୁଦ୍ଧି ଓ ପ୍ରଜ୍ଞାବିହୀନ ମୂର୍ଖ ଅଟନ୍ତି, ଏହାର କାରଣ କି ? ହେ ଦେବ ! କେଉଁ କର୍ମ ବିଶେଷଦ୍ୱାରା ପୁରୁଷ ପ୍ରଜ୍ଞାବାନ୍ ହୁଅନ୍ତି ? (୪୪) ଏବଂ କେଉଁ କାରଣରୁ କେତେକ ବ୍ୟକ୍ତି ଜନ୍ମାବଧି ଅନ୍ଧ, ରୋଗାର୍ତ୍ତ ଓ କ୍ଲୀବ ହୁଅନ୍ତି ? ହେ ବିରୂପାକ୍ଷ ! ନର କେଉଁ କାରଣରୁ ଅଳ୍ପପ୍ରଜ୍ଞ ହୁଅନ୍ତି ? ଆମ୍ଭର ଏହି ସମସ୍ତ ବିଷୟରେ ଅତିଶୟ ସଂଶୟ ଉପସ୍ଥିତ ହୋଇଅଛି । ହେ ସର୍ବଧର୍ମଜ୍ଞପ୍ରବର ! ଆପଣ ଏହା ଛେଦନ କରିବା ହେଉନ୍ତୁ । ୪୬ ।

ମହେଶ୍ୱର କହିଲେ, ହେ ଦେବି ! ନିପୁଣ ବ୍ୟକ୍ତିଗଣ ବେଦଜ୍ଞ, ଧର୍ମଜ୍ଞ, ବିଜ୍ଞ ବ୍ରାହ୍ମଣଗଣଙ୍କୁ ପ୍ରତିଦିନ କୁଶଳ ପ୍ରଶ୍ନ କରନ୍ତି (୪୭) ଏବଂ ସେମାନେ ସର୍ବଦା ଶୁଭ ସେବାକରି ଅଶୁଭ କର୍ମ ପରିହାର କରିଥାଆନ୍ତି । ସେହି କାରଣରୁ ସେମାନେ ଇହଲୋକରେ ନିରନ୍ତର ସୁଖଭୋଗ କରି ସ୍ୱର୍ଗଗତି ଲାଭ କରନ୍ତି । ୪୮ । ଯଦି ସେ ପୁନଶ୍ଚ ମାନୁଷ ଜନ୍ମ ଲାଭ କରନ୍ତି, ତେବେ ସେଠାରେ ମେଧାବୀ ହୁଅନ୍ତି, ଏବଂ ତାହାଙ୍କର ଶୁଭ ପ୍ରଜ୍ଞାନୁଗତ କଲ୍ୟାଣ ଜନ୍ମେ । ୪୯ । ଯେଉଁ ସମସ୍ତ ମୂଢ଼ଗଣ ପର ସ୍ତ୍ରୀ-ମାନଙ୍କଠାରେ ମନ୍ଦଦୃଷ୍ଟି ନିକ୍ଷେପ କରନ୍ତି, ସେହିମାନେ ସେହି ଦୁଷ୍ଟସ୍ୱଭାବ ବଶତଃ ଜନ୍ମାନ୍ଧ ହୁଅନ୍ତି । ୫୦ । ଯେଉଁମାନେ ଦୁଷ୍ଟଚିତ୍ତରେ ବିବସ୍ତ୍ରା ସ୍ତ୍ରୀଙ୍କୁ ଅବଲୋକନ କରନ୍ତି, ସେହି ଦୁଷ୍କୃତକାରୀ ନରଗଣ ଇହଲୋକରେ ରୋଗାର୍ତ୍ତ ହୁଅନ୍ତି । ୫୧ । ଯେଉଁ ସମସ୍ତ ଦୁର୍ବୁଦ୍ଧି ଦୁରାଚାର ମୂଢ଼ ନରଗଣ ବିରୁଦ୍ଧ-ଯୋନିରେ ଏବଂ ପୁରୁଷଙ୍କଠାରେ ମୈଥୁନ ବିଷୟରେ ରତ ହୁଅନ୍ତି, ସେହି ପ୍ରଜ୍ଞାଶୂନ୍ୟ ନରମାନେ କ୍ଲୀବତ୍ୱ ପ୍ରାପ୍ତ ହୁଅନ୍ତି । ୫୨ । ଯେଉଁମାନେ ପଶୁହତ୍ୟା କରନ୍ତି, ଯେଉଁମାନେ ଗୁରୁପତ୍ନୀ ହରଣ କରନ୍ତି, ଏବଂ ଯେଉଁମାନେ ସଙ୍କୀର୍ଣ୍ଣ ମୈଥୁନ କରନ୍ତି, ସେହି ସମସ୍ତ ନରଗଣ କ୍ଲୀବ ହୁଅନ୍ତି । ୫୩ ।

ଉମା କହିଲେ, ହେ ଦେବସତ୍ତମ ! କେଉଁ କର୍ମ ଅନିଷ୍ଟକର ଏବଂ କେଉଁ କର୍ମ ନିରବଦ୍ୟ, ମନୁଷ୍ୟ କେଉଁ କର୍ମ କରି କଲ୍ୟାଣ ପ୍ରାପ୍ତ ହୁଅନ୍ତି ? ୫୪ । ମହେଶ୍ୱର କହିଲେ, ହେ ଦେବି ! ଯେଉଁ ବ୍ୟକ୍ତି ଶ୍ରେୟସ୍କର ପଥ ଅନୁସରଣ କରି ବ୍ରାହ୍ମଣଙ୍କୁ ତଦ୍‌ବିଷୟ ପ୍ରଶ୍ନ କରନ୍ତି, ସେହି ଧର୍ମାନ୍ୱେଷୀ ଗୁଣାକାଙ୍କ୍ଷୀ ନର ସ୍ୱର୍ଗଭୋଗ କରନ୍ତି । ତାଦୃଶ ମନୁଷ୍ୟ ଯଦି କଦାଚିତ୍

ମନୁଷ୍ୟତ୍ୱ ପ୍ରାପ୍ତ ହୁଅନ୍ତି, ତେବେ ସେ ମେଧାବୀ, ଧାରଣାଶକ୍ତିଯୁକ୍ତ ଓ ପ୍ରାଜ୍ଞ ହୋଇ ଜନ୍ମଗ୍ରହଣ କରନ୍ତି । ୬୬ । ହେ ଦେବ ! ତୁମ୍ଭେ ଜାଣ, ଏହା ସାଧୁଗଣଙ୍କର ଐଶ୍ୱର୍ଯ୍ୟକର କର୍ମ ଅଟେ । ନରଗଣଙ୍କ ହିତ ନିମିତ୍ତ ଆମ୍ଭେ ତୁମ୍ଭ ନିକଟରେ ଏହି ଧର୍ମ କୀର୍ତ୍ତନ କଲୁଁ । ୬୭ । ଉମା କହିଲେ, କତିପୟ ଧର୍ମବିଦ୍ୱେଷୀ ସ୍ୱଳ୍ପବିଜ୍ଞାନସମ୍ପନ୍ନ ନରଗଣ ବେଦଜ୍ଞ ବ୍ରାହ୍ମଣଗଣଙ୍କ ନିକଟକୁ ଯିବା ନିମିତ୍ତ ଇଚ୍ଛା କରନ୍ତି ନାହିଁ । ୬୮ । କୌଣସି କୌଣସି ନର ବ୍ରତ-ବିଶିଷ୍ଟ, କେହି କେହି ଶ୍ରଦ୍ଧାଧର୍ମପରାୟଣ, କେହି କେହି ବ୍ରତଶୂନ୍ୟ, କେହି କେହି ଭ୍ରଷ୍ଟନିୟମ, କେହି କେହି ରାକ୍ଷସୋପମ (୬୯), କେହି ବିଧିପୂର୍ବକ ଯଜ୍ଞ କରନ୍ତି, କେହି କେହି ହୋମ କରନ୍ତି ନାହିଁ, ଅତଏବ କେଉଁ କର୍ମବିପାକଦ୍ୱାରା ଇହଲୋକରେ ନରଗଣ ଈଦୃଶ ବିଭିନ୍ନ ଧର୍ମାନ୍ୱିତ ହୁଅନ୍ତି ? ଆପଣ ଆମ୍ଭ ନିକଟରେ ତାହା କୀର୍ତ୍ତନ କରିବା ହେଉନ୍ତୁ । ୭୦ ।

ମହେଶ୍ୱର କହିଲେ, ଆଗମ ଶାସ୍ତ୍ରରେ ନରମାନଙ୍କ କର୍ମସମୂହର ମର୍ଯ୍ୟାଦାସବୁ ପୂର୍ବେ ନିର୍ଦ୍ଦିଷ୍ଟ ହୋଇଅଛି । ଦୃଢ଼ବ୍ରତ ଜନଗଣ ପ୍ରମାଣର ଅନୁସରଣ କରିବାର ଦେଖାଯାଏ । ଯେଉଁମାନେ ମୋହର ବଶୀଭୂତ ହୁଅନ୍ତି, ସେମାନେ ଅଧର୍ମକୁ ଧର୍ମ କହନ୍ତି, ସେମାନେ ବ୍ରତଶୂନ୍ୟ, ମର୍ଯ୍ୟାଦା-ଭ୍ରଷ୍ଟ ଏବଂ ବ୍ରହ୍ମରାକ୍ଷସ ବୋଲି ଉକ୍ତ ହୁଅନ୍ତି । ୭୨ । ସେହି ସମସ୍ତ ନରଗଣ ଯଦି କାଳକୃତ ଉଦ୍‌ଯୋଗବଶତଃ ଇହଲୋକରେ ଉତ୍ପନ୍ନ ହୁଅନ୍ତି, ତେବେ ସେହି ନରାଧମମାନେ ହୋମହୀନ ଓ ବଷଟ୍‌କାରବିହୀନ ହୁଅନ୍ତି । ୭୩ । ହେ ଦେବି ! ଆମ୍ଭେ ତୁମ୍ଭର ସଂଶୟଚ୍ଛେଦ ନିମିତ୍ତ ନରଗଣଙ୍କର ହିତାହିତ-କର ସମସ୍ତ ଧର୍ମସାଗର କୀର୍ତ୍ତନ କଲୁଁ । ୭୪ ।

---

## ଅଧ୍ୟାୟ—୧୪୭

ନାରଦ କହିଲେ, ସର୍ବଶକ୍ତିମାନ୍ ମହାଦେବ ସ୍ୱୟଂ ଏହିପରି କହି ସ୍ତ୍ରୀଧର୍ମ ଶ୍ରବଣ ବିଷୟରେ କାମନା କରି ପାର୍ଶ୍ୱବର୍ତ୍ତିନୀ ଅନୁକୂଳାପ୍ରିୟା ଭାର୍ଯ୍ୟାଙ୍କୁ କହିଲେ (୧), ହେ ଦେବି ! ସୁଭ୍ରୁ ହିମାଳୟଗିରିପୁତ୍ରି ଧର୍ମ-ଗୃହିଣି ! ତୁମ୍ଭେ ଉତ୍କର୍ଷ, ଅପକର୍ଷ ଓ ଧର୍ମ ବିଷୟସବୁ ଉତ୍ତମରୂପେ ଜାଣିଅଛ, ଏହି ତପୋବନ ତୁମ୍ଭର ପ୍ରଧାନ ବାସସ୍ଥାନ । ହେ ସୁକେଶି !

ତୁମ୍ଭେ ସାଧ୍ୱୀ, କାର୍ଯ୍ୟଦକ୍ଷା, ଦମ ଓ ଶାନ୍ତିଗୁଣଯୁକ୍ତା, ମମତାପରିଶୂନ୍ୟା ଓ ଧର୍ମାନୁଷ୍ଠାନରେ ଅନୁରକ୍ତା ଅଟ । ହେ ବରାରୋହେ ! ଆମ୍ଭେ ତୁମ୍ଭଙ୍କୁ ପ୍ରଶ୍ନ କରୁଅଛୁଁ, ତୁମ୍ଭେ ପ୍ରଶ୍ନ ଶ୍ରବଣ କରି ଆମ୍ଭର ଅଭିଳଷିତ ବିଷୟ ଶ୍ରବଣ କର । ୩ ।

ବ୍ରହ୍ମାଙ୍କ ପତ୍ନୀ ସାଧ୍ୱୀ ସାବିତ୍ରୀ, ଇନ୍ଦ୍ରଙ୍କ ପତ୍ନୀ ସତୀ ଶଚୀ, ମାର୍କଣ୍ଡେୟଙ୍କ ଭାର୍ଯ୍ୟା ଧୂମୋର୍ଣ୍ଣା, କୁବେରଙ୍କ ସ୍ତ୍ରୀ ଋଦ୍ଧି, ବରୁଣଙ୍କ ପତ୍ନୀ ଗୌରୀ, ସୂର୍ଯ୍ୟଙ୍କର ଭାର୍ଯ୍ୟା ସୁବର୍ଚ୍ଚଳା, ଚନ୍ଦ୍ରଙ୍କ ପତ୍ନୀ ସାଧ୍ୱୀ ରୋହିଣୀ, ଅଗ୍ନିଙ୍କ ଭାର୍ଯ୍ୟା ସ୍ୱାହା ଏବଂ କଶ୍ୟପଙ୍କ ସ୍ତ୍ରୀ ଅଦିତି, ଏମାନେ ସମସ୍ତେ ପତିଙ୍କୁ ଦେବତାସଦୃଶ ଜ୍ଞାନ କରନ୍ତି । ହେ ଦେବି ! ତୁମ୍ଭେ ଏହି ସମସ୍ତ ପତିବ୍ରତାମାନଙ୍କୁ ନିଯୁତ ପ୍ରଶ୍ନ କରିଥାଅ ଏବଂ ଉପାସନା କରିଥାଅ । ୬ । ଅତଏବ ହେ ଧର୍ମବାଦିନ ଧର୍ମଜ୍ଞେ ! ଏହି ନିମିତ୍ତ ତୁମ୍ଭଙ୍କୁ ପ୍ରଶ୍ନ କରୁଅଛୁଁ ଯେ ତୁମ୍ଭେ ପ୍ରଥମରୁ ସ୍ତ୍ରୀ ଧର୍ମ କୀର୍ତ୍ତନ କର । ଆମ୍ଭେ ତାହା ଶ୍ରବଣ କରିବାକୁ ଇଚ୍ଛୁକ ହୋଇଅଛୁଁ । ୭ ।

ତୁମ୍ଭେ ଆମ୍ଭର ସହଧର୍ମିଣୀ, ସମଶୀଳା ଓ ସମବ୍ରତଧାରିଣୀ, ତୁମ୍ଭର ସାର ଓ ବଳ ଆମ୍ଭ ସଦୃଶ ଅଟେ । ତୁମ୍ଭେ ତୀବ୍ରତର ତପସ୍ୟା କରିଅଛ । ୮ । ଅତଏବ ହେ ଦେବି ! ତୁମ୍ଭେ ଯେଉଁ ସ୍ତ୍ରୀ ଧର୍ମ କହିବ, ତାହା ବିଶେଷରୂପେ ଉତ୍କୃଷ୍ଟ ହେବ ଓ ଲୋକମଧ୍ୟରେ ପ୍ରମାଣସ୍ୱରୂପ ହେବ । ୯ । ସ୍ତ୍ରୀଗଣ ସ୍ତ୍ରୀଜନଙ୍କର ପରମଗତି । ଏହି ଗତି, ପରମ୍ପରାକ୍ରମରେ ସର୍ବଦା ଭୂଲୋକରେ ଗମନ କରିଥାଏ । ୧୦ । ହେ ସୁଶ୍ରୋଣି ! ଆମ୍ଭ ଶରୀର ତୁମ୍ଭର ଅର୍ଦ୍ଧଶରୀରଦ୍ୱାରା ନିର୍ମିତ, ତୁମ୍ଭେ ଲୋକବିସ୍ତାରକାରିଣୀ ହୋଇ ସୁରକାର୍ଯ୍ୟ ସାଧନ କରୁଅଛ । ୧୧ । ହେ ଶୁଭେ ! ସମସ୍ତ ଶାଶ୍ୱତ ସ୍ତ୍ରୀଧର୍ମ ତୁମ୍ଭଙ୍କୁ ଜଣାଅଛି, ଅତଏବ ତୁମ୍ଭେ ନିଜ ଧର୍ମକୁ ଅଶେଷରୂପେ ବିସ୍ତାରକ୍ରମେ ପ୍ରକାଶ କର । ୧୨ ।

ଉମା କହିଲେ, ହେ ସର୍ବେଶ ଭୂତଭବ୍ୟଭବୋଦ୍ଭବ ଭଗବନ୍ ! ତୁମ୍ଭ ପ୍ରସାଦରେ ଆମ୍ଭର ଏହି ବାକ୍ୟ ପ୍ରକାଶିତ ହେଉଅଛି । ୧୩ । ହେ ଦେବେଶ ! ଏହି ସମସ୍ତ ନଦୀଗଣ ସମସ୍ତ ତୀର୍ଥଜଳରେ ସମନ୍ୱିତ ହୋଇ ତୁମ୍ଭଙ୍କୁ ସ୍ପର୍ଶ କରିବା ନିମିତ୍ତ ତୁମ୍ଭ ନିକଟକୁ ଗମନ କରନ୍ତି; ଅତଏବ ଆମ୍ଭେ ଏମାନଙ୍କ ସହିତ ମନ୍ତ୍ରଣା କରି ଆନୁପୂର୍ବିକ ସମସ୍ତ ବିଷୟ କହୁଅଛୁ । ହେ ଭଗବନ୍ ! ଯେଉଁ ବ୍ୟକ୍ତି ଅହଂବାଦୀ ନୁହନ୍ତି, ସେ ପୁରୁଷ ବୋଲି କଥିତ ହୁଅନ୍ତି । ୧୫ । ହେ ଭୂତେଶ ! ସ୍ତ୍ରୀଜନ ସର୍ବଦା ସ୍ତ୍ରୀ

ବ୍ୟକ୍ତିଙ୍କ ନିକଟକୁ ଅନୁଧାବନ କରୁଥାଆନ୍ତି । ନଦୀବୃନ୍ଦ ମଧ୍ୟରେ ଉତ୍କୃଷ୍ଟ ଏହି ପୁଣ୍ୟ ନଦୀ ସରସ୍ୱତୀ, ସମସ୍ତ ନଦୀ ମଧ୍ୟରେ ଅଗ୍ରଗଣ୍ୟା ସାଗରଗାମିନୀ ବିପାଶା, ନଦୀ ବିତସ୍ତା, ଚନ୍ଦ୍ରଭାଗା, ଇରାବତୀ, ଶତଦ୍ରୁ, ଦେବିକା, ସିନ୍ଧୁ, କୌଶିକୀ, ଗୋମତୀ ଏବଂ ସର୍ବତୀର୍ଥପରିବୃତା ଦେବନଦୀ, ଯେ ଗଗନରୁ ଭୂତଳକୁ ଆଗମନ କରିଅଛନ୍ତି, ସେହି ସର୍ବ ସରିଦ୍‌ବରା ଏହି ଗଙ୍ଗାଦେବୀ, ଏହିମାନେ ସମସ୍ତେ ଆମ୍ଭଦ୍ୱାରା ସମ୍ମାନିତା ହେବେ । ଧର୍ମବତ୍ସଳା ଦେବ ମନସ୍ୱିନୀ, ଧର୍ମଚାରିଣୀ ଦେବଦେବଙ୍କ ପତ୍ନୀ ଏହି କଥା କହି ଈଷଦ୍ଧାସ୍ୟ ପୂର୍ବକ ସେହି ସମସ୍ତ ସ୍ତ୍ରୀଧର୍ମକୁଶଳା ସରିଦ୍‌ବରା ଗଙ୍ଗା ପ୍ରଭୃତିଙ୍କୁ ସ୍ତ୍ରୀ ଧର୍ମ ବିଷୟ ପ୍ରଶ୍ନକଲେ । ୨୧ ।

ଉମା କହିଲେ, ହେ ନଦୀବୃନ୍ଦ ! ଏହି ଭଗବାନ୍ ଶିବ ଆମ୍ଭଙ୍କୁ ସ୍ତ୍ରୀଧର୍ମ ସମ୍ବନ୍ଧୀୟ ପ୍ରଶ୍ନ କରିଅଛନ୍ତି, ଆମ୍ଭେ ତୁମ୍ଭମାନଙ୍କ ସହିତ ପରାମର୍ଶ କରି ଶଙ୍କରଙ୍କୁ ତଦ୍‌ବିଷୟ କହିବାକୁ ଅଭିଳାଷ କରୁଅଛୁଁ । ୨୨ । ଭୂମଣ୍ଡଳରେ ଅଥବା ସ୍ୱର୍ଗଲୋକରେ କୌଣସି ବ୍ୟକ୍ତି ଏକାକୀ ବିଜ୍ଞାନବିଷୟକୁ ସ୍ଥିର କରିପାରନ୍ତି ନାହିଁ । ଅତଏବ ହେ ସାଗରଗାମିନୀଗଣ ! ଏହି ନିମିତ୍ତ ଆମ୍ଭେ ତୁମ୍ଭମାନଙ୍କୁ ସମ୍ମାନ କରୁଅଛୁଁ । ୨୩ । ସମସ୍ତ ପବିତ୍ରତମା କଲ୍ୟାଣଦାୟିନୀ ତରଙ୍ଗିଣୀମାନେ ଏହିପରି ପ୍ରଶ୍ନ ଶ୍ରବଣ କରନ୍ତେ ଚନ୍ଦ୍ରଧରୁ ଦେବନଦୀ ଗଙ୍ଗା ପ୍ରତ୍ୟୁତ୍ତର ପ୍ରଦାନ ବିଷୟରେ ନିଯୁକ୍ତା ହେଲେ । ୨୪ । ବହୁବୁଦ୍ଧିରଶ୍ମିଦ୍ୱାରା ସ୍ଥିତା, ସ୍ତ୍ରୀଧର୍ମଜ୍ଞା, ଶୁଚିସ୍ମିତା, ପୁଣ୍ୟଦ୍ୱାରା ପାପଭୟାପହା, ବୁଦ୍ଧି ସହିତ ବିନୟସମ୍ପନ୍ନା, ସର୍ବଧର୍ମବିଶାରଦା, ବହୁବୁଦ୍ଧିଶାଳିନୀ ଗଙ୍ଗା ଶୈଳରାଜଦୁହିତାଙ୍କୁ ପ୍ରତିପୂଜା କରି ଈଷତ୍ ହାସ୍ୟ ସହିତ କହିଲେ । ୨୬ ।

ହେ ଧର୍ମପରାୟଣେ ଦେବି ! ଆମ୍ଭେ ଧନ୍ୟା ଏବଂ ଅନୁଗୃହୀତା ହେଲୁଁ, କାରଣ ତୁମ୍ଭେ ସମସ୍ତ ଭୁବନସମୂହର ମାନ୍ୟା ହୋଇ ନଦୀସ୍ୱରୂପିଣୀ ଆମ୍ଭଙ୍କୁ ସମ୍ମାନ କରୁଅଛ । ୨୭ । ଯେଉଁ ବ୍ୟକ୍ତି ଜିଜ୍ଞାସୁ ଜନଙ୍କୁ ସମ୍ମାନ କରନ୍ତି, ଆମ୍ଭେ ବିବେଚନା କରୁଁ, ସେହି ବ୍ୟକ୍ତି ଧର୍ମଜ୍ଞା ଅଟନ୍ତି ଏବଂ ପଣ୍ଡିତା ପଦର ଉପଯୁକ୍ତ ହୁଅନ୍ତି । ୨୮ । ଯେ ଜ୍ଞାନବିଜ୍ଞାନସମ୍ପନ୍ନ ତର୍କବିତର୍କବିଶାରଦ ଉତ୍କୃଷ୍ଟ ବକ୍ତାମାନଙ୍କୁ ଏବଂ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କୁ ପ୍ରଶ୍ନ କରନ୍ତି, ସେ କଦାପି ଆପଦ୍‌ଗ୍ରସ୍ତ ହୁଅନ୍ତି ନାହିଁ । ୨୯ । ବହୁବୁଦ୍ଧିସମ୍ପନ୍ନ ନର ଯଦ-ସଭା ମଧ୍ୟରେ ବାକ୍ୟ ବିନ୍ୟାସ କରନ୍ତି, ସେ ଅହଂବାଦୀ ହେଲେ ଦୁର୍ବଳ ବାକ୍ୟ କହନ୍ତି ।୩୦। ହେ ଦେବି ! ତୁମ୍ଭେ ଦିବ୍ୟଜ୍ଞାନସମ୍ପନ୍ନା

ଓ ସ୍ୱର୍ଗମଧ୍ୟରେ ପ୍ରଧାନ ବୋଲି ପରିଗଣିତ । ହେ ଦିବ୍ୟପୁଣ୍ୟନିଚୟ-ସନ୍ତୋଷିତେ ଦେବି ! ତୁମ୍ଭେ ଆମ୍ଭମାନଙ୍କ ନିକଟରେ ସ୍ତ୍ରୀଧର୍ମସମ୍ବନ୍ଧ କୀର୍ତ୍ତନ କରିବାକୁ ଯୋଗ୍ୟ ଅଟ । ୩୧ । ତଦନନ୍ତର ସୁରସୁନ୍ଦରୀ ପାବନୀ ଗଙ୍ଗା କର୍ତ୍ତୃକ ବିବିଧରୂପେ ପ୍ରଶଂସିତା ହୋଇ ଅଶେଷ ପ୍ରକାର ସ୍ତ୍ରୀଧର୍ମର ବିଷୟ କହିବାକୁ ଉପକ୍ରମ କଲେ । ୩୨ ।

ଉମା କହିଲେ, ଆମ୍ଭେ ଯଥାବିଧି ସ୍ତ୍ରୀଧର୍ମ ଯେପରି ଜାଣୁ, ତାହା କୀର୍ତ୍ତନ କରୁଅଛୁ, ତଦ୍‌ବିଷୟରେ ଅବହିତା ହୁଅ । ୩୩ । ପୂର୍ବେ ବିବାହ କାଳରେ ବନ୍ଧୁଗଣ ଏହି ସ୍ତ୍ରୀଧର୍ମକୁ ବିଧାନ କରିଅଛନ୍ତି । ନାରୀଗଣ ଅଗ୍ନିଙ୍କ ସମୀପରେ ଭର୍ତ୍ତାଙ୍କର ସହଧର୍ମଚାରିଣୀ ହୁଅନ୍ତି । ୩୪ । ଯେଉଁ ସୁସ୍ୱଭାବା ସୁଶୀଳା ସୁବଚନା ସୁଖଦର୍ଶନା ସୀମନ୍ତିନୀ ନିରନ୍ତର ପୁତ୍ରର ମୁଖସଦୃଶ ପତିଙ୍କ ମୁଖକୁ ନିରୀକ୍ଷଣ କରନ୍ତି, ଯେଉଁ ସାଧ୍ୱୀ ନିୟତାଚାରର ଅଟନ୍ତି, ସେ ଧର୍ମଚାରିଣୀ ହୁଅନ୍ତି । ୩୫ । ଯେଉଁ ସ୍ତ୍ରୀ ସଦ୍ଧର୍ମକୃତ ଶୁଭଦମ୍ପତି ଧର୍ମ ଶ୍ରବଣ କରି ଧର୍ମପରାୟଣା ହୁଅନ୍ତି ଏବଂ ପତିଙ୍କ ସଦୃଶ ବ୍ରତାଚରଣ କରନ୍ତି, ସେହି ପତିବ୍ରତା ସର୍ବଦା ପତିଙ୍କୁ ଦେବବତ୍ ଜ୍ଞାନ କରନ୍ତି ।୩୬। ଯେଉଁ ସ୍ତ୍ରୀ ଦେବ-ସଦୃଶ ପତିଙ୍କର ଶୁଶ୍ରୂଷା ଓ ପରିଚର୍ଯ୍ୟା କରନ୍ତି, ପତିଙ୍କର ବଶୀଭୂତା ହୋଇ ସର୍ବାନ୍ତଃକରଣରେ ସୁବ୍ରତା ଓ ସୁଖଦର୍ଶନା ହୁଅନ୍ତି ଏବଂ ଯେଉଁ ସ୍ତ୍ରୀ ଅନନ୍ୟଚିତ୍ତା, ଅବିମନା ଓ ସୁବଦନା ସେ ଧର୍ମଚାରିଣୀ ହୁଅନ୍ତି । ୩୭ ।

ପତି ନିଷ୍ଠୁର ବାକ୍ୟ କହିଲେ ଓ କ୍ରୁଦ୍ଧ ଲୋଚନରେ ନିରୀକ୍ଷଣ କଲେ ସୁଦ୍ଧା ଯେଉଁ ସ୍ତ୍ରୀ ସ୍ୱାମୀଙ୍କ ନିକଟରେ ସୁପ୍ରସନ୍ନ ମୁଖରେ ଅବସ୍ଥିତି କରନ୍ତି, ସେହି ପତିବ୍ରତା ଧର୍ମଚାରିଣୀ ହୁଅନ୍ତି । ଯେଉଁ ସ୍ତ୍ରୀ ଚନ୍ଦ୍ର ସୂର୍ଯ୍ୟ କିମ୍ବା ପୁରୁଷ ନାମକ ବୃକ୍ଷମାନଙ୍କ ଉପରେ ଦୃଷ୍ଟି ନିକ୍ଷେପ ନ କରନ୍ତି, ସେହି ଭର୍ତ୍ତୃପୂଜ୍ୟା ବରାରୋହା ସ୍ତ୍ରୀ ଧର୍ମଚାରିଣୀ ହୁଅନ୍ତି । ଯେଉଁ ସ୍ତ୍ରୀ ସଚ୍ଚରିତା, ପ୍ରିୟବାଦିନୀ, ସଦ୍‌ବ୍ୟବହାରନିରତା ଓ ପ୍ରିୟଦର୍ଶନା ହୁଅନ୍ତି, ଏବଂ ସ୍ୱାମୀଙ୍କ ମୁଖଦର୍ଶନରେ ପୁତ୍ରବଦନଦର୍ଶନଜନିତ ଆହ୍ଲାଦସଦୃଶ ଆନନ୍ଦ ଅନୁଭବ କରନ୍ତି, ସେ ଯଥାର୍ଥ ଧର୍ମଚାରିଣୀ ଓ ସାଧ୍ୱୀ ଅଟନ୍ତି ।

ଯେ ଦମ୍ପତି ଧର୍ମଶ୍ରବଣରେ ଅନୁରାଗିଣୀ, ପତିଙ୍କ ସଦୃଶ ବ୍ରତଚାରିଣୀ ଓ ଧର୍ମାନୁରକ୍ତା ହୁଅନ୍ତି ଏବଂ ସ୍ୱୀୟ ସ୍ୱାମୀଙ୍କୁ ଦେବତୁଲ୍ୟ ଜାଣି ଦେବସଦୃଶ ପରିଚର୍ଯ୍ୟା କରନ୍ତି, ଯେ ଏକାନ୍ତଚିତ୍ତରେ ସ୍ୱାମୀଙ୍କର ବଶୀଭୂତା ହୋଇ ବ୍ରତାନୁଷ୍ଠାନ କରନ୍ତି, ଯାହାଙ୍କ ମନ ସ୍ୱାମୀଚିନ୍ତାଭିନ୍ନ ଅନ୍ୟ ଚିନ୍ତାରୁ ନିବୃତ୍ତ ହୋଇଥାଏ, ସ୍ୱାମୀ ଦରିଦ୍ର, ବ୍ୟାଧିପୀଡ଼ିତ, କାତର ଅବା

ପଥଭ୍ରାନ୍ତ ହୋଇଥିଲେ, ଯେ ତାହାଙ୍କଠାରେ ଅକପଟ ଭାବରେ ସମାଦର ପ୍ରକାଶ କରନ୍ତି, ଯେ କାର୍ଯ୍ୟଦକ୍ଷା, ପ୍ରସୂତା, ପତିପରାୟଣା ଓ ପୁତ୍ରବତୀ, ଯେଉଁ ସ୍ତ୍ରୀ ପତିବ୍ରତା ଓ ପତିପ୍ରାଣା ଅଟନ୍ତି, ସେ ଧର୍ମଚାରିଣୀ ହୁଅନ୍ତି । ୪୫ ।

ଯେଉଁ ନାରୀ ସୁପ୍ରୀତା, ଧନପୁତ୍ରବତୀ ଏବଂ ଅନନ୍ୟଚିତ୍ତ ହୋଇ ସର୍ବଦା ପତିଙ୍କ ପରିଚର୍ଯ୍ୟା ଓ ଶୁଶ୍ରୂଷା କରନ୍ତି, ସେ ଧର୍ମଭାଗିନୀ ହୁଅନ୍ତି । ୪୬ । ଯେ ପ୍ରତିଦିନ ଅନ୍ନପ୍ରଦାନଦ୍ୱାରା କୁଟୁମ୍ବଗଣଙ୍କୁ ପ୍ରତିପାଳନ କରନ୍ତି, ଯେ ପତିଙ୍କଠାରେ ଯେଉଁପରି ଅନୁରାଗ ପ୍ରକାଶ କରନ୍ତି, କାମ, ଭୋଗ, ଐଶ୍ୱର୍ଯ୍ୟ ଓ ସୁଖ ବିଷୟରେ ତାଦୃଶ ଅଭିଳାଷ ନ କରନ୍ତି, ସେହି ନାରୀ ଧର୍ମଭାଗିନୀ ହୁଅନ୍ତି । ୪୭ । ପ୍ରତ୍ୟୁଷରେ ଗାତ୍ରୋତ୍ଥାନ କରିବାକୁ ଯାହାଙ୍କର ଅନୁରାଗ ଥାଏ, ଯେ ଗୃହଶୁଶ୍ରୂଷା କରିବାକୁ ଅନୁରାଗିଣୀ, ଏବଂ ଗୃହସମୂହର ସୁନ୍ଦରରୂପେ ମାର୍ଜନା ଓ ଗୋମୟଦ୍ୱାରା ଲେପନ କରନ୍ତି (୪୮), ଯେ ସର୍ବଦା କାର୍ଯ୍ୟତତ୍ପର, ସନ୍ତତ ପୁଷ୍ପାବଳୀ ପ୍ରଦାନ କରନ୍ତି, ପତିଙ୍କ ସହିତ ଦେବତା, ଅତିଥି ଓ ଭୃତ୍ୟଗଣଙ୍କୁ ଯଥାନ୍ୟାୟରେ ଦାନକରି ବିଧିଅନୁସାରେ ଶେଷାନ୍ନ ଭୋଜନ କରନ୍ତି, ଯାହାଙ୍କ ପରିଜନଗଣ ସର୍ବଦା ସନ୍ତୁଷ୍ଟ ଓ ପରିପୁଷ୍ଟ ଥାଆନ୍ତି, ସେହି ସ୍ତ୍ରୀ ଧର୍ମଭାଗିନୀ ହୁଅନ୍ତି ।୫୦। ଯେଉଁ ଗୁଣବତୀ ସତୀ ଶ୍ୱଶ୍ରୂ ଏବଂ ଶ୍ୱଶୁରଙ୍କ ଚରଣ ବନ୍ଦନ କରନ୍ତି, ଏବଂ ମାତାପିତାଙ୍କଠାରେ ଭକ୍ତି କରନ୍ତି, ସେ ତପୋଧନା ହୁଅନ୍ତି । ୫୧ ।

ଯେଉଁ ସ୍ତ୍ରୀ ବ୍ରାହ୍ମଣ, ଦୁର୍ବଳ, ଅନାଥ, ଦୀନ, ଅନ୍ଧ ଓ କୃପାପାତ୍ର-ଗଣଙ୍କୁ ଅନ୍ନଦାନଦ୍ୱାରା ପ୍ରତିପାଳନ କରନ୍ତି, ସେ ପତିବ୍ରତଭାଗିନୀ ହୁଅନ୍ତି ।୫୨। ଯେଉଁ ସ୍ତ୍ରୀ ଅଳ୍ପପ୍ରାଣା ହୋଇ ସୁଦ୍ଧା ପ୍ରତିଦିନ ଦୁଷ୍କର ବ୍ରତ ଆଚରଣ କରନ୍ତି ଏବଂ ଯେ ପତିଗତଚିତ୍ତା, ଏବଂ ପତିହିତକାରିଣୀ ଅଟନ୍ତି, ସେ ପତିବ୍ରତଭାଗିନୀ ହୁଅନ୍ତି । ୫୩ । ଯେଉଁ ସ୍ତ୍ରୀ ପତିଙ୍କୁ ପରମଶ୍ରେଷ୍ଠ ଜ୍ଞାନ କରନ୍ତି, ସେହି ସତୀ ପତିବ୍ରତା ହୁଅନ୍ତି । ତାହାଙ୍କର ସେହି ପତିସେବା ପୁଣ୍ୟ, ପତିଶୁଶ୍ରୂଷା କେବଳ ତପସ୍ୟା ଏବଂ ତାହା କେବଳ ସନାତନ ସ୍ୱର୍ଗ ଅଟେ । ୫୪ । ସ୍ତ୍ରୀମାନଙ୍କର ପତି କେବଳ ଦେବତା, ପତି କେବଳ ବନ୍ଧୁ, ପତି କେବଳ ଗତି, ପତିଙ୍କ ସମାନ ଗତି ନାହିଁ । ସ୍ତ୍ରୀମାନଙ୍କର ପତି ଦେବତାସଦୃଶ ଅଟନ୍ତି । ୫୫ । ସ୍ତ୍ରୀଗଣଙ୍କଠାରେ ପତିଙ୍କ ପ୍ରସନ୍ନତା ଓ ସ୍ୱର୍ଗବାସ ଏହି ଦୁହେଁ ସମାନ ହେବେ ନାହିଁ ।

ହେ ମହେଶ୍ୱର ଦେବ ! ତୁମ୍ଭେ ପ୍ରସନ୍ନ ଥିବାରୁ ଆମ୍ଭେ ସ୍ୱର୍ଗକୁ ଇଚ୍ଛା କରୁନାହୁଁ । ୫୬ । ପତି ଯଦି ଦରିଦ୍ର, କୌଣସି ପ୍ରକାର ବ୍ୟାଧିଗ୍ରସ୍ତ,

ଆପଦ୍‌ଗ୍ରସ୍ତ, ଈଶ୍ୱର ବଶୀଭୂତ ଅଥବା ବ୍ରହ୍ମଶାପାର୍ଦ୍ଦିତ ହେବାରୁ କୌଣସି ଅକାର୍ଯ୍ୟ, ଅଧର୍ମ ଅଥବା ପ୍ରାଣନାଶ କରିବାକୁ ଆଦେଶ କରନ୍ତି, ତେବେ ଆପଦ୍ଧର୍ମ ଅବଲୋକନ କରି ନିଃଶଙ୍କ ଭାବରେ ତାହା କରିବାର ଉଚିତ ।୫୮। ହେ ଦେବ ! ଆମ୍ଭେ ତୁମ୍ଭ ବଚନାନୁସାରେ ଯଥାକ୍ରମରେ ଏହି ସ୍ତ୍ରୀଧର୍ମ କହିଲୁଁ । ଯେଉଁ ନାରୀ ଏହିପରି ହୁଅନ୍ତି ସେ ପତିବ୍ରତା ଅଟନ୍ତି । ୫୯ ।

ନାରଦ କହିଲେ, ସେହି ଦେବଶ୍ରେଷ୍ଠ ମହେଶ୍ୱର ଏହି ବାକ୍ୟ ଶ୍ରବଣ କରି ଗିରିସୁତାଙ୍କୁ ସମାଦରପୂର୍ବକ ଅନୁଚରଗଣ ସହିତ ସମସ୍ତ ଲୋକଙ୍କୁ ବିଦାୟ ଦେଲେ । ୬୦ । ତଦନନ୍ତର ଭୂତଗଣ, ସରିତ୍‌ସମୂହ, ଗନ୍ଧର୍ବ ଓ ଅପ୍‌ସରାଗଣ ଅବନତ ମସ୍ତକରେ ମହେଶ୍ୱରଙ୍କୁ ପ୍ରଣାମ କରି ଯଥାସ୍ଥାନକୁ ଗମନ କଲେ । ୬୧ ।

---

## ଅଧ୍ୟାୟ—୧୪୭

ଋଷିଗଣ କହିଲେ—ହେ ପିନାକଧାରିନ୍ ! ଭଗନେତ୍ରଘ୍ନ ! ସର୍ବ-ଲୋକନମସ୍କୃତ ଶଙ୍କର ! ଆମ୍ଭେମାନେ ଆପଣଙ୍କ ନିକଟରୁ ବାସୁଦେବଙ୍କ ମାହାତ୍ମ୍ୟ ଶ୍ରବଣ ନିମିତ୍ତ ଅଭିଳାଷ କରୁଅଛୁଁ । ୧ । ମହେଶ୍ୱର କହିଲେ, ଶାଶ୍ୱତ ପୁରୁଷ ହରି ପିତାମହ ବ୍ରହ୍ମାଙ୍କ ଅପେକ୍ଷା ଶ୍ରେଷ୍ଠ, ସେ କୃଷ୍ଣବର୍ଣ୍ଣ ହେଲେ ସୁଦ୍ଧା ସୁବର୍ଣ୍ଣ ସଦୃଶ ଏବଂ ଅଭ୍ରଶୂନ୍ୟ ଆକାଶରେ ସମୁଦିତ ସୂର୍ଯ୍ୟଦେବଙ୍କ ପରି ପ୍ରଭାଶାଳୀ ଅଟନ୍ତି । ୨ । ଦଶବାହୁ ସମନ୍ୱିତ ସେହି ମହାତେଜା ଦେବଗଣଙ୍କ ଶତ୍ରୁନିସୂଦନ ଅଟନ୍ତି । ଶ୍ରୀବତ୍ସ ଚିହ୍ନଧାରୀ ହୃଷୀକେଶ ସମସ୍ତ ଦେବଗଣଙ୍କ ପୂଜିତ ।୩। ବ୍ରହ୍ମା ତାହାଙ୍କ ଉଦରରୁ ଉତ୍ପନ୍ନ ହୋଇ-ଅଛନ୍ତି, ଆମ୍ଭେ ତାହାଙ୍କ ମସ୍ତକରୁ ଉତ୍ପନ୍ନ ହୋଇଅଛୁଁ, ତଦୀୟ କେଶସମୂହରୁ ଜ୍ୟୋତିରାଶି ଏବଂ ରୋମାବଳୀରୁ ସୁରାସୁରଗଣ ଉତ୍ପନ୍ନ ହୋଇଅଛନ୍ତି । ଋଷିଗଣ ଏବଂ ଶାଶ୍ୱତ ଲୋକସମୂହ ତାହାଙ୍କ ଦେହରୁ ସମ୍ଭୂତ ଅଟନ୍ତି ।

ସେହି ତ୍ରିଭୁବନେଶ୍ୱର ସ୍ୱୟଂ ସାକ୍ଷାତ୍ ପିତାମହଙ୍କ ଗୃହ ଅର୍ଥାତ୍ ଆଶ୍ରୟ ଓ ସମସ୍ତ ଦେବଗଣଙ୍କର ମଧ୍ୟ ଗୃହ ଅଟନ୍ତି । ୫ । ସେ ପୃଥିବୀର ସୃଷ୍ଟିକର୍ତ୍ତା, ସେହି କେବଳ ସ୍ଥାବର ଜଙ୍ଗମ ସମସ୍ତ ଭୂତ ସମୂହର ସଂହାରକର୍ତ୍ତା ।

ସେହି ଦେବବର ସ୍ୱୟଂ ଦେବଗଣଙ୍କ ନାଥ ଓ ପରନ୍ତପ । ସେ ସର୍ବଜ୍ଞ, ସର୍ବସଂଶ୍ଳିଷ୍ଟ ଅର୍ଥାତ୍ ସର୍ବଭୂତାନୁଯୋଗୀ, ସର୍ବଗ ଓ ସର୍ବତୋମୁଖ ଅଟନ୍ତି ।୭। ସେ ପରମାତ୍ମା, ହୃଷୀକେଶ, ସର୍ବବ୍ୟାପୀ ଓ ମହେଶ୍ୱର ଅଟନ୍ତି, ତ୍ରିଭୁବନ ମଧ୍ୟରେ ତାହାଙ୍କ ଅପେକ୍ଷା ଶ୍ରେଷ୍ଠ ହୋଇ ଅନ୍ୟ କେହି ନାହାନ୍ତି । ୮ । ସେ ସନାତନ, ଗୋବିନ୍ଦ ଓ ମଧୁସୂଦନ ନାମରେ ବିଖ୍ୟାତ ଅଟନ୍ତି । ସେହି ମାନବ ମାନୁଷ ଶରୀର ଧାରଣ କରି ଦେବକାର୍ଯ୍ୟ ନିମିତ୍ତ ଯୁଦ୍ଧରେ ସମସ୍ତ ପାର୍ଥିବଗଣଙ୍କୁ ନିହତ କରିବେ । ଦେବଗଣ ତ୍ରିବିକ୍ରମଙ୍କ ବ୍ୟତି-ରେକେ କୌଣସି କାର୍ଯ୍ୟ କରିବାକୁ ସମର୍ଥ ହୋଇପାରନ୍ତି ନାହିଁ । ୧୦ ।

ସୁରଗଣ ନାୟକହୀନ ହୋଇ ସମସ୍ତ ସୁରକାର୍ଯ୍ୟ ସାଧନ କରିବାକୁ ସମର୍ଥ ନୁହଁନ୍ତି । ସେ ସର୍ବଭୂତର ନାୟକ, ସେ ସର୍ବଦେବ ନମସ୍କୃତ (୧୧), ବ୍ରହ୍ମା, ଦେବକାର୍ଯ୍ୟରତ ଦେବନାଥ ବ୍ରହ୍ମର୍ଷି ଶରଣ୍ୟ ସେହି ବ୍ରହ୍ମ ସ୍ୱରୂପଙ୍କ ଶରୀରରେ ସୁଖରେ ସଂସ୍ଥିତ ହୋଇଥାଆନ୍ତି ଓ ତଦୀୟ ଗର୍ଭସ୍ଥ ହୋଇ ବସତି କରିଥାଆନ୍ତି । କ ସର୍ବଲୋକପିତାମହ ବ୍ରହ୍ମା, କ ଆମ୍ଭେ, କ ଅନ୍ୟାନ୍ୟ ଦେବଗଣ ସମସ୍ତେ ତାହାଙ୍କ ଶରୀର ମଧ୍ୟରେ ପରମ ସୁଖରେ ବାସ କରିଥାଉଁ । ସେହି ଶ୍ରୀଗର୍ଭ ପୁଣ୍ଡରୀକାକ୍ଷଦେବ ଶ୍ରୀଙ୍କ ସହିତ ବସତି କରିଥାଆନ୍ତି । ୧୪ । ଶାର୍ଙ୍ଗଧନୁ ଓ ଚକ୍ର ତାହାଙ୍କ ଆୟୁଧ, ସେ ଖଡ୍‌ଗଧାରୀ ଏବଂ ଗରୁଡ଼ଧ୍ୱଜ ଅଟନ୍ତି । ସେ ଉତ୍କୃଷ୍ଟ ଶୀଳ, ଶୌଚ, ଦମ, ପରାକ୍ରମ, ବୀର୍ଯ୍ୟ, ବପୁ, ଦର୍ଶନ, ଆରୋହ, ପ୍ରମାଣ, ଧୈର୍ଯ୍ୟ, ଆର୍ଜବ, ସମ୍ପତ୍ତି, ଆନୃଶଂସ୍ୟ, ରୂପ ଓ ବଳସମନ୍ୱିତ, ଅଦ୍ଭୁତଦର୍ଶନ, ଦିବ୍ୟାସ୍ତ୍ରସମୂହ ଦ୍ୱାରା ସମ୍ପନ୍ନ, ଯୋଗ-ମାୟାଯୁକ୍ତ, ସହସ୍ରାକ୍ଷ, ଅବିନାଶୀ ଏବଂ ମହାମନା ଅଟନ୍ତି । ସେ ବୀରମିତ୍ର-ଜନମାନଙ୍କର ଶ୍ଳାଘାକାରୀ, ଜ୍ଞାତି ଓ ବନ୍ଧୁଜନମାନଙ୍କ ପ୍ରିୟ, କ୍ଷମାଶୀଳ, ଅନହଂବାଦୀ, ବ୍ରହ୍ମଣ୍ୟ ଏବଂ ବ୍ରହ୍ମନାୟକ । ସେ ଭୟାର୍ତ୍ତଗଣଙ୍କ ଭୟହର୍ତ୍ତା, ଓ ମିତ୍ରଗଣଙ୍କର ଆନନ୍ଦବର୍ଦ୍ଧନ ଅଟନ୍ତି । ୧୯ ।

ସେ ଭୂତସମୂହର ଶରଣ୍ୟ ଓ ଦୀନଗଣଙ୍କ ପାଳନରେ ଅନୁରକ୍ତ, ସେ ଶ୍ରୁତବାନ୍, ଅର୍ଥସମ୍ପନ୍ନ ଓ ସର୍ବଭୂତର ନମସ୍କୃତ । ୨୦ । ସେ ସମାଶ୍ରିତ ସମୂହର ବରଦ ଅର୍ଥାତ୍ ବହୁ ଉପକାରକ, ଶତ୍ରୁଗଣଙ୍କ ଧର୍ମଜ୍ଞ । ସେ ନୀତିଜ୍ଞ, ନୀତିସମ୍ପନ୍ନ, ବ୍ରହ୍ମବାଦୀ ଓ ଜିତେନ୍ଦ୍ରିୟ ଅଟନ୍ତି ।୨୧। ଇହଲୋକରେ ସେହି ଗୋବିନ୍ଦ ଦେବଗଣଙ୍କ ଉନ୍ନତି ନିମିତ୍ତ ପରମବୁଦ୍ଧିସମନ୍ୱିତ, ଧର୍ମ-ସଂହିତ ପ୍ରଜାପତିଙ୍କ ସମ୍ବନ୍ଧୀୟ ଶୁଭ ମାନବ ପଥରେ ମହାନୁଭବ ମନୁଙ୍କ

ବଂଶରେ ପ୍ରାଦୁର୍ଭୂତ ହେବେ । ମନୁଙ୍କ ପୁତ୍ର ଅଙ୍ଗ, ତତ୍ସୁତ ଅନ୍ତର୍ଦ୍ଧାମା, ତାହାଙ୍କ ପୁତ୍ର ହବିର୍ଦ୍ଧାମା, ଅନନ୍ତର ପ୍ରଜାପତି ରୂପେ କୀର୍ତ୍ତିତ ହେବେ । ହବିର୍ଦ୍ଧାମାଙ୍କ ମହାନ୍‌ପୁତ୍ର ପ୍ରାଚୀନ ବର୍ହିନାମରେ ବିଖ୍ୟାତ ହେବେ । ୨୪ । ତାହାଙ୍କଠାରୁ ପ୍ରଚେତା ପ୍ରଭୃତି ଦଶପୁତ୍ର ହେବେ, ପ୍ରଚେତାଙ୍କଠାରୁ ଇହ-ଲୋକରେ ଦକ୍ଷପ୍ରଜାପତି ଜନ୍ମଗ୍ରହଣ କରିବେ । ୨୫ ।

ଦକ୍ଷକନ୍ୟା ଅଦିତିଙ୍କଠାରୁ ଆଦିତ୍ୟ ଉତ୍ପନ୍ନ ହେବେ । ଆଦିତ୍ୟଙ୍କ ଠାରୁ ମନୁ ଜନ୍ମଗ୍ରହଣ କରିବେ । ମନୁଙ୍କ ବଂଶରେ ଇଳା ଓ ସୁଦ୍ୟୁମ୍ନ ଜନ୍ମିବେ । ୨୬ । ବୁଧଙ୍କ ଔରସରେ ଇଳାଙ୍କ ଗର୍ଭରୁ ପୁରୁରବା ଜନ୍ମଗ୍ରହଣ କରିବେ । ତାହାଙ୍କଠାରୁ ଆୟୁ ଆବିର୍ଭୂତ ହେବେ । ଆୟୁଙ୍କଠାରୁ ନହୁଷ ଜାତ ହେବେ । ନହୁଷଙ୍କ ଆତ୍ମଜ ଯଯାତି ଜନ୍ମଗ୍ରହଣ କରିବେ । ୨୭ । ଯଯାତିଙ୍କଠାରୁ ମହାବଳ ଯଦୁ ଉତ୍ପନ୍ନ ହେବେ । ତାହାଙ୍କଠାରୁ କ୍ରୋଷ୍ଟା ଜନ୍ମିବେ; କ୍ରୋଷ୍ଟାଙ୍କର ବୃଜିନୀବାନ୍ ନାମକ ମହାବଳ ପୁତ୍ର ଜନ୍ମିବେ ।୨୮। ବୃଜିନୀବାନଙ୍କ ପୁତ୍ର ଅପରାଜିତ ଉଷଙ୍ଗୁ ଜନ୍ମଗ୍ରହଣ କରିବେ ।

ଉଷଙ୍ଗୁଙ୍କ ପୁତ୍ର ଶୂର ଓ ଚିତ୍ରରଥ (୨୯), ତାହାଙ୍କ କନିଷ୍ଠ ପୁତ୍ର ଶୂର ନାମରେ ବିଖ୍ୟାତ ହେବେ । ସେହି ବିଖ୍ୟାତବୀର୍ଯ୍ୟ, ଚରିତ୍ରଗୁଣ-ସମ୍ପନ୍ନ, ବିଧିବତ୍ ଯଜ୍ଞକାରୀ, ଅତିଶୟ ବିଶୁଦ୍ଧ ବ୍ରାହ୍ମଣସମ୍ମତ ଯଦୁବଂଶରେ କ୍ଷତ୍ରିୟଶ୍ରେଷ୍ଠ ମହାବୀର୍ଯ୍ୟ ମହାଯଶସ୍ୱୀ ମାନଦାତା ଶୂର ସ୍ୱବଂଶବିସ୍ତାରକାରୀ ବସୁଦେବ ନାମରେ ବିଖ୍ୟାତ ଆନକ ଦୁନ୍ଦୁଭି ନାମକ ପୁତ୍ର ଉତ୍ପାଦନ କରିବେ । ଚତୁର୍ବାହୁ ବାସୁଦେବ ତାହାଙ୍କ ପୁତ୍ର ହେବେ । ୩୨ । ସେହି ଯାଦବ ଦାତା, ବ୍ରାହ୍ମଣଗଣଙ୍କ ସତ୍କାରକର୍ତ୍ତା, ବ୍ରହ୍ମସ୍ୱରୂପ ଓ ଦ୍ୱିଜପ୍ରିୟ ହୋଇ ମଗଧରାଜ-ଜରାସନ୍ଧ କର୍ତ୍ତୃକ ସଂରୁଦ୍ଧ ରାଜାମାନଙ୍କୁ ମୋଚନ କରିବେ । ୩୩ । ସେହି ବୀର୍ଯ୍ୟବାନ୍ ବାସୁଦେବ ଗିରିଗହ୍ୱର ମଧ୍ୟରେ ରାଜା ଜରାସନ୍ଧଙ୍କୁ ପରାଜିତ କରି ସମସ୍ତ ନରପାଳଗଣଙ୍କ ରତ୍ନରାଜି ଦ୍ୱାରା ସୁସମୃଦ୍ଧ ହେବେ (୩୪) ଏବଂ ସେ ବୀର୍ଯ୍ୟବଶତଃ ପୃଥିବୀ ମଧ୍ୟରେ ଅପ୍ରତିହତ ଓ ବିକ୍ରମସମ୍ପନ୍ନ ହୋଇ ସମସ୍ତ ଭୂପାଳଗଣଙ୍କ ଉପରେ ଆଧିପତ୍ୟ କରିବେ । ୩୫ ।

ମିତଜ୍ଞ ଭଗବାନ୍ ଶୂରସେନ ଦେଶରେ ସମ୍ୟକ୍ ବୃଦ୍ଧିଲାଭ ପୂର୍ବକ ଦ୍ୱାରକାରେ ବସତି କରି ଜୟଲବ୍ଧ ବସୁନ୍ଧରା ଦେବୀଙ୍କୁ ସର୍ବଦା ପାଳନ କରିବେ । ୩୬ । ଆପଣମାନେ ତାହାଙ୍କ ନିକଟକୁ ଗମନପୂର୍ବକ ଉତ୍କୃଷ୍ଟ ଅର୍ହଣ ଦ୍ରବ୍ୟ ଓ ବାକ୍ୟରୂପ ମାଲ୍ୟଦ୍ୱାରା ଶାଶ୍ୱତ ବ୍ରହ୍ମଙ୍କୁ ଯେଉଁପରି ଅର୍ଚ୍ଚନା

କରନ୍ତି, ତଦ୍‌ଭକ୍ତ ତାହାଙ୍କୁ ଯଥାନ୍ୟାୟରେ ପୂଜା କରିବା ହେଉନ୍ତୁ । ୩୭ । ଯେ ଆତ୍ମକୁ ଅଥବା ପିତାମହ ବ୍ରହ୍ମାଙ୍କୁ ଦେଖିବା ନିମିତ୍ତ ଇଚ୍ଛା କରନ୍ତି, ପ୍ରତାପବାନ୍ ଭଗବାନ୍ ବାସୁଦେବଙ୍କୁ ତାହାଙ୍କର ଦର୍ଶନ କରିବାର ବିଧେୟ । ୩୮ ।

ହେ ମୁନିଗଣ ! ତୁମ୍ଭେମାନେ ଜାଣ, ସେ ତୁଷ୍ଟ ହେଲେ ଆମ୍ଭେ ତୁଷ୍ଟ ହେଉଁ ଏବଂ ଦେବେଶ ପିତାମହ ମଧ୍ୟ ତୁଷ୍ଟ ହୁଅନ୍ତି । ଏ ବିଷୟରେ କିଛି ବିଚାରଣା ନାହିଁ । ୩୯ । ସେହି ପୁଣ୍ଡରୀକାକ୍ଷ ଯାହାଙ୍କଠାରେ ପ୍ରୀତ ହେବେ, ବ୍ରହ୍ମାଦି ଦେବଗଣ ତାହାଙ୍କଠାରେ ପ୍ରସନ୍ନ ହୋଇ ରହି-ଥିବେ । ୪୦ । ଲୋକ ମଧ୍ୟରେ ଯେଉଁ ମାନବ ସେହି କେଶବଙ୍କୁ ଆଶ୍ରୟ କରିବେ, ତାହାଙ୍କର କୀର୍ତ୍ତିଜୟ ଓ ସ୍ୱର୍ଗଲାଭ ହେବ । ୪୧ । ସେହି ଧର୍ମଭାଗୀ ମାନବ ଧର୍ମସମୂହର ସାକ୍ଷାତ୍ ଉପଦେଷ୍ଟା ହେବେ । ଧର୍ମଜ୍ଞ ବ୍ୟକ୍ତିଗଣ ସର୍ବଦା ଉଦ୍‌ଯୋଗୀ ହୋଇ ସେହି ଦେବେଶ୍ୱରଙ୍କୁ ନମସ୍କାର କରିବେ । ୪୨ । ସେହି ସର୍ବଶକ୍ତିମାନ୍ ବାସୁଦେବ ଅର୍ଚ୍ଚିତ ହେଲେ ପରମ ଧର୍ମ ହୁଏ । ସେହି ମହାତେଜା ଦେବେଶ ପ୍ରଜାଗଣଙ୍କ ହିତ କରିବା ଇଚ୍ଛାରେ ଧର୍ମ ନିମିତ୍ତ କୋଟି ଋଷିଗଣଙ୍କୁ ସୃଷ୍ଟି କରିଅଛନ୍ତି । ସେହି ସନତ୍‌କୁମାର ପ୍ରଭୃତି ଋଷିଗଣ ତତ୍‌କର୍ତ୍ତୃକ ସୃଷ୍ଟ ହୋଇ ଗନ୍ଧମାଦନ ଗିରିରେ ତପସ୍ୟାସମନ୍ୱିତ ହୋଇ ଅବସ୍ଥିତ କରିଅଛନ୍ତି । ହେ ଦ୍ୱିଜବର-ଗଣ ! ଏହି ନିମିତ୍ତ ସେହି ବାଗ୍ମୀ ଧର୍ମଜ୍ଞ ବାସୁଦେବ ସମସ୍ତଙ୍କର ନମସ୍ୟ । ୪୫ ।

ସ୍ୱର୍ଗଲୋକ ମଧ୍ୟରେ ସର୍ବଶକ୍ତିମାନ୍ ଭଗବାନ୍ ନାରାୟଣ ଶ୍ରେଷ୍ଠ ! ସେ ବନ୍ଦିତ ହେଲେ ବନ୍ଦନା କରନ୍ତି, ସମ୍ମାନିତ ହେଲେ ସମ୍ମାନ କରନ୍ତି, ପୂଜିତ ହେଲେ ପୂଜା କରନ୍ତି, ଏବଂ ନିୟତ ଅର୍ଚ୍ଚିତ ହେଲେ ପ୍ରତିପୂଜା କରନ୍ତି । ସେ ଦୃଷ୍ଟ ହେଲେ ପ୍ରତିଦିନ ଦର୍ଶନ କରନ୍ତି । ସଂଶ୍ରିତ ହେଲେ ଆଶ୍ରୟ କରନ୍ତି । ହେ ଦ୍ୱିଜସତ୍ତମଗଣ ! ସେହି ଦେବ ଅର୍ଚ୍ଚିତ ହେଲେ ନିୟତ ଅର୍ଚ୍ଚନା କରନ୍ତି । ୪୭ । ସେହି ଅନିନ୍ଦନୀୟ ବିଷ୍ଣୁଙ୍କର ଏହା ପରମବ୍ରତ । ମହାନୁଭବ ଆଦିଦେବଙ୍କ ଚରିତକୁ ସଜ୍ଜନଗଣ ସର୍ବଦା ଆଚରଣ କରନ୍ତି । ୪୮ । ସେହି ସନାତନ ଦେବ ଭୁବନ ମଧ୍ୟରେ ଅମର-ଗଣଙ୍କ ଦ୍ୱାରା ନିରନ୍ତର ଅର୍ଚ୍ଚିତ ହୁଅନ୍ତି । ଯେଉଁମାନେ ତାହାଙ୍କଠାରେ ଅନୁରକ୍ତ ହୁଅନ୍ତି, ସେମାନେ ତଦନୁସାରେ ଅଭୟଯୁକ୍ତ ହୁଅନ୍ତି । ୪୯ । ଅତଏବ ଦ୍ୱିଜଗଣ ତାହାଙ୍କୁ ସର୍ବଦା ବାକ୍ୟ, ମନ ଓ କର୍ମଦ୍ୱାରା ନମସ୍କାର

କରିବେ । ସତ୍ତ୍ୱବାନ୍ ମାନବଗଣ ଉପାସନା ଦ୍ୱାରା ଦେବକୀନନ୍ଦନଙ୍କୁ ଦର୍ଶନ କରିବେ । ୫୦ ।

ହେ ମୁନିସତ୍ତମଗଣ ! ଆମ୍ଭେ ଆପଣମାନଙ୍କର ଏହି ପଥ କୀର୍ତ୍ତନ କଲୁ । ସେହି ଦେବଙ୍କୁ ଦର୍ଶନ କଲେ, ସୁରସତ୍ତମବୃନ୍ଦ ସର୍ବତୋଭାବରେ ବିଲୋକିତ ହୁଅନ୍ତି । ୫୧ । ସେହି ମହାବରାହରୂପୀ, ସର୍ବଲୋକପିତାମହ ଜଗତ୍‌ପତି ଦେବେଶ୍ୱରଙ୍କୁ ଆମ୍ଭେ ସର୍ବଦା ନମସ୍କାର କରୁଅଛୁ । ୫୨ । ତାହାଙ୍କୁ ଦର୍ଶନ କଲେ, ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଏହି ମୂର୍ତ୍ତିତ୍ରୟର ଦର୍ଶନ ଲାଭ ହୁଏ, ଏଥିରେ ସଂଶୟ ନାହିଁ । ଆମ୍ଭେମାନେ ସମସ୍ତ ଦେବଗଣଙ୍କ ସହିତ ତାହାଙ୍କ ଶରୀରରେ ଅବସ୍ଥିତି କରୁ । ୫୩ । ଶ୍ୱେତଶୈଳ ସମ ପ୍ରଭାସମନ୍ୱିତ ତାହାଙ୍କ ଅଗ୍ରଜ ଭ୍ରାତା ଧରାଧର ଓ ହଳଧର ବଳଦେବ ନାମରେ ବିଖ୍ୟାତ ହେବେ । ୫୪ । ସେହି ବଳଦେବଙ୍କ ରଥରେ ତ୍ରିଶିର ସୁବର୍ଣ୍ଣମୟ ତୃଣରାଜ ତାଳଧ୍ୱଜ ରୂପେ ରହିବ । ୫୫ ।

ସେହି ସର୍ବଲୋକେଶ୍ୱର ମହାବାହୁଙ୍କ ଶିର ମହାଭୋଗଯୁକ୍ତ ମହାନୁଭବ ନାଗଗଣଙ୍କ ଦ୍ୱାରା ପରିବେଷ୍ଟିତ ହେବ । ୫୬ । ଅସ୍ତ୍ରଶସ୍ତ୍ରସମୂହ ଚିନ୍ତିତ ହେବା ମାତ୍ରେ ତାହାଙ୍କ ସମୀପରେ ଉପସ୍ଥିତ ହେବେ । ସେହି ଭଗବାନ୍ ଅବ୍ୟୟ ହରି ଅନନ୍ତ ନାମ ଧାରଣ କରନ୍ତି । ତାହାଙ୍କ ସାହାଯ୍ୟବଶତଃ କଶ୍ୟପଙ୍କ ଆତ୍ମଜ ବଳବାନ୍ ଗରୁଡ଼ ସୁରଗଣ କର୍ତ୍ତୃକ ଆଦିଷ୍ଟ ହୋଇ ତାହାଙ୍କୁ ପ୍ରଦର୍ଶନ କରି ସେହି ପରମାତ୍ମାଦେବଙ୍କ ଅନ୍ତଦର୍ଶନ ନିମିତ୍ତ ସମର୍ଥ ହେଲେ ନାହିଁ । ୫୮ । ସେ ଭୋଗଦ୍ୱାରା ବସୁନ୍ଧରାକୁ ଆଲିଙ୍ଗନ କରି ତାହାଙ୍କ ଅନ୍ତରେ ବସତି କରିଅଛନ୍ତି । ସେହି ଶେଷ ପରମହର୍ଷଯୁକ୍ତ ହୋଇ ବିଚରଣ କରନ୍ତି । ୫୯ । ଯେ ବିଷ୍ଣୁ, ସେ ଅନନ୍ତ ଓ ସେହି ଭଗବାନ ଧରଣୀଧର ଅଟନ୍ତି । ଯେ ରାମ, ସେ ହୃଷୀକେଶ; ଯେ ଅଚ୍ୟୁତ, ସେ ଧରାଧର । ୬୦ । ସେହି ଦୁଇ ପୁରୁଷଶ୍ରେଷ୍ଠ ଦିବ୍ୟ ଏବଂ ଦିବ୍ୟ ପରାକ୍ରମଶାଳୀ, ଚକ୍ର ଓ ଲାଙ୍ଗଳଧାରୀ, ସେହି ଦେବଦ୍ୱୟ ଦର୍ଶନୀୟ ଓ ମାନନୀୟ । ୬୧ । ହେ ତପୋଧନଗଣ ! ଆପଣମାନେ ଯଦୁଶ୍ରେଷ୍ଠ କୃଷ୍ଣ ଓ ରାମଙ୍କୁ ପ୍ରଯତ୍ନ ପୂର୍ବକ ପୂଜା କରନ୍ତୁ । ଏହି ନିମିତ୍ତ ଆପଣମାନଙ୍କ ପ୍ରତି ଅନୁଗ୍ରହ ସ୍ୱରୂପ ଏହି ପବିତ୍ର ବିଷୟ କୀର୍ତ୍ତନ କଲୁ । ୬୨ ।

---

# ଅଧ୍ୟାୟ—୧୪୮

ନାରଦ କହିଲେ—ତଦନନ୍ତର ଆକାଶରେ ବିଦ୍ୟୁତ୍ ସହିତ ଜଳଦଯୁକ୍ତ ସୁମହାନ୍ ଶବ୍ଦ ପ୍ରାଦୁର୍ଭୂତ ହେଲା ଏବଂ ନୀଳବର୍ଣ୍ଣ ନିବିଡ଼ ଘନଘଟାଦ୍ୱାରା ଗଗନମଣ୍ଡଳ ସଂରୁଦ୍ଧ ହେଲା । ୧ । ବର୍ଷାକାଳ ପରିବେଷଣ-ଶୀଳ ମେଘ ନିର୍ମଳ ଜଳ ବର୍ଷଣ କଲେ, ଘୋରତର ଅନ୍ଧକାର ପ୍ରାଦୁର୍ଭୂତ ହେଲା । ଦିକ୍‌ସମୂହ ପ୍ରକାଶିତ ହେଲେ ନାହିଁ । ୨ । ତଦନନ୍ତର ସେହି ରମଣୀୟ ପବିତ୍ର ସନାତନ ସୁରଶୈଳରେ ତେତେବେଳେ ମୁନିଗଣ ମହେଶ୍ୱର କିମ୍ବା ଭୂତଗଣଙ୍କୁ ଦର୍ଶନ କରିପାରିଲେ ନାହିଁ । ୩ । କ୍ଷଣକ ମଧ୍ୟରେ ଗଗନମଣ୍ଡଳ ଅଭ୍ରଶୂନ୍ୟ ହେଲା । ଅନନ୍ତର ବିପ୍ରଗଣ ତୀର୍ଥଯାତ୍ରା ନିମିତ୍ତ ଗମନ କଲେ, ଅନ୍ୟମାନେ ଯଥାଭିଳଷିତ ପ୍ରଦେଶକୁ ପ୍ରସ୍ଥାନ କଲେ । ୪ । ଉମାଙ୍କ ସହିତ ଶଙ୍କରଙ୍କର କଥୋପକଥନ ସମ୍ବନ୍ଧରେ ଏହି ଅଦ୍ଭୁତ ଅଚିନ୍ତନୀୟ ବିଷୟ ଦର୍ଶନ କରି ସେହି ସମସ୍ତ ମୁନିଗଣ ବିସ୍ମୟାପନ୍ନ ହେଲେ ଏବଂ କହିଲେ, ହେ ପୁରୁଷବ୍ୟାଘ୍ର ! ଆପଣ ସନାତନ ବ୍ରହ୍ମସ୍ୱରୂପ, ଆମ୍ଭେମାନେ ଗିରିପୃଷ୍ଠରେ ଯେଉଁ ନିମିତ୍ତ ମହାନୁଭବଙ୍କଦ୍ୱାରା ଉପଦିଷ୍ଟ ହୋଇଥିଲୁଁ, ଏହି ସେହି ଦ୍ୱିତୀୟ ଅଦ୍ଭୁତ ବ୍ୟାପାର ଆପଣଙ୍କ ତେଜଦ୍ୱାରା ପ୍ରକଟିତ ହେଲା ।

ହେ କୃଷ୍ଣ ! ଏହି ଅଦ୍ଭୁତ ଘଟଣା ଅବଲୋକନ କରି ଆମ୍ଭେମାନେ ବିସ୍ମୟାପନ୍ନ ହୋଇଅଛୁଁ ଏବଂ ପୂର୍ବ ବିଷୟ ଆମ୍ଭମାନଙ୍କ ସ୍ମୃତିପଥରେ ଉପନୀତ ହୋଇଅଛୁ । ୫ । ହେ ପ୍ରଭୋ ମହାବାହୋ ଜନାର୍ଦ୍ଦନ ! ଆମ୍ଭେ ଆପଣଙ୍କୁ କପର୍ଦ୍ଦୀ ଦେବଦେବ ଗିରିଶଙ୍କର ଏହି ମାହାତ୍ମ୍ୟ କହିଲୁଁ । ୮ । ତେତେବେଳେ ଦେବକୀନନ୍ଦନ କୃଷ୍ଣ ତପୋବନନିବାସୀ ମୁନିଗଣଙ୍କଠାରୁ ଏହି ବାକ୍ୟ ଶ୍ରବଣ କରି ସେହି ସମସ୍ତ ଋଷିମାନଙ୍କୁ ସମ୍ମାନ କଲେ । ୯ । ତଦନନ୍ତର ସେହି ମୁନିଗଣ ସମ୍ୟକ୍ ପ୍ରହୃଷ୍ଟ ହୋଇ ପୁନଶ୍ଚ କୃଷ୍ଣଙ୍କୁ କହିଲେ, ହେ ମଧୁସୂଦନ ! ଆପଣ ଆମ୍ଭମାନଙ୍କୁ ସର୍ବଦା ଦର୍ଶନ ଦାନ କରିବା ହେଉନ୍ତୁ । ୧୦ । ହେ ପ୍ରଭୋ ! ଆପଣଙ୍କୁ ଦର୍ଶନ କରିବା ନିମିତ୍ତ ଆମ୍ଭମାନଙ୍କର ଯାଦୃଶ ଅନୁରାଗ, ସ୍ୱର୍ଗରେ ବସତି କରିବାକୁ ତାଦୃଶ ରତି ନାହିଁ ।

ହେ ଶଙ୍କର୍ଷଣ ମହାବାହୋ ! ଭଗବାନ୍ ଭବ ଆପଣଙ୍କ ଯାଥାର୍ଥ୍ୟ ଯାହା କହିଥିଲେ, ଏହି ସେହି ସମସ୍ତ ରହସ୍ୟ ବିଷୟ ଆମ୍ଭେମାନେ

କହିଲୁଁ । ଆପଣ ଅର୍ଥତତ୍ତ୍ୱଜ୍ଞ; ଆମ୍ଭେମାନେ ଆପଣଙ୍କୁ ପ୍ରଶ୍ନ କରିବାରୁ ଆପଣ ଆମ୍ଭମାନଙ୍କୁ ପ୍ରଶ୍ନ କରିଅଛନ୍ତି । ଅତଏବ ଆପଣଙ୍କ ପ୍ରିୟ୍ନନିମିତ୍ତ ଏହି ଗୁହ୍ୟ ବିଷୟ କୀର୍ତ୍ତନ କଲୁଁ । ତ୍ରିଲୋକ ମଧ୍ୟରେ କୌଣସି ବିଷୟ ଆପଣଙ୍କୁ ଅବିଦିତ ନାହିଁ । ୧୩ । ହେ ବିଭୋ ! ଉତ୍ପତ୍ତି ଓ ପ୍ରସୃତି ଅଥବା ଅନ୍ୟ ଯେଉଁ କାରଣ ଅଛି, ତତ୍ସମୁଦାୟ ଆପଣଙ୍କୁ ଜଣାଅଛି । ଆମ୍ଭେ-ମାନେ ବହୁବୁଦ୍ଧିପଲ୍ଲବିତଶତଃ ଗୁହ୍ୟ ବିଷୟ ଧାରଣ କରିବାକୁ ଅସମର୍ଥ ଅଟୁଁ । ୧୪ । ଅତଏବ ହେ ବିଭୋ ! ଆପଣଙ୍କ ସମୀପରେ ଆମ୍ଭେମାନେ ଯାହା କହୁଅଛୁଁ, ତାହା ଲଘୁତ୍ୱବଶତଃ ପ୍ରଳାପ ସଦୃଶ ଅଟେ ।

ଆପଣ ଯାହା ନ ଜାଣନ୍ତି, ଏତାଦୃଶ ଅଦ୍ଭୁତ ବିଷୟ ଇହଲୋକରେ କିଛି ନାହିଁ । ୧୫ । ହେ ଦେବ ! ଦ୍ୟୁଲୋକରେ ଅଥବା ଭୂଲୋକରେ ଯାହା କିଛି ଆଶ୍ଚର୍ଯ୍ୟ ବିଷୟ ଅଛି, ତତ୍ସମୁଦାୟ ଆପଣଙ୍କର ବିଦିତ । ହେ କୃଷ୍ଣ ! ସମ୍ପ୍ରତି ଆମ୍ଭେମାନେ ଗମନ କରୁଅଛୁ । ଆପଣ ବୃଦ୍ଧି ଓ ପୁଷ୍ଟି ଲାଭ କରିବା ହେଉନ୍ତୁ । ୧୬ । ହେ ତାତ ! ଆପଣଙ୍କ ସଦୃଶ ଅଥବା ଆପଣଙ୍କ ଅପେକ୍ଷା ଉତ୍କୃଷ୍ଟ ମହାପ୍ରଭାବ ଧୃତିମାନ୍ କୀର୍ତ୍ତିକର ସର୍ବଶକ୍ତିମାନ ଗୋଟିଏ ପୁତ୍ର ଆପଣଙ୍କର ହେବ । ୧୭ । ଋଷି କହିଲେ, ହେ ନୃପ ! ତଦନନ୍ତର ସେହି ମହର୍ଷିଗଣ ପୁରୁଷପ୍ରବର ଯଦୁବଂଶଧର ଦେବେଶ୍ୱରଙ୍କୁ ପ୍ରଣାମ ପୂର୍ବକ ପ୍ରଦକ୍ଷିଣ କରି ପ୍ରସ୍ଥାନ କଲେ । ୧୮ । ସେହି ଏହି ଶ୍ରୀମାନ୍ ନାରାୟଣ ପରମ ଧୃତିମାନ୍ ହୋଇ ଯଥାବତ୍ ବ୍ରତ ନିଷ୍ପାଦନ କରି ଦ୍ୱାରକାପୁରକୁ ଗମନ କଲେ । ୧୯ । ଦଶମାସ ପୂର୍ଣ୍ଣ ହେଲାରୁ ରୁକ୍ମିଣୀଙ୍କ ଗର୍ଭରୁ ପରମ ଆଶ୍ଚର୍ଯ୍ୟ ଶୂରବର ସର୍ବସମ୍ମତ ବଂଶଧର ପୁତ୍ର ଜନ୍ମପରିଗ୍ରହ କଲେ । ୨୦ ।

ହେ ରାଜନ୍ ! ସେହି କାମ ସମସ୍ତ ଭୂତଗଣଙ୍କର ସର୍ବାନ୍ତଃକରଣ-ଗତ, ସେ ସୁରାସୁରଗଣଙ୍କର ଅନ୍ତର୍ଗତ ହୋଇ ସର୍ବଦା ବିଚରଣ କରନ୍ତି ।୨୧। ଏହି ସେହି ଘନଶ୍ୟାମ ଚତୁର୍ଭୁଜ ପୁରୁଷପ୍ରବର ପ୍ରେମହାରୀ ପାଣ୍ଡବ-ଗଣଙ୍କୁ ଆଶ୍ରୟ କରିଅଛନ୍ତି, ଆପଣମାନେ ମଧ୍ୟ ଏହାଙ୍କୁ ଅବଲମ୍ବନ କରି ରହିଅଛନ୍ତି (୨୨) ଏବଂ ଭଗବାନ୍ ବିକ୍ରମ ବାସୁଦେବ ଯେଉଁ ସ୍ଥାନରେ ଅବସ୍ଥିତି କରନ୍ତି ସେହି ସ୍ଥାନରେ କୀର୍ତ୍ତି, ଲକ୍ଷ୍ମୀ, ଧୃତି ଏବଂ ଏହି ସ୍ୱର୍ଗମାର୍ଗ ଅବସ୍ଥିତ ହୁଅନ୍ତି । ୨୩ । ସେହିଠାରେ ଇନ୍ଦ୍ରଙ୍କ ସହିତ ତ୍ରୟସ୍ତ୍ରିଂଶତ୍ ଦେବତା ଅଧିଷ୍ଠିତ ହୁଅନ୍ତି । ଏହି ବିଷୟରେ ଚର୍ଚ୍ଚା କରିବାର ପ୍ରୟୋଜନ ନାହିଁ ।

ଆଦିଦେବ ମହାତ୍ମା ମଧୁସୂଦନ ସମସ୍ତ ଭୂତଗଣଙ୍କର ଆଶ୍ରୟ, ସେ ଅନାଦି, ଅନନ୍ତ ଏବଂ ଅବ୍ୟକ୍ତ । ଏହି ମହାତେଜା ଦେବଗଣଙ୍କ ପ୍ରୟୋଜନ ସିଦ୍ଧି ନିମିତ୍ତ ଜନ୍ମଗ୍ରହଣ କରିଅଛନ୍ତି । ୨୫ । ମାଧବ ଅତ୍ୟନ୍ତ ଦୁସ୍ତର ଅର୍ଥ-ତତ୍ତ୍ୱର ବକ୍ତା ଏବଂ କର୍ତ୍ତା । ହେ ପାର୍ଥ ! ନାରାୟଣଙ୍କ ଆଶ୍ରୟବଶତଃ ତୁମ୍ଭର ସମସ୍ତ ଜୟ ହୋଇଅଛି । ଅନୁପମ କୀର୍ତ୍ତି ଜନ୍ମିଅଛି (୨୬) ଏବଂ ସମସ୍ତ ଭୂମଣ୍ଡଳ କରସ୍ଥିତ ହୋଇ ରହିଅଛି । ଏହି ଅଚନ୍ତ୍ୟମୟ ନାରାୟଣ ତୁମ୍ଭର ନାଥ ଏବଂ ଗତି । ୨୭ । ଏହି ନିମିତ୍ତ ତୁମ୍ଭେ ହୋତା ସ୍ୱରୂପ ହୋଇ ଭୂପାଳଗଣଙ୍କୁ ସମରାନଳରେ ପ୍ରଳୟାନଳ ସଦୃଶ କୃଷ୍ଣ ସ୍ୱରୂପ ସୁମହତ୍ ସ୍ରୁବଦ୍ୱାରା ଆହୁତି ପ୍ରଦାନ କରିଅଛ । ୨୮ । ଯେଉଁ ଦୁର୍ବୁଦ୍ଧି କ୍ରୋଧବଶତଃ ହରି ଏବଂ ଅର୍ଜୁନଙ୍କ ସହିତ ବିରୋଧ କରିଥିଲେ, ସେହି ଦୁର୍ଯ୍ୟୋଧନ ପୁତ୍ର, ଭ୍ରାତା ଏବଂ ବାନ୍ଧବବର୍ଗଙ୍କ ସହିତ ଶୋଚନୀୟ ହୋଇଅଛନ୍ତି । ମହାକାୟ ମହାବଳ ଦୈତେୟ ଓ ଦାନବେନ୍ଦ୍ରଗଣ, ଦାବାନଳରେ ଶଲଭ ସଦୃଶ ଯାହାଙ୍କ ଚକ୍ରାଗ୍ନି ମଧ୍ୟରେ କ୍ଷୟପ୍ରାପ୍ତ ହୋଇଅଛନ୍ତି ( ୩୦ ), ହେ ପୁରୁଷବ୍ୟାଘ୍ର ! ସତ୍ତ୍ୱ, ଶକ୍ତି ଓ ବଳବିହୀନ ମାନୁଷଗଣ ମଧ୍ୟରେ ଯୁଦ୍ଧରେ ତାହାଙ୍କ ସହିତ ପ୍ରତିଯୁଦ୍ଧ କରେ ଏତାଦୃଶ କ୍ଷମତାସମ୍ପନ୍ନ ବ୍ୟକ୍ତି କେହି ନାହାନ୍ତି । ୩୧ । ହେ ମହାରାଜ ! ଜୟରୂପୀ ଧନଞ୍ଜୟ ସବ୍ୟସାଚୀ ଯୁଗାନ୍ତାନଳସଦୃଶ ରଣାଗ୍ରଗାମୀ ହୋଇ ସ୍ୱକୀୟ ତେଜଃ-ପ୍ରଭାବରେ ଦୁର୍ଯ୍ୟୋଧନଙ୍କର ସୈନ୍ୟସମୂହ ନିହତ କରିଅଛନ୍ତି । ୩୨ । ବୃଷଧ୍ୱଜ ହିମାଳୟ ଶୈଳରେ ମୁନିଗଣଙ୍କୁ ଯେଉଁ ପୁରାଣ କହିଥିଲେ, ଆମ୍ଭେ ତାହା କହୁଅଛୁଁ, ଶ୍ରବଣ କର । ୩୩ । କୃଷ୍ଣଙ୍କର ପୁଷ୍ଟି, ତେଜ, ପରାକ୍ରମ, ପ୍ରଭାବ ଓ ନମ୍ରତା ଅର୍ଜୁନଙ୍କ ଅପେକ୍ଷା ତିନିଗୁଣ ଅଧିକ, କୃଷ୍ଣଙ୍କର ଏହି ସମସ୍ତ ଗୁଣ ଅତିକ୍ରମ କରିବାକୁ ଅନ୍ୟର ଶକ୍ତି ନାହିଁ । ଅତଏବ ତଦ୍‌ବିଷୟ ଶ୍ରବଣ କର ।

ଯେଉଁ ସ୍ଥାନରେ ଭଗବାନ୍ କୃଷ୍ଣ ଅଧିଷ୍ଠାନ କରନ୍ତି, ସେହି ସ୍ଥାନରେ ଅତି ଉତ୍କୃଷ୍ଟ ପୁଷ୍ଟି ଅବସ୍ଥିତ କରେ । ୩୫ । ଆମ୍ଭେମାନେ ଅଳ୍ପ-ବୁଦ୍ଧି, ପରାଧୀନ ଏବଂ ଅତିଶୟ ବିହ୍ୱଳ, ଅତଏବ ଜ୍ଞାନପୂର୍ବକ ଯମଦେବଙ୍କ ଅକ୍ଷୟ ପଥରେ ଶରଣାଗତ ହୋଇଅଛୁଁ । ୩୬ । ତୁମ୍ଭେ ଅତିଶୟ ସରଳଚିତ୍ତ, ପ୍ରଥମତଃ ପ୍ରତିଜ୍ଞା କରି ପରିଶେଷରେ ସେହି ପ୍ରତିଜ୍ଞା ପାଳନରେ ରତ ହୋଇ ରାଜ୍ୟଲାଭ କରିବାକୁ ବିମୁଖ ହୋଇଥିଲ । ହେ ଅରିନ୍ଦମ ମହାରାଜ ! ତୁମ୍ଭେ ଇହଲୋକ ମଧ୍ୟରେ ଆତ୍ମବଧକୁ ବହୁମାନ କରିଥାଅ,

ତଥାତ ଯେଉଁ ପ୍ରତିଜ୍ଞା କର ତାହାର ଅନ୍ୟଥା କରିପାର ନାହିଁ । ଏହି ସମସ୍ତ ଲୋକସମୂହ କାଳକର୍ତ୍ତୃକ ରଣଭୂମି ମଧ୍ୟରେ ନିହତ ହୋଇ-ଅଛନ୍ତି, ଆମ୍ଭେମାନେ ମଧ୍ୟ କାଳ କର୍ତ୍ତୃକ ହତ ହୋଇଅଛୁଁ । ଅତଏବ କାଳ ପରମେଶ୍ବର । ୩୯ । ତୁମ୍ଭେ କାଳଜ୍ଞ, ଅତଏବ କାଳକର୍ତ୍ତୃକ ସୃଷ୍ଟ ହୋଇ ଶୋକ କରିବାର ତୁମ୍ଭର ଉଚିତ ନୁହେ । କାଳ ଅତ୍ୟନ୍ତ ଲୋହିତ-ଲୋଚନ, କୃଷ୍ଣବର୍ଣ୍ଣ, ଦଣ୍ଡଧର ଏବଂ ସମସ୍ତଙ୍କୁ ହରଣ କରନ୍ତି, ଏହି କାରଣରୁ ସେ ହରି । ୪୦ । ସେହି କାରଣରୁ ହେ କୌରବବଂଶବର୍ଦ୍ଧନ କୁନ୍ତୀନନ୍ଦନ ! ତୁମ୍ଭେ ସ୍ୱପ୍ରଜ୍ଞ ଜ୍ଞାତିଗଣଙ୍କ ନିମିତ୍ତ ଶୋକ କରନା । ସର୍ବଦା ଶୋକବିହୀନ ହୁଅ । ୪୧ ।

ଏହି ମାଧବଙ୍କର ଯେଉଁ ମାହାତ୍ମ୍ୟ ଆମ୍ଭେ କୀର୍ତ୍ତନ କରିଅଛୁ, ତାହା ତୁମ୍ଭେ ଶ୍ରବଣ କରିଅଛ । ସଜ୍ଜନଙ୍କ ନିଦର୍ଶନ ବିଷୟରେ ତାହା ପର୍ଯ୍ୟାପ୍ତ । ୪୨ । ମହାରାଜ ! ବ୍ୟାସଙ୍କ ବଚନ ଓ ଧୀମାନ୍ ନାରଦଙ୍କ ଉପଦେଶ ଶ୍ରବଣ କରି ଏବଂ ପୂଜ୍ୟତମ କୃଷ୍ଣଙ୍କ କଥା ଶ୍ରବଣ କରି ଆମ୍ଭେ ଋଷିବୃନ୍ଦଙ୍କ ପ୍ରଭାବ କୀର୍ତ୍ତନ କରିଅଛୁ । ହେ ଭାରତ ! ଶୈଳସୁତାଙ୍କ ସହିତ ମହେଶ୍ୱରଙ୍କ ସମ୍ବାଦ ମଧ୍ୟ କଥିତ ହୋଇଅଛି । ହେ ରାଜନ୍ ! ଯେଉଁ ନର ଏହି ମହାପୁରୁଷ ସମ୍ବନ୍ଧ ବିଷୟ ଶ୍ରବଣ, କୀର୍ତ୍ତନ ଅବା ଧାରଣ କରନ୍ତି, ସେ ପରମ ଶ୍ରେୟଃ ଲାଭ କରନ୍ତି । ୪୫ । ତାହାଙ୍କର ଯଥାଭିଳଷିତ କାମନା-ସମୂହ ପରିପୂର୍ଣ୍ଣ ହୁଏ ଏବଂ ସେହି ମାନବ ପରଲୋକକୁ ଯାଇ ସ୍ୱର୍ଗ ଭୋଗ କରନ୍ତି ଏ ବିଷୟରେ ସଂଶୟ ନାହିଁ । ୪୬ । ଶ୍ରେୟସ୍କାମ ମାନବଙ୍କର ଜନାର୍ଦ୍ଦନଙ୍କୁ ଜାଣିବାର ଉଚିତ ।

ହେ ରାଜନ୍ ! ବ୍ରାହ୍ମଣଗଣ ଏହି ଅକ୍ଷୟ ଜନାର୍ଦ୍ଦନଙ୍କୁ ସ୍ତବ କରନ୍ତି । ୪୭ । ହେ କୁରୁରାଜ ! ଯେଉଁ ସମସ୍ତ ଧର୍ମ ମହେଶ୍ୱରଙ୍କ ମୁଖରୁ ବିନିର୍ଗତ ହୋଇଅଛି, ସେହି ସମସ୍ତ ଧର୍ମକୁ ତୁମ୍ଭେ ଅହୋରାତ୍ର ମନୋମଧ୍ୟରେ ଧାରଣ କରିବ । ୪୮ । ତୁମ୍ଭେ ଏହିପରି ସମ୍ୟକ୍ ରୂପରେ ଦଣ୍ଡଧର ହୋଇ ପ୍ରଜା ପାଳନରେ ଦକ୍ଷତା ପ୍ରକାଶ କଲେ ସ୍ୱର୍ଗଗାମୀ ହେବ । ୪୯ । ହେ ରାଜନ୍ ! ତୁମ୍ଭେ ଧର୍ମବଳରେ ପ୍ରଜାକୁଳର ରକ୍ଷଣ ବିଷୟରେ ସମର୍ଥ ଅଟ, ପ୍ରଜା-ରକ୍ଷଣ ନିମିତ୍ତ ଯେଉଁ ବିପୁଳ ଦଣ୍ଡ ବିଧୃତ ହୁଏ, ତାହା ସମ୍ୟକ୍ ଧର୍ମରୂପେ କୀର୍ତ୍ତିତ ହୁଏ । ୫୦ ।

ହେ ରାଜନ୍ ! ଆମ୍ଭେ ସଜ୍ଜନ ସନ୍ନିଧିରେ ଏହି ଯେଉଁ ଉମାଙ୍କ ସହିତ ଶଙ୍କରଙ୍କର ଧର୍ମସହିତ ସଂବାଦ କୀର୍ତ୍ତନ କଲୁଁ, ତାହା ଶ୍ରବଣ

କରି କର୍ମ ଶ୍ରବଣ କରିବାକୁ ଅଭିଳାଷୀ ହୋଇ ଯେ ଆପଣାର ଉନ୍ନତି ଇଚ୍ଛା କରନ୍ତି, ସେ ବିଶୁଦ୍ଧ ଅନ୍ତଃକରଣରେ ବୃଷଧ୍ୱଜଙ୍କ ଅର୍ଚ୍ଚନା କରିବେ । ୫୨ । ହେ ପାଣ୍ଡବ ! ଏହି ସେହି ଅନିନ୍ଦିତ ମହାନୁଭାବ ନାରଦଙ୍କର ଦେବ ପୂଜା ନିମିତ୍ତ ସନ୍ଦେଶ ବାକ୍ୟ, ଅତଏବ ତୁମ୍ଭେ ତାହା ପାଳନ କର । ୫୩ । ହେ ରାଜନ୍ ! କୁନ୍ତୀନନ୍ଦନ ! ପବିତ୍ର ହିମାଳୟରେ ବାସୁଦେବ ଓ ମହାଦେବଙ୍କର ଅପ୍ରାକୃତିକ ଏହି ଅଦ୍ଭୁତ ବ୍ୟାପାର ହୋଇଥିଲା । ଏହି ଶାଶ୍ୱତ ବାସୁଦେବ ଗାଣ୍ଡୀବଧାରୀଙ୍କ ସହିତ ବଦରିକାଶ୍ରମରେ ଦଶସହସ୍ର ବର୍ଷ ବିପୁଳ ତପଶ୍ଚରଣ କରିଥିଲେ । ୫୫ । ମହାତ୍ମା କୃଷ୍ଣ ଓ ଅର୍ଜ୍ଜୁନ, ସତ୍ୟ, ତ୍ରେତା ଓ ଦ୍ୱାପର ଏହି ତିନି ଯୁଗରେ ଆବିର୍ଭୂତ ହୋଇଥାଆନ୍ତି, ତୁମ୍ଭେ ପୂର୍ବେ ଦେବର୍ଷି ନାରଦ, ବ୍ୟାସ ଓ ଆମ୍ଭ ନିକଟରୁ ଏହା ସମ୍ୟକ୍ ରୂପେ ଅବଗତ ହୋଇଅଛ । ୫୬ ।

ଏହି ମହାବାହୁ ପଦ୍ମନେତ୍ର ବାସୁଦେବ ବାଲ୍ୟାବସ୍ଥାରେ ଜ୍ଞାତିଗଣଙ୍କ ପରିତ୍ରାଣ ନିମିତ୍ତ କଂସର ସୁମହତ୍ ବଧସାଧନ କରିଥିଲେ । ୫୭ । ହେ କୁନ୍ତୀନନ୍ଦନ ଯୁଧିଷ୍ଠିର ! ଏହି ଶାଶ୍ୱତ ପୁରାଣପୁରୁଷଙ୍କର କର୍ମସମୂହକୁ ଆମ୍ଭେ ଶେଷ ପର୍ଯ୍ୟନ୍ତ କହିବା ନିମିତ୍ତ ଉତ୍ସାହୀ ହେଉନାହୁଁ । ହେ ତାତ ! ଏହି ପୁରୁଷପୁଙ୍ଗବ ଜନାର୍ଦ୍ଦନ ଯଦି ତୁମ୍ଭର ସଖା ହୋଇଅଛନ୍ତି, ତେବେ ତୁମ୍ଭର ଅବଶ୍ୟ ପରମ ମଙ୍ଗଳ ହେବ । ୫୯ । ଦୁର୍ମତି ଦୁର୍ଯ୍ୟୋଧନ ପର-ଲୋକଗାମୀ ହୋଇଅଛନ୍ତି, ତଥାପି ଆମ୍ଭେ ତାହାଙ୍କ ନିମିତ୍ତ ଶୋକ କରୁଅଛୁ । ତାହାଙ୍କ ହେତୁରୁ ଏହି ସମସ୍ତ ମହୀମଣ୍ଡଳ ତୁରଙ୍ଗ ଓ ମାତଙ୍ଗ-ଗଣ ସହିତ ବିନଷ୍ଟ ହୋଇଅଛି । ୬୦ । ଦୁର୍ଯ୍ୟୋଧନ, କର୍ଣ୍ଣ, ଶକୁନି ଓ ଦୁଃଶାସନ ଏହି ଚାରିଜଣଙ୍କ ଅପରାଧବଶରେ ସମସ୍ତ କୁରୁକୁଳ ଉନ୍ମୂଳିତ ହୋଇଅଛି । ୬୧ ।

ବୈଶମ୍ପାୟନ କହିଲେ, ପୁରୁଷଶ୍ରେଷ୍ଠ ଗଙ୍ଗାପୁତ୍ର ଭୀଷ୍ମ ଏହିପରି ସମ୍ଭାଷଣ କରନ୍ତେ ଯୁଧିଷ୍ଠିର ସେହି ସମସ୍ତ ମହାନୁଭବଗଣଙ୍କ ମଧ୍ୟରେ ମୌନାବଲମ୍ବନ କରି ରହିଲେ । ୬୨ । ଧୃତରାଷ୍ଟ୍ର ପ୍ରଭୃତି ନୃପଗଣ ତାହା ଶ୍ରବଣ କରି ବିସ୍ମୟାପନ୍ନ ହେଲେ । ସେମାନେ ମନେ ମନେ କୃଷ୍ଣଙ୍କୁ ପୂଜା କରି କୃତାଞ୍ଜଳି ହୋଇ ରହିଲେ । ୬୩ । ନାରଦ ପ୍ରଭୃତି ସେହି ସମସ୍ତ ଋଷିଗଣ ଭୀଷ୍ମଙ୍କ ବାକ୍ୟ ପ୍ରତିଗ୍ରହ ପୂର୍ବକ ତାହାଙ୍କୁ ସମ୍ମାନ ଓ ଅଭିନନ୍ଦନ କଲେ । ୬୪ । ପାଣ୍ଡୁନନ୍ଦନ ଯୁଧିଷ୍ଠିର ସମସ୍ତ ଭ୍ରାତୃଗଣଙ୍କ ସହିତ ଏହି

ସୁମହାଶ୍ଚର୍ଯ୍ୟ ପବିତ୍ର ଭୀଷ୍ମଙ୍କ ଅନୁଶାସନ ବାକ୍ୟସମୂହ ଏହିପରି ଶ୍ରବଣ କରିଥିଲେ । ୭୫ । ଭୂରିଦକ୍ଷିଣ ଭୀଷ୍ମଦେବ ବିଶ୍ରାନ୍ତ ହେବାରୁ ମହାବୁଦ୍ଧି ଯୁଧିଷ୍ଠିର ମହୀପତି ପୁନଶ୍ଚ ତାହାଙ୍କୁ ପ୍ରଶ୍ନ କଲେ । ୭୬ ।

---

## ଅଧ୍ୟାୟ—୧୪୯

ବୈଶମ୍ପାୟନ କହିଲେ—ଯୁଧିଷ୍ଠିର ଅଶେଷ ରୂପେ ସମସ୍ତ ଧର୍ମ ଏବଂ ସମସ୍ତ ପବିତ୍ର ବିଷୟ ଶ୍ରବଣ କରି ପରିଶେଷରେ ଶାନ୍ତନୁନନ୍ଦନଙ୍କୁ ପୁନଶ୍ଚ ପ୍ରଶ୍ନ କଲେ । ୧ । ଯୁଧିଷ୍ଠିର କହିଲେ, ହେ ପିତାମହ ! ସକଳ ବିଦ୍ୟା ସ୍ଥାନରେ ଏକ ଦେବ କିଏ ? ଏବଂ ପରମ ପ୍ରାପ୍ୟ ସ୍ଥାନ କିଏ ? କେଉଁ ଦେବଙ୍କୁ ସ୍ତୁତି ଓ ଅର୍ଚ୍ଚନା କରି ଇହଲୋକରେ ନରଗଣ ଶୁଭ ଲାଭ କରନ୍ତି ? ୨ । ସମସ୍ତ ଧର୍ମ ମଧ୍ୟରେ କେଉଁ ଧର୍ମ ଅତି ଉତ୍କୃଷ୍ଟ ରୂପେ ଆପଣଙ୍କର ସମ୍ମତ ଅଟେ ? ମନୁଷ୍ୟ କେଉଁ ଜପ କରି ଜନ୍ମରୂପ ସଂସାର-ବନ୍ଧନରୁ ବିମୁକ୍ତ ହୁଅନ୍ତି ? ୩ ।

ଭୀଷ୍ମ କହିଲେ, ପୁରୁଷ ସତତ ଜାଗ୍ରତ ହୋଇ ଜଗତ୍‌ପ୍ରଭୁ ଦେବ-ଦେବ ଅନନ୍ତ ପୁରୁଷୋତ୍ତମଙ୍କୁ ସହସ୍ର ନାମ ଦ୍ୱାରା ସ୍ତୁତି କରି ସର୍ବଦା ସେହି ଅବ୍ୟୟ ପୁରୁଷଙ୍କୁ ଭକ୍ତିପୂର୍ବକ ଅର୍ଚ୍ଚନା କରିବେ । ଯଜମାନ ମାନବ ସେହି ଅନାଦିନିଧନ ସର୍ବଲୋକ ମହେଶ୍ୱର ବିଷ୍ଣୁଙ୍କୁ ଧ୍ୟାନ, ସ୍ତୁତି ଓ ନମସ୍କାର କରି ସେହି ଲୋକାଧ୍ୟକ୍ଷ ନାରାୟଣଙ୍କୁ ନିୟତ ସ୍ତୁତି କରି ସର୍ବଦୁଃଖ ଅତିକ୍ରମ କରନ୍ତି । ୬ । ନରଗଣ ବ୍ରହ୍ମଣ୍ୟ ସର୍ବଧର୍ମଜ୍ଞ ସମସ୍ତ ଲୋକସମୂହର କୀର୍ତ୍ତି-ବର୍ଦ୍ଧନ ଲୋକନାଥ ମହଦ୍ଭୂତ ସର୍ବଭୂତଗଣଙ୍କର ଉଦ୍ଭବକାରଣ ନାରାୟଣଙ୍କୁ ସ୍ତୁତି କରିବେ । ଏହି ଧର୍ମ ସମସ୍ତ ଧର୍ମ ଅପେକ୍ଷା ଉତ୍କୃଷ୍ଟ, ଏହା ଆମ୍ଭର ଅଭିମତ ।

ମନୁଷ୍ୟ ଯେଉଁ ଧର୍ମରେ ଭକ୍ତିପୂର୍ବକ ସର୍ବଦା ସ୍ତୁତିଦ୍ୱାରା ଭଗବାନଙ୍କ ଅର୍ଚ୍ଚନା କରନ୍ତି, ଯେ ପରମ ମହତ୍ତେଜ, ଯେ ପରମ ମହତ୍ ତପଃ, ଯେ ପରମ ମହତ୍ ବ୍ରହ୍ମ ଏବଂ ଯେ ପରମ ପରାୟଣ, ଯେ ସମସ୍ତ ପବିତ୍ର ପଦାର୍ଥ ମଧ୍ୟରେ ପବିତ୍ର, ଯେ ସମସ୍ତ ମଙ୍ଗଳର ମଙ୍ଗଳ, ଯେ ଦେବତା-ମାନଙ୍କର ଦେବତା, ଭୂତଗଣଙ୍କର ଅବ୍ୟୟପିତା, ଆଦି ଯୁଗାଗମ

କାଳରେ ଯାହାଙ୍କଠାରୁ ସମସ୍ତ ଭୂତଗଣ ଜନ୍ମଗ୍ରହଣ କରନ୍ତି ଏବଂ ଯୁଗକ୍ଷୟ ସମୟରେ ଯାହାଙ୍କଠାରେ ପୁନଶ୍ଚ ବିଲୟ ପ୍ରାପ୍ତ ହୁଅନ୍ତି, ହେ ଭୂପତେ ! ସେହି ଲୋକପ୍ରଧାନ ଜଗନ୍ନାଥ ବିଷ୍ଣୁଙ୍କର ପାପଭୟାପହ ସହସ୍ର ନାମ ଶ୍ରବଣ କର । ୧୨ । ମହାନୁଭବ ନାରାୟଣଙ୍କର ଗୁଣଯୋଗରୁ ପ୍ରବୃତ୍ତ ଯେଉଁ ନାମମାନେ ସେମାନଙ୍କ ମଧ୍ୟରେ ବିଖ୍ୟାତ ହୋଇଅଛନ୍ତି ଏବଂ ଋଷିଗଣ କର୍ତ୍ତୃକ କୀର୍ତ୍ତିତ ହୋଇଅଛନ୍ତି, ସେହି ସମସ୍ତ ନାମ ଚତୁର୍ବର୍ଗ ଫଳପ୍ରାପ୍ତି ନିମିତ୍ତ କହୁଅଛୁ । ୧୩ ।

ସେ ଜଗତ ସୃଷ୍ଟି କରି ତହିଁରେ ଅନୁପ୍ରବିଷ୍ଟ ହୋଇ ରହିଅଛନ୍ତି । ଏହି କାରଣରୁ ତାହାଙ୍କ ନାମ ବିଶ୍ୱ; ସେ ସର୍ବବ୍ୟାପୀ ଅଟନ୍ତି ବୋଲି ତାହାଙ୍କର ଗୋଟିଏ ନାମ ବିଶ୍ୱ, ବିଷ୍ଣୁ । ସେ ବଷଟ୍‌କାର ମନ୍ତ୍ର ସ୍ୱରୂପ ବୋଲି ତାହାଙ୍କ ନାମ ବଷଟ୍‌କାର । ସେ ଭୂତ ଭବିଷ୍ୟତ୍ ଓ ବର୍ତ୍ତମାନ କାଳର ପ୍ରଭୁ, ଏହି ନିମିତ୍ତ ତାହାଙ୍କ ନାମ ଭୂତଭବ୍ୟଭବତ୍‌ପ୍ରଭୁ । ସେ ଭୂତଗଣଙ୍କର କର୍ତ୍ତା ବୋଲି ଭୂତକୃତ୍, ସେ ଭୂତଗଣଙ୍କର ପାଳନକର୍ତ୍ତା ଏଣୁ ଭୂତଭୃତ୍ ବୋଲି ବିଖ୍ୟାତ; ସେ ଭାବସ୍ୱରୂପ ଅଟନ୍ତି ବୋଲି ଭାବ । ସେ ଭୂତଗଣଙ୍କର ଅନ୍ତର୍ଯ୍ୟାମୀ ବୋଲି ଭୂତାତ୍ମା ନାମରେ ଖ୍ୟାତ । ସେ ଭୂତଗଣଙ୍କର ଉତ୍ପାଦକ ବୋଲି ଭୂତଭାବନ ନାମରେ ଖ୍ୟାତ । ୧୪ । ସେ ନିର୍ମଳ ଅଟନ୍ତି ବୋଲି ପୂତାତ୍ମା; ନିତ୍ୟ, ମୁକ୍ତ, ଶୁଦ୍ଧ ସ୍ୱଭାବ ହେତୁ ତାହାଙ୍କ ନାମ ପରମାତ୍ମା ।

ସେ ମୁକ୍ତ ବ୍ୟକ୍ତିଗଣଙ୍କର ପରମଗତି, ସେ ଅବିନାଶୀ ହେତୁରୁ ତାହାଙ୍କ ନାମ ଅବ୍ୟୟ, ପୁର(ଶରୀର)ରେ ଶୟନ କରନ୍ତି ବୋଲି ପୁରୁଷ, ସେ ସମସ୍ତଙ୍କର ସାକ୍ଷାତ୍ ଦ୍ରଷ୍ଟା, ଏହି ନିମିତ୍ତ ସାକ୍ଷୀ; ଶରୀରର ତତ୍ତ୍ୱ ଜାଣିବା ହେତୁରୁ ତାହାଙ୍କ ନାମ କ୍ଷେତ୍ରଜ୍ଞ ଓ ପରମାତ୍ମା ହେତୁରୁ ଅକ୍ଷର । ୧୫ । ମନ ସହିତ ଜ୍ଞାନେନ୍ଦ୍ରିୟମାନଙ୍କୁ ସଂଯତ କରି କ୍ଷେତ୍ରଜ୍ଞ ଓ ପରମାତ୍ମାଙ୍କର ଏକତ୍ୱ ଭାବନାରୂପ ଯୋଗଦ୍ୱାରା ପ୍ରାପ୍ୟ ଅଟନ୍ତି ବୋଲି ତାହାଙ୍କର ଗୋଟିଏ ନାମ ଯୋଗ, ସେ ଯୋଗବିଜ୍ଞ ବ୍ୟକ୍ତିମାନଙ୍କର ନେତା, ସେ ପ୍ରକୃତି ଓ ପୁରୁଷଙ୍କର ନିୟନ୍ତା, ଏହି କାରଣରୁ ପ୍ରଧାନ ପୁରୁଷେଶ୍ୱର ନାମରେ ଖ୍ୟାତ । ସେ ନରସିଂହ ତନୁଧାରୀ, ସେ ଶ୍ରୀମାନ୍, ସେ ପ୍ରଶସ୍ତ କେଶ ବିଶିଷ୍ଟ ଅଟନ୍ତି ବୋଲି କେଶବ ନାମରେ ଖ୍ୟାତ । ସେ କ୍ଷର ଓ ଅକ୍ଷର ଏହି ଉଭୟରୁ ଉତ୍ତମ ବୋଲି ପୁରୁଷୋତ୍ତମ । ୧୬ ।

ସର୍ବପଦାର୍ଥକୁ ଜାଣିବା ହେତୁରୁ ତାହାଙ୍କ ନାମ ସର୍ବ, ସମସ୍ତଙ୍କୁ ଧ୍ୱଂସ କରନ୍ତି ବୋଲି ଶର୍ବ, ପରିଶୁଦ୍ଧ ହେତୁରୁ ସେ ଶିବ, ସେ ସର୍ବଦା ସ୍ଥିର ଅଟନ୍ତି ବୋଲି ସ୍ଥାଣୁ, ସେ ଭୂତମାନଙ୍କର ଆଦି ବୋଲି ଭୂତାଦି, ପ୍ରଳୟ କାଳରେ ସମସ୍ତ ପଦାର୍ଥ ତାହାଙ୍କଠାରେ ନିହିତ ହୁଅନ୍ତି ବୋଲି ସେ ଅବ୍ୟୟନିଧି, ସେ ଧର୍ମସ୍ଥାପନ ନିମିତ୍ତ ପ୍ରତିଯୁଗରେ ଉତ୍ପନ୍ନ ହୁଅନ୍ତି ବୋଲି ତାହାଙ୍କ ନାମ ସମ୍ଭବ; ସମସ୍ତ ଫଳଭୋକ୍ତାମାନଙ୍କର ଫଳ ଉତ୍ପାଦନ କରନ୍ତି ବୋଲି ସେ ଭାବନ । ସେ ପ୍ରପଞ୍ଚ ଭୁବନର ଅଧିଷ୍ଠାନ-ରୂପେ ଭର୍ତ୍ତା, ବିଶ୍ୱର ଉତ୍ପତ୍ତିକାରଣ ବୋଲି ପ୍ରଭବ, ସେ ସର୍ବଶକ୍ତିମାନ୍ ଅଟନ୍ତି ବୋଲି ପ୍ରଭୁ । ସେ ସମସ୍ତଙ୍କର ନିୟନ୍ତା, ଅତଏବ ଈଶ୍ୱର ନାମରେ ଖ୍ୟାତ । ୧୭ ।

ସେ ସ୍ୱୟଂ ସମ୍ଭୂତ ହୁଅନ୍ତି ବୋଲି ସ୍ୱୟମ୍ଭୂ, ଭକ୍ତଗଣଙ୍କ ସୁଖ ବିଧାନ କରନ୍ତି ବୋଲି ଶମ୍ଭୁ, ସେ ଅଦିତିଙ୍କ ଅପତ୍ୟ ବୋଲି ଆଦିତ୍ୟ, ତାହାଙ୍କ ଲୋଚନ ପଦ୍ମସଦୃଶ ବୋଲି ସେ ପୁଷ୍କରାକ୍ଷ ନାମରେ ଖ୍ୟାତ । ତାହାଙ୍କର ମହାନ୍ ବେଦରୂପ ସ୍ୱନ ବୋଲି ସେ ମହାସ୍ୱନ, ତାହାଙ୍କର ଜନ୍ମ ମୃତ୍ୟୁ ନାହିଁ, ଏହି କାରଣରୁ ସେ ଅନାଦିନିଧନ । ସେ ଅନନ୍ତରୂପେ ବିଶ୍ୱ ଧାରଣ କରିଅଛନ୍ତି ବୋଲି ଧାତା, କର୍ମ ଓ କର୍ମଫଳର ବିଧାନକର୍ତ୍ତା ବୋଲି ବିଧାତା, ସେ ବିରିଞ୍ଚିଙ୍କ ଅପେକ୍ଷା ଉତ୍କୃଷ୍ଟ ବୋଲି ଧାତୁରୁତ୍ତମ ।୧୮। ପ୍ରତ୍ୟକ୍ଷ, ଅନୁମାନ ଓ ଉପମାନ ଅର୍ଥାପତ୍ତି ଅନୁପଲବ୍ଧି ପ୍ରଭୃତି ଶାସ୍ତ୍ରୀୟ ପ୍ରମାଣଦ୍ୱାରା ତାହାଙ୍କୁ କେହି ଜାଣିପାରନ୍ତି ନାହିଁ, ଏହି ନିମିତ୍ତ ସେ ଅପ୍ରମେୟ ନାମରେ ଅଭିହିତ । ସେ ଇନ୍ଦ୍ରିୟସମୂହର ଈଶ୍ୱର, ଏହି ନିମିତ୍ତ ତାହାଙ୍କ ନାମ ହୃଷିକେଶ ଅଟେ ।

ଜଗତ୍କାରଣ ପଦ୍ମ ତାହାଙ୍କ ନାଭିରେ ବିଦ୍ୟମାନ, ଅତଏବ ସେ ପଦ୍ମନାଭ; ଦେବଗଣଙ୍କର ଈଶ୍ୱର ଅଟନ୍ତି ବୋଲି ସେ ଅମରପ୍ରଭୁ ନାମରେ ଖ୍ୟାତ । ସେ ବିଶ୍ୱନିର୍ମାତା, ଅତଏବ ବିଶ୍ୱକର୍ମା; ସେ ମନନଶୀଳ ଅଟନ୍ତି, ଅତଏବ ତାହାଙ୍କ ନାମ ମନୁ; ପ୍ରଳୟ କାଳରେ ଭୁବନର କ୍ଷୟ ସମ୍ପାଦନ କରନ୍ତି ବୋଲି ସେ ତ୍ୱଷ୍ଟା, ଅତିଶୟ ସ୍ଥୂଳ ହେତୁରୁ ସ୍ଥବିଷ୍ଠ, ସ୍ଥିରତା ହେତୁରୁ ସ୍ଥବିର, ନିଶ୍ଚଳ ହେତୁରୁ ଧ୍ରୁବ ।୧୯। ମନସହିତ ବାକ୍ୟଦ୍ୱାରା ଅଥବା ବଳପୂର୍ବକ ତାହାଙ୍କୁ ଗ୍ରହଣ କରିହୁଏ ନାହିଁ, ଏହି କାରଣରୁ ସେ ଅଗ୍ରାହ୍ୟ ନାମରେ ଖ୍ୟାତ । ଶାଶ୍ୱତ ଅର୍ଥାତ୍ ସର୍ବକାଳରେ ସେ ସ୍ଥାୟୀ ଅଟନ୍ତି ବୋଲି ତାହାଙ୍କ ନାମ ଶାଶ୍ୱତ, ସେ ସଚ୍ଚିଦାନନ୍ଦ ବିଗ୍ରହ ଏବଂ କୃଷ୍ଣବର୍ଣ୍ଣ ଅଟନ୍ତି ବୋଲି କୃଷ୍ଣ ନାମ ଧାରଣ କରିଅଛନ୍ତି ।

ତାହାଙ୍କ ଲୋଚନ ଲୋହିତ ବର୍ଣ୍ଣ, ଏହି କାରଣରୁ ସେ ଲୋହିତାକ୍ଷ ନାମରେ ଖ୍ୟାତ । ପ୍ରଳୟ କାଳରେ ବିଶ୍ୱ ସଂସାର ଧ୍ୱଂସ କରନ୍ତି ବୋଲି ପ୍ରତର୍ଦ୍ଦନ ନାମଧାରୀ ହୋଇଅଛନ୍ତି । ଜ୍ଞାନ ଐଶ୍ୱର୍ଯ୍ୟାଦି ଗୁଣସମ୍ପନ୍ନ ହେତୁ ପ୍ରଭୂତ; ଊର୍ଦ୍ଧ୍ୱ, ଅଧ ଓ ମଧ୍ୟ ଭେଦରେ ତିନ ଦିଙ୍ମଣ୍ଡଳର ଧାମ ଅତଏବ ତ୍ରିକକୁଦ୍ଧାମ । ସେ ସ୍ୱୟଂ ପବିତ୍ର ବୋଲି ପବିତ୍ର, ସେ ସର୍ବଭୂତମାନଙ୍କଠାରୁ ଉତ୍କୃଷ୍ଟତର ମଙ୍ଗଳ ସ୍ୱରୂପ ଧାରଣ କରିବାରୁ ପରମ ମଙ୍ଗଳ ନାମରେ ଅଭିହିତ । ୨୦ । ସେ ସମସ୍ତ ଭୂତଗଣଙ୍କର ନିୟନ୍ତା, ଏହି ନିମିତ୍ତ ଈଶାନ; ସେ ପ୍ରାଣ ପ୍ରଦାନ କରନ୍ତି ବୋଲି ପ୍ରାଣଦ । ସମସ୍ତ ପ୍ରାଣୀଗଣଙ୍କର ଜୀବନ ସ୍ୱରୂପ ବୋଲି ପ୍ରାଣ । ସେ ଅତିଶୟ ବୃଦ୍ଧ ଅତଏବ ଜ୍ୟେଷ୍ଠ, ଅତିଶୟ ପ୍ରଶସ୍ତ ବୋଲି ଶ୍ରେଷ୍ଠ, ଈଶ୍ୱର ରୂପରେ ସମସ୍ତ ପ୍ରଜାଗଣଙ୍କର ସ୍ୱାମୀ ବୋଲି ସେ ପ୍ରଜାପତି, ହିରଣ୍ମୟାଣ୍ଡର ଅନ୍ତର୍ବର୍ତ୍ତୀ ବୋଲି ହିରଣ୍ୟଗର୍ଭ ।

ପୃଥିବୀର କାରଣ ଅର୍ଥାତ୍ ପୃଥିବୀ ତାହାଙ୍କ ଗର୍ଭରେ ରହିଅଛନ୍ତି ବୋଲି ସେ ଭୂଗର୍ଭ; ଲକ୍ଷ୍ମୀଦେବୀଙ୍କ ପତି ବୋଲି ମାଧବ, ମଧୁ ନାମକ ଦୈତ୍ୟର ନିଧନକାରକ ବୋଲି ମଧୁସୂଦନ । ୨୧ । ଅଣିମାଦି ଅଷ୍ଟବିଧ ଐଶ୍ୱର୍ଯ୍ୟଶାଳୀ, ଅତଏବ ଈଶ୍ୱର, ବିକ୍ରମଶାଳୀ ବୋଲି ବିକ୍ରମୀ, ଧନୁର୍ଦ୍ଧାରୀ ବୋଲି ଧନ୍ୱୀ, ପ୍ରଶସ୍ତ ମେଧାଯୁକ୍ତ ବୋଲି ମେଧାବୀ, ବି ଅର୍ଥାତ୍ ପକ୍ଷୀ ଗରୁଡ଼ଦ୍ୱାରା ଗମନ କରନ୍ତି ବୋଲି ବିକ୍ରମ, ତାହାଙ୍କ ଅପେକ୍ଷା ଅନ୍ୟ କେହି ଉତ୍ତମ ନାହାନ୍ତି ଏହି ନିମିତ୍ତ ସେ ଅନୁତ୍ତମ, ଶତ୍ରୁଗଣଙ୍କର ଦୁର-ଧର୍ଷଣୀୟ ଏହି ନିମିତ୍ତ ଦୁରାଧର୍ଷ, ସେ ପ୍ରାଣୀମାନଙ୍କର ପାପପୁଣ୍ୟ ଜନ୍ୟ କର୍ମଫଳ ସବୁ ଜାଣନ୍ତି ଅତଏବ କୃତଜ୍ଞ, ସେ ପୁରୁଷଗଣଙ୍କର ପ୍ରକୃଷ୍ଟ ଯତ୍ନ ସ୍ୱରୂପ ଏହି ନିମିତ୍ତ ସେ କୃତି, ସେ ସ୍ୱ ମହିମା ମଧ୍ୟରେ ପ୍ରତିଷ୍ଠିତ ଅତଏବ ଆତ୍ମବାନ୍ । ୨୨ । ସେ ଦେବଗଣଙ୍କ ଈଶ ବୋଲି ସୁରେଶ । ଦୁଃଖୀ-ମାନଙ୍କର ଦୁଃଖ ନାଶ କରନ୍ତି ବୋଲି ଶରଣ, ସୁଖ ସ୍ୱରୂପ ବୋଲି ଶର୍ମ, ବିଶ୍ୱ କେବଳ ତାହାଙ୍କ ରେତଃ ସ୍ୱରୂପର କାର୍ଯ୍ୟ ଅତଏବ ସେ ବିଶ୍ୱରେତା, ସେ ପ୍ରଜାଗଣଙ୍କ ଉତ୍ପତ୍ତି କାରଣ ବୋଲି ପ୍ରଜାଭବ । ଦିବସ ସ୍ୱରୂପେ ପ୍ରକାଶ ରୂପ ଏହି ନିମିତ୍ତ ସେ ଅହଃ । ସେ କାଳ ସ୍ୱରୂପୀ ବୋଲି ସମ୍ବତ୍ସର, ସେ ବ୍ୟାଳ ସଦୃଶ ଗ୍ରହଣଯୋଗ୍ୟ ନୁହନ୍ତି ବୋଲି ବ୍ୟାଳ, ଜ୍ଞାନ ସ୍ୱରୂପ ବୋଲି ପ୍ରତ୍ୟୟ, ସ୍ୱୀୟ ଭକ୍ତଗଣଙ୍କୁ ଓ ସମସ୍ତଙ୍କୁ ଦର୍ଶନ କରନ୍ତି ବୋଲି ସର୍ବଦର୍ଶନ ।

ତାହାଙ୍କର ଜନ୍ମ ନାହିଁ ବୋଲି ସେ ଅଜ, ସମସ୍ତ ଈଶ୍ୱରଗଣଙ୍କର ଈଶ୍ୱର ବୋଲି ସେ ସର୍ବେଶ୍ୱର, ସେ ନିତ୍ୟ ନିଷ୍ପନ୍ନ ରୂପ ଅତଏବ ସେ ସିଦ୍ଧ, ସମସ୍ତ ଭୂତଗଣଙ୍କର କାରଣ ଅତଏବ ସେ ସର୍ବାଦି, ନିଜ ରୂପରୁ ଚ୍ୟୁତ ନୁହନ୍ତି ବୋଲି ଅଚ୍ୟୁତ । ସେ ସମସ୍ତ କାମନା ବର୍ଷଣ କରନ୍ତି, ଅତଏବ ବୃଷ ଅର୍ଥାତ୍ ଧର୍ମ ଏବଂ ବରାହ ଅବତାର ରୂପେ କପି, ସେହି କାରଣରୁ ସେ ବୃଷାକପି । ତାହାଙ୍କ ସ୍ୱରୂପ ଇୟତ୍ତା ଦ୍ୱାରା ପରିଚ୍ଛେଦ କରାଯାଏ ନାହିଁ, ଅତଏବ ସେ ଅମେୟାତ୍ମା, ସେ ସମସ୍ତ ସମ୍ବନ୍ଧରୁ ବିନିଃସୃତ ଅସଙ୍ଗ ସ୍ୱରୂପ ଅତଏବ ସେ ସର୍ବଯୋଗବିନିଃସୃତ । ୨୪ ।

ତାହାଙ୍କଠାରେ ସମସ୍ତ ଭୂତ ବାସ କରନ୍ତି ଏବଂ ସେ ସର୍ବଭୂତରେ ବାସ କରନ୍ତି, ଅତଏବ ବସୁ; ତାହାଙ୍କ ମନ ପ୍ରଶସ୍ତ, ଏହି କାରଣରୁ ସେ ବସୁମନା, ସେ ସତ୍ୟ ସ୍ୱରୂପ ବୋଲି ସତ୍ୟ, ତାହାଙ୍କ ମନ ରାଗ ଦ୍ୱେଷାଦି ଦ୍ୱାରା ଅଦୂଷିତ, ଅତଏବ ସେ ସମାତ୍ମା ନାମ ଧାରଣ କରିଅଛନ୍ତି । ସେ ଅପରିଚ୍ଛିନ୍ନ, ଏହି କାରଣରୁ ଅସମ୍ମିତ; ସେ ସର୍ବଦା ବିକାରଶୂନ୍ୟ ବୋଲି ସମ; ସେ ସତ୍ୟସଙ୍କଳ୍ପ, ଅତଏବ ସେ ମୋଘ; ହୃଦୟାଖ୍ୟ ପୁଣ୍ଡରୀକରେ ବ୍ୟାପି କରିଅଛନ୍ତି ବୋଲି ପୁଣ୍ଡରୀକାକ୍ଷ; ତାହାଙ୍କ କର୍ମସମୂହ ଧର୍ମମୟ, ଅତଏବ ସେ ବୃଷକର୍ମା; ଧର୍ମସଂସ୍ଥାପନ ନିମିତ୍ତ ଆକୃତି ଗ୍ରହଣ କରନ୍ତି ବୋଲି ସେ ବୃଷାକୃତି । ୨୫ ।

ସେ ଶିବଙ୍କ ସହିତ ଅଭିନ୍ନ ବୋଲି ସଂହାର ସମୟେ ପ୍ରଜାଗଣଙ୍କୁ ରୋଦନ କରାନ୍ତି ବୋଲି ରୁଦ୍ର; ସେ ସହସ୍ରଶୀର୍ଷା ପୁରୁଷ, ଅତଏବ ବହୁଶିରା; ସେ ଲୋକସମୂହ ଧାରଣ କରନ୍ତି ବୋଲି ବଭ୍ରୁ; ବିଶ୍ୱର କାରଣ ବୋଲି ବିଶ୍ୱଯୋନି; ତାହାଙ୍କ ନାମସମୂହ ପବିତ୍ର, ଅତଏବ ସେ ଶୁଚିଶ୍ରବା । ତାହାଙ୍କର ମୃତ୍ୟୁ ନାହିଁ, ଅତଏବ ସେ ଅମୃତ; ସର୍ବକାଳରେ ଓ ସର୍ବଦେଶରେ ଅଛନ୍ତି ବୋଲି ସେ ଶାଶ୍ୱତ ସ୍ଥାଣୁ; ତାହାଙ୍କଠାରେ ଆରୋହଣ କରିବାର ଶ୍ରେଷ୍ଠ, କାରଣ ତାହାଙ୍କୁ ପ୍ରାପ୍ତ ହେଲେ ପୁନରାବୃତ୍ତି ହୁଏ ନାହିଁ, ଅତଏବ ସେ ବରାରୋହ । ସମସ୍ତ ସର୍ଜନୀୟ ବିଷୟରେ ତାହାଙ୍କର ଜ୍ଞାନ ଅଛି, ଅତଏବ ସେ ମହାତପା । ୨୬ ।

ସେ ସର୍ବସ୍ଥାନରେ ଗମନ କରନ୍ତି ବୋଲି ସର୍ବଗ, ସେ ସର୍ବ ବିଷୟକ ଜ୍ଞାନବାନ୍ ଏବଂ ସର୍ବପ୍ରକାଶମାନ୍, ଅତଏବ ସର୍ବବିଦ୍ଭାନୁ; ଅସୁର-ସେନା ଚତୁର୍ଦ୍ଦିକ ସମସ୍ତ ଦିକ୍‌ସମୂହକୁ ପଳାୟନ କରିଥିଲେ ବୋଲି ତାହାଙ୍କ ନାମ ବିଶ୍ୱକ୍‌ସେନ; ଦସ୍ୟୁଗଣଙ୍କୁ ପୀଡ଼ନ କରିଥିବା ହେତୁରୁ

ମେ ଜନାର୍ଦ୍ଦନ; ସେ ବେଦସ୍ୱରୂପ, ଅତଏବ ତାହାଙ୍କ ନାମ ବେଦ; ପାଠ ଓ ଅର୍ଥକ୍ରମରେ ସେ ବେଦକୁ ଉତ୍ତମରୂପେ ଜାଣନ୍ତି, ଅତଏବ ସେ ବେଦବିତ୍ । ସେ ସର୍ବାବୟବସମ୍ପନ୍ନ, ଅତଏବ ଅବ୍ୟଙ୍ଗ; ବେଦମାନେ ତାହାଙ୍କର ଅଙ୍ଗଭୂତ ଅତଏବ ସେ ବେଦାଙ୍ଗ; ବେଦକୁ ବିସ୍ତୃତ କରିଥିଲେ ବୋଲି ସେ ବେଦବିତ୍ । ସେ କାନ୍ତଦର୍ଶୀ ଅର୍ଥାତ୍ ସର୍ବଜ୍ଞ ଅତଏବ କବି । ୨୭ ।

ସମସ୍ତ ଲୋକବୃନ୍ଦଙ୍କୁ ପ୍ରତ୍ୟକ୍ଷ କରନ୍ତି, ଏହି ନିମିତ୍ତ ସେ ଲୋକାଧ୍ୟକ୍ଷ; ସେ ଇନ୍ଦ୍ରାଦି ଦେବଗଣଙ୍କର ଅଧିପତି, ଏହି ନିମିତ୍ତ ସୁରାଧ୍ୟକ୍ଷ; ଧର୍ମାଧର୍ମର ଅନୁରୂପ ଫଳ ଦାନ କରିବା ହେତୁରୁ ସେ ଧର୍ମାଧ୍ୟକ୍ଷ । ସେ କାର୍ଯ୍ୟରୂପରେ କୃତ କାରଣରୂପରେ ଅକୃତ ବୋଲି କୃତାକୃତ ନାମ ଧରିଅଛନ୍ତି । ସୃଷ୍ଟିର ପ୍ରାରମ୍ଭ ସମୟରେ ଚତୁର୍ବିଧ ପୃଥକ୍ ପୃଥକ୍ ବ୍ରହ୍ମା ଦକ୍ଷ ପ୍ରଭୃତିରୂପେ ଚତୁରାତ୍ମା; ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ସ୍ୱରୂପରେ ସେ ଚତୁର୍ବ୍ୟୂହ; ନୃସିଂହରୂପରେ ଚତୁର୍ଦଂଷ୍ଟ୍ର, ଚତୁର୍ଭୁଜ । ୨୮ ।

ସେ ଅତିଶୟ ଦୀପ୍ତିମାନ ବୋଲି ତାହାଙ୍କ ନାମ ଭ୍ରାଜିଷ୍ଣୁ, ଭୋଗ୍ୟରୂପରେ ଅର୍ଥାତ୍ ମାୟାରୂପରେ ଭୋଜନ ଅଟନ୍ତି । ସେ ପୁରୁଷରୂପରେ ମାୟାକୁ ଭୋଗ କରନ୍ତି ବୋଲି ଭୋକ୍ତା, ସେ ସହନଶୀଳ ଅଟନ୍ତି ବୋଲି ସହିଷ୍ଣୁ, ବିଶ୍ୱର ଆଦିକାଳରେ ହିରଣ୍ୟଗର୍ଭରୂପରେ ଜନ୍ମଗ୍ରହଣ କରିଥିବାରୁ ତାହାଙ୍କ ନାମ ଜଗଦାଦିଜ ଅଟେ । ତାହାଙ୍କର ପାପ ନ ଥିବାରୁ ସେ ଅନଘ, ଜ୍ଞାନ ବୈରାଗ୍ୟ ପ୍ରଭୃତି ଦ୍ୱାରା ଐଶ୍ୱର୍ଯ୍ୟଦ୍ୱାରା ଜୟଯୁକ୍ତ ଅଟନ୍ତି ବୋଲି ସେ ବିଜୟ । ସେ ସର୍ବୋତ୍କୃଷ୍ଟ ଅଟନ୍ତି ବୋଲି ଜେତା, ସେ ବିଶ୍ୱର କାରଣ ଅଟନ୍ତି ବୋଲି ବିଶ୍ୱଯୋନି ନାମରେ ଅଭିହିତ ହୁଅନ୍ତି । ସେ ବାରମ୍ବାର ନାନା ଶରୀରରେ କ୍ଷେତ୍ରଜ୍ଞ ସ୍ୱରୂପରେ ବାସ କରନ୍ତି ବୋଲି ପୁନର୍ବସୁ (୨୯), ସେ ଉପେନ୍ଦ୍ର, ସେ ବାମନ ଏବଂ ବାମନ-ରୂପରେ ଜଗତ୍ରୟକୁ ଆକ୍ରମଣ କରିଥିଲେ ବୋଲି ପ୍ରାଂଶୁ, ତାହାଙ୍କ କାର୍ଯ୍ୟବୃନ୍ଦ ଅବ୍ୟର୍ଥ ବୋଲି ସେ ଅମୋଘ, ଅତି ପବିତ୍ର ହେତୁରୁ ଶୁଚି, ଗୋବର୍ଦ୍ଧନ ପ୍ରଭୃତି ଧାରଣ ବିଷୟରେ ବଳବତ୍ତା ପ୍ରକାଶ କରିଥିବା କାରଣରୁ ଊର୍ଜ୍ଜିତ, ଜ୍ଞାନୈଶ୍ୱର୍ଯ୍ୟାଦିଦ୍ୱାରା ଇନ୍ଦ୍ରଙ୍କୁ ଅତିକ୍ରମ କରିଥିବା ହେତୁ ଅତୀନ୍ଦ୍ର ନାମରେ ଖ୍ୟାତ ।

ସେ ସମସ୍ତଙ୍କୁ ସଂଗ୍ରହ କରନ୍ତି ଅତଏବ ସଂଗ୍ରହ, ସେ କାର୍ଯ୍ୟରୂପେ ସୃଷ୍ଟ ହୁଅନ୍ତି, ଅତଏବ ସର୍ଗ; ଏକରୂପରେ ଜନ୍ମାଦିରହିତ ବୋଲି ଧୃତାତ୍ମା,

ପ୍ରଜାଗଣଙ୍କୁ ନିଜ ଅଧିକାରରେ ନିଯୋଜିତ କରନ୍ତି ବୋଲି ନିୟମ, ସେ ଅନ୍ତର୍ଯ୍ୟାମୀ ଅଟନ୍ତି ବୋଲି ତାହାଙ୍କ ନାମ ଯମ । ୩୦ । ମୋକ୍ଷାର୍ଥୀମାନଙ୍କ ବେଦ ନାହିଁ ବୋଲି ସେ ବେଦ୍ୟ । ସେ ସର୍ବବିଦ୍ୟା ଜାଣିଅଛନ୍ତି, ଅତଏବ ବୈଦ୍ୟ । ସଦା ଆବିର୍ଭୂତ ସ୍ୱରୂପ ହେତୁରୁ ସଦାଯୋଗୀ, ସେ ଦୈତ୍ୟଦଳହନ୍ତା ବୋଲି ବୀରହା ନାମରେ ଖ୍ୟାତ ଅଟନ୍ତି ।

ସେ ବିଦ୍ୟାର ଈଶ୍ୱର ବୋଲି ମାଧବ । ବସନ୍ତ ସଦୃଶ ପ୍ରୀତି ପ୍ରଦାନ କରନ୍ତି ବୋଲି ମଧୁ । ଇନ୍ଦ୍ରିୟବୃନ୍ଦର ଅଗୋଚର ବୋଲି ଅତୀନ୍ଦ୍ରିୟ ; ମାୟାବିମାନଙ୍କର ମଧ୍ୟ ମାୟାକାରୀ, ଅତଏବ ମହାମାୟ, ସେ ମହୋତ୍ସାହଶାଳୀ ଅଟନ୍ତି ବୋଲି ମହୋତ୍ସାହ ନାମରେ ଖ୍ୟାତ । ବାଲ୍ୟକାଳରେ ପୂତନା ପ୍ରଭୃତିଙ୍କ ବଧ ବିଷୟରେ ଅତିଶୟ ବଳ ପ୍ରକାଶ କରିଥିବାରୁ ମହାବଳ, ସେ ମହାବୁଦ୍ଧି, ତାହାଙ୍କର ମହତ୍ ଅବିଦ୍ୟା ଲକ୍ଷଣବୀର୍ଯ୍ୟ, ଅତଏବ ସେ ମହାବୀର୍ଯ୍ୟ, ସେ ମହାଶକ୍ତି ଓ ମହାଦ୍ୟୁତି ଅଟନ୍ତି 'ଏ ସେହି' ଇତ୍ୟାଦି ରୂପରେ ନିରୂପଣ କରିଯାଏ ନାହିଁ, ଏହି ହେତୁରୁ ସେ ଅନିର୍ଦ୍ଦେଶ୍ୟ ବପୁ, ସେ ଶ୍ରୀମାନ୍ ; ତାହାଙ୍କର ବୁଦ୍ଧି ସମସ୍ତଙ୍କର ଅଜ୍ଞେୟ ବୋଲି ସେ ଅମେୟାତ୍ମା, ମହାଶୈଳ ଗୋବର୍ଦ୍ଧନ ବା ମନ୍ଦର ଧାରଣ କରିଥିଲେ ବୋଲି ସେ ମହାଦ୍ରିଧୃକ୍ ନାମରେ ଖ୍ୟାତ ହୋଇଅଛନ୍ତି । ୩୨ ।

ସେ ମହାଧନୁର୍ଦ୍ଧାରୀ, ଅତଏବ ମହେଷ୍ୱାସ ; ସେ ମହୀଭର୍ତ୍ତା । ତାହାଙ୍କ ବକ୍ଷସ୍ଥଳରେ ଅନପାୟିନୀ ଶ୍ରୀ ବାସ କରନ୍ତି, ଅତଏବ ସେ ଶ୍ରୀନିବାସ । ସେ ସାଧୁଗଣଙ୍କ ଆଶ୍ରୟ ହେତୁ ସତାଂଗତି ନାମରେ ଖ୍ୟାତ ଅଟନ୍ତି । କୌଣସି ଶତ୍ରୁ ତାଙ୍କୁ ରୋଧ କରିପାରନ୍ତି ନାହିଁ, ଅତଏବ ସେ ଅନିରୁଦ୍ଧ । ଦେବଗଣଙ୍କୁ ଆନନ୍ଦିତ କରନ୍ତି ବୋଲି ସୁରାନନ୍ଦ ; ପୂର୍ବକାଳରେ ଗୋ ଅର୍ଥାତ୍ ପୃଥିବୀକୁ ଉଦ୍ଧାର କରିଥିଲେ ବୋଲି ଗୋବିନ୍ଦ; ଗୋବିଦ୍ ଅର୍ଥାତ୍ ବେଦବାଦୀ ଋଷି, ସେମାନଙ୍କର ବିଶେଷରୂପେ ପାଳନକର୍ତ୍ତା ଅଟନ୍ତି ବୋଲି "ଗୋବିଦାଂପତି" ନାମ ଧାରଣ କରିଅଛନ୍ତି । ୩୩ ।

ତେଜସ୍ୱୀମାନଙ୍କର ମଧ୍ୟ ସେ ତେଜଃ ସ୍ୱରୂପ, ଅତଏବ ମରୀଚ । ସେ ଦୁଷ୍ଟଗଣଙ୍କର ଶାସନକର୍ତ୍ତା ଅଟନ୍ତି ବୋଲି ଦମନ; ଶୁଦ୍ଧତ୍ୱ ହେତୁ ହଂସ ସଦୃଶ ବୋଲି ହଂସ; ଅଥବା ସଂସାର ବନ୍ଧନ ଛେଦ କରନ୍ତି ବୋଲି ହଂସ । ତାହାଙ୍କ ପର୍ଣ୍ଣ ଶୋଭନ, ଅତଏବ ଗରୁଡ଼ ରୂପରେ ସେ ସୁପର୍ଣ୍ଣ,

ଶେଷ ରୂପରେ ଭୁଜଗୋତ୍ତମ ଅଟନ୍ତି । ସୁବର୍ଣ୍ଣ ସଦୃଶ ପ୍ରକାଶମାନ ବ୍ରହ୍ମାଣ୍ଡ ତାହାଙ୍କ ନାଭିରେ ବର୍ତ୍ତମାନ, ଅତଏବ ସେ ହିରଣ୍ୟନାଭ । ନରନାରାୟଣ ରୂପରେ ଉତ୍କୃଷ୍ଟ ତପସ୍ୟା କରିଥିବାରୁ ତାହାଙ୍କ ନାମ ସୁତପା । ସେ ହୃଦୟରୂପକ ନାଭି ମଧ୍ୟରେ ପ୍ରକାଶମାନ ହେତୁରୁ ପଦ୍ମନାଭ । ସେ ପ୍ରଜାପତି । ୩୪ । ତାହାଙ୍କର ମୃତ୍ୟୁ ହୁଏ ନାହିଁ ବୋଲି ସେ ଅମୃତ୍ୟୁ, ସର୍ବଦର୍ଶୀ ଅଟନ୍ତି ବୋଲି ସର୍ବଦୃକ୍, ଦନ୍ତବକ୍ରାଦି ଦୁଷ୍ଟ ଦସ୍ୟୁଗଣଙ୍କୁ ହିଂସା କରିଥିଲେ ବୋଲି ସିଂହ ନାମରେ ଖ୍ୟାତ ହୋଇଅଛନ୍ତି ।

କର୍ମଫଳ ସହିତ ପୁରୁଷଙ୍କୁ ସନ୍ଧାନ କରନ୍ତି ବୋଲି ସେ ସନ୍ଧାତା, ଫଳଭୋକ୍ତା ଯୋଗରୁ ସନ୍ଧିମାନ୍; ଭକ୍ତଗଣଙ୍କ ହୃଦୟରେ ସ୍ଥିର ଭାବରେ ଅବସ୍ଥାନ କରନ୍ତି ବୋଲି ସ୍ଥିର, ଶିଶୁପାଳର ବଧ ନିମିତ୍ତ ଚକ୍ର ନିକ୍ଷେପ କରିଥିଲେ, ଏହି ନିମିତ୍ତ ଅଜ । ତାହାଙ୍କୁ ଦୁଃଖରେ ସହ୍ୟ କରାଯାଏ ନାହିଁ, ଅତଏବ ସେ ଦୁର୍ମର୍ଷଣ । ଶ୍ରୁତି ସ୍ମୃତି ଦ୍ୱାରା ସମସ୍ତଙ୍କର ଶାସନ କରନ୍ତି ବୋଲି ଶାସ୍ତା, ସେ ଶାସ୍ତ୍ରପ୍ରସିଦ୍ଧ ବିରାଟ୍ ଦେହଧାରୀ ଅଟନ୍ତି ଏହି ନିମିତ୍ତ ବିଶ୍ରୁତାତ୍ମା । ସେ ଅସୁରଗଣଙ୍କୁ ସଂହାର କରନ୍ତି ବୋଲି ଅସୁରାରି ନାମରେ ଖ୍ୟାତ ହୋଇଅଛନ୍ତି । ଭକ୍ତିଯୋଗ ଉପଦେଶ କରନ୍ତି ବୋଲି ଗୁରୁ । ସେ ଉପଦେଷ୍ଟାମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଅତଏବ ଗୁରୁତମ । ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ଏହି ତ୍ରିକାଳରେ ବାଧାଶୂନ୍ୟ ଅଟନ୍ତି ବୋଲି ତାହାଙ୍କ ନାମ ସତ୍ୟ, ତାହାଙ୍କ ସାମର୍ଥ୍ୟ ଅପ୍ରତିହତ ଅଟେ ଏହି କାରଣରୁ ସତ୍ୟପରାକ୍ରମୀ ନାମଧାରୀ ହୋଇଅଛନ୍ତି । ଯୋଗନିଦ୍ରା ଦ୍ୱାରା ନେତ୍ରଦ୍ୱୟକୁ ନିମୀଳନ କରିଅଛନ୍ତି ବୋଲି ନିମିଷ; ସେ ନିତ୍ୟ ଜାଗରୁକ ଅତଏବ ଅନିମିଷ; ସେ ବୈଜୟନ୍ତୀ ମାଳାଧାରୀ ଅଟନ୍ତି, ଅତଏବ ସ୍ରଗ୍ବୀ, ସେ ବାକ୍ୟର ଅଧିପତି ଅତଏବ ବାଚସ୍ପତି, ମହାବୁଦ୍ଧି ହେତୁରୁ ସେ ଉଦାରଧୀ ଅଟନ୍ତି । ୩୬ ।

ମୁମୁକ୍ଷୁ ପୁରୁଷଙ୍କୁ ପ୍ରକୃଷ୍ଟ ପଦ ଦିଅନ୍ତି ବୋଲି ଅଗ୍ରଣୀ; ଭୂତଗ୍ରାମର ନେତା ହେତୁରୁ ସେ ଗ୍ରାମଣୀ; ସେ ସୌନ୍ଦର୍ଯ୍ୟର ସିନ୍ଧୁସ୍ୱରୂପ ବୋଲି ଶ୍ରୀମାନ୍; ସେ ଶ୍ରୁତି, ସ୍ମୃତି ଓ ପୁରାଣମାନଙ୍କ ତାତ୍ପର୍ଯ୍ୟର ବିଷୟରୂପେ ଜ୍ଞାତ ହୁଅନ୍ତି ବୋଲି ନ୍ୟାୟ; ସେ ଜଗଦ୍ୟନ୍ତ୍ର ନିର୍ବାହକ, ଅତଏବ ନେତା; ଶ୍ୱସନରୂପରେ ସମସ୍ତ ଭୂତଙ୍କୁ ଚେଷ୍ଟିତ କରାନ୍ତି, ଅତଏବ ସେ ସମୀରଣ, ବିରାଟ୍‌ରୂପରେ ସେ ସହସ୍ର ମୂର୍ଦ୍ଧା, ବିଶ୍ୱାତ୍ମା, ସହସ୍ରାକ୍ଷ ଓ ସହସ୍ରପାତ ଅଟନ୍ତି । ୩୭ । ସେ ସଂସାରଚକ୍ରର ଆବର୍ତ୍ତନଶୀଳ ଅତଏବ ଆବର୍ତ୍ତନ;

ତାହାଙ୍କ ଚିତ୍ତ ପରମ ବୈରାଗ୍ୟଯୁକ୍ତ ଅଟେ, ଅତଏବ ସେ ନିବୃତ୍ତାତ୍ମା; ସେ ଯୋଗମାୟାଦ୍ୱାରା ଆଚ୍ଛାଦିତ, ଅତଏବ ସଂବୃତ, ଦୁଷ୍ଟଗଣଙ୍କୁ ମର୍ଦ୍ଦନ କରନ୍ତି ବୋଲି ସେ ସଂପ୍ରମର୍ଦ୍ଦନ ନାମ ଧାରଣ କରିଅଛନ୍ତି । ସେ ସୂର୍ଯ୍ୟରୂପରେ ଦିବସ-ସମୂହର ପ୍ରବର୍ତ୍ତକ, ଅତଏବ ଅହଃ ସଂବର୍ତ୍ତକ, ଅଗ୍ନିରୂପରେ ଦେବଗଣଙ୍କର ହବ୍ୟବହନ କରନ୍ତି ବୋଲି ସେ ବହ୍ନି, କଂସକୁ ଜୟକରି ଉଗ୍ରସେନକୁ ପୃଥିବୀ ଦାନ କରିବାରୁ ତାହାଙ୍କର ଇଳା ଅର୍ଥାତ୍ ପୃଥିବୀ ଥିଲା ନାହିଁ, ଏହି କାରଣରୁ ସେ ଅନିଳ, ଅନନ୍ତ ଅଥବା ବରାହରୂପରେ ଭୂଭାର ବହନ କରିଥିଲେ ବୋଲି ଧରଣୀଧର ଅଟନ୍ତି । ୩୮ ।

ଅପକାରୀମାନଙ୍କର ମଧ୍ୟ ମୋକ୍ଷଦାତା ଅଟନ୍ତି ଅତଏବ ସେ ସୁପ୍ରସାଦ, ଭକ୍ତଗଣ ଅପରାଧ କଲେ ସୁଦ୍ଧା ତାହାଙ୍କ ଚିତ୍ତ ଅପ୍ରସନ୍ନ ହୁଏ ନାହିଁ, ଏହି ନିମିତ୍ତ ସେ ପ୍ରସନ୍ନାତ୍ମା, ସେ ବିଶ୍ୱକୁ ଧାରଣ କରିଥିବାରୁ ବିଶ୍ୱଧୃକ୍, ଏବଂ ପାଳନ କରୁଥିବାରୁ ବିଶ୍ୱଭୁକ୍ ଅଟନ୍ତି । ସେ ବିଶ୍ୱକୁ ବିବିଧରୂପରେ ଧାରଣ କରନ୍ତି ଅତଏବ ବିଭୁ, ଧର୍ମରକ୍ଷା ନିମିତ୍ତ ଗୋ-ବ୍ରାହ୍ମଣଗଣଙ୍କ ସତ୍କାର କରନ୍ତି ବୋଲି ସେ ସତ୍କର୍ତ୍ତା, ପୂଜିତ ବ୍ୟକ୍ତି-ଗଣଙ୍କର ପୂଜିତ ବୋଲି ସେ ସତ୍କୃତ, ନ୍ୟାଯ୍ୟ କାର୍ଯ୍ୟଦ୍ୱାରା ପରକାର୍ଯ୍ୟ ସାଧନ କରନ୍ତି ଅତଏବ ସାଧୁ, ସଂହାର କାଳରେ ଜନଗଣଙ୍କୁ ହରଣ କରନ୍ତି ବୋଲି ଜହ୍ନୁ, ପ୍ରଳୟ କାଳରେ ନାର ଅର୍ଥାତ୍ ଜଳରାଶି ତାହାଙ୍କର ଅୟନ ଅର୍ଥାତ୍ ଆଶ୍ରୟ ଥିଲା, ଏହି କାରଣରୁ ସେ ନାରାୟଣ; ସେ ସନାତନ ପରମାତ୍ମା ବୋଲି ନର । ୩୯ । ଅନବଂତମାୟ ବୋଲି ଅସଂଖ୍ୟେୟ, ତଦୀୟ ଶରୀରର ଅନ୍ତ କରିନୁହେ ବୋଲି ସେ ଅପ୍ରମେୟାତ୍ମା, ସେ ସର୍ବୋତ୍କୃଷ୍ଟ ବୋଲି ବିଶିଷ୍ଟ, ସେ ବେଦୋକ୍ତ କର୍ମ କରନ୍ତି ଅତଏବ ଶିଷ୍ଟକୃତ୍, ସେ ପବିତ୍ର ଅଟନ୍ତି ବୋଲି ଶୁଦ୍ଧ ନାମରେ ଅଭିହିତ ହୁଅନ୍ତି ।

ତାହାଙ୍କର ସମସ୍ତ ଅର୍ଥ ସିଦ୍ଧ ହୁଏ ବୋଲି ସେ ସିଦ୍ଧାର୍ଥ, ତାହାଙ୍କର ସଂକଳ୍ପ ସମୂହ ସିଦ୍ଧ ହୁଏ ଅତଏବ ସେ ସିଦ୍ଧସଂକଳ୍ପ । ସିଦ୍ଧିଦାତା ବୋଲି ସେ ସିଦ୍ଧିଦ; ସେ ଧର୍ମ, ଅର୍ଥ ଓ କାମ ଏହି ତ୍ରୈବର୍ଗିକ ଫଳ ସାଧନ କରନ୍ତି ବୋଲି ସିଦ୍ଧସାଧନ ନାମରେ ଅଭିହିତ ହୁଅନ୍ତି । ୪୦ । ଧର୍ମରୂପ ଦ୍ୱାଦଶ ଅହ ଅର୍ଥାତ୍ ଦ୍ୱାଦଶ ଦିବସ-ବିଶିଷ୍ଟ ବୋଲି ବୃଷାହୀ, ସେ ଅଭିଲଷିତ ବିଷୟ ଦାନ କରନ୍ତି ଅତଏବ ବୃଷଭ, ଚରଣ ଚଙ୍କ୍ରମଣଦ୍ୱାରା ବିଶ୍ୱକୁ ବେଷ୍ଟନ କରିଥିବାରୁ ସେ ବିଷ୍ଣୁ । ଧର୍ମ କେବଳ ତାହାଙ୍କ ସୋପାନ, ଏହି

ନିମିତ୍ତ ସେ ବୃଷପର୍ବା; ବୃଷ ଅର୍ଥାତ୍ ଧର୍ମ ତାହାଙ୍କ ଉଦରରେ ଥିବାରୁ ସେ ବୃଷୋଦର, ଭକ୍ତକୃତ ଅଳ୍ପ ବିଷୟର ବୃଦ୍ଧିକାରକ ବୋଲି ବର୍ଦ୍ଧନ, ପ୍ରପଞ୍ଚ ଅତୀତ ଅତଏବ ବିବିକ୍ତ ନାମଧାରୀ ଅଟନ୍ତି । ଯାହାଙ୍କଠାରେ ଶ୍ରୁତି ସାଗର ନିହିତ ହୋଇଅଛନ୍ତି, ସେ ଶ୍ରୁତିସାଗର ନାମରେ ଅଭିହିତ ହୁଅନ୍ତି । ୪୧ ।

ସେ ସୁଭୁଜ, ଦୁର୍ଦ୍ଧର; ତାହାଙ୍କଠାରୁ ବ୍ରହ୍ମମୟୀ ବାକ୍ ନିଃସୃତ ହୋଇଅଛି, ଅତଏବ ସେ ବାଗ୍ମୀ, ସେ ମହେନ୍ଦ୍ର, ସେ ବସୁଦ, ଆତ୍ମମାୟା ଦ୍ୱାରା ସମସ୍ତଙ୍କୁ ଆଚ୍ଛାଦନ କରିବା ହେତୁରୁ ବସୁ, ସେ ଅନେକରୂପୀ ବୋଲି ନୈକରୂପ ଧାରଣ କରିଅଛନ୍ତି । ବିରାଡାଦି ରୂପକୁ ଧାରଣ କରିଥିବାରୁ ସେ ବୃହଦ୍ରୂପ, ପଶୁମାନଙ୍କଠାରେ ଯଜ୍ଞ ରୂପରେ ରହନ୍ତି ବୋଲି ସେ ଶିପିବିଷ୍ଟ, ସେ ପ୍ରକାଶନ ।୪୨। ଓଜ, ତେଜ, ପ୍ରତାପ, ଦ୍ୟୁତି-ଦେହକାନ୍ତି ଧାରଣ କରନ୍ତି ବୋଲି ସେ ଓଜସ୍ତେଜୋଦ୍ୟୁତିଧର ଅଟନ୍ତି । ସେ ପ୍ରକାଶାତ୍ମା, ସୂର୍ଯ୍ୟାଦି ରୂପରେ ବିଶ୍ୱକୁ ତାପ ପ୍ରଦାନ କରିବା ହେତୁରୁ ସେ ପ୍ରତାପନ, ଧର୍ମ ବୈରାଗ୍ୟାଦିଯୁକ୍ତ ହେତୁରୁ ଋଦ୍ଧ, ସ୍ପଷ୍ଟ, ଓଁକାର ଯାହାଙ୍କର ବାଚକ ସେ ସ୍ପଷ୍ଟାକ୍ଷର ମନ୍ତ୍ରଦ୍ୱାରା ବୋଧ ବୋଲି ସେ ମନ୍ତ୍ର, ଚନ୍ଦ୍ରାଂଶୁ ସଦୃଶ ଆହ୍ଲାଦକ ହେତୁରୁ ସେ ଚନ୍ଦ୍ରାଂଶୁ, ଭାସ୍କର ତାହାଙ୍କଠାରୁ ଦ୍ୟୁତି ଗ୍ରହଣ କରନ୍ତି ଅତଏବ ସେ ଭାସ୍କରଦ୍ୟୁତି । ୪୩ ।

ସମୁଦ୍ରମନ୍ଥନଦ୍ୱାରା ସେ ଚନ୍ଦ୍ରୋତ୍ପାଦକ ଅଟନ୍ତି, ସୁତରାଂ ଅମୃତାଂଶୁଭବ । ସେ ସ୍ୱୟଂ ଦୀପ୍ତିମାନ୍, ସେହି କାରଣରୁ ଭାନୁ, ଶଶବିନ୍ଦୁ ଲାଞ୍ଛନଯୁକ୍ତ ବୋଲି ଶଶବିନ୍ଦୁ, ସେ ସମସ୍ତ ସୁରଗଣଙ୍କ ଉପରେ ଆଧିପତ୍ୟ କରି ସୁରେଶ୍ୱର ନାମ ଧାରଣ କରିଅଛନ୍ତି । ସଂସାର ରୋଗ ନିବର୍ତ୍ତକ ବୋଲି ଔଷଧ, ଜଗତର ସେତୁ ସ୍ୱରୂପ ବୋଲି ଜଗତ୍ ସେତୁ, ସେ ସତ୍ୟ ଧର୍ମ ପରାକ୍ରମ ଭୂତ ଭବ୍ୟ ଭବନ୍ନାଥ, ସେ ପବନ ଓ ପାବନ, ତାହାଙ୍କର ପର୍ଯ୍ୟାପ୍ତ ନାହିଁ ଅତଏବ ଅନଳ, ଭକ୍ତଗଣଙ୍କୁ ସ୍ୱ ସ୍ୱରୂପ ପ୍ରଦାନଦ୍ୱାରା ସେମାନଙ୍କର ତତ୍ତତ୍ କାମ ବିନାଶ କରନ୍ତି ଅତଏବ ସେ କାମହା ।

ପ୍ରଦ୍ୟୁମ୍ନଙ୍କର ଉତ୍ପାଦକ ବୋଲି କାମକୃତ୍, ଅତିରୂପତମ ବୋଲି ସେ କାନ୍ତ, ସେ ମୁମୁକ୍ଷୁଗଣଙ୍କର କାମନୀୟ ଅତଏବ କାମ, କାମ ପ୍ରଦାନ କରନ୍ତି ବୋଲି କାମପ୍ରଦ, ଦିବ୍ୟରୂପରେ ପ୍ରାଦୁର୍ଭୂତ ବୋଲି ପ୍ରଭୁ । ୪୫ । ସତ୍ୟ ପ୍ରଭୃତି ଯୁଗମାନଙ୍କର କର୍ତ୍ତା ବୋଲି ଯୁଗକୃତ୍, ସତ୍ୟ ପ୍ରଭୃତି ଯୁଗ-

ଚତୁଷ୍ଟୟଙ୍କୁ କାଳସ୍ୱରୂପରେ ଆବର୍ତ୍ତନ କରନ୍ତି ଅତଏବ ଯୁଗାବର୍ତ୍ତ, ସେ ବହୁମାୟା ବିଶିଷ୍ଟ ଅତଏବ ନୈକମାୟ, କଳ୍ପାନ୍ତରେ ସର୍ବଗ୍ରାସ କରନ୍ତି ବୋଲି ସେ ମହାଶନ, ସମସ୍ତ ଜ୍ଞାନେନ୍ଦ୍ରିୟମାନଙ୍କଦ୍ୱାରା ଅଗମ୍ୟ ବୋଲି ସେ ଅଦୃଶ୍ୟ, ସ୍ଥୂଳରୂପରେ ତାହାଙ୍କ ସ୍ୱରୂପ ବ୍ୟକ୍ତ ଅତଏବ ବ୍ୟକ୍ତରୂପ, ଅସଂଖ୍ୟ ଅସୁରମାନଙ୍କୁ ଯୁଦ୍ଧରେ ଜୟ କରିଥିବା ହେତୁରୁ ସେ ସହସ୍ରଜିତ୍, ସର୍ବଜ ଅଚିନ୍ତ୍ୟ ଶକ୍ତି ରୂପରେ ଜୟଲାଭ କରିବାରୁ ସେ ଅନନ୍ତଜିତ୍, ସେ ପରମାନନ୍ଦ ରୂପ ଅତଏବ ସମସ୍ତଙ୍କର ଇଚ୍ଛାର ବିଷୟ ଅଥବା ଯଜ୍ଞଦ୍ୱାରା ପୂଜିତ ଅତଏବ ଇଷ୍ଟ, ସର୍ବାନ୍ତର୍ଯ୍ୟାମୀରୂପରେ ବିଶିଷ୍ଟ ଶିଷ୍ଟ ଜନଗଣଙ୍କର ଇଷ୍ଟ ଅତଏବ ଶିଷ୍ଟେଷ୍ଟ, ସେ ମସ୍ତକରେ ମୟୂରପୁଚ୍ଛ ଧାରଣ କରିଥିବାରୁ ଶିଖଣ୍ଡୀ, ମାୟାଦ୍ୱାରା ସମସ୍ତ ଭୂତଗଣଙ୍କୁ ବନ୍ଧ କରନ୍ତି, ଏଣୁ ନିମିତ୍ତ ନହୁଷ ; ଅଭିଳଷିତ ବିଷୟ ବର୍ଷଣ କରନ୍ତି ଅତଏବ ବୃଷ, ଭକ୍ତଜନଗଣଙ୍କ କ୍ରୋଧ ବିନାଶ କରନ୍ତି ବୋଲି କ୍ରୋଧହା ।

ଅସାଧୁଜନଙ୍କ ପ୍ରତି କ୍ରୋଧ ପ୍ରକାଶ କରିବାରୁ ସେ କ୍ରୋଧକୃତ୍, କାର୍ଯ୍ୟମାନରେ ତାହାଙ୍କର କର୍ତ୍ତୃତ୍ୱ ଥିବା ଯୋଗୁଁ ସେ କର୍ତ୍ତା, ତାହାଙ୍କ ବାହୁ ବିଶ୍ୱର ଆଲମ୍ବନଭୂତ, ଅତଏବ ବିଶ୍ୱବାହୁ: ମହୀ (ପୃଥ୍ୱୀ)କୁ ଧାରଣ କରନ୍ତି ବୋଲି ମହୀଧର । ୪୭ । ଷଡ଼୍‌ଭାବ, ବିକାରରହିତ ହେତୁ ଅଚ୍ୟୁତ, ଜଗତର ଉତ୍ପତ୍ତ୍ୟାଦି କାର୍ଯ୍ୟଦ୍ୱାରା ପ୍ରଖ୍ୟାତ ହେତୁରୁ ପ୍ରଥିତ, ସୂତ୍ରମାରୂପରେ ପ୍ରଜାମାନଙ୍କର ପ୍ରାଣଦ ହେତୁରୁ ପ୍ରାଣ, ସୁରାସୁରମାନଙ୍କର ବଳ ଦାନ ଓ ଖଣ୍ଡନ କରନ୍ତି ବୋଲି ପ୍ରାଣଦ, ସେ ବାସବଙ୍କ ଅନୁଜ ଯୋଗୁଁ ବାସବାନୁଜ ଅଟନ୍ତି । ତାହାଙ୍କଠାରେ ଜଳରାଶି ନିହିତ ହୁଅନ୍ତି ବୋଲି ସେ ଅପାଂନିଧି । ଭୂତମାନଙ୍କର ଉପାଦାନ କାରଣ ହେତୁରୁ ସେ ଅଧିଷ୍ଠାନ, ଅଧିକାରୀମାନଙ୍କର କର୍ମଫଳ ପ୍ରଦାନ ବିଷୟରେ ସାବଧାନ ହେତୁରୁ ସେ ଅପ୍ରମତ୍ତ ଅଟନ୍ତି । ସେ ସ୍ୱୀୟ ମହିମାରେ ସ୍ଥିତ ଅତଏବ ପ୍ରତିଷ୍ଠିତ । ୪୮ ।

ବାୟୁରୂପରେ ଶୋଷଣ କରିବା ଯୋଗୁ ସେ ସ୍କନ୍ଦ, ଧର୍ମପଥକୁ ଧାରଣ କରନ୍ତି ବୋଲି ସେ ସ୍କନ୍ଦଧର, ସେ ବିଶ୍ୱର ଭାର ବହନ କରନ୍ତି ଅତଏବ ଧୂର୍ଯ୍ୟ, ସେ ଅଭିଳଷିତ ପଦାର୍ଥ ଦାନ କରନ୍ତି ଅତଏବ ବରପ୍ରଦ । ଆବହାଦି ସପ୍ତ ବାୟୁର ଚାଳକ ଅତଏବ ବାୟୁବାହନ, ସେ ସର୍ବଭୂତରେ ବାସ କରନ୍ତି ବୋଲି ବାସୁଦେବ, ତାହାଙ୍କ ପ୍ରକାଶ ଚନ୍ଦ୍ର ଓ ସୂର୍ଯ୍ୟଗାମୀ, ଅତଏବ ସେ ବୃହଦ୍ଭାନୁ, ଆଦିକାରଣ ଯୋଗୁ ଆଦିଦେବ, ଶତ୍ରୁଗଣଙ୍କ ପୁରସମୂହ ବିଦାରଣ କରନ୍ତି ବୋଲି ସେ ପୁରନ୍ଦର, ଶୋକାଦି ଷଡ଼ୂର୍ମିବର୍ଜିତ

ହେତୁରୁ ସେ ଅଶୋକ, ସଂସାରସାଗରରୁ ପ୍ରାଣିଗଣଙ୍କୁ ତାରଣ କରନ୍ତି ବୋଲି ସେ ତାରଣ, ଗର୍ଭଜନ୍ମମରଣାଦି ଭୟରୁ ଉଦ୍ଧାର କରନ୍ତି ବୋଲି ସେ ତାର, ସେ ପରାକ୍ରମଶାଳୀ ଅଟନ୍ତି ଅତଏବ ଶୂର, ଶୂରଙ୍କ ସନ୍ତାନ ବୋଲି ଶୌରି, ସେ ଜନେଶ୍ୱର, ସେ ଆତ୍ମରୂପରେ ସମସ୍ତଙ୍କର ପ୍ରିୟ ଅତଏବ ଅନୁକୂଳ, ଧର୍ମରକ୍ଷଣ ନିମିତ୍ତ ତାହାଙ୍କର ଶତବାର ଆବିର୍ଭୂତ ହୁଏ ଏହି କାରଣରୁ ସେ ଶତାବର୍ତ୍ତ ।

ସେ ପଦ୍ମହସ୍ତ ଅତଏବ ପଦ୍ମୀ, ତାହାଙ୍କ ନେତ୍ର ପଦ୍ମସଦୃଶ ବୋଲି ସେ ପଦ୍ମନିଭେକ୍ଷଣ, ନାଭିନାଳକାରେ ସ୍ଥିତ ହେତୁରୁ ସେ ପଦ୍ମନାଭ, ସେ ଅରବିନ୍ଦାକ୍ଷ, ହୃଦୟାଖ୍ୟ, ପଦ୍ମକର୍ଣ୍ଣିକାରେ ଉପାସନା କରନ୍ତି ବୋଲି ସେ ପଦ୍ମଗର୍ଭ, ସେ ଅନ୍ନରୂପରେ ଶରୀର ପୋଷଣ କରନ୍ତି ଅତଏବ ଶରୀରଭୃତ୍ । ତାହାଙ୍କର ମହତୀ ସମ୍ପତ୍ତି ଅଛି ଅତଏବ ସେ ମହର୍ଦ୍ଧି, ପ୍ରପଞ୍ଚରୂପରେ ସେ ବୃଦ୍ଧ ଅଟନ୍ତି ଅତଏବ ଋଦ୍ଧ, ଯାହାଙ୍କର ପୁରାତନ ଆତ୍ମା ସେ ବୃଦ୍ଧାତ୍ମା, ବିଶାଳ ନେତ୍ର ହେତୁରୁ ସେ ମହାକ୍ଷ, ଗରୁଡ଼ ଚିହ୍ନିତ ଧ୍ୱଜ ହେତୁରୁ ସେ ଗରୁଡ଼ଧ୍ୱଜ, ତାହାଙ୍କର ଉପମା ନାହିଁ ଅତଏବ ସେ ଅତୁଳ ।

ଶରୀର ସମୂହରେ ସେ ପ୍ରତ୍ୟକ୍ ଆତ୍ମାରୂପରେ ପ୍ରକାଶମାନ୍ ଅତଏବ ସେ ଶରଭ, ସମସ୍ତେ ତାହାଙ୍କଠାରୁ ଭୟ ପ୍ରାପ୍ତ ହୁଅନ୍ତି ଅତଏବ ସେ ଭୀମ, ସୃଷ୍ଟି ସ୍ଥିତି ଅନ୍ତକାଳ ଅଥବା ଷଟ୍ ସମୟକୁ ଜାଣନ୍ତି ବୋଲି ସେ ସମୟଜ୍ଞ, ଯଜ୍ଞରେ ହବନୀୟ ଦ୍ରବ୍ୟକୁ ହରଣ କରନ୍ତି ବୋଲି ହବିର୍ହରି ଅଥବା ଏହି ଯେ ନାମଦ୍ୱୟ ହବିଦ୍ୱାରା ହୁତ ହୁଅନ୍ତି ବୋଲି ହବି, ସ୍ମରଣମାତ୍ରରେ ପୁରୁଷମାନଙ୍କର ପାପ ହରଣ କରନ୍ତି ବୋଲି ସେ ହରି, ସେ ସର୍ବପ୍ରମାଣ-ଦ୍ୱାରା ସର୍ବଶାସ୍ତ୍ର ତାତ୍ପର୍ଯ୍ୟର ବିଷୟ, ଅତଏବ ସର୍ବଲକ୍ଷଣ ଲକ୍ଷଣ୍ୟ, ତାହାଙ୍କ ବକ୍ଷରେ ଲକ୍ଷ୍ମୀ ନିତ୍ୟ ବାସ କରନ୍ତି ବୋଲି ସେ ଲକ୍ଷ୍ମୀବାନ୍, ସମର ବିଜୟୀ ବୋଲି ସେ ସମିତିଞ୍ଜୟ । ୫୨ ।

ତାହାଙ୍କର ନାଶ ନାହିଁ ଅତଏବ ସେ ବିକ୍ଷର, ମତ୍ସ୍ୟରୂପ ଧାରଣ କରିଥିବା ହେତୁରୁ ସେ ରୋହିତ, ଭକ୍ତଜନଗଣଙ୍କର ଅନ୍ୱେଷଣୀୟ ବୋଲି ସେ ମାର୍ଗ, ଅଥବା ପରମାନନ୍ଦ ପ୍ରାପଣ କରନ୍ତି ବୋଲି ସେ ମାର୍ଗ, ସେ ନିମିତ୍ତ, ଉପାଦାନ ଉଭୟ କାରଣ ଅତଏବ ହେତୁ, ରଜ୍ଜୁଦ୍ୱାରା ବଦ୍ଧ ହେବାରୁ ସେ ଉଦରରେ ଚିହ୍ନ ଧାରଣ କରିଅଛନ୍ତି ଅତଏବ ଦାମୋଦର, ଅଥବା ଦମାଦି ସାଧନଦ୍ୱାରା ଉତ୍କୃଷ୍ଟ ମତିଗମ୍ୟ ବୋଲି ଦାମୋଦର । ସମସ୍ତଙ୍କୁ ଅଭିଭବ ଅଥବା କ୍ଷମା କରନ୍ତି ବୋଲି ସେ ସହ, ସେ ଗିରିରୂପରେ

ମହୀକୁ ଧାରଣ କରନ୍ତି ବୋଲି ମହୀଧର ଅଟନ୍ତି । ସେ ଅବତାରମାନଙ୍କରେ ପରମ ଭାଗ୍ୟବାନ୍, ଅତଏବ ମହାଭାଗ, ମନଠାରୁ ଜବାଯ୍ବାନ୍ ବୋଲି ସେ ବେଗବାନ୍, ସେ ପ୍ରଳୟ କାଳରେ ସର୍ବସଂହାରକର୍ତ୍ତା ଅତଏବ ଅମିତାଶନ । ୫୩ ।

ସେ ପ୍ରପଞ୍ଚ ଉତ୍ପତ୍ତିରେ ଉପାଦାନ କାରଣ ଅଥବା ଭବ ସଂସାରରୁ ଉଦ୍‌ଗତ ଏହି ନିମିତ୍ତ ସେ ଉଦ୍ଭବ, ସର୍ଗକାଳରେ ପ୍ରକୃତି ପୁରୁଷଙ୍କୁ ପ୍ରବେଶ କରି କ୍ଷୋଭ କରାନ୍ତି ବୋଲି ସେ କ୍ଷୋଭଣ, ସେ କ୍ରୀଡ଼ା କରନ୍ତି ଅଥବା ସ୍ତୋତ୍ରମାନେ ମଧ୍ୟ ତାହାଙ୍କୁ ସ୍ତୁତି କରନ୍ତି ଏହି ନିମିତ୍ତ ସେ ଦେବ, ଜଗତରୂପା ବିଭୂତି ତାହାଙ୍କ ଉଦର ମଧ୍ୟରେ ବିଦ୍ୟମାନ୍ ଏହି କାରଣରୁ ସେ ଶ୍ରୀଗର୍ଭ, ପରମ ଈଶନଶୀଳ ହେତୁରୁ ସେ ପରମେଶ୍ୱର, ସେ ଜଗତର ଉତ୍ପତ୍ତି ବିଷୟରେ ସାଧକତମ ଅତଏବ କରଣ, ଉପାଦାନ ଓ ନିମିତ୍ତ କାରଣ ହେତୁରୁ ସେ କାରଣ, ସ୍ୱତନ୍ତ୍ର ହେତୁରୁ ସେ କର୍ତ୍ତା, ବିଚିତ୍ର ଭୁବନକୁ କରିବା ହେତୁରୁ ସେ ବିକର୍ତ୍ତା, ତାହାଙ୍କର ସ୍ୱରୂପ, ସାମର୍ଥ୍ୟ ଓ ଚେଷ୍ଟିତ ଦୁର୍ଜ୍ଞେୟ, ଅତଏବ ସେ ଗହନ, ମାୟାଦ୍ୱାରା ସ୍ୱରୂପାଦି ସମ୍ବରଣ କରନ୍ତି ବୋଲି ସେ ଗୁହ ।୫୪ ।

ସେ ସମ୍ବିତ୍ ରୂପରେ ବ୍ୟବସାୟ, ତାହାଙ୍କଠାରେ ଜଗତ୍ ଅବସ୍ଥିତ କରିଅଛି ବୋଲି ଅଥବା ଲୋକପାଳାଦି ଅଧିକାର ଜରାୟୁଜାଦି ପ୍ରାଣୀ ଭେଦ, ବ୍ରାହ୍ମଣାଦି ଅବାନ୍ତର ବର୍ଣ୍ଣ ଓ ବ୍ରହ୍ମଚର୍ଯ୍ୟ ଗୃହସ୍ଥାଦି ଆଶ୍ରମ ଧର୍ମ-ମାନଙ୍କୁ ବିଭାଗ କରିବା ହେତୁରୁ ସେ ବ୍ୟବସ୍ଥାନ, ତାହାଙ୍କଠାରେ ସମସ୍ତ ଭୂତଗଣଙ୍କର ସଂସ୍ଥିତି, ଅତଏବ ସେ ସଂସ୍ଥାନ, ଭକ୍ତଗଣଙ୍କୁ କର୍ମଫଳାନୁରୂପ ବୈକୁଣ୍ଠ ପ୍ରଭୃତି ସ୍ଥାନ ଦାନ, କରନ୍ତି ଅତଏବ ସେ ସ୍ଥାନଦ, ସେ ଅବିନାଶୀ ବୋଲି ଧ୍ରୁବ, ସେ ପରମ ଐଶ୍ୱର୍ଯ୍ୟଶାଳୀ ଅତଏବ ପରମର୍ଦ୍ଧି, ସେ ସ୍ୱପ୍ରକାଶ ଜ୍ଞାନ ରୂପରେ ପରମସ୍ପଷ୍ଟ, ପରମାନନ୍ଦ ରୂପରେ ତୁଷ୍ଟ, ସର୍ବସମ୍ପୂର୍ଣ୍ଣତା ହେତୁରୁ ପୁଷ୍ଟ, ତାହାଙ୍କ ଦର୍ଶନ ମୁମୁକ୍ଷୁମାନଙ୍କର ମୋକ୍ଷଦ, ଭୋଗାର୍ଥି-ମାନଙ୍କର ଭୋଗଦ, ହୃଦୟ ଗ୍ରନ୍ଥି ଛେଦକର ଓ ଅବିଦ୍ୟା ନିବର୍ତ୍ତକ ସେହି କାରଣରୁ ସେ ଶୁଭେକ୍ଷଣ । ୫୫ ।

ସେ ନିତ୍ୟାନନ୍ଦ ସ୍ୱରୂପ, ତାହାଙ୍କଠାରେ ଯୋଗିଗଣ ରମଣ କରନ୍ତି ଅତଏବ ସେ ରାମ, ତାହାଙ୍କଠାରେ ବିଶ୍ୱବାସିଗଣଙ୍କର ଅବସାନ ହୁଏ ବୋଲି ସେ ବିରାମ, ସେ ବିଷୟ ସେବାରେ ମଧ୍ୟ ରଜୋହୀନ ଅଟନ୍ତି ଅତଏବ ସେ ବିରଜ, ଯାହାଙ୍କୁ ଜାଣି ମୁମୁକ୍ଷୁଗଣ ଅମୃତତ୍ୱ ଲାଭ କରନ୍ତି

ସେ ମାର୍ଗ, ସମ୍ୟକ୍ ଜ୍ଞାନଦ୍ୱାରା ଜୀବ ପରମାତ୍ମା ରୂପରେ ଜାତ ହୁଏ ଅତଏବ ସେ ନେୟ, ସେ ସମସ୍ତଙ୍କର ନେତା, ତାହାଙ୍କର ନେତା ନାହିଁ, ଅତଏବ ସେ ଅନୟ । ସେ ଯୁଦ୍ଧ, ଦାନ, ସତ୍ୟ ଓ ଦୟା ବିଷୟରେ ବୀର ସ୍ୱରୂପ ବୋଲି ବୀର, ଶକ୍ତିମାନ୍ ବିରଞ୍ଚାଦିମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅତଏବ ସେ ଶକ୍ତିମତାଂ ଶ୍ରେଷ୍ଠ, ସେ ସର୍ବଭୂତମାନଙ୍କୁ ଧାରଣ କରିବା ହେତୁରୁ ଧର୍ମ, ଧର୍ମଜ୍ଞଗଣଙ୍କ ମଧ୍ୟରେ ଉତ୍କୃଷ୍ଟ ଏହି ନିମିତ୍ତ ଧର୍ମବିଦୁତ୍ତମ । ୫୬ । ବିକୁଣ୍ଠା-ଗତି ପ୍ରତିହତ ତାହାର କର୍ତ୍ତା ବୋଲି ଅର୍ଥାତ୍ ଜଗଦାରମ୍ଭରେ ବିଶ୍ଳିଷ୍ଟ ଭୂତମାନଙ୍କୁ ପରସ୍ପର ସଂଶ୍ଳିଷ୍ଟ କରି ସେମାନଙ୍କର ଗତି ପ୍ରତିବନ୍ଧ କରିବା ହେତୁରୁ ସେ ବୈକୁଣ୍ଠ ।

ସର୍ବପାପର ସାଦନ କରନ୍ତି ବୋଲି ସେ ପୁରୁଷ, ପ୍ରାଣ ସ୍ୱରୂପରେ ଚେଷ୍ଟା କରନ୍ତି ଏହି ନିମିତ୍ତ ସେ ପ୍ରାଣ, ପ୍ରଳୟାଦିରେ ପ୍ରାଣିମାନଙ୍କର ପ୍ରାଣ-ମାନଙ୍କୁ ଖଣ୍ଡନ କରନ୍ତି ବୋଲି ପ୍ରାଣଦ, ସେ ପ୍ରକୃଷ୍ଟ ରୂପେ ସ୍ତବନୀୟ ଅତଏବ ପ୍ରଣବ, ପ୍ରପଞ୍ଚ ରୂପରେ ବିସ୍ତୃତ ହେତୁରୁ ପୃଥୁ, ଯଦ୍‌ବୀର୍ଯ୍ୟସମ୍ଭୂତ ହିରଣ୍ମୟ ଅଣ୍ଡ ତାହାଙ୍କ ଗର୍ଭରେ ଅଛି ଅତଏବ ସେ ହିରଣ୍ୟଗର୍ଭ, ସେ ଶତ୍ରୁକୁଳ ସଂହାର କରିବାରୁ ଶତ୍ରୁଘ୍ନ, ସେ କାରଣ ରୂପରେ ସମସ୍ତ କାର୍ଯ୍ୟକୁ ବ୍ୟାପି ରହିଅଛନ୍ତି ଅତଏବ ବ୍ୟାପ୍ତ, ସେ ପୁଣ୍ୟଗନ୍ଧ କରନ୍ତି ଏହି ନିମିତ୍ତ ବାୟୁ, ଅକ୍ଷଗଣ ପ୍ରତ୍ୟକ୍ ରୂପ ପ୍ରବାହିତ ହେଲେ ତାହାଙ୍କ ଜ୍ଞାନ ହୁଏ, ଅତଏବ ସେ ଅଧୋକ୍ଷଜ । ୫୭ ।

ସେ କାଳ ରୂପରେ ଋତୁ ଶବ୍ଦଦ୍ୱାରା ଲକ୍ଷିତ ହୁଅନ୍ତି ଅତଏବ ଋତୁ, ତାହାଙ୍କର ଜ୍ଞାନ ନିର୍ବାଣ ଫଳ ଅତଏବ ସେ ସୁଦର୍ଶନ, ସମସ୍ତଙ୍କୁ କଳନା କରିବା ହେତୁରୁ ସେ କାଳ, ସେ ସର୍ବାପେକ୍ଷା ଉତ୍କୃଷ୍ଟ ସ୍ଥାନରେ ଅର୍ଥାତ୍ ହୃଦୟାକାଶରେ ଅବସ୍ଥିତ କରନ୍ତି ଅତଏବ ପରମେଷ୍ଠୀ, ଶରଣାର୍ଥୀଗଣ ସର୍ବତୋଭାବରେ ତାହାଙ୍କୁ ଗ୍ରହଣ କରନ୍ତି ବୋଲି ସେ ପରିଗ୍ରହ, ସେ ସୂର୍ଯ୍ୟାଦିମାନଙ୍କର ମଧ୍ୟ ଭୟ ହେତୁ ଅଟନ୍ତି ଅତଏବ ଉଗ୍ର, ତାହାଙ୍କ ଠାରେ ସର୍ବଭୂତଗଣ ବାସ କରନ୍ତି ଅତଏବ ସେ ସମ୍ବତ୍ସର, ସମସ୍ତ କାର୍ଯ୍ୟମାନ ଶୀଘ୍ର କରନ୍ତି ବୋଲି ଦକ୍ଷ, ଅବିଦ୍ୟାଦି ମହାକ୍ଲେଶ ଓ ମଦାଦି ଉପକ୍ଲେଶ ଦ୍ୱାରା ବଶୀକୃତ ଓ ବିଶ୍ରାନ୍ତିକାଂକ୍ଷମାଣ ପ୍ରାଣିମାନଙ୍କର ମୋକ୍ଷ କରନ୍ତି ଅତଏବ ବିଶ୍ରାମ, ସମସ୍ତଙ୍କଠାରୁ ଶକ୍ତିଶୀଳ ବୋଲି ବିଶ୍ୱ-ଦକ୍ଷିଣ । ୫୮ ।

ତାହାଙ୍କଠାରେ ବିଶ୍ୱମଣ୍ଡଳ ବିସ୍ତୀର୍ଣ୍ଣ ହୋଇ ରହିଅଛି ଅତଏବ ସେ ବିସ୍ତାର, ସେ ସର୍ବଦା ସ୍ଥିତିଶୀଳ ଅତଏବ ସ୍ଥାବର, ତାହାଙ୍କଠାରେ ସ୍ଥିତିଶୀଳ ପୃଥିବୀ ପ୍ରଭୃତି ଅବସ୍ଥାନ କରିଥିବାରୁ ସେ ସ୍ଥାଣୁ, ସେ ପ୍ରତ୍ୟକ୍ଷାଦି ପ୍ରମାଣ ସ୍ୱରୂପ ଅତଏବ ପ୍ରମାଣ, ଅନ୍ୟଥା ସେ ଭାବ ବ୍ୟତିରେକରେ କାରଣ ଅତଏବ ଅବ୍ୟୟ ବୀଜ, ସେ ସୁଖ ରୂପ ହେତୁରୁ ସର୍ବଦା ପ୍ରାର୍ଥନୀୟ ଅତଏବ ଅର୍ଥ, ଆପ୍ତକାମ ହେତୁରୁ ତାହାଙ୍କର କୌଣସି ପ୍ରୟୋଜନ ନାହିଁ ଅତଏବ ଅନର୍ଥ, ତାହାଙ୍କର ମହାନ୍ ଅନ୍ନମୟାଦି କୋଶଚ୍ଛାଦନ ଅତଏବ ସେ ମହାକୋଶ, ତାହାଙ୍କର ମହାନ୍ ସୁଖ ରୂପ ଭୋଗ ଅତଏବ ସେ ମହାଭୋଗ, ତାହାଙ୍କର ଭୋଗ ସାଧନ ଲକ୍ଷଣ ମହଦ୍ଧନ, ଅତଏବ ସେ ମହାଧନ । ୫୯ ।

ଅବାପ୍ତ ସର୍ବକାମ ହେତୁରୁ ଯାହାଙ୍କର ନିର୍ବେଦ ନାହିଁ ସେ ଅନିର୍ବିଣ୍ଣ, ସେ ବୈରାଜରୂପରେ ସ୍ଥିତ ଅତଏବ ସ୍ଥବିଷ୍ଠ, ସେ ଅଜନ୍ମା ହେତୁରୁ ଅଭୂ, ଯୂପରେ ପଶୁସଦୃଶ ସମାରାଧାନାତ୍ମକ ଧର୍ମମାନେ ତାହାଙ୍କ-ଠାରେ ବଦ୍ଧ ଅତଏବ ସେ ଧର୍ମଯୂପ, ଯାହାଙ୍କଠାରେ ସମସ୍ତ ଯଜ୍ଞ ଅର୍ପିତ ହୁଅନ୍ତି ସେ ମହାମଖ, ନେମିସଦୃଶ ବର୍ତ୍ତମାନ ଶିଶୁମାର ଜ୍ୟୋତିଷ୍ଟକ୍ରର ହୃଦୟ ସ୍ୱରୂପ ବୋଲି ସେ ନକ୍ଷତ୍ରନେମି । ଚନ୍ଦ୍ରରୂପରେ ସେ ନକ୍ଷତ୍ରୀ, ଅଳ୍ପ ମାତ୍ର ଅର୍ଚ୍ଚନା କଲେ ସେ ଅପରାଧ କ୍ଷମା କରନ୍ତି ଏହି କାରଣରୁ ସେ କ୍ଷମ, ସର୍ବବିକାର କ୍ଷୟପ୍ରାପ୍ତ ହେଲେ ସୁଦ୍ଧା ସେ ସ୍ୱସ୍ୱରୂପରେ ଅବସ୍ଥିତ ଅତଏବ କ୍ଷାମ, ସେ ସୃଷ୍ଟ୍ୟାଦି ଅର୍ଥ ସମ୍ୟକ୍‌ରୂପରେ ଚେଷ୍ଟା କରନ୍ତି ଏହି ହେତୁରୁ ସେ ସମୀହନ । ୬୦ ।

ସେ ସମସ୍ତ ଯଜ୍ଞରୂପ ବୋଲି ଯଜ୍ଞ, ଯଜ୍ଞଫଳଦାତା ହେତୁରୁ ସେ ଯଷ୍ଟବ୍ୟ ମଧ୍ୟ ଅଟନ୍ତି, ଅତଏବ ଇଜ୍ୟ; ମୋକ୍ଷଫଳଦାତା ହେତୁ ସମସ୍ତ ଯଷ୍ଟବ୍ୟ ଦେବତା ମଧ୍ୟରେ ପ୍ରକର୍ଷରେ ସେ ଯଷ୍ଟବ୍ୟ ଅତଏବ ସେ ମହେଜ୍ୟ, ସେ ଯୂପ ସହିତ ଯଜ୍ଞସ୍ୱରୂପ ଅତଏବ କ୍ରତୁ, ସେ ସଜ୍ଜନମାନଙ୍କୁ ରକ୍ଷା କରନ୍ତି ଅଥବା ସତ୍ର-ଯାଗସ୍ୱର ଅଟନ୍ତି ବୋଲି ସତ୍ର, ସେ ସାଧୁଗଣଙ୍କର ଅନନ୍ୟଗତି ଏହି ନିମିତ୍ତ ସତାଂଗତି, ସ୍ୱାଭାବିକ ବୋଧଦ୍ୱାରା ସମସ୍ତଙ୍କର କୃତାକୃତକୁ ଦେଖନ୍ତି ବୋଲି ସର୍ବଦର୍ଶୀ, ସ୍ୱଭାବଦ୍ୱାରା ଯାହାଙ୍କର ଆତ୍ମା ବିମୁକ୍ତ ସେ ବିମୁକ୍ତାତ୍ମା, ସେ ସର୍ବଜ୍ଞ, ଯାହାଙ୍କର ଜ୍ଞାନ ଅଜନ୍ୟ ଅନବଚ୍ଛିନ୍ନ, ଅଥବା ସର୍ବପଦାର୍ଥର ସାଧକତମ ଅତଏବ ସେ ଉତ୍ତମଜ୍ଞାନ । ୬୧ ।

ସେ ସୁବ୍ରତ, ସର୍ବବିଦ୍ୟାର ଉପଦେଶ କରନ୍ତି ବୋଲି ସେ ସୁମୁଖ, ଶବ୍ଦାଦି ସ୍ଥୂଳକାରଣରହିତ ହେତୁରୁ ସେ ସୂକ୍ଷ୍ମ, ତାହାଙ୍କର ବେଦାତ୍ମକ ଶୋଭନଘୋଷ ଥିବାରୁ ସେ ସୁଘୋଷ, ସଦ୍‌ବୃତ୍ତମାନଙ୍କର ସୁଖକୁ ଦିଅନ୍ତି ଅଥବା ଦୁର୍ବୃତ୍ତଗଣଙ୍କ ଦୁଃଖକୁ ଖଣ୍ଡନ କରନ୍ତି ବୋଲି ସେ ସୁଖଦ, ପ୍ରତ୍ୟୁପକାରକୁ ଅପେକ୍ଷା ନ କରି ଉପକାରୀ ହୁଅନ୍ତି ବୋଲି ସେ ସୁହୃତ୍ । ନିତ୍ୟତିଶୟ ଆନନ୍ଦ ହେତୁରୁ ସେ ମନୋହର । ବେଦମର୍ଯ୍ୟାଦା ସ୍ଥାପନ ନିମିତ୍ତ ତ୍ରିଦଶ ଶତ୍ରୁମାନଙ୍କ ନାଶଦ୍ୱାରା ବେଦ ମର୍ଯ୍ୟାଦା ସ୍ଥାପନ କରିବାରୁ ସେ ଜିତକ୍ରୋଧ, ତାହାଙ୍କର ବୀରଶାଳୀ ବାହୁ ଅଛି ଅତଏବ ସେ ବୀରବାହୁ, ଅଧାର୍ମିକମାନଙ୍କୁ ବିଦାରଣ କରନ୍ତି ବୋଲି ସେ ବିଦାରଣ । ୭୨ ।

ମାୟାଦ୍ୱାରା ପ୍ରାଣିଗଣଙ୍କର ଆତ୍ମବୋଧ ଦୂର କରନ୍ତି ବୋଲି ସେ ସ୍ୱାପନ, ସ୍ୱତନ୍ତ୍ରତା ହେତୁରୁ ସ୍ୱବଶ, ଆକାଶବତ୍ ସର୍ବଗ ହେତୁରୁ ବ୍ୟାପୀ, ନିମିତ୍ତ ବିଭୂତିଦ୍ୱାରା ଅନେକଧା ସ୍ଥିତ ହୁଅନ୍ତି ଅତଏବ ନୈକାତ୍ମା, ସେ ଜଗଦୁତ୍ପତ୍ତ୍ୟାଦି ବିବିଧ କର୍ମ କରନ୍ତି ଅତଏବ ନୈକକର୍ମକୃତ୍ । ସମସ୍ତ ପଦାର୍ଥ ଯାହାଙ୍କଠାରେ ବାସ କରନ୍ତି ଅଥବା ଯେ ବତ୍ସଦାନ କରନ୍ତି ସେ ବତ୍ସର । ଭକ୍ତଗଣଙ୍କଠାରେ ସ୍ନେହବାନ୍ ଅତଏବ ବତ୍ସଳ । ଜଗତ୍ପିତା ହେତୁରୁ ସମସ୍ତ ପ୍ରଜାଗଣ ତାହାଙ୍କର ବତ୍ସ, ଏହି କାରଣରୁ ଅଥବା ବତ୍ସମାନଙ୍କୁ ପାଳନ କରନ୍ତି ବୋଲି ସେ ବତ୍ସୀ, ସମୁଦ୍ରରୂପରେ ସେ ରତ୍ନଗର୍ଭ, ଧନମାନଙ୍କର ସ୍ୱାମୀ ହେତୁରୁ ସେ ଧନେଶ୍ୱର । ୭୩ ।

ଧର୍ମରକ୍ଷା କରନ୍ତି ବୋଲି ଧର୍ମଗୁପ୍, ଧର୍ମର କେବଳ କର୍ତ୍ତା ବୋଲି ସେ ଧର୍ମକୃତ୍ । ଧର୍ମ ଧାରଣ କରନ୍ତି ବୋଲି ସେ ଧର୍ମୀ, ସୂକ୍ଷ୍ମ ରୂପରେ ଅର୍ଥାତ୍ ପରବ୍ରହ୍ମ ରୂପରେ ସତ୍, ସ୍ଥୂଳ ରୂପରେ ଅର୍ଥାତ୍ ପ୍ରପଞ୍ଚ ରୂପରେ ଅସତ୍, ଭୂତ ରୂପରେ କ୍ଷର, ଅବିନାଶୀ ଭାବରେ ଅର୍ଥାତ୍ କୂଟସ୍ଥ ରୂପରେ ଅକ୍ଷର, ଜୀବ ରୂପରେ ଅବିଜ୍ଞାତା, ତାହାଙ୍କ କିରଣ ଆଦିତ୍ୟାଦିଗତ ଅତଏବ ସେ ସହସ୍ରାଂଶୁ, ବିଶେଷ ରୂପରେ ଶେଷ ଦିଗ୍‌ଗଜ ଭୂଧର ଅଥବା ସର୍ବଭୂତ ଧାରଣ କରନ୍ତି ବୋଲି ସେ ବିଧାତା । ସେ ସମସ୍ତ ଶାସ୍ତ୍ରଗଣଙ୍କୁ କରିଅଛନ୍ତି ଅତଏବ ସେ କୃତଲକ୍ଷଣ ।୭୪।

ଗଭସ୍ତି ଚକ୍ର ମଧ୍ୟରେ ସୂର୍ଯ୍ୟ ରୂପରେ ସ୍ଥିତ ଅତଏବ ସେ ଗଭସ୍ତିନେମି, ସର୍ବପ୍ରାଣିଗଣଙ୍କଠାରେ ସ୍ଥିତ ହେବା ହେତୁରୁ ସେ ସତ୍ତ୍ୱସ୍ଥ;

ସିଂହ ସଦୃଶ ଅତ୍ୟନ୍ତ ବିକ୍ରମଶାଳୀ ଅତଏବ ସିଂହ, ଭୂତଗଣଙ୍କର ମହାନ ବର ଈଶ୍ୱର ଅତଏବ ଭୂତ ମହେଶ୍ୱର, ସର୍ବଭୂତର ଆଦାନକର୍ତ୍ତା ଦେବ ବୋଲି ଆଦିଦେବ, ସମସ୍ତ ଭାବ ପରିତ୍ୟାଗ ପୂର୍ବକ ଆତ୍ମଜ୍ଞାନ ଯୋଗୈଶ୍ୱର୍ଯ୍ୟରେ ପୂଜିତ ଅତଏବ ମହାଦେବ, ଦେବେଶ ଇନ୍ଦ୍ରଙ୍କର ଶାସ୍ତା ହେତୁରୁ ସେ ଦେବଭୃଦ୍‌ଗୁରୁ । ୭୫ । ସେ ଜନ୍ମ ସଂସାରସାଗରରୁ ଉଦ୍ଧାରଣ କରନ୍ତି ଏଣୁ ନିମିତ୍ତ ଉତ୍ତର, ପୃଥିବୀପତି ହେତୁରୁ ଗୋପତି, ସେ ରକ୍ଷାକର୍ତ୍ତା ବୋଲି ଗୋପ୍ତା, ଜ୍ଞାନ ଓ କର୍ମଉଭୟଦ୍ୱାରା ଗମ୍ୟ ନୁହନ୍ତି କେବଳ ଜ୍ଞାନଦ୍ୱାରା ଗମ୍ୟ ହୁଅନ୍ତି ଅତଏବ ଜ୍ଞାନଗମ୍ୟ, ପୂର୍ବସିଦ୍ଧ ହେତୁରୁ ପୁରାତନ; ଶରୀରାତ୍ମକ ଭୂତଗଣଙ୍କୁ ଧାରଣ କରନ୍ତି ଅତଏବ ଶରୀରଭୂ ଓ ଭୂତ ପାଳନକର୍ତ୍ତା ହେତୁରୁ ଭୋକ୍ତା । ରାଘବ ରୂପରେ ବାନରମାନଙ୍କର ଇନ୍ଦ୍ର ହେତୁରୁ କପୀନ୍ଦ୍ର । ସେ ଅନେକଙ୍କ ନିକଟରେ ସରଳ ଅତଏବ ଭୂରିଦକ୍ଷିଣ । ୭୬ ।

ସର୍ବଯଜ୍ଞରେ ସୋମପାନ କରନ୍ତି ବୋଲି ସୋମପ, ଆତ୍ମାମୃତ ପାନ କରନ୍ତି ବୋଲି ଅମୃତପ, ଚନ୍ଦ୍ରଙ୍କ ସଦୃଶ ଆହ୍ଲାଦଜନକ ଅତଏବ ସୋମ, ବହୁ ବ୍ୟକ୍ତିଙ୍କୁ ଜୟ କରନ୍ତି ସୁତରାଂ ପୁରୁଜିତ୍ । ବିଶ୍ୱରୂପ ଓ ଉତ୍କୃଷ୍ଟ ହେତୁରୁ ପୁରୁଷୋତ୍ତମ । ଦୁଷ୍ଟମାନଙ୍କର ଦଣ୍ଡଧାରୀ ବୋଲି ବିନୟ, କ୍ରୋଧାଦିଙ୍କୁ ଜୟ କରିଥିଲେ ବୋଲି ଜୟ, ସତ୍ୟ ପ୍ରତିଜ୍ଞ ବୋଲି ସତ୍ୟସନ୍ଧ, ଦାନପାତ୍ର ଅଥବା ଦାଶାର୍ହ ବଂଶୋଦ୍ଭବ ଅତଏବ ଦାଶାର୍ହ, ସାତ୍ତ୍ୱତ ଅର୍ଥାତ୍ ଯାଦବଗଣଙ୍କ ପତି ଅତଏବ ସାତ୍ତ୍ୱତାଂ ପତି । ୭୭ । କ୍ଷେତ୍ରଜ୍ଞ ରୂପରେ ପ୍ରାଣ ଧାରଣ କରନ୍ତି ବୋଲି ଜୀବ, ବିନୟୀ ଜନଙ୍କ ବିନୟିତାର ସାକ୍ଷୀ ଅତଏବ ବିନୟିତାସାକ୍ଷୀ, ମୁକ୍ତିଦାତା ବୋଲି ମୁକୁନ୍ଦ; ଯାହାଙ୍କର ଅପରିଚ୍ଛିନ୍ନ ପାଦ ବିକ୍ରମ ସେ ଅମିତବିକ୍ରମ । ଦେବାଦିମାନେ ଯାହାଙ୍କଠାରେ ନିବୃତ ହୁଅନ୍ତି ସେ ଅମ୍ଭୋନିଧି, ଦେଶକାଳ ବସ୍ତୁଦ୍ୱାରା ଅପରିଚ୍ଛିନ୍ନ ବୋଲି ସେ ଅନନ୍ତାତ୍ମା, ସର୍ବଭୂତସଂହାର କରି ମହୋଦଧିରେ ଶୟନ କରନ୍ତି ବୋଲି ମହୋଦଧିଶୟ, ଭୂତଗଣଙ୍କର ବିନାଶକାରକ ବୋଲି ଅନ୍ତକ । ୭୮ ।

ସେ କାମ ସ୍ୱରୂପୀ ଅତଏବ ଅଜ, ମହାନ୍ ପୂଜ୍ୟ ବୋଲି ମହାର୍ହ, ନିତ୍ୟ ନିଷ୍ପନ୍ନ ହେତୁରୁ ସ୍ୱଭାବ ଭବ୍ୟ, ଅତଏବ ସ୍ୱଭାବ୍ୟ, ଅନ୍ତଃଶତ୍ରୁ ରାଗାଦି ଓ ବହିଃଶତ୍ରୁ ରାବଣାଦିଙ୍କୁ ଜୟ କରିଅଛନ୍ତି ତେଣୁ ଜିତାମିତ୍ର, ଧ୍ୟାୟୀମାନଙ୍କର ଧ୍ୟାନ ମାତ୍ରରେ ପ୍ରମୋଦ ଦାତା ବୋଲି ପ୍ରମୋଦନ, ଆନନ୍ଦ ସ୍ୱରୂପୀ ବୋଲି ଆନନ୍ଦ, ଆନନ୍ଦଦାତା ବୋଲି ନନ୍ଦନ, ବୈଷୟିକ ସୁଖାଭାବ

ହେତୁରୁ ସେ ଆନନ୍ଦ । ତାହାଙ୍କର ଧର୍ମଜ୍ଞାନାଦି ସତ୍ୟ ବୋଲି ସେ ସତ୍ୟ-ଧର୍ମା । ତ୍ରିଲୋକ ମଧ୍ୟରେ ଗରୁଡ଼ଦ୍ୱାରା ଗମନ କରନ୍ତି ବୋଲି ତ୍ରିବିକ୍ରମ ।୬୯। କୃଷ୍ଣବେଦର ଦ୍ରଷ୍ଟା ଓ ସାଂଖ୍ୟ ତତ୍ତ୍ୱର ପ୍ରକାଶକ ଅତଏବ ମହର୍ଷି, କପିଳାଚାର୍ଯ୍ୟ କୃତ କର୍ମସମୂହ ଜାଣନ୍ତି ଅତଏବ ମହର୍ଷି କପିଳାଚାର୍ଯ୍ୟ-କୃତଜ୍ଞ, ଭୂପତି ହେତୁରୁ ମେଦିନୀପତି, ପାଦତ୍ରୟ ବିଶିଷ୍ଟ ହେତୁରୁ ତ୍ରିପଦ, ଅବସ୍ଥାତ୍ରୟର ଅଧ୍ୟକ୍ଷ ହେତୁରୁ ତ୍ରିଦଶାଧ୍ୟକ୍ଷ, ମତ୍ସ୍ୟରୂପୀ ହୋଇ ମହାମ୍ଭୋଧି-ରେ ମହାଶୃଙ୍ଗରେ ନୌକା ବନ୍ଧନ କରି କ୍ରୀଡ଼ା କରୁଥିବା ହେତୁରୁ ମହା-ଶୃଙ୍ଗ, ମୃତ୍ୟୁ ଖଣ୍ଡନ କରନ୍ତି ଅତଏବ କୃତାନ୍ତକୃତ୍ । ୭୦ ।

ସେ ଲୋକୋତ୍ତର ବରାହ ଏହି କାରଣରୁ ମହାବରାହ । ବେଦାନ୍ତ ବାକ୍ୟଦ୍ୱାରା ବେଦ୍ୟ ବୋଲି ଗୋବିନ୍ଦ, ସେନା ସହିତ ଶତ୍ରୁ ସମରକୁ ସୁନ୍ଦର ରୂପେ ଗମନ କରନ୍ତି ଅତଏବ ସେ ସୁଷେଣ । ସେ ସ୍ୱର୍ଣ୍ଣମୟ କେୟୂରଧାରୀ ଅତଏବ କନକାଙ୍ଗଦୀ, ପରମ ରହସ୍ୟ ରୂପେ ସେ ଗୁହ୍ୟ ଅଟନ୍ତି, ଜ୍ଞାନ ଐଶ୍ୱର୍ଯ୍ୟ ଓ ବଳାଦିଦ୍ୱାରା ଗମ୍ଭୀର ଅଟନ୍ତି ସେହି କାରଣରୁ ଗମ୍ଭୀର । ସେ ଦୁଷ୍ପ୍ରବେଶ ଏହି ନିମିତ୍ତ ଗହନ, ଇନ୍ଦ୍ରିୟ ବୃନ୍ଦର ଅଗ୍ରାହ୍ୟ ବୋଲି ଗୁପ୍ତ, ଲୋକରକ୍ଷା ନିମିତ୍ତ ମନସ୍ତତ୍ତ୍ୱ ରୂପ ଚକ୍ର ଓ ବୁଦ୍ଧିତତ୍ତ୍ୱ ରୂପ ଗଦାଧାରଣ କରିବା ହେତୁରୁ ଚକ୍ରଗଦାଧର । ୭୮ । ବିବିଧ ରୂପରେ ସର୍ଜନା କରିବା ହେତୁରୁ ବେଧା, କାର୍ଯ୍ୟ କାରଣରେ ନିଜେ ସହକାରୀ ଏହି ନିମିତ୍ତ ସେ ସ୍ୱାଙ୍ଗ, ତାହାଙ୍କୁ ଶତ୍ରୁଗଣ ଜୟ କରି ପାରନ୍ତି ନାହିଁ ଏହି ନିମିତ୍ତ ସେ ଅଜିତ, ସେ କୃଷ୍ଣଦ୍ୱୈପାୟନ ରୂପୀ ବୋଲି କୃଷ୍ଣ, ସେ ସ୍ୱୟଂ ସମର୍ଥ ଅତଏବ ଦୃଢ଼ ।

ସଂହାର କାଳରେ ଯୁଗପତ୍ ପ୍ରଜାମାନଙ୍କୁ ସଂହାର କରନ୍ତି ବୋଲି ସେ ସଙ୍କର୍ଷଣ, ସ୍ୱପଦରୁ ଚ୍ୟୁତ ହୁଅନ୍ତି ବୋଲି ଅଚ୍ୟୁତ, ସଙ୍କର୍ଷଣ ଅଚ୍ୟୁତ ଏକନାମ, ଆପଣାକୁ ବରଣ କରନ୍ତି ଅତଏବ ବରୁଣ, ବରୁଣଙ୍କ ଅପତ୍ୟ ହେତୁରୁ ବାରୁଣ, ବୃକ୍ଷସଦୃଶ ଅଚଳ ରୂପରେ ସ୍ଥିତ ଅଥବା ଭକ୍ତଗଣଙ୍କର କଳ୍ପତରୁ ଅତଏବ ବୃକ୍ଷ, ହୃଦୟ ପୁଣ୍ଡରୀକରେ ଶାନ୍ତ ରୂପରେ ପ୍ରକାଶମାନ ହେତୁରୁ ପୁଷ୍କରାକ୍ଷ, ସୃଷ୍ଟି, ସ୍ଥିତି ଓ ନାଶରୂପେ କର୍ମମାନ କେବଳ ମନଦ୍ୱାରା କରନ୍ତି ବୋଲି ମହାମନା । ୭୬ । ସମଗ୍ର ଐଶ୍ୱର୍ଯ୍ୟ, ଧର୍ମ, ଯଶ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟ ବିଶିଷ୍ଟ ହେତୁରୁ ଭଗବାନ୍ । ପ୍ରଳୟ କାଳରେ ଐଶ୍ୱର୍ଯ୍ୟ ନଷ୍ଟ କରନ୍ତି ବୋଲି ଭଗହା ।

ସେ ନିତ୍ୟସୁଖୀ ଅତଏବ ଆନନ୍ଦୀ, ଭୂତତନ୍ମାତ୍ରଦ୍ୱାରା ନିର୍ମିତ ବୈଜୟନ୍ତୀମାଳା ଧାରଣ କରିବା ହେତୁରୁ ବନମାଳୀ, ବଳଭଦ୍ର ରୂପରେ ହଳାୟୁଧ । ଅଦିତିଙ୍କ ଅପତ୍ୟ ହେତୁରୁ ଆଦିତ୍ୟ, ଜ୍ୟୋତିସମୂହଦ୍ୱାରା କୋଟି ସୂର୍ଯ୍ୟ ସଦୃଶ ଏହି ନିମିତ୍ତ ଜ୍ୟୋତିରାଦିତ୍ୟ, ଶୀତ ଉଷ୍ଣାଦି ଦ୍ୱନ୍ଦ ସହ ହେତୁରୁ ସହିଷ୍ଣୁ, ସେ ଗତିସତ୍ତମ ଓ ସୁଧନ୍ୱା ଅଟନ୍ତି । ଜାମଦଗ୍ନ୍ୟାବତାରରେ ସେ ପରଶୁଦ୍ୱାରା ଶତ୍ରୁସମୂହଙ୍କୁ ଖଣ୍ଡ ଖଣ୍ଡ କରିଥିବାରୁ ଖଣ୍ଡପରଶୁ, ସେ ସନ୍ମାର୍ଗ ବିରୋଧୀଗଣଙ୍କ ପ୍ରତି ଦାରୁଣ ଅତଏବ ଦାରୁଣ, ସେ ଭକ୍ତମାନଙ୍କର ବାଞ୍ଛିତ ଧନପ୍ରଦ ଅତଏବ ଦ୍ରବିଣପ୍ରଦ, ବାମନାବତାରରେ ଦ୍ୟୁଲୋକ ଆକ୍ରମଣ କରିଥିବାରୁ ଦିବସ୍ପୃକ୍ । ସର୍ବଦର୍ଶୀ ବୋଲି ସର୍ବଦୃକ୍, ବେଦବ୍ୟାସରୂପରେ ଅବତୀର୍ଣ୍ଣ ବୋଲି ସର୍ବଦୃକ୍‌ବ୍ୟାସ, ଅଥବା ତାହାଙ୍କର ସର୍ବାକାର ଜ୍ଞାନ ଓ ସେ ଋକ୍‌ବେଦାଦିର ବିଭାଗକର୍ତ୍ତା ଅତଏବ ସର୍ବଦୃକ୍‌ବ୍ୟାସ, ସେ ବିଦ୍ୟାପତି ଓ ଜନନୀ ଗର୍ଭରେ ଜନ୍ମଗ୍ରହଣ କରନ୍ତି ନାହିଁ ଅତଏବ ବାଚସ୍ପତି ଓ ଅଯୋନିଜ । ୭୪ ।

ବେଦବ୍ରତ ସମାଖ୍ୟାତ ନାମକ ସାମତ୍ରୟଦ୍ୱାରା ସାମଗ କର୍ତ୍ତୃକ ସ୍ତୁତ ଏହି ହେତୁରୁ ସେ ତ୍ରିସାମା, ସେ ସାମଗାନ କରନ୍ତି ଅତଏବ ସାମଗ, ବେଦ ମଧ୍ୟରେ ସେ ସାମବେଦ ଅତଏବ ସାମ, ସେ ପରମାନନ୍ଦରୂପ ବୋଲି ନିର୍ବାଣ, ସଂସାର ରୋଗର ଔଷଧ ଏହି ନିମିତ୍ତ ସେ ଔଷଧ ଅର୍ଥାତ୍ ଭେଷଜ, ସଂସାର ତାରକ ବିଦ୍ୟାର ଉପଦେଶଦାତା ଅତଏବ ଭିଷକ୍, ମୋକ୍ଷ ନିମିତ୍ତ ସନ୍ନ୍ୟାସ ଧର୍ମ କରିଅଛନ୍ତି, ଅତଏବ ସନ୍ନ୍ୟାସକୃତ୍ । ସନ୍ନ୍ୟାସିଗଣଙ୍କୁ ଶାନ୍ତିର ବିଷୟ ଉପଦେଶ ଦିଅନ୍ତି ଅତଏବ ଶମ, ବିଷୟ ସୁଖରେ ଅନାସକ୍ତ ଏହି ନିମିତ୍ତ ଶାନ୍ତ । ପ୍ରଳୟକାଳରେ ଭୂତସମୂହ ତାହାଙ୍କଠାରେ ଅବସ୍ଥାନ କରନ୍ତି ଏହି ନିମିତ୍ତ ସେ ନିଷ୍ଠା, ସେ ଅବିଦ୍ୟା ନିବୃତ୍ତିରୂପରେ ଶାନ୍ତି, ସେ ପୁନରାବୃତ୍ତି ବିରହିତ ଆଶ୍ରୟ ଅତଏବ ପରାୟଣ । ୭୫ ।

ସେ ଶୁଭାଙ୍ଗ, ରାଗଦ୍ୱେଷାଦି ନିର୍ମୋକ୍ଷ ଲକ୍ଷଣ ଶାନ୍ତି ଦାତା ହେତୁରୁ ଶାନ୍ତିଦ, ସର୍ଗାଦିରେ ସର୍ବଭୂତର ସର୍ଜନକାରୀ ବୋଲି ସ୍ରଷ୍ଟା, ମହୀତଳରେ ଆମୋଦଯୁକ୍ତ ଅଟନ୍ତି ଅତଏବ କୁମୁଦ, ପ୍ରଳୟ କାଳରେ ଜଳରେ ଶୟନ କରନ୍ତି ବୋଲି କୁବଳେଶୟ, ଗୋଗଣଙ୍କର ହିତକାରୀ ବୋଲି ଗୋହିତ, ପୃଥିବ୍ୟାଦିଙ୍କ ପତି ବୋଲି ଗୋପତି, ରକ୍ଷଣକର୍ତ୍ତା ବୋଲି ଗୋପ୍ତା, ବୃଷଭ ଅର୍ଥାତ୍ ଧର୍ମ ତାହାଙ୍କର ଚକ୍ଷୁ ଅତଏବ ସେ ବୃଷଭାକ୍ଷ, ଧର୍ମ ତାହାଙ୍କର ପ୍ରିୟ ଅତଏବ ସେ ବୃଷପ୍ରିୟ । ୭୬ । ସେ ଧର୍ମରୁ ନିବୃତ୍ତ ହୁଅନ୍ତି ନାହିଁ

ଅତଏବ ଅନିବର୍ତ୍ତୀ, ତାହାଙ୍କ ଚିତ୍ତ ବିଷୟସମୂହରୁ ନିବୃତ୍ତ ହୋଇଥାଏ ଏହି କାରଣରୁ ସେ ନିବୃତ୍ତାତ୍ମା, ବିସ୍ତୃତ ଜଗତକୁ ସଂହାର ସମୟରେ ସୂକ୍ଷ୍ମ-ରୂପରେ ରଖନ୍ତି ବୋଲି ସଂକ୍ଷେପ୍ତା, ଉପାତ ପରିରକ୍ଷଣକାରୀ ଅତଏବ ବିକ୍ଷେପକୃତ୍, ତାହାଙ୍କୁ ସ୍ମରଣ କଲେ ପବିତ୍ରତା ଜନ୍ମେ, ଏହି ନିମିତ୍ତ ସେ ଶିବ, ତାହାଙ୍କ ବକ୍ଷସ୍ଥଳରେ ଶ୍ରୀବତ୍ସ ବିପ୍ରଙ୍କ ପାଦଚିହ୍ନ ଥିବାରୁ ସେ ଶ୍ରୀବତ୍ସବକ୍ଷା, ତାହାଙ୍କ ବକ୍ଷରେ ଅନପାୟିନୀ ଶ୍ରୀ ବାସ କରନ୍ତି ଅତଏବ ସେ ଶ୍ରୀବାସ, ଉତ୍କୃଷ୍ଟ ଶକ୍ତିର ପତି ହେତୁରୁ ସେ ଶ୍ରୀପତି, ବ୍ରହ୍ମାଦି ମଧ୍ୟରେ ଶ୍ରେଷ୍ଠ ହେତୁରୁ ସେ ଶ୍ରୀମତାଂବର । ୭୭ ।

ଭକ୍ତମାନଙ୍କୁ ଶ୍ରୀଦାତା ହେତୁରୁ ଶ୍ରୀଦ, ସେ ଶ୍ରୀଶ ଅଟନ୍ତି, ଶ୍ରୀମାନ୍ ବ୍ୟକ୍ତିମାନଙ୍କଠାରେ ନିତ୍ୟ ବାସ କରନ୍ତି ବୋଲି ଶ୍ରୀନିବାସ, ତାହାଙ୍କଠାରେ ସମସ୍ତ ଶ୍ରୀ ନିହିତ ହୋଇଥିବାରୁ ସେ ଶ୍ରୀନିଧି, ସେ କର୍ମାନୁସାରେ ସର୍ବ-ଭୂତମାନଙ୍କର ଶ୍ରୀଦାନ କରନ୍ତି ଅତଏବ ଶ୍ରୀବିଭାବନ, ସର୍ବଦା ଜନନୀ ଲକ୍ଷ୍ମୀଙ୍କୁ ଧାରଣ କରିଥିବାରୁ ସେ ଶ୍ରୀଧର, ସ୍ମରଣ, ଅର୍ଚ୍ଚନ ଓ ସ୍ତବନକାରି-ମାନଙ୍କର ଶ୍ରୀ କରିବା ହେତୁରୁ ଶ୍ରୀକର, ଅନପାୟୀ ସୁଖ ବୋଲି ସେ ଶ୍ରେୟ, ବିବିଧ ଐଶ୍ୱର୍ଯ୍ୟଶାଳୀ ହେତୁରୁ ଶ୍ରୀମାନ୍, ଲୋକତ୍ରୟର ଆଶ୍ରୟ ଯୋଗ୍ୟ ସେ ଲୋକତ୍ରୟାଶ୍ରୟ । ୭୮ । ତାହାଙ୍କ ଅକ୍ଷ ଅର୍ଥାତ୍ ନେତ୍ରଦ୍ୱୟ ଶୋଭନ ଏହି ନିମିତ୍ତ ସେ ସ୍ୱକ୍ଷ, ସେ ଶୋଭନଅଙ୍ଗସମ୍ପନ୍ନ ଅତଏବ ସ୍ୱଙ୍ଗ, ସେ ଅପରିମିତ ଆନନ୍ଦସ୍ୱରୂପ ଏହି ନିମିତ୍ତ ଶତାନନ୍ଦ, ସେ ଆନନ୍ଦ-ସ୍ୱରୂପ ହେତୁରୁ ନନ୍ଦୀ, ସେ ଜ୍ୟୋତିଷେଶ୍ୱର ଅଟନ୍ତି । ମନୋଜୟୀ ହେତୁରୁ ବିଜିତାତ୍ମା, କେହି ତାହାଙ୍କ ସ୍ୱରୂପ ବିଧାନ କରିବାକୁ ସମର୍ଥ ହୁଅନ୍ତି ନାହିଁ ଏହି କାରଣରୁ ସେ ଅବିଧେୟାତ୍ମା, ସେ ସତ୍କୀର୍ତ୍ତି ଏବଂ ଛିନ୍ନ-ସଂଶୟ ଅଟନ୍ତି । ୭୯ ।

ସେ ସର୍ବାପେକ୍ଷା ଅଧିକ ଅତଏବ ଉଦୀର୍ଣ୍ଣ, ତାହାଙ୍କ ଚକ୍ଷୁ ସର୍ବ-ଦିଗରେ ବିଦ୍ୟମାନ ଏହି କାରଣରୁ ସର୍ବତଶ୍ଚକ୍ଷୁ, କେହି ତାହାଙ୍କର ଈଶ-ନାହାନ୍ତି ଅତଏବ ସେ ଅନୀଶ, ସେ ସମସ୍ତ କାଳ ଓ ସମସ୍ତ ଦେଶରେ ଉତ୍ପନ୍ନ ହେଲେ ମଧ୍ୟ ବିକାରୀ ନୁହନ୍ତି ବୋଲି ଶାଶ୍ୱତ, ସ୍ଥିର, ସୀତା-ଦେବୀଙ୍କୁ ଅନ୍ୱେଷଣ କରିବା ସମୟରେ ସାଗରତୀରରେ ଭୂତଳରେ ଶୟନ କରିଥିଲେ ବୋଲି ଭୂଶୟ, ସେ ନାନା ଅବତାରଦ୍ୱାରା ଭୂମିକ ଭୂଷଣ କରନ୍ତି ଅତଏବ ଭୂଷଣ, ସର୍ବଭୂତମାନଙ୍କର ତାରଣ ହେତୁରୁ ସେ ଭୂତି,

ପରମାନନ୍ଦରୂପୀ ହେତୁରୁ ବିଶୋକ, ସ୍ମରଣ କଲାମାତ୍ରେ ଭକ୍ତମାନଙ୍କର ଶୋକନାଶ କରନ୍ତି ବୋଲି ସେ ଶୋକନାଶନ । ୮୦ ।

ଚନ୍ଦ୍ର ସୂର୍ଯ୍ୟାଦିମାନଙ୍କର ପ୍ରକାଶକାରୀ ହେତୁରୁ ଅର୍ଚ୍ଚିଷ୍ମାନ୍, ସେ ଅର୍ଚ୍ଚିତ ଅର୍ଥାତ୍ ପୂଜିତ; ସମସ୍ତେ କୁମ୍ଭବତ୍ ତାହାଙ୍କ ପରେ ରହିଅଛନ୍ତି ଅତଏବ ସେ କୁମ୍ଭ, ଗୁଣତ୍ରୟାଙ୍କିତ ହେତୁରୁ ସେ ବିଶୁଦ୍ଧାତ୍ମା, ସ୍ମରଣ ମାତ୍ରରେ ପାପକ୍ଷେପ୍ତା ହେତୁରୁ ସେ ବିଶୋଧନ, ଚତୁର୍ବ୍ୟୂହ ମଧ୍ୟରେ ଅନିରୁଦ୍ଧସ୍ୱରୂପ ହେତୁରୁ ସେ ଅନିରୁଦ୍ଧ, ପ୍ରତିପକ୍ଷ ନ ଥିବା ହେତୁରୁ ସେ ଅପ୍ରତିରଥ, ପ୍ରକୃଷ୍ଟ ଧନଶାଳୀ ବୋଲି ପ୍ରଦ୍ୟୁମ୍ନ, ତାହାଙ୍କ ବିକ୍ରମ ପରିମିତ ହୁଏ ନାହିଁ ବୋଲି ସେ ଅମିତବିକ୍ରମ । ୮୧ । ସେ କାଳନେମି ନାମକ ଅସୁରକୁ ସଂହାର କରିଥିଲେ ବୋଲି କାଳନେମିହା ନାମଧାରୀ ହୋଇ- ଅଛନ୍ତି । ବିନା ସହାୟରେ ଶତ୍ରୁମାନଙ୍କୁ ସଂହାର କରନ୍ତି ବୋଲି ବୀର, ବସୁଦେବଙ୍କ ପୁତ୍ର ବୋଲି ଶୌରି, ସେ ଶୂରଗଣଙ୍କ ଈଶ୍ୱର ବୋଲି ଶୂରଜନ- ଗଣେଶ୍ୱର ଅଟନ୍ତି । ଅନ୍ତର୍ଯ୍ୟାମୀ ସ୍ୱରୂପରେ ତ୍ରିଲୋକର ଆତ୍ମାସ୍ୱରୂପ ବୋଲି ତ୍ରିଲୋକାତ୍ମା, ଯାହାଙ୍କ ଆଜ୍ଞାରେ ସମସ୍ତଲୋକ ସ୍ୱସ୍ୱ କାର୍ଯ୍ୟରେ ବର୍ତ୍ତମାନ ସେ ତ୍ରିଲୋକେଶ, ସେ କେଶସଂଜ୍ଞ ଓ ସୂର୍ଯ୍ୟାଦି ସମ୍ବନ୍ଧୀ ଅଂଶୁ- ବିଶିଷ୍ଟ ବୋଲି କେଶବ, କେଶି ନାମକ ଦାନବର ସଂହାରକର୍ତ୍ତା ବୋଲି କେଶିହା, ସହେତୁକ ସଂସାରକୁ ହରଣ କରନ୍ତି ବୋଲି ହରି । ୮୨ ।

ସେ ଧର୍ମାଦି ପୁରୁଷାର୍ଥ ଚତୁଷ୍ଟୟାଭିଳାଷୀ ପୁରୁଷକର୍ତ୍ତୃକ କାମ୍ୟ- ଦେବ ଅଟନ୍ତି ଅତଏବ ସେ କାମଦେବ, ଭକ୍ତଗଣଙ୍କ ବାଞ୍ଛା ପୂରଣ କରନ୍ତି ଅତଏବ କାମପାଳ, ପୂର୍ଣ୍ଣକାମ ହେତୁରୁ ସେ କାମୀ, ଯାହାଙ୍କ ହେତୁରୁ ପରାର୍ଦ୍ଧାନ୍ତରେ ହିରଣ୍ୟଗର୍ଭ ବ୍ରହ୍ମାଙ୍କର ଅନ୍ତ ହୁଏ ସେ କାନ୍ତ, ବେଦ ଓ ଶ୍ରୁତିର ପ୍ରଣେତା ବୋଲି ତାହାଙ୍କ ନାମ କୃତାଗମ, ଗୁଣାଦ୍ୟାଶ୍ରିତ ହେତୁରୁ ଯାହାଙ୍କ ରୂପ (ସେଇ ଏତାଦୃଶ) ଏ ପ୍ରକାର ନିର୍ଦ୍ଦେଶ କରାଯାଇ ନ ପାରେ ବୋଲି ସେ ଅନିର୍ଦ୍ଦେଶ୍ୟ ବପୁ, ତାହାଙ୍କର ଦ୍ୟୁଲୋକ ଓ ଭୂଲୋକବ୍ୟାପିନୀ କାନ୍ତି ଥିବାରୁ ସେ ବିଷ୍ଣୁ, ଗତିବିଶିଷ୍ଟ ହେତୁରୁ ସେ ବୀର, ସେ ଅନନ୍ତ ବ୍ୟାପୀ ନିତ୍ୟ ସର୍ବାତ୍ମ ଓ ଦେଶକାଳ ବସ୍ତୁଦ୍ୱାରା ଅପରିଚ୍ଛିନ୍ନ ହେତୁରୁ ଅନନ୍ତ, ସେ ଅର୍ଜ୍ଜୁନରୂପରେ ଧନଞ୍ଜୟ । ୮୩ ।

ସେ ତପସ୍ୟା, ବେଦ, ଜାତି ଓ ଜ୍ଞାନରହିତ ଅଥବା ସେମାନଙ୍କୁ ଜାଣନ୍ତି ଅତଏବ ବ୍ରହ୍ମଣୀ, ତପଆଦିର କର୍ତ୍ତା ବୋଲି ବ୍ରହ୍ମକୃତ୍ । ବ୍ରହ୍ମା

ସ୍ୱରୂପରେ ସୃଷ୍ଟିକର୍ତ୍ତା ବୋଲି ବ୍ରହ୍ମା, ବୃହତ୍ତ୍ୱରୂପ ବୃହଣ ହେତୁରୁ ସତ୍ୟାଦି ରୂପ ବୋଲି ବ୍ରହ୍ମା, ସେ ତପ ପ୍ରଭୃତିର ବୃଦ୍ଧିକାରୀ ଅତଏବ ବ୍ରହ୍ମବିବର୍ଦ୍ଧନ, ସେ ବେଦ ବେଦାର୍ଥକୁ ଯଥାବତ୍ ଜାଣନ୍ତି ବୋଲି ବ୍ରହ୍ମବିତ୍, ବ୍ରହ୍ମ ଓ ବ୍ରାହ୍ମଣରୂପରେ ସମସ୍ତ ଲୋକର ଓ ବେଦର ପ୍ରବଚନ କରନ୍ତି ବୋଲି ବ୍ରାହ୍ମଣ, ବ୍ରହ୍ମତତ୍ତ୍ୱ ସମନ୍ୱିତ ବୋଲି ବ୍ରହ୍ମୀ, ଆତ୍ମଭୂ ଓ ବେଦକୁ ଜାଣନ୍ତି ବୋଲି ବ୍ରହ୍ମଜ୍ଞ, ବ୍ରାହ୍ମଣଗଣ ତାହାଙ୍କର ପ୍ରିୟ ଅଥବା ସେ ବ୍ରାହ୍ମଣମାନଙ୍କ ପ୍ରିୟ ବୋଲି ସେ ବ୍ରାହ୍ମଣପ୍ରିୟ । ୮୪ । ସେ ମହାକାମ ଓ ମହାକର୍ମା, ସୂର୍ଯ୍ୟାଦିଗତ ତେଜଃ ସ୍ୱରୂପ ହେତୁରୁ ମହାତେଜା, ଶେଷ-ରୂପରେ ମହୋରଗ, ଅଶ୍ୱମେଧାଦି ସ୍ୱରୂପ ହେତୁରୁ ମହାକ୍ରତୁ, ଲୋକସଂଗ୍ରହ ନିମିତ୍ତ ଯଜ୍ଞମାନଙ୍କୁ ନିଷ୍ପନ୍ନ କରନ୍ତି ବୋଲି ମହାଯଜ୍ୱା, ସେ ମହାଯଜ୍ଞ, ବ୍ରହ୍ମଙ୍କଠାରେ ସମସ୍ତ ଜଗତ୍ ହୁତ ହୁଅନ୍ତି ବୋଲି ମହାହବି । ୮୫ ।

ସେ ସ୍ତୁତିର ଯୋଗ୍ୟ ଅତଏବ ସ୍ତବ୍ୟ, ସେ ସ୍ତବପ୍ରିୟ, ଗୁଣ ପ୍ରତି-ପାଦକ ଶବ୍ଦ ରୂପରେ ସେ ସ୍ତୋତ୍ର, ଗୁଣ କୀର୍ତ୍ତନ କ୍ରିୟା ରୂପରେ ସେ ସ୍ତୁତ, ସେ ସ୍ତୁତିକର୍ତ୍ତା ଅଟନ୍ତି ବୋଲି ସ୍ତୋତା, ସେ ରଣପ୍ରିୟ, ସକଳ ଶକ୍ତିସମ୍ପନ୍ନ ହେତୁରୁ ସେ ପୂର୍ଣ୍ଣ, ସମସ୍ତଙ୍କ ମନୋରଥ ପୂରଣକର୍ତ୍ତା ବୋଲି ପୂରୟିତା, ସ୍ମରଣ କଲା ମାତ୍ରେ ପାପ ହରଣ କରନ୍ତି ବୋଲି ପୁଣ୍ୟ, ସେ ପୁଣ୍ୟ କୀର୍ତ୍ତି ଅଟନ୍ତି; କର୍ମଜ, ଅନ୍ତର ଓ ଅବାହ୍ୟ ବ୍ୟାଧିଦ୍ୱାରା ପୀଡ଼ିତ ନୁହନ୍ତି ବୋଲି ଅନାମୟ । ୮୬ । ସେ ମନୋଜବ, ଚତୁର୍ଦ୍ଦଶ ବିଦ୍ୟାର ପ୍ରଣେତା ହେତୁରୁ ସେ ତୀର୍ଥକର, ସେ ସୁବର୍ଣ୍ଣରେତା ଅଟନ୍ତି ଅତଏବ ବସୁରେତା, ସେ ଧନ-ଦାତା ଅଟନ୍ତି ଅତଏବ ବସୁପ୍ରଦ, ସେ ଭକ୍ତମାନଙ୍କୁ ମୋକ୍ଷ ଦିଅନ୍ତି ବୋଲି ବସୁପ୍ରଦ, ବସୁଦେବଙ୍କ ପୁତ୍ର ବୋଲି ବାସୁଦେବ, ମାୟାଦ୍ୱାରା ସ୍ୱରୂପ ଆଚ୍ଛାଦନ କରନ୍ତି ବୋଲି ବସୁ, ତାହାଙ୍କ ମନ ପବିତ୍ର ଅବଶେଷ ରୂପରେ ବାସ କରେ ଏହି କାରଣରୁ ସେ ବସୁମନା, ବ୍ରହ୍ମଙ୍କଠାରେ କର୍ମଫଳସମୂହ ଅର୍ପିତ ହୁଏ ଅତଏବ ସେ ହବି । ୮୭ ।

ଉତ୍କୃଷ୍ଟ ବୁଦ୍ଧି ହେତୁରୁ ସେ ସଦ୍‌ଗତି, ସେ ସତ୍କୃତ, ସେ ସବୁ ପ୍ରଜ୍ଞାୟ-ମାନ ଅଧିଷ୍ଠାନ ରୂପେ ସେ ସତ୍ତା, ତାହାଙ୍କଠାରୁ ସାଧୁଗଣଙ୍କର ଐଶ୍ୱର୍ଯ୍ୟ ଲାଭ ହୁଏ ଅତଏବ ସେ ସଦ୍ଭୂତି, ସାଧୁ ଭକ୍ତଗଣଙ୍କର ଆଶ୍ରୟ ସ୍ଥାନ ହେତୁରୁ ସେ ସତ୍ପରାୟଣ, ତାହାଙ୍କର ସେନାବୃନ୍ଦ ବଳବାନ୍ ଅତଏବ ଶୂରସେନ, ସେ ଯଦୁଶ୍ରେଷ୍ଠ ଅଟନ୍ତି । ସାଧୁଗଣଙ୍କ ଆଶ୍ରୟ ବୋଲି ସେ

ସନ୍ନିବାସ, ଶୋଭନ ଯମୁନା ଙ୍ଗରେଦ୍ଭବ ଗୋପାଳ ସମୂହ ତାହାଙ୍କୁ ପରି-ବେଷ୍ଟନ କରିଥିଲେ ଏହି ନିମିତ୍ତ ସେ ସୁଯାମୁନ । ୮୮ । ଭୂତବୃନ୍ଦ ତାହାଙ୍କଠାରେ ବାସ କରନ୍ତି ଏହି କାରଣରୁ ସେ ଭୂତାବାସ, ମାୟାଦ୍ୱାରା ଜଗଦାଚ୍ଛାଦନ ଓ ଦେଦୀପ୍ୟମାନ ଏହି ନିମିତ୍ତ ସେ ବାସୁଦେବ, ସମସ୍ତ ପ୍ରାଣ ପ୍ରଭୃତିର ଆଶ୍ରୟ ଅତଏବ ସର୍ବାସୁନିଳୟ, ତାହାଙ୍କ ଶକ୍ତି ସମ୍ପତ୍ତିର ସୀମା ନାହିଁ ଏହି ନିମିତ୍ତ ସେ ଅନଳ, ଅଧର୍ମିମାନଙ୍କ ଦର୍ପ ଖଣ୍ଡନ କରନ୍ତି ବୋଲି ସେ ଦର୍ପହା, ଧର୍ମଶୀଳମାନଙ୍କୁ ଦର୍ପ ଦିଅନ୍ତି ବୋଲି ଦର୍ପଦ; ସ୍ୱ ଆତ୍ମାମୃତ-ରସ ଆଦାନରେ ନିତ୍ୟ ପ୍ରମୁଦିତ ବୋଲି ଦୃପ୍ତ, ଶକ୍ତିଦ୍ୱାରା ଧାରଣ କରି ନୁହନ୍ତି ବୋଲି ଦୁର୍ଦ୍ଧର, ଅନ୍ତର ଅଥବା ବାହ୍ୟ ଶତ୍ରୁଦ୍ୱାରା ପରାଜିତ ନୁହନ୍ତି ବୋଲି ଅପରାଜିତ ।

ସେ ବିଶ୍ୱମୂର୍ତ୍ତି, ସେ ମହାମୂର୍ତ୍ତି, ଜ୍ଞାନମୟୀ ମୂର୍ତ୍ତି ହେତୁରୁ ସେ ଦୀପ୍ତମୂର୍ତ୍ତି, କର୍ମନିବନ୍ଧନ ମୂର୍ତ୍ତି ନାହିଁ ବୋଲି ସେ ଅମୂର୍ତ୍ତିମାନ, ଲୋକୋପ-କାର ନିମିତ୍ତ ସେ ଅନେକ ମୂର୍ତ୍ତି, ଅନିର୍ଦ୍ଦିଷ୍ଟ ହେତୁରୁ ଅବ୍ୟକ୍ତ, ନାନା ବିକଳ୍ପ ଜନିତ ମୂର୍ତ୍ତି ହେତୁରୁ ସେ ଶତମୂର୍ତ୍ତି, ବିଶ୍ୱମୂର୍ତ୍ତି ହେତୁରୁ ସନାତନ । ୯୦ । ସ୍ୱଗତ ସଜାତୀୟ ବିଜାତୀୟ ଭେଦରହିତ ବୋଲି ଏକ, ସେ ମାୟାଦ୍ୱାରା ବହୁରୂପ ଏହି କାରଣରୁ ଅନେକ, ତାହାଙ୍କଠାରେ ସୋମ ପ୍ରସୂତ ହୁଏ ସେହି କାରଣରୁ ଯଜ୍ଞ ରୂପରେ ସବ, ସୁଖ ଅଥବା ବ୍ରହ୍ମା ରୂପରେ କ, ସେ ବିଗୃହ୍ୟ ଅତଏବ କିଂ, ଯତ୍ ଶବ୍ଦ ବ୍ରହ୍ମବାଚକ ଏହି ନିମିତ୍ତ ସେ ଯତ୍, ବିବିଧ ଲୀଳା ବିସ୍ତାର କରିଅଛନ୍ତି ଅତଏବ ସେ ତତ୍ । ସେ ଅନୁତ୍ତମ ଆଶ୍ରୟ ଅତଏବ ଅନୁତ୍ତମ-ପଦ, ସେ ଲୋକବନ୍ଧୁ ଓ ଲୋକନାଥ, ସେ ମଧୁକୁଳରେ ଜାତ ହେତୁରୁ ମାଧବ, ସେ ଭକ୍ତବତ୍ସଳ ଅଟନ୍ତି । ୯୧ ।

ହିରଣ୍ମୟ ପୁରୁଷ ରୂପରେ ସୁବର୍ଣ୍ଣ ବର୍ଣ୍ଣ, ହେମାଙ୍ଗ, ବରାଙ୍ଗ ଓ ଚନ୍ଦନାଙ୍ଗଦୀ, ଧର୍ମରକ୍ଷା ନିମିତ୍ତ ଅସୁରବୀରହନ୍ତା ଏହି ନିମିତ୍ତ ସେ ବୀରହା; କେହି ତାହାଙ୍କ ସମାନ ନାହାନ୍ତି ଅତଏବ ସେ ବିଷମ, ସେ ସର୍ବବିଶେଷ-ରହିତ ଅତଏବ ଶୂନ୍ୟ, ସେ ଆଶାହୀନ ଓ ଆପ୍ତକାମ ଅତଏବ ଧୃତାଶୀ, ସେ ସ୍ୱରୂପରୁ ବିଚଳିତ ହୁଅନ୍ତି ନାହିଁ ଅତଏବ ଅଚଳ ବାୟୁ ରୂପରେ ଚଳ । ୯୨ । ଭକ୍ତମାନଙ୍କର ମାନ ଦିଅନ୍ତି ବୋଲି ସେ ଅମାନୀ ଓ ଖଣ୍ଡନ କରନ୍ତି ବୋଲି ମାନଦ, ସେ ମାନ୍ୟ, ଲୋକସ୍ୱାମୀ, ତ୍ରିଲୋକଧୃକ୍, ସୁମେଧା, ଗିରିଯଜ୍ଞରେ ଇନ୍ଦ୍ରଙ୍କ ମଖ ନିବାରଣ ପୂର୍ବକ ଅନ୍ନକୂଟରେ ଭୋକ୍ତା ରୂପରେ

ପ୍ରାଦୁର୍ଭୂତ ହୋଇଥିଲେ ଅତଏବ ମେଧଜ, କୃତାର୍ଥ ହେତ୍ତୁରୁ ଧନ୍ୟ, ସତ୍ୟମେଧା, ଶେଷ ରୂପରେ ଧରାଧର । ୯୩ ।

ଆହୁତ୍ୟ ରୂପରେ ବର୍ଷଣ କରନ୍ତି ଅତଏବ ତେଜୋବୃଷ, ଦ୍ୟୁତିଧର, ସର୍ବଶସ୍ତ୍ରଭୂତାଂବର, ଭକ୍ତଗଣ କର୍ତ୍ତୃକ ଉପହୃତ ପୂଜାକୁ ପ୍ରକୃଷ୍ଟ ରୂପରେ ଗ୍ରହଣ କରନ୍ତି ଅତଏବ ପ୍ରଗ୍ରହ, ଦଣ୍ଡାର୍ହଗଣଙ୍କ ଦଣ୍ଡବିଧାନ କରନ୍ତି ଅତଏବ ନିଗ୍ରହ, ଭକ୍ତାନୁଗ୍ରହ ବିଷୟରେ ଆସକ୍ତ ଅତଏବ ବ୍ୟଗ୍ର, ଚତୁଃ-ଶୃଙ୍ଗ ମନ୍ତ୍ରରେ ବର୍ଣ୍ଣିତ ନ ଥିବାରୁ ନୈକଶୃଙ୍ଗ, ଗଦ ନାମକ ଶ୍ରୀକୃଷ୍ଣଙ୍କ ଅନୁଜ ତାହାଙ୍କ ଅଗ୍ରେ ଜନ୍ମଗ୍ରହଣ କରିଥିଲେ ବୋଲି ସେ ଗଦାଗ୍ରଜ ।୯୪। ହିରଣ୍ୟ-ଗର୍ଭାଦି ରୂପରେ ଚତୁର୍ମୂର୍ତ୍ତି, ଚତୁର୍ବାହୁ, ଚତୁର୍ବ୍ୟୂହ, ସେ ଚତୁରାଶ୍ରମର ଧର୍ମ ବୋଲି ଚତୁର୍ଗତି, ସେ ମନସ୍ୱରୂପ, ବୁଦ୍ଧିସ୍ୱରୂପ, ଅହଂକାର ସ୍ୱରୂପ ଓ ଚିତ୍ତସ୍ୱରୂପ ଅଟନ୍ତି ବୋଲି ଚତୁରାତ୍ମା, ତାହାଙ୍କଠାରୁ ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରାଦୁର୍ଭାବ ହୁଏ ବୋଲି ସେ ଚତୁର୍ଭାବ, ଯଥାବତ୍ ଚତୁର୍ବେଦର ଅର୍ଥକୁ ଜାଣନ୍ତି ବୋଲି ସେ ଚତୁର୍ବେଦବିତ୍, ଜଗତ୍‌ରୂପରେ ଏକପାତ୍ ।୯୫।

ସଂସାର ଚକ୍ରକୁ ସମ୍ୟକ୍‌ରୂପେ ଆବର୍ତ୍ତନ କରନ୍ତି ବୋଲି ସମାବର୍ତ୍ତ, ତାହାଙ୍କ ଚିତ୍ତ ବିଷୟରୁ ନିବୃତ୍ତ ଅତଏବ ସେ ନିବୃତ୍ତାତ୍ମା, ଭୟ ହେତୁରୁ ସୂର୍ଯ୍ୟାଦିମାନେ ତାହାଙ୍କ ଆଜ୍ଞାକୁ ଅତିକ୍ରମ କରନ୍ତି ନାହିଁ ବୋଲି ସେ ଦୁରତିକ୍ରମ ଓ ଦୁର୍ଜୟ ଅଟନ୍ତି । ଦୁର୍ଲ୍ଲଭ ଭକ୍ତିଦ୍ୱାରା ଲଭ୍ୟ ବୋଲି ଦୁର୍ଲ୍ଲଭ, ଦୁଃଖରେ ଜ୍ଞାତ ହୁଅନ୍ତି ବୋଲି ଦୁର୍ଗମ, ଅତି ଦୁଃଖରେ ପ୍ରାପ୍ୟ ବୋଲି ଦୁର୍ଗ । ଯୋଗିମାନେ ତାହାଙ୍କୁ ଦୁଃଖରେ ସମାଧିଦ୍ୱାରା ଚିତ୍ତରେ ଧାରଣ କରନ୍ତି ବୋଲି ସେ ଦୁରାବାସ, ଦୁର୍ଗାମୀ ଦାନବମାନଙ୍କୁ ନଷ୍ଟ କରନ୍ତି ବୋଲି ସେ ଦୁରାରିହା । ୯୬ ।

ଶୋଭନ ଅଙ୍ଗଦ୍ୱାରା ଧ୍ୟେୟ ହେତୁରୁ ସେ ଶୁଭାଙ୍ଗ, ଲୋକର ସାର ଗ୍ରହଣ କରନ୍ତି ବୋଲି ଅଥବା ଲୋକସାର ପ୍ରଣବଦ୍ୱାରା ଜ୍ଞେୟ ବୋଲି ସେ ଲୋକସାରଙ୍ଗ, ଶୋଭନରୂପରେ ପ୍ରପଞ୍ଚର ତନ୍ତୁ ବିସ୍ତୀର୍ଣ୍ଣ କରିବା ହେତୁରୁ ସୁତନ୍ତୁ । ଭକ୍ତତନ୍ତୁ ଛେଦନ ଓ ବର୍ଦ୍ଧନ କରନ୍ତି ଅତଏବ ତନ୍ତୁବର୍ଦ୍ଧନ, ତାହାଙ୍କ କର୍ମ ଇନ୍ଦ୍ରଙ୍କ କର୍ମ ସଦୃଶ ବୋଲି ସେ ଇନ୍ଦ୍ରକର୍ମା, ବିୟଦାଦି ଭୂତସମୂହ ତାହାଙ୍କ କର୍ମ ଅତଏବ ସେ ମହାକର୍ମା, ଯାହାଙ୍କର ସମସ୍ତ କର୍ମ କୃତ ହୋଇଅଛି, କରିବା ରୂପରେ ନାହିଁ, ସେ କୃତକର୍ମା ; ସେ ବେଦାତ୍ମକ ଆଗମକୁ କରିଅଛନ୍ତି ବୋଲି କୃତାଗମ । ୯୭ ।

ସେ ସ୍ୱେଚ୍ଛାରେ ଉତ୍କୃଷ୍ଟ ଜନ୍ମଲାଭ କରନ୍ତି ଅତଏବ ଉଦ୍ଭବ, ସେ ଷଡ଼ୈଶ୍ୱର୍ଯ୍ୟୟୁକ୍ତ ସୌଭାଗ୍ୟଶାଳୀ ଏହି ନିମିତ୍ତ ସୁନ୍ଦର, କରୁଣାକର ହେତୁରୁ ସୁନ୍ଦ, ତାହାଙ୍କ ନାଭି ରତ୍ନସଦୃଶ ଶୋଭାବିଶିଷ୍ଟ ଅତଏବ ସେ ରତ୍ନନାଭ, ସେ ଶୋଭନନେତ୍ର ଅଥବା ଜ୍ଞାନସମନ୍ୱିତ ବୋଲି ସୁଲୋଚନ, ସେ ବ୍ରହ୍ମାଦି କର୍ତ୍ତୃକ ଅର୍ଚ୍ଚନୀୟ ଏହି କାରଣରୁ ଅର୍କ, ସେ ଅନ୍ନଦାନ କରନ୍ତି ଏହି ନିମିତ୍ତ ବାଜସନ, ମତ୍ସ୍ୟାବତାରରେ ତାହାଙ୍କର ଶୃଙ୍ଗ ଥିଲା ଏହି କାରଣରୁ ସେ ଶୃଙ୍ଗୀ, ସେ ଜୟଶୀଳ ଅଥବା ଭୟହେତୁ ଅତଏବ ଜୟନ୍ତ, ସର୍ବବିଷୟକ ଜ୍ଞାନବାନ୍ ବୋଲି ସର୍ବବିତ୍, ଆନ୍ତରିକରାଗାଦି ବାହ୍ୟ ହିରଣ୍ୟାକ୍ଷାଦି ଶତ୍ରୁମାନଙ୍କୁ ଜୟ କରିଥିଲେ ବୋଲି ଜୟୀ । ୯୮ ।

ତାହାଙ୍କର ଅବୟବସମୂହ ସୁବର୍ଣ୍ଣ ସଦୃଶ ଅତଏବ ସୁବର୍ଣ୍ଣବିନ୍ଦୁ, ରାଗଦ୍ୱେଷାଦିଦ୍ୱାରା କ୍ଷୋଭିତ ହୁଅନ୍ତି ନାହିଁ ବୋଲି ସେ ଅକ୍ଷୋଭ୍ୟ । ସମସ୍ତ ବ୍ରହ୍ମାଦି ବାଗୀଶ୍ୱରମାନଙ୍କର ଈଶ୍ୱର ବୋଲି ସେ ସର୍ବବାଗୀଶ୍ୱରେଶ୍ୱର, ଯୋଗୀଗଣ ଯାହାଙ୍କଠାରେ ବିଶ୍ରାମ କରି ସୁଖଲାଭ କରନ୍ତି ସେ ମହାହ୍ରଦ, ଯାହାଙ୍କ ମାୟା ଗର୍ତ୍ତସଦୃଶ ଦୁରତ୍ୟୟ, ସେ ମହାଗର୍ତ୍ତ, ସର୍ବଭୂତର ମହାନିଧାନ ସ୍ଥାନ ବୋଲି ସେ ମହାଭୂତ ମହାନିଧି । ୯୯ ।

ଭାରାବତାରଣ କରି ଧରଣୀକୁ ଆମୋଦିତ କରନ୍ତି ବୋଲି କୁମୁଦ, କୁନ୍ଦପୁଷ୍ପ ସଦୃଶ ସ୍ୱଚ୍ଛ ଧର୍ମାନୁବନ୍ଧ ଫଳ ଦାନ କରନ୍ତି ଅତଏବ କୁନ୍ଦର, କୁନ୍ଦସଦୃଶ ନିର୍ମଳ ଅତଏବ କୁନ୍ଦ, ମେଘ ସଦୃଶ ଆଧ୍ୟାତ୍ମିକାଦି ତାପତ୍ରୟନାଶନ ଅଥବା ଆଶ୍ରିତଙ୍କ କାମ ବର୍ଷକ ଏହି କାରଣରୁ ପର୍ଜ୍ଜନ୍ୟ, ସ୍ମରଣମାତ୍ରେ ପବିତ୍ର କରନ୍ତି ବୋଲି ପବନ, ନିତ୍ୟ ପ୍ରବୁଦ୍ଧ ସ୍ୱରୂପ ହେତୁରୁ ଅନିଳ, ସ୍ୱକୀୟ ଆତ୍ମାନନ୍ଦାମୃତ ପାନ କରନ୍ତି ବୋଲି ଅମୃତାଶ, ମରଣ ରହିତ ବପୁ ହେତୁ ରୁ ଅମୃତବପୁ, ସେ ସର୍ବଜ୍ଞ, ସେ ସର୍ବତୋମୁଖ । ୧୦୦।

ନାମଗାନନୃତ୍ୟାଦିଦ୍ୱାରା ଏବଂ ଭକ୍ତମାତ୍ର ସମର୍ପିତ ପତ୍ର ପୁଷ୍ପ ଓ ଫଳାଦି-ଦ୍ୱାରା ଅନାୟାସରେ ଲଭ୍ୟ ବୋଲି ସୁଲଭ, ସେ ସୁବ୍ରତ, ଅନନ୍ୟାଧୀନ ସିଦ୍ଧି ହେତୁରୁ ସିଦ୍ଧ, ସୁରଶତ୍ରୁମାନେ କେବଳ ତାହାଙ୍କର ଶତ୍ରୁ, ସେମାନଙ୍କୁ ଜୟ କରନ୍ତି ବୋଲି ଶତ୍ରୁଜିତ୍, ଶତ୍ରୁତାପନ, ସମସ୍ତଙ୍କ ଉପରେ ବର୍ତ୍ତମାନ ବୋଲି ନ୍ୟଗ୍ରୋଧ । ଅନ୍ନାଦିରୂପରେ ବିଶ୍ୱକୁ ପୋଷଣ କରନ୍ତି ଅତଏବ ଉଦୁମ୍ବର, ପ୍ରପଞ୍ଚରୂପରେ ବିଶ୍ୱକୁ ବିସ୍ତୀର୍ଣ୍ଣ ଅତଏବ ଅଶ୍ୱତ୍ଥ, ଚାଣୂର ନାମକ ଅନ୍ଧ୍ର ଦେଶୋଦ୍ଭବ କଂସର ମଲ୍ଲକୁ ବିନାଶ କରିଥିଲେ ଅତଏବ ଚାଣୂରାନ୍ଧ୍ର-ନିସୂଦନ । ୧୦୧ ।

ସେ ସପ୍ତାର୍ଚ୍ଚି, କାଳୀ, କରାଳୀ, ମନୋଜବା, ସୁଲୋହିତା, ସୁଧୂମ୍ରବର୍ଣ୍ଣା, ସ୍ଫୁଲିଙ୍ଗିନୀ ଓ ବିଶ୍ୱରୁଚି ନାମରେ ସପ୍ତଜିହ୍ୱାବିଶିଷ୍ଟ ବହ୍ନିରୂପରେ ସପ୍ତଜିହ୍ୱା, ସେ ସପ୍ତସମିଧସମନ୍ୱିତ ଏହି ନିମିତ୍ତ ସପ୍ତୈଧା, ସୂର୍ଯ୍ୟରୂପରେ ସପ୍ତବାହନ, ସେ ଘନମୂର୍ତ୍ତିବିରହିତ ଅତଏବ ଅମୂର୍ତ୍ତି, ସେ ନିଷ୍ପାପ ଏହି ନିମିତ୍ତ ଅନଘ, ପ୍ରମାଣାଦି ସାକ୍ଷୀରୂପରେ ସର୍ବପ୍ରମାଣ ଅଗୋଚର ହେତୁରୁ ଅଚିନ୍ତ୍ୟ, ଅଭକ୍ତଗଣଙ୍କର ଭୟକାରୀ ଅତଏବ ଭୟକୃତ୍, ବର୍ଣ୍ଣାଶ୍ରମ ଆଗ୍ରହବାନ୍ ବ୍ୟକ୍ତିଙ୍କର ଭୟ ବିନାଶନ କରନ୍ତି ଅତଏବ ଭୟ-ନାଶନ । ୧୦୨ ।

ସେ ଅତିଶୟ ସୂକ୍ଷ୍ମ, ଅତଏବ ଅଣୁ, ବୃଦ୍ଧିଶୀଳ ହେତୁରୁ ବୃହତ୍, ଅସ୍ଥୂଳ ଇତ୍ୟାଦିଦ୍ୱାରା ଦ୍ରବ୍ୟପ୍ରତିଷେଧ ହେତୁରୁ ସେ କୃଶ, ସର୍ବାତ୍ମ ହେତୁରୁ ସ୍ଥୂଳରୂପରେ ଉପଚରିତ ହୁଅନ୍ତି ବୋଲି ସ୍ଥୂଳ, ସୃଷ୍ଟି, ସ୍ଥିତି ଓ ପ୍ରଳୟ କର୍ମମାନଙ୍କରେ ସତ୍ତ୍ୱ, ରଜ ଓ ତମଗୁଣମାନଙ୍କର ଅଧିଷ୍ଠାତା ହେତୁରୁ ସେ ଗୁଣଭୃତ୍ । ପରମାର୍ଥ ଗୁଣାଭାବ ହେତୁରୁ ନିର୍ଗୁଣ, ଶବ୍ଦାଦି-ଗୁଣରହିତ ନିରତିଶୟ ସୂକ୍ଷ୍ମ ହେତୁରୁ ନିତ୍ୟଶୁଦ୍ଧ, ସର୍ବଗତତ୍ତ୍ୱାଦି ପ୍ରତିବନ୍ଧକ କର୍ମଜାତ ତର୍କଦ୍ୱାରା ମଧ୍ୟ କହିବାକୁ ଅଶକ୍ୟ ଅତଏବ ମହାନ୍, କେହି ତାହାଙ୍କୁ ଧାରଣ କରିପାରନ୍ତି ନାହିଁ ଏହି ନିମିତ୍ତ ଅଧୃତ, ସ୍ୱମହିମାଦ୍ୱାରା ପ୍ରତିଷ୍ଠିତ ଅତଏବ ସ୍ୱଧୃତ, ଶୋଭନ ବେଦସମୂହ ତାହାଙ୍କ ମୁଖରୁ ନିର୍ଗତ ଏହି କାରଣରୁ ସେ ସ୍ୱାମୀ, ପ୍ରଥମତଃ ତାହାଙ୍କ ବଂଶ ଅତଏବ ସେ ପ୍ରାଗ୍ବଂଶ, ପ୍ରପଞ୍ଚର ବୃଦ୍ଧିକର୍ତ୍ତା ଅତଏବ ବଂଶ-ବର୍ଦ୍ଧନ । ୧୦୩ ।

ସେ ଅନନ୍ତରୂପରେ ପୃଥିବୀର ଭାର ଧାରଣ କରନ୍ତି ଅତଏବ ଭାରଭୃତ୍, ସେ ସମସ୍ତ ଶ୍ରୁତିପ୍ରତିପାଦ୍ୟ ଅତଏବ କଥିତ, ସେ ଯୋଗ (ଜ୍ଞାନ) ଗମ୍ୟ ଅତଏବ ଯୋଗୀ, ଯୋଗାନ୍ତରାୟଦ୍ୱାରା ଅନଭିଭୂତ ହେତୁ ଅନ୍ୟ ଯୋଗୀବିଲକ୍ଷଣ ବୋଲି ଯୋଗୀଶ, ସେ ସର୍ବକାମଦ, ସଂସାର-ବର୍ତ୍ମନରେ ଭ୍ରମଣ କରି ଆଶ୍ରମିଗଣଙ୍କର ବିଶ୍ରାମ ସ୍ଥାନ ଅତଏବ ଆଶ୍ରମ, ଭକ୍ତଗଣଙ୍କ ବିରୋଧିମାନଙ୍କୁ ଖେଦଯୁକ୍ତ କରନ୍ତି ଅତଏବ ଶ୍ରମଣ, ପ୍ରଳୟ କାଳରେ ପ୍ରଜାଗଣଙ୍କୁ କ୍ଷୟ କରନ୍ତି ଅତଏବ କ୍ଷାମ, ସଂସାରତରୁ ସ୍ୱରୂପୀ ବିଷ୍ଣୁଙ୍କର ଶୋଭନ ବେଦସମୂହ ପର୍ଣ୍ଣ ଅତଏବ ସେ ସୁପର୍ଣ୍ଣ, ବାୟୁ ତାହାଙ୍କ ଭୟରେ ଭୂତମାନଙ୍କୁ ବହନ କରନ୍ତି ଏହି କାରଣରୁ ସେ ବାୟୁ-ବାହନ । ୧୦୪ ।

ରାମାବତାରରେ ଧନୁର୍ଦ୍ଧାରଣ କରିବା ହେତୁରୁ ସେ ଧନୁର୍ଦ୍ଧର, ଉକ୍ତ ଅବତାରରେ ସେ ଧନୁର୍ବେଦକୁ ଜାଣିଥିଲେ ବୋଲି ତାହାଙ୍କ ନାମ ଧନୁର୍ବେଦ, ସେ ଦମନକାରୀ ଅତଏବ ଦଣ୍ଡମହାଦ୍ଧ ରୂପରେ ପ୍ରଜାଗଣଙ୍କୁ ଦମନ କରିଥିଲେ ଏହି କାରଣରୁ ସେ ଦମୟିତା, ଦଣ୍ଡରେ ଫଳଦମ୍ୟଜନଙ୍କୁ ସେହି ଫଳ ସେ ଅତଏବ ଦମ, ସର୍ବକର୍ମରେ ସମର୍ଥ ବୋଲି ସେ ଅପରାଜିତ ସେ ସର୍ବସହ, ସମସ୍ତଙ୍କୁ ସ୍ୱ ସ୍ୱ କାର୍ଯ୍ୟରେ ସ୍ଥାପନ କରନ୍ତି ବୋଲି ସେ ନିୟନ୍ତା, ତାହାଙ୍କର ନିୟମ ନ ଥିବାରୁ ସେ ଅନିୟମ, ତାହାଙ୍କର ମୃତ୍ୟୁ ନ ଥିବାରୁ ସେ ଅଯମ । ୧୦୫ ।

ସେ ଶୌର୍ଯ୍ୟାଦିବାନ୍ ଅଟନ୍ତି ଅତଏବ ସତ୍ତ୍ୱବାନ୍, ସେ ସତ୍ତ୍ୱଗୁଣରେ ପ୍ରାଧାନ୍ୟ ରୂପରେ ସ୍ଥିତ ଅତଏବ ସାତ୍ତ୍ୱିକ, ସତ୍‌ସମୂହର ସାଧୁ ସୁତରାଂ ସତ୍ୟ, ସତ୍ୟ କଥନ ଓ ଧର୍ମର ପ୍ରକର୍ଷଣରେ ନିଯୁକ୍ତ ଅତଏବ ସତ୍ୟ ଧର୍ମପରାୟଣ, ସମସ୍ତ ପୁରୁଷାର୍ଥ ଲିପ୍‌ସୁଗଣଙ୍କ ଅଭିପ୍ରେତ, ଏହି ନିମିତ୍ତ ଅଭିପ୍ରାୟ, ସେ ପ୍ରିୟହି ଅଟନ୍ତି, ଆସନାଦି ଦ୍ୱାରା ପୂଜ୍ୟ ବୋଲି ଅର୍ହ, ସେ ପ୍ରିୟକୃତ୍ ଭକ୍ତମାନଙ୍କର ପ୍ରୀତିବର୍ଦ୍ଧନ କରନ୍ତି ବୋଲି ପ୍ରୀତିବର୍ଦ୍ଧନ ନାମଧାରୀ ହୋଇଅଛନ୍ତି । ୧୦୬ ।

ଆକାଶକୁ ତ୍ୟାଗ କରି ତାହାଙ୍କ ଆଶ୍ରୟ ଅତଏବ ସେ ବିହାୟସଗତ, ସେ ଦ୍ୟୁତିଶୀଳ ବୋଲି ଜ୍ୟୋତି, ଶୋଭନ ଦୀପ୍ତି ଅଥବା ଇଚ୍ଛାବିଶିଷ୍ଟ ହେତୁରୁ ସେ ସୁରୁଚି, ସମସ୍ତ ଦେବଗଣଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ହବିକୁ ସ୍ୱୟଂ ଭୋଜନ କରନ୍ତି ଅତଏବ ହୁତଭୁକ୍; ବ୍ୟାପକ ବୋଲି ବିଭୁ, ରସ ଆଦାନ କରନ୍ତି ବୋଲି ରବି, ବିଶେଷ ରୂପରେ ରୁଚିଶୀଳ ବୋଲି ବିରୋଚନ, ଶ୍ରୀଙ୍କୁ ସେବନ କରନ୍ତି ଏହି ନିମିତ୍ତ ସୂର୍ଯ୍ୟ, ଜଗତ୍ପ୍ରସବକର୍ତ୍ତା ବୋଲି ସବିତା, ରବି ତାହାଙ୍କ ଲୋଚନ ଅତଏବ ସେ ରବିଲୋଚନ ।୧୦୭।

ତାହାଙ୍କର ପରିଚ୍ଛେଦ ନାହିଁ ଅତଏବ ସେ ଅନନ୍ତ, ଅଗ୍ନିରୂପରେ ହବିରାଦି ଘୃତାଦି ଭୋଜନ କରନ୍ତି ବୋଲି ହୁତଭୁକ୍, ଅଚେତନ ପ୍ରକୃତିକୁ ଭୋଗ କରନ୍ତି ଏହି ନିମିତ୍ତ ଭୋକ୍ତା, ଭକ୍ତଗଣଙ୍କ ସୁଖ ଖଣ୍ଡନ କରନ୍ତି ଅତଏବ ସୁଖଦ, ବିଶ୍ୱପାଳନ ନିମିତ୍ତ ବାରମ୍ବାର ଜନ୍ମଗ୍ରହଣ କରିଅଛନ୍ତି ଏହି ନିମିତ୍ତ ଅନେକଜ, ହିରଣ୍ୟଗର୍ଭରୂପେ ଅଗ୍ରଜ, ଆପ୍ତକାମ ହେତୁରୁ ନିର୍ବେଦଶୂନ୍ୟ, ଅତଏବ ଅନିର୍ବିଣ୍ଣ; ସାଧୁଗଣଙ୍କଠାରେ ସର୍ବଦା କ୍ଷମା ପ୍ରଦର୍ଶନ କରନ୍ତି ବୋଲି ସେ ସଦାମର୍ଷୀ, ଲୋକବୃନ୍ଦ ତାହାଙ୍କୁ ଅନାଧାର

ଆଧାର ରୂପରେ ଅଧିଷ୍ଠାନ କରି ରହନ୍ତି ଅତଏବ ଲୋକାଧିଷ୍ଠାନ, ସ୍ୱରୂପ ଶକ୍ତି ବ୍ୟାପାର ଓ କାର୍ଯ୍ୟରେ ଅଦ୍ଭୁତ ହେତୁରୁ ଅଦ୍ଭୁତ । ୧୦୮ ।

ସେ କାଳରୂପୀ ଭଗବାନ ଅତଏବ ସନାତ୍; ବ୍ରହ୍ମାଦିଙ୍କ କାରଣ ଅତଏବ ସନାତନତମ; କର୍ଦମ ପ୍ରଜାପତିଙ୍କଠାରୁ ଦେବହୂତିଙ୍କ ଗର୍ଭରେ କପିଳରୂପେ ପ୍ରାଦୁର୍ଭୂତ ଅତଏବ କପିଳ ଅଥବା ବଡ଼ବାନଳର କପିଳବର୍ଣ୍ଣ ପରି ବର୍ଣ୍ଣବିଶିଷ୍ଟ ହେତୁରୁ କପିଳ, ବରାହ ଓ ସୂର୍ଯ୍ୟରୂପରେ ରଶ୍ମି ଦ୍ୱାରା ଜଳପାନ କରନ୍ତି ବୋଲି କପି, ଜଗତ୍ ତାହାଙ୍କଠାରେ ଲୀନ ହୁଏ ଅତଏବ ସେ ଅବ୍ୟୟ, ସେ ସ୍ୱସ୍ତି ଦାନ କରନ୍ତି ବୋଲି ସ୍ୱସ୍ତିଦ, ଅଭକ୍ତଗଣଙ୍କର ସ୍ୱସ୍ତି ଛେଦନ କରନ୍ତି ଅଥବା ଭକ୍ତମାନଙ୍କର ସ୍ୱସ୍ତି କରନ୍ତି ଏହି କାରଣରୁ ସେ ସ୍ୱସ୍ତିକୃତ୍ । ସେ କଲ୍ୟାଣରୂପ ଅତଏବ ସ୍ୱସ୍ତି, ସେ ପରମାନନ୍ଦ ଲକ୍ଷଣ ଆତ୍ମୀୟ ମଙ୍ଗଳରୂପକୁ ଭୋଗ କରନ୍ତି ଅତଏବ ସ୍ୱସ୍ତିଭୁକ୍, କଲ୍ୟାଣ ବିଷୟରେ ଅନୁକୂଳ ଅଥବା ଶୀଘ୍ର କଲ୍ୟାଣ ଦେବା ବିଷୟରେ ସମର୍ଥ ଅତଏବ ସ୍ୱସ୍ତି-ଦକ୍ଷିଣ । ୧୦୯ ।

କର୍ମରାଗ ଓ ପାପରୂପ ତ୍ରିବିଧ ରୌଦ୍ରଶୂନ୍ୟ ହେତୁରୁ ଅରୌଦ୍ର, ସେ ଶେଷରୂପରେ କୁଣ୍ଡଳୀ, ସମସ୍ତ ଲୋକରକ୍ଷା ନିମିତ୍ତ ମନସ୍ତତ୍ତ୍ୱାତ୍ମକ ସୁଦର୍ଶନାଖ୍ୟ ଚକ୍ରଧାରଣ କରିବା ହେତୁରୁ ଚକ୍ରୀ, ଯାହାଙ୍କର ପାଦ ବିକ୍ଷେପଣ ଓ ଶୌର୍ଯ୍ୟ ଅଶେଷ ରୂପରୁ ବିଲକ୍ଷଣ ସେ ବିକ୍ରମୀ, ତାହାଙ୍କର ଶ୍ରୁତି ସ୍ମୃତି ଲକ୍ଷଣ ଶାସନ ଅତଏବ ସେ ଉର୍ଜିତ ଶାସନ, ବାକ୍ୟସମୂହ ତାହାଙ୍କୁ ବର୍ଣ୍ଣନ କରିବାକୁ ଯାଇ ନିବୃତ୍ତ ହୁଅନ୍ତି ଅତଏବ ସେ ଶବ୍ଦାତିଗ, ବେଦସମୂହ ତାତ୍ପର୍ଯ୍ୟଦ୍ୱାରା ତାହାଙ୍କୁ କେବଳ କହନ୍ତି ବୋଲି ସେ ଶବ୍ଦସହ, ସଂସାରର ତାପ ନାଶ କରନ୍ତି ବୋଲି ଶିଶିର, ସେ ଭକ୍ତିମୁକ୍ତିପ୍ରଦାୟକ ଅତଏବ ଶର୍ବରୀକର । ୧୧୦ ।

ସେ କ୍ରୂର ନୁହନ୍ତି ବୋଲି ଅକ୍ରୂର, ସେ କର୍ମ ମନ ବଚନ ଓ ବପୁଦ୍ୱାରା ମନୋହର ସୁତରାଂ ପେଶଳ, ପ୍ରବୃଦ୍ଧଶକ୍ତି ଶୀଘ୍ରକାରୀ ଓ ସମର୍ଥ ଅଟନ୍ତି ବୋଲି ଦକ୍ଷ, ଗମନକାରୀ ଅଥବା ହନନକର୍ତ୍ତା ବୋଲି ଦକ୍ଷିଣ, ଯୋଗୀ ଅଥବା ଭାରଧାରକ ପୃଥିବ୍ୟାଦିମାନଙ୍କଠାରୁ ଶ୍ରେଷ୍ଠ ଅଟନ୍ତି ବୋଲି କ୍ଷମିଣାଂବର; ତାହାଙ୍କର ଜ୍ଞାନ ସର୍ବଦା ସର୍ବଗୋଚର ହେତୁରୁ ସେ ବିଦ୍ୱତ୍ତମ, ନିତ୍ୟମୁକ୍ତ ହେତୁରୁ ସଂସାର ଲକ୍ଷଣ ଭୟ ତାହାଙ୍କର ନାହିଁ ଅତଏବ ସେ ଅଭୀତଭୟ, ସେ ପୁଣ୍ୟ ଶ୍ରବଣ କୀର୍ତ୍ତନ । ୧୧୧ ।

ସଂସାରରୁ ଉତ୍ତୀର୍ଣ୍ଣ କରନ୍ତି ବୋଲି ଉତ୍ତାରଣ, ପାପସଂଞ୍ଚିତ ଦୁଷ୍କୃତ ବିନାଶ କରନ୍ତି ଅତଏବ ଦୁଷ୍କୃତିହା । ସ୍ୱୟଂ ପୁଣ୍ୟ କରନ୍ତି ଅଥବା ପୁଣ୍ୟ କରିବା ନିମିତ୍ତ କହନ୍ତି ବୋଲି ସେ ପୁଣ୍ୟ, ତାହାଙ୍କର ଧ୍ୟାନ ସ୍ତବନ ଓ କୀର୍ତ୍ତନଦ୍ୱାରା ସ୍ୱପ୍ନ ବ୍ୟର୍ଥସୂଚକ ଦୁଃସ୍ୱପ୍ନ ନଷ୍ଟ ହୁଏ ଅତଏବ ସେ ଦୁଃସ୍ୱପ୍ନ ନାଶନ, ମୁକ୍ତିଦାନଦ୍ୱାରା ବିବିଧ ସଂସାର ଗତି ହରଣ କରନ୍ତି ଅତଏବ ବୀରହା, ସତ୍ତ୍ୱଗୁଣକୁ ଅଧିଷ୍ଠାନ କରି ଜଗତ୍ତ୍ରୟକୁ ରକ୍ଷା କରନ୍ତି ବୋଲି ରକ୍ଷଣ, ବିଦ୍ୟା ବିନୟ ବୃଦ୍ଧି ନିମିତ୍ତ ବର୍ତ୍ତମାନ ଅତଏବ ସନ୍ତ, ପ୍ରାଣୀଗଣଙ୍କୁ ପ୍ରାଣରୂପରେ ଜୀବିତ ରଖନ୍ତି ଅତଏବ ଜୀବନ, ସେ ବିଶ୍ୱକୁ ବ୍ୟାପି ରହିଅଛନ୍ତି ଅତଏବ ପର୍ଯ୍ୟବସ୍ଥିତ । ୧୧୨ ।

ଅନନ୍ତାଦି ରୂପରେ ଅଥବା ବିଶ୍ୱପ୍ରପଞ୍ଚରୂପରେ ଅବସ୍ଥାନ କରିଥିବା ହେତୁରୁ ସେ ଅନନ୍ତରୂପ, ଅପରିମିତ ପରାଶକ୍ତି ହେତୁରୁ ଅନନ୍ତଶ୍ରୀ, ସେ ଜିତମନ୍ୟୁ, ସେ ଭୟାପହ, କର୍ମାନୁରୂପ ଫଳଦାନ କରନ୍ତି ଅତଏବ ନ୍ୟାୟସମବେତ ବୋଲି ଚତୁରସ୍ର, ସେ ଗମ୍ଭୀରଚିତ୍ତ ଏହି ନିମିତ୍ତ ସେ ଗଭୀରାତ୍ମା, ବିବିଧ ଫଳ ଦାନ କରନ୍ତି ଏହି ନିମିତ୍ତ ବିଦିଶ, ବିଶେଷ ରୂପେ ଆଦେଶ କରନ୍ତି ଏହି ନିମିତ୍ତ ବ୍ୟାଦିଶ, ବେଦରୂପରେ ଆଦେଶକର୍ତ୍ତା ଅତଏବ ଦିଶ । ୧୧୩ । ସେ ସର୍ବକାରଣ ହେତୁରୁ ଅନାଦି, ପୃଥିବୀ ଓ ଭୂର୍ଲୋକର ଶୋଭା ବୋଲି ସେ ଭୂର୍ଭୁବୋଲକ୍ଷ୍ମୀ ନାମ ଧାରଣ କରିଅଛନ୍ତି । ବିବିଧ ଗତି ହେତୁରୁ ସେ ସୁବୀର, ସେ ରୁଚିରାଙ୍ଗଦ, ତାହାଙ୍କଠାରୁ ଜନ୍ତୁମାନଙ୍କର ପ୍ରାଦୁର୍ଭାବ ହୋଇଅଛି ଅତଏବ ସେ ଜନନ, ସେ ଜନମାନଙ୍କର ଜନ୍ମର ଆଦିକାରଣ ଅତଏବ ଜନଜନ୍ମାଦି ନାମଧାରୀ ହୋଇଅଛନ୍ତି । ସେ ଭୟହେତୁ ଅତଏବ ଭୀମ, ସେ ଭୟଙ୍କର ପରାକ୍ରମଶାଳୀ ଅତଏବ ଭୀମପରାକ୍ରମ । ୧୧୪ ।

ଭୌତିକାଶ୍ରୟ ମହାଭୂତସମୂହର ଆଧାର ଅତଏବ ଆଧାରନିଲୟ, ତାହାଙ୍କର କେହି ଧାରକ ନାହାନ୍ତି ଅତଏବ ସେ ଅଧାତା, ମୁକୁଳ ପୁଷ୍ପର ବିକାଶ ସଦୃଶ ପ୍ରପଞ୍ଚ ରୂପରେ ବିକାଶ ହୋଇଥିବାରୁ ସେ ପୁଷ୍ପହାସ । ସେ ପ୍ରକୃଷ୍ଟ ଜାଗରଣ ବିଶିଷ୍ଟ ଅତଏବ ପ୍ରଜାଗର, ସମସ୍ତଙ୍କ ଉପରେ ବର୍ତ୍ତମାନ ହେତୁରୁ ସେ ଊର୍ଦ୍ଧ୍ୱଗ, ସଜ୍ଜନମାନଙ୍କ କର୍ମମାନଙ୍କୁ ସତ୍ପଥରେ ଆଚରଣ କରନ୍ତି ବୋଲି ସେ ସତ୍ପଥାଚାର, ମୃତ ପରୀକ୍ଷିତ ପ୍ରଭୃତିଙ୍କୁ ପ୍ରାଣ ଦାନ କରିଥିବା ହେତୁରୁ ପ୍ରାଣଦ, ପରମାତ୍ମା ବାଚକ, ପରମାତ୍ମା ବାଚକ

ଓଁକାର ତତ୍‌ସହିତ ଅଭେଦୋପଚାର ହେତୁରୁ ସେ ପ୍ରଣବ, ଭକ୍ତ-ଗଣଙ୍କ ସହିତ ବ୍ୟବହାର କରନ୍ତି ଏହି ନିମିତ୍ତ ସେ ପଣ । ୧୧୫ ।

ସ୍ୱୟଂ ପ୍ରମାର ପ୍ରମାଣ ହେତୁରୁ ପ୍ରମାଣ, ଜୀବର ଆଶ୍ରୟ ଏହି ନିମିତ୍ତ ସେ ପ୍ରାଣନିଳୟ, ପ୍ରାଣମାନଙ୍କୁ ଅନ୍ନ ରୂପରେ ପୋଷଣ କରନ୍ତି ବୋଲି ପ୍ରାଣଭୃତ୍; ପ୍ରାଣାଖ୍ୟ ପବନଦ୍ୱାରା ପ୍ରାଣିମାନଙ୍କୁ ଜୀବିତ କରନ୍ତି ଅତଏବ ସେ ପ୍ରାଣଜୀବନ ଅଟନ୍ତି । ସେ ଅବାଧିତ ସତ୍ତାରୂପ ଅତଏବ ତତ୍ତ୍ୱ, ସ୍ୱରୂପକୁ ଯଥାବତ୍ ଜାଣିବା ହେତୁରୁ ସେ ତତ୍ତ୍ୱବିତ୍, ସେ ଏକାତ୍ମ, ଜାୟତେ ଅସ୍ତି ବର୍ଦ୍ଧତେ ଇତ୍ୟାଦି ଷଡ୍‌ଭାବ ବିକାରକୁ ଅତିକ୍ରାନ୍ତ କରି ଗମନ କରନ୍ତି ବୋଲି ସେ ଜନ୍ମ ମୃତ୍ୟୁ ଜରାତିଗ ନାମଧାରୀ ହୋଇଅଛନ୍ତି । ୧୧୬ । ଭୂର୍ଲୋକ, ଭୁବର୍ଲୋକ ଓ ସ୍ୱର୍ଗଲୋକର କଳ୍ପବୃକ୍ଷ ସଦୃଶ ଅଭୀଷ୍ଟ ଫଳପ୍ରଦ ଅଟନ୍ତି ଅତଏବ ସେ ଭୂର୍ଭୁବଃସ୍ୱସ୍ତରୁ, ଭକ୍ତଗଣଙ୍କୁ ସଂସାରସାଗରରୁ ତରଣ କରନ୍ତି ବୋଲି ସେ ତାର, ସର୍ବଲୋକର ଜନକ ବୋଲି ସେ ପିତା, ସେ ପିତାମହଙ୍କ ପିତା ଅତଏବ ପ୍ରପିତାମହ ।

ସେ ଯଜ୍ଞରୂପରେ ଯଜ୍ଞ, ଯଜ୍ଞମାନଙ୍କର ସ୍ୱାମୀ ବୋଲି ଯଜ୍ଞପତି, ଯଜମାନରୂପରେ ଯଜ୍ୱା, ବରାହାବତାରରେ ଯଜ୍ଞମାନେ ତାହାଙ୍କର ଅଙ୍ଗ ହୋଇଥିଲେ ବୋଲି ସେ ଯଜ୍ଞାଙ୍ଗ, ଫଳହେତୁଭୂତ ଯଜ୍ଞମାନଙ୍କୁ ସେ ବାହନ କରନ୍ତି ଅତଏବ ସେ ଯଜ୍ଞବାହନ, ଯଜ୍ଞର ରକ୍ଷିତା ହେତୁରୁ ସେ ଯଜ୍ଞଭୃତ୍; ଜଗଦାଦିରେ ଯଜ୍ଞ କରନ୍ତି ଅଥବା ଜଗଦନ୍ତରେ ଯଜ୍ଞ ନଷ୍ଟ କରନ୍ତି ବୋଲି ସେ ଯଜ୍ଞକୃତ୍, ଯଜ୍ଞସମ ଆରାଧ୍ୟାତ୍ମା ମଧ୍ୟରେ ପ୍ରଧାନ ବୋଲି ସେ ଯଜ୍ଞୀ, ସେ ଯଜ୍ଞଭୁକ୍ ଅଟନ୍ତି; ତାହାଙ୍କ ପ୍ରାପ୍ତିଦ୍ୱାରା ଯଜ୍ଞ ସାଧନ ହୁଏ ଅତଏବ ସେ ଯଜ୍ଞସାଧନ, ଯଜ୍ଞର ଅନ୍ତରେ ଫଳପ୍ରାପ୍ତି କରନ୍ତି ବୋଲି ସେ ଯଜ୍ଞାନ୍ତକୃତ୍, ଜ୍ଞାନଯଜ୍ଞରୂପରେ ସେ ଯଜ୍ଞଗୁହ୍ୟ, ଭୂତସମୂହଙ୍କୁ ଭକ୍ଷଣ କରନ୍ତି ଅତଏବ ସେ ଅନ୍ନ, ସେ ଅନ୍ନଭୋକ୍ତା ଅତଏବ ଅନ୍ନାଦ । ୧୧୮ ।

ଆତ୍ମା କେବଳ ତାହାଙ୍କର ଯୋନି ଅର୍ଥାତ୍ ଉପାଦାନକାରଣ ଏହି ନିମିତ୍ତ ସେ ଆତ୍ମଯୋନି, ସେ ସ୍ୱୟଂ ଜନ୍ମଗ୍ରହଣ କରନ୍ତି ଅର୍ଥାତ୍ ତାହାଙ୍କର ସେହି କେବଳ ନିମିତ୍ତକାରଣ ବୋଲି ସ୍ୱୟଂଜାତ ନାମଧାରୀ ଅଟନ୍ତି । ବରାହାବତାରରେ ଧରଣୀକୁ ବିଶେଷରୂପେ ଖନନ କରି ହିରଣ୍ୟାକ୍ଷକୁ ବିନାଶ କରିଥିଲେ ବୋଲି ବୈଖାନ, ସେ ସାମଗାୟନ ଓ ଦେବକୀନନ୍ଦନ ଅଟନ୍ତି । ସର୍ବଲୋକର ସ୍ରଷ୍ଟା ବୋଲି ସେ ସ୍ରଷ୍ଟା, ଗ୍ରାମା-

ବତାରରେ ସେ ଷିଷ୍ଣଶ ଅଟନ୍ତି, ତାହାଙ୍କର କୀର୍ତ୍ତନ, ପୂଜନ, ଧ୍ୟାନ, ସ୍ମରଣ ମାତ୍ରରେ ପାପରାଶି ବିନଷ୍ଟ ହୁଏ ବୋଲି ସେ ପାପନାଶନ । ୧୧୯ ।

ଭୂତାଦି ଅହଂକାରାତ୍ମକ ପାଞ୍ଚଜନ୍ୟ ନାମକ ଶଙ୍ଖକୁ ଧାରଣ କରିବା ହେତୁରୁ ସେ ଶଙ୍ଖଭୃତ୍ । ବିଦ୍ୟାମୟ ନନ୍ଦକ ନାମ ନିଜ ଖଡ୍‌ଗଧାରୀ ବୋଲି ସେ ନନ୍ଦକୀ, ମନସ୍ତତ୍ତ୍ୱାତ୍ମକ ସୁଦର୍ଶନ ଚକ୍ରଧାରୀ ଅଟନ୍ତି ବୋଲି ସେ ଚକ୍ରୀ, ଇନ୍ଦ୍ରିୟାଦି ଅହଂକାରାତ୍ମକ ଶାର୍ଙ୍ଗନାମକ ଧନୁର୍ଦ୍ଧାରୀ ହେତୁରୁ ସେ ଶାର୍ଙ୍ଗଧନ୍ୱା, ବୁଦ୍ଧିତତ୍ତ୍ୱାତ୍ମିକା କୌମଦକୀଗଦା ବହନ କରିଥିବା ଯୋଗୁଁ ସେ ଗଦାଧର ନାମଧାରୀ ଅଟନ୍ତି । ପ୍ରସିଦ୍ଧ ଆୟୁଧବିଶିଷ୍ଟ ହେତୁରୁ ଅଶକ୍ୟ କ୍ଷୋଭଣ ଅତଏବ ଅକ୍ଷୋଭ୍ୟ, ସେ ରଥାଙ୍ଗପାଣି ଅଟନ୍ତି । ଏତିକି କେବଳ ଏହାଙ୍କର ଆୟୁଧ ବୋଲି ନିୟମ କରାଯାଇପାରେ ନାହିଁ । କିନ୍ତୁ ସମସ୍ତ ଆୟୁଧବିଶିଷ୍ଟ ବୋଲି ସେ ସର୍ବପ୍ରହରଣାୟୁଧ । ଓଁ ନମଇତି । ୧୨୦ ।

କୀର୍ତ୍ତିମାନ୍ ମହାତ୍ମା କେଶବଙ୍କର ଏହି ଦିବ୍ୟ ସହସ୍ର ନାମ ଅଶେଷ-ରୂପରେ କୀର୍ତ୍ତିତ ହେଲା । ୧୨୧ । ଯେଉଁ ବ୍ୟକ୍ତି ନିୟତ ଏହା କୀର୍ତ୍ତନ ଅଥବା ଶ୍ରବଣ କରନ୍ତି, ସେହି ମାନବ ଇହଲୋକରେ କିମ୍ବା ପରଲୋକରେ କିଛି ମାତ୍ର ଅଶୁଭପ୍ରାପ୍ତ ହେବେ ନାହିଁ । ୧୨୨ । ବ୍ରାହ୍ମଣ ଏହା ପାଠକଲେ ବେଦାନ୍ତରେ ପାରଦର୍ଶୀ ହୁଅନ୍ତି, ବୈଶ୍ୟ ଧନସମ୍ପନ୍ନ ହୁଅନ୍ତି, ଶୂଦ୍ର ସୁଖଲାଭ କରନ୍ତି । ୧୨୩ । ଧର୍ମାର୍ଥୀ ମାନବ ଧର୍ମଲାଭ କରନ୍ତି, ଅର୍ଥାର୍ଥୀ-ବ୍ୟକ୍ତି ଅର୍ଥଲାଭ କରନ୍ତି, କାମୀଜନ କାମସମୂହ ପ୍ରାପ୍ତ ହୁଅନ୍ତି, ପ୍ରଜାର୍ଥୀ-ବ୍ୟକ୍ତି ପ୍ରଜାଲାଭ କରନ୍ତି । ୧୨୪ । ଯେ ଭକ୍ତିମାନ୍ ସର୍ବଦା ଉତ୍ଥାନ ପରେ ଶୁଚି ଓ ତଦ୍‌ଗତଚିତ୍ତ ହୋଇ ବାସୁଦେବଙ୍କର ଏହି ସହସ୍ର ନାମ କୀର୍ତ୍ତନ କରନ୍ତି (୧୨୫), ସେ ବିପୁଳ ଯଶଲାଭ କରନ୍ତି ଓ ଜ୍ଞାତିଗଣଙ୍କ ନିକଟରେ ପ୍ରଧାନତା, ଅଚଳାଶ୍ରୀ ଏବଂ ଅନୁତ୍ତମ ଶ୍ରେୟଃ ପ୍ରାପ୍ତ ହୁଅନ୍ତି ।୧୨୬। ସେ କୌଣସି ସ୍ଥାନରେ ଭୟପ୍ରାପ୍ତ ହୁଅନ୍ତି ନାହିଁ, ବୀର୍ଯ୍ୟ ଓ ତେଜ ଲାଭ କରନ୍ତି; ରୋଗଶୂନ୍ୟ, ଦ୍ୟୁତିମାନ୍, ଏବଂ ବଳ, ରୂପ ଓ ଗୁଣାନ୍ୱିତ ହୁଅନ୍ତି । ୧୨୭ ।

ରୋଗାର୍ତ୍ତ ବ୍ୟକ୍ତି ଏହା ଶ୍ରବଣ କଲେ ରୋଗରୁ ମୁକ୍ତ ହୁଅନ୍ତି, ବଦ୍ଧ ବ୍ୟକ୍ତି କାରାଗାରରୁ ମୁକ୍ତ ହୁଅନ୍ତି, ଭୀତବ୍ୟକ୍ତି ଭୟରୁ ଏବଂ ଆପଦ୍‌ଗ୍ରସ୍ତ ମାନବ ଆପଦରୁ ମୁକ୍ତ ହୁଅନ୍ତି । ୧୨୮ । ମନୁଷ୍ୟ ଭକ୍ତି ସମନ୍ୱିତ ହୋଇ ନିରନ୍ତର ପୁରୁଷୋତ୍ତମଙ୍କୁ ଏହି ସହସ୍ର ନାମଦ୍ୱାରା ସ୍ତବ କଲେ

ଅବଲମ୍ବନରେ ଦୁର୍ଗସମୂହରୁ ଉତ୍ତୀର୍ଣ୍ଣ ହୁଅନ୍ତି । ୧୨୯ । ପୁରୁଷ ବାସୁଦେବଙ୍କୁ ଆଶ୍ରୟ କଲେ ଏବଂ ବାସୁଦେବ ପରାୟଣ ହେଲେ ବିଶୁଦ୍ଧ ଏବଂ ସର୍ବପାପରୁ ବିମୁକ୍ତ ହୋଇ ସନାତନ ବ୍ରହ୍ମପଦକୁ ପ୍ରାପ୍ତ ହୁଅନ୍ତି । ୧୩୦ । ବାସୁଦେବ ଭକ୍ତଗଣଙ୍କର କଦାପି ଅଶୁଭ ହୁଏ ନାହିଁ ଏବଂ ସେମାନଙ୍କର ଜନ୍ମ, ମୃତ୍ୟୁ, ଜରା ଓ ବ୍ୟାଧିଭୟ ଜନ୍ମେ ନାହିଁ । ୧୩୧ ।

ଯେଉଁ ବ୍ୟକ୍ତି ଶ୍ରଦ୍ଧା ଓ ଭକ୍ତିସମନ୍ୱିତ ହୋଇ ଏହି ସ୍ତବକୁ ଅଧ୍ୟୟନ କରନ୍ତି, ସେ ଆତ୍ମସୁଖ, କ୍ଷମା, ଶ୍ରୀ, ଧୃତି, ସ୍ମୃତି ଓ କୀର୍ତ୍ତିଯୁକ୍ତ ହୁଅନ୍ତି । ୧୩୨ । ପୁରୁଷୋତ୍ତମଙ୍କ ଠାରେ ଭକ୍ତିଯୁକ୍ତ କୃତପୁଣ୍ୟ ପୁରୁଷ-ଗଣଙ୍କର କ୍ରୋଧ, ମାତ୍ସର୍ଯ୍ୟ, ଲୋଭ ଓ ଅଶୁଭ ବୁଦ୍ଧି ହୁଏ ନାହିଁ । ୧୩୩ । ସ୍ୱର୍ଗ, ଚନ୍ଦ୍ର, ସୂର୍ଯ୍ୟ ଓ ନକ୍ଷତ୍ରଯୁକ୍ତ ଆକାଶମଣ୍ଡଳ, ଦିଙ୍ମଣ୍ଡଳ ଓ ସାଗର ସମୂହ ମହାତ୍ମା ବାସୁଦେବଙ୍କ ବୀର୍ଯ୍ୟଦ୍ୱାରା ବିଧୃତ ହୋଇଅଛି । ୧୩୪ । ସୁର, ଅସୁର, ଗନ୍ଧର୍ବ, ଯକ୍ଷ, ରାକ୍ଷସ, ଉରଗ ସହିତ ସଚରାଚର ଜଗତ୍ ଶ୍ରୀକୃଷ୍ଣଙ୍କ ବଶବର୍ତ୍ତୀ ହୋଇ ରହିଅଛି । ୧୩୫ ।

ଇନ୍ଦ୍ରିୟଗଣ, ମନ, ବୁଦ୍ଧି, ସତ୍ତ୍ୱ, ତେଜ, ବଳ, ଧୃତି, ଶରୀର ଓ ଜୀବସମୂହ ବାସୁଦେବମୟ ଅଟନ୍ତି ବୋଲି ପଣ୍ଡିତଗଣ କହନ୍ତି । ୧୩୬ । ସମସ୍ତ ଶାସ୍ତ୍ର ଅପେକ୍ଷା ଆଚାର ପ୍ରଥମ ରୂପେ ପରିକଳ୍ପିତ ହୁଏ, ଆଚାରରୁ ଧର୍ମର ଉତ୍ପତ୍ତି ହୁଏ, ଅଚ୍ୟୁତ ବାସୁଦେବ ଧର୍ମର ପ୍ରଭୁ ଅଟନ୍ତି । ୧୩୭ ।

ଋଷିଗଣ, ପିତୃଗଣ, ଦେବଗଣ, ମହାଭୂତଗଣ, ଧାତୁନିଚୟ ଏବଂ ସ୍ଥାବର ଜଙ୍ଗମାତ୍ମକ ଏହି ଜଗତ୍ ନାରାୟଣଙ୍କଠାରୁ ଉତ୍ପନ୍ନ ।୧୩୮। ଯୋଗ, ଜ୍ଞାନ, ସାଂଖ୍ୟ ଯୋଗ, ବିଦ୍ୟାସମୂହ, ଶିଳ୍ପକର୍ମ, ବେଦସମୂହ, ଶାସ୍ତ୍ରସମୂହ ଓ ବିଜ୍ଞାନ ଏହି ସମସ୍ତ ଜନାର୍ଦ୍ଦନଙ୍କଠାରୁ ଆବିର୍ଭୂତ (୧୩୯); ଭୂତାତ୍ମା ଅବ୍ୟୟ, ଏକମାତ୍ର ବିଷ୍ଣୁ ମହଦ୍ଭୂତ ଏବଂ ସେ ଅନେକରୂପରେ ପୃଥଗ୍‌ଭୂତ, ସେହି ବିଶ୍ୱଭୁକ୍ ତ୍ରିଭୁବନ ବ୍ୟାପି ଭୋଗ କରୁଅଛନ୍ତି । ୧୪୦ । ଯେଉଁ ମାନବ ଶ୍ରେୟ ଓ ସୁଖଲାଭ କରିବାକୁ ଇଚ୍ଛା କରନ୍ତି, ସେ ବେଦବ୍ୟାସ କର୍ତ୍ତୃକ କୀର୍ତ୍ତିତ ଭଗବାନ୍ ବିଷ୍ଣୁଙ୍କର ଏହି ସ୍ତୋତ୍ର ପାଠ କରିବେ । ୧୪୧ । ଜଗତର ଉତ୍ପତ୍ତି ଓ ପ୍ରଳୟର କାରଣ ଜନ୍ମବିହୀନ ପୁଷ୍କରଲୋଚନ ବିଶ୍ୱେଶ୍ୱର ଦେବଙ୍କୁ ଯେଉଁମାନେ ଭଜନ କରନ୍ତି, ସେମାନେ କଦାପି ପରାଭବ ପ୍ରାପ୍ତ ହୁଅନ୍ତି ନାହିଁ । ୧୪୨ ।

---

# ଅଧ୍ୟାୟ—୧୫୦

ଯୁଧିଷ୍ଠିର କହିଲେ—ହେ ସର୍ବଶାସ୍ତ୍ରବିଶାରଦ ମହାପ୍ରାଜ୍ଞ ପିତାମହ ! କୀଦୃଶ ଜପଯୋଗ୍ୟ ମନ୍ତ୍ର ନିତ୍ୟ ଜପ କଲେ ଜପକର୍ତ୍ତାଙ୍କର ଉତ୍କୃଷ୍ଟ 'ଧର୍ମଫଳ ହୁଏ ? ୧ । ପ୍ରସ୍ଥାନକାଳରେ, ପ୍ରବେଶକାଳରେ, କର୍ମ ଆରମ୍ଭରେ, ଦୈବ ଅଥବା ଶ୍ରାଦ୍ଧକାଳରେ କେଉଁ ଜପଯୋଗ୍ୟ ମନ୍ତ୍ର କର୍ମ ସାଧନ କରେ ? ୨ । ଯାହା ଜପକଲେ ଶାନ୍ତି, ପୁଷ୍ଟି, ରକ୍ଷା, ଶତ୍ରୁହାନି ଓ ଭୟ ବିନାଶ ହୁଏ ଏବଂ ଯାହା ବେଦସଦୃଶ ଆପଣ ତାହା କହିବା ହେଉନ୍ତୁ । ୩ । ଭୀଷ୍ମ କହିଲେ, ହେ ନୃପ ! ତୁମ୍ଭେ ଏକଚିତ୍ତ ହୋଇ ବ୍ୟାସଙ୍କଦ୍ୱାରା କଥିତ ଏହି ଦିବ୍ୟ-ମନ୍ତ୍ରକୁ ଶ୍ରବଣ କର । ଏହା ସାବିତ୍ରୀ ଇଷ୍ଟସିଦ୍ଧ୍ୟର୍ଥ ଜପ କରିଥିଲେ ଏବଂ ଏହା ପାଠକଲେ ତତ୍‌କ୍ଷଣାତ୍ ପାପ ବିମୋଚନ ହୁଏ । ୪ । ହେ ଅନଘ ! ପାଣ୍ଡବଶ୍ରେଷ୍ଠ ଯୁଧିଷ୍ଠିର ! ଆମ୍ଭେ ସମସ୍ତ ମନ୍ତ୍ରବିଧିକୁ କୀର୍ତ୍ତନ କରୁଅଛୁଁ, ତୁମ୍ଭେ ଶ୍ରବଣ କର, ଯାହା ଶ୍ରବଣ କଲେ ମନୁଷ୍ୟ ସମସ୍ତ ପାପରୁ ମୁକ୍ତ ହୁଅନ୍ତି । ୫ ।

ହେ ଧର୍ମଜ୍ଞ ନୃପବର ! ରାତ୍ରି ଓ ଦିବସରେ ମନୁଷ୍ୟ ଯାହାଦ୍ୱାରା ପାପନିଚୟରେ ଲିପ୍ତ ହୁଅନ୍ତି ନାହିଁ ଆମ୍ଭେ ତୁମ୍ଭ ନିକଟରେ ତାହା କୀର୍ତ୍ତନ କରୁଅଛୁ, ତୁମ୍ଭେ ଏକମନା ହୋଇ ଶ୍ରବଣ କର । ୬ । ହେ ନୃପନନ୍ଦନ ! ପୁରୁଷ ଯାହା ଶ୍ରବଣ କଲେ ଆୟୁଷ୍ମାନ୍ ହୁଅନ୍ତି ଏବଂ ଉତ୍ତମ ରୂପେ ସିଦ୍ଧାର୍ଥ ହୋଇ ଇହଲୋକ ଓ ପରଲୋକରେ ପ୍ରମୁଦିତ ହୁଅନ୍ତି (୭) ହେ ରାଜନ୍ ! ପୂର୍ବକାଳରେ କ୍ଷତ୍ରିୟ ଧର୍ମନିଷ୍ଠ ସତ୍ୟବ୍ରତପରାୟଣ ରାଜର୍ଷିଶ୍ରେଷ୍ଠଗଣ କର୍ତ୍ତୃକ ସର୍ବଦା ଏହି ମନ୍ତ୍ର ସେବିତ; ହେ ଭରତଶ୍ରେଷ୍ଠ ! ଯେଉଁ ନୃପବୃନ୍ଦ ସର୍ବଦା ସଂଯତ ହୋଇ ଅବ୍ୟଗ୍ର ଭାବରେ ପ୍ରତ୍ୟହ ଏହି ମନ୍ତ୍ର ଜପ କରନ୍ତି, ସେମାନେ ଅତି ଉତ୍କୃଷ୍ଟ ଶ୍ରୀ ଲାଭ କରନ୍ତି । ୯ । ମହାବ୍ରତ ବଶିଷ୍ଠଙ୍କୁ ନମସ୍କାର, ବେଦନିଧି ପରାଶରଙ୍କୁ ପ୍ରଣାମପୂର୍ବକ ମହୋରଗ ଅନନ୍ତ ଦେବଙ୍କୁ ନମସ୍କାର ଏବଂ ଇହଲୋକରେ ଅକ୍ଷୟ ସିଦ୍ଧସମୂହଙ୍କୁ ନମସ୍କାର । ୧୦ । ଋଷିଗଣଙ୍କୁ ନମସ୍କାର, ଶ୍ରେଷ୍ଠ ସମୂହର ଶ୍ରେଷ୍ଠ, ଦେବଗଣଙ୍କ ଦେବ, ବରଣୀୟମାନଙ୍କ ବରଦ, ଶିବ ସ୍ୱରୂପ ସହସ୍ରଶୀର୍ଷ ସହସ୍ରନାମ ଜନାର୍ଦ୍ଦନଙ୍କୁ ନମସ୍କାର । ୧୧ ।

ଅଜ, ଏକପାଦ, ଅହିର୍ବୁଧ୍ନ୍ୟ, ପିନାକୀ, ଅପରାଜିତ, ଋତ, ପିତୃ-ରୂପ, ତ୍ର୍ୟମ୍ବକ, ସୁରେଶ୍ୱର, ବୃଷାକପି, ଶମ୍ଭୁ, ହବନ ଈଶ୍ୱର ଏହି ନାମ

ସମୂହରେ ତ୍ରିଭୁବନେଶ୍ୱର ଏକାଦଶରୁଦ୍ର ପ୍ରଥିତ ହୋଇଅଛନ୍ତି । ଶତରୁଦ୍ର ମଧ୍ୟରେ ଏହି ସବୁ ମହାତ୍ମା ରୁଦ୍ରଗଣଙ୍କ ଶତନାମ କୀର୍ତ୍ତିତ ହୋଇଅଛି ।୧୩। ଅଂଶ, ଭଗ, ମିତ୍ର, ଜଳେଶ୍ୱର ବରୁଣ, ଧାତା, ଅର୍ଯ୍ୟମା, ଜୟନ୍ତ, ଭାସ୍କର (୧୪), ତ୍ୱଷ୍ଟା, ପୂଷା, ଇନ୍ଦ୍ର ଓ ବିଷ୍ଣୁ ଏହି ଦ୍ୱାଦଶ ଆଦିତ୍ୟ କଶ୍ୟପଙ୍କ ସନ୍ତାନ ବୋଲି ବିଖ୍ୟାତ । ୧୫ । ଧର, ଧ୍ରୁବ, ସୋମ, ସାବିତ୍ର, ଅନିଳ, ଅନଳ, ପ୍ରତ୍ୟୁଷ, ପ୍ରଭାସ ଏହିମାନେ ଅଷ୍ଟବସୁ ବୋଲି ପ୍ରକୀର୍ତ୍ତିତ । ୧୬ । ନାସତ୍ୟ ଓ ଦସ୍ର ଏହି ଦୁହେଁ ଅଶ୍ୱିନୀକୁମାର ବୋଲି ବିଖ୍ୟାତ, ଏହି ଦୁହେଁ ମାର୍ତ୍ତଣ୍ଡ ଅର୍ଥାତ୍ ସୂର୍ଯ୍ୟଦେବଙ୍କ ଆତ୍ମଜ, ସଂଜ୍ଞାଙ୍କ ନାସାରୁ ବିନିର୍ଗତ ହୋଇ-ଅଛନ୍ତି । ୧୭ ।

ଅତଃପର ଲୋକ ସମୂହର କର୍ମସାକ୍ଷୀ, ଯଜ୍ଞ, ଦାନ ଓ ସୁକୃତ-କାର୍ଯ୍ୟବେତ୍ତା, ସର୍ବଭୂତରେ ଅଦୃଶ୍ୟ ଥିଲେ ସୁଦ୍ଧା ଯେଉଁ ସମସ୍ତ ତ୍ରିଦଶେଶ୍ୱରଗଣ ସମସ୍ତ ଶୁଭାଶୁଭ କର୍ମ ଅବଲୋକନ କରନ୍ତି, ସେହି ମୃତ୍ୟୁ, କାଳ, ବିଶ୍ୱଦେବଗଣ, ପିତୃଗଣ, ମୂର୍ତ୍ତିମାନ୍ ତପୋଧନଗଣ, ତପସ୍ୟା ଓ ମୋକ୍ଷପରାୟଣ ଶୁଚିସ୍ମିତ ସିଦ୍ଧ ମୁନିଗଣ, ଯେଉଁମାନେ କୀର୍ତ୍ତନକାରୀ ନର-ଗଣଙ୍କୁ ଶୁଭ ସମ୍ପ୍ରଦାନ କରନ୍ତି (୨୧), ଯେଉଁମାନେ ଦିବ୍ୟତେଜଃ ପ୍ରଭାବ-ରେ ପ୍ରଜାପତି ବିନିର୍ମିତ ଏହି ଲୋକସମୂହରେ ବସତି କରନ୍ତି, ଯେଉଁମାନେ ସର୍ବଲୋକରେ ସମସ୍ତ କର୍ମରେ ପ୍ରବୃତ୍ତ ହୋଇଥାଆନ୍ତି, ଯେଉଁମାନେ ପ୍ରାଣ-ସମୂହର ଈଶ୍ୱର, ଏହି ସମସ୍ତ କୀର୍ତ୍ତନ କଲେ ପ୍ରଭୂତ ମାନବ ନିଶ୍ଚିତ ବିପୁଳ ଧର୍ମାର୍ଥ କାମଦ୍ୱାରା ସମନ୍ୱିତ ହୁଅନ୍ତି ଏବଂ ବିଶ୍ୱେଶ୍ୱର କୃତ ଶୁଭ ଲୋକସମୂହ ପ୍ରାପ୍ତ ହୁଅନ୍ତି । ଏହି ତ୍ରୟସ୍ତ୍ରିଂଶତ୍ ଦେବଗଣ ସମସ୍ତ ଭୂତ-ଗଣଙ୍କ ଈଶ୍ୱର । ୨୪ ।

ମହାକାୟ, ନନ୍ଦୀଶ୍ୱର, ଗ୍ରାମଣୀ, ବୃଷଭଧ୍ୱଜ, ଗଣେଶ୍ୱର ଓ ବିନାୟକ ସମସ୍ତ ଲୋକରେ ଈଶ୍ୱର, ସୌମ୍ୟଗଣ, ରୌଦ୍ରଗଣ, ଯୋଗଭୂତ-ଗଣ, ଜ୍ୟୋତିସମୂହ, ନଦୀବୃନ୍ଦ, ଆକାଶ ଓ ପତଗେଶ୍ୱର ସୁପର୍ଣ୍ଣ (୨୬), ପୃଥିବୀସ୍ଥ ସମସ୍ତ ସିଦ୍ଧ ତାପସ ସ୍ଥାବର ଓ ଜଙ୍ଗମସମୂହ, ହିମାଳୟ ଓ ଶୈଳନିଚୟ, ମହାର୍ଣ୍ଣବ ଚତୁଷ୍ଟୟ (୨୭), ହରସଦୃଶ ପରାକ୍ରମଶାଳୀ ଶିବଙ୍କ ଅନୁଚରଗଣ, ଦେବଶ୍ରେଷ୍ଠ ବିଷ୍ଣୁ ଏବଂ ଅମ୍ବିକାଙ୍କ ସନ୍ତତି ସ୍କନ୍ଦ (୨୮), ଏହିସବୁ ଦେବଗଣଙ୍କୁ ପ୍ରଣତ ହୋଇ କୀର୍ତ୍ତନ କଲେ ମାନବ ସର୍ବପାପରୁ ବିମୁକ୍ତ ହୁଅନ୍ତି ।

ଅତଃପର ମାନବୀୟ ଋଷିସତ୍ତମଗଣଙ୍କ ନାମ କୀର୍ତ୍ତନ କରୁଅଛୁ ।୨୯। ଯବକ୍ରୀତ, ରୈଭ୍ୟ, ଅର୍ବାବସୁ, ପରାବସୁ , ଔଷିଜ, କକ୍ଷୀବାନ୍, ଅଙ୍ଗିରାଙ୍କ ପୁତ୍ରବଳ (୩୦) ମେଧାତିଥି ଓ ତାହାଙ୍କର ପୁତ୍ର କଣ୍ୱଋଷି, ବର୍ହିଷଦ, ଏହି-ସମସ୍ତେ ବ୍ରହ୍ମତେଜୋମୟ ଏବଂ ଲୋକଭାବନ ବୋଲି ପରିକୀର୍ତ୍ତିତ । ୩୧ । ଏହି ସମସ୍ତ ରୁଦ୍ର, ଅନଳ ଓ ବସୁ ସଦୃଶ ପ୍ରଭାବଶାଳୀ ମୁନିଗଣ ଶୁଭଲାଭ କରନ୍ତି, ଏହିମାନେ ଭୂର୍ଲୋକରେ ଶୁଭ କର୍ମ କରି ଦ୍ୟୁଲୋକରେ ଦେବ-ଗଣଙ୍କ ସହିତ ଦିବ୍ୟଲୀଳା କରନ୍ତି । ୩୨ । ମହେନ୍ଦ୍ରଙ୍କ ଗୁରୁ ସପ୍ତ ଋଷିଗଣ ପ୍ରାଚୀଦିଗକୁ ଆଶ୍ରୟ କରି ରହିଅଛନ୍ତି । ଯେ ପ୍ରୟତ ହୋଇ ଏମାନଙ୍କ ନାମ କୀର୍ତ୍ତନ କରନ୍ତି, ସେ ଇନ୍ଦ୍ରଲୋକରେ ପୂଜିତ ହୁଅନ୍ତି । ୩୩ ।

ଉନ୍ମୁଚ୍ , ପ୍ରମୁଚୁ, ଶ୍ରୀମାନ୍‌ବାନ୍, ସ୍ୱସ୍ତ୍ୟାତ୍ରେୟ, ଦୃଢ଼ବ୍ୟ, ଊର୍ଦ୍ଧ୍ୱବାହୁ, ତୃଣସୋମ, ଅଙ୍ଗିରା (୩୪), ଏବଂ ମିତ୍ରାବରୁଣଙ୍କ ପୁତ୍ର ପ୍ରତାପବାନ୍ ଅଗସ୍ତ୍ୟ ଏହି ସାତଜଣ ଧର୍ମରାଜଙ୍କ ପୁରୋହିତ ; ଏମାନେ ଦକ୍ଷିଣ ଦିଗକୁ ଅବଲମ୍ବନ କରିଅଛନ୍ତି । ୩୫ । ଦୃଢ଼େୟୁ, ଋତେୟୁ, କୀର୍ତ୍ତିମାନ୍ ପରିବ୍ୟାଧ, ଆଦିତ୍ୟ-ସଙ୍କାଶ ଏକତ, ଦ୍ୱିତ ଓ ତ୍ରିତ, ଅତ୍ରିଙ୍କ ପୁତ୍ର ଧର୍ମାତ୍ମା ସାରସ୍ୱତ ଋଷି ଏହି ସାତଜଣ ବରୁଣଙ୍କ ପୁରୋହିତ, ଏମାନେ ପଶ୍ଚିମ ଦିଗକୁ ଆଶ୍ରୟ କରି ରହିଅଛନ୍ତି । ୩୭ । ଅତ୍ରି, ଭଗବାନ୍ ବଶିଷ୍ଠ, ମହର୍ଷି କଶ୍ୟପ, ଗୌତମ, ଭରଦ୍ୱାଜ, କୁଶିକବଂଶାବତଂସ ବିଶ୍ୱାମିତ୍ର; ଋଚିକଙ୍କ ପୁତ୍ର ଉଗ୍ରପ୍ରତାପଶାଳୀ ଜମଦଗ୍ନି ଏହି ସାତଜଣ ଧନେଶ୍ୱର କୁବେରଙ୍କ ଗୁରୁ, ଏମାନେ ଉତ୍ତର ଦିଗକୁ ଆଶ୍ରୟ କରି ରହିଅଛନ୍ତି । ୩୯ । ଅପର ସପ୍ତଋଷି ସମସ୍ତ ଦିଗରେ ଅଧିଷ୍ଠିତ ହୋଇ ରହିଅଛନ୍ତି । ଏମାନେ ନରଗଣଙ୍କର କୀର୍ତ୍ତି ଓ ମଙ୍ଗଳକର ଓ ଲୋକଭାବନରୂପେ କୀର୍ତ୍ତିତ ହୁଅନ୍ତି । ୪୦ ।

ଧର୍ମ, କାମ, କାଳ, ବସୁ, ବାସୁକି, ଅନନ୍ତ ଓ କପିଳ ଏହି ସାତଜଣ ଧରଣୀଧର ଅଟନ୍ତି । ୪୧ । ପରଶୁରାମ, ବ୍ୟାସଦେବ, ଦ୍ରୋଣ-ନନ୍ଦନ ଅଶ୍ୱତ୍ଥାମା ଓ ଲୋମଶ ଏମାନେ ଦିବ୍ୟ ମୁନି, ଏହି ସମସ୍ତ ମୁନିଗଣଙ୍କ ମଧ୍ୟରେ ପ୍ରତ୍ୟେକେ ସପ୍ତ ସପ୍ତବିଧ । ୪୨ । ଲୋକ ମଧ୍ୟରେ ଏହିମାନେ ଶାନ୍ତି ଓ ସ୍ୱସ୍ତିକର, ଏବଂ ଏମାନେ ଦିକ୍‌ପାଳରୂପେ କୀର୍ତ୍ତିତ, ଏମାନେ ଯେତେବେଳେ ଯେଉଁ ଦିଗରେ ରହନ୍ତି ତନ୍ମୁଖ ହୋଇ ସେମାନଙ୍କ ଶରଣାପନ୍ନ ହେବ । ୪୩ । ଏମାନେ ସର୍ବଭୂତଗଣଙ୍କର ସ୍ରଷ୍ଟା, ଓ ଲୋକପାବନରୂପେ ବିଖ୍ୟାତ, ସମ୍ବର୍ତ୍ତ, ମେରୁସାବର୍ଣ୍ଣି, ଧାର୍ମିକ ମାର୍କଣ୍ଡେୟ,

ସାଂଖ୍ୟଯୋଗ ନାରଦ ଓ ମହର୍ଷି ଦୁର୍ବାସା ଏମାନେ ଅତ୍ୟନ୍ତ ତପୋନିରତ ଏବଂ ଦମନଶୀଳ ବୋଲି ତ୍ରିଲୋକରେ ବିଖ୍ୟାତ ହୋଇଅଛନ୍ତି । ୪୫ ।

ଅପର ବ୍ରହ୍ମଲୋକସ୍ଥିତ ମୁନିଗଣ ରୁଦ୍ରସଙ୍କାଶ ବୋଲି କୀର୍ତ୍ତିତ ହୁଅନ୍ତି । ଏହିମାନଙ୍କ ନାମ କୀର୍ତ୍ତନ କଲେ ଅପୁତ୍ରବ୍ୟକ୍ତି ପୁତ୍ରଲାଭ କରନ୍ତି, ଦରିଦ୍ର ବ୍ୟକ୍ତି ଧନଲାଭ କରନ୍ତି ( ୪୬ ) ଏବଂ ଧର୍ମାର୍ଥ କାମ ବିଷୟରେ ସିଦ୍ଧିଲାଭ କରନ୍ତି । ପୃଥିବୀ ଯାହାଙ୍କର କନ୍ୟା ହୋଇଥିଲେ, ସେହି ବେଣ ନୃପନନ୍ଦନ ପ୍ରଜାପତି ସାର୍ବଭୌମ ପୃଥୁନୃପତିଙ୍କ ନାମ କୀର୍ତ୍ତନ କରିବାର ବିଧେୟ; ଆଦିତ୍ୟବଂଶସମ୍ଭୂତ ମହେନ୍ଦ୍ରସମ ବିକ୍ରମଶାଳୀ ତ୍ରିଲୋକବିଖ୍ୟାତ ଇଳାପୁତ୍ର ପୁରୁରବା ଯେ ବୁଧଙ୍କ ପ୍ରିୟପୁତ୍ର ଅଟନ୍ତି ସେହି ପୃଥିବୀପତିଙ୍କ ନାମ କୀର୍ତ୍ତନ କରିବ । ୪୯ ।

ତ୍ରିଲୋକବିଖ୍ୟାତ ବୀରବର ଭରତଙ୍କ ନାମ କୀର୍ତ୍ତନ କରିବ । ଯେ ସତ୍ୟଯୁଗରେ ଗୋମେଧ ଯଜ୍ଞ କରିଥିଲେ, ସେହି ପରମତେଜସ୍ୱୀ ମହାରାଜ ରନ୍ତିଦେବ ନୃପତିଙ୍କ ନାମ କୀର୍ତ୍ତନ କରିବ । ବିଶ୍ୱବିଜୟୀ ତପସ୍ୟାସମ୍ପନ୍ନ ସୁଲକ୍ଷଣ ଲୋକହିତକର ମହାତେଜସ୍ୱୀ ରାଜର୍ଷି ଶ୍ୱେତଙ୍କ ନାମ କୀର୍ତ୍ତନ କରିବ । ଯେ ମହାଦେବଙ୍କୁ ପ୍ରସନ୍ନ କରିଥିଲେ, ଯାହାଙ୍କ ନିମିତ୍ତ ଅନ୍ଧକଦୈତ୍ୟ ନିହତ ହୋଇଥିଲା, ମହାଦେବଙ୍କ ପ୍ରସାଦବଶରୁ ଯେ ଭୂମଣ୍ଡଳରେ ଗଙ୍ଗାଦେବୀଙ୍କୁ ଆନୟନ କରିଥିଲେ ଏବଂ ଯେ ସଗର ନୃପତିଙ୍କ ସନ୍ତାନସମୂହଙ୍କୁ ପ୍ଲାବିତ ଓ ଉଦ୍ଧୃତ କରିଅଛନ୍ତି, ସେହି ପରମ-ତେଜସ୍ୱୀ ରାଜର୍ଷି ଭଗୀରଥଙ୍କ ନାମ କୀର୍ତ୍ତନ କରିବ । ୫୩ । ହୁତାଶନ ସଦୃଶ ମହାରୂପସମ୍ପନ୍ନ ମହାତେଜସ୍ୱୀ ଉଗ୍ରକାୟ ମହାବଳ କୀର୍ତ୍ତିବର୍ଦ୍ଧନ ନୃପନନ୍ଦନଗଣଙ୍କର ନାମକୀର୍ତ୍ତନ କରିବାର ଉଚିତ । ୫୪ ।

ଦେବଗଣ, ଋଷିଗଣ, ଜଗତର ନିୟନ୍ତା ନୃପତିଗଣ, ପରମସାଂଖ୍ୟ ଯୋଗ ଓ ହବ୍ୟକବ୍ୟ ପରମ ଶ୍ରୁତିପରିପୂର୍ଣ୍ଣ ପରଂବ୍ରହ୍ମ ରୂପେ କୀର୍ତ୍ତିତ ହୁଅନ୍ତି । ହେ ଭାରତ ! ସର୍ବଭୂତର ମଙ୍ଗଳକର ବହୁ ବିଷୟ କୀର୍ତ୍ତନ କରୁ-ଅଛୁ, ତାହା ସବୁ ବ୍ୟାଧିପ୍ରଶମନ ଓ ସର୍ବକାର୍ଯ୍ୟର ପୁଷ୍ଟି ସାଧନ କରେ, ଅତଏବ ଉଷା ଏବଂ ସାୟଂକାଳରେ ସଯତ ହୋଇ ଏହି ସମସ୍ତ ନାମ କୀର୍ତ୍ତନ କରିବ । ୫୭ । ଏହିମାନେ ରକ୍ଷା କରନ୍ତି, ଏହିମାନେ ବର୍ଷଣ କରନ୍ତି, ଏହିମାନେ ଦୀପ୍ତିଲାଭ କରନ୍ତି, ଏହିମାନେ ବହନ ଓ ସର୍ଜନ କରନ୍ତି, ଏହିମାନେ ବିନାୟକଶ୍ରେଷ୍ଠ, ଦକ୍ଷ, ଦାନ୍ତ ଓ ଜିତେନ୍ଦ୍ରିୟ, ଅତଏବ ଏହିମାନେ କୀର୍ତ୍ତିତ ହେଲେ ମାନବଗଣଙ୍କର ସମସ୍ତ ଅଶୁଭ ଦୂର କରନ୍ତି ।

ଏହି ସମସ୍ତ ମହାତ୍ମାଗଣ ପାପ ଓ ପୁଣ୍ୟର ସାକ୍ଷୀସ୍ୱରୂପ । ଯେ ପ୍ରତ୍ୟୁଷରେ ଗାତ୍ରୋତ୍ଥାନ ପୂର୍ବକ ଏହି ସମସ୍ତ ମହାନୁଭବଗଣଙ୍କର ନାମ କୀର୍ତ୍ତନ କରନ୍ତି, ସେ ମଙ୍ଗଳଲାଭ କରନ୍ତି ।

ଯେଉଁ ମାନବବୃନ୍ଦ ନିଯୁକ୍ତ ଏହିମାନଙ୍କର ନିତ୍ୟ ନାମ କୀର୍ତ୍ତନ କରନ୍ତି, ସେହିମାନଙ୍କର ଅଗ୍ନିଭୟ, ଚୌରଭୟ ଓ ପଥପ୍ରତିରୋଧ ହୁଏ ନାହିଁ ଏବଂ ଦୁଃସ୍ୱପ୍ନ ନଷ୍ଟ ହୁଏ । ଯେଉଁ ବ୍ରାହ୍ମଣ ପ୍ରଯତ ହୋଇ ସମସ୍ତ ଦୀକ୍ଷା କାଳରେ ଏହା ପାଠ କରନ୍ତି ସେ ପାପସମୂହରୁ ମୁକ୍ତ ସ୍ୱସ୍ତିମାନ୍ ହୋଇ ଗୃହକୁ ଗମନ କରନ୍ତି । ନ୍ୟାୟବାନ୍, ଆତ୍ମନିରତ, କ୍ଷାନ୍ତ, ଦାନ୍ତ, ଅନସୂୟକ, ରୋଗାର୍ତ୍ତ ଅଥବା ବ୍ୟାଧିଯୁକ୍ତ ମାନବ ଏହା ପାଠ କଲେ ପାପରୁ ବିମୁକ୍ତ ହୁଅନ୍ତି । ୭୨ । ବାସ୍ତୁ ମଧ୍ୟରେ ଏହା ପାଠ କଲେ କୁଳର ସ୍ୱସ୍ତ୍ୟୟନ ହୁଏ । ଯେ କ୍ଷେତ୍ର ମଧ୍ୟରେ ଏହା ପାଠ କରନ୍ତି ତାହାଙ୍କର କ୍ଷେତ୍ରରେ ସମସ୍ତ ଶସ୍ୟ ଅଙ୍କୁରିତ ହୁଏ । ଗମନଶୀଳ ବ୍ୟକ୍ତିଙ୍କର ପଥ ମଧ୍ୟରେ ମଙ୍ଗଳ ହୁଏ, ଗ୍ରାମାନ୍ତରଗତ ମାନବ ଏହା ପାଠ କରି ଆତ୍ମା, ସୁତ, ଦାର, ଧନ, ବୀଜସମୂହ ଏବଂ ଔଷଧିସମୂହର ରକ୍ଷା ପ୍ରୟୋଗ କରିବେ । ୭୪ ।

ସଂଗ୍ରାମ ସମୟରେ ଏହି ମନ୍ତ୍ର ଜପ କରି କ୍ଷତ୍ରିୟଙ୍କର ଶତ୍ରୁସମୂହ ବିନାଶପ୍ରାପ୍ତ ହୁଅନ୍ତି ଓ ମଙ୍ଗଳ ହୁଏ । ଦୈବ ଓ ପିତ୍ର୍ୟକାର୍ଯ୍ୟରେ ଯେଉଁ ପୁରୁଷ ଏହି ନାମସମୂହ ପାଠ କରନ୍ତି ତାହାଙ୍କର ପିତୃଗଣ ଓ ଦେବଗଣ ହବ୍ୟକବ୍ୟ ଭୋଜନ କରନ୍ତି । ୭୬ । ଯେ ଏହି ନାମସମୂହ କୀର୍ତ୍ତନ କରନ୍ତି, ତାହାଙ୍କର ବ୍ୟାଧି ହୁଏ ନାହିଁ, ଶ୍ୱାପଦଭୟ ରହେ ନାହିଁ, ହସ୍ତୀ ଏବଂ ତସ୍କରଠାରୁ ଭୟ ଜନ୍ମେ ନାହିଁ ଓ ପାପର ଲାଘବ ହୁଏ ଏବଂ ସେ ପାପରୁ ମୁକ୍ତ ହୁଅନ୍ତି । ୭୭ । ଯେଉଁ ପୁରୁଷ ଉତ୍ତମା ସାବିତ୍ରୀ ପାଠ କରନ୍ତି ସେ ଯାନ ପାତ୍ରରେ, ଯାନରେ, ପ୍ରବାସରେ ଓ ରାଜସଦନରେ ପରମ ସିଦ୍ଧିପ୍ରାପ୍ତ ହୁଅନ୍ତି । ୭୮ । ଯେଉଁମାନେ ସାବିତ୍ରୀ ପାଠ କରନ୍ତି, ସେହିମାନଙ୍କର ରାଜଭୟ, ଅଥବା ପିଶାଚ ଓ ରାକ୍ଷସମାନଙ୍କଠାରୁ ଭୟ ହୁଏ ନାହିଁ । ଅଗ୍ନି, ଜଳ, ପବନ ଓ ହିଂସ୍ର ଜନ୍ତୁଠାରୁ ଭୟ ହୁଏ ନାହିଁ । ଯେ ଉତ୍ତମା ସାବିତ୍ରୀ ପାଠ କରନ୍ତି, ସେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚତୁଷ୍ଟୟ ବର୍ଣ୍ଣର ବିଶେଷତଃ ଆଶ୍ରମର ସର୍ବଦା ଶାନ୍ତି କରନ୍ତି । ୮୦ ।

ଯେଉଁଠାରେ ସାବିତ୍ରୀ ପାଠ ହୁଏ, ସେଠାରେ ଅଗ୍ନି କାଷ୍ଠସମୂହ ଦଗ୍ଧ କରନ୍ତି ନାହିଁ, ବାଳକର ମୃତ୍ୟୁ ହୁଏ ନାହିଁ, ଏବଂ ପନ୍ନଗଗଣ

ଅବସ୍ଥାନ କରନ୍ତି ନାହିଁ । ୭୧ । ଯେଉଁମାନେ ସାବିତ୍ରୀ ଗୁଣ କୀର୍ତ୍ତନ ସ୍ୱରୂପ ମହତ୍ ବେଦ ଶ୍ରବଣ କରନ୍ତି, ସେହିମାନଙ୍କର ଦୁଃଖ ଉଦ୍ଭବ ନାହିଁ ଏବଂ ସେମାନେ ପରମଗତି ପ୍ରାପ୍ତ ହୁଅନ୍ତି । ୭୨ । ଯେଉଁ ବ୍ୟକ୍ତି ଗୋ ମଧ୍ୟରେ ସାବିତ୍ରୀ ପାଠ କରନ୍ତି, ତାହାଙ୍କର ଗୋଗଣ ବହୁବତ୍ସଳା ହୁଅନ୍ତି । ପ୍ରସ୍ଥାନ କାଳରେ, ପ୍ରବାସରେ, ଯେଉଁ କେଉଁ ଅବସ୍ଥାରେ ଏହି ମନ୍ତ୍ର ପାଠ କରିବାର ମନୁଷ୍ୟର ଅବଶ୍ୟ କର୍ତ୍ତବ୍ୟ । ୭୩ ।

ହେ ନରାଧିପ ! ଜପ ହୋମପରାୟଣ ଏବଂ ସର୍ବଦା ପ୍ରଯତଚିତ୍ତ ଋଷିଗଣଙ୍କର ଏହା ପରମ ଜପନୀୟ ଓ ଗୋପନୀୟ ମନ୍ତ୍ର ଅଟେ । ୭୪ । ପୂର୍ବେ ଇନ୍ଦ୍ରଦେବଙ୍କ ନିକଟରେ ଏହି ପୁରାତନ ଇତିହାସକୁ ପରାଶର ଯଥା-ତଥ୍ୟ ରୂପେ କୀର୍ତ୍ତନ କରିଥିଲେ, ସେହି ଏହି ତଥ୍ୟ ଇତିହାସ ତୁମ୍ଭ ନିକଟରେ ସମ୍ୟକ୍ ରୂପରେ ଆଖ୍ୟାତ ହେଲା । ଏହା ସନାତନ ବ୍ରହ୍ମସ୍ୱରୂପ, ସର୍ବ-ଭୂତର ହୃଦୟସ୍ଥ ଏବଂ ଏହା ସନାତନୀ ଶ୍ରୁତି, ଚନ୍ଦ୍ର ଓ ସୂର୍ଯ୍ୟବଂଶୋଦ୍ଭବ ନରପାଳସମୂହ, ରଘୁବଂଶୀୟ ରାଜବୃନ୍ଦ ଏବଂ କୁରୁକୁଳପ୍ରସୂତ ଭୂପତିଗଣ, ନିତ୍ୟ ପବିତ୍ର ହୋଇ ଏହି ପରମ ଗତି ସ୍ୱରୂପା ସାବିତ୍ରୀ ପାଠ କରନ୍ତି ।୭୭। ଦେବଗଣଙ୍କ ସନ୍ନିଧାନରେ, ସପ୍ତର୍ଷିମଣ୍ଡଳ ଓ ଧ୍ରୁବ ନକ୍ଷତ୍ରର ସମୀପରେ ପାଠ କଲେ ସମସ୍ତ କଷ୍ଟ ବିନଷ୍ଟ ହୁଏ ଏବଂ ଅଶୁଭରୁ ଏହା ସର୍ବଦା ବିମୁକ୍ତ କରେ । ୭୮ । କଶ୍ୟପ, ଗୌତମ ପ୍ରଭୃତି ବୃଦ୍ଧଗଣ ଏବଂ ଭୃଗୁ, ଅଙ୍ଗିରା, ଅତ୍ରି, ଶୁକ୍ର, ଅଗସ୍ତ୍ୟ, ବୃହସ୍ପତି ପ୍ରଭୃତି ବ୍ରହ୍ମର୍ଷିଗଣସେବିତ, ଋଚୀକତନୟ-ଗଣ କର୍ତ୍ତୃକ ଅଧିଗତ ଏହି ଭରଦ୍ୱାଜସମ୍ମତ ସାବିତ୍ରୀକୁ ଇନ୍ଦ୍ରଦେବ ଓ ବସୁଗଣ ବଶିଷ୍ଠଙ୍କ ନିକଟରୁ ପ୍ରାପ୍ତ ହୋଇ ଦାନବସମୂହଙ୍କୁ ଦଳନ କରି-ଥିଲେ । ୭୯ ।

ଯେ ବେଦବେତ୍ତା ବହୁଶ୍ରୁତ ବ୍ରାହ୍ମଣଙ୍କୁ ସୁବର୍ଣ୍ଣଶୃଙ୍ଗସମନ୍ୱିତ ଶତଧେନୁ ପ୍ରଦାନ କରନ୍ତି ଏବଂ ଯେ ଦିବ୍ୟ ଭାରତ କଥା ନିତ୍ୟ କୀର୍ତ୍ତନ କରନ୍ତି, ସେହି ଉଭୟଙ୍କର ସମାନ ଫଳ ହୁଏ । ୮୦ । ଭୃଗୁଙ୍କ ନାମ କୀର୍ତ୍ତନ କଲେ ବିଶେଷରୂପେ ଧର୍ମବୃଦ୍ଧି ହୁଏ, ବଶିଷ୍ଠଙ୍କୁ ନମସ୍କାର କଲେ ବୀର୍ଯ୍ୟବୃଦ୍ଧି ହୁଏ, ରଘୁଙ୍କୁ ନମସ୍କାର କଲେ ସମରବିଜୟୀ ଏବଂ ଅଶ୍ୱିନୀକୁମାରଯୁଗଳଙ୍କର ନାମକୀର୍ତ୍ତନ କଲେ କୌଣସି ରୋଗ ହୁଏ ନାହିଁ । ୮୧ । ହେ ଭରତକୁଳତିଳକ ମହାରାଜ ! ଆମ୍ଭେ ତୁମ୍ଭ ନିକଟରେ ଶାଶ୍ୱତ ବ୍ରହ୍ମ ସାବିତ୍ରୀ କୀର୍ତ୍ତନ କଲୁ, ଅତଏବ ତୁମ୍ଭେ ଅନ୍ୟ ଯେଉଁ ବିଷୟ ଶ୍ରବଣ କରିବାକୁ ଇଚ୍ଛା କରୁଅଛ ତାହା କହିବୁଁ । ୮୨ ।

---

# ଅଧ୍ୟାୟ—୧୫୧

ଯୁଧିଷ୍ଠିର କହିଲେ—ହେ ପିତାମହ ! କେଉଁମାନେ ପୂଜନୀୟ ? କେଉଁମାନେ ନମସ୍କରଣୀୟ ? କେଉଁମାନଙ୍କଠାରେ କେଉଁପରି ବ୍ୟବହାର କରିବାକୁ ହୁଏ ? କାଦୃଶ ବ୍ୟକ୍ତିମାନଙ୍କଠାରେ କେଉଁପ୍ରକାର ଆଚରଣ କଲେ ହିଂସିତ ହୁଏ ନାହିଁ ? ୧ ।

ଭୀଷ୍ମ କହିଲେ, ରାଜନ୍ ! ବ୍ରାହ୍ମଣଗଣଙ୍କୁ ଅବମାନିତ କଲେ ଦେବତାମାନେ ମଧ୍ୟ ଅବସନ୍ନ ହୁଅନ୍ତି । ହେ ଯୁଧିଷ୍ଠିର ! ଯେ ବ୍ରାହ୍ମଣ-ଗଣଙ୍କୁ ନମସ୍କାର କରେ, ସେ ହିଂସିତ ହୁଏ ନାହିଁ । ୨ । ବ୍ରାହ୍ମଣଗଣ ପୂଜନୀୟ, ସେହିମାନେ କେବଳ ନମସ୍କରଣୀୟ, ସେହିମାନଙ୍କ ନିକଟରେ ପୁତ୍ରସଦୃଶ ଅବସ୍ଥାନ କରିବାର ଉଚିତ ଅଟେ । ସେହି ମନୀଷୀ ବ୍ରାହ୍ମଣ-ଗଣ ଏହି ଲୋକସମୂହକୁ ଧାରଣ କରିଅଛନ୍ତି । ୩ । ଯେଉଁ ସମସ୍ତ ବ୍ରାହ୍ମଣଗଣ ଧନତ୍ୟାଗ କରି ଅଭିରାମ ଏବଂ ଯେଉଁମାନେ ବାକ୍ୟ ସଂଯମରେ ରତ ହୋଇଅଛନ୍ତି, ସେହିମାନେ ସର୍ବଲୋକସମୂହର ଧର୍ମସେତୁ-ସ୍ୱରୂପ । ଯେଉଁମାନେ ଧୃତବ୍ରତ, ରମଣୀୟ ଓ ଭୂତଗଣଙ୍କ ପ୍ରଧାନ, ଯେଉଁମାନେ ଲୋକ ଓ ଶାସ୍ତ୍ର ସମୂହର ପ୍ରଣେତା, ସେହିମାନେ ଯଶସ୍ୱୀ ।୪।

ଯେଉଁମାନଙ୍କର ତପସ୍ୟା ନିତ୍ୟ ଧନ, ବାକ୍ୟ ଯେଉଁମାନଙ୍କର ବିପୁଳ ବଳ, ସେହି ସୂକ୍ଷ୍ମଦର୍ଶୀ ଧର୍ମଜ୍ଞ ବ୍ରାହ୍ମଣଗଣ ଧର୍ମସମୂହର ପ୍ରଭବ, ଧର୍ମକାମ ନରଗଣ ନିତ୍ୟସତ୍ୟ ଧର୍ମରେ ଅବସ୍ଥିତ, ସେମାନେ ଧର୍ମସେତୁ-ସ୍ୱରୂପ, ଯେଉଁମାନଙ୍କୁ ସମ୍ୟକ୍‌ରୂପେ ଆଶ୍ରୟ କରି ଚତୁର୍ବିଧ ପ୍ରଜାଗଣ ଜୀବନଯାପନ କରନ୍ତି, ସେହି ସନାତନ ଯଜ୍ଞବହ ବିପ୍ରଗଣ ସମସ୍ତଙ୍କର ନେତା ଓ ପନ୍ଥା, ସେମାନେ ପିତୃପିତାମହ ସମ୍ବନ୍ଧୀୟ, ଗୁରୁତର ଭାର-ସମୂହ ସର୍ବଦା ବହନ କରନ୍ତି ।

ଯେଉଁମାନେ ସାଧୁଗଣ ସଦୃଶ ବିଷମଭାର ବହନରେ ଅବସନ୍ନ ହୁଅନ୍ତି ନାହିଁ, ପିତୃଗଣ, ଦେବଗଣ ଓ ଅତିଥିଗଣ ଯେଉଁମାନଙ୍କର ମୁଖସ୍ୱରୂପ, ଯେଉଁମାନେ ହବ୍ୟକବ୍ୟ ସମୂହର ଅଗ୍ରଭାଗ ଭୋଜନ କରନ୍ତି ଓ ଭୋଜନ କଲା ମାତ୍ରେ ଲୋକତ୍ରୟକୁ ମହାଭୟରୁ ପରିତ୍ରାଣ କରନ୍ତି, ଯେଉଁମାନେ ସମସ୍ତ ଲୋକର ଦୀପ ସ୍ୱରୂପ, ଯେଉଁମାନେ ଚକ୍ଷୁଷ୍ମାନ ନରଗଣଙ୍କର ଚକ୍ଷୁ ସ୍ୱରୂପ, ଯେଉଁମାନଙ୍କର ଶିକ୍ଷା ଓ ଶ୍ରୁତିସମୂହ ଧନ, ଯେଉଁମାନେ ନିପୁଣ

ଓ ମୋକ୍ଷଦର୍ଶୀ, ସର୍ବଲୋକର ଗତିଜ୍ଞ ଓ ଅଧ୍ୟାତ୍ମଗତି ଚିନ୍ତାଶୀଳ, ଯେଉଁମାନେ ଆଦି, ମଧ୍ୟ ଓ ଅନ୍ତ ସମୂହର ଜ୍ଞାତା, ଯେଉଁମାନଙ୍କର ସଂଶୟସମୂହ ବିଚ୍ଛିନ୍ନ ହୋଇଅଛି, ଯେଉଁମାନେ ପର ଓ ଅବର ବିଶେଷଜ୍ଞ, ଯେଉଁମାନେ ପରମ ଗତି ପ୍ରାପ୍ତ ହୋଇଅଛନ୍ତି, ଯେଉଁମାନେ ବିମୁକ୍ତ, ବିଧୂତପାପ ଓ ନିଷ୍ପରିଗ୍ରହ, ମାନାର୍ହ ଓ ମାନବିତ୍ ମହାତ୍ମାଗଣ କର୍ତ୍ତୃକ ନିୟତ ମାନିତ, ଯେଉଁମାନେ ଚନ୍ଦନ ଓ ମଳପଙ୍କରେ ସମାନ ଜ୍ଞାନ କରନ୍ତି, ଭୋଜ୍ୟ ଓ ଅଭୋଜ୍ୟ ବସ୍ତୁରେ ତୁଲ୍ୟବୁଦ୍ଧି କରନ୍ତି, ଯେଉଁମାନଙ୍କର ଦୁକୂଳ ଓ ଚଟ୍ଟ-ବସ୍ତ୍ରରେ ସମାନ ଜ୍ଞାନ, ବହୁଦିନ ପର୍ଯ୍ୟନ୍ତ ଭୋଜନ ନ କରି ରହି ପାରନ୍ତି, ଯେଉଁମାନେ ସଂଯତେନ୍ଦ୍ରିୟ ହୋଇ ସ୍ୱଶାଖୋକ୍ତ ବେଦପାଠ କାଳରେ ଶରୀର ଶୋଷଣ କରନ୍ତି (୧୫), ଯେଉଁମାନଙ୍କର କୋପାଗ୍ନି କଦାପି ଶାନ୍ତ ହୁଏ ନାହିଁ, ଯେଉଁମାନେ ଦେବତାଗଣଙ୍କର ମଧ୍ୟ ଦେବତା, କାରଣର କାରଣ ଓ ପ୍ରମାଣସମୂହର ପ୍ରମାଣ ସ୍ୱରୂପ, କେଉଁ ଜ୍ଞାନଶୀଳ ନର ସେହି ବ୍ରାହ୍ମଣଗଣଙ୍କୁ ଅଭିଭବ କରିବ ? ସେହିମାନେ ଅଦେବକୁ ଦେବ କରିପାରନ୍ତି ଏବଂ ଦେବକୁ ଅଦେବ କରିପାରନ୍ତି, ସେହିମାନେ କୋପିତ ହେଲେ ଅନ୍ୟ ଲୋକ ଓ ଲୋକପାଳବୃନ୍ଦର ସୃଷ୍ଟି କରି ପାରନ୍ତି ।

ଯେଉଁ ମହାତ୍ମାମାନଙ୍କ ଶାପବଶରୁ ସାଗର ମଧ୍ୟ ଅପେୟ ହୋଇଅଛି ଏବଂ ଯେଉଁମାନଙ୍କର କୋପାଗ୍ନି ଅଦ୍ୟାପି ଦଣ୍ଡକରେ ଶାନ୍ତ ହୋଇ ନାହିଁ, ଯେଉଁମାନଙ୍କର ବୃଦ୍ଧ, ବାଳକ ଓ ଯୁବା ସମ୍ମାନଯୋଗ୍ୟ ଅଟନ୍ତି, ଯେଉଁମାନେ ତପୋବିଦ୍ୟାବିଶେଷ ବଶରୁ ପରସ୍ପର ସମ୍ମାନ ପ୍ରଦର୍ଶନ କରନ୍ତି, ଅବିଦ୍ୱାନ୍ ବ୍ରାହ୍ମଣ ଦେବତା ସ୍ୱରୂପ, ମହତ୍ ପବିତ୍ର ପାତ୍ର, ବିଦ୍ୱାନ୍ ବ୍ରାହ୍ମଣ ତତୋଽଧିକ ଦେବତୁଲ୍ୟ ଏବଂ ପୂର୍ଣ୍ଣ ସାଗରସନ୍ନିଭ, ସଂସ୍କୃତ ଓ ଅସଂସ୍କୃତ ଅଗ୍ନି ଯେଉଁପରି ମହତ୍ ଦୈବତ, ଅବିଦ୍ୱାନ୍ ଅଥବା ବିଦ୍ୱାନ୍ ବ୍ରାହ୍ମଣ, ତଦ୍‌ବତ୍ ମହତ୍ ଦୈବତ ସ୍ୱରୂପ ତେଜସ୍ୱୀ ବହ୍ନି ଶ୍ମଶାନ ମଧ୍ୟରେ ଦୂଷିତ ହୁଏ ନାହିଁ । ବିଧିବତ୍ ହବିର୍ଯଜ୍ଞରେ ଏବଂ ଗୃହ ମଧ୍ୟରେ ବିଶେଷ ରୂପେ ଶୋଭିତ ହୁଅନ୍ତି । ୨୨ । ବ୍ରାହ୍ମଣ ଯଦି ସର୍ବଦା ସମସ୍ତ ଅନିଷ୍ଟ କର୍ମ କରନ୍ତି, ତଥାପି ସେ ସର୍ବତୋଭାବରେ ମାନ୍ୟ, ତାହାଙ୍କୁ ପରମ ଦୈବତ ବୋଲି ଜ୍ଞାନ କର । ୨୩ ।

---

# ଅଧ୍ୟାୟ—୧୫୬

ଯୁଧିଷ୍ଠିର କହିଲେ—ହେ ନରାଧିପ ! ମହାମତେ ! କେଉଁ ଫଳ ଦେଖି ଏବଂ କାଦୃଶ କର୍ମୋଦୟ ଜ୍ଞାନ କରି ଆପଣ ସେହି ବ୍ରାହ୍ମଣଗଣଙ୍କୁ ପୂଜା କରନ୍ତି ? ୧ । ଭୀଷ୍ମ କହିଲେ, ହେ ଭାରତ ! ପ୍ରାଚୀନ ପଣ୍ଡିତମାନେ ଏହି ବିଷୟରେ ପବନ ଓ ଅର୍ଜ୍ଜୁନଙ୍କ ସମ୍ବାଦ ସମ୍ବଳିତ ଏହି ପୁରାତନ ଇତିହାସ କହିଅଛନ୍ତି ।

ମାହିଷ୍ମତୀ ନଗରୀରେ ସହସ୍ରଭୁଜ, ମହାବଳ, ଶ୍ରୀମାନ୍ କାର୍ତ୍ତବୀର୍ଯ୍ୟ ଅର୍ଜ୍ଜୁନ ନାମକ ନୃପତି ଏହି ସମସ୍ତ ଲୋକର ପ୍ରଭୁ ହୋଇଥିଲେ । ୩ । ସେହି ହୈହୟ ବଂଶୀୟ ସତ୍ୟବିକ୍ରମ ବୀର, ରତ୍ନଗର୍ଭା ସାଗରାମ୍ବରା ସଦ୍ୱୀପା ସମସ୍ତ ପୃଥିବୀର ଶାସନକର୍ତ୍ତା ଥିଲେ । ୪ । କୌଣସି କାରଣବଶତଃ ଦତ୍ତାତ୍ରେୟ ମୁନିଙ୍କୁ ନିଜ ବିତ୍ତ ପ୍ରଦାନ କରିଥିଲେ । ସେହି କୃତବୀର୍ଯ୍ୟାତ୍ମଜ ଅର୍ଜ୍ଜୁନ କ୍ଷତ୍ରଧର୍ମ ବିନୟ ଓ ପ୍ରଶ୍ରୟାନ୍ୱିତ ହୋଇ ସେହି ମୁନିଙ୍କୁ ଆରାଧନା କରିଥିଲେ । ମୁନିବର ସନ୍ତୁଷ୍ଟ ହୋଇ ତାହାଙ୍କୁ ବରତ୍ରୟ ପ୍ରାର୍ଥନା କରିବାକୁ କହିଲେ । ନୃପତି ମୁନିକର୍ତ୍ତୃକ ବରତ୍ରୟ ହାରା ଛନ୍ଦିତ ହୋଇ କହିଲେ, ଆମ୍ଭେ ସୈନ୍ୟ ମଧ୍ୟରେ ସହସ୍ରବାହୁ ହେବୁ ଏବଂ ଗୃହ ମଧ୍ୟରେ ତାହା ଅନ୍ୟଥା ହେବ । ୭ । ସୈନ୍ୟଗଣ ସମରରେ ଆମ୍ଭର ସହସ୍ରବାହୁ ଅବଲୋକନ କରନ୍ତୁ । ହେ ସଂଶିତବ୍ରତ ! ଆମ୍ଭେ ବିକ୍ରମଦ୍ୱାରା ସମସ୍ତ ମହୀମଣ୍ଡଳ ଜୟ କରିବୁ ଏବଂ ଧର୍ମତଃ ତାହା ଲାଭ କରି ଅଲସଶୂନ୍ୟ ହୋଇ ପାଳନ କରିବୁ । ହେ ଦ୍ୱିଜସତ୍ତମ ! ଆମ୍ଭର ଏହି ବରତ୍ରୟ ପ୍ରାର୍ଥିତ, ପରନ୍ତୁ ଆପଣଙ୍କ ନିକଟରେ ଆମ୍ଭେ ଗୋଟିଏ ଚତୁର୍ଥ ବର ପ୍ରାର୍ଥନା କରୁଅଛୁ । ୯ । ହେ ଅନିନ୍ଦିତ ! ଆପଣ ଆମ୍ଭ ପ୍ରତି ଅନୁଗ୍ରହ କରି ତାହା ପ୍ରଦାନ କରିବା ହେଉନ୍ତୁ । ଆମ୍ଭେ ଆପଣଙ୍କ ଆଶ୍ରୟରେ ଥାଇ ମିଥ୍ୟାରେ ଉଦ୍ଧତ ହେଲେ ସାଧୁଗଣ ଆମ୍ଭଙ୍କୁ ଅନୁଶାସନ କରନ୍ତୁ । ୧୦ ।

ନରାଧିପ ଏହିପରି କହିବାରୁ ବ୍ରାହ୍ମଣ ତାହାଙ୍କୁ "ତଥାସ୍ତୁ" ଏହି କଥା କହିଲେ । ଏହିରୂପେ ସେହି ଦୀପ୍ତତେଜା ବିପ୍ରଙ୍କର ବରସମୂହ ସମ୍ପନ୍ନ ହୋଇଥିଲା । ତଦନନ୍ତର ନୃପତି ତପନ ଓ ଦହନସମ ଦ୍ୟୁତିସମ୍ପନ୍ନ ରଥରେ ଆରୋହଣ କରି ବୀର୍ଯ୍ୟପ୍ରମୋହବଶତଃ "ଧୈର୍ଯ୍ୟ, ବୀର୍ଯ୍ୟ, ଯଶ, ଶୌର୍ଯ୍ୟ, ବିକ୍ରମ ଓ ତେଜରେ ଆମ୍ଭସଦୃଶ କିଏ ଅଛି"

ଏହି କଥା କହିଲେ । ତଦୀୟ ବାକ୍ୟର ଅବସାନ ପରେ ଅନ୍ତରୀକ୍ଷରେ ଅଶରୀରିଣୀ ବାଣୀ କହିଲେ (୧୩), ରେ ମୂଢ଼ ! ବ୍ରାହ୍ମଣ କ୍ଷତ୍ରିୟ ଅପେକ୍ଷା-ଶ୍ରେଷ୍ଠ, ଏହି କଥା ତୁମ୍ଭେ କି ଜାଣ ନାହିଁ ? କ୍ଷତ୍ରିୟ ବ୍ରାହ୍ମଣଙ୍କ ସହିତ ମିଳିତ ହୋଇ ଇହଲୋକରେ ପ୍ରଜାଗଣଙ୍କୁ ଶାସନ କରନ୍ତି । ୧୪ ।

ଅର୍ଜ୍ଜୁନ କହିଲେ, ଆମ୍ଭେ ତୁଷ୍ଟ ହେଲେ ଭୂତବୃନ୍ଦର ସୃଷ୍ଟି କରିପାରୁଁ ଏବଂ କ୍ରୁଦ୍ଧ ହେଲେ ସମସ୍ତ ବିନଷ୍ଟ କରିପାରୁଁ । ଅତଏବ ବାକ୍ୟ ମନ କର୍ମଦ୍ୱାରା ଆମ୍ଭ ଅପେକ୍ଷା ବ୍ରାହ୍ମଣ ଶ୍ରେଷ୍ଠ ନୁହନ୍ତି । ୧୫ । ବ୍ରାହ୍ମଣଗଣଙ୍କ ପ୍ରାଧାନ୍ୟବାଦ ପୂର୍ବପକ୍ଷ ଓ କ୍ଷତ୍ରିୟମାନଙ୍କ ଆଧିକ୍ୟବାକ୍ୟ ସିଦ୍ଧାନ୍ତ ପକ୍ଷ । ତୁମ୍ଭେ ହେତୁଯୁକ୍ତ ବାକ୍ୟଦ୍ୱୟ କୀର୍ତ୍ତନ କଲ, କିନ୍ତୁ ତଦ୍‌ବିଷୟରେ କିଛି ବିଶେଷ ମଧ୍ୟ ଦୃଷ୍ଟ ହୁଏ । ୧୬ । ବ୍ରାହ୍ମଣଗଣ କ୍ଷତ୍ରିୟ-ମାନଙ୍କୁ ଆଶ୍ରୟ କରନ୍ତି । କିନ୍ତୁ କ୍ଷତ୍ରିୟଗଣ ବ୍ରାହ୍ମଣମାନଙ୍କୁ ଆଶ୍ରୟ କରନ୍ତି ନାହିଁ । ବିପ୍ରଗଣ ବେଦାଧ୍ୟୟନ ଓ ଯଜ୍ଞାନୁଷ୍ଠାନ ଛଳରେ ଭୂମଣ୍ଡଳରେ କ୍ଷତ୍ରିୟଗଣଙ୍କ ସାହାଯ୍ୟରେ ଜୀବିକାନିର୍ବାହ କରନ୍ତି । ୧୭ । ପ୍ରଜାମାନଙ୍କ ପରିପାଳନରୂପ ଧର୍ମ କ୍ଷତ୍ରିୟଗଣଙ୍କଠାରେ ଆଶ୍ରିତ ହୋଇ ରହିଅଛି, ବ୍ରାହ୍ମଣଗଣ କ୍ଷତ୍ରିୟମାନଙ୍କଠାରୁ ଜୀବିକା ଗ୍ରହଣ କରନ୍ତି । ଅତଏବ କ୍ଷତ୍ରିୟଙ୍କଠାରୁ ବ୍ରାହ୍ମଣ କେଉଁପରି ଶ୍ରେଷ୍ଠ ହେବେ ? ୧୮ । ସର୍ବ ପ୍ରାଣି-ଗଣଙ୍କ ଅପେକ୍ଷା ପ୍ରଧାନ ଭିକ୍ଷା-ବୃତ୍ତିଶାଳୀ ଆତ୍ମ ସମ୍ଭାବିତ ସେହି ବିପ୍ରବର୍ଗଙ୍କୁ ଆମ୍ଭେ ସର୍ବଦା ଆପଣାର ଅଧୀନରେ ସ୍ଥାପନ କରୁଁ । ୧୯ । ଆକାଶରେ ସରସ୍ୱତୀ କନ୍ୟା ଅର୍ଥାତ୍ ଅଶରୀରିଣୀ ବାଣୀ ଅସତ୍ୟ ବାକ୍ୟ କହିଅଛନ୍ତି । ଆମ୍ଭେ ଅବଶ୍ୟ ଅଜିନ ବସ୍ତ୍ରଧାରୀ ସମସ୍ତ ବ୍ରାହ୍ମଣଗଣଙ୍କୁ ଜୟ କରିବୁ । ୨୦ । ତ୍ରିଭୁବନ ମଧ୍ୟରେ ଦେବତା ଅଥବା ମନୁଷ୍ୟ କେହି ସୁଦ୍ଧା ଆମ୍ଭଙ୍କୁ ରାଜ୍ୟରୁ ପ୍ରଚ୍ୟୁତ କରିପାରିବେ ନାହିଁ, ଅତଏବ ଆମ୍ଭେ ବ୍ରାହ୍ମଣଙ୍କ ଅପେକ୍ଷା ଅବଶ୍ୟ ଶ୍ରେଷ୍ଠ । ୨୧ । ଆମ୍ଭେ ବ୍ରାହ୍ମଣପ୍ରଧାନ ଲୋକକୁ କ୍ଷତ୍ରିୟପ୍ରଧାନ କରିବୁଁ, କାରଣ ଯୁଦ୍ଧରେ ଆମ୍ଭର ବଳ ସହ୍ୟ କରିବାକୁ କେହି ଉତ୍ସାହିତ ହେବେ ନାହିଁ । ୨୨ । ଆକାଶବାଣୀ ଅର୍ଜ୍ଜୁନଙ୍କ ବାକ୍ୟ ଶ୍ରବଣ କରି ବିହସ୍ତା ଅର୍ଥାତ୍ ଅନ୍ତର୍ହିତା ହେଲେ ।

ତଦନନ୍ତର ଅନ୍ତରୀକ୍ଷସ୍ଥ ବାୟୁ ତାହାଙ୍କୁ କହିଲେ (୨୩), ହେ ହେ ଭୂପାଳ ! ତୁମ୍ଭେ ଏହି କଳୁଷଭାବ ପରିତ୍ୟାଗ କରି ବ୍ରାହ୍ମଣଗଣଙ୍କୁ ନମସ୍କାର କର, ବ୍ରାହ୍ମଣଙ୍କଠାରେ ପାପାଚରଣ କଲେ ରାଜ୍ୟରେ ବିପ୍ଳବ ହେବ । ୨୪ । ଅଥବା ମହାବଳ ବ୍ରାହ୍ମଣଗଣ ହତୋତ୍ସାହ ହୋଇ ତୁମ୍ଭଙ୍କୁ

ବିନାଶ କରିବେ, ସେମାନେ ତୁମ୍ଭଙ୍କୁ ରାଜ୍ୟରୁ ନିର୍ବାଣ କରିବେ । ୨୫ । ସେତେବେଳେ ରାଜା କାର୍ତ୍ତବୀର୍ଯ୍ୟ ତାହାଙ୍କୁ ସମ୍ବୋଧନ ପୂର୍ବକ ପ୍ରଶ୍ନ କଲେ, ହେ ଭଦ୍ର ! ତୁମ୍ଭେ କିଏ ? ସମୀରଣ କହିଲେ, ଆମ୍ଭେ ଦେବଦୂତ ପବନ, ତୁମ୍ଭଙ୍କୁ ହିତକଥା କହୁଅଛୁଁ ।୨୬। ଅର୍ଜୁନ କହିଲେ, କି ଆଶ୍ଚର୍ଯ୍ୟ। ହେ ପବନ ! ସମ୍ପ୍ରତି ଆପଣ ବ୍ରାହ୍ମଣଗଣଙ୍କଠାରେ ଭକ୍ତି ଓ ଅନୁରାଗ ପ୍ରଦର୍ଶନ କରିଅଛ । ପୃଥିବୀ ଯାଦୃଶ ବ୍ରାହ୍ମଣ ମଧ୍ୟ ତାଦୃଶ, ଏହା ଆମ୍ଭ ନିକଟରେ କହ (୨୭), ଅଥବା ବ୍ରାହ୍ମଣବର ବାୟୁସଦୃଶ ଅଥବା ସଲିଳର ସମାନ, କିମ୍ବା ଅଗ୍ନିସଦୃଶ, କିମ୍ବା ସୂର୍ଯ୍ୟ ଓ ଆକାଶସଦୃଶ, ତାହା କୀର୍ତ୍ତନ କର । ୨୮ ।

---

## ଅଧ୍ୟାୟ—୧୫୩

ବାୟୁ କହିଲେ—ହେ ମୂଢ଼ ! ତୁମ୍ଭେ ମହାନୁଭବ ବ୍ରାହ୍ମଣ-ଗଣଙ୍କର କତିପୟ ଗୁଣଗଣ ଶ୍ରବଣ କର । ହେ ରାଜନ୍ ! ତୁମ୍ଭେ ଯେଉଁ-ମାନଙ୍କ ନାମ କୀର୍ତ୍ତନ କଲ, ସେହି ସମସ୍ତଙ୍କ ଅପେକ୍ଷା ବ୍ରାହ୍ମଣ ଶ୍ରେଷ୍ଠ ଅଟନ୍ତି । ୧ । ପୃଥିବୀ ଅଙ୍ଗରାଜଙ୍କ ସହିତ ସ୍ପର୍ଦ୍ଧାକରି ପୃଥିବୀତ୍ୱ ପରିତ୍ୟାଗ ପୂର୍ବକ ବିନଷ୍ଟା ହୋଇଥିଲେ । ବିପ୍ରବର କଶ୍ୟପ ସେହି ମହୀକୁ ପୁନଶ୍ଚ ଉଦ୍ଧାର କରିଥିଲେ । ୨ । ହେ ରାଜନ୍ ! ବ୍ରାହ୍ମଣଗଣ ଇହଲୋକରେ ଏବଂ ସୁରଲୋକରେ ମଧ୍ୟ ସର୍ବଦା ଅଜେୟ । ପୂର୍ବକାଳରେ ଅଙ୍ଗିରା ନିଜ ତେଜଃ ପ୍ରଭାବରେ ସଲିଳସମୂହକୁ ପାନ କରିଥିଲେ । ୩ । ସେହି ମହାମନା କ୍ଷୀରସଦୃଶ ଜଳରାଶି ପାନ କରି ସୁଦ୍ଧା ତୃପ୍ତ ହେଲେ ନାହିଁ । ହେ ପାର୍ଥିବ ! ସେ ମହାପ୍ରବାହଦ୍ୱାରା ସମସ୍ତ ମହୀମଣ୍ଡଳ ପରିପୂର୍ଣ୍ଣ କରି-ଥିଲେ । ୪ । ସେ କ୍ରୁଦ୍ଧ ହେବାରୁ ଆମ୍ଭେ ଜଗତ୍ ପରିତ୍ୟାଗ ପୂର୍ବକ ଗମନ କରି ଅଙ୍ଗିରାଙ୍କ ଉପରେ ବହୁକାଳ ଅଗ୍ନିହୋତ୍ରରେ ଅବସ୍ଥିତି କରିଥିଲୁଁ । ୫ । ଦେବରାଜ ଇନ୍ଦ୍ର ଅହଲ୍ୟାଙ୍କ ପାତିବ୍ରତ୍ୟ ନଷ୍ଟ କରିବାରୁ ତାହାଙ୍କ ପତି ଗୌତମ ମହର୍ଷି କ୍ରୁଦ୍ଧ ହୋଇ ଇନ୍ଦ୍ରଙ୍କୁ ଶାପ ପ୍ରଦାନ କରିଥିଲେ । କେବଳ ଧର୍ମରକ୍ଷା ନିମିତ୍ତ ତାହାଙ୍କ ପ୍ରାଣ ସଂହାର କଲେ ନାହିଁ ।

ହେ ସ୍ୱଜନ୍ ! ସମୁଦ୍ର ମଧୁର ବାରିପୂର୍ଣ୍ଣ ହୋଇ ସୃଷ୍ଟ ହୋଇଥିଲା, ବ୍ରାହ୍ମଣଗଣଙ୍କ ଅଭିଶାପ ବଶତଃ ଲବଣୋଦକ ହୋଇଅଛି । ୭ । ନିର୍ଧୂମ ତେଜସ୍ୱୀ ସୁବର୍ଣ୍ଣ ବର୍ଣ୍ଣ ରୂପବାନ୍ ଅଗ୍ନି, ମହର୍ଷି ଅଙ୍ଗିରାଙ୍କ ଅଭିଶାପରେ ଉକ୍ତ ଗୁଣବିହୀନ ହୋଇଅଛନ୍ତି । ୮ । ସଗର ନୃପତିଙ୍କ ପୁତ୍ରଗଣ ଯେଉଁ-ମାନେ ମହୋଦଧିଙ୍କ ସର୍ଜନା କରିଥିଲେ, ସେହିମାନେ ଶୋଭନ ବ୍ରାହ୍ମଣ ବର୍ଣ୍ଣଧାରୀ ଦ୍ୱିଜାତି କପିଳକର୍ତ୍ତୃକ ଅଭିଶପ୍ତ ହୋଇଥିବାର ଅବଲୋକନ କର । ୯ । ହେ ନରାଧିପ ! ତୁମ୍ଭେ ଦ୍ୱିଜଗଣଙ୍କ ସଦୃଶ ନୁହ, ସ୍ୱକୀୟ ଶ୍ରେୟ ଅବଗତ ହୁଅ । ଭଗବାନ ପ୍ରଭୁ ଗର୍ଭସ୍ଥ ବ୍ରାହ୍ମଣଗଣଙ୍କୁ ମଧ୍ୟ ନିରନ୍ତର ନମସ୍କାର କରନ୍ତି । ୧୦ । ଦଣ୍ଡକ ନୃପଗଣଙ୍କ ମହତ୍ ରାଜ୍ୟ ବ୍ରାହ୍ମଣଗଣ କର୍ତ୍ତୃକ ବିନାଶିତ ହୋଇଅଛି । ତାଳଜଙ୍ଘ ନାମକ ମହାକ୍ଷତ୍ରିୟ ଏକମାତ୍ର ଔର୍ବ ଦ୍ୱାରା ବିନାଶପ୍ରାପ୍ତ ହୋଇଅଛନ୍ତି । ତୁମ୍ଭେ ମଧ୍ୟ ଦଗ୍ଧାତ୍ରେୟ ମୁନିଙ୍କ ପ୍ରସାଦରେ ବିପୁଳ ରାଜ୍ୟ, ବଳ, ଧର୍ମ ଏବଂ ପରମ ଦୁର୍ଲ୍ଲଭ ଶାସ୍ତ୍ରଜ୍ଞାନ ଲାଭ କରିଅଛ । ୧୨ ।

ହେ ଅର୍ଜୁନ ! ତୁମ୍ଭେ ବ୍ରାହ୍ମଣରୂପୀ ଅଗ୍ନିଙ୍କୁ କେଉଁ କାରଣରେ ନିତ୍ୟ ପୂଜା କର ? ସେ ସମସ୍ତ ଲୋକର ହବ୍ୟ ବହନ କରନ୍ତି, ତାହାଙ୍କୁ ତୁମ୍ଭେ କି ଜାଣ ନାହିଁ ? ୧୩ । ଅଥବା ବ୍ରାହ୍ମଣଶ୍ରେଷ୍ଠ ପ୍ରତି ଭୂତଙ୍କର ପାଳକ, ଅତଏବ ବ୍ରାହ୍ମଣଙ୍କୁ ଜୀବଲୋକର କର୍ତ୍ତା ବୋଲି ଜାଣି ତୁମ୍ଭେ କି ନିମିତ୍ତ ବିମୁଗ୍ଧ ହେଉଅଛ ? ୧୪ । ଅବ୍ୟକ୍ତ ଅବ୍ୟୟ ପ୍ରଭୁ ପ୍ରଜାପତି ବ୍ରହ୍ମା ନିଖିଳ ସ୍ଥାବର ଜଙ୍ଗମ ଏହି ବିଶ୍ୱର ସୃଷ୍ଟି କରିଅଛନ୍ତି । ୧୫ । କୌଣସି କୌଣସି ମୂର୍ଖଗଣ ସେହି ବ୍ରହ୍ମାଙ୍କୁ ବ୍ରହ୍ମାଙ୍କ ଅଣ୍ଡଜାତ ବୋଲି କହିବାକୁ ଇଚ୍ଛା କରନ୍ତି । ଅଣ୍ଡ ବିଭିନ୍ନ ହେଲେ ତହିଁରୁ ଶୈଳସମୂହ, ଦିଙ୍ମଣ୍ଡଳ, ଜଳରାଶି, ପୃଥିବୀ ଓ ଆକାଶ ପ୍ରକାଶ ପାଏ । ୧୬ । ଯେ ଦ୍ରଷ୍ଟବ୍ୟ ନୁହନ୍ତି, କାରଣ ବ୍ରହ୍ମା ଅଜ ହୋଇ କେଉଁପରି ଜନ୍ମଗ୍ରହଣ କଲେ ? ଆକାଶ ଅଣ୍ଡ ରୂପେ ସ୍ମୃତ ହୋଇଅଛି । ପିତାମହ ସେହି ଆକାଶରୁ ଜାତ ହୋଇ-ଅଛନ୍ତି । ୧୭ । ଯେତେବେଳେ କିଛି ନ ଥିଲା, ତେତେବେଳେ ବ୍ରହ୍ମା କିପରି ଅବସ୍ଥାନ କଲେ ? ତାହା କୀର୍ତ୍ତନ କର । ଏହି ମହାତ୍ମା ସର୍ବପ୍ରଥମରେ ସମୁଦ୍ଭୂତ ହୋଇ ଅହଙ୍କାରାତ୍ମକ ଦେହ ଆଶ୍ରୟ ପୂର୍ବକ ସର୍ବଭୂତର ସୃଷ୍ଟି କରିଥିଲେ । ସେ ପ୍ରଥମେ ସମସ୍ତଙ୍କର ଆବିର୍ଭୂତ ବ୍ରାହ୍ମଣ । ଅତଏବ ତାହାଙ୍କ ତୁଲ୍ୟ ହେବାକୁ ଇଚ୍ଛା କରିବାର ତୁମ୍ଭର କଦାପି ଉଚିତ ନୁହେଁ ।

ଭଗବାନ୍ ସମୀର ଏହି କଥା କହିବାରୁ ରାଜା କାର୍ତ୍ତବୀର୍ଯ୍ୟ ତାହାଙ୍କ ବାକ୍ୟ ଶ୍ରବଣ ପୂର୍ବକ ମୌନାବଲମ୍ବନ କରି ରହିଲେ । ତଦନନ୍ତର ବାୟୁ କହିଲେ । ୧୯ ।

---

# ଅଧ୍ୟାୟ—୧୫୪

ବାୟୁ କହିଲେ—ହେ ରାଜନ୍ ! ପୂର୍ବକାଳରେ ଅଙ୍ଗ ନାମକ ନୃପତି ଦ୍ୱିଜାତିଗଣଙ୍କୁ ଦକ୍ଷିଣା ରୂପରେ ଏହି ପୃଥିବୀ ଦାନ କରିବାକୁ ଇଚ୍ଛୁକ ହେବାରୁ ପୃଥିବୀ ଚିନ୍ତା କଲେ ଯେ, ଆମ୍ଭେ ସର୍ବଭୂତଧାରିଣୀ ବ୍ରହ୍ମସୁତା, ଅତଏବ ଏହି ନୃପତି ଆମ୍ଭଙ୍କୁ ପ୍ରାପ୍ତ ହୋଇ କେଉଁ ନିମିତ୍ତ ବ୍ରାହ୍ମଣଗଣଙ୍କୁ ଦାନ କରିବାକୁ ଅଭିଳାଷୀ ହୋଇଅଛନ୍ତି ? ୨ । ଯାହାହେଉ ଆମ୍ଭେ ଭୂମିତ୍ୱ ପରିତ୍ୟାଗ କରି ବ୍ରହ୍ମଲୋକକୁ ଗମନ କରିବୁ । ଏହି ନୃପତି ରାଜ୍ୟହୀନ ହେଉନ୍ତୁ । ଧରଣୀ ଏହା ଚିନ୍ତା କରି ବ୍ରହ୍ମଲୋକକୁ ଗମନ କଲେ । ୩ । ଅନନ୍ତର ତେତେବେଳେ କଶ୍ୟପ ପୃଥିବୀକୁ ଗମନ କରିବାର ଦେଖି ତତ୍କ୍ଷଣାତ୍ ଯୋଗବଳରେ ନିଜ ଦେହକୁ ପରିତ୍ୟାଗ ପୂର୍ବକ ନିର୍ଜୀବ ମହୀଦେହରେ ପ୍ରବେଶ କଲେ । ୪ । ତେତେବେଳେ ପୃଥିବୀ ତୃଣ ଏବଂ ଓଷଧିସମନ୍ୱିତ ଓ ସର୍ବତୋଭାବରେ ସମୃଦ୍ଧିସମ୍ପନ୍ନ ହେଲେ । ହେ ରାଜନ୍ ! ଅନନ୍ତର ପୃଥିବୀରେ ଧର୍ମର ପ୍ରାଧାନ୍ୟ ଏବଂ ସମସ୍ତ ଭୟ ନଷ୍ଟ ହେଲା । ୫ ।

ମହାରାଜ ! ଏହି ରୂପେ ଦେବ ପରିମାଣରେ ତ୍ରିଂଶତ୍ ସହସ୍ର ବର୍ଷ କଶ୍ୟପ କର୍ତ୍ତୃକ ଅଧିଷ୍ଠିତା ଭୂମି ସର୍ବଦା ଅତନ୍ଦ୍ରିତା ହୋଇ ରହିଲେ । ୬ । ରାଜନ୍ ! ତତ୍ପରେ ପୃଥିବୀ ବ୍ରହ୍ମଲୋକରୁ ଆଗମନ ପୂର୍ବକ ,କଶ୍ୟପଙ୍କୁ ନମସ୍କାର କରି ମହାନୁଭବ କଶ୍ୟପଙ୍କର କନ୍ୟାତ୍ୱ ସ୍ୱୀକାର କଲେ, ଅତଏବ କାଶ୍ୟପୀ ନାମରେ ଜନ୍ମଗ୍ରହଣ କଲେ ।୭। ହେ ରାଜନ୍ ! କଶ୍ୟପ ବ୍ରାହ୍ମଣ ଈଦୃଶ ପରାକ୍ରାନ୍ତ ଥିଲେ । ତୁମ୍ଭେ କହ ଅନ୍ୟ କ୍ଷତ୍ରିୟ କଶ୍ୟପଙ୍କ ଅପେକ୍ଷା ଶ୍ରେଷ୍ଠ କି ନା ? ୮ । ନୃପତି ଏହି କଥା ଶୁଣି ମୌନାବଲମ୍ବନ କଲେ ।

ପବନ ପୁନଶ୍ଚ କହିଲେ, ହେ ରାଜନ୍ ! ଆଙ୍ଗିରସ କୁଳରେ ପ୍ରସୂତ ଉତଥ୍ୟଙ୍କ ବୃତ୍ତାନ୍ତ ଶ୍ରବଣ କର । ସୋମଙ୍କ ସୁତା ଭଦ୍ରା ପରମ ରୂପବତୀ

ଥିଲେ । ସୋମ ଉତଥ୍ୟଙ୍କୁ ତାହାଙ୍କ ପୁତ୍ରୀଙ୍କର ଅନୁରୂପ ପତି ବୋଲି ଦେଖିଲେ; ସେହି ମହାଭାଗା ଯଶସ୍ୱିନୀ ମନୋହରାଙ୍ଗୀ ପରମ ନିୟମ ଅବଲମ୍ବନ ପୂର୍ବକ ଉତଥ୍ୟଙ୍କ ନିମିତ୍ତ ପତିବ୍ରତର ତପଶ୍ଚରଣ କଲେ । ୧୧ । ତଦନନ୍ତର ସୋମଙ୍କ ପିତା ଅତ୍ରି ଉତଥ୍ୟଙ୍କୁ ଆହ୍ୱାନ ପୂର୍ବକ ସେହି ଯଶସ୍ୱିନୀଙ୍କୁ ଦାନ କଲେ । ଭୂରିଦକ୍ଷିଣ ଉତଥ୍ୟ ମଧ୍ୟ ଭାର୍ଯ୍ୟା ଅର୍ଥରେ ତାହାଙ୍କୁ ବିଧିପୂର୍ବକ ଗ୍ରହଣ କଲେ । ୧୨ । ଶ୍ରୀମାନ୍ ବରୁଣ ପୂର୍ବେ ସେହି ସ୍ତ୍ରୀକୁ କାମନା କରିଥିଲେ, ସେ ବନସ୍ଥଳକୁ ଆଗମନ ପୂର୍ବକ ଯମୁନାତୀରରେ ତାହାଙ୍କୁ ହରଣ କଲେ ।୧୩। ଜଳାଧିପତି ବରୁଣ ସେହି କନ୍ୟାକୁ ହରଣ ପୂର୍ବକ ନିଜ ପୁରକୁ ଆନୟନ କଲେ । ବରୁଣଙ୍କ ପୁରୀ ଅପେକ୍ଷା ଅନ୍ୟ କୌଣସି ଲୋକ ରମ୍ୟତର ନ ଥିଲା । ତନ୍ମଧ୍ୟରେ ପରମ ଅଦ୍ଭୁତ ଷଟ୍‌ସହସ୍ର ଶତ ହ୍ରଦ ଥିଲା, ତାହା ପ୍ରାସାଦସମୂହ, ଅପ୍‌ସରୋଗଣ ଏବଂ ଦିବ୍ୟ କାମସମୂହ ଦ୍ୱାରା ସୁଶୋଭିତ ହୋଇଥିଲା । ୧୫ । ହେ ରାଜନ୍ ! ଜଳେଶ୍ୱର ସେହି ପୁର ମଧ୍ୟରେ ଉତଥ୍ୟ ଭାର୍ଯ୍ୟାଙ୍କ ସହିତ କ୍ରୀଡ଼ା କଲେ ।

ତଦନନ୍ତର ନାରଦ ଉତଥ୍ୟଙ୍କୁ ତାହାଙ୍କ ପତ୍ନୀହରଣ ବୃତ୍ତାନ୍ତ କହିଲେ । ଉତଥ୍ୟ ନାରଦଙ୍କ ମୁଖରୁ ତାହା ଶ୍ରବଣ କରି ତେତେବେଳେ ତାହାଙ୍କୁ କହିଲେ, ଆପଣ ବରୁଣଙ୍କ ନିକଟକୁ ଗମନ କରି ତାହାଙ୍କୁ ଆମ୍ଭର ଏହି ପରୁଷ ବାକ୍ୟାନୁସାରେ "ଆମ୍ଭର ଭାର୍ଯ୍ୟାଙ୍କୁ ପରିତ୍ୟାଗ କର, ତୁମ୍ଭେ କେଉଁ କାରଣରେ ତାହାଙ୍କୁ ହରଣ କରିଅଛ ? ତୁମ୍ଭେ ଲୋକପାଳ, ଲୋକସମୂହର ଲୋପକାରକ ହୁଅନା (୧୮), ସୋମ ଆମ୍ଭଙ୍କୁ ଭାର୍ଯ୍ୟା ଦାନ କରିଅଛନ୍ତି । ତୁମ୍ଭେ ସମ୍ପ୍ରତି ତାହାଙ୍କୁ କେଉଁ ନିମିତ୍ତ ହରଣ କଲ" ଏହା ଏବଂ ଅନ୍ୟ ପରୁଷ ବାକ୍ୟ କହିବା ହେଉନ୍ତୁ । ଉତଥ୍ୟଙ୍କର ଏହି ସମସ୍ତ ବାକ୍ୟରେ ନାରଦ କର୍ତ୍ତୃକ ଜଳେଶ୍ୱର ଉକ୍ତ ଓ ତିରସ୍କୃତ ହେଲେ— "ତୁମ୍ଭେ ଉତଥ୍ୟଙ୍କ ଭାର୍ଯ୍ୟାଙ୍କୁ ପରିତ୍ୟାଗ କର । ତୁମ୍ଭେ କି ନିମିତ୍ତ ତାହାଙ୍କୁ ହରଣ କରିଅଛ ?"

ବରୁଣ ନାରଦଙ୍କର ଏହି କଥା ଶ୍ରବଣ କରି ତାହାଙ୍କୁ କହିଲେ (୨୦), ଏହି ଭୀରୁ ଆମ୍ଭର ଅତ୍ୟନ୍ତ ପ୍ରିୟ, ଆମ୍ଭେ ଏହାଙ୍କୁ ପରିତ୍ୟାଗ କରି ପାରିବୁ ନାହିଁ । ବରୁଣ ଏହି କଥା କହିବାରୁ ନାରଦ ଅନତିହୃଷ୍ଟଚିତ୍ତରେ ଉତଥ୍ୟ ମୁନିଙ୍କ ନିକଟରେ ପ୍ରବିଷ୍ଟ ହୋଇ କହିଲେ, ହେ ମହାମୁନେ ! ବରୁଣ ଆମ୍ଭର ଗଳରେ ହସ୍ତ ଦେଇ ବିଦାୟ କଲେ । ତୁମ୍ଭ ଭାର୍ଯ୍ୟାଙ୍କୁ ପ୍ରଦାନ କଲେ ନାହିଁ । ସମ୍ପ୍ରତି ତୁମ୍ଭର ଯାହା କର୍ତ୍ତବ୍ୟ ତାହା କର । ୨୨ ।

ମହାତପା ଉତଥ୍ୟ ନାରଦଙ୍କ ବାକ୍ୟ ଶ୍ରବଣ କରି କ୍ରୁଦ୍ଧ ଓ ପ୍ରଜ୍ୱଳିତ ହେଲେ ଏବଂ ସ୍ୱକୀୟ ତେଜଃ ପ୍ରଭାବରେ ବାରିବିଷ୍ଟମ୍ଭନ ପୂର୍ବକ ପାନ କଲେ । ୨୩ । ସମସ୍ତ ଜଳ ପୀତ ହେବାରୁ ଜଳେଶ୍ୱର ସୁହୃଦ୍‌ଗଣ କର୍ତ୍ତୃକ ତିରସ୍କୃତ ହୋଇ ସୁଦ୍ଧା ତେତେବେଳେ ଉତଥ୍ୟଙ୍କ ଭାର୍ଯ୍ୟାଙ୍କୁ ପ୍ରଦାନ କଲେ ନାହିଁ । ୨୪ ।

ତଦନନ୍ତର ଦ୍ୱିଜବର ଉତଥ୍ୟ କ୍ରୁଦ୍ଧ ହୋଇ ଭୂମିକୁ କହିଲେ, ହେ ଭଦ୍ରେ ! ତୁମ୍ଭେ ଆମ୍ଭଙ୍କୁ ଷଟ୍‌ସହସ୍ର ଶତହ୍ରଦ ବିଶିଷ୍ଟ ସ୍ଥଳ ପରିଦର୍ଶନ କରାଅ । ୨୫ । ତଦନନ୍ତର ସେହି ସ୍ଥଳ ମରୁଭୂମି ଓ ସମୁଦ୍ର ଶୁଷ୍କ ହେଲା । ସେହି ଦ୍ୱିଜବର ସରସ୍ୱତୀ ନଦୀକୁ କହିଲେ, ହେ ଭୀରୁ ସରସ୍ୱତୀ ! ତୁମ୍ଭେ ଏହି ଦେଶରୁ ଅଦୃଶ୍ୟା ହୋଇ ମରୁଭୂମିକୁ ଗମନ କର । ହେ ଶୁଭେ ! ଏହି ଦେଶ ତୁମ୍ଭ କର୍ତ୍ତୃକ ପରିତ୍ୟକ୍ତ ହୋଇ ପୁଣ୍ୟହୀନ ହେଉ । ୨୬ । ତଦନନ୍ତର ସେହି ଦେଶ ସମ୍ୟକ୍ ରୂପେ ଶୋଷିତ ହେବାରୁ ବରୁଣ ଭଦ୍ରାଙ୍କୁ ଗ୍ରହଣ କରି ଉତଥ୍ୟଙ୍କ ଶରଣାଗତ ହୋଇ ତାହାଙ୍କୁ ତଦୀୟ ପତ୍ନୀ ପ୍ରତ୍ୟର୍ପଣ କଲେ ।

ହେ ହୈହୟ ! ଉତଥ୍ୟ ସେହି ପତ୍ନୀଙ୍କୁ ଗ୍ରହଣ କରି ସୁମନା ହେଲେ । ଜଗନ୍ମଣ୍ଡଳ ଦୁଃଖରୁ ମୁକ୍ତ ହେଲା । ହେ ନରାଧିପ ! ସୁମହାତେଜା ଧର୍ମଜ୍ଞ ଉତଥ୍ୟ ସେହି ଭାର୍ଯ୍ୟାଙ୍କୁ ପ୍ରାପ୍ତ ହୋଇ ବରୁଣଙ୍କୁ ଯାହା କହିଲେ, ତାହା ଶ୍ରବଣ କର । ୩୦ । ହେ ଜଳାଧିପ ! ତୁମ୍ଭେ ଆକ୍ରୋଶ ପ୍ରକାଶ କଲେ ସୁଦ୍ଧା ଆମ୍ଭେ ତପସ୍ୟା ଦ୍ୱାରା ଏହାଙ୍କୁ ଲାଭ କରିଅଛୁ, ଏହି କଥା କହି ସେ ସ୍ୱକୀୟ ଭାର୍ଯ୍ୟାଙ୍କୁ ଗ୍ରହଣପୂର୍ବକ ସ୍ୱଭବନକୁ ଗମନ କଲେ । ୩୧ । ହେ ରାଜନ୍ ! ଏହି ଉତଥ୍ୟ ଏତାଦୃଶ ବ୍ରାହ୍ମଣଶ୍ରେଷ୍ଠ ଅଟନ୍ତି । ଆମ୍ଭେ କହୁଅଛୁ ଯଦ୍ୟପି ତୁମ୍ଭେ କହ ଦେଖି କ୍ଷତ୍ରିୟ କି ଉତଥ୍ୟଙ୍କ ଅପେକ୍ଷା ଶ୍ରେଷ୍ଠ ? ୩୨ ।

---

# ଅଧ୍ୟାୟ—୧୫୫

ଭୀଷ୍ମ କହିଲେ—ହେ ରାଜନ୍ ! ସମୀରଣ କାର୍ତ୍ତବୀର୍ଯ୍ୟଙ୍କୁ ଏହିପରି କହିବାରୁ ସେ ମୌନାବଲମ୍ବନ କରି ରହିଲେ । ତେତେବେଳେ ପବନଦେବ କହିଲେ, ହେ ରାଜନ୍ ! ଦ୍ୱିଜବର ଅଗସ୍ତ୍ୟଙ୍କ ମାହାତ୍ମ୍ୟ ଶ୍ରବଣ କର ।୧। ଅସୁରଗଣ ଦେବତାମାନଙ୍କୁ ପରାସ୍ତ କରି ସେହିମାନଙ୍କର ଯଜ୍ଞ, ପିତୃଗଣଙ୍କର ସ୍ୱଧା ମନ୍ତ୍ରଦ୍ୱାରା ପ୍ରଦତ୍ତ କବ୍ୟସମୂହକୁ ହରଣ କଲେ । ହେ ହୈହୟଶ୍ରେଷ୍ଠ ! ମାନବଗଣଙ୍କର ଯଜ୍ଞକର୍ମ ନଷ୍ଟ ହେବାରୁ ଦେବଗଣ ଐଶ୍ୱର୍ଯ୍ୟଭ୍ରଷ୍ଟ ଏବଂ ଉତ୍ସାହଶୂନ୍ୟ ହୋଇ ପୃଥିବୀରେ ବିଚରଣ କରୁଥିଲେ ବୋଲି ଶୁଣାଅଛି ।୩। ହେ ରାଜନ୍ ! ଏକଦା ସେମାନେ ଇତସ୍ତତଃ ବିଚରଣ କରୁଥିବା ସମୟରେ ତେଜରେ ଆଦିତ୍ୟଙ୍କ ସଦୃଶ ପ୍ରଦୀପ୍ତ କଳେବର ବିପୁଳବ୍ରତ ତେଜୋଯୁକ୍ତ ଅଗସ୍ତ୍ୟଙ୍କୁ ଦର୍ଶନ କଲେ ।୪।

ହେ ଜନାଧିପ ! ଦେବଗଣ ସେହି ମହାତ୍ମା ଅଗସ୍ତ୍ୟଙ୍କୁ ଅଭିବାଦନ ପୂର୍ବକ କୁଶଳ ପ୍ରଶ୍ନ କରି କହିଲେ, ହେ ମୁନିଶ୍ରେଷ୍ଠ ! ଆମ୍ଭେମାନେ ଯୁଦ୍ଧରେ ଦାନବଗଣ କର୍ତ୍ତୃକ ପରାଜିତ ହୋଇଅଛୁଁ; ଏବଂ ଆମ୍ଭେମାନେ ଐଶ୍ୱର୍ଯ୍ୟରୁ ଭ୍ରଂଶିତ ହୋଇଅଛୁ, ଅତଏବ ଆପଣ ଆମ୍ଭମାନଙ୍କୁ ଏହି ତୀବ୍ର ଭୟରୁ ପରିତ୍ରାଣ କରନ୍ତୁ ।୬। ଅଗସ୍ତ୍ୟ ଦେବଗଣଙ୍କର ଏହି ବାକ୍ୟ ଶ୍ରବଣ କରି ଅତିଶୟ କୋପାନ୍ୱିତ ହେଲେ ଏବଂ ସେହି ତେଜସ୍ୱୀ ପ୍ରଳୟ କାଳର କାଳାଗ୍ନି ସଦୃଶ ପ୍ରଜ୍ୱଳିତ ହେଲେ ।୭। ମହାରାଜ ! ତେତେବେଳେ ସହସ୍ର ସହସ୍ର ଦାନବଗଣ ସେହି ପ୍ରଦୀପ୍ତ କିରଣଜାଳଦ୍ୱାରା ନିଃଶେଷରେ ଦଗ୍ଧ ହୋଇ ଅନ୍ତରୀକ୍ଷରୁ ନିପତିତ ହେଲେ ।୮। ଦୈତ୍ୟଗଣ ଅଗସ୍ତ୍ୟଙ୍କ ତେଜଦ୍ୱାରା ଦହ୍ୟମାନ ହୋଇ ଭୂଲୋକ ଓ ସ୍ୱର୍ଗଲୋକ ପରିତ୍ୟାଗ ପୂର୍ବକ ଦକ୍ଷିଣଦିଗକୁ ଗମନ କଲେ ।୯। ତେତେବେଳେ ବଳି ମହୀତଳରେ ଅଶ୍ୱମେଧ ଯଜ୍ଞ କରୁଥିଲେ, ସେ ଓ ତଦ୍‌ଭିନ୍ନ ଯେଉଁ ସମସ୍ତ ମହାସୁରମାନେ ଅଧସ୍ଥ ଓ ମହୀସ୍ଥ ହୋଇଥିଲେ ସେମାନେ ଦଗ୍ଧ ହୋଇ ନ ଥିଲେ ।୧୦। ହେ ନୃପ ! ତଦନନ୍ତର ଶାନ୍ତଭୟ ସୁରଗଣ ପୁନଶ୍ଚ ଲୋକସମୂହ ପ୍ରାପ୍ତ ହେଲେ ।

ତେତେବେଳେ ଦେବଗଣ ଅଗସ୍ତ୍ୟଙ୍କୁ କହିଲେ, ହେ ମହର୍ଷେ ! ଆପଣ ଭୂମିସ୍ଥ ଅସୁରଗଣଙ୍କୁ ସଂହାର କରିବା ହେଉନ୍ତୁ ।୧୧। ହେ

ରାଜନ୍ ! ଦେବଗଣ ଏହିପରି କହିବାରୁ ଅଗସ୍ତ୍ୟ ସେମାନଙ୍କୁ କହିଲେ, ହେ ଦେବଗଣ ! ଆମ୍ଭେ ମହୀସ୍ଥ ଦାନବଗଣଙ୍କୁ ସଂହାର କରିବାକୁ ସମର୍ଥ ନୋହୁଁ । କାରଣ ତାହା କଲେ ଆମ୍ଭ ତପସ୍ୟାର କ୍ଷୟ ହେବାର ସମ୍ଭାବନା । ୧୨ । ହେ ରାଜନ୍ ! ତପସ୍ୟାଦ୍ୱାରା ବିଶୁଦ୍ଧଚିତ୍ତ ଭଗବାନ୍ ଅଗସ୍ତ୍ୟ ଏହିରୂପେ ସ୍ୱୀୟ ତେଜଃଦ୍ୱାରା ଦାନବଗଣଙ୍କୁ ଦଗ୍ଧ କରିଥିଲେ । ୧୩ । ହେ ଅନଘ ! ଅଗସ୍ତ୍ୟ ଏତାଦୃଶ ଅଟନ୍ତି ବୋଲି ଆମ୍ଭେ ତୁମ୍ଭ ନିକଟରେ କହିଲୁ, ଆମ୍ଭେ ପଚାରୁଅଛୁ ତୁମ୍ଭେ କହ ଅଗସ୍ତ୍ୟଙ୍କ ଅପେକ୍ଷା କ୍ଷତ୍ରିୟ କି ଶ୍ରେଷ୍ଠ ? ୧୪ । ଭୀଷ୍ମ କହିଲେ, କାର୍ତ୍ତବୀର୍ଯ୍ୟ ନୃପତି ଏହି ବାକ୍ୟ ଶ୍ରବଣ କରି ମୌନାବଲମ୍ବନ କରି ରହିଲେ ।

ତଦନନ୍ତର ବାୟୁ କହିଲେ, ହେ ରାଜନ୍ ! ଯଶସ୍ୱୀ ବଶିଷ୍ଠଙ୍କର ମୁଖ୍ୟ କର୍ମ ଶ୍ରବଣ କର । ୧୫ । ଆଦିତ୍ୟଗଣ ମନେ ମନେ ବଶିଷ୍ଠଙ୍କ ଗୌରବ ଜ୍ଞାତ ହୋଇ ବୈଖାନସ ନାମକ ସରୋବର ସମୀପରେ ତାହାଙ୍କ ନିକଟକୁ ଯାଇ ଯଜ୍ଞ କରୁଥିଲେ । ଗିରିସଦୃଶ ବଳିଷ୍ଠ ଦାନବଗଣ ଦେବତାମାନଙ୍କୁ ଯଜମାନ ଓ ଯଜ୍ଞଦୀକ୍ଷା ବଶତଃ କୃଶ ହୋଇଥିବାର ଦର୍ଶନ କରି ସେମାନଙ୍କ ବିନାଶ ବିଷୟରେ ଅଭିଳାଷୀ ହେଲେ । ୧୭ । ସେମାନଙ୍କ ଅଦୂରରେ ବ୍ରହ୍ମଦତ୍ତ ନାମକ ସରୋବର ଥିଲା । ହତାହତ ଦାନବଗଣ ସେହି ସରୋବରରେ ସ୍ନାନ କଲାମାତ୍ରେ ଜୀବିତ ହେଲେ । ୧୮ । ସେମାନେ ମହାଘୋରତର ପର୍ବତ, ପରିଘ ଓ ବୃକ୍ଷସମୂହ ଗ୍ରହଣ ପୂର୍ବକ ଶତଯୋଜନ ସମୁତ୍ଥିତ ଜଳରାଶି ଆନ୍ଦୋଳିତ କଲେ । ୧୯ । ଅନନ୍ତର ଦଶସହସ୍ର ଦାନବ ଦେବଗଣଙ୍କ ପ୍ରତି ଧାବିତ ହେଲେ । ଦେବଗଣ ସେହି ଦାନବବଳକର୍ତ୍ତୃକ ପୀଡ଼ିତ ହୋଇ ଇନ୍ଦ୍ରଙ୍କ ଶରଣାଗତ ହେଲେ । ୨୦ । ଦେବରାଜ ଦେବଗଣଙ୍କ ଦୁଃଖରେ ବ୍ୟଥିତ ହୋଇ ବଶିଷ୍ଠଙ୍କ ଶରଣ ନେଲେ । ତଦନନ୍ତର ଭଗବାନ୍ ବଶିଷ୍ଠ ଋଷି ସେମାନଙ୍କୁ ଅଭୟ ଦେଲେ । ୨୧ ।

ତେତେବେଳେ ଆନୃଶଂସ୍ୟପରାୟଣ ମୁନି ଦେବଗଣଙ୍କୁ ଦୁଃଖିତ ହୋଇଥିବାର ଜାଣି ସ୍ୱକୀୟ ତେଜଃ ପ୍ରଭାବରେ ଅଯତ୍ନ ପୂର୍ବକ ସେହି ସମସ୍ତ ଖଳୀ ଦାନବଦଳଙ୍କୁ ଦଗ୍ଧ କଲେ । ୨୨ । ମହାତପା ବଶିଷ୍ଠ କୈଳାସ ପର୍ବତରେ ପ୍ରସ୍ଥିତା ଗଙ୍ଗାନଦୀଙ୍କୁ ସେହି ଦିବ୍ୟ ସରୋବରକୁ ଆନୟନ କଲେ । ସେହି ସରୋବର ଗଙ୍ଗାଙ୍କ ସହିତ ଅଭିନ୍ନ ହେଲା । ୨୩ । ସେହି ସରୋବର ଗଙ୍ଗାଙ୍କ ସହିତ ମିଳିତ ହୋଇ ସରଯୂନାମ ଧାରଣ କଲା ।

ଯେଉଁ ସ୍ଥାନରେ ଖଳୀ ଦାନବଦଳ ହତ ହୋଇଥିଲେ ସେହି ଦେଶର ନାମ ଖଳନ ହେଲା । ୨୪ । ଏହିରୂପେ ଇନ୍ଦ୍ରଙ୍କ ସହିତ ଦେବଗଣ ବଶିଷ୍ଠଙ୍କ ଦ୍ୱାରା ରକ୍ଷିତ ହୋଇଥିଲେ ଏବଂ ବ୍ରହ୍ମଦତ୍ତ ବରପ୍ରାପ୍ତ ଦାନବଗଣ ମହାତ୍ମା ବଶିଷ୍ଠ କର୍ତ୍ତୃକ ନିହତ ହୋଇଥିଲେ । ୨୫ । ହେ ଅନଘ ! ଆମ୍ଭେ ଏହିପରି ବଶିଷ୍ଠଙ୍କ କାର୍ଯ୍ୟ କହିଲୁଁ । ଆମ୍ଭେ ପଚାରୁଅଛୁ ତୁମ୍ଭେ କହ ଦେଖି ବଶିଷ୍ଠଙ୍କ ଅପେକ୍ଷା କ୍ଷତ୍ରିୟ କି ଶ୍ରେଷ୍ଠ ? ୨୬ ।

---

## ଅଧ୍ୟାୟ—୧୫୭

ଭୀଷ୍ମ କହିଲେ—କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଏହି ବାକ୍ୟ ସବୁ ଶ୍ରବଣ କରି ମୌନାବଲମ୍ବୀ ହେଲେ । ତଦନନ୍ତର ବାୟୁ ତାହାଙ୍କୁ କହଲେ, ହେ ହୈହୟଶ୍ରେଷ୍ଠ ! ଆମ୍ଭ ନିକଟରୁ ମହାତ୍ମା ଅତ୍ରିଙ୍କ କର୍ମ ଶ୍ରବଣ କର । ୧ । ଦେବଦାନବଗଣ ମିଳିତ ହୋଇ ଘୋରତର ଅନ୍ଧକାରରେ ଯୁଦ୍ଧ କରୁଥିଲେ । ସେହି ଯୁଦ୍ଧରେ ରାହୁ ଶରଦ୍ୱାରା ଚନ୍ଦ୍ର ଏବଂ ସୂର୍ଯ୍ୟଙ୍କୁ ବିଦ୍ଧ କଲେ । ୨ । ହେ ନୃପବର ! ଅନନ୍ତର ତମୋଗ୍ରସ୍ତ ସୁରଗଣ ସେତେବେଳେ ବଳବାନ୍ ଦାନବଦଳ କର୍ତ୍ତୃକ ନିହତ ହେଲେ । ୩ । ସୁରଗଣ ଅସୁରଦଳକର୍ତ୍ତୃକ ବଧମାନ ଓ କ୍ଷୀଣବଳ ହୋଇ ତପୋଧନ ବିପ୍ର ଅତ୍ରିଙ୍କୁ ତପସ୍ୟା କରୁଥିବାର ଦେଖିଲେ । ୪ । ଅନନ୍ତର ସୁରଗଣ ସେହି ଶାନ୍ତ ଜିତେନ୍ଦ୍ରିୟ ଅତ୍ରିଙ୍କୁ କହିଲେ, ହେ ମହର୍ଷେ ! ଚନ୍ଦ୍ର ସୂର୍ଯ୍ୟ ଦୁହେଁ ଓ ଆମ୍ଭେମାନେ ଅସୁରଗଣଙ୍କ ଇଷୁଦ୍ୱାରା ବିଦ୍ଧ ହୋଇଅଛୁଁ । ଆମ୍ଭେମାନେ ତମସାବୃତ ପ୍ରଦେଶରେ ବୈରିବର୍ଗ କର୍ତ୍ତୃକ ବ୍ୟଥିତ ହୋଇ-ଥିଲୁ, ଶାନ୍ତିଲାଭ କରିପାରିନାହୁଁ ! ଅତଏବ ହେ ପ୍ରଭୋ ! ଆପଣ ଆମ୍ଭମାନଙ୍କୁ ଭୟରୁ ପରିତ୍ରାଣ କରିବା ହେଉନ୍ତୁ । ୬ । ଋଷି କହିଲେ, ଆମ୍ଭେ ଆପଣମାନଙ୍କୁ କେଉଁପରି ରକ୍ଷା କରିବୁ ? ସେମାନେ କହିଲେ, ଆପଣ ଚନ୍ଦ୍ରମା ହେଉନ୍ତୁ, ଏବଂ ତିମିରଘ୍ନ ସୂର୍ଯ୍ୟ ହୋଇ ଅସ୍ମଦୀୟ ଶତ୍ରୁ-ସମୂହଙ୍କୁ ବିନାଶ କରିବା ହେଉନ୍ତୁ । ୭ ।

ଦେବଗଣ ଏହିପରି କହିବାରୁ ଅତ୍ରିମୁନି ତମୋହନ୍ତା ଶଶୀ ହେଲେ ଏବଂ ସୌମ୍ୟଭାବବଶତଃ ସୋମବତ୍ ପ୍ରିୟଦର୍ଶନ ହୋଇ ରହିଲେ । ୮ ।

ହେ ରାଜନ୍ ! ତେତେବେଳେ ଅତି ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ପ୍ରଭାଯୁକ୍ତ ନ ଦେଖି ସ୍ୱକୀୟ ତପୋବଳଦ୍ୱାରା ରଣସ୍ଥଳ ପ୍ରକାଶିତ କଲେ । ୯ । ଜଗତ୍ ତମିର-ଶୂନ୍ୟ ଓ ପ୍ରକାଶିତ ହେଲା । ୧୦ । ସେ ନିଜ ତେଜଦ୍ୱାରା ଦେବଗଣଙ୍କ ଶତ୍ରୁବୃନ୍ଦଙ୍କୁ ଜୟ କଲେ । ଦେବଗଣ ମହାସୁରଗଣଙ୍କୁ ଅତିକର୍ତ୍ତୃକ ଦହ୍ୟମାନ ହେବାର ଦେଖି (୧୧) ସେମାନେ ମଧ୍ୟ ତତ୍କର୍ତ୍ତୃକ ରକ୍ଷିତ ହୋଇ ପରାକ୍ରମଦ୍ୱାରା ଦାନବଗଣଙ୍କୁ ପରସ୍ପର ପ୍ରହାର କଲେ । ତଦନନ୍ତର ସୂର୍ଯ୍ୟ ଉଦ୍ଭାସିତ, ସୁରଗଣ ପରାକ୍ରାନ୍ତ ଓ ଅସୁରଗଣ ନିହତ ହେଲେ ।୧୨। ଅତି ତେଜସ୍ୱୀ ଅତି ଅସୁରଗଣଙ୍କ ସାମର୍ଥ୍ୟ ହରଣ କଲେ । ହେ ରାଜର୍ଷେ ! ଦ୍ୱିଜଶ୍ରେଷ୍ଠ ଅଗ୍ନିସଦୃଶ ଚର୍ମାମ୍ବର, ଜଟାପରାୟଣ, ଫଳଭକ୍ଷ୍ୟ ଅତିକର୍ତ୍ତୃକ ଯେଉଁ କର୍ମ ନିର୍ବାହ ହୋଇଅଛି, ତାହା ଅବଲୋକନ କର । ଆମ୍ଭେ ମହାତ୍ମା ଅତିଙ୍କ କାର୍ଯ୍ୟ ବିସ୍ତାରକ୍ରମେ କହିଲୁ, ଆମ୍ଭେ ପଚାରୁଅଛୁଁ ତୁମ୍ଭେ କହ ଦେଖି ଅତିଙ୍କ ଅପେକ୍ଷା କ୍ଷତ୍ରିୟ କି ଶ୍ରେଷ୍ଠ ? ୧୪ ।

ଅର୍ଜ୍ଜୁନ ଏହି ବାକ୍ୟ ଶ୍ରବଣ ଉତ୍ତାରେ ମୌନାବଲମ୍ବୀ ହେବାରୁ ପବନ କହିଲେ, ହେ ରାଜନ୍ ! ମହାତ୍ମା ଚ୍ୟବନଙ୍କ ମହତ୍ କର୍ମ ଶ୍ରବଣ କର । ୧୫ । ଦେବଗଣଙ୍କ ସହିତ ଚ୍ୟବନ ଅଶ୍ୱିନୀକୁମାର ଯୁଗଳଙ୍କ ନିକଟରେ ପ୍ରତିଶ୍ରୁତ ହୋଇ ଇନ୍ଦ୍ରଙ୍କୁ କହିଲେ, ହେ ଦେବରାଜ ! ଆପଣ ଅଶ୍ୱିନୀକୁମାରଦ୍ୱୟଙ୍କୁ ସୋମପାୟୀ କରିବା ହେଉନ୍ତୁ । ୧୬ । ଇନ୍ଦ୍ର କହିଲେ, ଆମ୍ଭେମାନେ ଏହି ଦୁହିଁଙ୍କୁ ପରିତ୍ୟାଗ କରିଅଛୁ, ଅତଏବ ଏହି ଦୁହେଁ କେଉଁପରି ସୋମପାୟୀ ହେବେ ? ଦେବଗଣ ଏହି ଦୁହିଙ୍କୁ ପ୍ରଶଂସା କରନ୍ତି ନାହିଁ, ଅତଏବ ଆପଣ ଆମ୍ଭମାନଙ୍କୁ ଏପରି କଥା କହିବେ ନାହିଁ । ୧୭ । ହେ ମହାବ୍ରତ ବିପ୍ରବର ! ଆମ୍ଭେମାନେ ଅଶ୍ୱିନୀ-କୁମାର ଦୁହିଙ୍କ ସହିତ ସୋମପାନ କରିବାକୁ ଇଚ୍ଛା କରୁନାହୁଁ । ଆପଣ ଅନ୍ୟ କଥା ଯାହା କହିବେ, ତାହା ପ୍ରତିପାଳନ କରିବୁଁ । ୧୮ ।

ଚ୍ୟବନ କହିଲେ, ହେ ବଳସୂଦନ ! ସୁରେଶ୍ୱର ! ଅଶ୍ୱିନୀକୁମାର ଦୁହେଁ ଆପଣମାନଙ୍କ ସହିତ ସୋମପାନ କରିବେ, ଏହି ଦୁହେଁ ଅମର ଏବଂ ସୂର୍ଯ୍ୟଙ୍କ ପୁତ୍ର ଅଟନ୍ତି । ୧୯ । ହେ ଦେବଗଣ ! ତୁମ୍ଭେମାନେ ଆମ୍ଭ ବାକ୍ୟ ରକ୍ଷାକର । ତାହା ହେଲେ ତୁମ୍ଭମାନଙ୍କର ଶ୍ରେୟୋଲାଭ ହେବ । ଯଦି ତୁମ୍ଭେମାନେ ରକ୍ଷା ନ କର, ତେବେ ଅମଙ୍ଗଳ ହେବ । ୨୦ । ଇନ୍ଦ୍ର କହିଲେ, ହେ ଦ୍ୱିଜଶ୍ରେଷ୍ଠ ! ଆମ୍ଭେମାନେ ଅଶ୍ୱିନୀକୁମାର ଦୁହିଙ୍କ ସହିତ ସୋମପାନ କରିବୁ ନାହିଁ । ଯଦି ଅନ୍ୟ ଦେବଗଣଙ୍କର ଇଚ୍ଛା

ହୁଏ, ତେବେ ସେମାନେ ପାନ କରନ୍ତୁ । କିନ୍ତୁ ଆମ୍ଭେ ଏହିମାନଙ୍କ ସହିତ ସୋମପାନ କରିବାକୁ ଉତ୍ସାହ କରୁନାହୁଁ । ୨୧ । ଚ୍ୟବନ କହିଲେ, ହେ ବଳସୂଦନ ! ଯଦି ତୁମ୍ଭେ ଆମ୍ଭ ବାକ୍ୟ ପ୍ରତିପାଳନ ନ କର, ତେବେ ଆମ୍ଭଦ୍ୱାରା ମୁଖ ମଧ୍ୟରେ ପ୍ରମଥିତ ହୋଇ ତତ୍‌କ୍ଷଣାତ୍ ସୋମପାନ କରିବ । ୨୨ ।

ବାୟୁ କହିଲେ, ଅନନ୍ତର ଚ୍ୟବନ ଅଶ୍ୱିନୀକୁମାର ଦୁହିଙ୍କ ହିତ ନିମିତ୍ତ ସହସା କର୍ମ ଆରମ୍ଭ କଲେ, ତଦୀୟ ମନ୍ତ୍ରଦ୍ୱାରା ସୁରଗଣ ଅଭିଭୂତ ହେଲେ, ଚ୍ୟବନଙ୍କ ଦ୍ୱାରା ସେହି କର୍ମ ଆରମ୍ଭ ଦେଖି ଇନ୍ଦ୍ର କ୍ରୋଧରେ ମୂର୍ଚ୍ଛିତ ହୋଇ ବଜ୍ର ସହିତ ବିପୁଳ ଶୈଳ ଉତ୍ତୋଳନ ପୂର୍ବକ ଚ୍ୟବନଙ୍କ ପ୍ରତି ଧାବିତ ହେଲେ । ୨୪ । ତପସ୍ୟାଯୁକ୍ତ ଭଗବାନ୍ ଚ୍ୟବନ ଇନ୍ଦ୍ରଙ୍କୁ ଆସିବାର ଦେଖି କ୍ରୋଧାକୁଳ ଲୋଚନରେ ଜଳସେଚନ ପୂର୍ବକ ବଜ୍ର ସହିତ ଶୈଳକୁ ସ୍ତବ୍ଧ କରି ରଖିଲେ । ମହାତ୍ମନ ଚ୍ୟବନ ମହାଘୋରତର ମୁଖ ବିସ୍ତାର କରି ମଦ ନାମକ ଗୋଟିଏ ଆହୁତିମୟ ପୁରୁଷକୁ ଇନ୍ଦ୍ରଙ୍କ ଶତ୍ରୁ ରୂପରେ ସର୍ଜନ କଲେ । ତାହାର ସହସ୍ର ଦନ୍ତ ଶତଯୋଜନ ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଏବଂ ପରମ ଦାରୁଣ ଦଂଷ୍ଟ୍ରାବଳୀ ଦ୍ୱିଶତଯୋଜନ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଥିଲେ । ତାହାର ଏକ ହନୁ ଭୂମିତଳରେ ଅନ୍ୟ ହନୁ ଆକାଶ-ମଣ୍ଡଳରେ ପ୍ରବେଶ କରିଥିଲା । ୨୮ । ମହାର୍ଣ୍ଣବରେ ମତ୍ସ୍ୟସମୂହ ଯେଉଁପରି ତିମି ମତ୍ସ୍ୟର ମୁଖରେ ନିପତିତ ହୁଅନ୍ତି, ତଦ୍‌ବତ୍ ଇନ୍ଦ୍ର ସହିତ ଅମରଗଣ ତାହାର ଜିହ୍ୱାମୂଳରେ ଦଣ୍ଡାୟମାନ ହୋଇ ରହିଲେ । ୨୯ ।

ତଦନନ୍ତର ଦେବଗଣ ପରସ୍ପର ମନ୍ତ୍ରଣା କରି ମଦ ସମୀପରୁ ଗମନପୂର୍ବକ ଦେବରାଜଙ୍କୁ କହିଲେ, ଏହି ଦ୍ୱିଜବରଙ୍କୁ ପ୍ରଣାମ କର । ଆମ୍ଭେମାନେ ନିର୍ଜ୍ୱର ହୋଇ ଅଶ୍ୱିନୀକୁମାର ଯୁଗଳଙ୍କ ସହିତ ସୋମପାନ କରିବୁ, ତଦନନ୍ତର ଇନ୍ଦ୍ର ପ୍ରଣତ ହୋଇ ଚ୍ୟବନଙ୍କ ସେହି ବାକ୍ୟ ପ୍ରତି-ପାଳନ କଲେ । ୩୧ । ଚ୍ୟବନ ଅଶ୍ୱିନୀକୁମାର ଦୁହିଙ୍କୁ ସୋମପାୟୀ କରାଇଲେ । ତଦନନ୍ତର ମୁନିବର ବୀର୍ଯ୍ୟବାନ୍ ଚ୍ୟବନ କର୍ମ ପ୍ରତ୍ୟାହରଣ କଲେ ଏବଂ ଅକ୍ଷକ୍ରୀଡ଼ା, ମୃଗୟା, ମଦ୍ୟପାନ ଓ ମହିଳାବୃନ୍ଦ ରୂପରେ ମଦଙ୍କୁ ବିଭାଗ କରିଦେଲେ । ହେ ରାଜନ୍ ! ନରଗଣ ଏହି ସମସ୍ତ ଦୋଷ-ସମୂହ ଦ୍ୱାରା କ୍ଷୟପ୍ରାପ୍ତ ହୁଅନ୍ତି, ଏହି ବିଷୟରେ ସଂଶୟ ନାହିଁ । ୩୩ । ସୁତରାଂ ମାନବ ଏହି ସମସ୍ତ ଦୋଷ ଏକାବେଳକେ ପରିତ୍ୟାଗ କରିବେ

। ୩୪ । ହେ ରାଜନ୍ ! ଚ୍ୟବନଙ୍କର ଏହି କାର୍ଯ୍ୟ ତୁମ୍ଭ ନିକଟରେ କୀର୍ତ୍ତନ କଲୁଁ, ଆମ୍ଭେ ପଚାରୁଅଛୁ ତୁମ୍ଭେ କହ ଦେଖି ବ୍ରାହ୍ମଣଙ୍କ ଅପେକ୍ଷା କ୍ଷତ୍ରିୟ କ ଶ୍ରେଷ୍ଠ ? ୩୫ ।

---

## ଅଧ୍ୟାୟ—୧୫୭

ଭୀଷ୍ମ କହିଲେ—ହେ ଯୁଧିଷ୍ଠିର ! କାର୍ତ୍ତବୀର୍ଯ୍ୟ ମୌନାବଲମ୍ବନ କରିବାରୁ ପବନଦେବ ପୁନଶ୍ଚ ତାହାଙ୍କୁ କହିଲେ, ହେ ଜନାଧିପ ! ବ୍ରାହ୍ମଣ-ଗଣଙ୍କଠାରେ ଯେଉଁ ସମସ୍ତ ମୁଖ୍ୟ କର୍ମ ଅଛି ତାହା ଆମ୍ଭ ମୁଖରୁ ଶ୍ରବଣ କର । ୧ । ଇନ୍ଦ୍ରାଦି ଦେବଗଣ ଯେତେବେଳେ ମଦଙ୍କ ମୁଖର ଅନ୍ତର୍ଗତ ହୋଇଥିଲେ, ତେତେବେଳେ ଚ୍ୟବନ ସେମାନଙ୍କର ବସୁନ୍ଧରା ହରଣ କଲେ । ୨ । ଏହିପରି ଉଭୟ ଲୋକ ଅପହୃତ ହେବାର ଦେଖି ମହାତ୍ମା ଦେବଗଣ ଅତିଶୟ ଦୁଃଖାର୍ତ୍ତ ହୋଇ ବ୍ରହ୍ମାଙ୍କର ଶରଣାଗତ ହେଲେ । ୩ । ଦେବଗଣ କହିଲେ, ହେ ଲୋକପୂଜିତ ଭଗବନ୍ ପିତାମହ ! ଆମ୍ଭେ-ମାନେ ଯେତେବେଳେ ମଦଙ୍କ ମୁଖବିବରରେ ପ୍ରବିଷ୍ଟ ହୋଇଥିଲୁଁ, ତେତେବେଳେ ଚ୍ୟବନ ଆମ୍ଭମାନଙ୍କର ଭୂମି ହରଣ କରିଅଛନ୍ତି ଓ କପ ନାମକ ଦାନବଗଣ ସ୍ୱର୍ଗ ହରଣ କରିଅଛନ୍ତି । ୪ । ତେତେବେଳେ ବ୍ରହ୍ମା କହିଲେ, ହେ ଇନ୍ଦ୍ରାଦି ଦେବଗଣ ! ତୁମ୍ଭେମାନେ ଶୀଘ୍ର ବିପ୍ରଗଣଙ୍କର ଶରଣାପନ୍ନ ହୁଅ, ସେମାନଙ୍କୁ ପ୍ରସନ୍ନ କରାଇଲେ ପୂର୍ବପରି ଉଭୟ ଲୋକ ପ୍ରାପ୍ତ ହେବ । ୫ ।

ତଦନନ୍ତର ଇନ୍ଦ୍ରଙ୍କ ସହିତ ଦେବଗଣ ବ୍ରାହ୍ମଣଗଣଙ୍କର ଶରଣାପନ୍ନ ହେଲେ । ବ୍ରାହ୍ମଣଗଣ କହିଲେ, ଆମ୍ଭେମାନେ କେଉଁମାନଙ୍କୁ ଜୟ କରିବୁ ? ଦେବଗଣ ଏହି ବାକ୍ୟ ଶ୍ରବଣ କରି ଦ୍ୱିଜଗଣଙ୍କୁ କହିଲେ, ସମ୍ପ୍ରତି ଆପଣ-ମାନେ କପ ନାମକ ଅସୁରଗଣଙ୍କୁ ଜୟ କରିବା ହେଉନ୍ତୁ । ୬ । ଦ୍ୱିଜଗଣ କହିଲେ, ଆମ୍ଭେମାନେ ଭୂମିଗତ ଦୈତ୍ୟମାନଙ୍କୁ ଜୟ କରିବାକୁ ସମର୍ଥ । ତଦନନ୍ତର ବ୍ରାହ୍ମଣଗଣ କପନାଶକ କର୍ମ ଆରମ୍ଭ କଲେ । ୭ ।

କପଗଣ ତାହା ଶ୍ରବଣ କରି ବ୍ରାହ୍ମଣଗଣଙ୍କ ନିକଟକୁ ଧନୀ ନାମକ ଦୂତ ପ୍ରେରଣ କଲେ । ଧନୀ ତେତେବେଳେ ଭୂତଳସ୍ଥ ବ୍ରାହ୍ମଣଗଣଙ୍କୁ କପ

ଦାନବଗଣଙ୍କ କଥିତ ବାକ୍ୟ କହିଲେ । ୮ । ହେ ବ୍ରାହ୍ମଣଗଣ ! କପଗଣ ଆପଣମାନଙ୍କ ସଦୃଶ ଅଟନ୍ତି, ଅତଏବ ସମ୍ପ୍ରତି କେଉଁ କାର୍ଯ୍ୟ ହେଉଅଛି ? ସେମାନେ ସମସ୍ତେ ବେଦବ୍ରତ ପ୍ରାଜ୍ଞ, ସମସ୍ତେ ଯଜ୍ଞଯାଜୀ । ୯ । ସମସ୍ତେ ସତ୍ୟବ୍ରତ, ସମସ୍ତେ ମହର୍ଷିଗଣଙ୍କ ସଦୃଶ ଅଟନ୍ତି । ସେହିମାନଙ୍କଠାରେ ସର୍ବଦା ଶ୍ରୀ ବାସ କରନ୍ତି, ସେମାନେ ମଧ୍ୟ ଶ୍ରୀ ଧାରଣ କରନ୍ତି । ୧୦ । ସେମାନେ ବୃଥା ଦାର ଗମନ କରନ୍ତି ନାହିଁ, ସେମାନେ ବୃଥା ମାଂସ ଭକ୍ଷଣ କରନ୍ତି ନାହିଁ, ପ୍ରଦୀପ୍ତ ହୁତାଶନରେ ହୋମ କରନ୍ତି, ଗୁରୁଙ୍କ ବଚନରେ ବଶୀଭୂତ ହୋଇ ରହିଥାଆନ୍ତି । ୧୧ । ସମସ୍ତେ ନିୟତଚିତ୍ତ ଅଟନ୍ତି । ସମସ୍ତେ ବାଳକଗଣଙ୍କୁ ଖାଦ୍ୟଦ୍ରବ୍ୟ ସମ୍ୟକ୍ ରୂପେ ବିଭାଗ କରି ଦିଅନ୍ତି । ସମସ୍ତେ ଧୀରେ ଧୀରେ ଗମନ କରନ୍ତି, ରଜସ୍ୱଳା ସ୍ତ୍ରୀକୁ ସେବା କରନ୍ତି ନାହିଁ, ସ୍ୱର୍ଗଗତି ଲାଭ କରନ୍ତି ଏବଂ ସେମାନେ ଶୁଭ କର୍ମଶାଳୀ ଅଟନ୍ତି । ୧୨ । ଗର୍ଭିଣୀ ଓ ବୃଦ୍ଧ ପ୍ରଭୃତି ଅଭୁକ୍ତ ଥିଲେ ସେମାନେ ଭୋଜନ କରନ୍ତି ନାହିଁ । ପୂର୍ବାହ୍ଣରେ ସେମାନେ କ୍ରୀଡ଼ା କରନ୍ତି ନାହିଁ, ଦିବସରେ ଶୟନ କରନ୍ତି ନାହିଁ । ୧୩ । ଏହି ସମସ୍ତ ଗୁଣ ଏବଂ ଏତଦ୍ଭିନ୍ନ ଅନ୍ୟାନ୍ୟ ବହୁଗୁଣସମନ୍ୱିତ କପଗଣଙ୍କୁ ଆପଣମାନେ କପରି ଜୟ କରିବା ହେବେ ? ଅତଏବ ନିବୃତ୍ତ ହୁଅନ୍ତୁ । ନିବୃତ୍ତ ହେଲେ ଆପଣମାନଙ୍କର ମଙ୍ଗଳ ହେବ । ୧୪ ।

ବ୍ରାହ୍ମଣଗଣ କହିଲେ, ଆମ୍ଭେମାନେ କପଗଣଙ୍କୁ ଜୟ କରିବୁ, ଆମ୍ଭେମାନେ ଦେବଗଣଙ୍କ ସହିତ ଅଭିନ୍ନ ଭାବରେ ମ୍ଳିତ ହୋଇଅଛୁ, ଅତଏବ କପଗଣ ଆମ୍ଭମାନଙ୍କର ବଧ୍ୟ । ହେ ଧନଦ ! ତୁମ୍ଭେ ଯେଉଁ ସ୍ଥାନରୁ ଆସିଅଛ ସେହି ସ୍ଥାନକୁ ଗମନ କର । ୧୫ । ଧର୍ମ କପଗଣଙ୍କ ନିକଟକୁ ଗମନ କରି କହିଲେ, ହେ କପଗଣ ! ବ୍ରାହ୍ମଣଗଣ ତୁମ୍ଭମାନଙ୍କର ପ୍ରିୟ କର୍ମକାରୀ ନୁହନ୍ତି, ଅତଏବ କପଗଣ ସମସ୍ତେ ଅସ୍ତ୍ରଗ୍ରହଣ ପୂର୍ବକ ବ୍ରାହ୍ମଣଗଣଙ୍କ ପ୍ରତି ଧାବିତ ହେଲେ । ୧୬ । ବ୍ରାହ୍ମଣଗଣ କପମାନଙ୍କୁ ଧ୍ୱଜ ଉତ୍ତୋଳନ କରି ଆସୁଥିବାର ଦର୍ଶନ କରି କପଗଣଙ୍କ ପ୍ରାଣନାଶନ ଜ୍ୱଳିତ ଅନଳ ବିସର୍ଜ୍ଜନ କଲେ । ୧୭ । ହେ ନରାଧିପ ! ବ୍ରାହ୍ମଣ ବିସୃଷ୍ଟ ସନାତନ ହୁତାଶନ କପଗଣଙ୍କୁ ହନନ କରି ନଭୋମଣ୍ଡଳରେ ନୀରଦସମୂହ ସଦୃଶ ବିରାଜିତ ହେଲେ । ୧୮ । ଦେବଗଣ ସମସ୍ତେ ଯୁଦ୍ଧରେ ମିଳିତ ହୋଇ ଦାନବଗଣଙ୍କୁ ନିହତ କରିବାରୁ ବ୍ରାହ୍ମଣଗଣ କର୍ତ୍ତୃକ କପଗଣ ଯେ ନିହତ ହେଲେ, ତାହା ତେତେବେଳେ ସେମାନେ ଜାଣି ପାରି ନ ଥିଲେ । ୧୯ ।

ହେ ବତ୍ସେ ! ତଦନନ୍ତର ମହାତେଜା ନାରଦ ଆଗମନ କରି କହିଲେ, ହେ ଦେବଗଣ ! ମହାଭାଗ ବ୍ରାହ୍ମଣଗଣଙ୍କ ତେଜଃ ପ୍ରଭାବରେ କପଗଣ ନିହତ ହୋଇଅଛନ୍ତି । ୨୦ ।

ଦେବଗଣ ନାରଦଙ୍କ ବାକ୍ୟ ଶ୍ରବଣ କରି ପ୍ରୀତ ହେଲେ ଏବଂ ଯଶସ୍ୱୀ ବ୍ରାହ୍ମଣ ଓ ଦ୍ୱିଜଗଣଙ୍କୁ ପ୍ରଶଂସା କଲେ । ୨୧ । ଅନନ୍ତର ସେହି ସମସ୍ତ ଦେବଗଣଙ୍କ ତେଜଃ ଓ ବୀର୍ଯ୍ୟ ବର୍ଦ୍ଧିତ ହେଲା ଏବଂ ସେମାନେ ତ୍ରିଲୋକ ମଧ୍ୟରେ ପୂଜିତ ଓ ଅମରତ୍ୱ ପ୍ରାପ୍ତ ହେଲେ । ୨୨ । ହେ ମହାବାହୋ ଯୁଧିଷ୍ଠିର ! ପବନଦେବ ଏହି କଥା କହିବାରୁ ଅର୍ଜୁନ ତାହାଙ୍କୁ ପୂଜା କରି ଯାହା ପ୍ରତ୍ୟୁତ୍ତର କଲେ ତାହା ଶ୍ରବଣ କର । ୨୩ । ଅର୍ଜୁନ କହିଲେ, ହେ ପ୍ରଭୋ ! ଆମ୍ଭେ ସର୍ବଦା ସର୍ବପ୍ରକାରରେ ବ୍ରାହ୍ମଣଙ୍କ ନିମିତ୍ତ ଜୀବିତ ରହିଅଛୁ, ଆମ୍ଭେ ବ୍ରହ୍ମନିଷ୍ଠ ହୋଇ ବ୍ରାହ୍ମଣଗଣଙ୍କୁ ପ୍ରତିଦିନ ପ୍ରଣାମ କରୁଅଛୁ । ଦତ୍ତାତ୍ରେୟଙ୍କ ପ୍ରସାଦରୁ ଆମ୍ଭେ ଏହି ବଳ ପାଇଅଛୁ ଏବଂ ଲୋକ ମଧ୍ୟରେ ଆମ୍ଭର ପରମ କୀର୍ତ୍ତି ହୋଇଅଛି ଓ ମହତ୍ ଧର୍ମ ଆଚରଣ କରୁଅଛୁ । ୨୫ । ହେ ମାରୁତ ! ଆପଣ ବ୍ରାହ୍ମଣଙ୍କର ଯେଉଁ ଅଦ୍ଭୁତ କର୍ମ-ସମୂହ କୀର୍ତ୍ତନ କଲେ ଆମ୍ଭେ ତାହା ସବୁ ସ୍ଥିରମନା ହୋଇ ଶ୍ରବଣ କରି-ଅଛୁ । ୨୬ ।

ବାୟୁ କହିଲେ, ହେ ରାଜନ୍ ! ତୁମ୍ଭେ ବ୍ରାହ୍ମଣଗଣଙ୍କୁ ଓ ଇନ୍ଦ୍ରିୟ-ସମୂହକୁ କ୍ଷାତ୍ର ଧର୍ମଦ୍ୱାରା ପାଳନ କର । ଭୃଗୁବଂଶରୁ କାଳକ୍ରମରେ ତୁମ୍ଭର ଘୋରତର ଭୟ ହେବ । ୨୭ ।

---

## ଅଧ୍ୟାୟ—୧୫୮

ଯୁଧିଷ୍ଠିର କହିଲେ—ହେ ଜନାଧିପ ! ରାଜନ୍ ! ଆପଣ ସଂଶିତ-ବ୍ରତ ବ୍ରାହ୍ମଣଗଣଙ୍କୁ ସର୍ବଦା ଅର୍ଚ୍ଚନା କରୁଅଛନ୍ତି କିନ୍ତୁ କେଉଁ ଫଳୋଦୟ ଦେଖି ସେମାନଙ୍କୁ ପୂଜା କରନ୍ତି ? ୧ । ହେ ମହାବ୍ରତ ମହାବାହୋ ! ବ୍ରାହ୍ମଣଙ୍କ ପୂଜାରେ କେଉଁ ଫଳ ଦେଖି ସେମାନଙ୍କୁ ଅର୍ଚ୍ଚନା କରନ୍ତି ତତ୍ସମୁଦାୟ ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୨ ।

ଭୀଷ୍ମ କହିଲେ, ବ୍ରାହ୍ମଣ ପୂଜାର ଫଳଦର୍ଶୀ ଏହି ମହାବ୍ରତ ମହାମତି କେଶବ ତୁମ୍ଭଙ୍କୁ ସମସ୍ତ ବିଷୟର ଫଳ କହିବେ । ୩ । ଅଦ୍ୟ ଆମ୍ଭର

ବଳ, ଶ୍ରବଣଯୁଗଳ, ବାକ୍ୟ, ମନ, ନୟନଦ୍ୱୟ ଏବଂ ବିଶୁଦ୍ଧ ଜ୍ଞାନ ନାହିଁ । ଜଣାଯାଏ ଆମ୍ଭ ଦେହତ୍ୟାଗର ଆଉ ଅଧିକ ବିଳମ୍ବ ନାହିଁ, ଅତି ଅଳ୍ପଦିନ ମଧ୍ୟରେ ସୂର୍ଯ୍ୟଙ୍କ ଉତ୍ତରାୟଣ ହେବ । ୪ । ହେ ରାଜନ୍ ! ପୁରାଣରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଗଣଙ୍କର ଯେଉଁ ମହତ୍ ଧର୍ମ-ସମୂହ କଥିତ ହୋଇଅଛି ଏବଂ ସେମାନେ ଯେଉଁ ସବୁ ଧର୍ମ ଉପାସନା କରନ୍ତି, ହେ ପାର୍ଥ ! ତାହାର ଅବଶିଷ୍ଟ କର୍ମସମୂହ କୃଷ୍ଣଙ୍କ ନିକଟରୁ ଶିକ୍ଷାକର । ୫ । ଆମ୍ଭେ ଏହି କୃଷ୍ଣଙ୍କୁ ଯଥାର୍ଥରୂପେ ଜାଣୁଁ, ଏହାଙ୍କ ସ୍ୱରୂପ, ଏହାଙ୍କ ପୁରାଣବଳ ଆମ୍ଭଙ୍କୁ ଅବିଦିତ ନାହିଁ ।

ହେ କୌରବେନ୍ଦ୍ର ! କେଶବ ଅମେୟାତ୍ମା ଅଟନ୍ତି । ଅତଏବ ଏହି କେବଳ ସଂଶୟ ସ୍ଥଳରେ ଧର୍ମ କୀର୍ତ୍ତନ କରିବେ । ୬ । କୃଷ୍ଣ କେବଳ ପୃଥିବୀ, ଆକାଶ ଓ ସ୍ୱର୍ଗର ସୃଷ୍ଟି କରିଅଛନ୍ତି । କୃଷ୍ଣଙ୍କ ଦେହରୁ ପୃଥିବୀ ସମ୍ଭୂତ ହୋଇଅଛି, ଏ ପୁରାଣ ପୁରୁଷ ଭୀମବଳଧାରୀ ବରାହ, ଏହି କୃଷ୍ଣ କେବଳ ପର୍ବତ ଓ ଦିକ୍‌ସମୂହ ସର୍ଜନ କରିଅଛନ୍ତି । ୭ । ଏହାଙ୍କ ଅଧୋଭାଗରେ ଅନ୍ତରୀକ୍ଷ, ସ୍ୱର୍ଗ; ଚତୁର୍ଦ୍ଦିଗ ଓ ବିଦିଗ ଚତୁଷ୍ଟୟ ରହିଅଛି; ଏହି ସୃଷ୍ଟି ଏହାଙ୍କଠାରୁ ପ୍ରବୃତ୍ତ ହୋଇଅଛି; ଏ ଏହି ଦୃଶ୍ୟମାନ ପୁରାତନ ବିଶ୍ୱ ସର୍ଜନ କରିଅଛନ୍ତି । ୮ । ଏହାଙ୍କ ନାଭି ମଧ୍ୟରେ ପୁଷ୍କର ପ୍ରସୂତ ହୋଇଥିଲା, ଯହିଁରେ ଅମିତତେଜସ୍ୱୀ ସ୍ୱୟଂ ହିରଣ୍ୟଗର୍ଭ ଉତ୍ପନ୍ନ । ହେ ପାର୍ଥ ! ଯେ ଘୋରତର ତମ ଛେଦନ କରିଅଛନ୍ତି ସେ ଅତଳସ୍ପର୍ଶ ଅପାର ସାଗରରେ ଅଧିଷ୍ଠାନ କରିଅଛନ୍ତି । ୯ । ହେ ପାର୍ଥ ! ସତ୍ୟ-ଯୁଗରେ ସମଗ୍ର ଧର୍ମ ଥିଲା । ତ୍ରେତାଯୁଗରେ ବିବେକ ପ୍ରବଳ ହୋଇ-ଥିଲା, ଦ୍ୱାପରଯୁଗରେ ବଳର ପ୍ରାଧାନ୍ୟ ଥିଲା, କଳିଯୁଗରେ ଅଧର୍ମ ପୃଥିବୀକୁ ଆଗମନ କରିଅଛି । ୧୦ ।

ଏହି କୃଷ୍ଣ ପ୍ରଥମରେ ଦୈତ୍ୟଗଣଙ୍କୁ ନିହତ କରିଥିଲେ, ଏ ସମ୍ରାଟ୍ ବଳରୂପୀ ଦୈତ୍ୟ ହୋଇଥିଲେ, ଭୂତ ସମୂହଙ୍କର ଉତ୍ପତ୍ତିର କାରଣ, ଭୂତ ଓ ଭବିଷ୍ୟତ୍ କାଳସ୍ୱରୂପ ଅଟନ୍ତି, ଏହି କୃଷ୍ଣ କେବଳ ସମସ୍ତ ଜଗତର ରକ୍ଷାକର୍ତ୍ତା । ୧୧ । ଯେତେବେଳେ ଧର୍ମ ଅସୁର ବଂଶରେ ଗ୍ଳାନିଯୁକ୍ତ ହୁଅନ୍ତି, ସେତେବେଳେ କୃଷ୍ଣ ମର୍ତ୍ତ୍ୟଲୋକରେ ଜନ୍ମପରିଗ୍ରହ କରନ୍ତି; ଏହି ବିଶୁଦ୍ଧ ସ୍ୱଭାବ ଭଗବାନ୍ ଧର୍ମରେ ରହି ପରାପର ଲୋକ-ସମୂହକୁ ରକ୍ଷା କରନ୍ତି । ୧୨ । ହେ ପାର୍ଥ ! ଏ ଅସୁରଗଣ ବଧ ନିମିତ୍ତ ତ୍ୟାଜ୍ୟ ବ୍ୟକ୍ତିବର୍ଗଙ୍କୁ ପରିତ୍ୟାଗ କରନ୍ତି । ଏହି ଦେବ କେବଳ କାର୍ଯ୍ୟ,

ଅକାର୍ଯ୍ୟ, କାରଣ, କୃତ, କରିଷ୍ୟତ୍ ଓ କ୍ରିୟମାଣ; ଏହାଙ୍କୁ ରାତ୍ର, ସୋମ ଓ ଇନ୍ଦ୍ର ବୋଲି ଜ୍ଞାନ କର । ୧୩ । ଏ ବିଶ୍ୱରୂପ, ଏ ବିଶ୍ୱକର୍ମା, ଏ ବିଶ୍ୱଭୁକ୍, ଏ ବିଶ୍ୱସ୍ରଷ୍ଟା ଏବଂ ଏ ବିଶ୍ୱଜିତ୍ । ଏ ଶୂଳଧାରୀ, ଶରୀରଧାରୀ, ଜଟିଳ କର୍ମଦ୍ୱାରା ବିଦିତ ଏହି ଦେବଙ୍କୁ ସମସ୍ତେ ସ୍ତୁତି କରନ୍ତି । ୧୪ । ଗନ୍ଧର୍ବ, ଅପ୍ସରା ଓ ଶତ ଶତ ବିବୁଧଗଣ ନିତ୍ୟ ଏହାଙ୍କୁ ଉପାସନା କରନ୍ତି, ରାକ୍ଷସଗଣ ଏହାଙ୍କୁ କୀର୍ତ୍ତନ କରନ୍ତି ଏବଂ ଏହି କେବଳ ଧନ ପୋଷକ ଓ ବିଜିଗୀଷୁ । ୧୫ ।

ଯଜ୍ଞରେ ଋତ୍ୱିକ୍‌ଗଣ ଏହାଙ୍କୁ ସ୍ତବ କରନ୍ତି, ସାମବେଦ ଏହାଙ୍କର ସ୍ତୁତି କରନ୍ତି, ଏବଂ ବ୍ରାହ୍ମଣଗଣ ବ୍ରହ୍ମମନ୍ତ୍ରଦ୍ୱାରା ଏହାଙ୍କୁ ସ୍ତବ କରନ୍ତି, ଅଧ୍ୱର୍ଯ୍ୟୁଗଣ ଏହାଙ୍କୁ ଉଦ୍ଦେଶ୍ୟ କରି ଯଜ୍ଞୀୟ ଦେୟ ଦ୍ରବ୍ୟ ସମ୍ପ୍ରଦାନ କରନ୍ତି ।୧୬। ଇନ୍ଦ୍ରାଦି ଦେବଗଣ ଗୋବର୍ଦ୍ଧନ ଶୈଳର ଉଦ୍ଧାରଣ କାଳରେ ବାଣୀଦ୍ୱାରା ଏହାଙ୍କୁ ସ୍ତବ କରିଥିଲେ, ହେ ଭାରତ ! ଏହି କେବଳ ଜୀବଗଣ ଓ ପଶୁଗଣଙ୍କର ନିୟନ୍ତା, ଏ ପୁରାତନୀ ଗୁହାରେ ପ୍ରବିଷ୍ଟ ବ୍ରହ୍ମ । ହେ ଭରତକୁଳ ପ୍ରଦୀପ ! ଏ ପ୍ରଥମତଃ ପୃଥିବୀର ଛାଦନ ଓ ମଜ୍ଜନ ଦର୍ଶନ କରିଅଛନ୍ତି, ଏ ଉତ୍କୃଷ୍ଟ କର୍ମଶୀଳ ପୁରୁଷ, ଦୈତ୍ୟ, ଉରଗ ଓ ଅସୁରଗଣଙ୍କୁ ବିକ୍ଷୋଭିତ କରି ପୃଥିବୀର ଉଦ୍ଧାର ସାଧନ କରିଥିଲେ । ପଣ୍ଡିତମାନେ ଏହାଙ୍କର ବିବିଧ ଭକ୍ଷ୍ୟଦ୍ରବ୍ୟ ନିର୍ଦ୍ଦେଶ କରନ୍ତି ଏବଂ ଏହାଙ୍କୁ ଯୁଦ୍ଧରେ ଜୟଶୀଳ ବୋଲି ନିର୍ଦ୍ଦେଶ କରନ୍ତି । ୧୮ ।

ଅନ୍ତରୀକ୍ଷ, ପୃଥିବୀ, ସ୍ୱର୍ଗ ଏହି ସମସ୍ତ ଏହି ଶାଶ୍ୱତ ପୁରୁଷଙ୍କ ବଶରେ ରହିଅଛି । ଏ ମିତ୍ରାବରୁଣଙ୍କ ରେତ କୁମ୍ଭରେ ସର୍ଜନ କରନ୍ତି, ସେହି ରେତରୁ ମହର୍ଷି ବଶିଷ୍ଠ ଜନ୍ମଗ୍ରହଣ କରନ୍ତି ବୋଲି ପଣ୍ଡିତଗଣ କହନ୍ତି । ୧୯ । ଏହି କୃଷ୍ଣ ସର୍ବବ୍ୟାପୀ, ମାତରିଶ୍ୱା, ବେଗବାନ୍ ଅଶ୍ୱ, ହସ୍ତୀ, ପ୍ରଭାମଣ୍ଡଳ ସମ୍ପନ୍ନ ସୂର୍ଯ୍ୟ ଏବଂ ଆଦିଦେବ ଅଟନ୍ତି । ଏହାଙ୍କ ଦ୍ୱାରା ଅସୁର-ସମୂହ ପରାଜିତ ହୋଇଅଛନ୍ତି, ଏହି ବାସୁଦେବ ତ୍ରିପାଦ ବିକ୍ଷେପଦ୍ୱାରା ତ୍ରିଭୁବନ ଜୟ କରିଅଛନ୍ତି । ୨୦ । ଏହି ବାସୁଦେବ, ଦେବଗଣ, ମାନୁଷ-ଗଣ, ପିତୃଗଣଙ୍କର ଆଶ୍ରୟ । ପଣ୍ଡିତଗଣ ଏହାଙ୍କୁ ଯଜ୍ଞବିଦ୍‌ଗଣଙ୍କର ଯଜ୍ଞ କହନ୍ତି ।

ଏ କାଳକୁ ବିଭାଗ କରି ଉଦିତ ହୁଅନ୍ତି; ଏହାଙ୍କର ଦକ୍ଷିଣରେ ଓ ଉତ୍ତରରେ ଦ୍ୱିବିଧ ଗତିକ ଅୟନ ବୋଲିଯାଏ (୧୧); ଏହାଙ୍କର କିରଣ-ସମୂହ ମେଦିନୀମଣ୍ଡଳକୁ ପ୍ରକାଶିତ କରି ଊର୍ଦ୍ଧ୍ୱ, ଅଧଃ ଏବଂ ତିର୍ଯ୍ୟକ୍

ପ୍ରଦେଶରେ ବିଚରଣ କରେ । ବେଦବିତ୍ ବ୍ରାହ୍ମଣଗଣ ଏହାଙ୍କୁ ସେବା କରନ୍ତି । ପ୍ରଭାକର ଏହାଙ୍କ ପ୍ରଭାପ୍ରାପ୍ତ ହୋଇ ପ୍ରକାଶିତ ହୁଅନ୍ତି, ଏ ଯଜ୍ଞକାରୀ ହୋଇ ପ୍ରତି ମାସରେ ଯଜ୍ଞବିଧାନ କରନ୍ତି, ବେଦବିତ୍ ବିପ୍ରଗଣ ଅଧ୍ୱରରେ ଏହାଙ୍କୁ ସ୍ତୁତି କରନ୍ତି । ଏ ଶୀତ, ଉତ୍ତାପ ଓ ବୃଷ୍ଟିକାଳଗର୍ଭ ତ୍ରିନାଭିସମନ୍ୱିତ ସମ୍ବତ୍ସର ଚକ୍ରରୂପରେ କଥିତ ହୋଇ ସପ୍ତାଶ୍ୱଯୁକ୍ତ ବର୍ଷା-ଶୀତ-ଉଷ୍ଣ ପ୍ରକାର ଧାମତ୍ରୟ ବହନ କରନ୍ତି ।୨୩। ଏହି ମହାତେଜା ସର୍ବପ୍ରକାରରେ ସର୍ବଲୋକର ହିଂସା କରନ୍ତି । ଏ ପାପ ଆକର୍ଷଣ କରନ୍ତି, ଏହି ନିମିତ୍ତ ଏହାଙ୍କ ନାମ କୃଷ୍ଣ । ଏ ଏକାକୀ ଲୋକସମୂହକୁ ଧାରଣ କରି-ଅଛନ୍ତି । ହେ ବୀରବର ପାର୍ଥ ! ଏ ସୂର୍ଯ୍ୟରୂପରେ ତମୋବିନାଶ କରନ୍ତି, ଅତଏବ ତୁମ୍ଭେ ଏହି କୃଷ୍ଣଙ୍କୁ କର୍ତ୍ତା ବୋଲି ଜାଣି ଆଶ୍ରୟ କର ।୨୪।

ଯେଉଁ ମହାତ୍ମା କୌଣସି ସମୟରେ କକ୍ଷଗତ ସର୍ବଶକ୍ତିମାନ୍ ଙ୍କଠାରୁ ସନ୍ତୁଷ୍ଟ ଧୂମକେତୁ ରୂପରେ ଖାଣ୍ଡବ ବନରେ ରାକ୍ଷସ ଓ ଉରଗଗଣଙ୍କୁ ପରାଜୟ ପୂର୍ବକ ସର୍ବତ୍ରଗାମୀ ହୋଇ ଅଗ୍ନିରେ ସମୁଦାୟ ଆହୁତି ପ୍ରଦାନ କରିଥିଲେ (୨୫), ସେ ଧନଞ୍ଜୟଙ୍କୁ ଶ୍ୱେତଅଶ୍ୱ ପ୍ରଦାନ କରିଅଛନ୍ତି, ସେ ଅଶ୍ୱ ଏବଂ ଅନ୍ୟାନ୍ୟ ସମସ୍ତ ଜୀବର ସୃଷ୍ଟି ବିଧାନ କରିଅଛନ୍ତି । ସେ ସଂସାର ରଥର ଯୋଜନକର୍ତ୍ତା, ଊର୍ଦ୍ଧ୍ୱ, ମଧ୍ୟ ଓ ଅଧଃ ପ୍ରଦେଶରେ ତାହାଙ୍କ ରଥର ଗତି ହୁଏ, ଏହି ନିମିତ୍ତ ତାହାଙ୍କ ରଥ ତ୍ରିଚକ୍ର ଓ ତ୍ରିବୃତ୍ଶିରା ନାମରେ ଆଖ୍ୟାତ । କାଳ, ଅଦୃଷ୍ଟ, ଈଶ୍ୱରେଚ୍ଛା ଏବଂ ସଂକଳ୍ପ, ଏହି ଚତୁଷ୍ଟୟ ତଦୀୟ ରଥର ଅଶ୍ୱ; ଶୁକ୍ଳ, କୃଷ୍ଣ ଏବଂ ଶୁକ୍ଳ କୃଷ୍ଣ ମିଶ୍ରିତ ତ୍ରିବିଧ ଧର୍ମଗର୍ଭ ଅତଏବ ତ୍ରିନାଭି । ୨୬ । ସେ ପଞ୍ଚଭୂତର ଆଶ୍ରୟ, ଏହି ନିମିତ୍ତ ପଞ୍ଚନାଭି, ସେ ଆକାଶର ନିର୍ମାତା; ସେ ପୃଥିବୀ, ସ୍ୱର୍ଗ ଓ ଅନ୍ତରୀକ୍ଷ ସର୍ଜନ କରିଅଛନ୍ତି । ସେ ଅରଣ୍ୟ ଓ ପର୍ବତସମୂହ ନିର୍ମାଣ କରିଅଛନ୍ତି । ସେ ବିଷୟେନ୍ଦ୍ରିୟ ସମୂହର ନିୟନ୍ତା, ଏହି ନିମିତ୍ତ ହୃଷୀକେଶ ଏବଂ ସେ ଅପରି-ମିତ ପ୍ରଦୀପ୍ତ ଅଗ୍ନି ସଦୃଶ ତେଜସ୍ୱୀ । ୨୭ ।

ସେ ସରିତ୍ସମୂହର ଜିଘାଂସା କରି ଅର୍ଥାତ୍ ନଦୀ ଲଙ୍ଘନ ପୂର୍ବକ ବଜ୍ର ପ୍ରହରଣୋଦ୍ୟତ ଇନ୍ଦ୍ରଙ୍କୁ ପରାଭୂତ କରିଥିଲେ । ସେହି କେବଳ ଅଧ୍ୱରରେ ମହେନ୍ଦ୍ର ରୂପରେ ବିପ୍ରଗଣ କର୍ତ୍ତୃକ ପୁରାତନ ଋକ୍ ସହସ୍ରଦ୍ୱାରା ସ୍ତୁତ ହୁଅନ୍ତି । ୨୮ । ହେ ରାଜନ୍ ! ମହାତେଜା ଦୁର୍ବାସାଙ୍କୁ ଗୃହରେ ବାସ କରାଇବା ନିମିତ୍ତ, ତାହାଙ୍କ ଭିନ୍ନ ଅନ୍ୟ କେହି ସମର୍ଥ ନୁହନ୍ତି, ପଣ୍ଡିତଗଣ

ତାହାଙ୍କୁ ଏକମାତ୍ର ପୁରାଣ ଋଷି କହନ୍ତି; ସେ ବିଶ୍ୱକର୍ତ୍ତା, ସେ ଆପଣାଠାରୁ ସମସ୍ତ ଜୀବର ବିଧାନ କରିଅଛନ୍ତି । ଯେ ଦେବାଧିଦେବ ହୋଇ ବେଦ-ସମୂହ ଜ୍ଞାପନ କରିଅଛନ୍ତି, ଯେ ଅଗ୍ନିହୋତ୍ର ସମୂହ ଆଶ୍ରୟ କରିଅଛନ୍ତି, ପୁରାତନ ବିଧି କାମରେ, ବେଦରେ, ଲୌକିକରେ ଯାହା କିଛି ଫଳ ହୁଏ, ବିଶ୍ୱକ୍‌ସେନ ନାରାୟଣ ସେହି ସମୁଦାୟ ବିଷୟର ଫଳସ୍ୱରୂପ, ଏହା ପ୍ରତ୍ୟୟ କର । ୩୦ ।

ସମସ୍ତ ଲୋକରେ ଯେଉଁ ସବୁ ଶୁକ୍ଳବର୍ଣ୍ଣ ଜ୍ୟୋତିଃ ପଦାର୍ଥ ରହିଅଛି, ଲୋକତ୍ରୟ ଏବଂ ଲୋକପାଳତ୍ରୟ, ଅଗ୍ନିତ୍ରୟ, ବ୍ୟାହୃତିତ୍ରୟ, ଏବଂ ସମସ୍ତ ଦେବଗଣ ଦେବକୀନନ୍ଦନ ସ୍ୱରୂପ ଅଟନ୍ତି । ୩୧ । ସେ ସମ୍ବତ୍ସର, ସେ ଋତୁ, ସେ ଅର୍ଦ୍ଧମାସ, ସେ ଅହୋରାତ୍ର, ସେ କଳା, ସେ କାଷ୍ଠା, ମାତ୍ରା ମୁହୂର୍ତ୍ତ, ଲବ ଓ କ୍ଷଣସମୂହ, ସେହି ବିଶ୍ୱକ୍‌ସେନ ଏ ସମୁଦାୟ ସ୍ୱରୂପ ଏହା ପ୍ରତ୍ୟୟ କର । ୩୦ । ହେ ପାର୍ଥ ! ଚନ୍ଦ୍ର, ଆଦିତ୍ୟ, ଗ୍ରହ, ନକ୍ଷତ୍ର, ତାରା ଦର୍ଶସମୂହ, ପୌର୍ଣ୍ଣମାସ, ନକ୍ଷତ୍ର, ଯୋଗ ଓ ଋତୁ-ସମୂହ, ଏହି ସମସ୍ତ ବିଶ୍ୱକ୍‌ସେନ ନାରାୟଣଙ୍କଠାରୁ ପ୍ରସୂତ ହୋଇ-ଅଛି । ୩୩ । ରୁଦ୍ରଗଣ, ଆଦିତ୍ୟଗଣ, ବସୁଗଣ, ଅଶ୍ୱିନୀକୁମାରଯୁଗଳ, ସାଧ୍ୟଗଣ, ବିଶ୍ୱଗଣ, ମରୁଦ୍‌ଗଣ, ପ୍ରଜାପତି, ଦେବମାତା 'ଅଦିତି ଏବଂ ସପ୍ତର୍ଷିଗଣ ଏହି ସମସ୍ତ କୃଷ୍ଣଙ୍କଠାରୁ ପ୍ରାଦୁର୍ଭୂତ ହୋଇଅଛନ୍ତି । ୩୪ ।

ବିଶ୍ୱରୂପ ବାୟୁ ହୋଇ ସେ ବିଶ୍ୱକୁ ବିକ୍ଷିପ୍ତ କରୁଅଛନ୍ତି । ସେ ଅଗ୍ନି ହୋଇ ବିଶ୍ୱକୁ ଦହନ କରୁଅଛନ୍ତି, ସେ ଜଳ ହୋଇ ସମସ୍ତଙ୍କୁ ମଗ୍ନ କରାଉଅଛନ୍ତି ଏବଂ ବ୍ରହ୍ମା ହୋଇ ସମସ୍ତଙ୍କୁ ସର୍ଜନ କରୁଅଛନ୍ତି । ୩୫ । ସେ ବେଦ ପ୍ରତିପାଦ୍ୟ ବେଦ୍ୟବସ୍ତୁ ଜଣାଇ ଦେଉଅଛନ୍ତି ଏବଂ ବିଧି ହୋଇ ବେଦ ଓ ବିଧେୟ ବିଷୟ ଆଶ୍ରୟ କରିଅଛନ୍ତି । ଧର୍ମ, ବେଦ ଓ ବଳ ଚରାଚରାତ୍ମକ ସକଳ ବିଷୟ କେଶବ ସ୍ୱରୂପ ଏହା ଜ୍ଞାନ କର ।୩୬। ଯେଉଁମାନେ ପ୍ରଭାହାର ଏହି ପରମଜ୍ୟୋତିଃ ସ୍ୱରୂପ ଭୂବନ୍ଦଗରେ ପ୍ରକାଶିତ ହୁଅନ୍ତି, ସେହି ସର୍ବଭୂତାତ୍ମା ବିଶ୍ୱରୂପ ପ୍ରଥମରେ ଜଳ ସୃଷ୍ଟି-କରି ତଦନନ୍ତର ସମସ୍ତ ବିଶ୍ୱ ସୃଷ୍ଟି କରିଅଛନ୍ତି । ୩୭ । ଋତୁସମୂହ, ଉତ୍ପାତ ନିଚୟ, ବିବିଧ ଅଦ୍ଭୁତ ବିଷୟ, ମେଘମଣ୍ଡଳ, ବିଦ୍ୟୁତ୍‌ସମୂହ, ଐରାବତ ଏବଂ ସ୍ଥାବର ଜଙ୍ଗମ ସମୂହକୁ ଏହି ବିଶ୍ୱାତ୍ମା ବିଷ୍ଣୁ ବୋଲି ଜାଣ । ୩୮ ।

ପଣ୍ଡିତଗଣ ତାହାଙ୍କୁ ବିଶ୍ୱବାସ ନିପୁଣ, ବାସୁଦେବ, ସଙ୍କର୍ଷଣ ଓ ଜୀବସ୍ୱରୂପ କହନ୍ତି । ତାହାଙ୍କଠାରୁ ପ୍ରଦ୍ୟୁମ୍ନ, ଏବଂ ଚତୁର୍ଥ ଅନିରୁଦ୍ଧ, ଅର୍ଥାତ୍ ଅହଂକାର ଉତ୍ପନ୍ନ । ସେହି ଆତ୍ମଯୋନି ମହାତ୍ମା ଦେବ, ଅସୁର, ମାନୁଷ, ଶ୍ୱାପଦ, ତିର୍ଯ୍ୟକ୍ ଏହି ପଞ୍ଚବିଧରୂପରେ ପଞ୍ଚଭୂତୋତ୍ପନ୍ନ ବିଶ୍ୱ ସୃଜନ କରିବାକୁ ଇଚ୍ଛୁକ ହୋଇ ଆଜ୍ଞାପ୍ରବୃତ୍ତ କରନ୍ତି । ହେ ପାର୍ଥ ! ଅନନ୍ତର ସେ ଅବନୀ, ମାରୁତ, ଆକାଶ, ଜ୍ୟୋତି ଓ ଜଳସମୂହର ସୃଷ୍ଟି କରିଅଛନ୍ତି । ୪୦ । ସେ ଏହି ସ୍ଥାବର ଜଙ୍ଗମାତ୍ମକ ଚତୁର୍ବିଧ ଲୋକ ନିର୍ମାଣ କରି ଜରାୟୁଜାଦି ପଞ୍ଚବିଧ ଜୀବ ସମନ୍ୱିତ ଭୂମି ନିର୍ମାଣ କରନ୍ତି ଏବଂ ଅନ୍ତରୀକ୍ଷରେ ଓ ପୃଥିବୀରେ ଭୂରିବାରି ସ୍ଥାପନ କରନ୍ତି । ୪୧ ।

ହେ ରାଜନ୍ ! ସେ ଏହି ବିଶ୍ୱ ନିର୍ମାଣ କରିଅଛନ୍ତି, ସେହି ଆତ୍ମଯୋନି ସ୍ୱୟଂ ସମସ୍ତଙ୍କୁ ଜୀବିତ ରଖନ୍ତି, ଅନନ୍ତର ସେହି ଭୂପତି ସୁରାସୁର ମାନବ ଲୋକ ସମୂହ, ଋଷିଗଣ, ପିତୃଗଣ ଓ ପ୍ରଜାଗଣ ଏବଂ ପ୍ରାଣୀଲୋକସମୂହକୁ ସଂକ୍ଷେପତଃ ବିଧିବତ୍ ସର୍ଜନ କରିବାକୁ ଇଚ୍ଛୁକ ହୋଇ ଶୁଭାଶୁଭ ସ୍ଥାବର ଓ ଜଙ୍ଗମ ସମୂହର ସୃଷ୍ଟି କରିଅଛନ୍ତି, ଅତଏବ ବିଶ୍ୱକ୍ସେନଙ୍କଠାରୁ ଏହି ସମୁଦାୟ ଉତ୍ପନ୍ନ ହୋଇଅଛି, ଏହା ଜାଣ । ଯାହା ରହିଅଛି ଯାହା ହେବ, ଏହି କେଶବଙ୍କୁ ତୁମ୍ଭେ ସେହି ସମୁଦାୟ ବୋଲି ଜ୍ଞାନ କର ।୪୩।

ଶାଶ୍ୱତ ଧର୍ମ ସହିତ କୃଷ୍ଣ କେବଳ ପ୍ରାଣିଗଣଙ୍କର ଅନ୍ତକାଳରେ ସାକ୍ଷାତ୍ ମୃତ୍ୟୁ ସ୍ୱରୂପ । ଇହଲୋକରେ ଯାହା ଅତୀତ ହୋଇଅଛି, ଅଥଚ ଯାହା ଆମ୍ଭମାନଙ୍କର ଅଜ୍ଞାତ, ସେହି ସମୁଦାୟ ବିଷୟ ବିଶ୍ୱକ୍ସେନ ନାରାୟଣ ବୋଲି ଜ୍ଞାନ କର । ୪୪ । ଏହି ଜୀବଲୋକରେ ଯାହା ପ୍ରଶସ୍ତ ଏବଂ ଯାହା ଶୁଭ ବା ଅଶୁଭ ଅଚିନ୍ତ୍ୟମୟ କେଶବ କେବଳ ତତ୍ସ୍ୱରୂପ, ଯାହା ତଦ୍ଭିନ୍ନ, ତାହା ବିପରୀତ । କେଶବ ଏତାଦୃଶ, ଏହି ନିମିତ୍ତ ସେହି ନାରାୟଣ ପରମ ଅବ୍ୟୟ, ସେ ଜଗତର ଆଦି, ମଧ୍ୟ ଏବଂ ଅନ୍ତରେ ଅବସ୍ଥାନ କରନ୍ତି, ସେ ଜଗତର ଉତ୍ପତ୍ତିର କାରଣ ଏବଂ ତାହାଙ୍କର ବିନାଶ ନାହିଁ ଏହା ଜାଣିବାକୁ ଇଚ୍ଛା କର । ୪୬ ।

---

# ଅଧ୍ୟାୟ—୧୫୯

ଯୁଧିଷ୍ଠିର କହିଲେ—ମଧୁସୂଦନ ! ତୁମ୍ଭେ ବିଷୟବେତ୍ତା ଅଟ, ତୁମ୍ଭଙ୍କୁ ପିତାମହ ବିଶେଷ ରୂପେ ଜାଣନ୍ତି, ଅତଏବ ବ୍ରାହ୍ମଣଗଣଙ୍କ ପୂଜା କଲେ କିପରି ଫଳଲାଭ ହୁଏ ତାହା କହ । ୧ । ବାସୁଦେବ କହିଲେ, ହେ କୁରୁସତ୍ତମ ଭରତକୁଳ ଧୁରନ୍ଧର ମହାରାଜ ! ଆମ୍ଭେ ଯଥାର୍ଥ ରୂପରେ ବ୍ରାହ୍ମଣଗଣଙ୍କର ଗୁଣ କୀର୍ତ୍ତନ କରୁଅଛୁ, ଆପଣ ଅବହିତ ହୋଇ ତାହା ଶ୍ରବଣ କରନ୍ତୁ । ୨ । ହେ କୁରୁନନ୍ଦନ ! ପୂର୍ବେ ଆମ୍ଭେ ଦ୍ୱାରକାନଗରରେ ସମାସୀନ ଥିବା ସମୟରେ ପ୍ରଦ୍ୟୁମ୍ନ ବ୍ରାହ୍ମଣଗଣ କର୍ତ୍ତୃକ ପ୍ରକୋପିତ ହୋଇ ଆମ୍ଭଙ୍କୁ ପ୍ରଶ୍ନ କରିଥିଲେ । ୩ । ହେ ମଧୁସୂଦନ ! ବ୍ରାହ୍ମଣଗଣଙ୍କର ପୂଜା କଲେ କେଉଁ ଫଳ ଲାଭ ହୁଏ ଏବଂ ଇହଲୋକରେ ଓ ପରଲୋକରେ କି ହେତୁରୁ ସେମାନଙ୍କର ଈଶ୍ୱରତ୍ୱ ହେଲା ? ୪ । ହେ ମାନଦ ! ସର୍ବଦା ଦ୍ୱିଜାତିଗଣଙ୍କୁ ପୂଜାକଲେ କେଉଁ ଫଳ ହୁଏ ? ଆପଣ ସ୍ପଷ୍ଟ ରୂପେ ଆମ୍ଭଙ୍କୁ ତାହା ଉପଦେଶ ପ୍ରଦାନ କରନ୍ତୁ । ଏହି ବିଷୟରେ ଆମ୍ଭର ଅତିଶୟ ସଂଶୟ ହୋଇଅଛି । ୫ ।

ହେ ମହାରାଜ ! ପ୍ରଦ୍ୟୁମ୍ନ ଏହିପରି ପ୍ରଶ୍ନ କରିବାରୁ ଆମ୍ଭେ ତାହାଙ୍କୁ ଯାହା ପ୍ରତ୍ୟୁତ୍ତର ଦେଲୁଁ, ଆପଣ ସମାହିତ ହୋଇ ତାହା ଶ୍ରବଣ କରିବା ହେଉନ୍ତୁ । ୬ । ହେ ରୁକ୍ମିଣୀନନ୍ଦନ ! ବ୍ରାହ୍ମଣପୂଜାର ଫଳ ଆମ୍ଭ ନିକଟରୁ ଶ୍ରବଣ କର । ତ୍ରିବର୍ଗରେ ଅପବର୍ଗରେ, ଯଶ, ଶ୍ରୀ ଓ ରୋଗ ଶାନ୍ତି ବିଷୟରେ ଦେବତା ଓ ପିତୃଗଣଙ୍କ ପୂଜା କର୍ତ୍ତବ୍ୟ । ତଦ୍‌ବିଷୟରେ ବ୍ରାହ୍ମଣମାନଙ୍କ ସନ୍ତୋଷ ବିଧାନ କରିବାର ଆମ୍ଭମାନଙ୍କର ଉଚିତ, ସେମାନେ ସୋମରାଜ । ହେ ପୁତ୍ର ରୁକ୍ମିଣୀନନ୍ଦନ ! ସେମାନେ ଇହଲୋକ ଓ ପରଲୋକରେ ସୁଖ ଦୁଃଖର ଈଶ୍ୱର । ବ୍ରାହ୍ମଣଙ୍କ ଉପବୃତ୍ତି ଅତି ମଙ୍ଗଳଦାୟିନୀ ଏହି ବିଷୟରେ ବିଚାରଣା ନାହିଁ ।

ବ୍ରାହ୍ମଣଙ୍କୁ ପୂଜା କଲେ, ଆୟୁ, କୀର୍ତ୍ତି, ଯଶ ଓ ବଳ ବୃଦ୍ଧି ହୁଏ, ଯେଉଁମାନେ ବ୍ରାହ୍ମଣଗଣଙ୍କର ପୂଜା କରନ୍ତି ସେମାନେ ଲୋକେଶ୍ୱର ହୁଅନ୍ତି । ହେ ପୁତ୍ର ! ଆମ୍ଭେ ଈଶ୍ୱର ହୋଇ କଦାପି ସେହିମାନଙ୍କୁ ଅନାଦର କରି ପାରିବୁ ନାହିଁ । ସମ୍ପ୍ରତି ସେମାନଙ୍କଠାରେ ତୁମ୍ଭର କ୍ରୋଧ କରିବା କଦାପି ଉଚିତ ନୁହେଁ । ବ୍ରାହ୍ମଣଗଣ ଇହପରଲୋକରେ ମହାପ୍ରାଣୀ ଅଟନ୍ତି,

ପ୍ରତ୍ୟକ୍ଷଦର୍ଶୀ ବ୍ରାହ୍ମଣଗଣ କ୍ରୁଦ୍ଧ ହେଲେ ସମସ୍ତ ଜଗତକୁ ଭସ୍ମ କରିପାରନ୍ତି ଏବଂ ଅନ୍ୟ ଲୋକ ଓ ଲୋକେଶ୍ୱର ସମୂହଙ୍କୁ ସୃଷ୍ଟି କରିପାରନ୍ତି । ଯେଉଁ-ମାନଙ୍କର ସମ୍ୟକ୍ ଜ୍ଞାନ ଓ ସୁନ୍ଦର ତେଜ ଅଛି, ସେମାନେ କାହିଁକି ବ୍ରାହ୍ମଣ-ଗଣଙ୍କର ଅଧୀନ ନ ହେବେ ? ୧୩ ।

ହେ ତାତ ! ମଦୀୟ ଆବାସରେ ଚୀରବାସା, ବିଲ୍ୱଦଣ୍ଡଧାରୀ, ଦୀର୍ଘକଳେବର, ଦୀର୍ଘଶ୍ମଶ୍ରୁ ଓ ଅତିଶୟ କୃଶ ପିଙ୍ଗଳବର୍ଣ୍ଣ ଏକ ବ୍ରାହ୍ମଣ ବାସ କରିଥିଲେ । ୧୪ । ଭୂଲୋକରେ ଯେଉଁ ସମସ୍ତ ଦୀର୍ଘ ମନୁଷ୍ୟ ଅଛନ୍ତି, ସେ ସେମାନଙ୍କ ଅପେକ୍ଷା ଅଧିକତର ଦୀର୍ଘ, ଯେଉଁ ସମସ୍ତ ଦ୍ରବ୍ୟ ଓ ମାନୁଷ ଲୋକ ଅଛି, ସେ ତତ୍ସମୁଦାୟରେ ସଞ୍ଚରଣ କରୁଥିଲେ, ଚତ୍ୱର ଓ ସଭା ମଧ୍ୟରେ ଏହି ଗାଥା ଗାନ କରୁଥିଲେ ଯେ ଦୁର୍ବାସା ବ୍ରାହ୍ମଣଙ୍କୁ କେହି ସତ୍କାର ପୂର୍ବକ ଗୃହରେ ବାସ କରାଇ ପାରିବେ ? ୧୬ । ଅଳ୍ପମାତ୍ର ଅପକାର କଲେ ଆମ୍ଭେ ସର୍ବଭୂତରେ ରୋଷ ପ୍ରକାଶ କରୁ, ଆମ୍ଭ ବାକ୍ୟ ଶ୍ରବଣ କଲେ କିଏ ଆମ୍ଭଙ୍କୁ ଆଶ୍ରୟ ଦେବ ? ୧୭ । ଯେବେ କେହି ବାସ କରାଇବେ ସେ ଆମ୍ଭଙ୍କୁ ପ୍ରକୋପିତ କରାଇବେ ନାହିଁ ।

ଦୁର୍ବାସା ବ୍ରାହ୍ମଣ ଏହି କଥା ପ୍ରଚାର କରନ୍ତେ ଯେତେବେଳେ କେହି ତାହାଙ୍କୁ ଆଦର ନ କଲେ, ତେତେବେଳେ ଆମ୍ଭେ ତାହାଙ୍କୁ ନିଜ ଭବନରେ ବାସ କରାଇଲୁ ।୧୮। ସେ ଏକଦା ସହସ୍ର ଲୋକଙ୍କର ଅଥବା ତଦପେକ୍ଷା ଅଧିକ ଲୋକଙ୍କର ଅନ୍ନ ଆହାର କରନ୍ତି । କୌଣସି ସମୟରେ ଅଳ୍ପମାତ୍ର ଅନ୍ନ ଭୋଜନ କରନ୍ତି, କେବେ କେବେ ଗୃହକୁ ମଧ୍ୟ ଆସନ୍ତି ନାହିଁ । ୧୯ । ବିନା କାରଣରେ ହସନ୍ତି ଓ ରୋଦନ କରନ୍ତି, ତତ୍ସମୟରେ ପୃଥିବୀ ମଧ୍ୟରେ ତାହାଙ୍କର ତୁଲ୍ୟ ବୟସ୍କ ବ୍ୟକ୍ତି ନ ଥିଲେ । ୨୦ । ଅନନ୍ତର ସେ ଆଶ୍ରମକୁ ଆଗମନ ପୂର୍ବକ ଶଯ୍ୟା, ଆସ୍ତରଣ ଓ ଅଳଂକୃତା କନ୍ୟାଗଣଙ୍କୁ ଦଗ୍ଧ କରି ସେଠାରୁ ପୁନଶ୍ଚ ପ୍ରସ୍ଥାନ କଲେ । ୨୧ ।

ପରିଶେଷରେ ସେହି ସଂଶିତବ୍ରତ ମୁନି ଆମ୍ଭଙ୍କୁ ପୁନଶ୍ଚ କହିଲେ, ହେ କୃଷ୍ଣ ! ଆମ୍ଭେ ଶୀଘ୍ର ପାୟସ ଭୋଜନ କରିବାକୁ ଇଚ୍ଛା କରୁଅଛୁ ।୨୨। ଆମ୍ଭେ ତାହାଙ୍କ ମନ ଜାଣିଥାଉଁ, ସୁତରାଂ ପୂର୍ବରୁ ପରିଜନଗଣଙ୍କୁ ସମସ୍ତ ଅନ୍ନପାନ ଓ ନାନାବିଧ ଭକ୍ଷ୍ୟଦ୍ରବ୍ୟ ପ୍ରସ୍ତୁତ କରିବାକୁ କହିଥିଲୁଁ, ଅନନ୍ତର ଆମ୍ଭେ ତାହାଙ୍କୁ ଉଷ୍ମ ପାୟସ ପ୍ରଦାନ କଲୁ । ୨୪ । ସେ ଅବିଳମ୍ବରେ ତାହା ଭୋଜନ କରି କହିଲେ, ଆମ୍ଭର ସମସ୍ତ ଅଙ୍ଗ ସତ୍ୱର ପାୟସଦ୍ୱାରା ଲିପ୍ତ କର । ୨୫ । ଆମ୍ଭେ ତଦୀୟ ବାକ୍ୟ ବିବେଚନା ନ କରି ତାହା

କଲୁ । ସେହି ଉଚ୍ଛିଷ୍ଟ ପାୟସ ଦ୍ୱାରା ତାହାଙ୍କ ଗାତ୍ର ଓ ମସ୍ତକ ଲେପନ କଲୁ । ୨୬ । ତେତେବେଳେ ସେ ତୁମ୍ଭର ଶୁଭାନନା ଜନନୀଙ୍କୁ ନିକଟରେ ଦେଖିଲେ । ସେ ହାସ୍ୟ କରିବାରୁ ତାହାଙ୍କୁ ମଧ୍ୟ ପାୟସଦ୍ୱାରା ଲିପ୍ତ କଲେ । ୨୭ । ତେତେବେଳେ ମୁନି ପାୟସଲିପ୍ତାଙ୍ଗୀ ତୁମ୍ଭ ଜନନୀଙ୍କୁ ଶୀଘ୍ର ରଥରେ ଯୋଜନା କଲେ ଏବଂ ସେହି ରଥରେ ଆରୋହଣ ପୂର୍ବକ ମଦୀୟ ଭବନରୁ ନିର୍ଗତ ହେଲେ । ୨୮ । ରଥ ବାହକ ଯେଉଁପରି ବାହନଗଣଙ୍କୁ ପ୍ରହାର କରନ୍ତି, ଜ୍ୱଳନ୍ତ ଅଗ୍ନିବର୍ଣ୍ଣ ସେହି ଧୀମାନ୍ ବ୍ରାହ୍ମଣ ତଦ୍‌ବତ୍ ଆମ୍ଭ ସାକ୍ଷାତରେ ବାଳିକା ରୁକ୍ମିଣୀଙ୍କୁ ପ୍ରତୋଦ ଦ୍ୱାରା ତାଡ଼ନ କଲେ । ୨୯ । ତେତେବେଳେ ଆମ୍ଭର ଈର୍ଷା ହେଉରୁ ଅଳ୍ପମାତ୍ର ଦୁଃଖ ହେଲା ନାହିଁ । ସେ ପ୍ରଶସ୍ତ ରାଜପଥ ଦ୍ୱାରା ବହିର୍ଭାଗକୁ ନିର୍ଗତ ହେଲେ । ୩୦ ।

ଦାଶାର୍ହଗଣ ସେହି ମହତ୍ ଆଶ୍ଚର୍ଯ୍ୟ ଦର୍ଶନ କରି କ୍ରୋଧାନ୍ୱିତ ହେଲେ । ତନ୍ମଧ୍ୟରେ କେହି କେହି ପରସ୍ପର ସମ୍ଭାଷଣ ପୂର୍ବକ କଳ୍ପନା କଲେ ଯେ, (୩୧) ଭୂମଣ୍ଡଳରେ ବ୍ରାହ୍ମଣଙ୍କ ସଦୃଶ ଅନ୍ୟ କୌଣସି ବର୍ଣ୍ଣ ଜନ୍ମଗ୍ରହଣ କରନ୍ତି ନାହିଁ । ଅନ୍ୟ ବର୍ଣ୍ଣଙ୍କର କଦାପି ପୁରୁଷତ୍ୱ ନାହିଁ, ବ୍ରାହ୍ମଣ ଭିନ୍ନ ଅନ୍ୟ କୌଣସି ବ୍ୟକ୍ତି ମହାନୁଭବା ରୁକ୍ମିଣୀଙ୍କୁ ରଥରେ ଯୋଜିତ କରି ଜୀବିତ ରହିପାରନ୍ତା କି ? ୩୨ । ଆଶୀବିଷର ବିଷ ତୀକ୍ଷ୍ଣ, ବ୍ରାହ୍ମଣ ତଦପେକ୍ଷା ତୀକ୍ଷ୍ଣତର, ଯେଉଁ ବ୍ୟକ୍ତି ବ୍ରାହ୍ମଣରୂପ ଆଶୀବିଷଦ୍ୱାରା ଦଗ୍ଧ ହୁଅନ୍ତି, ତାହାଙ୍କର କେହି ଚିକିତ୍ସକ ନାହାନ୍ତି । ୩୩ । ପରମ ଦୁର୍ଦ୍ଧର୍ଷ ମହର୍ଷି ଦୁର୍ବାସା ଏହିରୂପେ ରଥାରୂଢ଼ ହୋଇ ରାଜମାର୍ଗରେ ଧାବମାନ ହେବାରୁ ପଥମଧ୍ୟରେ ତୁମ୍ଭ ଜନନୀ ବାରମ୍ବାର ସ୍ଖଳିତପଦ ହେଉଥିଲେ, ତଥାପି ଶ୍ରୀମାନ୍ ମହର୍ଷି ତହିଁରେ କ୍ଷାନ୍ତ ନ ହୋଇ ତାହାଙ୍କୁ ବାରମ୍ବାର କଶାଘାତ କରୁଥିଲେ । ୩୪ ।

ଅନନ୍ତର ଦ୍ୱିଜବର ଅତିଶୟ କ୍ରୁଦ୍ଧ ହୋଇ ରଥରୁ ଅବତରଣ ପୂର୍ବକ ପାଦଚାରୀ ଓ ଦକ୍ଷିଣାଭିମୁଖୀ ହୋଇ କୁତ୍ସିତ ପଥରେ ଧାବିତ ହେଲେ । ୩୫ । ସେ କୁତ୍ସିତ ମାର୍ଗରେ ଧାବମାନ ହେବାରୁ ଆମ୍ଭେ ସେହି ଦ୍ୱିଜବରଙ୍କ ପଶ୍ଚାତ୍ ପଶ୍ଚାତ୍ ଧାବମାନ ହେଲୁଁ ଏବଂ ତଦ୍‌ବତ୍ ପାୟସ-ଲିପ୍ତ ଥାଇ ତାହାଙ୍କୁ କହିଲୁ, ହେ ଭଗବନ୍ ! ଆପଣ ପ୍ରସନ୍ନ ହେଉନ୍ତୁ ।୩୬। ତଦନନ୍ତର ସେହି ତେଜସ୍ୱୀ ବ୍ରାହ୍ମଣ ଆମ୍ଭଙ୍କୁ ଦେଖି କହିଲେ, ହେ ମହାଭୁଜ କୃଷ୍ଣ ! ତୁମ୍ଭେ ସ୍ୱଭାବରେ କ୍ରୋଧ ଜୟ କରିଅଛ । ୩୭ ।

ହେ ସୁବ୍ରତ ! ଏହି ବିଷୟରେ ଆମ୍ଭେ ତୁମ୍ଭର କୌଣସି ଅପରାଧ ଦେଖୁ-ନାହୁଁ, ଅତଏବ ହେ ଗୋବିନ୍ଦ ! ଆମ୍ଭେ ତୁମ୍ଭ ପ୍ରତି ପ୍ରୀତ ହୋଇଅଛୁ, ତୁମ୍ଭର ଯାହା ଅଭିଳାଷ ହୁଏ, ସେହି ବର ପ୍ରାର୍ଥନା କର । ୩୮ ।

ଅନ୍ୟ ଯେଉଁପରି ସମସ୍ତ ଦେବତା ଓ ମନୁଷ୍ୟମାନଙ୍କର ପ୍ରିୟ ତୁମ୍ଭେ ତଦ୍‌ବତ୍ ସମସ୍ତ ଲୋକରେ ପ୍ରିୟପାତ୍ର ହେବ, ଆମ୍ଭେ ପ୍ରସନ୍ନ ହେବାରୁ ଯେଉଁ ଫଳ ହେବ ତାହା ତୁମ୍ଭେ ଯଥାବିଧି ଦର୍ଶନ କର । ନରଗଣଙ୍କର ଯାବତ୍ କାଳ ଅନ୍ନରେ ଅଭିଳାଷ ଥିବ, ଅନ୍ନରେ ଯାଦୃଶ ଅଭିଳାଷ ତୁମ୍ଭଠାରେ ତାଦୃଶ ଅଭିଳାଷ ରହିଥିବ । ଲୋକ ମଧ୍ୟରେ ଯାବତ୍‌କାଳ ତୁମ୍ଭର ପୁଣ୍ୟ କୀର୍ତ୍ତନ ହେଉଥିବ, ତ୍ରିଲୋକ ମଧ୍ୟରେ ତାବତ୍-କାଳ ତୁମ୍ଭେ ବୈଶିଷ୍ଟ୍ୟ ପ୍ରାପ୍ତ ହେବ ! ହେ ଜନାର୍ଦ୍ଦନ ! ତୁମ୍ଭେ ସର୍ବ-ଲୋକର ଅତିଶୟ ପ୍ରିୟ ହେବ । ୪୧ । ହେ ଜନାର୍ଦ୍ଦନ ! ତୁମ୍ଭର ଯାହା କିଛି ଭଗ୍ନ, ଦଗ୍ଧ ବା ବିନାଶିତ ହୋଇଅଛି, ତତ୍‌ସମୁଦାୟ ତୁମ୍ଭେ ତଦ୍‌ବତ୍ ଅଥବା ତଦପେକ୍ଷା ଉତ୍କୃଷ୍ଟ ଦେଖିବ । ୪୨ । ହେ ଅଚ୍ୟୁତ ମଧୁସୂଦନ ! ତୁମ୍ଭ ଗାତ୍ରରେ ଯାବତ୍ ପରମାଣ ପାୟସଲିପ୍ତ ହୋଇଅଛି ତାହାଦ୍ୱାରା ତୁମ୍ଭେ ଯେତେକାଳ ଇଚ୍ଛାକର ତାବତ୍‌କାଳ ଜୀବିତ ରହିବ, ଏହାଦ୍ୱାରା ତୁମ୍ଭର ମୃତ୍ୟୁଭୟ ହେବ ନାହିଁ । ୪୩ । ହେ ପୁତ୍ର ! ତୁମ୍ଭେ କେବଳ ସ୍ୱୀୟ ପଦତଳରେ ପାୟସଲେପନ ନ କରିବାରୁ ଆମ୍ଭର ଅପ୍ରିୟ କାର୍ଯ୍ୟ ଅନୁଷ୍ଠାନ କରିଅଛ । ତେତେବେଳେ ସେ ପ୍ରୀତ ହୋଇ ଆମ୍ଭଙ୍କୁ ଏହି କଥା କହି-ଥିଲେ । ୪୪ ।

ସେ ଆମ୍ଭଙ୍କୁ ଏହିପରି କହିବାରୁ ଆମ୍ଭେ ସ୍ୱକୀୟ ଶରୀରକୁ ଶ୍ରୀ-ସମ୍ପନ୍ନ ଦେଖିଲୁଁ । ଅନନ୍ତର ସେ ପ୍ରୀତ ହୋଇ ରୁକ୍ମିଣୀଙ୍କୁ କହିଲେ, ହେ ଶୋଭନେ ! ତୁମ୍ଭେ ଲୋକମଧ୍ୟରେ ସମସ୍ତ ସ୍ତ୍ରୀଗଣଙ୍କର ଉତ୍କୃଷ୍ଟ ଯଶ ଏବଂ ଅନୁତ୍ତମ କୀର୍ତ୍ତି ଲାଭ କରିବ । ହେ ଭାମିନୀ ! ତୁମ୍ଭଙ୍କୁ ଜରା ଅଥବା ରୋଗସମ୍ଭୂତ କିମ୍ବା ବୈବର୍ଣ୍ଣ୍ୟ ସ୍ପର୍ଶ କରିପାରିବ ନାହିଁ । ୪୬ । ତୁମ୍ଭେ ପବିତ୍ରଗନ୍ଧ ସମନ୍ୱିତା ହୋଇ କୃଷ୍ଣଙ୍କୁ ଆରାଧନା କରିବ । କେଶବଙ୍କର ଷୋଡ଼ଶ ସହସ୍ର ବଧୂମଧ୍ୟରେ ତୁମ୍ଭେ ବରିଷ୍ଠା ହେବ, ଏବଂ କୃଷ୍ଣଙ୍କ ସମାନ ଲୋକରେ ବସତି କରିବ । ହେ ବତ୍ସ ! ପ୍ରସ୍ଥାନ କରିବାକୁ ଉଦ୍ୟତ ମହାତେଜା ଦୁର୍ବାସା ଅଗ୍ନିସଦୃଶ ପ୍ରଜ୍ୱଳିତ ହୋଇ ତୁମ୍ଭ ମାତାଙ୍କୁ ଏହି କଥା କହି ପୁନଶ୍ଚ ଆମ୍ଭଙ୍କୁ କହିଲେ, ହେ କେଶବ ! ବ୍ରାହ୍ମଣଗଣଙ୍କଠାରେ

ତୁମ୍ଭର ଏହିପରି ବୁଦ୍ଧି ଥାଉ । ସେହି ବିପ୍ରବର ସେତେବେଳେ ଏହି କଥା କହି ସେହି ସ୍ଥାନରେ ଅନ୍ତର୍ହିତ ହେଲେ ।

ସେ ଅନ୍ତର୍ହିତ ହେଲାରୁ ଆମ୍ଭେ ଉପାଂଶୁବ୍ରତ ଆଚରଣ କଲୁ । ଅର୍ଥାତ୍ ବ୍ରାହ୍ମଣଗଣଙ୍କ ଆଜ୍ଞା କଦାପି ଲଙ୍ଘନ କରିବୁ ନାହିଁ ବୋଲି ପ୍ରତିଜ୍ଞା କଲୁ । ହେ ପୁତ୍ର ! ତୁମ୍ଭ ଜନନୀଙ୍କ ସହିତ ଆମ୍ଭେ ଏହି ବ୍ରତ କରି ପରକ୍ଷଣରେ ପରମ ହୃଷ୍ଟ ଚିତ୍ତରେ ଗୃହରେ ପ୍ରବିଷ୍ଟ ହେଲୁ । ହେ ପୁତ୍ର ! ତଦନନ୍ତର ସ୍ୱକୀୟ ସଦନରେ ପ୍ରବିଷ୍ଟ ହୋଇ ସେହି ବିପ୍ରକର୍ତ୍ତୃକ ଯାହା ଭଗ୍ନ ଓ ଦଗ୍ଧ ହୋଇଥିଲା, ତତ୍ସମୁଦାୟ ନୂତନ ଦେଖିଲୁ । ହେ ରୁକ୍ମିଣୀନନ୍ଦନ ! ଆମ୍ଭେ ସମସ୍ତ ବସ୍ତୁ ଅଭିନବ ଓ ଦୃଢ଼ ଦେଖି ବିସ୍ମୟାପନ୍ନ ହେଲୁ ଏବଂ ସର୍ବଦା ବ୍ରାହ୍ମଣଗଣଙ୍କୁ ମନେ ମନେ ପୂଜା କଲୁ । ୫୩ । ହେ ଭରତଶ୍ରେଷ୍ଠ ! ସେତେବେଳେ ରୁକ୍ମିଣୀପୁତ୍ର ପ୍ରଶ୍ନ କଲାରୁ ଆମ୍ଭେ ଦ୍ୱିଜବରଙ୍କର ଏହି ସମସ୍ତ ମାହାତ୍ମ୍ୟ କହିଥିଲୁ । ହେ ପ୍ରଭୋ ! କୁନ୍ତୀନନ୍ଦନ ! ଆପଣ ମହାଭାଗ ବ୍ରାହ୍ମଣଗଣଙ୍କୁ ଧନ ଓ ଗୋଧନଦ୍ୱାରା ପୂଜା କରିବା ହେଉନ୍ତୁ । ଆମ୍ଭେ ବ୍ରାହ୍ମଣଙ୍କ ପ୍ରସାଦଜନିତ ଏହିରୂପ ଫଳ ପ୍ରାପ୍ତ ହୋଇଅଛୁ । ହେ ଭରତଶ୍ରେଷ୍ଠ ! ଭୀଷ୍ମ ଆମ୍ଭଙ୍କୁ ଯାହା କହିଅଛନ୍ତି, ତାହା ସବୁ ସତ୍ୟ ଅଟେ । ୫୬ ।

---

## ଅଧ୍ୟାୟ—୧୬୦

ଯୁଧିଷ୍ଠିର କହିଲେ—ହେ ମଧୁସୂଦନ ! ଦୁର୍ବାସାଙ୍କ ପ୍ରସାଦରେ ଯେତେବେଳେ ତୁମ୍ଭର ଯେଉଁ ବିଜ୍ଞାନଲାଭ ହୋଇଥିଲା, ଆମ୍ଭ ନିକଟରେ ତାହା କୀର୍ତ୍ତନ କରିବା ହେଉନ୍ତୁ । ୧ । ହେ ମତିମତ୍ପ୍ରବର ! ସେହି ମହାତ୍ମାଙ୍କ ମହାଭାଗ୍ୟ ଓ ନାମସମୂହ ଯଥାର୍ଥ ରୂପେ ଜାଣିବାକୁ ଅଭିଳାଷ କରୁଅଛୁ । ୨ । ବାସୁଦେବ କହିଲେ, ହେ ରାଜନ୍ ! ଏହା ଉତ୍ତମ ପ୍ରଶ୍ନ ଅଟେ, ଆମ୍ଭେ ଯେଉଁ ଶ୍ରେୟୁଲାଭ ଓ ଯଶ ଉପାର୍ଜ୍ଜନ କରିଅଛୁ, କପର୍ଦ୍ଦୀଙ୍କୁ ନମସ୍କାର କରି ତାହା ଆପଣଙ୍କ ନିକଟରେ କୀର୍ତ୍ତନ କରୁଅଛୁ । ୩ । ହେ ନରନାଥ ! ଆମ୍ଭେ ପ୍ରାତଃକାଳରେ ଗାତ୍ରୋତ୍ଥାନ ପୂର୍ବକ ପ୍ରୟତ ଏବଂ ପ୍ରାଞ୍ଜଳି ହୋଇ ଯାହା ଅଧ୍ୟୟନ କରିଥାଉଁ, ସେହି ଶତରୁଦ୍ରୀୟ ଆପଣଙ୍କ ନିକଟରେ କହୁଅଛୁ ଶ୍ରବଣ କରିବା ହେଉନ୍ତୁ ।

ମହାତପା ପ୍ରଜାପତି ତପସ୍ୟାବସାନରେ ତାହା ସର୍ଜନ କରିଅଛନ୍ତି, ହେ ତାତ ! ଶଙ୍କର ଏହି ସ୍ଥାବରଜଙ୍ଗମ ପ୍ରଜାଗଣଙ୍କର ସୃଷ୍ଟି କରିଅଛନ୍ତି ।୫। ହେ ନରନାଥ ! ମହାଦେବଙ୍କ ଅପେକ୍ଷା ଅନ୍ୟ କେହି ଶ୍ରେଷ୍ଠ ପ୍ରାଣୀ ନାହାନ୍ତି । ସେ ଏହି ତ୍ରିଭୁବନ ମଧ୍ୟରେ ସର୍ବପ୍ରାଣିସମୂହର ପ୍ରଭବ ଅଟନ୍ତି । ୬ । ସେହି ମହାତ୍ମାଙ୍କ ଅଗ୍ରଭାଗରେ ଅବସ୍ଥାନ କରିବାକୁ କେହି ଉତ୍ସାହିତ ହୁଅନ୍ତି ନାହିଁ । ତ୍ରିଲୋକ ମଧ୍ୟରେ କେହି ତାହାଙ୍କ ସମାନ ନାହାନ୍ତି । ୭ । ସେ ଯୁଦ୍ଧରେ କ୍ରୁଦ୍ଧ ହେଲେ ତଦୀୟ ଗାତ୍ରଗନ୍ଧଦ୍ୱାରା ଶତ୍ରୁଗଣ ସଂଜ୍ଞାହୀନ ଓ ଅନେକ ବ୍ୟକ୍ତି ହତ ହୋଇ କମ୍ପିତ ଓ ପତିତ ହୁଅନ୍ତି । ୮ । ପର୍ଜ୍ଜନ୍ୟ ନିସ୍ୱନ ସଦୃଶ ତାହାଙ୍କ ଘୋରତର ନିନାଦ ଶ୍ରବଣ କଲେ ସମରରେ ସୁରଗଣଙ୍କ ହୃଦୟ ବିଦୀର୍ଣ୍ଣ ହୁଏ । ୯ । ପିନାକଧାରୀ କ୍ରୁଦ୍ଧ ହୋଇ ଯେଉଁ-ମାନଙ୍କୁ ଘୋର ରୂପରେ ଦର୍ଶନ କରନ୍ତି, ସେହିମାନଙ୍କ ହୃଦୟ ବିଦୀର୍ଣ୍ଣ ହୋଇଯାଏ । ସେ କ୍ରୋଧାବିଷ୍ଟ ହୋଇ ବିକଟ ମୂର୍ତ୍ତି ଧାରଣ ପୂର୍ବକ ଦେବ ଦାନବ ଗନ୍ଧର୍ବ ବା ପନ୍ନଗଗଣଙ୍କ ପ୍ରତି ଦୃଷ୍ଟିପାତ କଲେ ସେମାନେ ପର୍ବତ-ଗୁହା ମଧ୍ୟରେ ପ୍ରବେଶ କଲେ ସୁଦ୍ଧା ନିଶ୍ଚିନ୍ତ ହୋଇ ପାରନ୍ତି ନାହିଁ ।

ପ୍ରଜାପତି ଦକ୍ଷ ଅତି ସୁବିସ୍ତୀର୍ଣ୍ଣ ଯଜ୍ଞ ଆରମ୍ଭ କରି ତାହାଙ୍କ ଭାଗ କଳ୍ପନା ନ କରିବାରୁ ସେ ଅତି ରୋଷରେ ଶରାସନରେ ଶରସଂଯୋଗ ପୂର୍ବକ ସିଂହନାଦ ପରିତ୍ୟାଗ କରି ସେହି ଯଜ୍ଞ ବିଦ୍ଧ କରିଥିଲେ । ସେ ଶରାସନଦ୍ୱାରା ବାଣ ବିସର୍ଜ୍ଜନ ପୂର୍ବକ ଘୋରତର ନିନାଦ କରନ୍ତି ।୧୨। ସେହି ଘୋରତର ନିନାଦ ଦ୍ୱାରା ସୁଖ ଅବା ଶାନ୍ତି କେଉଁଠାରେ ରହିପାରିବ ? ସୁରଗଣ ବିଷାଦ ଲାଭ କଲେ । ସହସା ଯଜ୍ଞବିଦ୍ଧ ଓ ମହେଶ୍ୱର କ୍ରୁଦ୍ଧ ହେବାରୁ ସେହି ଜ୍ୟାତଳ ଘୋଷଦ୍ୱାରା ସମସ୍ତ ଲୋକ ସମାକୁଳ ଓ ଅବଶ ହେଲେ । ହେ ପାର୍ଥ ! ସୁରାସୁରଗଣ ସମସ୍ତେ ବିଷଣ୍ଣ ହେଲେ । ୧୪ । ଜଳରାଶି କ୍ଷୁବ୍ଧ ଓ ବସୁନ୍ଧରା ବିକମ୍ପିତ ହେଲା, ଗିରିବୃନ୍ଦ ବିଦୀର୍ଣ୍ଣ ହୋଇ ଚତୁର୍ଦ୍ଦିଗରେ ଧାବମାନ ହେଲେ ଓ ଆକାଶମଣ୍ଡଳ ବିନଷ୍ଟ ହେଲା । ୧୫ । ଲୋକସମୂହ ଅନ୍ଧତମସାଚ୍ଛନ୍ନ ହୋଇ ପ୍ରକାଶିତ ହେଲେ ନାହିଁ । ସୂର୍ଯ୍ୟ ଓ ଗ୍ରହ ନକ୍ଷତ୍ରମାନଙ୍କର କିଛିମାତ୍ର ପ୍ରଭା ରହିଲା ନାହିଁ । ୧୬ । ସମସ୍ତ ଭୂତ-ଗଣଙ୍କର ଓ ଆପଣାର ହିତୈଷୀ ଋଷିଗଣ ଅତିଶୟ ଭୀତ ହୋଇ ଶାନ୍ତି ଓ ସ୍ୱସ୍ତ୍ୟୟନ କଲେ । ୧୭ ।

ତଦନନ୍ତର ରୌଦ୍ରପରାକ୍ରମ ରୁଦ୍ରଦେବ କ୍ରୁଦ୍ଧ ହୋଇ ଦେବଗଣଙ୍କ ଅଭିମୁଖରେ ଧାବିତ ହେଲେ । ସେ କ୍ରୁଦ୍ଧ ହୋଇ ପ୍ରହାର ଦ୍ୱାରା ଭଗଙ୍କ

ନେତ୍ରଦ୍ୱୟ ବିନଷ୍ଟ କଲେ (୧୮), ଏବଂ ରୋଷାନ୍ୱିତ ଓ ପାଦସ୍ପୃଷ୍ଟ ହୋଇ ପୂଷାଙ୍କ ଅଭିମୁଖକୁ ଧାବିତ ହେଲେ, ତେତେବେଳେ ପୂଷା ପୁରୋଡ଼ାଶ ଭକ୍ଷଣ କରୁଥିଲେ, ରୁଦ୍ରଦେବ କ୍ରୁଦ୍ଧ ହୋଇ ତାହାଙ୍କ ଦନ୍ତସମୂହ ଉତ୍ପାଟନ କଲେ । ୧୯ । ଅନନ୍ତର ସେହି ଦେବଗଣ କମ୍ପମାନ ହୋଇ ଶଙ୍କରଙ୍କୁ ପ୍ରଣାମ କଲେ । ରୁଦ୍ରଦେବ ପୁନଶ୍ଚ ପ୍ରଧାନ ଶାଣିତ ଶର ସନ୍ଧାନ କଲେ । । ୨୦ । ଋଷିଗଣଙ୍କ ସହିତ ଦେବଗଣ ରୁଦ୍ରଦେବଙ୍କ ବିକ୍ରମ ବିଲୋକନ କରି ଭୀତ ହେଲେ । ତଦନନ୍ତର ସେହି ବିବୁଧଶ୍ରେଷ୍ଠଗଣ ଶଙ୍କରଙ୍କୁ ପ୍ରସନ୍ନ କରାଇଲେ । ୨୧ । ତେତେବେଳେ ଦେବଗଣ ଅଞ୍ଜଳି ବନ୍ଧନ କରି ଶତ ରୁଦ୍ରୀୟ ଜପ କଲେ । ମହେଶ୍ୱର ତ୍ରିଦଶଗଣ କର୍ତ୍ତୃକ ସର୍ବତୋଭାବରେ ସ୍ତୂୟମାନ ହୋଇ ପ୍ରସନ୍ନ ହେଲେ । ୨୨ ।

ଦେବଗଣ ରୁଦ୍ରଙ୍କର ଯଜ୍ଞଭାଗ ବିଶିଷ୍ଟ ରୂପେ କଳ୍ପନା କଲେ । ହେ ରାଜନ୍ ! ତ୍ରିଦଶଗଣ ଭୟବଶତଃ ଶଙ୍କରଙ୍କର ଶରଣାପନ୍ନ ହେଲେ । ୨୩ । ତେତେବେଳେ ମହାଦେବ ସନ୍ତୁଷ୍ଟ ହୋଇ ଯଜ୍ଞକୁ ସନ୍ଧିତ କରି-ଦେଲେ । ଅର୍ଥାତ୍ ଯଜ୍ଞକୁ ପୁନଶ୍ଚ ଯଥାସ୍ଥାନରେ ସଂସ୍ଥାପିତ କରି ତାହାର ଯେଉଁ ସମୁଦାୟ ଅଙ୍ଗ ଅପହୃତ ହୋଇଥିଲା ତତ୍ସମୁଦାୟ ଯଥା ସ୍ଥାନରେ ସନ୍ନିବେଶିତ କଲେ । ୨୪ । ପୂର୍ବକାଳରେ ବୀର୍ଯ୍ୟବାନ୍ ଅସୁରଗଣଙ୍କର ଲୌହମୟ, ରଜତମୟ ଓ ଅନ୍ୟ ଗୋଟିଏ ସୁବର୍ଣ୍ଣମୟ ଏହି ତିନିଗୋଟି ପୁରୀ ଥିଲା । ୨୫ । ଦେବରାଜ ସମସ୍ତ ଅସ୍ତ୍ରଦ୍ୱାରା ତାହା ଭେଦ କରିବାକୁ ସମର୍ଥ ହୋଇ ପାରନ୍ତି ନାହିଁ । ଅନନ୍ତର ସୁରଗଣ ପୀଡ଼ିତ ହୋଇ ମହାରୁଦ୍ରଙ୍କର ଶରଣାପନ୍ନ ହେଲେ । ୨୬ ।

ସମାଗତ ସମସ୍ତ ମହାନୁଭବ ସୁରଗଣ କହିଲେ, ହେ ରୁଦ୍ରଦେବ ! ଦୁର୍ଦ୍ଦାନ୍ତ ଦୈତ୍ୟଗଣ ଆମ୍ଭମାନଙ୍କର ସମସ୍ତ କାର୍ଯ୍ୟରେ ଉପଦ୍ରବ କରିବେ । ୨୭ । ଅତଏବ ହେ ମାନଦ ! ଆପଣ ଅନୁଗ୍ରହ ପୂର୍ବକ ଦୈତ୍ୟଗଣଙ୍କର ପୁରତ୍ରୟ ସହିତ ସେମାନଙ୍କୁ ବିନାଶ କରି ଆମ୍ଭମାନଙ୍କୁ ପରିତ୍ରାଣ କରିବା ହେଉନ୍ତୁ । ସେ ଦେବଗଣଙ୍କ ବାକ୍ୟ ଶ୍ରବଣ କରି "ତାହା ହେବ" ଏହି କଥା କହି ବିଷ୍ଣୁଙ୍କୁ ଉତ୍କୃଷ୍ଟ ଶର (୨୮), ଅଗ୍ନିଙ୍କୁ ଶଲ୍ୟ, ବୈବସ୍ୱତ ଯମଙ୍କୁ ପୁଙ୍ଖ, ବେଦଗଣଙ୍କୁ ଧନୁ, ସାବିତ୍ରୀଙ୍କୁ ଜ୍ୟା (୨୯), ଏବଂ ବ୍ରହ୍ମାଙ୍କୁ ସାରଥି କରି ସମସ୍ତ ସଂଯୋଗ ପୂର୍ବକ କାଳକ୍ରମରେ ତ୍ରିପର୍ବସମ୍ବଳିତ ଶଲ୍ୟ-ଦ୍ୱୟଦ୍ୱାରା ସେହି ପୁରତ୍ରୟକୁ ଭେଦ କଲେ । ୩୦ ।

ହେ ଭରତ ! ରୁଦ୍ରଦେବ ପ୍ରଳୟାନଳସମ ତେଜଃସମ୍ପନ୍ନ ଆଦିତ୍ୟ-ବର୍ଣ୍ଣ ଶରଦ୍ୱାରା ପୁରତ୍ରୟ ସହିତ ଅସୁରଗଣଙ୍କୁ ଦଗ୍ଧ କରିଥିଲେ । ୩୧ । ସେ ପଞ୍ଚଶିଖ ବାଳକରୂପରେ ଅଙ୍କାଗତ ହେବାରୁ ସେତେବେଳେ ଉମାଦେବୀ ଜିଜ୍ଞାସମାନା ହୋଇ ଏ "କଏ" ବୋଲି ପଚାରିଥିଲେ । ୩୨ । ଦେବରାଜ ଅସୂୟା କରି ବଜ୍ରଦ୍ୱାରା ପ୍ରହାର କରିବାକୁ ଉଦ୍ୟତ ହେବାରୁ ଏ ଇନ୍ଦ୍ରଙ୍କ ପରିଘୋପମ ସବଜ୍ରବାହୁ ସ୍ତମ୍ଭିତ କରିଥିଲେ । ୩୩ । ଦେବଗଣ ଏହି ଭୁବନେଶ୍ୱରଙ୍କୁ ଜାଣିପାରି ନ ଥିଲେ, ପ୍ରଜାପତିଙ୍କ ସହିତ ସମସ୍ତେ ସେହି ଈଶ୍ୱରଙ୍କ ବିଷୟରେ ମୋହିତ ହୋଇଥିଲେ । ୩୪ । ଅନନ୍ତର ଭଗବାନ୍ ବ୍ରହ୍ମା ସେହି ଅପରିମିତ ତେଜସ୍ୱୀ ରୁଦ୍ରଦେବଙ୍କୁ ଧ୍ୟାନ କରି ଏହି ଦେବ ଶ୍ରେଷ୍ଠ ଅଟନ୍ତି ଏହା ଜ୍ଞାନ ପୂର୍ବକ ଉମାପତିଙ୍କୁ ବନ୍ଦନା କରି-ଥିଲେ । ୩୫ । ପରିଶେଷରେ ସେହି ସୁରଗଣ ଉମାଦେବୀ ଓ ରୁଦ୍ରଦେବଙ୍କୁ ପ୍ରସନ୍ନ କରାଇଲେ । ସେତେବେଳେ ବଳନିସୂଦନ ଦେବରାଜଙ୍କ ବାହୁ ପୂର୍ବସଦୃଶ ହୋଇ ରହିଲା । ୩୬ ।

ସେହି ରୁଦ୍ରଦେବ ଦୁର୍ବାସା ନାମରେ ବୀର୍ଯ୍ୟବାନ୍ ବ୍ରାହ୍ମଣ ହୋଇ ଦ୍ୱାରବତୀ ପୁରୀରେ ମଦୀୟ ଭବନରେ ବହୁକାଳ ବାସ କରିଥିଲେ । ୩୭ । ସେ ଆମ୍ଭ ଗୃହରେ ବହୁବିଧ ଉପଦ୍ରବ କଲେ ସୁଦ୍ଧା ଆମ୍ଭେ ଉଦାରତା ବଶତଃ ସେହି ସମସ୍ତ ଦୁଃସହ ବ୍ୟବହାର ସହ୍ୟ କରିଥିଲୁଁ । ୩୮ । ସେ ରୁଦ୍ର, ସେ ଶିବ, ସେ ଅଗ୍ନି, ସେ ସର୍ବ, ସେ ସର୍ବଜିତ୍, ସେ ଇନ୍ଦ୍ର, ସେ ବାୟୁ, ସେ ଅଶ୍ୱିନୀକୁମାର ଓ ସେ ବିଦ୍ୟୁତ୍ । ୩୯ । ସେ ଚନ୍ଦ୍ରମା, ସେ ସୂର୍ଯ୍ୟ, ସେ ଈଶାନ, ସେ ବରୁଣ, ସେ ଅନ୍ତକ, ସେ କାଳ, ସେ ମୃତ୍ୟୁ, ସେ ଯମ, ସେ ରାତ୍ରି ଓ ସେ ଦିବସ । ୪୦ । ସେ ମାସାର୍ଦ୍ଧ, ମାସ, ଋତୁ, ସନ୍ଧ୍ୟାଦ୍ୱୟ ଓ ସମ୍ବତ୍ସର, ସେ ଧାତା, ସେ ବିଧାତା, ସେ ବିଶ୍ୱକର୍ମା, ସେ ସର୍ବବିତ୍ । ୪୧ । ସେ ନକ୍ଷତ୍ରରାଜି, ସେ ଗ୍ରହବୃନ୍ଦ, ସେ ଦିକ୍-ଚତୁଷ୍ଟୟ ଓ ବିଦିକ୍ସମୂହ, ସେହି ଅମରଦ୍ୟୁତି ଭଗବାନ୍ ଅମେୟାତ୍ମା ଏବଂ ବିଶ୍ୱମୂର୍ତ୍ତି ଅଟନ୍ତି । ୪୨ ।

ସେ ବ୍ରହ୍ମରୂପରେ ଏକ ପ୍ରକାର, ଜୀବବ୍ରହ୍ମଭେଦରେ ଦୁଇପ୍ରକାର, ପ୍ରପଞ୍ଚରୂପରେ ବହୁପ୍ରକାର, ଶତପ୍ରକାର, ସହସ୍ର ପ୍ରକାର ଏବଂ ଶତ ସହସ୍ର ପ୍ରକାର ହୁଅନ୍ତି । ୪୩ । ସେହି ଭୂୟାନ୍ ଜନ୍ମହୀନ ଭଗବାନ୍ ମହାଦେବ ଈଦୃଶ ଅଟନ୍ତି, ଶତବର୍ଷରେ ସୁଦ୍ଧା ତାହାଙ୍କ ଗୁଣ ବର୍ଣ୍ଣନା କରାଯାଏ ନାହିଁ । ୪୪ ।

# ଅଧ୍ୟାୟ—୧୬୧

ବାସୁଦେବ କହିଲେ—ହେ ମହାଭୁଜ ଯୁଧିଷ୍ଠିର ! ବହୁରୂପ, ବହୁନାମସମନ୍ୱିତ, ମହାନୁଭବ ରୁଦ୍ରଦେବଙ୍କର ଯେଉଁ ମହେଶ୍ୱର୍ଯ୍ୟ ଅଛି, ତାହା ଆମ୍ଭ ନିକଟରୁ ଶ୍ରବଣ କରିବା ହେଉନ୍ତୁ ।୧। ମହେଶ୍ୱର ମହାଦେବଙ୍କୁ ଅଗ୍ନି, ସ୍ଥାଣୁ, ଏକାକ୍ଷ, ତ୍ର୍ୟମ୍ବକ, ବିଶ୍ୱରୂପ ଓ ଶିବ କହନ୍ତି ।୨। ବେଦଜ୍ଞ ବ୍ରାହ୍ମଣଗଣ ସେହି ଦେବଙ୍କର ଦ୍ୱିବିଧ ଦେହ ଅଛି ବୋଲି ଜାଣନ୍ତି । ତନ୍ମଧ୍ୟରେ ଏକ ମୂର୍ତ୍ତି ଘୋରା, ଅନ୍ୟ ମୂର୍ତ୍ତି ଶିବା, ସେହି ଦୁଇମୂର୍ତ୍ତି ବହୁବିଧ ହୁଏ ।୩। ଉଗ୍ର ଓ ଘୋରତର ଯେଉଁ ମୂର୍ତ୍ତି ସେ ଅଗ୍ନି, ସେ ବିଦ୍ୟୁତ୍ ଏବଂ ସେ ଭାସ୍କର ଓ ତାହାଙ୍କର ଶିବ ଓ ସୌମ୍ୟ ମୂର୍ତ୍ତି ଧର୍ମ, ଜଳ ଓ ଚନ୍ଦ୍ରମା ଅଟନ୍ତି ।୪। ତାହାଙ୍କର ଶରୀରର ଅର୍ଦ୍ଧଭାଗ ଅଗ୍ନି ଓ ଅର୍ଦ୍ଧଭାଗ ସୋମ ବୋଲି କଥିତ ହୁଏ । ତାହାଙ୍କର ଏକାକିନୀ ଶିବାମୂର୍ତ୍ତି ବ୍ରହ୍ମଚର୍ଯ୍ୟ ଆଚରଣ କରନ୍ତି (୫), ଏବଂ ଏହାଙ୍କର ଯେଉଁ ଘୋରତମା ମୂର୍ତ୍ତି ସେ ପ୍ରଳୟ କାଳରେ ଜଗତ୍ ସଂହାର କରନ୍ତି । ଈଶ୍ୱରତ୍ୱ ଓ ମହତ୍ତ୍ୱ ହେତୁରୁ ସେ ମହେଶ୍ୱର ନାମରେ କଥିତ ହୁଅନ୍ତି ।୬। ଯେ ନିଃଶେଷରେ ଦଗ୍ଧ କରନ୍ତି, ଯେ ତୀକ୍ଷ୍ଣ, ଉଗ୍ର ଓ ପ୍ରତାପବାନ୍ ଅଟନ୍ତି ଓ ମାଂସ ରକ୍ତ ମଜ୍ଜା ଭକ୍ଷଣ କରନ୍ତି, ତାହାଙ୍କୁ ରୁଦ୍ର ବୋଲଯାଏ ।୭। ଯେ ଦେବଗଣଙ୍କ ମଧ୍ୟରେ ସୁମହାନ୍, ଯାହାଙ୍କ ବିଷୟ ମହତ୍, ଯେ ମହତ୍ ବିଶ୍ୱକୁ ପାଳନ କରୁଅଛନ୍ତି, ସେ ମହାଦେବ ନାମରେ ସ୍ମୃତ ହୁଅନ୍ତି ।୮। ଧୂମ୍ରରୂପ ହେତୁରୁ ତାହାଙ୍କୁ ଧୂର୍ଜଟି ବୋଲଯାଏ ।୯।

ସେ ସର୍ବଦା କଲ୍ୟାଣ କାମନା କରି ସମସ୍ତ ନରଗଣଙ୍କୁ କର୍ମଦ୍ୱାରା ପରିବର୍ଦ୍ଧିତ କରନ୍ତି, ଏହି ନିମିତ୍ତ ସେ ଶିବ ଶବ୍ଦବାଚ୍ୟ ହୋଇଅଛନ୍ତି ।୧୦। ସେ ଊର୍ଦ୍ଧ୍ୱରେ ସ୍ଥିରତର ରୂପେ ରହି ମାନବଗଣଙ୍କ ପ୍ରାଣସମୂହକୁ ଦହନ କରନ୍ତି ଏବଂ ନିୟତ ସ୍ଥିରଲିଙ୍ଗ ଅଟନ୍ତି, ଏହି କାରଣରୁ ସେ ସ୍ଥାଣୁ ନାମରେ ସ୍ମୃତ ହୁଅନ୍ତି ।୧୧। ସ୍ଥାବର ଜଙ୍ଗମ, ଭୂତ ଭବିଷ୍ୟତ୍ ବର୍ତ୍ତମାନ ଭେଦରେ ତାହାଙ୍କର ବିବିଧ ପ୍ରକାର ରୂପ ଅଛି ବୋଲି ସେ ବହୁରୂପ ରୂପରେ ସ୍ମୃତ ହୁଅନ୍ତି ।୧୨। ତାହାଙ୍କଠାରେ ବିଶ୍ୱଦେବଗଣ ଆଶ୍ରୟ କରି ରହିଅଛନ୍ତି, ଏହି ନିମିତ୍ତ ସେ ବିଶ୍ୱରୂପ; ସେ ସର୍ବତଃ ଅକ୍ଷିମୟ, ଏହି ନିମିତ୍ତ ତାହାଙ୍କୁ ସହସ୍ରାକ୍ଷ ଏବଂ ଅୟୁତାକ୍ଷ ବୋଲଯାଏ । ତପାୟ ଚକ୍ଷୁଃ-

ସମୂହରେ ସମୁଦ୍‌ଭୂତ ତେଜର ଅନ୍ତ ନାହିଁ, ସେ ସର୍ବପ୍ରକାର ପଶୁଗଣଙ୍କର ପାଳନ କରନ୍ତି, ସେମାନଙ୍କ ସହିତ କ୍ରୀଡ଼ା କରନ୍ତି ଏବଂ ସେମାନଙ୍କର ଅଧିପତି ଅଟନ୍ତି, ଏହି ନିମିତ୍ତ ସେ ପଶୁପତି ନାମରେ ସ୍ମୃତ ହୁଅନ୍ତି ।୧୪।

ତାହାଙ୍କ ମୂର୍ତ୍ତି ନିତ୍ୟ ବ୍ରହ୍ମଚର୍ଯ୍ୟନିରତ; ଏହି ନିମିତ୍ତ ଲୋକ ସେହି ମହାତ୍ମାଙ୍କର ପ୍ରିୟ ମୂର୍ତ୍ତିକୁ ପୂଜା କରନ୍ତି । ୧୫ । ଯେଉଁ ବ୍ୟକ୍ତି ସେହି ମହାନୁଭବଙ୍କର ବିଗ୍ରହ ଅଥବା ଲିଙ୍ଗ ପୂଜା କରନ୍ତି, ସେହି ଲିଙ୍ଗପୂଜକ ପ୍ରତି ନିୟତ ମହତୀ ସମୃଦ୍ଧି ସମ୍ଭୋଗ କରନ୍ତି । ୧୬ । ଋଷିଗଣ, ଦେବଗଣ, ଗନ୍ଧର୍ବଗଣ ଓ ଅପ୍‌ସରାଗଣ ସେହି ଊର୍ଦ୍ଧ୍ୱସ୍ଥିତ ଲିଙ୍ଗକୁ ଅର୍ଚ୍ଚନା କରନ୍ତି । ୧୭ । ଲିଙ୍ଗ ସର୍ବଦା ପୂଜ୍ୟମାନ ହେଲେ, ମହେଶ୍ୱର ପ୍ରମୋଦିତ ହୁଅନ୍ତି ଏବଂ ସେହି ଭକ୍ତବତ୍ସଳ ଭଗବାନ୍ ପ୍ରୀତଚିତ୍ତ ହୋଇ 'ଭକ୍ତଗଣଙ୍କୁ ସୁଖ ସମ୍ପ୍ରଦାନ କରନ୍ତି । ୧୮ ।

ଏହି ଦେବ ଶ୍ମଶାନ ମଧ୍ୟରେ ନିଃଶେଷରେ ଦହନ କରି ବସତି କରିଥାଆନ୍ତି । ଶ୍ମଶାନ ମଧ୍ୟରେ ତାହାଙ୍କୁ ଯେଉଁ ସମସ୍ତ ବ୍ୟକ୍ତି ପୂଜା କରନ୍ତି ସେମାନେ ବୀର ସ୍ଥାନରେ ବସତି କରିବାକୁ ଉପଯୁକ୍ତ ହୁଅନ୍ତି । ୧୯ ।

ସେ ପ୍ରାଣିଗଣଙ୍କ ଶରୀରରେ ମୃତ୍ୟୁ ସ୍ୱରୂପ, ସେ ଶରୀରଗଣଙ୍କ ଶରୀରରେ ପ୍ରାଣ ଓ ଅପାନ ବାୟୁସ୍ୱରୂପ । ୨୦ । ତଦୀୟ ରୂପସମୂହ ଘୋରତର ଦୀପ୍ତ ଓ ବହୁବିଧ, ଲୋକରେ ଯେଉଁ ସମସ୍ତ ରୂପ ପୂଜିତ ହୁଏ, ସେମାନଙ୍କୁ ବିଦ୍ୱାନ୍ ବ୍ରାହ୍ମଣଗଣ ଜାଣନ୍ତି । ୨୧ । ତଦୀୟ କର୍ମ ଓ ଚରିତ-ହାରୀ ଦେବଗଣଙ୍କ ମଧ୍ୟରେ ମହତ୍ତ୍ୱ ହେତୁରୁ ଯଥାର୍ଥ ନାମଧେୟସବୁ ନିରୁକ୍ତ ହୋଇଅଛି । ୨୨ । ବ୍ରାହ୍ମଣଗଣ ବେଦ ମଧ୍ୟରେ ଏହାଙ୍କର ଉତ୍କୃଷ୍ଟ ରୁଦ୍ରୀୟ ପାଠ କରନ୍ତି ଏବଂ ବେଦବ୍ୟାସ ଏହି ମହାତ୍ମାଙ୍କର ଯେଉଁ ନାମସମୂହ କୀର୍ତ୍ତନ କରିଅଛନ୍ତି, ତାହା ମଧ୍ୟ ଜାଣନ୍ତି । ୨୩ ।

ସେ ସର୍ବଲୋକରେ ସୁଖପ୍ରଦାତା, ବ୍ରାହ୍ମଣଗଣ ଓ ଅନ୍ୟାନ୍ୟ ଋଷିଗଣ ତାହାଙ୍କୁ ବିଶ୍ୱରୂପୀ, ମହତ୍ ଓ ସର୍ବଜ୍ୟେଷ୍ଠ ବୋଲି କୀର୍ତ୍ତନ କରନ୍ତି । ୨୪ । ଏ ଦେବଗଣଙ୍କ ମଧ୍ୟରେ ପ୍ରଥମ, ଏ ମୁଖରୁ ଅଗ୍ନି ଉତ୍ପାଦନ କରିଥିଲେ, ବହୁବିଧ ଗ୍ରହଦ୍ୱାରା ସରୁଦ୍ଧ ପ୍ରାଣସମୂହ ପରିତ୍ୟାଗ କଲେ, ସେ ଶରଣ୍ୟ ହୁଅନ୍ତି, ପୁଣ୍ୟାତ୍ମା ଶରଣାଗତ ବ୍ୟକ୍ତିଗଣଙ୍କୁ ସେ କଦାପି ପରିତ୍ୟାଗ କରନ୍ତି ନାହିଁ । ସେ ନରଗଣଙ୍କୁ ଆୟୁ, ଆରୋଗ୍ୟ, ଐଶ୍ୱର୍ଯ୍ୟ ଓ ପୁଷ୍କଳକାମସମୂହ ପ୍ରଦାନ କରନ୍ତି ଏବଂ ତାହାସବୁ ବିନଷ୍ଟ କରନ୍ତି । ଇନ୍ଦ୍ରାଦି ଦେବଗଣଙ୍କର ଯେଉଁ ସମସ୍ତ ଐଶ୍ୱର୍ଯ୍ୟ ଅଛି, ତତ୍ ସମୁଦାୟ ତଦୀୟ ଐଶ୍ୱର୍ଯ୍ୟ ଅଟେ ।୨୭।

ସେ ତ୍ରିଲୋକର ଶୁଭାଶୁଭ ବିଷୟରେ ନିରନ୍ତର ବ୍ୟାପୃତ ଅଛନ୍ତି, ସେ ଐଶ୍ୱର୍ଯ୍ୟବଶତଃ କାମସମୂହର ଈଶ୍ୱରରୂପେ କଥିତ ହୁଅନ୍ତି, ସମସ୍ତ ଭୋଗ୍ୟ ବସ୍ତୁରେ ଏହାଙ୍କର ପ୍ରଭୁତ୍ୱ ଅଛି ବୋଲି ଏହାଙ୍କୁ ଈଶ୍ୱର କୁହାଯାଏ । ଏ ଯାବତୀୟ ମହତ୍ ବିଷୟର ଅଧୀଶ୍ୱର ବୋଲି ମହେଶ୍ୱର ନାମଧାରୀ ହୋଇଅଛନ୍ତି । ଏ ସ୍ୱୀୟ ବିବିଧ ରୂପ ଦ୍ୱାରା ବିଶ୍ୱ ସଂସାରକୁ ବ୍ୟାପି ଅବସ୍ଥାନ କରିଅଛନ୍ତି । ସମୁଦ୍ର ମଧ୍ୟସ୍ଥିତ ବଡ଼ବାମୁଖ ଏହାଙ୍କ ବକ୍ତ୍ର ଅଟେ । ୨୯ ।

---

## ଅଧ୍ୟାୟ—୧୬୨

ବୈଶମ୍ପାୟନ କହିଲେ—ଦେବକୀନନ୍ଦନ କୃଷ୍ଣ ଏହି ବାକ୍ୟ କହିବାରୁ ଯୁଧିଷ୍ଠିର ଶାନ୍ତନୁତନୟ ଭୀଷ୍ମଙ୍କୁ ପୁନଶ୍ଚ ପ୍ରଶ୍ନ କଲେ । ୧ । ହେ ସର୍ବଧର୍ମଜ୍ଞପ୍ରବର ମହାମତେ ! ଧର୍ମ ସଂଶୟ ଉପସ୍ଥିତ ହେଲେ ପ୍ରତ୍ୟକ୍ଷ ଓ ଆଗମ ଏହି ଦୁହିଁଙ୍କ ମଧ୍ୟରେ କିଏ ପ୍ରମାଣ ?

ଭୀଷ୍ମ କହିଲେ, ହେ ପ୍ରାଜ୍ଞ ! ଏହି ବିଷୟରେ କୌଣସି ସଂଶୟ ନାହିଁ ବୋଲି ଆମ୍ଭ ମନରେ ଏ ପ୍ରକାର ଧାରଣା ଅଛି । ତୁମ୍ଭେ ଉତ୍ତମ ପ୍ରଶ୍ନ କରିଅଛ, ତଦ୍‌ବିଷୟରେ ଆମ୍ଭେ କହୁଅଛୁଁ ଶ୍ରବଣ କର । ୩ । ଏହି ବିଷୟରେ ସଂଶୟ ସୁଗମ, କିନ୍ତୁ ନିର୍ଣ୍ଣୟ ଅତିଶୟ ଦୁର୍ଗମ । ଯହିଁରେ ସଂଶୟ ଦର୍ଶନ ହୁଏ, ତାହା ଦୃଷ୍ଟ, ଶ୍ରୁତ ଅଥବା ଅଚିନ୍ତ୍ୟ ।୪। ହେତୁବାଦୀ-ଗଣ ପ୍ରତ୍ୟକ୍ଷ କାରଣ ଦର୍ଶନ କରି ଆପଣାମାନଙ୍କୁ ପ୍ରାଜ୍ଞ ବୋଲି ଅଭିମାନ କରନ୍ତି, ସଂଶୟକୁ ସତ୍ୟ ଜ୍ଞାନ କରି "ନାହିଁ" ଏହି କଥା କହନ୍ତି । ୫ ।

ପଣ୍ଡିତାଭିମାନୀ ବାଳକଗଣ ଯେ ଏହା କହିଥାଆନ୍ତି ତାହା ଯୁକ୍ତି-ସିଦ୍ଧ ନୁହେ । ପକ୍ଷାନ୍ତରେ କେବଳ ଗୋଟିଏ କାରଣ ହୁଏ, ଏହି କଥା ଯଦି ବିବେଚନା କର, ଦୀର୍ଘକାଳ ଅନଳସ ଓ ତନ୍ମନସ୍କ ହେଲେ ତାହା ବୁଝି ପାରିବ । ହେ ଭାରତ ! ଅନେକବିଧ ପ୍ରାଣ ଯାତ୍ରା ଅଛି । ଏହି କଥା ଯେ କଳ୍ପନା କରନ୍ତି, ସେହି ତତ୍ପର ବ୍ୟକ୍ତି ଏହା ଦର୍ଶନ କରି-ପାରନ୍ତି । ଅନ୍ୟ ବ୍ୟକ୍ତିମାନେ ଦର୍ଶନ କରିପାରନ୍ତି ନାହିଁ । ହେତୁସମୂହର ଅନ୍ତ ଲାଭ କଲେ ଲୋକଙ୍କ ଅନ୍ତଃକରଣରେ ବିପୁଳ ଉତ୍ତମଜ୍ଞାନ ଜ୍ୟୋତିଃ-

ସମୂହ ମହତ୍ତ୍ୱପ୍ରାପ୍ତ ହୁଏ । ହେ ରାଜନ୍ ! ହେତୁସମୂହର ଜ୍ଞାନ କଦାପି ଜ୍ଞାନ ନୁହେ । ବାକ୍ୟଦ୍ୱାରା ଅଗ୍ରାହ୍ୟ ଓ ଅନବଦ୍ଧ ବିଷୟ ପରିବର୍ଜନ କରିବାର ବିଧେୟ । ୯ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ପ୍ରତ୍ୟକ୍ଷ ଆଗମ ଓ ବହୁବିଧ ଶିଷ୍ଟାଚାର ଏହି ତିନମଧ୍ୟରେ କିଏ ପ୍ରମାଣ ? ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୧୦ ।

ଭୀଷ୍ମ କହିଲେ, ହେ ଯୁଧିଷ୍ଠିର ! ବଳବାନ୍ ଦୁରାତ୍ମାମାନଙ୍କ ଦୌରାତ୍ମ୍ୟରେ ଧର୍ମ ହ୍ରିୟମାଣ ହେଲେ ତେତେବେଳେ ଯଦି ଯତ୍ନସହକାରେ ତାହାର ମର୍ଯ୍ୟାଦା ରକ୍ଷା କରାଯାଏ, ତାହା କାଳସହକାରରେ ନଷ୍ଟପ୍ରାୟ ଭିନ୍ନ ହୋଇଯାଏ । ଏହି ସମୟରେ ଯେଉଁପରି ତୃଣଦ୍ୱାରା କୂପ ସମାଛନ୍ନ ହୁଏ, ସେହିପରି ଅଧର୍ମଦ୍ୱାରା ଧର୍ମ ସମାଛନ୍ନ ହୋଇଅଛି । ସେହି କାରଣରୁ ଚରିତ ବିଭିନ୍ନ ହୋଇଅଛି ଶ୍ରବଣ କର । ୧୨ । ଯେଉଁମାନେ ଶିଷ୍ଟାଚାରବିହୀନ, ଶ୍ରୁତିତ୍ୟାଗପରାୟଣ, ଧର୍ମବିଦ୍ୱେଷୀ ମନ୍ଦ ବୋଲି କଥିତ ହୁଅନ୍ତି ଏବଂ ଶିଷ୍ଟାଚାର ଭେଦ କରନ୍ତି, ତାଦୃଶ ପ୍ରତ୍ୟକ୍ଷାନୁମାନାଚାର ବ୍ୟକ୍ତିମାନଙ୍କଠାରେ ସଂଶୟ ଥାଏ । ୧୩ । ଯେଉଁମାନେ ସାଧୁଗଣଙ୍କ ନିକଟରେ ତୃପ୍ତିଲାଭ କରିଅଛନ୍ତି, ଯେଉଁମାନଙ୍କ ବୁଦ୍ଧି ଶାସ୍ତ୍ର ଆଲୋଚନା-ଦ୍ୱାରା ବିଶୁଦ୍ଧ ହୋଇଅଛି ଏବଂ ଯେଉଁମାନେ ସନ୍ତୁଷ୍ଟ, ସେହିମାନେ ଶ୍ରେଷ୍ଠ ପ୍ରମାଣ; ସେହିମାନଙ୍କୁ ଉପାସନା କର ଏବଂ ପ୍ରଶ୍ନ କର । ୧୪ । ଲୋଭ-ମୋହର ଅନୁଗତ କାମ ଓ ଅର୍ଥକୁ ପଶ୍ଚାତ୍ କରି ଧର୍ମପରାୟଣ ହୋଇ ସେହିମାନଙ୍କୁ ଉପାସନା କର ଏବଂ ଧର୍ମ ସଂଶୟ ପ୍ରଶ୍ନ କର । ୧୫ । ଏହି ସମସ୍ତ ମହାତ୍ମାମାନଙ୍କ ଚରିତ କଦାପି ଦୂଷିତ ହୁଏ ନାହିଁ ଏବଂ ସେମାନେ ଯଜ୍ଞ ଓ ବେଦାଧ୍ୟୟନକୁ କଦାପି ପରିତ୍ୟାଗ କରନ୍ତି ନାହିଁ । ପ୍ରତ୍ୟକ୍ଷଦୃଷ୍ଟ ଚରିତ, ଶୌଚାଦିଆଚାର ଓ ବେଦ ଏହି ତିନିଟି ଏକତ୍ର ମିଳିତ ହେଲେ ଏକମାତ୍ର ଧର୍ମ ହୁଏ । ସେହି ଧର୍ମ ମାନନୀୟ । ୧୬ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ଆମ୍ଭେ ସଂଶୟରୂପ ଦୁସ୍ତର ସାଗରରେ ନିପତିତ ହୋଇ ତାହା ପାର ହେବାକୁ ପଥ ଦେଖୁନାହୁଁ । ଆମ୍ଭ ବୁଦ୍ଧି ସଂଶୟରେ ବିମୁଗ୍ଧ ହୋଇଅଛି । ବେଦ, ପ୍ରତ୍ୟକ୍ଷଦୃଷ୍ଟ ଚରିତ ଏବଂ ଆଚାର ଏହି ତିନହେଁ ଯଦି ଧର୍ମର ପ୍ରମାଣ ହେଲେ, ତେବେ ଧର୍ମ ମଧ୍ୟ ତିନପ୍ରକାର ବୋଲି ସ୍ୱୀକାର କରିବାକୁ ହେବ । ଏମାନଙ୍କର ପୃଥକ୍ କରି ଲଭ୍ୟ ହେଉଅଛି । ପ୍ରମାଣତ୍ରୟଦ୍ୱାରା ପ୍ରତିପାଦ୍ୟ ପ୍ରମେୟ ଧର୍ମ କେଉଁ ପ୍ରକାରରେ ଏକ ହୋଇପାରିବ ? ୧୮ ।

ଭୀଷ୍ମ କହିଲେ ହେ ଧର୍ମରାଜ ! ଧର୍ମ ଏକମାତ୍ର ଏହି ତିନଟିହେଁ ତାହାର ପ୍ରମାଣ । ବଳବାନ୍ ଦୁରାତ୍ମାଗଣ କର୍ତ୍ତୃକ କ୍ଷୁଦ୍ରପ୍ରମାଣ ଧର୍ମ ସମ୍ବନ୍ଧରେ ଯଦି ତୁମ୍ଭେ ଏପରି ବିବେଚନା କର, ସେ ବିଷୟରେ ଧର୍ମର ବିସ୍ତରଣା ତିନିପ୍ରକାର, ପ୍ରମାଣତ୍ରୟ ସମ୍ବାଦ ଦ୍ୱାରା ଏକମାତ୍ର ଧର୍ମ ପରୀକ୍ଷଣୀୟ । ଧର୍ମର ଦର୍ଶନ ତ୍ରିବିଧ ହେଲେ ସୁଦ୍ଧା ଧର୍ମ ଏକ, ପ୍ରମାଣତ୍ରୟ ପୃଥକ୍ ପୃଥକ୍ ରୂପେ ଧର୍ମର ପ୍ରତିପାଦକ ହୁଅନ୍ତି ନାହିଁ । ତିନିହେଁ ମିଳିତ ହେଲେ ଏକମାତ୍ର ଧର୍ମ ହୁଏ । ପ୍ରମାଣତ୍ରୟର ଯେଉଁ ପଥ କଥିତ ହୋଇଅଛି ତାହା ତଦ୍‌ବତ୍ ଆଚରଣ କର । ଧର୍ମ ବିଷୟରେ ତର୍କ କରି ପ୍ରଶ୍ନ କରିବାର ଉଚିତ ନୁହେଁ । ୨୧ । ହେ ଭରତଶ୍ରେଷ୍ଠ ! ଏ ବିଷୟରେ ତୁମ୍ଭର ସର୍ବଦା ସଂଶୟ ନ ହେଉ, ଅନ୍ଧ ଓ ଜଡ଼ ସଦୃଶ ଆଶଙ୍କାବିଶିଷ୍ଟ ହୋଇ ଯାହା କହୁଅଛି ତାହା ଆଚରଣ କର । ୨୨ ।

ହେ ଅଜାତଶତ୍ରୋ ! ଅହିଂସା, ସତ୍ୟ, କ୍ରୋଧପରିହାର ଏବଂ ଦାନ ଏହି ଚତୁଷ୍ଟୟ ସନାତନ ଧର୍ମ, ଅତଏବ ତୁମ୍ଭେ ଏହି ସମସ୍ତଙ୍କୁ ସେବା କର । ୨୩ । ବ୍ରାହ୍ମଣମାନଙ୍କ ପ୍ରତି ପିତୃପିତାମହୋଚିତ ଯେଉଁ ବୃତ୍ତି ଅଛି, ତାହାର ଅନୁସରଣ କର । କାରଣ ସେମାନେ ଧର୍ମର ଉପଦେଶକ । ୨୪ । ଯେଉଁ ଅଜ୍ଞାନଜନ ଅପ୍ରମାଣକୁ ପ୍ରମାଣ କରନ୍ତି, ତାହା କଦାପି ପ୍ରମାଣ ହୁଏ ନାହିଁ, କେବଳ ବିଷାଦଜନକ ହୁଏ । ୨୫ । ବ୍ରାହ୍ମଣଗଣଙ୍କୁ ସମ୍ମାନ ଓ ବହୁ ସମାଦର ପୂର୍ବକ ସେବା କର । ବ୍ରାହ୍ମଣଗଣଙ୍କଠାରେ ଏହି ସମସ୍ତ ଲୋକ ପ୍ରତିଷ୍ଠିତ ହୋଇଅଛି । ସେମାନଙ୍କୁ ଏହିପରି ଜ୍ଞାନ କର । ୨୬ ।

ଯୁଧିଷ୍ଠିର କହିଲେ, ଯେଉଁମାନେ ଧର୍ମପ୍ରତି ଅସୂୟା କରନ୍ତି ଏବଂ ଯେଉଁମାନେ ଧର୍ମର ସେବା କରନ୍ତି ତାଦୃଶ ଜନଗଣ କେଉଁ ସ୍ଥାନକୁ ଗମନ କରନ୍ତି ଆପଣ ଆମ୍ଭ ନିକଟରେ କୀର୍ତ୍ତନ କରନ୍ତୁ । ୨୭ ।

ଭୀଷ୍ମ କହିଲେ, ଯେଉଁମାନଙ୍କ ଚିତ୍ତ ରଜୋଗୁଣ ଓ ତମୋଗୁଣଦ୍ୱାରା ଆଚ୍ଛନ୍ନ ହୋଇଅଛି, ସେହି ଧର୍ମବିଦ୍ୱେଷୀ ଜନଗଣ ନରକକୁ ଗମନ କରନ୍ତି । ୨୮ । ମହାରାଜ ! ଯେଉଁମାନେ ସର୍ବତୋଭାବେ ଧର୍ମର ଉପାସନା କରନ୍ତି ସେହି ସତ୍ୟପରାୟଣ ଓ ସରଳହୃଦୟ ବ୍ୟକ୍ତିଗଣ ସ୍ୱର୍ଗଭୋଗ କରନ୍ତି । ୨୯ । ଆଚାର୍ଯ୍ୟଙ୍କର ଉପାସନା ହେତୁରୁ ଧର୍ମ ସେମାନଙ୍କ ଗତି ହୁଅନ୍ତି; ଯେଉଁ-ମାନେ ଧର୍ମଙ୍କ ଉପାସନା କରନ୍ତି ସେହିମାନେ ଦେବଲୋକକୁ ପ୍ରାପ୍ତ ହୁଅନ୍ତି । ୩୦ । ନରଗଣ ଅଥବା ଦେବଗଣ ଲୋଭଦ୍ୱେଷବିବର୍ଜିତ ହୋଇ ଶରୀରକୁ ଉପତାପ ଦେଇ ଧର୍ମଦ୍ୱାରା ସୁଖଲାଭ କରନ୍ତି । ୩୧ । ବ୍ରହ୍ମାଙ୍କର

ପ୍ରଧାନ ପୁଣ୍ୟ ବ୍ରାହ୍ମଣମାନେ ଧର୍ମ ସ୍ୱରୂପ ଅଟନ୍ତି । ଭୋକ୍ତାର ମନ ଯେଉଁପରି ପକ୍ୱଫଳ ଭୋଗ କରେ ତଦ୍‌ବତ୍ ଧାର୍ମିକଗଣ ଧର୍ମଫଳ ଭୋଗ ନିମିତ୍ତ ସେମାନଙ୍କୁ ଉପାସନା କରନ୍ତି । ୩୨ ।

ଯୁଧିଷ୍ଠିର କହିଲେ, ହେ ପିତାମହ ! ଅସାଧୁଗଣଙ୍କ ଲକ୍ଷଣ କୀଦୃଶ ଅଟେ ? ସାଧୁଗଣ କେଉଁ କାର୍ଯ୍ୟ କରନ୍ତି ? ସାଧୁ ଓ ଅସାଧୁଗଣ କୀଦୃଶ ଅଟନ୍ତି ? ଆପଣ ତାହା ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୩୩ । ଭୀଷ୍ମ କହିଲେ, ଅସାଧୁଗଣ ଦୁରାଚାର, ଦୁର୍ଦ୍ଧର୍ଷ ଓ ଦୁର୍ମୁଖ, ସାଧୁଗଣ ଶୀଳ-ସମ୍ପନ୍ନ ଏବଂ ଶିଷ୍ଟାଚାରର ଲକ୍ଷଣ ସ୍ୱରୂପ । ୩୪ । ହେ ରାଜେନ୍ଦ୍ର ! ଧାର୍ମିକ ନରଗଣ ରାଜମାର୍ଗରେ, ଗୋଗଣଙ୍କ ମଧ୍ୟରେ ଏବଂ ଧାନ୍ୟ ମଧ୍ୟରେ ମୂତ୍ର ଓ ପୁରୀଷ ତ୍ୟାଗ କରନ୍ତି ନାହିଁ । ୩୫ । ସାଧୁଗଣ ଦେବ, ପିତୃ, ଭୂତ, ଅତିଥି ଓ କୁଟୁମ୍ବ ଏହି ପାଞ୍ଚ ବ୍ୟକ୍ତିଙ୍କୁ ଅନ୍ନଦାନ କରି ସ୍ୱୟଂ ଶେଷାନ୍ନ ଭୋଜନ କରନ୍ତି । ସେମାନେ ଭୋଜନ କରୁଥିବା ସମୟରେ ଜଳ୍ପନା କରନ୍ତି ନାହିଁ, ଆର୍ଦ୍ର ପାଣି ହୋଇ ନିଦ୍ରା ଯାଆନ୍ତି ନାହିଁ । ୩୬ । ଯେଉଁମାନେ ସୂର୍ଯ୍ୟ, ବୃଷଭ, ଦେବତା, ଗୋଷ୍ଠ, ଚତୁଷ୍ପଥ, ବ୍ରାହ୍ମଣ, ଧାର୍ମିକ, ବୃଦ୍ଧବ୍ୟକ୍ତିଙ୍କୁ ପ୍ରଦକ୍ଷିଣ କରନ୍ତି (୩୭), ଯେଉଁମାନେ ବୃଦ୍ଧ, ଭାରାକ୍ରାନ୍ତ, ସ୍ତ୍ରୀଗଣ, ସର୍ପ ଅଥବା ବହୁଗ୍ରାମାଧିପତି, ବ୍ରାହ୍ମଣଗଣ, ଗୋଗଣ ଓ ଭୂପାଳଗଣଙ୍କୁ ପଥ ପ୍ରଦାନ କରନ୍ତି, ସେହିମାନେ ସାଧୁ । ୩୮ । ସମସ୍ତ ଅତିଥି, ପ୍ରେଷ୍ୟ, ସ୍ୱଜନ ଓ ଶରଣାଗତ ବ୍ୟକ୍ତିଗଣଙ୍କ ପ୍ରତିପାଳନ ଓ ସ୍ୱାଗତ କରିବାର ବିଧେୟ । ୩୯ ।

ନରଗଣଙ୍କର ସାୟଂକାଳ ଓ ପ୍ରାତଃକାଳରେ ଭୋଜନ କରିବାର ବିଧି ଦେବନିର୍ମିତ ଅଟେ, ମଧ୍ୟରେ ଭୋଜନ କରିବାର ବିଧି ନାହିଁ । ସେହି ଉଭୟ ସମୟରେ ଆହାର କଲେ ଉପବାସ କରିବାର ହୁଏ । ୪୦ । ହୋମକାଳରେ ଅଗ୍ନି ଯେଉଁପରି ଆଜ୍ୟ ପାତ୍ରର ଅପେକ୍ଷା କରନ୍ତି, ତଦ୍‌ବତ୍ ସ୍ତ୍ରୀଜାତି ଋତୁକାଳ ଉପସ୍ଥିତ ହେଲେ ପୁରୁଷସଂସର୍ଗର ପ୍ରତ୍ୟାଶା କରି ଥାଆନ୍ତି, ଅତଏବ ଋତୁକାଳରେ ସ୍ତ୍ରୀ ସଂସର୍ଗ କରିବାର ବିଧେୟ । ୪୧ । ଯେ ହେଁତୁକାଳଭିନ୍ନ ଅନ୍ୟ ସମୟରେ ସ୍ତ୍ରୀସଂଗ ନ କରନ୍ତି ତାହା ତାହାଙ୍କର ବ୍ରହ୍ମଚର୍ଯ୍ୟରୂପେ ସ୍ମୃତ ହୁଏ, ଅର୍ଥାତ୍ ସତ୍ୟବାକ୍ୟ, ଅମୃତ, ବ୍ରାହ୍ମଣ ଓ ଗୋଗଣ ଏହି ନିତ୍ୟ ସମାନ ଅଟନ୍ତି । ୪୨ । ଅତଏବ ବ୍ରାହ୍ମଣ ଓ ଗୋଗଣଙ୍କୁ ସର୍ବଦା ଯଥାବିଧିରେ ପୂଜା କରିବ । ବେଦମନ୍ତ୍ରଦ୍ୱାରା ସଂସ୍କୃତ ମାଂସ ଭୋଜନ କଲେ ଦୋଷ ହୁଏ ନାହିଁ । ପୃଷ୍ଠ ମାଂସ,

ବୃଥା ମାଂସ ଓ ପୁତ୍ରମାଂସ ଏହି ତିନହେଁ ସମାନ ।୪୩। ସ୍ୱଦେଶରେ ଅଥବା ପରଦେଶରେ ଅତିଥିଙ୍କୁ ଉପବାସୀ କରି ରଖିବ ନାହିଁ । ଅଧ୍ୟୟନ କର୍ମ ସମାପନ ଉତ୍ତାରେ ଗୁରୁଗଣଙ୍କୁ ଦକ୍ଷିଣା ଦାନ କରିବାର ଉଚିତ ଅଟେ । ୪୪। ଗୁରୁତର ବ୍ୟକ୍ତିଗଣଙ୍କୁ ଅଭିବାଦନ କରିବ, ଗୁରୁଗଣଙ୍କ ପୂଜା କଲେ ପରମାୟୁ, ଯଶ ଓ ଶ୍ରୀବୃଦ୍ଧି ହୁଏ । ୪୫ ।

ବୃଦ୍ଧଗଣଙ୍କୁ କଦାପି ନିନ୍ଦା କରିବ ନାହିଁ, ଏବଂ କୌଣସି କାର୍ଯ୍ୟରେ ପ୍ରେରଣ କରିବ ନାହିଁ । ଗୁରୁତର ବ୍ୟକ୍ତି ଦଣ୍ଡାୟମାନ ଥିଲେ ଉପବିଷ୍ଟ ହେବ ନାହିଁ, ଏହିପରି ଆଚରଣ କଲେ ଆୟୁ କ୍ଷୟ ହୁଏ ନାହିଁ । ୪୬ । ବିବସନା ସ୍ତ୍ରୀ ଓ ବିବସ୍ତ୍ର ପୁରୁଷଙ୍କୁ ନିରୀକ୍ଷଣ କରିବ ନାହିଁ । ସର୍ବଦା ଗୁପ୍ତ ଭାବରେ ମୈଥୁନ ଓ ଆହାର କରିବ ।୪୭। ଗୁରୁଗଣ ତୀର୍ଥସମୂହର ତୀର୍ଥ-ସ୍ୱରୂପ, ହୃଦୟ ସମସ୍ତ ପବିତ୍ର ପଦାର୍ଥ ମଧ୍ୟରେ ଅତି ପବିତ୍ର, ଜ୍ଞାନ ଇନ୍ଦ୍ରିୟବୃନ୍ଦ ମଧ୍ୟରେ ପରମ ଶ୍ରେଷ୍ଠ, ସନ୍ତୋଷ ପରମ ସୁଖ । ୪୮ । ସାୟଂକାଳ ଓ ପ୍ରାତଃକାଳରେ ବୃଦ୍ଧଗଣଙ୍କ ପୁଷ୍କଳବାକ୍ୟସମୂହ ଶ୍ରବଣ କରିବ, ସର୍ବଦା ବୃଦ୍ଧ ସେବା କଲେ ମନୁଷ୍ୟ ଜ୍ଞାନବାନ ହୁଅନ୍ତି । ୪୯ । ବେଦପାଠ ଓ ଭୋଜନ ସମୟରେ ଦକ୍ଷିଣହସ୍ତ ଉତ୍ତୋଳନ କରିବାର ବିଧେୟ ଅର୍ଥାତ୍ ଯଜ୍ଞୋପବୀତ ଧାରଣ କରିବାର ଉଚିତ । ବାକ୍ୟ, ମନ ଓ ଇନ୍ଦ୍ରିୟଗଣଙ୍କୁ ସର୍ବଦା ସଂଯତ କରିବ । ୫୦ ।

ସଂସ୍କୃତ ପାୟସ, ଯାବକ, କୃଶର ଓ ହବିର୍ଦ୍ଦ୍ରବ୍ୟ ଗ୍ରହଗଣଙ୍କ ପୂଜା ଏବଂ ପିତୃଦେବତଗଣଙ୍କ ଅଷ୍ଟକାଶ୍ରାଦ୍ଧ କରିବା ବିଧେୟ । କ୍ଷୌର କର୍ମରେ ମଙ୍ଗଳାଚରଣ, କ୍ଷୁତକାରୀଙ୍କୁ ଆଶୀର୍ବାଦ ଏବଂ ବ୍ୟାଧିଗ୍ରସ୍ତମାନଙ୍କୁ ଦୀର୍ଘାୟୁ ଭସ୍ତୁ ବୋଲି ଅଭିନନ୍ଦନ କରିବାର ଉଚିତ । ଆପଦଗ୍ରସ୍ତ ହୋଇ କଦାପି ମହତ୍ ଅର୍ଥାତ୍ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କୁ ତୁମ୍ଭେ ବୋଲି ବାକ୍ୟ ପ୍ରୟୋଗ କରିବା ଉଚିତ ନୁହେ । ବିଦ୍ୱାନ୍ ବ୍ୟକ୍ତିଗଣଙ୍କୁ ତୁମ୍ଭେ ବୋଲି ବାକ୍ୟରେ ପ୍ରୟୋଗ କଲେ ତାହା ତାହାଙ୍କର ମୃତ୍ୟୁ ସଦୃଶ ଅଟେ ।୫୩। କନିଷ୍ଠ, ସମାନ ଓ ଶିଷ୍ୟ-ଗଣଙ୍କୁ ବାକ୍ୟରେ ତୁମ୍ଭେ ବୋଲି ପ୍ରୟୋଗ କରିବା ଉଚିତ, ପାପାତ୍ମାମାନଙ୍କ ମନୋମଧ୍ୟରେ ସର୍ବଦା ପାପ କାର୍ଯ୍ୟର ଉଦୟ ହୋଇଥାଏ । ପାପାତ୍ମାମାନେ ଜ୍ଞାନପୂର୍ବକ ପାପକାର୍ଯ୍ୟର ଅନୁଷ୍ଠାନ କରନ୍ତି ଓ ସଜ୍ଜନ ସମାଜରେ ତାହା ଗୋପନ କରି ପରିଶେଷରେ ସ୍ୱୟଂ ବିନଷ୍ଟ ହୁଅନ୍ତି । ୫୫ ।

ଅସାଧୁ ଜନମାନେ "ଆମ୍ଭେ ଯେଉଁ କୁକାର୍ଯ୍ୟର ଅନୁଷ୍ଠାନ କଲୁ ଏହା ଦେବତା ଅଥବା ମନୁଷ୍ୟ କେହି ଜାଣନ୍ତି ନାହିଁ"--ଏହି କଥା ମନେ

କରି ସ୍ୱକୃତ ପାପକାର୍ଯ୍ୟ ଗୋପନ କରିବାକୁ ଯତ୍ନଶୀଳ ହୁଅନ୍ତି, କିନ୍ତୁ ଏହା ଅତ୍ୟନ୍ତ ଦୋଷାବହ । ପାପାଚରଣ କରି ଗୋପନ ରଖିଲେ ନିଶ୍ଚୟ ପାପବୃଦ୍ଧି ହୁଏ । ୫୬ । ଅତଏବ ପାପାନୁଷ୍ଠାନ କଲେ ତାହା ଗୋପନରେ ନ ରଖି ସାଧୁସମାଜରେ ପ୍ରକାଶ କରିବା ଉଚିତ । ସାଧୁମାନଙ୍କ ନିକଟରେ ପାପକାର୍ଯ୍ୟ ପ୍ରକାଶ କଲେ ସେମାନେ ସେହି ପାପର ଶାନ୍ତି-ବିଧାନ କରନ୍ତି । ବୃଦ୍ଧିଜୀବୀ ବ୍ୟକ୍ତି ଯେଉଁପରି ଧନ ଭେଦରେ ବୃଦ୍ଧି ପ୍ରତୀକ୍ଷା କରନ୍ତି ତଦ୍‌ବତ୍ ଧର୍ମଦ୍ୱାରା ଆଚ୍ଛନ୍ନ ପାପ, ଧର୍ମର ବୃଦ୍ଧି କରେ ।୫୭। ଅଧିକ ଧର୍ମଲାଭ ନିମିତ୍ତ ଅଳ୍ପ ପାପର ଅନୁଷ୍ଠାନ ଅନୁଚିତ ନୁହେ । ଲବଣ ଯେଉଁପରି ଜଳଦ୍ୱାରା ଆପ୍ଳୁତ ହେଲେ ବିଲୀନ ହୁଏ, ତଦ୍‌ବତ୍ ପ୍ରାୟଶ୍ଚିତ୍ତ-ଦ୍ୱାରା ହତପାପ ତତ୍‌କ୍ଷଣାତ୍ ବିନଷ୍ଟ ହୁଏ । ୫୮ । ଅତଏବ ପାପକର୍ମ ଗୋପନ କରିବାର ଉଚିତ ନୁହେ । ଗୋପନ କଲେ ତାହା ବୃଦ୍ଧିଲାଭ କରେ । ପାପ କରି ସାଧୁଗଣଙ୍କ ନିକଟରେ ପ୍ରକାଶ କରିବାର ଉଚିତ, ତାହାହେଲେ ସେହିମାନେ ପାପର ପ୍ରଶମନ କରନ୍ତି । ୫୯ ।

ଆଶାଦ୍ୱାରା ସଞ୍ଚିତ ଦ୍ରବ୍ୟ କାଳକ୍ରମରେ ଉପଭୁକ୍ତ ହୁଏ । ଯେ ସଞ୍ଚୟ କରିଥାଆନ୍ତି ତାହାଙ୍କର ବିୟୋଗ ହେଲେ ଅନ୍ୟ ବ୍ୟକ୍ତିମାନେ ତାହା ଭୋଗ କରନ୍ତି । ୬୦ । ପଣ୍ଡିତଗଣ କହନ୍ତି ମାନସଦ୍ୱାରା ଧର୍ମ ଅନୁଷ୍ଠାନ ହୁଏ, ଅତଏବ ସର୍ବଜୀବଗଣ ଧର୍ମକୁ ଆଶ୍ରୟ କରିଅଛନ୍ତି । ୬୧ । ଏକାକୀ ଧର୍ମ ଆଚରଣ କରିବ, ଧର୍ମଧ୍ୱଜୀ ହେବ ନାହିଁ, ଯେଉଁମାନେ ଧର୍ମ ଉପଭୋଗ କରନ୍ତି ସେମାନେ ଧର୍ମବଣିକ୍ ଅଟନ୍ତି । ୬୨ । ଦମ୍ଭ ନ କରି ଦେବଗଣଙ୍କୁ ଅର୍ଚ୍ଚନା କରିବ; ଅକପଟରେ ଗୁରୁସେବା କରିବ; ପରକାଳ ନିମିତ୍ତ ନିଧିସ୍ଥାପନ କରିବ ଏବଂ ସତ୍‌ପାତ୍ରରେ ଦାନ କରିବ । ୬୩ ।

---

## ଅଧ୍ୟାୟ—୧୭୩

ଯୁଧିଷ୍ଠିର କହିଲେ—ଭାଗ୍ୟବାନ୍ ମାନବ ଅତିଶୟ ବଳବାନ୍ ହୋଇ ସୁଦ୍ଧା ଧନବାନ୍ ହୁଅନ୍ତି ନାହିଁ । ଭାଗ୍ୟବାନ୍ ଜନ କୃଶ ଓ ବାଳକ ହେଲେ ସୁଦ୍ଧା ଅର୍ଥଲାଭ କରନ୍ତି । ୧ । ଅଲାଭ ସମୟରେ ପ୍ରଯତ୍ନ କଲେ ସୁଦ୍ଧା ଲାଭ ହୁଏ ନାହିଁ । ଲାଭ ସମୟରେ ବିନାଯତ୍ନରେ ମଧ୍ୟ ବିପୁଳ ଧନ ଲାଭ ହୁଏ । ୨ । ଯତ୍ନ କରି ନିଷ୍ଫଳ ହୋଇଅଛନ୍ତି ଏତାଦୃଶ

ଶତ ଶତ ଲୋକ ଦେଖାଯାଉ ଅଛନ୍ତି, ବହୁଲୋକ ଧନାଯତ୍ନରେ ବର୍ଦ୍ଧିତ ହେବାରୁ ଦୃଷ୍ଟ ହୁଅନ୍ତି ।୩। ଯଦି ଯତ୍ନ କଲେ ମନୁଷ୍ୟ ତତ୍‌କ୍ଷଣାତ୍ ଫଳଲାଭ କରନ୍ତେ, ତେବେ ବିଦ୍ୱାନ୍ ଜନ ବିଦ୍ୟାହୀନ ବ୍ୟକ୍ତିମାନଙ୍କର ନିକଟରେ ବୃତ୍ତିନିମିତ୍ତ ଆଶ୍ରିତ ହୁଅନ୍ତେ ନାହିଁ । ହେ ଭରତସତ୍ତମ ! ନରଗଣଙ୍କର ଅଲଭ୍ୟ ବସ୍ତୁ ଉପଲବ୍‌ଧ ହୁଏ ନାହିଁ ।୪। ଅନେକ ବ୍ୟକ୍ତି ପ୍ରଯତ୍ନ କରି ସୁଦ୍ଧା ନିଷ୍ଫଳ ହେବାର ଦେଖାଯାଏ । କେହି ଶତ ଶତ ମିଷ୍ଟକଥାଦ୍ୱାରା ଅର୍ଥ ପ୍ରାର୍ଥନା କରୁଅଛନ୍ତି, ଅପର ବ୍ୟକ୍ତିଗଣ ପ୍ରାର୍ଥନା ନ କରି ସୁଖୀ ହେଉଅଛନ୍ତି ।୫। ଅନେକ ବ୍ୟକ୍ତି ବାରମ୍ବାର ଦୁଷ୍କର୍ମ କରି ନିର୍ଦ୍ଧନ ହେଉଥିବାର ଦେଖାଯାଏ, ଅପର ନିର୍ଦ୍ଧନ ବ୍ୟକ୍ତିଗଣ ସ୍ୱକର୍ମରେ ଥାଇ ଧନବାନ୍ ହେଉଥିବାର ଦେଖାଯାଏ ।୬।

କେହି କେହି ବ୍ୟକ୍ତି ସମସ୍ତ ନୀତିଶାସ୍ତ୍ର ଅଧ୍ୟୟନ କରି ନୀତିଯୁକ୍ତ ହୁଅନ୍ତି ନାହିଁ । କେତେକ ବ୍ୟକ୍ତି ନୀତିଜ୍ଞ ନୋହି ସୁଦ୍ଧା କେଉଁ କାରଣରୁ ମନ୍ତ୍ରିତ୍ୱ ପ୍ରାପ୍ତ ହେଉଅଛନ୍ତି ।୭। ବିଦ୍ୱାନ୍ କି ବିଦ୍ୟାହୀନ, ଧନବାନ୍ କି ଦୁର୍ମତି ନର, ଯଦି ବିଦ୍ୟାକୁ ଆଶ୍ରୟ କରି ସୁଖୀ ହୁଅନ୍ତେ ତେବେ ବିଦ୍ୱାନ୍ ଜନ ବୃତ୍ତିନିମିତ୍ତ ବିଦ୍ୟାହୀନ ଜନଙ୍କୁ ଆଶ୍ରୟ କରନ୍ତେ ନାହିଁ । ମନୁଷ୍ୟ ଯେଉଁପରି ଜଳଲାଭଦ୍ୱାରା ପିପାସା ଶାନ୍ତ କରନ୍ତି, ତଦ୍‌ବତ୍ ଇଷ୍ଟାର୍ଥ ବ୍ୟକ୍ତି ବିଦ୍ୟାଦ୍ୱାରା ଅର୍ଥପିପାସା ଶାନ୍ତ କରନ୍ତି, ତଥାପି ବିଦ୍ୟାକୁ ପରିତ୍ୟାଗ କରନ୍ତି ନାହିଁ ।୯। ଯାହାଙ୍କର କାଳ ଉପସ୍ଥିତ ହୋଇ ନ ଥାଏ, ସେ ଶତ ଶତ ଶରଦ୍ୱାରା ବିଦ୍ଧ ହେଲେ ସୁଦ୍ଧା ମରନ୍ତି ନାହିଁ, ଯାହାଙ୍କର ମୃତ୍ୟୁ ସମୟ ଉପସ୍ଥିତ ହୋଇଥାଏ ସେ ତୃଣାଗ୍ରଦ୍ୱାରା ବିଦ୍ଧ ହୋଇ ପ୍ରାଣତ୍ୟାଗ କରନ୍ତି ।୧୦।

ଋଷି କହିଲେ, ଯେଉଁ ବ୍ୟକ୍ତି ବହୁ ଯତ୍ନଦ୍ୱାରା ଧନଲାଭ କରି ନ ପାରନ୍ତି, ତାହାଙ୍କର କଠୋର ତପୋନୁଷ୍ଠାନ କରିବାର ଉଚିତ । କାରଣ ବୀଜ ବପନ ନ କଲେ କଦାପି ଅଙ୍କୁର ଉତ୍ପନ୍ନ ହୁଏ ନାହିଁ ।୧୧। ପଣ୍ଡିତମାନେ କହନ୍ତି ମନୁଷ୍ୟ ଦାନଦ୍ୱାରା ଭୋଗବାନ୍ ହୁଅନ୍ତି, ବୃଦ୍ଧ-ସେବାଦ୍ୱାରା ମେଧାବୀ ହୁଅନ୍ତି ଏବଂ ଅହିଂସାଦ୍ୱାରା ଦୀର୍ଘାୟୁ ହୁଅନ୍ତି ।୧୨। ଅତଏବ ମନୁଷ୍ୟ ଦାନ କରିବେ, ପ୍ରାର୍ଥନା କରିବେ ନାହିଁ । ଧାର୍ମିକ ଲୋକମାନଙ୍କୁ ପୂଜା କରିବେ, ସୁବାକ୍ୟ କହିବେ, ପ୍ରିୟ କାର୍ଯ୍ୟ କରିବେ, ବିଶୁଦ୍ଧଚିତ୍ତ ଓ ସର୍ବପ୍ରାଣୀଙ୍କର ଅହିଂସକ ହେବେ ।୧୩। ଦଂଶକୀଟ ଓ

ପିପୀଲିକା ପ୍ରଭୃତି କ୍ଷୁଦ୍ର ପ୍ରାଣିଗଣ ସ୍ୱସ୍ୱକର୍ମରୂପ ସୁଖ ଦୁଃଖ ଭୋଗ କରନ୍ତି, ଅତଏବ ସମସ୍ତ ପ୍ରାଣିଗଣ କର୍ମର ଅଧୀନ, ଏହି କଥା ବିବେଚନା କରି ତୁମ୍ଭେ ସ୍ଥିର ହୁଅ । ୧୪ ।

---

## ଅଧ୍ୟାୟ—୧୬୪

ଭୀଷ୍ମ କହିଲେ—ହେ ଯୁଧିଷ୍ଠିର ! ଯେଉଁ ବ୍ୟକ୍ତି ସ୍ୱୟଂ ସତ୍‌କାର୍ଯ୍ୟ କରନ୍ତି, ଅଥବା ଅନ୍ୟକୁ ସତ୍‌କାର୍ଯ୍ୟର ଅନୁଷ୍ଠାନ କରାନ୍ତି, ତାହାଙ୍କର ଧନ-ଲାଭର ଆଶା ଥାଏ, ଯେଉଁ ବ୍ୟକ୍ତି ସ୍ୱୟଂ ଅସତ୍‌କାର୍ଯ୍ୟର ଅନୁଷ୍ଠାନ କରନ୍ତି ଅଥବା ଅନ୍ୟକୁ ଅସତ୍ କାର୍ଯ୍ୟର ଅନୁଷ୍ଠାନ କରାନ୍ତି, ସେ କଦାପି ଧର୍ମଲାଭ ବିଷୟରେ ପ୍ରତ୍ୟାଶା କରିବେ ନାହିଁ । କାଳ ସର୍ବଦା ନିଗ୍ରହ ଅନୁଗ୍ରହ ପ୍ରଦାନ କରି ଜୀବଗଣଙ୍କ ବୁଦ୍ଧି ମଧ୍ୟରେ ଆବିଷ୍ଟ ହୋଇ ଧର୍ମାଧର୍ମ ବିଷୟରେ ପ୍ରବର୍ତ୍ତକ ହୁଅନ୍ତି । ୨ । ଲୋକେ ଯେତେବେଳେ ଧର୍ମଫଳ ପ୍ରତ୍ୟକ୍ଷ କରି ଧର୍ମକୁ ଶ୍ରେୟସ୍କର ପଦାର୍ଥ ବୋଲି ଜାଣନ୍ତି ସେହି ସମୟରେ ତାହାଙ୍କର ଧର୍ମରେ ବିଶ୍ୱାସ ଜନ୍ମେ । ଅକୃତବୁଦ୍ଧି ବ୍ୟକ୍ତିମାନଙ୍କର ଧର୍ମଫଳରେ କଦାପି ବିଶ୍ୱାସ ଉତ୍ପନ୍ନ ହୁଏ ନାହିଁ । ଧର୍ମରେ ବିଶ୍ୱାସ କରିବାର ପ୍ରାଜ୍ଞ ବ୍ୟକ୍ତିଙ୍କ ଲକ୍ଷଣ, ଅତଏବ କର୍ତ୍ତବ୍ୟାକର୍ତ୍ତବ୍ୟବିଶାରଦ ବ୍ୟକ୍ତିମାନେ ଯତ୍ନ ସହକାରେ ସମୟାନୁରୂପ ଧର୍ମର ଅନୁଷ୍ଠାନ କରିବେ । ୪ ।

ଯେଉଁପରି ଐଶ୍ୱର୍ଯ୍ୟଶାଳୀ ନରଗଣ ରଜୋଗୁଣସମନ୍ୱିତ ସନ୍ତାନ ଉତ୍ପାଦନ କରନ୍ତି, ତଦ୍‌ବତ୍ ଇହଲୋକରେ ଧାର୍ମିକ ନରଗଣ ଆପେ ଆପଣାକୁ ସମ୍ମାନ କରନ୍ତି । ୫ । କାଳ କଦାପି ଦୁଃଖର ହେତୁ ସ୍ୱରୂପ ଅଧର୍ମ ଦାନ କରନ୍ତି ନାହିଁ, ଅତଏବ ଧର୍ମଶୀଳ ନର ଆପଣାକୁ ବିଶୁଦ୍ଧ ଜ୍ଞାନ କରିବେ । ୬ । ଅଧର୍ମ କାଳ କର୍ତ୍ତୃକ ପରିରକ୍ଷିତ ଧର୍ମକୁ ପ୍ରଜ୍ୱଳିତ ଅନଳସଦୃଶ ସ୍ପର୍ଶ କରିବାକୁ ସମର୍ଥ ହୁଏ ନାହିଁ ।୭। ଲୋକେ ଧର୍ମ ପ୍ରଭାବରେ ବିଶୁଦ୍ଧଚିତ୍ତ ଓ ନିଷ୍ପାପ ହୁଅନ୍ତି, କାରଣ ଧର୍ମ ବିଜୟପ୍ରଦ, ଧର୍ମ ତ୍ରିଭୁବନର ଆଲୋକପ୍ରଦ । ୮ ।

କେହି କାହାକୁ ବଳପୂର୍ବକ ଧର୍ମରେ ପ୍ରବର୍ତ୍ତାଇ ପାରନ୍ତି ନାହିଁ । ଅଧାର୍ମିକମାନେ ପଣ୍ଡିତଗଣ କର୍ତ୍ତୃକ ବଳପୂର୍ବକ ଉପଦିଷ୍ଟ ହେଲେ ଲୋକ

ଉପ୍ବଶତଃ ଛଳ ଧର୍ମର ଅନୁଷ୍ଠାନରେ ପ୍ରବୃତ୍ତ ହୁଅନ୍ତି । କୌଣସି ପ୍ରାଜ୍ଞ ବ୍ୟକ୍ତି ମନୁଷ୍ୟଙ୍କୁ ହସ୍ତରେ ଧାରଣ କରି ଧର୍ମ ବିଷୟରେ ପ୍ରବୃତ୍ତ କରାଇ ପାରନ୍ତି ନାହିଁ, କିନ୍ତୁ ସେ ଧର୍ମଭୟ ଓ ଲୋକଭୟ ଛଳରେ ତାହାଙ୍କୁ ଧର୍ମାନୁଷ୍ଠାନ ନିମିତ୍ତ ପ୍ରେରଣ କରନ୍ତି । ଅର୍ଥାତ୍ ମାନବ ପ୍ରାଜ୍ଞଜନ କର୍ତ୍ତୃକ ଲୋକଭୟାଦିଛଳରେ ପ୍ରେରିତ ହୋଇ ଧର୍ମାନୁଷ୍ଠାନରେ ପ୍ରବୃତ୍ତ ହୁଅନ୍ତି । ଆମ୍ଭେ ଶୂଦ୍ର, ଆମ୍ଭର ଆଶ୍ରମ ଚତୁଷ୍ଟୟର ଧର୍ମ ସେବନରେ ଅଧିକାର ନାହିଁ, ଏହି କଥା କହି ଅପର ବ୍ୟକ୍ତିମାନେ ଅଧିକାରାନୁସାରେ ଧର୍ମାନୁଷ୍ଠାନ କରନ୍ତି । ତାହା କିଛି ଛଳ ନୁହେଁ, ଅତଏବ ପ୍ରବର୍ତ୍ତନାସମୂହ ବ୍ୟର୍ଥ । ସଦ୍ଗୁଣଯୁକ୍ତ ପ୍ରାଣିଗଣଙ୍କର ପାଞ୍ଚଭୌତିକ ଶରୀର ପ୍ରତ୍ୟକ୍ଷ ହେଲେ ସୁଦ୍ଧା "ଏହା ପବିତ୍ର, ଏହା ଅପବିତ୍ର" ଏହିପରି ବିଶେଷ, ଏହିପରି ବ୍ୟବସ୍ଥାପନ ଲୋକଧର୍ମ ଏବଂ ଶାସ୍ତ୍ରୀୟ ଧର୍ମ ନିମିତ୍ତ କୃତ ହୋଇଅଛି ।

ପଶୁ ପାମର ପଣ୍ଡିତ ପ୍ରଭୃତି ପ୍ରାଣିଗଣ ଯେଉଁ ପ୍ରକାରରେ ପୂର୍ବ ନିର୍ଦ୍ଦିଷ୍ଟ ଏକତ୍ୱ ପ୍ରାପ୍ତ ହୁଅନ୍ତି, ଶାସ୍ତ୍ରରେ ବିସ୍ତାର ରୂପେ ସେହି ଧର୍ମ ନିୟମ ପ୍ରକଟିତ ହୋଇଅଛି, ଅତଏବ ଗୁଣଦୋଷବର୍ଣ୍ଣନୀୟର ବିଷୟ ଯଥାର୍ଥ ରୂପେ କୀର୍ତ୍ତନ କରୁଅଛୁ । ଲୋକ ଅନିତ୍ୟ, ଧର୍ମ ନିତ୍ୟ, ଏହା କେଉଁପରି ସଙ୍ଗତ ହେଲା ? ଲୋକ ଏବଂ ଧର୍ମର କାର୍ଯ୍ୟକାରଣ ଭାବ ହେତୁରୁ କାର୍ଯ୍ୟର ଅନିତ୍ୟତା ଯୁକ୍ତିଯୁକ୍ତ ହେଉନାହିଁ, ଅତଏବ ହେ ତାତ ! ସଂକଳ୍ପ ରୂପ କାଳ ଅର୍ଥାତ୍ ନିଷ୍କାମ ଧର୍ମ ନିତ୍ୟ, ତାହାର ଫଳ କଦାପି ସକାମ ହୋଇ ପାରେ ନାହିଁ, ଅତଏବ ଧର୍ମ ସନାତନ । ୧୩ । ସମସ୍ତ ସ୍ଥୂଳ ଦେହବିଶିଷ୍ଟ ଏବଂ ସଦ୍ଗୁଣଯୁକ୍ତ ପ୍ରାଣିଗଣଙ୍କ ସମ୍ବନ୍ଧରେ ଧର୍ମସମନ୍ୱିତ ସଂକଳ୍ପ କେବଳ ବିଶେଷ ରୂପେ ସ୍ୱୟଂ ଉପଦେଷ୍ଟା ହୁଏ । ଯେତେବେଳେ ଜୀବଗଣଙ୍କର ପୂର୍ବକୃତ କର୍ମ ତତ୍ତତ୍ ଜନ୍ମରେ ସୁଖ ଦୁଃଖ ସାଧନ ବିଷୟରେ ପ୍ରବର୍ତ୍ତକ ହୁଏ, ସେତେବେଳେ ଜୀବଗଣଙ୍କର ଧର୍ମ ସେବନ ବିଷୟରେ ଅର୍ଥାତ୍ କର୍ମଫଳ ଭୋଗ ବିଷୟରେ ଦୋଷ ନାହିଁ, କାରଣ ତିର୍ଯ୍ୟକ୍ ଯୋନିଗତ ଜୀବଗଣଙ୍କର ସତ୍ ଅସତ୍ ପ୍ରବୃତ୍ତି ବିଷୟ ପୂର୍ବ କର୍ମାନୁସାରେ ଲୋକେ ଗୁରୁ ହୁଅନ୍ତି । ଲୋକେ ବିଧି କର୍ତ୍ତୃକ ନିୟନ୍ତ୍ରିତ ହୋଇ ଲୋକ ଦୃଷ୍ଟାନ୍ତାନୁସାରେ ଉପଦେଷ୍ଟା ହୁଅନ୍ତି । ୧୫ ।

---

# ଅଧ୍ୟାୟ—୧୬୫

ବୈଶମ୍ପାୟନ କହିଲେ— କୁରୁକୁଳଧୁରନ୍ଧର ପାଣ୍ଡୁନନ୍ଦନ ଯୁଧିଷ୍ଠିର ହିତାକାଙ୍କ୍ଷୀ ହୋଇ ଶରଶଯ୍ୟାରେ ଶୟାନ ଭୀଷ୍ମଦେବଙ୍କୁ ପାପା-ପହାରକ ବିଷୟ ପଚାରିଲେ । ୧ । ଯୁଧିଷ୍ଠିର କହିଲେ, ହେ ପିତାମହ ! ଇହଲୋକରେ ପୁରୁଷଙ୍କର କେଉଁ ବିଷୟ ଶ୍ରେୟ ? କେଉଁ କାର୍ଯ୍ୟଦ୍ୱାରା ସୁଖଲାଭ କରନ୍ତି ? କେଉଁ କର୍ମଦ୍ୱାରା ନିଷ୍ପାପ ହୁଅନ୍ତି ଏବଂ କାଦୃଶ କର୍ମ କଳୁଷ ନାଶ କରେ ? ୨ । ବୈଶମ୍ପାୟନ କହିଲେ, ହେ ପୁରୁଷପ୍ରବର ! ତେତେବେଳେ ଶାନ୍ତନୁନନ୍ଦନ ଭୀଷ୍ମଦେବ ଶୁଶ୍ରୂଷମାଣ ଯୁଧିଷ୍ଠିରଙ୍କୁ ଯଥା-ନ୍ୟାୟରେ ଦେବବଂଶ କହିଲେ । ୩ ।

ଭୀଷ୍ମ କହିଲେ, ହେ ବତ୍ସ ! ଋଷିବଂଶ ସମନ୍ୱିତ ଏହି ଦୈବତ ବଂଶ ତ୍ରିସନ୍ଧ୍ୟାରେ ପଠିତ ହେଲେ ସମସ୍ତ ପାପ ବିନଷ୍ଟ ହୁଏ । ୪ । ପୁରୁଷ ଦିବସରେ ଇନ୍ଦ୍ରିୟଗଣଦ୍ୱାରା ଯେଉଁ ପାପାଚରଣ କରନ୍ତି ଏବଂ ବୁଦ୍ଧିପୂର୍ବକ ଅଥବା ଅବୁଦ୍ଧିପୂର୍ବକ ରଜନୀରେ ଓ ଉଭୟ ସନ୍ଧ୍ୟାରେ ଯେଉଁ ପାପାଚରଣ କରନ୍ତି, ସର୍ବଦା ଶୁଚି ହୋଇ ଏହି ଦୈବତବଂଶ କୀର୍ତ୍ତନ କଲେ, ସେହି ସମସ୍ତ ପାପରୁ ମୁକ୍ତ ହୁଅନ୍ତି । ଏହା ପାଠକଲେ ମାନବ କାଳକ୍ରମେ ଅନ୍ଧ ଓ ବଧିର ହୁଅନ୍ତି ନାହିଁ । ସର୍ବଦା ସ୍ୱସ୍ତିମାନ୍ ହୁଅନ୍ତି । ୬ । ତିର୍ଯ୍ୟକ୍ ଯୋନିକୁ, ନରକକୁ ଏବଂ ସଙ୍କର ଜାତିକୁ ଗମନ କରନ୍ତି ନାହିଁ । ତାହାଙ୍କର ମରଣରେ ଦୁଃଖଭୟ ଓ ମୋହ ହୁଏ ନାହିଁ । ୭ ।

ସୁରାସୁର ଗୁରୁ ସର୍ବଭୂତ ନମସ୍କୃତ, ଅଚିନ୍ତ୍ୟ ଅନିର୍ଦ୍ଦେଶ୍ୟ, ସର୍ବପ୍ରାଣ, ଅଯୋନିଜ, ପିତାମହ ଦେବ, ଜଗନ୍ନାଥ ବ୍ରହ୍ମଙ୍କ ପତ୍ନୀ, ସାବିତ୍ରୀ, ବେଦଭୂ, ଦେବକର୍ତ୍ତା ବିଷ୍ଣୁ ନାରାୟଣ, ପ୍ରଭୁ ଉମାପତି, ବିରୂପାକ୍ଷ, ସେନାପତି ସ୍କନ୍ଦ, ବିଶାଖ, ହୁତଭୁକ୍, ବାୟୁ , ପ୍ରଭାକର ଚନ୍ଦ୍ର ଓ ସୂର୍ଯ୍ୟ (୧୦), ଶଚୀପତି,ଶକ୍ରଦେବ, ଧୂମୋର୍ଣ୍ଣଙ୍କ ସହିତ ଯମ, ଗୌରୀଙ୍କ ସହିତ ବରୁଣ, ଋଦ୍ଧିଦେବୀଙ୍କ ସହିତ ଧନେଶ୍ୱର ସୌମ୍ୟା ଗୋ, ସୁରଭି ଦେବୀ, ମହର୍ଷି ବିଶ୍ରବା, ସଙ୍କଳ୍ପସାଗର, ଗଙ୍ଗା, ନଦୀଗଣ, ମରୁଦ୍‌ଗଣ (୧୨), ତପଃସିଦ୍ଧ ବାଲଖିଲ୍ୟଗଣ, କୃଷ୍ଣଦ୍ୱୈପାୟନ, ନାରଦ, ପର୍ବତ, ବିଶ୍ୱାବସୁ , ହାହା, ହୂହୂ (୧୩), ତୁମ୍ବୁରୁ, ଚିତ୍ରସେନ, ଦେବଦୂତ, ବିଶ୍ରୁତ, ମହାଭାଗା ଦେବକନ୍ୟାଗଣ, ଦିବ୍ୟ ଅପ୍‌ସରାଗଣ (୧୪), ଉର୍ବଶୀ, ମେନକା, ରମ୍ଭା,

ମିଶ୍ରକେଶୀ, ଅଳମ୍ବୁଷା, ବିଶ୍ୱାଚୀ, ଘୃତାଚୀ, ପଞ୍ଚଚୂଡ଼ା, ତିଲୋତ୍ତମା (୧୫), ଆଦିତ୍ୟଗଣ, ବସୁଗଣ, ରୁଦ୍ରଗଣ, ଅଶ୍ୱିନୀକୁମାର ଯୁଗଳ, ପିତୃଗଣ, ଧର୍ମ, ଶ୍ରୁତ, ତପ, ଦୀକ୍ଷା, ବ୍ୟବସାୟ ପିତାମହ (୧୬), ଶର୍ବରୀ, ଦିବସସମୂହ ମାରୀଚ, କଶ୍ୟପ, ଶୁକ୍ର, ବୃହସ୍ପତି, ମଙ୍ଗଳ, ରାହୁ, ବୁଧ, ଶନୈଶ୍ଚର (୧୭), ନକ୍ଷତ୍ରବୃନ୍ଦ, ଋତୁସମୂହ, ମାସ, ପକ୍ଷ, ସମ୍ବତ୍ସର, ବୈନତେୟ, ସମୁଦ୍ରସମୂହ, କଦ୍ରୁଜ, ପନ୍ନଗଗଣ (୧୮), ଶତଦ୍ରୁ, ବିପାଶା, ଚନ୍ଦ୍ରଭାଗା, ସରସ୍ୱତୀ, ସିନ୍ଧୁ, ଦେବିକା, ପ୍ରଭାସ, ପୁଷ୍କର (୧୯), ଗଙ୍ଗା, ମହାନଦୀ, ବେଣୀ, କାବେରୀ, ନର୍ମଦା, କୁଳଂପୁନା ବିଶଲ୍ୟ, କରତୋୟା, ଅମ୍ବୁବାହିନୀ, ଶରଯୂ, ଗଣ୍ଡକୀ, ମହାନଦଲୋହିତ, ତାମ୍ରାରୁଣା, ବେତ୍ରବତୀ, ପର୍ଣ୍ଣାଶା, ଗୌତମୀ (୨୧), ଗୋଦାବରୀ, ବେଣ୍ୟା, କୃଷ୍ଣ-ବେଗା, ଅଦ୍ରିଜା, ଦୃଷଦ୍ବତୀ, କାବେରୀ, ଚକ୍ଷୁ, ମନ୍ଦାକିନୀ, ପ୍ରୟାଗ, ପ୍ରଭାସ, ପବିତ୍ର ନୈମିଷାକ୍ଷେତ୍ର, ବିମଳ ସରୋବର, ଯାହା ସେହି ବିଶ୍ୱେଶ୍ୱରଙ୍କ ସ୍ଥାନ ପୁଣ୍ୟତୀର୍ଥ ମଧ୍ୟରେ ଉତ୍କୃଷ୍ଟ ରୂପେ ପ୍ରକୀର୍ତ୍ତିତ, କୁରୁକ୍ଷେତ୍ର, ସିନ୍ଧୂତ୍ତମ, ତପ, ଦାନ, ଜମ୍ବୁମାର୍ଗ, ହିରଣ୍ବତୀ, ବିତସ୍ତା, ପ୍ଲକ୍ଷବତୀ, ନଦୀ, ବେଦ, ସ୍ମୃତି, ବେଦବତୀ, ମାଳବା, ଅଶ୍ୱବତୀ (୨୫), ପବିତ୍ର ଭୂମିଭାଗସମୂହ, ପବିତ୍ର ଗଙ୍ଗାଦ୍ୱାର, ଋଷିକୁଲ୍ୟା, ସିନ୍ଧୁବହା, ପବିତ୍ରନଦୀ, ଚର୍ମଣ୍ୱତୀ, କୌଶିକୀ, ଯମୁନା, ଭୀମରଥୀନଦୀ, ମହାନଦୀ ବାହୁଦା (୨୭), ମାହେନ୍ଦ୍ରବାଣୀ, ତ୍ରିଦିବା, ନୀଳକା, ସରସ୍ୱତୀ, ନନ୍ଦା, ଅପରାନନ୍ଦା, ତୀର୍ଥ ମହାହ୍ରଦ (୨୮), ଗୟା, ଫଲ୍‌ଗୁତୀର୍ଥ, ସୁରଗଣ ପରିବୃତ ଧର୍ମାରଣ୍ୟ, ପୁଣ୍ୟଦେବନଦୀ, ବ୍ରହ୍ମନିର୍ମିତ ତ୍ରିଲୋକବିଖ୍ୟାତ ସର୍ବପାପହର କଲ୍ୟାଣକର ପୁଣ୍ୟ ସରୋବର, ଦିବ୍ୟୌଷଧି ସମନ୍ୱିତ ହିମାଳୟ ପର୍ବତ, ଧାତୁବୃନ୍ଦଦ୍ୱାରା ବିଚିତ୍ରାଙ୍ଗ ବିନ୍ଧ୍ୟ, ଔଷଧାନ୍ୱିତ ତୀର୍ଥବାନ୍ ମେରୁ, ମହେନ୍ଦ୍ର, ମଳୟ ରଜତାନ୍ୱିତ ଶ୍ୱେତ ପର୍ବତ (୩୧), ଶୃଙ୍ଗବାନ୍ ମନ୍ଦର; ନିଷଧ ଦର୍ଦ୍ଦୁର ଚିତ୍ରକୂଟ, ଅଞ୍ଜନାଭ ଗନ୍ଧମାର୍ଦନଗିରି (୩୨), ପବିତ୍ର ସୋମଗିରି, ତଦ୍‌ଭିନ୍ନ ଅନ୍ୟ ମହୀଧରବୃନ୍ଦ, ଦିକ୍‌ସମୂହ, ବିଦିକ୍‌ସମୂହ, କ୍ଷିତି, ସମସ୍ତ ମହୀରୁହଗଣ, ବିଶ୍ୱଦେବଗଣ, ଗଗନ, ନକ୍ଷତ୍ରଗଣ, ଗ୍ରହଗଣ ଏବଂ ଏହି ସମସ୍ତ ଦେବଗଣ ଯେଉଁମାନେ ଆମ୍ଭଦ୍ୱାରା କୀର୍ତ୍ତିତ ହେଲେ ଅଥବା ଅକୀର୍ତ୍ତିତ ହେଲେ ସେମାନେ ସମସ୍ତେ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ମାନବ ସେହି ସମସ୍ତ ନାମ କୀର୍ତ୍ତନ କରି ସମସ୍ତ ପାପରୁ ମୁକ୍ତ ହୁଅନ୍ତି । ଏହି ସମୁଦାୟରେ ସ୍ତୁତି ଏବଂ ଅଭିନନ୍ଦନ କଲେ ସକଳ ଭୟରୁ ମୁକ୍ତ ହୁଅନ୍ତି । ୩୫ । ଯେ ଦେବତା ସ୍ତବକୁ ପ୍ରଶଂସା କରନ୍ତି ସେ ସମସ୍ତ

ସଂକର ପାପରୁ ମୁକ୍ତ ହୁଅନ୍ତି । ଦେବତାଗଣଙ୍କ ଉତ୍ତରରେ ତପଃସିଦ୍ଧ ସମଧିକ ତପଃସମ୍ପନ୍ନ ସର୍ବପାପବିମୋଚନ, ବିଖ୍ୟାତ ବିପ୍ରଗଣଙ୍କ ନାମ କୀର୍ତ୍ତନ କରୁଅଛୁ । ୩୭ । ଯଥା—ଯବକ୍ରୀତ, ରୈଭ୍ୟ, କକ୍ଷୀବାର, ଔଶିଜ, ଭୃଗୁ, ଅଙ୍ଗିରା, କଣ୍ୱ, ଶକ୍ତିମାନ୍ ମେଧାତିଥି, ଗୁଣସମ୍ପନ୍ନ ବର୍ହି, ଏମାନେ ପୂର୍ବଦିଗକୁ ଆଶ୍ରୟ କରିଅଛନ୍ତି । ୩୮ । ଉନ୍ମୁଚୁ, ପ୍ରମୁଚୁ, ମୁମୁଚୁ, ବୀର୍ଯ୍ୟବାନ୍ ସ୍ୱସ୍ତ୍ୟାତ୍ରେୟ, ମିତ୍ରାବରୁଣୀଙ୍କ ପୁତ୍ର ପ୍ରତାପବାନ୍ ଅଗସ୍ତି, ଦୃଢ଼ାୟୁ ଓ ଊର୍ଦ୍ଧ୍ୱବାହୁ ନାମରେ ଖ୍ୟାତ ଋଷିବରଦ୍ୱୟ, ଏମାନେ ଦକ୍ଷିଣ ଦିଗକୁ ଆଶ୍ରୟ କରିଅଛନ୍ତି । ଯେଉଁମାନେ ପଶ୍ଚିମ ଦିଗକୁ ଆଶ୍ରୟ କରିଅଛନ୍ତି ସେମାନଙ୍କ ନାମ ଶ୍ରବଣ କର । ଯଥା—ଉଷଙ୍ଗୁ, ତାହାଙ୍କ ସହୋଦରଗଣ, ବୀର୍ଯ୍ୟବାନ୍ ପରିବ୍ୟାଧ (୪୧), ଦୀର୍ଘତମା ଋଷି, ଗୋତମ ଓ କଶ୍ୟପ, ମହର୍ଷି ଏକତ, ଦ୍ୱିତ ଓ ତ୍ରିତ (୪୨), ଅତ୍ରିଙ୍କ ପୁତ୍ର ଧର୍ମାତ୍ମା, ତଥା ଶକ୍ତି-ମାନ୍ ସାରସ୍ୱତ । ଯେଉଁମାନେ ଉତ୍ତର ଦିଗ ଆଶ୍ରୟ ପୂର୍ବକ ଅବସ୍ଥାନ କରିଅଛନ୍ତି, ସେମାନଙ୍କ ନାମ ଶ୍ରବଣ କର (୪୩), ଯଥା—ଅତ୍ରି, ବଶିଷ୍ଠ, ଶକ୍ତି, ବୀର୍ଯ୍ୟବାନ୍ ପାରାଶର୍ଯ୍ୟ, ବିଶ୍ୱାମିତ୍ର, ଭରଦ୍ୱାଜ, ଜମଦଗ୍ନି, ଋଚିକଙ୍କ ପୁତ୍ର ରାମ, ଔଦ୍ଦାଳକ ଋଷି, ଶ୍ୱେତକେତୁ, କୋହଳ, ବିପୁଳ, ଦେବଳ (୪୫), ଦେବଶର୍ମା, ଧୌମ୍ୟ, ହସ୍ତି କାଶ୍ୟପ, ଲୋମଶ, ନାଚିକେତ, ଲୋମହର୍ଷଣ, ଉଗ୍ରଶ୍ରବା, ଭାର୍ଗବ ଓ ଚ୍ୟବନ ଋଷି ।

ହେ ରାଜନ୍ ! ତୁମ୍ଭ ନିକଟରେ ସର୍ବପାପ ପ୍ରମୋଚନ ବେଦବେତ୍ତା ଏହି ମହର୍ଷିଗଣଙ୍କ ନାମ କୀର୍ତ୍ତନ କଲୁ । ଅତଃପର ରାଜର୍ଷିମାନଙ୍କ ନାମ କୀର୍ତ୍ତନ କରୁଅଛୁ ଶ୍ରବଣ କର । ନୃଗ, ଯଯାତି, ନହୁଷ, ଯଦୁ, ବୀର୍ଯ୍ୟବାନ୍ ପୁରୁ (୪୮), ସଗର, ପ୍ରତାପବାନ୍ ଦିଲୀପ, କୁଶାଶ୍ୱ, ଯୌବନାଶ୍ୱ, ଚିତ୍ରାଶ୍ୱ, ସତ୍ୟବାନ୍ (୪୯), ମହାଯଶା ଦୁଷ୍ମନ୍ତ, ମହାମନା ଚକ୍ରବର୍ତ୍ତୀ ଭରତ, ପବନ, ଜନକ, ନୃପତି ଦୃଷ୍ଟରଥ (୫୦), ନରବର ରଘୁ, ଭୂପତି ଦଶରଥ, ରାକ୍ଷସହନ୍ତା ବୀରବର ରାମଚନ୍ଦ୍ର, ଶଶବିନ୍ଦୁ, ଭଗୀରଥ, ହରିଶ୍ଚନ୍ଦ୍ର, ମରୁତ୍ତ, ନୃପତି ଦୃଢ଼ରଥ, ମହୋଦର, ଅଳର୍କ, ନରାଧିପ ଐଳ (୫୨), ନରଶ୍ରେଷ୍ଠ କରନ୍ଧମ, ନରାଧିପ କାଶ୍ମୀର, ଦକ୍ଷ, ଅମ୍ବରୀଶ, କୁକ୍‌କୁର, ମହାଯଶା-ରୈବତ, କୁରୁ ସମ୍ବରଣ, ସତ୍ୟବିକ୍ରମ ମାନ୍ଧାତା, ରାଜର୍ଷି ମୁଚୁକୁନ୍ଦ, ଜାହ୍ନବୀସେବିତ ଜହ୍ନୁ (୫୪), ଆଦିରାଜ ବେଣଙ୍କ ପୁତ୍ର ପୃଥୁ, ମିତ୍ରଭାନୁ, ପ୍ରିୟଙ୍କର, ରାଜା ତ୍ରସଦ୍‌ଦସ୍ୟୁ, ରାଜର୍ଷିସତ୍ତମ ଶ୍ୱେତ, ବିଖ୍ୟାତ ମହାଭିଷ,

ନମିନୃପତି, ଅଷ୍ଟକ, ଆୟୁ, ରାଜର୍ଷିଯୁଗ, ନରାଧିପ କକ୍ଷେୟୁ, ପ୍ରତର୍ଦନ, ଦିବୋଦାସ, କୋଶଳେଶ୍ୱର ସୁଦାସ, ଐଳରାଜର୍ଷି ନଳ, ପ୍ରଜାପତି ମନୁ (୫୭), ହବିଧ୍ର, ପୃଷଧ୍ର, ପ୍ରତାପ, ଶାନ୍ତନୁଅଜ, ପ୍ରାଚୀନ ବର୍ହି ମହାଯଶା ଇକ୍ଷ୍ୱାକୁ (୫୮), ନରପତି ଅନରଣ୍ୟ, ଜାନୁଜଙ୍ଘ ଏବଂ ରାଜର୍ଷି କକ୍ଷସେନ ଏହିମାନଙ୍କୁ ଏବଂ ଏତଦ୍‌ଭିନ୍ନ ଯେଉଁମାନେ କୀର୍ତ୍ତିତ ହେଲେ ସେମାନଙ୍କୁ ମଧ୍ୟ ପ୍ରାତଃକାଳରେ ଗାତ୍ରୋତ୍ଥାନ ପୂର୍ବକ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ସମୟରେ ଉଭୟ ସନ୍ଧ୍ୟାରେ ଶୁଣି ଓ ଅନୁକୂଳ ହୋଇ ଯେ ପାଠ କରନ୍ତି ସେ ଧର୍ମଫଳ ବାଞ୍ଛା ବ୍ୟକ୍ତିମାନେ ଭାଗୀ ହୁଅନ୍ତି । ୭୦ ।

ଦେବଗଣ, ଦେବର୍ଷିଗଣ ଓ ରାଜର୍ଷିଗଣଙ୍କୁ ସ୍ତୁତି କରି ଏହି ପ୍ରାର୍ଥନା କରିବେ ଯେ ଆମ୍ଭେ ଯେଉଁ ଯେଉଁ ମହାତ୍ମାମାନଙ୍କ ସ୍ତବ କଲୁ ସେହି ମହାତ୍ମାମାନେ ଆମ୍ଭଙ୍କୁ ପୁଷ୍ଟି, ଆୟୁ, ଯଶ ଓ ସ୍ୱର୍ଗ ପ୍ରଦାନ କରନ୍ତୁ । ୭୧ । ଆମ୍ଭର ବିଘ୍ନ ନ ହେଉ, ଶତ୍ରୁ ନ ହେଉ, ନିରନ୍ତର ଆମ୍ଭର ନିଶ୍ଚୟ ଜୟ ହେଉ ( ୭୨ ) ଏବଂ ପରଲୋକରେ ଶୁଭଗତି ହେଉ ।

---

## ଅଧ୍ୟାୟ—୧୬୭

ଜନମେଜୟ କହିଲେ—ହେ ବିପ୍ରବର ! କୁରୁକୁଳ ଧୂରନ୍ଧର, ପାଣ୍ଡବଗଣ ପ୍ରଣୀତ ଶରଶଯ୍ୟାଗତ ଭୀଷ୍ମଦେବ ଶୟନରେ ଶୟାନ ଥିବା ସମୟରେ ଆମ୍ଭର ପୂର୍ବପିତାମହ ମହାପ୍ରାଜ୍ଞ ଯୁଧିଷ୍ଠିର ସମସ୍ତ ଧର୍ମର ଆଗମ ଶ୍ରବଣ ପୂର୍ବକ ସମସ୍ତ ସଂଶୟର ବିଷୟ ବିଦିତ ହୋଇ ଏବଂ ସମସ୍ତ ଦାନର ବିଧି ଶ୍ରବଣ କରି ସମସ୍ତ ଧର୍ମାର୍ଥର ସଂଶୟ ଛେଦନ କଲାପରେ ଅନ୍ୟ ଯାହା କିଛି କରିଥିଲେ ତାହା ଆପଣ ଆମ୍ଭ ନିକଟରେ କୀର୍ତ୍ତନ କରିବା ହେଉନ୍ତୁ । ୩ । ବୈଶମ୍ପାୟନ କହିଲେ, ସେହି ସମସ୍ତ ରାଜମଣ୍ଡଳ ଚିତ୍ରପଟସଦୃଶ ମୁହୂର୍ତ୍ତ କାଳ ନିଶ୍ଚଳ ହେଲେ । ୪ ।

ଅନନ୍ତର ନୃପତିଗଣ ମୌନାବଲମ୍ବନ କଲାରୁ ସତ୍ୟବତୀସୁତ ବ୍ୟାସଦେବ ମୁହୂର୍ତ୍ତକ ସମୟ ଚିନ୍ତାକରି ତେତେବେଳେ ଶରଶଯ୍ୟାରେ ଶୟାନ ନରପତି ଗଙ୍ଗାନନ୍ଦନଙ୍କୁ ଏହି କଥା କହିଲେ, ହେ ରାଜନ୍ !

କୁରୁରାଜ ଯୁଧିଷ୍ଠିର, ଭ୍ରାତୃଗଣ ଓ ସମସ୍ତ ଅନୁଯାୟୀ ପାର୍ଥିବଗଣଙ୍କ ସହିତ ପ୍ରକୃତି ପ୍ରାପ୍ତ ହୋଇଅଛନ୍ତି । ୬ । ହେ ନରଶ୍ରେଷ୍ଠ ! ଯୁଧିଷ୍ଠିର ବୁଦ୍ଧିମାନ୍ କୃଷ୍ଣଙ୍କ ସହିତ ଆପଣଙ୍କୁ ଉପାସନା କରୁଅଛନ୍ତି, ଏବେବେଳେ ଆପଣ ଏହାଙ୍କୁ ନଗର ଗମନ ବିଷୟରେ ଅନୁମତି ପ୍ରଦାନ କରିବା ହେଉନ୍ତୁ ।୭। ଭଗବାନ୍ ବ୍ୟାସଦେବ ଏହିପରି କହିବାରୁ ପୃଥ୍ୱୀପତି ଗଙ୍ଗାନନ୍ଦନ ଭୀଷ୍ମ-ଦେବ ଅମାତ୍ୟ ସହିତ ଯୁଧିଷ୍ଠିରଙ୍କୁ ଅନୁମତି ପ୍ରଦାନ କଲେ । ୮ ।

ନୃପତି ଶାନ୍ତନୁତନୟ, ରାଜା ଯୁଧିଷ୍ଠିରଙ୍କୁ ମଧୁର ବାକ୍ୟରେ କହିଲେ, ହେ ରାଜନ୍ ! ତୁମ୍ଭେ ପୁର ମଧ୍ୟରେ ପ୍ରବେଶ କର, ତୁମ୍ଭର ମାନସିକ ବ୍ୟାଧି ବିନଷ୍ଟ ହେଉ । ୯ । ହେ ରାଜେନ୍ଦ୍ର ! ତୁମ୍ଭେ ଶ୍ରଦ୍ଧାଯୁକ୍ତ ଓ ଦାନ୍ତ ହୋଇ ଯଯାତିଙ୍କ ସଦୃଶ ବହୁଳ ଅନ୍ନ ସମ୍ପନ୍ନ ଆପ୍ତଦକ୍ଷିଣ ବିବିଧ ଯଜ୍ଞଦ୍ୱାରା ଦେବପୂଜା କର । ୧୦ । ହେ ପାର୍ଥ ! ତୁମ୍ଭେ କ୍ଷତ୍ରିୟ ଧର୍ମରେ ରତ ହୋଇ ପିତୃଗଣ ଓ ଦେବଗଣଙ୍କର ତୃପ୍ତି ବିଧାନ କର । ତାହା-ହେଲେ ତୁମ୍ଭେ ଶ୍ରେୟଯୁକ୍ତ ହେବ । ତୁମ୍ଭର ମାନସଜ୍ୱର ବିଗତ ହେଉ ।୧୧। ତୁମ୍ଭେ ପ୍ରଜାରଞ୍ଜନ କର । ପ୍ରକୃତିଗଣଙ୍କୁ ସର୍ବତୋଭାବରେ ସାନ୍ତ୍ୱନା କର ଏବଂ ସୁହୃଦ୍‌ଗଣଙ୍କୁ ଫଳସତ୍କାରଦ୍ୱାରା ଯଥାଯୋଗ୍ୟ ସମ୍ମାନନା କର । ୧୨ । ହେ ତାତଃ ! ବିହଙ୍ଗମଗଣ ଯେଉଁପରି ଚୈତ୍ୟସ୍ଥାନସ୍ଥିତ ଫଳବାନ୍ ବୃକ୍ଷକୁ ଆଶ୍ରୟ କରିଥାଆନ୍ତି, ତଦ୍‌ବତ୍ ମିତ୍ର ଓ ସୁହୃଦ୍‌ଗଣ ତୁମ୍ଭଙ୍କୁ ଅବଲମ୍ବନ କରି ଜୀବନଯାପନ କରନ୍ତୁ । ୧୩ । ହେ ରାଜନ୍ ! ତୁମ୍ଭେ ସଂପ୍ରତି, ସ୍ୱଚ୍ଛନ୍ଦରେ ହସ୍ତିନାକୁ ଗମନ କର, ଭାସ୍କରଦେବଙ୍କର ଉତ୍ତରାୟଣ ଆରମ୍ଭ ହେଲେ ଆମ୍ଭର ସମୟ ଉପସ୍ଥିତ ହେବ । ସେହି ସମୟରେ ତୁମ୍ଭେ ଆମ୍ଭ ନିକଟକୁ ଆଗମନ କରିବ । ୧୪ ।

କୁନ୍ତୀନନ୍ଦନ ଯୁଧିଷ୍ଠିର 'ତାହା କରିବି' ଏହା କହି ପିତାମହଙ୍କୁ ଅଭିବାଦନ ପୂର୍ବକ ସପରିବାରରେ ହସ୍ତିନାନଗରକୁ ପ୍ରୟାଣ କଲେ ।୧୫। ହେ କୁରୁଶ୍ରେଷ୍ଠ ମହାରାଜ ! ସେ ଧୃତରାଷ୍ଟ୍ର ଏବଂ ପତିବ୍ରତା ଗାନ୍ଧାରୀଙ୍କୁ ଅଗ୍ରରେ , କରି ଋଷିଗଣ, ଭ୍ରାତୃଗଣ, କେଶବପୁରବାସୀ ଜନପଦବାସୀ ସମସ୍ତ ଲୋକବୃନ୍ଦ ଏବଂ ମନ୍ତ୍ରୀଗଣଙ୍କ ସହିତ ହସ୍ତିନାପୁରରେ ପ୍ରବିଷ୍ଟ ହେଲେ । ୧୬ ।

---

# ଅଧ୍ୟାୟ—୧୬୭

କୁନ୍ତୀନନ୍ଦନ ନୃପତି ଯୁଧିଷ୍ଠିର ପୁରବାସୀ ଓ ଜନପଦବାସୀ ଜନଗଣଙ୍କୁ ଯଥାନ୍ୟାୟରେ ସମ୍ମାନ କରି ଗୃହଗମନ ବିଷୟରେ ଅନୁମତି ଦେଲେ । ୧ । ତେତେବେଳେ ପାଣ୍ଡୁନନ୍ଦନ ଯୁଧିଷ୍ଠିର ହତବୀର ଓ ହତେଶ୍ୱର ନାରୀଗଣଙ୍କୁ ପ୍ରଭୂତ ଅର୍ଥଦ୍ୱାରା ସାନ୍ତ୍ୱନା କଲେ । ସେହି ନରବର ମହାପ୍ରାଜ୍ଞ ଯୁଧିଷ୍ଠିର ରାଜ୍ୟଲାଭ ପୂର୍ବକ ସମସ୍ତ ପ୍ରଜାଗଣଙ୍କୁ ଆନୟନ ପୂର୍ବକ ଅଭିଷିକ୍ତ ହେଲେ । ଧର୍ମଭୃତ୍ ପ୍ରବର ଯୁଧିଷ୍ଠିର, ଶ୍ରୀମାନ୍ ଧୀମାନ୍ ପୁରୁଷଶ୍ରେଷ୍ଠ ବ୍ରାହ୍ମଣଗଣ, ସେନାପତିସମୂହ ଓ ନିଗମ ଶାସ୍ତ୍ରଜ୍ଞ ଜନଗଣଙ୍କଠାରୁ ଉତ୍କୃଷ୍ଟ ଆଶୀର୍ବାଦ ଗ୍ରହଣ ପୂର୍ବକ ନଗର । ମଧ୍ୟରେ ପଞ୍ଚାଶତ୍ ଶର୍ବରୀ ବାସକରି କୌରବ୍ୟ-ଅଗ୍ରଗଣ୍ୟ ଭୀଷ୍ମଦେବଙ୍କ ସମୟ ସ୍ମରଣ କଲେ । ୫ । ସେ ଯାଜକଗଣଙ୍କରେ ପରିବୃତ ହୋଇ ହସ୍ତିନାପୁରରୁ ନିର୍ଗତ ହେଲେ ।

ଉତ୍ତରାୟଣ ହୋଇଅଛି ଦେଖି ଭୀଷ୍ମଙ୍କ ମୃତ୍ୟୁକାଳ ଉପସ୍ଥିତ ହୋଇଥିବା ବିବେଚନା କରି ତଦୀୟ ସଂସ୍କାର ନିମିତ୍ତ ପ୍ରଥମତଃ ଘୃତ, ମାଲ୍ୟ, ଗନ୍ଧ, ପଟ୍ଟବସ୍ତ୍ର, ଅଗୁରୁ ପ୍ରଭୃତି ଚନ୍ଦନ, କାଳୀୟକ ଗନ୍ଧଦ୍ରବ୍ୟ, ମହାମୂଲ୍ୟ ମାଲ୍ୟ ଓ ବିବିଧ ରତ୍ନ ପ୍ରେରଣ ପୂର୍ବକ ଧୃତରାଷ୍ଟ୍ର, ଯଶସ୍ୱିନୀ ଗାନ୍ଧାରୀ, ମାତା ପୃଥା ଓ ଭ୍ରାତୃଗଣଙ୍କୁ ଅଗ୍ରରେ କରି ଜନାର୍ଦ୍ଦନ, ଧୀମାନ୍ ବିଦୁର, ଯୁଯୁତ୍ସୁ ଓ ଯୁଯୁଧାନଙ୍କ ସହିତ ରାଜୋପଯୁକ୍ତ ସୁମହତ୍ ପରିବାର କର୍ତ୍ତୃକ ପରିବୃତ ଓ ସ୍ତୂୟମାନ ହୋଇ ଭୀଷ୍ମଙ୍କ ସଂସ୍କାରକ ଅଗ୍ନିସମୂହର ଅନୁଗମନ କରି ଦେବରାଜଙ୍କ ସଦୃଶ ସେହି ନଗରରୁ ନିଷ୍କ୍ରାନ୍ତ ହେଲେ । ପରିଶେଷରେ ସେହି ମହାତେଜା ନୃପତି କୁରୁକ୍ଷେତ୍ରରେ ଭୀଷ୍ମଙ୍କ ସମୀପରେ ଉପନୀତ ହେଲେ । ୧୨ ।

ହେ ରାଜର୍ଷେ ! ତେତେବେଳେ ନୃପତି ପରାଶରପୁତ୍ର ଧୀମାନ୍ ବ୍ୟାସଦେବ, ନାରଦ, ଦେବଳ, ଅସିତ ଏବଂ ନାନାଦେଶରୁ ସମାଗତ ହତାବଶିଷ୍ଟ ଭୂପାଳଗଣ କର୍ତ୍ତୃକ ଉପାସ୍ୟମାନ ଓ ଚତୁର୍ଦ୍ଦିଗରେ ରକ୍ଷିଗଣକର୍ତ୍ତୃକ ରକ୍ଷ୍ୟମାଣ, ଶରଶଯ୍ୟାରେ ଶୟାନ, ମହାନୁଭବ ଭୀଷ୍ମଙ୍କୁ ଦର୍ଶନ କଲେ । ଅନନ୍ତର ଧର୍ମରାଜ ଭ୍ରାତୃଗଣଙ୍କ ସହିତ ରଥରୁ ଅବତୀର୍ଣ୍ଣ ହେଲେ

। ୧୫ । ଅରିନ୍ଦମ କୁରୁବର ପିତାମହଙ୍କୁ ଅଭିବାଦନ ଓ ଦ୍ୱୈପାୟନ ପ୍ରଭୃତି ଦ୍ୱିଜଗଣଙ୍କୁ ପ୍ରଣାମ କଲେ । ସେମାନେ ସମସ୍ତେ ତାହାଙ୍କୁ ଅଭିନନ୍ଦନ କଲେ । ୧୬ ।

ଧର୍ମରାଜ ଯୁଧିଷ୍ଠିର ବ୍ରହ୍ମସଦୃଶ ଋତ୍ୱିକଗଣ ଏବଂ ଭ୍ରାତୃଗଣଙ୍କ ସହିତ ଋଷିଗଣ ପରିବେଷ୍ଟିତ ଶରଶଯ୍ୟାରେ ଶୟାନ ନଦୀପୁତ୍ର ଭରତବର ଭୀଷ୍ମଙ୍କୁ କହିଲେ (୧୮), ହେ ନରନାଥ ! ଗଙ୍ଗାନନ୍ଦନ ! ଆମ୍ଭେ ଯୁଧିଷ୍ଠିର ଆପଣଙ୍କୁ ପ୍ରଣାମ କରୁଅଛୁ । ହେ ମହାବାହୋ ! ଆପଣ ଯଦି ଶ୍ରବଣ କରୁ-ଅଛନ୍ତି ତେବେ କହିବା ହେଉନ୍ତୁ । ଆମ୍ଭେ ଆପଣଙ୍କର କେଉଁ କାର୍ଯ୍ୟ କରିବୁ ? ୧୯ । ହେ ବିଭୋ ! ଆମ୍ଭେ ହବ୍ୟ ଅଗ୍ନି ଆଦାନପୂର୍ବକ ଆପଣଙ୍କ ସମୟରେ ଉପସ୍ଥିତ ହୋଇଅଛୁ । ଆଚାର୍ଯ୍ୟ, ବ୍ରାହ୍ମଣଗଣ, ଋତ୍ୱିକଗଣ, ଆମ୍ଭର ଭ୍ରାତୃଗଣ, ଆପଣଙ୍କ ପୁତ୍ର ମହାତେଜସ୍ୱୀ ଜନେଶ୍ୱର ଧୃତରାଷ୍ଟ୍ର ଓ ଅମାତ୍ୟ ସହ ବୀର୍ଯ୍ୟବାନ୍ ବାସୁଦେବ ଉପସ୍ଥିତ ହୋଇଅଛନ୍ତି । ୨୧ । ହତାବଶିଷ୍ଟ ନୃପତିଗଣ ଏବଂ କୁରୁଜାଙ୍ଗଲ ସମସ୍ତ ଲୋକ ଉପସ୍ଥିତ ହୋଇଅଛନ୍ତି । ଅତଏବ ହେ କୁରୁଶ୍ରେଷ୍ଠ ! ଆପଣ ନେତ୍ରଦ୍ୱୟ ଉନ୍ମୀଳନ ପୂର୍ବକ ସେମାନଙ୍କୁ ଅବଲୋକନ କରିବା ହେଉନ୍ତୁ । ୨୨ । ଏହି ସମୟରେ ଯାହା କର୍ତ୍ତବ୍ୟ, ତତ୍‌ସମୁଦାୟ ଆମ୍ଭେ ସମ୍ପାଦନ କରିବୁ ।୨୩।

ବୈଶମ୍ପାୟନ କହିଲେ, ଧୀମାନ୍ ଯୁଧିଷ୍ଠିର ଭୀଷ୍ମଙ୍କୁ ଏହିପରି କହିବାର ଶ୍ରବଣ କଲେ । ସମସ୍ତ ଭାରତଗଣ ତାହାଙ୍କୁ ପରିବେଷ୍ଟନ କରି-ଥିବାର ଦର୍ଶନ କଲେ । ୨୪ । ତଦନନ୍ତର ବଳବାନ୍ ବାଗ୍ମୀ ଭୀଷ୍ମଦେବ ବିପୁଳ ଭୁଜଦ୍ୱାରା ଯୁଧିଷ୍ଠିରଙ୍କ ହସ୍ତ ଧାରଣ ପୂର୍ବକ ଉଦ୍ୟତ ମେଘସଦୃଶ ଗମ୍ଭୀର ସ୍ୱରରେ କହିଲେ (୨୫), ହେ କୁନ୍ତୀପୁତ୍ର ଯୁଧିଷ୍ଠିର ! ଦୈବବଶତଃ ତୁମ୍ଭେ ଅମାତ୍ୟଗଣ ସହିତ ଉପସ୍ଥିତ ହୋଇଅଛ, ଭଗବାନ୍ ପ୍ରଭାକରଙ୍କର ଉତ୍ତରାୟଣ ଉପସ୍ଥିତ ହୋଇଅଛି । ୨୬ । ଆଜକୁ ଅଷ୍ଟପଞ୍ଚାଶତ୍ ରାତ୍ର ହେଲା ଆମ୍ଭେ ନିଶିତାଗ୍ର ଶରସମୂହରେ ଶୟନ କରିଅଛୁ । କିନ୍ତୁ ଜଣାଯାଏ ଯେ ଯେଉଁପରି ଶତବର୍ଷ ଗତ ହୋଇଅଛି । ୨୭ । ହେ ଯୁଧିଷ୍ଠିର ! ଏହି ଚାନ୍ଦ୍ରମାଘମାସ ଉପସ୍ଥିତ ହୋଇଅଛି । ଏ ଶୁକ୍ଳପକ୍ଷ ସମ୍ପ୍ରତି ଏହି ମାସର ତିନି ଭାଗ ଶେଷ ଅଛି । ଭୀଷ୍ମ ଧର୍ମପୁତ୍ର ଯୁଧିଷ୍ଠିରଙ୍କୁ ଏହିପରି କହି ଧୃତରାଷ୍ଟ୍ରଙ୍କୁ ଆମନ୍ତ୍ରଣ ପୂର୍ବକ ତତ୍କାଳର ଉଚିତ ବାକ୍ୟ କହିଲେ ।୨୯।

ଧୃଷ୍ଟ କହିଲେ, ହେ ରାଜନ୍ ! ତୁମ୍ଭେ ଧର୍ମଜ୍ଞ, ବିଷୟମାନଙ୍କର ସଂଶୟ ସବୁ ସୁନ୍ଦର ରୂପେ ନିର୍ଣ୍ଣୟ କରିଅଛ । ତୁମ୍ଭେ ବହୁ ଶାସ୍ତ୍ରଜ୍ଞ ବହୁଳ ବିପ୍ରଗଣଙ୍କୁ ଉପାସନା କରିଅଛ । ୩୦ । ହେ ରାଜନ୍ ! ତୁମ୍ଭେ ସୂକ୍ଷ୍ମ ବେଦଶାସ୍ତ୍ରସମୂହ, ଧର୍ମସମୂହ, ବେଦଚତୁଷ୍ଟୟ ବୁଝିଅଛ । ୩୧ । ଅତଏବ ହେ କୌରବ ! ତୁମ୍ଭର ଶୋକ କରିବାର ଉଚିତ ନୁହେ । ଯାହା ଭବିତବ୍ୟ ତାହା ହୋଇଅଛି, ତୁମ୍ଭେ କୃଷ୍ଣ ଦ୍ୱୈପାୟନଙ୍କଠାରୁ ବେଦ-ରହସ୍ୟ ଶ୍ରବଣ କରିଅଛ । ୩୨ । ହେ ରାଜନ୍ ! ପାଣ୍ଡୁଙ୍କ ପୁତ୍ରଗଣ ଯେଉଁପରି, ତୁମ୍ଭେ ମଧ୍ୟ ଧର୍ମ ବିଷୟରେ ତଦ୍‌ବତ୍ ଅଟ । ଅତଏବ ତୁମ୍ଭେ ଧର୍ମରେ ରହି ସେହି ସମସ୍ତ ଗୁରୁସେବାପରାୟଣ ପାଣ୍ଡୁପୁତ୍ରଗଣଙ୍କୁ ପାଳନ କର । ୩୩ । ଶୁଦ୍ଧଚିତ୍ତ ଧର୍ମରାଜ ତୁମ୍ଭର ଆଜ୍ଞାବର୍ତ୍ତୀ ହୋଇ ରହିବେ । ଏହାଙ୍କୁ ଆନୃଶଂସ୍ୟପରାୟଣ ଏବଂ ଗୁରୁବତ୍ସଳ ବୋଲି ଜାଣ । ୩୪ । ତୁମ୍ଭ ପୁତ୍ରଗଣ ଦୁରାତ୍ମା, କ୍ରୋଧମୋହପରାୟଣ, ଈର୍ଷାଭିଭୂତ ଦୁର୍ବୃତ୍ତ ଥିଲେ, ଅତଏବ ସେମାନଙ୍କ ନିମିତ୍ତ ଶୋକ କରିବାର ଉଚିତ ନୁହେ । ୩୫ ।

ବୈଶମ୍ପାୟନ କହିଲେ, କୌରବବର ଧୃଷ୍ଟ ମନୀଷୀ ଧୃତରାଷ୍ଟ୍ରଙ୍କୁ ଏତାବନ୍ମାତ୍ର କଥା କହି ମହାବାହୁ ବାସୁଦେବଙ୍କୁ କହିଲେ (୩୬), ହେ ଦେବଦେବେଶ ! ସୁରାସୁରନମସ୍କୃତ ଶଂଖଚକ୍ରଗଦାଧର ତ୍ରିବିକ୍ରମ ଭଗବନ୍ ! ତୁମ୍ଭଙ୍କୁ ନମସ୍କାର । ତୁମ୍ଭେ ବାସୁଦେବ, ହିରଣ୍ୟାତ୍ମା, ସବିତା, ବିରାଟପୁରୁଷ, ତୁମ୍ଭେ ଜୀବସ୍ୱରୂପ, ଅଣୁରୂପ, ସନାତନ, ପରମାତ୍ମା । ଆମ୍ଭେ ତୁମ୍ଭର ଭକ୍ତ, ତ୍ୱଦ୍‌ଗତଚିତ୍ତ ଓ ଅଦାର ହୋଇ ପରିବାରଗଣରେ ବେଷ୍ଟିତ । ହେ ପୁଣ୍ଡରୀକାକ୍ଷ ! ହେ ପୁରୁଷୋତ୍ତମ ! ତୁମ୍ଭେ ନିତ୍ୟ, ଆମ୍ଭଙ୍କୁ ପରି-ତ୍ରାଣ କର । ହେ ବୈକୁଣ୍ଠ ପୁରୁଷୋତ୍ତମ କୃଷ୍ଣ ! ଆମ୍ଭଙ୍କୁ ଅନୁମତି କର ।୩୯। ଆପଣ ଯେଉଁମାନଙ୍କର ପରମ ଆଶ୍ରୟ, ସେହି ପାଣ୍ଡବଗଣଙ୍କୁ ରକ୍ଷା କର । ଆମ୍ଭେ ପୂର୍ବେ ଦୁର୍ବୁଦ୍ଧି ମୂର୍ଖ ଦୁର୍ଯ୍ୟୋଧନଙ୍କୁ କହିଥିଲୁଁ, ଯେଉଁ ପକ୍ଷରେ କୃଷ୍ଣ ସେହି ପକ୍ଷରେ ଧର୍ମ ଏବଂ ଯେଉଁ ପକ୍ଷରେ ଧର୍ମ ସେହି ପକ୍ଷରେ ଜୟ । ହେ ବତ୍ସ ! ବାସୁଦେବଙ୍କୁ ଉପାୟରୂପେ ଅବଲମ୍ବନ କରି ପାଣ୍ଡବମାନଙ୍କ ସହିତ ଶାନ୍ତି ସ୍ଥାପନ କର । ସନ୍ଧି କରିବାକୁ ଏ ସୁଯୋଗ ସମୟ ଉପସ୍ଥିତ ହୋଇଅଛି । ଆମ୍ଭେ ବାରମ୍ବାର ଏହି କଥା କହିଲୁଁ କିନ୍ତୁ ସେହି ମୂଢ଼ ମନ୍ଦମତି ଦୁର୍ଯ୍ୟୋଧନ ଆମ୍ଭ ବାକ୍ୟ ପ୍ରତିପାଳନ କଲେ ନାହିଁ । ସଂପ୍ରତି ପୃଥିବୀସ୍ଥ ସମସ୍ତ ନୃପତିଗଣଙ୍କୁ ନିହତ କରାଇ ସ୍ୱୟଂ ନିଧନ ଲାଭ କରି ଅଛନ୍ତି । ୪୨ ।

ହେ ଦେବ ! ଆମ୍ଭେ ତୁମ୍ଭଙ୍କୁ ବଦରିକାଶ୍ରମରେ ନରଙ୍କ ସହିତ ବହୁକାଳବାସୀ ପୁରାଣ ଋଷିସତ୍ତମ ଦେବ ବୋଲି ଜାଣୁ, ନାରଦ ଓ ମହା-ତପା ବ୍ୟାସ, ଆମ୍ଭଙ୍କୁ କହିଅଛନ୍ତି ଯେ ଏହି ଦୁହେଁ ନର ନାରାୟଣ ମନୁଷ୍ୟ-ଲୋକରେ ଅବତୀର୍ଣ୍ଣ ହୋଇଅଛନ୍ତି । ୪୪ । ହେ କୃଷ୍ଣ ! ସମ୍ପ୍ରତି ଆମ୍ଭେ କଳେବର ପରିତ୍ୟାଗ କରୁଅଛୁଁ, ତୁମ୍ଭେ ଆମ୍ଭଙ୍କୁ ଅନୁମତି କର ; ତୁମ୍ଭେ ଅନୁଜ୍ଞା କଲେ ଆମ୍ଭେ ପରମଗତି ପ୍ରାପ୍ତ ହେବୁ । ୪୫ ।

ବାସୁଦେବ କହିଲେ, ହେ ପାର୍ଥିବ ଭୀଷ୍ମ ! ଆମ୍ଭେ ତୁମ୍ଭଙ୍କୁ ଅନୁମତି କରୁଅଛୁଁ । ତୁମ୍ଭେ ବସୁଲୋକସମୂହ ପ୍ରାପ୍ତ ହୁଅ । ହେ ମହାଦ୍ୟୁତେ ! ଇହଲୋକରେ ତୁମ୍ଭର କଣ୍ଣିକମାତ୍ର ପାପ ନାହିଁ, ତୁମ୍ଭେ ପିତୃଭକ୍ତ ଏବଂ ଦ୍ୱିତୀୟ ମାର୍କଣ୍ଡେୟ ସଦୃଶ, କାରଣ ମୃତ୍ୟୁ ଭୃତ୍ୟସଦୃଶ ଅବନତ ହୋଇ ତୁମ୍ଭର ବଶୀଭୂତ ହୋଇଅଛନ୍ତି ।୪୬। ବୈଶମ୍ପାୟନ କହିଲେ, କୃଷ୍ଣ ଭୀଷ୍ମଙ୍କୁ ଏହିପରି କହିବାରୁ ସେ ପାଣ୍ଡବଗଣ ଏବଂ ଧୃତରାଷ୍ଟ୍ର ସମସ୍ତ ସୁହୃଦ୍‌ଗଣଙ୍କୁ କହିଲେ, ଆମ୍ଭେ ପ୍ରାଣ ପରିତ୍ୟାଗ କରିବାକୁ ଅଭିଳାଷୀ ହୋଇଅଛୁ, ତଦ୍‌ବିଷୟରେ ତୁମ୍ଭେମାନେ ଅନୁମତି କର । ତୁମ୍ଭେମାନେ ସତ୍ୟ ବିଷୟରେ ଯତ୍ନବାନ୍ ଥିବ, ସତ୍ୟ ନିଶ୍ଚୟ ପରମ ବଳ । ୪୯ । ହେ ଭାରତଗଣ ! ତୁମ୍ଭେମାନେ ଅନବରତ ଆନୃଶଂସ୍ୟପରାୟଣ, ନିୟତଚିତ୍ତ, ବ୍ରହ୍ମନିଷ୍ଠ, ଧର୍ମଶୀଳ ଏବଂ ତପସ୍ୟାରେ ରତ ହେବ । ୫୦ । ଧୀମାନ୍ ଭୀଷ୍ମଦେବ ସମସ୍ତ ସୁହୃଦ୍‌ଗଣଙ୍କୁ ଏହି କଥା କହି ସମସ୍ତଙ୍କୁ ଆଲିଙ୍ଗନ କରି ପୁନଶ୍ଚ ଯୁଧିଷ୍ଠିରଙ୍କୁ ଏହି କଥା କହିଲେ । ୫୧ । ହେ ନରନାଥ ! ବ୍ରାହ୍ମଣଗଣ ବିଶେଷ ପ୍ରାଜ୍ଞଗଣ, ଆଚାର୍ଯ୍ୟ ଓ ଋତ୍ୱିକ୍‌ଗଣ ସର୍ବଦା ତୁମ୍ଭର ପୂଜନୀୟ । ୫୨ ।

---

## ଅଧ୍ୟାୟ—୧୬୮

ବୈଶମ୍ପାୟନ କହିଲେ—ହେ ଅରିଦମନ କୁରୁନନ୍ଦନ ! ସେହି ଶାନ୍ତନୁପୁତ୍ର ଭୀଷ୍ମ ତେତେବେଳେ ସମସ୍ତ କୁରୁଗଣଙ୍କୁ ଏହିପରି କହି ମୁହୂର୍ତ୍ତକାଳ ମୌନାବଲମ୍ବନ କରିଥିଲେ । ୧ । ଅନନ୍ତର ଯଥାକ୍ରମେ ମୂଳଧାରାଦି

ଅଧିଷ୍ଠାନରେ ମନ ସହିତ ପ୍ରାଣାଦି ବାୟୁ ଧାରଣ କରିବାରୁ ସେହି ମହାତ୍ମାଙ୍କ ପ୍ରାଣାଦି ବାୟୁସମୂହ ସମ୍ୟକ୍ ନିରୁଦ୍ଧ ହୋଇ ଊର୍ଦ୍ଧ୍ୱଗାମୀ ହେଲେ । ୨ ।

ଶାନ୍ତନୁପୁତ୍ର ଭୀଷ୍ମ ତେତେବେଳେ ଯେଉଁ ଯେଉଁ ଅବୟବର ଯେଉଁ ଅଂଶ ପରିତ୍ୟାଗ କଲେ, ସେହି ଯୋଗଯୁକ୍ତ ମହାନୁଭାବଙ୍କର ସେହି ସେହି ଅଙ୍ଗ ଶଲ୍ୟଶୂନ୍ୟ ହେଲା । କ୍ଷଣକ ସମୟ ମଧ୍ୟରେ ସମସ୍ତଙ୍କ ସାକ୍ଷାତରେ ସେ ଶରଶୂନ୍ୟ ହେଲେ । ବାସୁଦେବ ପ୍ରଭୃତି ବ୍ୟାସାଦି ମୁନିଗଣଙ୍କ ସହିତ ସମସ୍ତେ ତାହା ଦର୍ଶନ କରି ବିସ୍ମୟାପନ୍ନ ହୋଇ ରହିଲେ । ୫ ।

ସେ ସର୍ବାବୟବରେ ପ୍ରାଣସଂଯୁକ୍ତ ମନକୁ ନିରୋଧ ପୂର୍ବକ ମସ୍ତକ ଭେଦକରି ସ୍ୱର୍ଗକୁ ଗମନ କଲେ । ଆକାଶରେ ପୁଷ୍ପବୃଷ୍ଟି ସହିତ ଦେବ-ଦୁନ୍ଦୁଭି ନାଦ ହେଲା । ୭ ।

ସିଦ୍ଧ ଓ ବ୍ରହ୍ମର୍ଷିଗଣ ସାଧୁ ସାଧୁ ବୋଲି ହର୍ଷ ପ୍ରକାଶ କଲେ । ହେ ଜନନାଥ ! ଭୀଷ୍ମଦେବଙ୍କ ମସ୍ତକରୁ ମହତୀ ଉଲ୍‌କାସଦୃଶ କୌଣସି ପଦାର୍ଥ ନିଃସୃତ ହୋଇ ଆକାଶରେ ଆବେଶ କରି କ୍ଷଣକ ମଧ୍ୟରେ ଅନ୍ତର୍ହିତ ହେଲା । ୮ ।

ହେ ନୃପବର ! ଏହିରୂପେ ସେହି ଭରତକୁଳଧୁରନ୍ଧର ରାଜଶାର୍ଦ୍ଦୂଳ ନରନାଥ ଶାନ୍ତନୁପୁତ୍ର ତେତେବେଳେ କାଳସହିତ ସଂଯୁକ୍ତ ହେଲେ । ଅନନ୍ତର ମହାନୁଭାବ ପାଣ୍ଡବଗଣ, ବିଦୁର ଓ ଯୁଯୁତ୍ସୁ ବହୁଳ କାଷ୍ଠ ଓ ବିବିଧ ଗନ୍ଧ ଆନୟନ ପୂର୍ବକ ଚିତା ନିର୍ମାଣ କଲେ । ଅପର ବ୍ୟକ୍ତିଗଣ ଦର୍ଶନ କଲେ । ୧୧ ।

ଯୁଧିଷ୍ଠିର ଏବଂ ମହାମତି ବିଦୁର ଏହି ଦୁହେଁ କୁରୁବର ଭୀଷ୍ମଙ୍କୁ କ୍ଷୌମବସ୍ତ୍ର ଓ ମାଲ୍ୟଦ୍ୱାରା ଆଚ୍ଛାଦନ କଲେ । ଯୁଯୁତ୍ସୁ ତାହାଙ୍କ ଉପରେ ଉତ୍କୃଷ୍ଟ ଛତ୍ର ଧାରଣ କଲେ । ଭୀମ, ଅର୍ଜ୍ଜୁନ ଦୁହେଁ ଶୁଭ୍ର ଚାମରଯୁଗଳ ଆନ୍ଦୋଳନ କଲେ । ୧୩ ।

ମାଦ୍ରୀପୁତ୍ରଦ୍ୱୟ ତାହାଙ୍କ ମସ୍ତକରେ ଉଷ୍ଣୀଷ ପ୍ରଦାନ କଲେ । ଯୁଧିଷ୍ଠିର ଓ ଧୃତରାଷ୍ଟ୍ର ଏବଂ କୌରବପତ୍ନୀଙ୍କ ସ୍ତ୍ରୀବୃନ୍ଦ କୁରୁକୁଳଧୁରନ୍ଧର ଭୀଷ୍ମଦେବଙ୍କ ପଦତଳରୁ ସର୍ବାଙ୍ଗରେ ତାଳବୃନ୍ତ ସଂଚାଳନ କଲେ । ତଦନନ୍ତର ସମସ୍ତେ ସେହି ମହାତ୍ମାଙ୍କର ବିଧିବତ୍ ପିତୃଯଜ୍ଞ ନିର୍ବାହ କଲେ । ୧୫ ।

ଅଗ୍ନିରେ ବାରମ୍ବାର ଯଜନ କଲେ । ସାମଗ ବ୍ରାହ୍ମଣଗଣ ସାମଗାନ କଲେ, ତଦନନ୍ତର ଧୃତବସ୍ତ୍ର ପ୍ରଭୃତି ଚନ୍ଦନକାଷ୍ଠ ଓ କାଳୀୟକ କାଳାଗୁରୁ ପ୍ରଭୃତି ବହୁବିଧ ଗନ୍ଧଦ୍ରବ୍ୟଦ୍ୱାରା ଗଙ୍ଗାନନ୍ଦନଙ୍କୁ ଆଚ୍ଛାଦନ କରି ହୁତାଶନ ପ୍ରଜ୍ୱାଳନ ପୂର୍ବକ ଚିତାକୁ ପ୍ରଦକ୍ଷିଣ କଲେ ।

କୁରୁକୁଳଧୁରନ୍ଧର କୁରୁସତ୍ତମସମୂହ କୁରୁବର ଗାଙ୍ଗେୟଙ୍କୁ ସଂସ୍କାର କରି ଋଷିଗଣସେବିତ ପବିତ୍ର ଗଙ୍ଗାତୀରକୁ ଗମନ କଲେ । ବ୍ୟାସଦେବ, ଅସିତ, ନାରଦ, କୃଷ୍ଣ, ଭରତକାମିନୀଗଣ ଏବଂ ଯେଉଁ ସମସ୍ତ ପୌରଜନ ସମାଗତ ହୋଇଥିଲେ, ସେମାନେ ସମସ୍ତେ ସେମାନଙ୍କର ଅନୁଗମନ କଲେ । ହେ ଭରତଶ୍ରେଷ୍ଠ ! ପଶ୍ଚାଶେଷରେ ସେହି ସମସ୍ତ ଲୋକବୃନ୍ଦ ମହାତ୍ମା ଭୀଷ୍ମଙ୍କର ବିଧିପୂର୍ବକ ତର୍ପଣ କଲେ । ଅନନ୍ତର ଭାଗୀରଥୀ ଦେବୀ ପୁତ୍ରଙ୍କ ତର୍ପଣ ହେବାପରେ ସେହି ଜଳରୁ ଉତ୍ଥାନ ପୂର୍ବକ ରୋଦନ କରି ଶୋକବିହ୍ୱଳା ହୋଇ ବାରମ୍ବାର ବିଳାପ କରି କୌରବଗଣଙ୍କୁ କହିଲେ (୨୨)—

ହେ ନିଷ୍ପାପଗଣ ! ଯାହା ଘଟିଅଛି, ଆମ୍ଭେ ତାହା କହୁଅଛୁଁ, ସମସ୍ତେ ଶ୍ରବଣ କର । ଆମ୍ଭର ଯେଉଁ ପୁତ୍ର ରାଜଚରିତ୍ର, ପ୍ରଜ୍ଞାଯୁକ୍ତ ଓ ନିୟମସମ୍ପନ୍ନ ଥିଲେ, ଯେ କୁରୁବୃଦ୍ଧଗଣଙ୍କ ସତ୍କାର କରୁଥିଲେ, ଏବଂ ପିତୃଭକ୍ତ ଓ ମହାବ୍ରତ ଥିଲେ, ଯେ ପୂର୍ବେ ପରଶୁରାମଙ୍କ ନିକଟରେ ପରାଜିତ ହୋଇ ନ ଥିଲେ (୨୪), ଅଦ୍ୟ ସେହି ମହାବୀର ଶିଖଣ୍ଡିକର୍ତ୍ତୃକ ହିଁବା ଅସ୍ତ୍ରସମୂହଦ୍ୱାରା ହତ ହେଲେ । ହେ ନୃପଗଣ ! ଆମ୍ଭ ହୃଦୟ ନିଶ୍ଚୟ ପାଷାଣ ସାରମୟ ଅଟେ । ୨୫ ।

କାରଣ ସମ୍ପ୍ରତି ସେ ପ୍ରିୟ ପୁତ୍ରଙ୍କୁ ନ ଦେଖି ବିଦୀର୍ଣ୍ଣ ହେଉନାହିଁ । ଯେ କାଶୀପୁରୀରେ ସ୍ୱୟମ୍ବର ସମାଜରେ ସମାଗତ ସମସ୍ତ କ୍ଷତ୍ରିୟ ଭୂପାଳଗଣଙ୍କୁ ଏକରଥରେ ଜୟ କରି କନ୍ୟାତ୍ରୟ ହରଣ କରିଥିଲେ, ପୃଥିବୀରେ ଯାହାଙ୍କ ସଦୃଶ ବଳଶାଳୀ ଅନ୍ୟ ବ୍ୟକ୍ତି କେହି ନାହାନ୍ତି (୨୭), ସେହି ପୁତ୍ର ଶିଖଣ୍ଡିଦ୍ୱାରା ହତ ହୋଇଥିବାର ଶୁଣି ଆମ୍ଭ ହୃଦୟ ବିଦୀର୍ଣ୍ଣ ହେଲା ନାହିଁ ! କୁରୁକ୍ଷେତ୍ରରେ ରଣସ୍ଥଳରେ ଜାମଦଗ୍ନ୍ୟ ପରଶୁରାମ ଯେଉଁ ମହାତ୍ମାଙ୍କଦ୍ୱାରା ଅନାୟାସରେ ପୀଡ଼ିତ ହୋଇଥିଲେ, ଅଦ୍ୟ ସେ ଶିଖଣ୍ଡି କର୍ତ୍ତୃକ ହତ ହେଲେ । ତେତେବେଳେ ମହାନଦୀ ଗଙ୍ଗା ଏବଂବିଧ ବହୁଳ ବିଳାପ କରୁଥିବାରୁ ବିଭୁ ଦାମୋଦର ତାହାଙ୍କୁ ସାନ୍ତ୍ୱନା ବାକ୍ୟରେ

ଆଶ୍ୱାସ ପ୍ରଦାନ କଲେ । ହେ ପ୍ରିୟଦର୍ଶନେ ଭଦ୍ରେ ! ତୁମ୍ଭେ ଶାନ୍ତା ହୁଅ ଓ ଶୋକ କରନା । ୩୦ ।

ତୁମ୍ଭର ସେହି ପୁତ୍ର ପରମଲୋକକୁ ଗମନ କରିଅଛନ୍ତି ସଂଶୟ ନାହିଁ । ହେ ଶୋଭନେ ! ଏହି ଭୀଷ୍ମ ମହାତେଜସ୍ୱୀ ବସୁ, ଶାପଦୋଷରେ ମନୁଷ୍ୟତ୍ୱ ପ୍ରାପ୍ତ ହୋଇଥିଲେ; ଅତଏବ ଏହାଙ୍କ ନିମିତ୍ତ ତୁମ୍ଭର ଶୋକ କରିବାର ଉଚିତ ନୁହେ । ୩୧ ।

ସେ କ୍ଷତ୍ରିୟ ଧର୍ମାନୁସାରେ ରଣାଙ୍ଗଣରେ ସଂଗ୍ରାମ କରି ଧନଞ୍ଜୟ କର୍ତ୍ତୃକ ନିହତ ହୋଇଅଛନ୍ତି । ହେ ଦେବି ! ତାହାଙ୍କୁ ଶିଖଣ୍ଡି ନିହତ କରିନାହିଁ । ୩୨ ।

କୁରୁଶ୍ରେଷ୍ଠ ଭୀଷ୍ମଦେବ ମହାରଣରେ ବାଣ ଉଦ୍ୟତ କରି ଅବସ୍ଥାନ କଲେ ସାକ୍ଷାତ୍ ଶତକ୍ରତୁ ଇନ୍ଦ୍ର ମଧ୍ୟ ତାହାଙ୍କୁ ହନନ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୩୩ ।

ହେ ଶୁଭାନନେ ! ତୁମ୍ଭ ପୁତ୍ର ସ୍ୱଚ୍ଛନ୍ଦରେ ସ୍ୱର୍ଗକୁ ଗମନ କରି-ଅଛନ୍ତି, ଯୁଦ୍ଧରେ ସମସ୍ତ ଦେବଗଣ ମଧ୍ୟ ତାହାଙ୍କୁ ହନନ କରିବାକୁ ସମର୍ଥ ନୁହନ୍ତି । ୩୪ ।

ଅତଏବ ହେ ଦେବି ଗଙ୍ଗେ ! ତୁମ୍ଭେ କୁରୁନନ୍ଦନଙ୍କ ନିମିତ୍ତ ଶୋକ କରନା । ତୁମ୍ଭ ପୁତ୍ର ବସୁଲୋକକୁ ଗମନ କରିଅଛନ୍ତି, ହେ ଦେବି ! ତୁମ୍ଭେ ବିଜ୍ୱର ହୁଅ । ୩୫ ।

ବୈଶମ୍ପାୟନ କହିଲେ, ମହାରାଜ ! ସରିଦ୍‌ବରା ଜାହ୍ନବୀଙ୍କୁ କୃଷ୍ଣ ଓ ବ୍ୟାସଦେବ ଏହିପରି କହିବାରୁ ସେ ଶୋକ ପରିତ୍ୟାଗ ପୂର୍ବକ ପ୍ରକୃତି ପ୍ରାପ୍ତ ହେଲେ । ୩୬ ।

ହେ ରାଜନ୍ ! ଜନାଧିପ ! ତେତେବେଳେ କୃଷ୍ଣ ପ୍ରଭୃତି ସମସ୍ତେ ତାହାଙ୍କୁ ସତ୍କାର କରି ଏବଂ ତାହାଙ୍କ ଅନୁମତି ନେଇ ନିବୃତ୍ତ ହେଲେ ।୩୭।

---